।। ମହାନାୟକ ଶ୍ରୀକୃଷ୍ଣ ।। ଲେଖିକା : ଲକ୍ଷ୍ମୀପ୍ରିୟା ଆଚାର୍ଯ୍ୟ ।। ପ୍ରକାଶକ : **ଅଗ୍ରଦୂତ,** ବାଙ୍କାବଜାର, କଟକ-୨ ।। ପ୍ରଥମ ପ୍ରକାଶ : **୨୦୦୪** ।। ପ୍ରଚ୍ଛଦ : ବିଜୟ ପ୍ରଧାନ ।। ମୁଦ୍ରଣ : ପଞ୍ଚସଖା ଅଫ୍‌ସେଟ୍, ସୂତାହାଟ, କଟକ ।। କମ୍ପ୍ୟୁଟର ସହାୟତା : ଏସ୍.ବି.ଆଇ. ଷ୍ଟାଫ୍ ଆସୋସିଏସନ କୋ-ଅପରେଟିଭ ଲିମିଟେଡ଼, କଟକ- ୨ ।।

**ମୂଲ୍ୟ : ଟ.୧୬୦/-**

**MAHANAYAKA SRIKRUSHNA** II Written By : Laxmipriya Acharya II Published by : **Agraduta,** Bankabazar, Cuttack-2 II 1st Edition : **2004** II Cover design : Bijay Pradhan II Printed by : Panchasakha Offset, Sutahat, Cuttack II (Print : 500 Copies) Computer Support by: SBI Staff Association Cooperative Ltd., Cuttack - 2 II

**Price : Rs. 160/-**

ISBN 81-86354-

## ।। ମୁଖଶାଳା ।।

'ମହାନାୟକ ଶ୍ରୀକୃଷ୍ଣ' - ଏହି ଉପନ୍ୟାସଟି ବହୁବର୍ଷର ପରିକଳ୍ପନା; କିନ୍ତୁ ସେହି ବିଶ୍ୱନିୟନ୍ତା ବାସୁଦେବଙ୍କ ଇଛାନହେଲେ ମଣିଷ ପାଦଟିଏ ଆଗେଇ ପାରେ? ନା ଧାଡ଼ିଟିଏ ଲେଖିପାରେ? ଶ୍ରୀକୃଷ୍ଣଙ୍କୁ ନେଇ ଉପନ୍ୟାସଟିଏ ଲେଖିବି ଲେଖିବି ବୋଲି ତାଙ୍କୁ କେନ୍ଦ୍ରକରି ମହାଭାରତ ଓ ଭାଗବତର ଅନେକଗୁଡ଼ିଏ ଚରିତ୍ରକୁ ନେଇ କ୍ଷୁଦ୍ରଗଳ୍ପ ଗୁଡ଼ିଏ ଲେଖିଲି, ଯାହାସବୁ ଆତ୍ମପ୍ରକାଶ କଲା 'ମାନସ ମନ୍ଥନ'ରେ, ଉପନ୍ୟାସଟି ଲେଖିଲି, ଶ୍ରୀକୃଷ୍ଣ ହିଁ ହେଲେ ଯାହାର କେନ୍ଦ୍ରବିନ୍ଦୁ; 'ପିତାମହ ଭୀଷ୍ମ'ରେ ଶ୍ରୀକୃଷ୍ଣ ହିଁ ହେଲେ ମୁଖ୍ୟ ଆକର୍ଷଣ । ତଥାପି ଅତୃପ୍ତି ଓ ଅସନ୍ତୋଷରେ ଆଛନ୍ନ ହେଲା ହୃଦୟ । ଏଥର ଆଉ ଅଙ୍କି ବାଟେ ଦେବଦର୍ଶନ ନୁହେଁ, ମୁଖ୍ୟଦ୍ୱାର ଦେଇ ଦେବଦର୍ଶନର ପ୍ରଚଣ୍ଡ ଲାଳସା- ଚିର ରହସ୍ୟମୟ, ବହୁ ଚର୍ଚ୍ଚିତ କୃଷ୍ଣ ବାସୁଦେବଙ୍କୁ ନେଇ ଉପନ୍ୟାସଟିଏ ଲେଖିବାର ଦୁଃସାହସ କଲି । ଉପକ୍ରମରୁ ଉପସଂହାର ଭିତରେ ବହୁ ବାଧାବିଘ୍ନର ସମ୍ମୁଖୀନା ହୋଇଛି । ମନେ ହୋଇଛି ସତେ ଅବା ଶେଷ କରିପାରିବି ନାହିଁ; ଯଦି ମୁଁ ଶେଷ କରିବାକୁ ଅସମର୍ଥ ହୁଏ ତେବେ କିଏ ନେବ ଏହି ଗୁରୁ ଦାୟିତ୍ୱ? ଆଖିବୁଜି ସେହି ରସରାଜଙ୍କୁ ଧ୍ୟାନ କରିବାମାତ୍ରେ ଆତ୍ମବିଶ୍ୱାସ ଫେରିଆସେ, କଲମ ଅଟକେ ନାହିଁ, ବିଶ୍ୱାସ ଦୃଢ଼ ହୁଏ, ମନେ ପଡ଼େ 'ଗୀତ ଗୋବିନ୍ଦ'ର ସେଇ ପଙ୍‌କ୍ତିଟି-

*'ସ୍ମର ଗରଳ ଖଣ୍ଡନଂ, ମମ ଶିରସି ମଣ୍ଡନଂ*
*ଦେହି ପଦ ପଲ୍ଲବ ମୁଦାରଂ'*

ଆଶାହୁଏ ଯେଉଁଠି କଲମ ଅଟକି ଯିବ, ସେଇଠି ରସରାଜ ନିଜେ ଆଗେଇ ଆସିବେ ନାହିଁ କି? ପରିଶେଷରେ ସମାପ୍ତ ହୋଇଛି ଉପନ୍ୟାସ । ଅଥଚ ମନେ ହେଉଛି ତାଙ୍କ ବିଷୟରେ କିଛିବି ଲେଖିନାହିଁ । କେବଳ ତାଙ୍କୁ ଘେରି ରହିଥିବା ମଣିଷର ଆକୁଳତା, ଆତୁରତା, ଆକ୍ରୋଶ, ଆଛନ୍ନତା ହିଁ ରୂପ ପାଇଛି । ସେ'ତ ଅରୂପ, ଅବ୍ୟକ୍ତ, ତାଙ୍କୁ ରୂପଦେବା ଧୂଳିଧରାର ମୋ' ଭଳି ଅକିଞ୍ଚନଟି ପକ୍ଷେ ସମ୍ଭବ କି? ଯୁଗ ଯୁଗ ଧରି ଶ୍ରୀକୃଷ୍ଣଙ୍କୁ ନେଇ କେତେ ସାଧୁ ସନ୍ଥ, ଚିନ୍ତାନାୟକ ଅସଂଖ୍ୟ

ତାତ୍ତ୍ୱିକ ଆଲୋଚନା ଧରିଛନ୍ତି ! ମୋର ଏ ଉପନ୍ୟାସରେ ଯେ ପ୍ରକାର ତତ୍ତ୍ୱ, ଜ୍ଞାନ, ଗାରିମା କିଛି ହେଲେ ନାହିଁ । ମୋ ଉପଲବ୍ଧିରେ ଯେ ଯାହା ଯେତିକି ତା'ର ପୂର୍ଣ୍ଣାଙ୍ଗ ରୂପ ମାଧ୍ୟା ମୁଁ ଦେଇ ପାରିନାହିଁ । ମୋ ପାଇଁ ଯିଏ ଅନନ୍ତ ଆକାଶ ଭଳି, ଦୂରର ସବୁଜିମା ଭଳି, ଅବିରତ ଉଚ୍ଛ୍ୱାସମୟ ଗଭୀର ସମୁଦ୍ର ଭଳି । ମୁଁ ଏମିତି କିଏ ଯେ? ମୋର କଲମରେ ଏମିତି କେତେ ଶକ୍ତିଅଛି ଯେ ଅନନ୍ତ ଆକାଶ, ଉଦାର ପ୍ରକୃତି ଓ ଗଭୀର ସମୁଦ୍ରକୁ ଉପନ୍ୟାସରେ ରୂପ ଦେଇ ବାନ୍ଧିରଖିପାରିବ? ତଥାପି ପ୍ରୟାସଟିଏ ମାତ୍ର । ଝରକା ଫାଙ୍କରୁ କେନାଏ ଆକାଶ ଦେଖିବା ଭଳି । ଯଦି ଏହା ଅଗଣିତ ପାଠକର ହୃଦୟକୁ ଛୁଏଁ ତେବେ ହିଁ ଶ୍ରମ ସାର୍ଥକ ହେବ ।

ଏହା ପ୍ରଥମେ 'ସହକାର' ପତ୍ରିକାରେ ପ୍ରାୟ ୮।୧୦ ବର୍ଷ ତଳେ ଧାରାବାହିକ ଭାବେ କେତୋଟି ମାତ୍ର ପରିଚ୍ଛେଦ ପ୍ରକାଶ ପାଇଥିଲା । 'ସହକାର' ପତ୍ରିକା ନିକଟରେ ମୁଁ କୃତଜ୍ଞତା ପ୍ରକାଶ କରୁଛି ।

ଯାହାଙ୍କ ପାଖରେ କୃତଜ୍ଞତା ପ୍ରକାଶ କରିବା ବାହୁଲ୍ୟ ମାତ୍ର । ସେ ମୋର ସ୍ୱାମୀ ଅର୍ଥନୀତି ପ୍ରାଧ୍ୟାପକ କୃଷ୍ଣଚନ୍ଦ୍ର ମିଶ୍ର । ମୋର ଉପନ୍ୟାସ ବା ଗଳ୍ପ ପ୍ରକାଶିତ ହେଲେ ଯାହାଙ୍କ ହୃଦୟ ଆନନ୍ଦ ରସରେ ମଗ୍ନ ହୁଏ ।

ଶେଷରେ ଯାହାଙ୍କ କୃପାରେ ମୂକ ବାଚାଳ ହୁଏ, ପଙ୍ଗୁ ଗିରି ଲଂଘନରେ ସମର୍ଥ ହୁଏ ସେହି ଗୋପୀଜନବଲ୍ଲଭଙ୍କ କୃପାରୁ ମୋର ଏହି ଧାରା ଅବ୍ୟାହତ ରହୁ- ଏତିକି ପ୍ରାର୍ଥନା ।

ଡକ୍ଟର ଲକ୍ଷ୍ମୀପ୍ରିୟା ଆଚାର୍ଯ୍ୟ

ମାର୍ଫତ୍ : ଡକ୍ଟର କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ପ୍ରାଧ୍ୟାପକ
ସିଦ୍ଧ ମହାବୀର ମନ୍ଦିର ସମ୍ମୁଖ,
ପୁରୀ - ୨

## ॥ ପ୍ରଥମ ଗ୍ରନ୍ଥି ମୋଚନ ॥

ଏହା ମୋର ଆତ୍ମଲିପି ବା ଆତ୍ମକଥନ ନୁହେଁ; ବରଂ ଆତ୍ମଦର୍ଶନ, ଆତ୍ମଜ୍ଞାନ ଏବଂ ସିଧା ସରଳ କଥାରେ କହିଲେ ଆତ୍ମସମୀକ୍ଷା । ମୁଁ ଯଶୋଦା ଦୁଲାଳ କୃଷ୍ଣ ବାସୁଦେବ, ମାଟିର ମଣିଷଟିଏ ହେବାକୁ ଚାହିଁଥିଲି । ସାଧାରଣ ହସ ଲୁହର, ତୃଟି ବିଚ୍ୟୁତିର, ଅଭାବ ଅନୁଭୂତିର ମଣିଷଟିଏ । ମୋତେ କିନ୍ତୁ ମୋ ପ୍ରିୟ ପୃଥିବୀର ପରିଜନ ମଣିଷଠାରୁ ଉପରକୁ ଉଠାଇ ଦେବତାର ସମ୍ମାନ ଦେଇଛନ୍ତି । ମୁଁ କଅଣ ଏତେ ବେଶୀ ସମ୍ମାନ ଚାହିଁଥିଲି ? ମୁଁ ନିର୍ଲିପ୍ତ, ଚିର ଉଦାସୀନ, ସମ୍ମାନ ବା ଅସମ୍ମାନକୁ ମୁଁ ଭ୍ରୂକ୍ଷେପ କରେନାହିଁ ।

ଆଜି ଏଇ ଯୁଗସନ୍ଧିରେ ଯେତେବେଳେ ମୋର ସମସ୍ତ ଭାବସଂକଟ, ଧର୍ମସଂକଟର ସମାଧାନ ହୋଇଛି, ଯେତେବେଳେ ସବୁ ସଂଘର୍ଷ, ସବୁ ସଂଗ୍ରାମ ଶେଷ ହୋଇଛି, ସେତେବେଳେ ମୁଁ ଏଇଠି, ଏଇ ଲତାକୀର୍ଣ୍ଣ ଶିଆଳି ଲଟାର ଦୋଳିରେ ଟିକିଏ ବିଶ୍ରାମପାଇଁ ଜନପଦଠାରୁ ଦୂରେଇ ଆସିଥିବାବେଳେ ଏଇଠାରେ ହିଁ ଅପେକ୍ଷା କରିଥିଲା ମୋର ପ୍ରାଣଘାତୀ ଅମୋଘ ଅସ୍ତ୍ର ? ମୋର ମୁହୂର୍ତ୍ତକର ବିଶ୍ରାମ ଚିର ବିଶ୍ରାମରେ ପରିଣତ ହେବା ପୂର୍ବରୁ, ମୁହୂର୍ତ୍ତକର ନିଦ୍ରା ମହାନିଦ୍ରାରେ ପରିଣତ ହେବା ପୂର୍ବରୁ ହେ ମୋର ଅନ୍ତରଙ୍ଗ ବିଶ୍ୱ ମୋ ସ୍ୱୀକାରୋକ୍ତି ଶୁଣି ରଖ ! ତେବେ ଏ ବିଶ୍ୱରେ, ବିଶେଷତଃ ମୋର ଐଶ୍ୱର୍ଯ୍ୟମୟୀ ଦ୍ୱାରକାରେ ମୋ ବିଶ୍ରାମପାଇଁ ସ୍ଥାନର ଅଭାବ ଥିଲାକି ? ମୁଁ କାହିଁକି ଏ ଅରଣ୍ୟ ସଂକୁଳ, ଲତାଗୁଳ୍ମାଚ୍ଛାଦିତ ବନଭୂମିକୁ ଚାଲି ଆସିଥିଲି ?

ବନଭୂମି ! ମୋର ଚିର ପ୍ରିୟ ବନଭୂମି ! ମୋର ସମଗ୍ର ଶୈଶବ ଏଇ ବନଭୂମିରେ ହିଁ ପ୍ରାୟତଃ ଅତିବାହିତ ହୋଇଛି ପ୍ରିୟତର ସଖାଙ୍କ ଗହଣରେ, ପ୍ରିୟତମା ଗୋପକନ୍ୟାଙ୍କ ମେଳରେ । ସେ କଥା ପରେ । ସେଦିନ କିନ୍ତୁ ମୋର ମନେ ହୋଇଥିଲା ସେଇ ଘଞ୍ଚ ସବୁଜ ଅରଣ୍ୟାନିରେ ସେହି ନିର୍ଜନ ବନବିଥୀରେ ଯେମିତି କେହି ମୋତେ ଅପେକ୍ଷା କରିଛି ବହୁଦିନରୁ । ହୁଏତ ପକ୍ଷୀର କୂଜନରେ, ହୁଏତ ପତ୍ରର ଶୀର୍ଷରେ, ହୁଏତ ଫୁଲର ସୁବାସରେ, ହୁଏତ ଝରଣାର କଲୋଚ୍ଛ୍ୱାସରେ । ସେଇ କଅଣ ମହାକାଳ ? ଯେମିତି ମୁଁ ସେଠାରେ ପହଞ୍ଚିଗଲେ ହିଁ ତା'ର କର୍ତ୍ତବ୍ୟ ଶେଷ ହେବ, ତା'ର ପ୍ରତୀକ୍ଷାରେ ପୂର୍ଣ୍ଣଚ୍ଛେଦ ପଡ଼ିବ । ମୋର ଯେମିତି ମନେହେଲା ମୁଁ କାହାକୁ କଥା ଦେଇଛି ସେଠାରେ ଯଥାସମୟରେ ପହଞ୍ଚିବାକୁ । ହୋଇପାରେ ଏ ଜନ୍ମରେ ନୁହେଁ, ଗତ ଜନ୍ମରେ ।

ପ୍ରକୃତି ଚିରକାଳ ଉଦାର । ମୁଁ ତେଣୁ ସେଠାରେ ପହଞ୍ଚିବା ମାତ୍ରେ ସମସ୍ତ ଶୋକ ଯନ୍ତ୍ରଣା ବିସ୍ମୃତ ହୋଇଯାଇଥିଲି । ମନେହୋଇଥିଲା ଏଭଳି ଶାନ୍ତିର ଆସ୍ୱାଦ ବିଶ୍ୱବ୍ରହ୍ମାଣ୍ଡରେ ଅନ୍ୟତ୍ର ନାହିଁ । ମୁଁ ସେ ଲତାର ପ୍ରେଙ୍ଖାରେ ବସି ବସି କାହାକୁ ଯେମିତି ଅପେକ୍ଷା କରୁଥିଲି । ପ୍ରତୀକ୍ଷାର କ୍ଲାନ୍ତିରେ ମୋ ଆଖି ବୁଜିହୋଇଗଲା । କେତେ ଦୀର୍ଘ ସମୟ ଜାଣେନା । ଅକସ୍ମାତ୍ ଏକ ସୁତୀକ୍ଷ୍ଣ ନାରାଚର ପ୍ରଚଣ୍ଡ ଆଘାତରେ ମୋର ଏ ମାଟିର ଭଂଗୁର କଳେବର ଯନ୍ତ୍ରଣାରେ ଅସ୍ଥିର ହୋଇଉଠିଲା । ମୁଁ ଆର୍ତ୍ତନାଦ କରି ଉଠିଲି । ଫୁଲ ପାଖୁଡ଼ାରେ ଚାଲିବାରେ ଅଭ୍ୟସ୍ତ ମୋର ସୁକୋମଳ ପଦରେ ତଥାପି ଜ୍ୟା ମୁକ୍ତ ବିଷାକ୍ତ ତୀର ବିଦ୍ଧ ହୋଇ ରହିଥିଲା ଓ ସେଥିରୁ ଅଜସ୍ର ରକ୍ତ କ୍ଷରିତ ହୋଇ ବନଭୂମିକୁ ସିକ୍ତ କରୁଥିଲା । ମୋର ଆର୍ତ୍ତ ଚିତ୍କାର ଶୁଣି ଶରାସନ ସହ ମୋ ପାଖକୁ ଯିଏ ଧାଇଁ ଆସିଲା, ମୋତେ ଏଭଳି ଅବସ୍ଥାରେ ଦେଖି ଦୁଃଖ, ଶୋକ, ଅନୁଶୋଚନାରେ ବାତବିକ୍ଷୁବ୍ଧ ରମ୍ଭା ପତ୍ର ସଦୃଶ ସେ କମ୍ପିବାକୁ ଲାଗିଲା । ମୋ ପଦତଳର ଶୋଣିତ ଧାରରେ ତା' ନୟନର ଲୋତକ ମିଶି ଏକାକାର ହୋଇଗଲା । ବହୁକଷ୍ଟରେ ସେ ନିଜକୁ ସମ୍ବରଣ କରି କହିବାକୁ ଆରମ୍ଭ କଲା- 'ନୀଳ ଜୀମୂତ କାନ୍ତି, କଣ୍ଠରେ କୌସ୍ତୁଭ ମଣି, କର୍ଣ୍ଣରେ ମକର କୁଣ୍ଡଳ, ଶିରରେ ମୟୂର ଚନ୍ଦ୍ରିକା, କଟିତଟରେ ପୀତବସନ.... ତୁମେ ..... ତୁମେ.. ମୋର ପରମ ବାଞ୍ଛିତ କୃଷ୍ଣ ବାସୁଦେବ ନୁହଁ ତ ?'

ମୁଁ ଏତେ କଷ୍ଟରେ ବି ହାସ୍ୟ ସମ୍ବରଣ କରି ପାରିଲି ନାହିଁ । କହିଲି- 'ହଁ । ମୁଁ ବାସୁଦେବ । କିନ୍ତୁ ତୁମେ ?'

ଅଶ୍ରୁବିକଳ କଣ୍ଠରେ ସେ କହିଲା- 'ମୁଁ ଅଧମ, ମୂଢ଼ ମତି ଜାରାଶବର । ମୁଁ ଏ କ'ଣ କଲି ପ୍ରଭୁ ? ହରିଣ ମାଂସ ଲୋଭରେ ହରିଣ କାନ ଭ୍ରମରେ ମୁଁ ତୁମ ପାଦରେ ଶେଷକୁ ବାଣ ବିଦ୍ଧ କଲି ? ଗଙ୍ଗାରେ କେତେ ଜଳ ବହିଗଲେ ମୋର ଏ ପାପକୁ ଧୋଇପାରିବ ପ୍ରଭୁ ?'

ମୁଁ ତା'ର ଏ ବ୍ୟାକୁଳତାକୁ ଲକ୍ଷ୍ୟ କରୁ କରୁ ଚିନ୍ତା କଲି ଏ ମୁହଁ ସହ ଯେମିତି ମୋର ବହୁଜନ୍ମର ପରିଚୟ ଅଛି । ଏ ମୁହଁ, ଏ ବ୍ୟାକୁଳତା ମୋର ଅଜ୍ଞାତ ନୁହେଁ, ଅପରିଚିତ ନୁହେଁ । ମୁଁ ଯେମିତି ଏ ଲୋକଟିକୁ ଖୋଜି ଖୋଜି ଦ୍ୱାରକାରୁ ଏ ଅରଣ୍ୟ ପର୍ଯ୍ୟନ୍ତ ଚାଲି ଆସିଛି । ମୁଁ ଯେମିତି ଏଇ ଲୋକଟିକୁ କିଛି ପ୍ରତିଶୃତି ଦେଇଥିଲି ଏବଂ ସେ ପ୍ରତିଶୃତି ଆଜି ପାଳନ କରିଛି । ମୋର ଅନେକ ପ୍ରିୟ ପରିଜନ ଆକ୍ଷେପ କରନ୍ତି ଯେ ମୁଁ କୁଆଡ଼େ ପ୍ରତିଶୃତି ଦେଇ ପାଳନ କରେନାହିଁ; ଅଥଚ ମୁଁ ଜାଣେ ମୋ ଜୀବନ ବିନିମୟରେ ସୁଦ୍ଧା ମୁଁ ପ୍ରତିଶୃତି ହିଁ ପାଳନ କରେ ।

ମୋର ରକ୍ତଲିପ୍ତ ପଦକୁ ଚାହିଁ ମନେପଡୁଥିଲା ମୁନି ଦୁର୍ବାସାଙ୍କ କଥା । ଦ୍ୱାରକାର ଦରବାର କକ୍ଷରେ ଅକସ୍ମାତ୍ ଦିନେ ମୁନି ଦୁର୍ବାସା ପହଞ୍ଚି ଯାଇଥିଲେ । ସେ ଉଗ୍ରତେଜା ମୁନିଙ୍କୁ ଦେଖି ଦରବାର ଗୃହ ଭୟରେ ତଟସ୍ଥ । ସଂସାର ଅନଭିଜ୍ଞ ଏହି ତପସ୍ୱୀଙ୍କର ଅଭିଶାପ

ଯେଉଁଭଳି ପ୍ରଚଣ୍ଡ ଆଶୀର୍ବାଦ ମଧ୍ୟ ସେହିଭଳି ଅଦ୍‌ଭୁତ । ତାଙ୍କୁ ସନ୍ତୁଷ୍ଟ କରିବା ବଡ଼ ଦୁଷ୍କର । ତଥାପି କରିବାକୁ ପଡ଼ିବ । ମୁଁ ତାଙ୍କୁ ସଙ୍ଗରେ ଧରି ରୁକ୍ମିଣୀଙ୍କ ଅନ୍ତଃପୁରରେ ପହଞ୍ଚିଲି । ରୁକ୍ମିଣୀଙ୍କ ଦ୍ୱାରା ମୁନି ଉତ୍ତମରୂପେ ସତ୍କୃତ ହେବାପରେ ଆମ ଅତିଥି ଭବନରେ କିଛିଦିନ ରହିବାପାଇଁ ମନସ୍ଥ କଲେ । ମୁନିଙ୍କ ସେବା ଓ ପରିଚର୍ଯ୍ୟାର ଭାର ମୁଁ ଓ ରୁକ୍ମିଣୀ ସ୍ୱତଃ ପ୍ରବୃତ୍ତ ଭାବେ ଗ୍ରହଣ କଲୁ । ଦିନେ ଦିନେ ରୁକ୍ମିଣୀ ସ୍ୱହସ୍ତରେ ବହୁବିଧ ସୁପାଚ୍ୟ, ସୁଖାଦ୍ୟ ପ୍ରସ୍ତୁତ କରିଥିଲେ ହେଁ ମୁନି ଦୁର୍ବାସା ଆଦୌ ଖାଦ୍ୟ ଗ୍ରହଣ କରନ୍ତି ନାହିଁ, ସୁତରାଂ ମୁଁ ଓ ରୁକ୍ମିଣୀ ମଧ୍ୟ ଅତିଥି ମୁନିଙ୍କ ବିନାନୁମତିରେ ଖାଦ୍ୟଗ୍ରହଣ କରିପାରୁନା । ପୁଣି ଦିନେ ଦିନେ ଅସମୟରେ ଖାଦ୍ୟ ଗ୍ରହଣ କରିବାପାଇଁ ପହଞ୍ଚି ଯାଆନ୍ତି । ରୁକ୍ମିଣୀ ବ୍ୟତିବ୍ୟସ୍ତ ହୋଇଯା'ନ୍ତି । ମୁଁ ମଧ୍ୟ କିଶୋରୀ ବଧୂ ବୈଦର୍ଭୀଙ୍କର ଦୁର୍ଦ୍ଦଶା ଦେଖି ଅନ୍ତରେ ଅନ୍ତରେ ମ୍ରିୟମାଣ ହୋଇଯାଏ । ଏପରିକି ଦିନେ ଋଷି ଦୁର୍ବାସା ନିର୍ଦ୍ଦେଶ ଦେଲେ ରୁକ୍ମିଣୀ ଓ ମୁଁ ଋଷିଙ୍କୁ ରଥରେ ବସାଇ ରଥ ଟାଣି ଟାଣି ନଗର ପରିକ୍ରମା କରାଇବୁ । ମୋର ଶୈଶବ ଓ କୈଶୋର ଗୋପଭୂମିରେ ଅତିକ୍ରାନ୍ତ ହୋଇଛି । ଯେକୌଣସି କଠିନ କର୍ମରେ ମୁଁ ସିନା ଅଭ୍ୟସ୍ତ, ହେଲେ ବିଦର୍ଭ ନନ୍ଦିନୀ ଯେ ରାଜଦୁଲାଳୀ । ତାଙ୍କ ଭଳି ସୁକୁମାରୀ ପକ୍ଷେ ରଥ ବାହିବା ଯେ କି କଷ୍ଟ ! ଅଥଚ ଗତି ମନ୍ଥର ହେଲେ ମୁନି ବେତ୍ରାଘାତ ମଧ୍ୟ କରୁଥା'ନ୍ତି । ନଗର ପରିକ୍ରମା ଶେଷ ହେବା ପରେ ଦୁର୍ବାସା ପାୟସାନ୍ନ ଭୋଜନ କରିବାକୁ କହିଥିଲେ । ରୁକ୍ମିଣୀ ପାୟସାନ୍ନ ପରିବେଷଣ କଲାପରେ ମୁନି ସେଥିରୁ ଅଳ୍ପମାତ୍ର ଭୋଜନ କରି ସେହି ଭୁକ୍ତାବଶେଷକୁ ନିଜ ଅଙ୍ଗରେ ପ୍ରଲେପ କଲେ । ଦୁର୍ବାସାଙ୍କର ଏହି ବିକାରଗ୍ରସ୍ତ ବ୍ୟବହାରରେ ରୁକ୍ମିଣୀ ହାସ୍ୟ ସମ୍ବରଣ କରି ପାରିଲେ ନାହିଁ । ମୁଁ କିନ୍ତୁ ଧୈର୍ଯ୍ୟର ସହ ଅପେକ୍ଷା କରିଥାଏ ଏହାର ଅନ୍ତିମ ପରିଣତି ଜାଣିବା ପାଇଁ । ସେହି ଭୁକ୍ତାବଶିଷ୍ଟ ପାୟସାନ୍ନକୁ ମୋର ଦେହରେ ଓ ରୁକ୍ମିଣୀଙ୍କ ଦେହରେ ବୋଳିବା ପାଇଁ ମୁନି ଆଦେଶ ଦେଲେ । ତତ୍‌କ୍ଷଣାତ୍ ମୁଁ ଏ ଆଦେଶ ପାଳନ କଲି । ଯେମିତି ଏଇ ଆଦେଶ ପାଳନ କରିବା ନିମିତ୍ତ ମୁଁ ଏ ସାଧନା କରୁଥିଲି । ମୁନିଙ୍କ ଉଚ୍ଛିଷ୍ଟ ସର୍ବାଙ୍ଗରେ ପ୍ରଲିପ୍ତ ହେଲା ସତ; ମାତ୍ର ମୋର ପଦତଳେ ପ୍ରଲିପ୍ତ ହେବାପୂର୍ବରୁ ଉଚ୍ଛିଷ୍ଟ ଶେଷ ହୋଇଗଲା । ଦୁର୍ବାସା ଟିକିଏ ବିଚଳିତ ହୋଇ ପଡ଼ିଲେ । ତାପରେ ରୁକ୍ମିଣୀଙ୍କୁ କହିଲେ- 'ମା ! କି ବର ମାଗୁଛ ମାଗ ! ମୁଁ ଅତି ପ୍ରସନ୍ନ !'

ଭାରତବର୍ଷର ନାରୀ ପକ୍ଷେ ସ୍ୱାମୀର ଦୀର୍ଘଜୀବନ କାମନା କରିବାହିଁ ଏକ ଅମୂଲ୍ୟ ସମ୍ପଦ ତୁଲ୍ୟ । ରୁକ୍ମିଣୀ ତାହାହିଁ କାମନା କରିଥିଲେ । ଦୁର୍ବାସା ସହାସ୍ୟ ବଦନରେ କହିଥିଲେ- 'ମା ! ଏ ପାୟସାନ୍ନ ଯାହା ତୁମ୍ଭମାନଙ୍କ ଅଙ୍ଗରେ ପ୍ରଲିପ୍ତ ହେଲା ତା' କେବଳ ମୋର ଭୁକ୍ତାବଶିଷ୍ଟ ନୁହେଁ, ଏଥିସହିତ ମୋର ସମଗ୍ର ଜୀବନ ତପଃଫଳ, ସାଧନାର ବିଭୂତି ମିଶ୍ରିତ । ତୁମ ସ୍ୱାମୀଙ୍କର ସର୍ବାଙ୍ଗ ସୁରକ୍ଷିତ । କାଳସୁଦ୍ଧା ତାଙ୍କର ଏହି ସୁରକ୍ଷିତ ଅଙ୍ଗକୁ ସ୍ପର୍ଶ କରିପାରିବ

ନାହିଁ । କେବଳ ତାଙ୍କର ପଦତଳ ଦୁଇଟି ଅସୁରକ୍ଷିତ ରହିଗଲା । ଏହା ଆମ୍ଭମାନଙ୍କର ଦୁର୍ଭାଗ୍ୟ ।'

ଏତିକି ଶୁଣିବା ମାତ୍ରେ ରୁକ୍ମିଣୀ ଅଧୀର ହୋଇ ଉଠିଲେ ଓ ନିଜ ଦେହରେ ପ୍ରଲିପ୍ତ ହୋଇଥିବା ପାୟସାନ୍ନକୁ ପୋଛି ହାତରେ ଧରି ମୋ ପାଦତଳେ ବସିପଡ଼ିଲେ । ମୁଁ ତାଙ୍କୁ ତଳୁ ଉଠାଇ ପ୍ରବୋଧନା ଦେଇ କହିଲି- 'ମୁନି ଦୁର୍ବାସାଙ୍କ ଆଶୀର୍ବାଦରୁ ଦୀର୍ଘାୟୁ ମୁଁ ନିଶ୍ଚୟ ହେବି, ତେବେ ଅମର ହେବି ନାହିଁ । ଭଙ୍ଗୁର ଦେହ ଧାରଣ କରି କେହି କେବେ ଅମର ହୋଇପାରେ ରୁକ୍ମିଣୀ ? ତା' ଛଡ଼ା ମୋର ପାଦତଳ କେବଳ ଅସୁରକ୍ଷିତ । କାଳର ପ୍ରବେଶ ପାଇଁ ତାହାହିଁ ପ୍ରଶସ୍ତ ପଥ- ଏଇତ ? ମୋର ପାଦତଳକୁ କିଏ ବା କାହିଁକି ଶସ୍ତ୍ରାଘାତ କରିବ ବୈଦର୍ଭୀ ? ମୋର ପାଦତଳ କାହାକୁ ଦୃଶ୍ୟମାନ ହେବ ବା କିପରି ? ବିଶ୍ରାମ ସମୟ ବ୍ୟତୀତ ପାଦତଳ କାହାକୁ ଦୃଶ୍ୟମାନ ହେବ କୁହ ? ଦ୍ୱାରକାଧୀଶର ବିଶ୍ରାମ କକ୍ଷରେ ତୁମେ କ'ଣ ସତର୍କ ସଜାଗ ପ୍ରହରୀଙ୍କ ବ୍ୟବସ୍ଥା କରିବ ନାହିଁ କି ?'

ହଁ ସେଦିନ ଏଇଭଳି ସେ ପ୍ରସଙ୍ଗ ମୁଁ ଏଡ଼େଇ ଦେଇଥିଲି । ରୁକ୍ମିଣୀ ପ୍ରକୃତରେ ସତର୍କ ସଜାଗ ପ୍ରହରୀଙ୍କ ସଂଖ୍ୟା ଦ୍ୱିଗୁଣ କରିଦେଇଥିଲେ ଏବଂ ଦ୍ୱାରକାରେ ଅବସ୍ଥାନ ସମୟରେ ମୁଁ ଯେଉଁଠି ଶୟନ କରିଥିଲେ ସୁଦ୍ଧା ରୁକ୍ମିଣୀ ମୋର ପାଦ ଦୁଇଟିକୁ ମୂଲ୍ୟବାନ ରେଶମ ବସ୍ତ୍ର ଦ୍ୱାରା ଆବୃତ୍ତ କରିଦେଉଥିଲେ । କିନ୍ତୁ କାଳର ଗତିକୁ କିଏ ବା ରୋକି ପାରିବ ? ମୋର ପ୍ରତିଶୃତି ତ ନିମିତ୍ତ ମାତ୍ର । ମୁହୂର୍ତ୍ତକରେ ଏକ ସ୍ୱପ୍ନ ପରି ମୋ ଆଖିରେ ଭାସିଉଠିଲା ବିଗତ ଜନ୍ମର ଏକ ମର୍ମନ୍ତୁଦ ଦୃଶ୍ୟ । କିଷ୍କିନ୍ଧ୍ୟାଧିପତି ବାଳୀର ଶବାଧାର ପାଖରେ ଏକ ରୋରୁଦ୍ୟମାନ ତେଜସ୍ୱୀ ବାଳକକୁ ମୁଁ ଯେମିତି ପ୍ରତିଶୃତି ଦେଉଛି, ତା'ର ବିଦ୍ରୋହୀ ଆତ୍ମାର ଆର୍ତ୍ତନାଦ ଶୁଣି ମୁଁ ଯେମିତି ପ୍ରତ୍ୟୁତ୍ତର ଦେଉଛି- 'ଧୈର୍ଯ୍ୟଧର ବାଳକ ଅଙ୍ଗଦ ! ଏ ଜନ୍ମରେ ମୁଁ ଲୁଚି ରହି ତୁମ ପିତା ବାଳୀଙ୍କୁ ବଧ କରିଛି, ସମ୍ମୁଖ ସମର କରିନାହିଁ, ଏଇ ତୁମର ଅଭିଯୋଗ ତ ? ତୁମେ ମଧ୍ୟ ଆସନ୍ତା ଜନ୍ମରେ ଲୁଚି ରହି ମୋତେ ହତ୍ୟା କରିବ ।'

ସେ ପର୍ଯ୍ୟନ୍ତ ମୋର ରକ୍ତଲିପ୍ତ ପାଦଟିକୁ ଧରି ଜାରା ଅଶ୍ରୁ ବିସର୍ଜନ କରୁଥିଲା । ମୁଁ ତାକୁ ପ୍ରବୋଧନା ଦେଇ କହିଲି-'ନା- ନା - ତୁମର ଏଥିରେ କୌଣସି ପାପ ନାହିଁ । ଏହା ଅଜ୍ଞାତ ଅପରାଧ । ସୁତରାଂ ତୁମେ ନିର୍ଦ୍ଦୋଷ । ବରଂ ଆଜି ମୁଁ ପ୍ରତିଶୃତି ପାଳନ କରି ଋଣ ମୁକ୍ତ ହେଲି । ଅଙ୍ଗଦକୁ ଗତ ଜନ୍ମରେ ଦେଇଥିବା କଥା ଆଜି ମୁଁ ରକ୍ଷାକରିବାରେ ସମର୍ଥ ହେଲି ।

ଜାରା କିଛି ବୁଝି ପାରିଲା ନାହିଁ । ମୁଁ ଜାରାକୁ ବିହ୍ୱଳ ଦୃଷ୍ଟିରେ ଚାହିଁ ରହି କହିଲି- 'ମହାକାଳ ନିକଟରେ ମଧ୍ୟ ମୁଁ ପ୍ରତିଶୃତିବଦ୍ଧ ଜାରା ! କାଳର ଗତିରୋଧ କରିବି, ସେଭଳି ଶକ୍ତି ମୋର ନାହିଁ । ସମଗ୍ର ଶରୀର ମୋର ଦୁର୍ବାସା ମୁନିଙ୍କର ଆଶୀର୍ବାଦ ରୂପକ ବଜ୍ର କବଚରେ

ସୁରକ୍ଷିତ । କେବଳ ଏ ପାଦ ଦୁଇଟିକୁ ଖାଲି ରଖିଥିଲି ଜାଣିଶୁଣି । ମହାକାଳ ଉପସ୍ଥିତ ହେଲେ, ମୁଣ୍ଡ ନୁଆଇଁ ତାର ଅଲଂଘ୍ୟ ନିର୍ଦ୍ଦେଶକୁ ମାନିନେଇ ତା' ସହ ପାଦମିଳାଇ ଚାଲିଯାଇ ପାରିବି ବୋଲି । କଂସର କାରାକକ୍ଷରୁ ଗୋପଭୂମି, ଗୋପରୁ ମଥୁରା, ମଥୁରାରୁ ଦ୍ୱାରକା, ଦ୍ୱାରକାରୁ କୁରୁକ୍ଷେତ୍ର- ଏଇଭଳି ଜୀବନର ବହୁପଥ ପରିକ୍ରମା କରି ମୁଁ ମଧ ବଡ଼ କ୍ଲାନ୍ତ ଜାରା, ମୁଁ ବି ଏ ଜନ୍ମର କର୍ମବନ୍ଧନରୁ ମୁକ୍ତି ଚାହେଁ, ଚାହେଁ ବିଶ୍ରାମ- ଚିର ବିଶ୍ରାମ !'

ଜାରା ତଥାପି କିଛି ବୁଝିପାରିଲା ନାହିଁ । ମୋ ପାଦତଳୁ ବିଷାକ୍ତ ତୀର କାଢ଼ିବାପାଇଁ ଉଦ୍ୟତ ହେଲା । ମୁଁ ତାଙ୍କୁ ନିଷେଧ କରି କହିଲି- 'ନା- ନା- ବନ୍ଧୁ ! ତୁମେ ବରଂ ହସ୍ତିନା ଯାଅ । ରାଜଚକ୍ରବର୍ତ୍ତୀ ଯୁଧିଷ୍ଠିରଙ୍କର କନିଷ୍ଠଭ୍ରାତା ଅର୍ଜ୍ଜୁନଙ୍କୁ ଏ ବିଷୟରେ ଅବଗତ କରାଇ ଯଥାଶୀଘ୍ର ଡାକି ଆଣ । ଆଉ ସମୟ ନାହିଁ ।'

ମୋ କଥା ଶେଷ ନହେଉଣୁ ମୋର ଆଦେଶ ପାଳନ କରିବାପାଇଁ ଜାରା କ୍ଷିପ୍ର ବେଗରେ ଅଦୃଶ୍ୟ ହୋଇଗଲା । ମାଟିର ଏ ଶରୀର ଆଉ ମାତ୍ର କେତୋଟି ମୁହୂର୍ତ୍ତ ପରେ ହୁଏତ ଜଡ଼ ନିଷ୍ପନ୍ଦ ହୋଇଯିବ । ତା' ପୂର୍ବରୁ ମୋ ଆଖିରେ ଯେଉଁ ଅତୀତର ସ୍ମୃତି ଉଦ୍‌ଭାସିତ ହେଉଛି ମୁଁ ବରଂ ତାକୁଇ ରୋମନ୍ଥନ କରେ ।

କାରଣ ଅତୀତର ସ୍ମୃତି ଚିରକାଳ ମଧୁମୟ ଏବଂ ସେ ମଧୁମୟ ସ୍ମୃତିଚାରଣରେ ମୋର ଏ ଜୀବନ ଯାତନା- ମୃତ୍ୟୁ ଯନ୍ତ୍ରଣା ନିଶ୍ଚୟ ବହୁ ପରିମାଣରେ ଲାଘବ ହୋଇଯିବ ।

ଅନ୍ୟାୟ, ଅବିଚାର, ଅତ୍ୟାଚାର, ସ୍ୱେଚ୍ଛାଚାର ବିରୁଦ୍ଧରେ କେହିତ ଜଣେ ସ୍ୱର ଉତ୍ତୋଳନ କରିବ ? ସେ ଜଣକ ମୁଁ ନହେବି କାହିଁକି ? ମୁଁ ନାରୀ ପ୍ରେମୀ ବୋଲି ମୋର ଦୁର୍ନାମ ଅଛି । ନାରୀର ଅଶ୍ରୁ, ଦୁଃଖ, ଯାତନା, ବିଷାଦ, ବେଦନା ମୁଁ କୌଣସି କାଳରେ ସହ୍ୟ କରିପାରେ ନାହିଁ । ବିଶେଷତଃ ସେ ନାରୀ ଯଦି ସର୍ବଂସହା ପୃଥିବୀ ହୁଏ । ତା'ଛଡ଼ା ପାପର ବିନାଶ କରି ଧର୍ମର ପ୍ରତିଷ୍ଠା ପାଇଁ ସମସ୍ତ ଦୁଃଖ କଷ୍ଟ ବରଣ କରି ଏପରିକି ଜନ୍ମ ମୃତ୍ୟୁର ଚକ୍ର ଭଳି ଦୁଃସହ ବେଦନା ବରଣ କରିବାକୁ ଯୁଗେ ଯୁଗେ ମୁଁ ହିଁ ଆଗ୍ରହୀ ହୁଏ ।

ସୁତରାଂ କଂସ ଯେତେବେଳେ ଉଗ୍ରସେନ ଭଳି ସଦାଶୟ, ସଦାଚାରୀ ବ୍ୟକ୍ତିକୁ ଉପେକ୍ଷା କରି ନିଜେ ମଥୁରାର ରାଜସିଂହାସନରେ ଅଭିଷିକ୍ତ ହେଲା, ଯେତେବେଳେ ତା'ର ଦୂଷିତ ରାଜନୀତିରେ ଗୋ-ବ୍ରାହ୍ମଣ ତଥା ଦୁର୍ବଳ, ଦୁର୍ଗତ ଶ୍ରେଣୀ ପାଇଁ କୌଣସି ସମ୍ବେଦନ ସହାନୁଭୂତି ରହିଲା ନାହିଁ, ଯେତେବେଳେ ସର୍ବାଧିକ ସମ୍ଭୋଗ ହିଁ ହେଲା ତା'ର ରାଜନୀତିର ଆଭିମୁଖ୍ୟ; ଅନ୍ୟାୟ, ଅବିଚାର, ଅତ୍ୟାଚାର ହେଲା ତା'ର ବିଚାରଧାରା- ସେତେବେଳେ କେହି ଜଣେ ତ ତାକୁ ପ୍ରତିରୋଧ କରିଥା'ନ୍ତା ? ନହେଲେ ଏ ଚିରସୁନ୍ଦର ସୃଷ୍ଟି ଛାରଖାର

ହୋଇଯାଆନ୍ତା ନାହିଁ ?? ସେତେବେଳେ ମୋ ଭଳି ଏକ ଚିର ବିପ୍ଳବୀ ସତ୍ତା ଆଉ କେତେ ଧୈର୍ଯ୍ୟର ପରୀକ୍ଷା ଦେଇ ଥାଆନ୍ତା ???

ଅବଶେଷରେ ମୁଁ ଜନ୍ମ ନେଲି । ଜନ୍ମ ନେଲି କଂସର କାରା କକ୍ଷରେ । ମାତା ଦେବକୀଙ୍କ ଅଷ୍ଟମ ଗର୍ଭରେ ଜନ୍ମ ନେବାପାଇଁ ବହୁ କଷ୍ଟ, ବହୁ ଯନ୍ତ୍ରଣା ବରଦାସ୍ତ କରି ପ୍ରତୀକ୍ଷାର ଅନ୍ତିମ ଲଗ୍ନଟି ପର୍ଯ୍ୟନ୍ତ ସୁଦ୍ଧା କୌଣସି ମୁହୂର୍ତ୍ତକୁ ମୁଁ ଉପେକ୍ଷା କରିନାହିଁ ।

ହଁ, ସେତେବେଳକୁ ମାତା ଦେବକୀଙ୍କର ଦୁର୍ଦ୍ଦଶା ଚରମ ସୀମାରେ ପହଞ୍ଚି ସାରିଥିଲା । ବିଶ୍ୱର କୌଣସି ନାରୀ, କୌଣସି ମା' ଏଭଳି ମାନସିକ ଯନ୍ତ୍ରଣା ଭୋଗ କରିନାହିଁ, କରିବ ନାହିଁ ମଧ୍ୟ ।

ଜନନୀ ଦେବକୀ ଛଅ ଛଅଟି ସନ୍ତାନଙ୍କୁ ଗର୍ଭରେ ଧାରଣ କରିଛନ୍ତି କିନ୍ତୁ କୌଣସି ଦିନ କୋଳରେ ଧାରଣ କରିବାର ସୌଭାଗ୍ୟ ତାଙ୍କର ହୋଇନାହିଁ । ନବଜାତକ ଭୂମିଷ୍ଠ ହେବାମାତ୍ରେ କଂସ ସେମାନଙ୍କୁ ନେଇ ହତ୍ୟା କରିଛି ନିର୍ମମ ଭାବେ । ମାତା ଦେବକୀଙ୍କର ଅଶ୍ରୁରେ ଲୌହ କାରାଗାରର ପାଷାଣ ଚତ୍ୱର ପଙ୍କିଳ, ପିଚ୍ଛିଳ ହୋଇଛି । ମାତା ବିଳାପ କରିଛନ୍ତି, ପିତା ବସୁଦେବଙ୍କ ନିକଟରେ ଅନୁଯୋଗ କରିଛନ୍ତି- 'ମୁଁ ଏଭଳି ଜୀବନ ଚାହିଁନଥିଲି ହେ ଆର୍ଯ୍ୟ ! ମୋ ଜୀବନ ବିନିମୟରେ ସୁଦ୍ଧା ମୁଁ ମାତୃତ୍ୱ ଚାହିଁଥିଲି । ସନ୍ତାନର ଜୀବନ ବିନିମୟରେ ଏଭଳି ଲାଞ୍ଛିତ, ଅଭିଶପ୍ତ, ମୃତକଳ୍ପ ଜୀବନ ମୁଁ ଚାହିଁନଥିଲି । ମୋତେ ବଞ୍ଚାଅ ଆର୍ଯ୍ୟ ! ମୋତେ ବଞ୍ଚାଅ !!'

ପିତା ବସୁଦେବଙ୍କର ନିରୁପାୟତା, ଅସହାୟତା ପ୍ରତି ଏ ପ୍ରଚଣ୍ଡ ଆହ୍ୱାନ ତାଙ୍କୁ ଶୋକରେ, ଦୁଃଖରେ ମ୍ରିୟମାଣ କରିଦିଏ, ହତବାକ୍ କରିଦିଏ, ବିମୂଢ଼ କରିଦିଏ । ଅଶ୍ରୁ ସବୁ ଜମାଟ ବାନ୍ଧି ରକ୍ତକୁ ସୁଦ୍ଧା ହିମଶୀତଳ କରିଦିଏ, ଝରିପାରେ ନାହିଁ ।

ନବବିବାହିତା ଭଗିନୀ ଦେବକୀଙ୍କର ରଥର ସାରଥୀ କଂସ ଯେତେବେଳେ ଦୈବୀବାଣୀ ଶୁଣି ଦେବକୀଙ୍କୁ ହତ୍ୟା କରିବାକୁ ଉଦ୍ୟତ ହୋଇଥିଲା, ପିତା ବସୁଦେବ ହିଁ ଏଭଳି ଅଦ୍ଭୁତ ପ୍ରସ୍ତାବ ଦେଇ ଥିଲେ ଯେ, ଜନନୀ ଦେବକୀଙ୍କର ସମସ୍ତ ସଦ୍ୟଜାତ ସନ୍ତାନଙ୍କୁ ସେ ବରଂ କଂସ ହାତରେ ଟେକିଦେବେ; କିନ୍ତୁ ଦେବକୀଙ୍କୁ ନୁହେଁ !

ଜନନୀ ଦେବକୀ ଓ ପିତା ବସୁଦେବଙ୍କର ଚିର ବାଞ୍ଛିତ ସ୍ୱପ୍ନ ମୁଁ ସାକାର ହେଲି । ମୁହୂର୍ତ୍ତ ମୁହୂର୍ତ୍ତର ଅନନ୍ତ ଯୁଗ ପ୍ରତୀକ୍ଷାର ଅଭିଳଷିତ ପରିଣତି ମୁଁ ଜୀବନ୍ୟାସ ପାଇଲି ଲହୁରେ, ଲୁହରେ, ଆକାଙ୍କ୍ଷା ଓ ଆଶାରେ, ପ୍ରତିହିଂସା ଓ ପ୍ରତିଶୋଧରେ । ଅମୂର୍ତ୍ତ ବିପ୍ଳବର ବାଙ୍ମୟ ପ୍ରକାଶ ଅରୂପରୁ ରୂପରେ ମୁଁ ସେଇ ବାତାୟନ ନିରୁଦ୍ଧ ରୁଦ୍ଧ କାରାଗାରରେ ଅବଶେଷରେ ଭୂମିଷ୍ଠ ହେଲି ।

ମାସ ଭାଦ୍ରବ, କୃଷ୍ଣା ଅଷ୍ଟମୀ, ମଧ୍ୟରାତ୍ରି ଝଡ଼ ବହୁଳ, ବର୍ଷଣ ମୁଖର । ସେଇ ରାତିଠାରୁ ମୃତ୍ୟୁ ଅବଧି ମୋ ଜୀବନର ଗୁରୁତ୍ୱପୂର୍ଣ୍ଣ ମୁହୂର୍ତ୍ତ ଗୁଡ଼ିକ ଝଡ଼ ବିକ୍ଷୁବ୍ଧ ହୋଇଛି । କେବେ ଦୃଶ୍ୟମାନ ହୋଇଛି । ପୁଣି କେବେ ଅଦୃଶ୍ୟ ଭାବେ ମୋର ଅନ୍ତର୍ଲୋକକୁ ବିକ୍ଷୋଭିତ କରିଛି ।

ଏତେଗୁଡ଼ିଏ ସଦ୍ୟଜାତ ଶିଶୁ ସନ୍ତାନଙ୍କ ମୃତ୍ୟୁର ରକ୍ତସ୍ୱାକ୍ଷରକୁ ହୃଦୟରେ ବହନ କଲାପରେ ମୋତେ ହରାଇବା ପାଇଁ ପିତାମାତାଙ୍କର ମାନସିକ ପ୍ରସ୍ତୁତି ଆଉ ନଥିଲା । ମୋ ଜନ୍ମ ଲଗ୍ନ ଯେତେ ସନ୍ନିକଟ ହେଉଥିଲା ପିତାଙ୍କର ବ୍ୟାକୁଳତା, ମାତାଙ୍କର ନିରୁପାୟତା ସେତେ ବୃଦ୍ଧି ପାଉଥିଲା । କେବଳ ଏକମାତ୍ର ଚିନ୍ତା ମୋର ସୁରକ୍ଷା । ନବଜାତକର ସୁରକ୍ଷା ପାଇଁ ସର୍ବସ୍ୱ ଏପରିକି ଜୀବନସୁଦ୍ଧା ଉତ୍ସର୍ଗ କରିବାପାଇଁ ପିତା ସେତେବେଳେ ଅକୁଣ୍ଠିତ ଥିଲେ ।

ସେଦିନ ସେ ବର୍ଷଣ ମୁଖର ରାତ୍ରିର ଶୀତଳତାରେ କଂସ କାରାକକ୍ଷର ଚିରଜାଗ୍ରତ ପ୍ରହରୀ ଗଭୀର ନିଦ୍ରାରେ ଅଚେତନ ଥିଲେ । ପିତା ବସୁଦେବ ସେମାନଙ୍କୁ ଭ୍ରୁକ୍ଷେପ ସୁଦ୍ଧା କରିନାହାନ୍ତି; ବରଂ ମୋତେ ସୁରକ୍ଷା ଦେବାପାଇଁ ପିତା ସେଦିନ ଦୃଢ଼ ସଂକଳ୍ପବଦ୍ଧ ହୋଇଥିଲେ । ଏପରିକି ମଥୁରା ରାଜଦାଣ୍ଡର ସଜାଗ ପ୍ରହରୀ ଯିଏକି ଏକଦା ମଥୁରାର ଅଧିପତି ଥିଲେ ତାଙ୍କୁ ସୁଦ୍ଧା ପିତା ବସୁଦେବ ଭୃକ୍ଷେପ କରିନାହାନ୍ତି; ଉତ୍‌କୂଳ ବନ୍ୟାପ୍ଲାବିତ ଯମୁନା ନଦୀକୁ ମଧ୍ୟ ନୁହେଁ । ବହୁତ ପରେ ଶୁଣିଛି ପିତାଙ୍କ ଠାରୁ, ଯମୁନାରେ ସେଦିନ ଜୁଆର ଆସିଥିଲା । ଆକଣ୍ଠ ଜଳରେ ନିମଗ୍ନ ହୋଇଯାଉଥିଲେ ପିତା । ତଥାପି ଉର୍ଦ୍ଧ୍ୱକୁ ଦୁଇହାତ ଟେକି ମସ୍ତକ ଉପରେ ସଦ୍ୟଜାତ ଶିଶୁଟିକୁ ଧାରଣ କରି ସେ ଯମୁନା ନଦୀ ଭିତରେ ପ୍ରବେଶ କରିଥିଲେ । ସେ ଝଡ଼ବହୁଳ ରାତ୍ରିରେ ଯମୁନା ଘାଟରେ ନୌକା ବା ନାବିକ କେହି ନଥିଲେ । ରାତି ପାହିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପିତାଙ୍କର ଧୈର୍ଯ୍ୟନଥିଲା । ରାତି ଅନ୍ଧାରେ ମୋତେ ଏକ ସୁରକ୍ଷିତ ସ୍ଥାନରେ ନିରାପଦ ଆଶ୍ରୟରେ ରଖି ପୁନରାୟ ତାଙ୍କୁ କାରାକକ୍ଷ ଭିତରକୁ ଫେରିବାକୁ ପଡ଼ିବ । ଶୁଣିଥିଲି ସେ ରାତିରେ ପିତା ଯେତେବେଳେ ଯମୁନାନଦୀ ଅତିକ୍ରମ କରୁଥିଲେ ସେତେବେଳେ ସପ୍ତଫେନ ବିଶିଷ୍ଟ ଏକ ବିରାଟକାୟ ସର୍ପ ସଦୃଶ କୃଷ୍ଣ ମେଘମାଳ ମୋର ମସ୍ତକ ଉପରେ ଛତ୍ର ଧାରଣ କରିଥିଲା । ଯମୁନା ନଦୀର ମଧ୍ୟଭାଗରେ ହଠାତ୍ ଜୁଆରରେ ଭଟ୍ଟା ପଡ଼ିଯାଇଥିଲା । ପିତା ବସୁଦେବ ନିରାପଦରେ ଗୋପଦାଣ୍ଡରେ ପହଞ୍ଚି ଯାଇଥିଲେ । ପହଞ୍ଚି ଯାଇଥିଲେ ଗୋପାଳ ଗଣମୁଖ୍ୟ ନନ୍ଦଙ୍କ ଘରେ, ଜନନୀ ଯଶୋଦାଙ୍କ ପ୍ରସୂତି ଗୃହରେ, କେବଳ ଏଇ ଶେଷ ସନ୍ତକଟି ବଞ୍ଚି ରହୁ- ଏଇ ଆଶାରେ ।

ମୁଁ ଜାତସ୍ମର ଥିଲି କି ନାହିଁ କହିପାରିବି ନାହିଁ । କିନ୍ତୁ ମୋର ଅନ୍ତର୍ଦୃଷ୍ଟି ଚିର ସଜାଗ ଥିଲା । ମୋର ସ୍ଥୂଳ ପାର୍ଥୀବ ଶରୀରରେ ଚକ୍ଷୁ ଯେଉଁଭଳି ଭାବଦୃଷ୍ଟି, ବୋଧ ଦୃଷ୍ଟି ଓ ରଙ୍ଗଦୃଷ୍ଟି

ସଂପନ୍ନ ଥିଲା, ମୋର ମନଶ୍ଚକ୍ଷୁ ସେଇଭଳି ଦିବ୍ୟଦୃଷ୍ଟି ସମ୍ପନ୍ନ ଥିଲା । ତାହାରି ପ୍ରସାଦରେ ମୁଁ ସବୁ ଦେଖିପାରୁଥିଲି । ଯେତେବେଳେ ମୋତେ ଦେବକୀଙ୍କ କୋଳରୁ ବିଚ୍ଛିନ୍ନ କରାଗଲା, ହୁଏତ ସେତେବେଳେ ଦୁଃଖରେ, ବିଷାଦରେ ମୋ ବକ୍ଷ ବିଦୀର୍ଣ୍ଣ ହୋଇଥିଲା । ସ୍ୱଭୂମିରୁ ବିଚ୍ଛିନ୍ନ ହେବାର ଦୁଃଖ, ମାତୃ କୋଳରୁ ବିଚ୍ଛିନ୍ନ ହେବାର ବିଷାଦ । ଅଥଚ ଗୋପର ମାଟି ଛୁଇଁବା ମାତ୍ରେ ମୋର ମନେ ହେଲା ମୁଁ ସୁମହାନ୍ ଭାରତବର୍ଷରେ ଭୂମିଷ୍ଠ ହୋଇଅଛି । ପ୍ରସବ ବେଦନାରେ ତଥାପି ସେ ପର୍ଯ୍ୟନ୍ତ ମୂର୍ଚ୍ଛିତା ହୋଇ ପଡ଼ିଥିବା ସଦ୍ୟପ୍ରସୂତି ନନ୍ଦରାଣୀ ଯଶୋଦାଙ୍କ ବକ୍ଷଲଗ୍ନ ହେବାବେଳେ ମୋର ମନେ ହେଲା ଏ ମହାନ୍‌ଭୂମି ଭାରତବର୍ଷରେ ମା'ର ଅଭାବ କେବେ ଅନୁଭୂତ ହୁଏ ନାହିଁ । ସର୍ବତ୍ର ମା' - ଭୂମି ମା', ନଦୀ ମା', କନ୍ୟା ମା', ପରନାରୀ ମଧ ମା'- ନାରୀ ମାତ୍ରେ ହିଁ ମା' । ଏ ବିଶ୍ୱମାତୃକାର ଦେଶରେ ପୁରୁଷ ମାତ୍ରେ ହିଁ ନାରୀର ସନ୍ତାନ । ମନେହେଲା ମୋର ଚିତ୍ତ ଭୂମି ସ୍ନେହରେ, ବାତ୍ସଲ୍ୟରେ, ପ୍ରେମରେ ଆତ୍ମତ୍ୟାଗରେ, ନିଷ୍ଠାରେ, ନିରାଢ଼ମ୍ବରେ, ଭକ୍ତିରେ, ଭାବରେ, ଐଶ୍ୱର୍ଯ୍ୟ ଓ ମାଧୂର୍ଯ୍ୟରେ ପରିପୂର୍ଣ୍ଣ ହୋଇଯାଇଛି । ଏତେ ପରିତୃପ୍ତି ଯେ, ଏ ଗ୍ରନ୍ଥିମୋଚନ କରିବା କଷ୍ଟଦାୟକ । ପିତା ବସୁଦେବ ଅଶ୍ରୁବିଗଳିତ ନୟନରେ ଥରଟିଏ ମୋତେ ଲେଉଟି ଚାହିଁଲେ । ରାତ୍ରି ଶେଷ ହୋଇ ଆସୁଥିଲା । ମାତା ଯଶୋମତୀଙ୍କର ସଦ୍ୟଜାତା ଶିଶୁ କନ୍ୟାଟି ସହ ବସୁଦେବ ମଥୁରା ବାହୁଡ଼ି ଗଲେ । ଲୌହ କାରାକକ୍ଷରୁ ମୁକ୍ତି ପାଇ ମଥୁରାର ବିଷବାଷ୍ପରୁ ବହୁ ଦୂରରେ ଜନନୀ ଯଶୋମତୀଙ୍କର ବାତ୍ସଲ୍ୟ ଜର ଜର ଲମ୍ବା ପଣତତଳେ ଅଭୟ ଆଶ୍ରୟରେ ମୁଁ ରହିଲି, ବିପ୍ଳବର ବହ୍ନିଶିଖା ହୋଇ ଜଳିବାପାଇଁ ପାପୀର ବିରୁଦ୍ଧରେ ଏବଂ ଯେତେସବୁ ପାପ, ଅନ୍ୟାୟ, ଅବିଚାରକୁ ଜାଳିବା ପାଇଁ ।

ଗୋପଭୂମି ସ୍ନେହ, ପ୍ରେମ,ବାତ୍ସଲ୍ୟରେ ଯେମିତି ଭରପୂର, ଦୁଗ୍ଧ, ଦଧି, ଘୃତ, ନବନୀତରେ ମଧ ସେହିଭଳି ଭରପୂର । ତେଣୁ ଅତ୍ୟାଚାରୀ, ପ୍ରଜାପୀଡ଼କ ଶାସକ କଂସ ସାମ୍ରାଜ୍ୟରେ କଂସର ରାଜକୋଷକୁ ଗୋପଭୂମିରୁ ରାଜସ୍ୱ ବାବଦରେ ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟ, ଘୃତ ପକ୍ୱ ମିଷ୍ଟାନ୍ନ ବହୁଳ ପରିମାଣରେ ଯାଉଥିଲା; ଅଥଚ ଏ ଧେନୁ ରକ୍ଷକ ଗୋପାଳମାନେ ସେହି ପରିମାଣରେ ଉପକୃତ ହେଉନଥିଲେ । ସର୍ବଦା କଂସ ଭୟରେ ତଟସ୍ଥ, ଶଙ୍କିତ ହୋଇ ରହୁଥିଲେ । ସେଦିନ ମୁଁ ଗୋପଭୂମିରେ ପାଦଦେଇ ସଂକଳ୍ପବଦ୍ଧ ହୋଇଥିଲି ଭବିଷ୍ୟତରେ ଏ ସରଲବଣୀ ଭାଣ୍ଡକୁ ନଷ୍ଟ କରିଦେବି ପଛେ କିନ୍ତୁ ଅତ୍ୟାଚାରୀ ଶାସକ କଂସକୁ ଦେବିନାହିଁ । ହଁ, ହଁ- ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଏଇଠାରୁ ହିଁ ଆରମ୍ଭ କରିବି ମୋର ବିପ୍ଳବର ଜୟଯାତ୍ରା- !

●

# ।। ଦ୍ୱିତୀୟ ଗ୍ରନ୍ଥି ମୋଚନ ।।

କଂସ ଦୀର୍ଘ ଦଶବର୍ଷ ଧରି ମାତା ଦେବକୀଙ୍କର ଅଷ୍ଟମ ଗର୍ଭର ସନ୍ତାନକୁ ଅପେକ୍ଷା କରି ରହିଥିଲା । ଅଷ୍ଟମ ଗର୍ଭର ସନ୍ତାନ ହିଁ ତ ତା'ର ପ୍ରକୃତ ଶତ୍ରୁ ! କାରାଗାରର ଚତୁପାର୍ଶ୍ୱରେ ସତର୍କ, ସଜାଗ ପ୍ରହରୀ କାରାରୁଦ୍ଧ ଜନନୀ ଦେବକୀଙ୍କର ପ୍ରତିଟି ମୁହୂର୍ତ୍ତର ହିସାବ ରଖୁଥିଲେ ଓ କଂସ ନିକଟରେ ସେ ସମ୍ବାଦ ପରିବେଷଣ କରୁଥିଲେ । ପ୍ରତି ମୁହୂର୍ତ୍ତରେ କଂସ ଉତ୍‌କର୍ଣ୍ଣ ହୋଇ ରହିଥିଲା କାରାକକ୍ଷରୁ ଏକ ନବଜାତକର କ୍ରନ୍ଦନ ଧ୍ୱନୀ ଶୁଣିବାପାଇଁ । ସେଇ ବର୍ଷଣ ମୁଖର ଝଡ଼ ବିକ୍ଷୁବ୍ଧ ରାତ୍ରିରେ କେତେ କ'ଣ ଯେ ଓଲଟ ପାଲଟ ହୋଇଯାଇଥିଲା ତା'ର ହିସାବ ସେଦିନ ମଥୁରାରେ କେହି ରଖିନଥିଲେ, କଂସ ମଧ୍ୟ ନୁହେଁ । ସଦ୍ୟଜାତ ଶିଶୁ କଣ୍ଠର କ୍ରନ୍ଦନ ଧ୍ୱନୀରେ ପ୍ରହରୀମାନଙ୍କର ନିଦ୍ରାଭଙ୍ଗ ହେବା ବେଳକୁ ରାତି ପାହି ପାହି ଆସୁଥିଲା । କାରାକକ୍ଷରେ ନିଯୁକ୍ତ ଥିବା ଧାତ୍ରୀର ନିଦ୍ରାଭଂଗ ହେବାମାତ୍ରେ ସେ ଆବିଷ୍କାର କଲା, ମୂର୍ଚ୍ଛିତା ଦେବକୀଙ୍କ ନିକଟରେ ଯେଉଁ ସଦ୍ୟଜାତ ଶିଶୁ କ୍ରନ୍ଦନ କରୁଛି ସେ ପୁତ୍ର ସନ୍ତାନ ନୁହେଁ- ଏକ କନ୍ୟାସନ୍ତାନ !

ଧାତ୍ରୀ କଂସ ନିକଟରେ ସମ୍ବାଦ ଦେବାକୁ ଚାଲିଗଲା । ସଦ୍ୟପ୍ରସୂତି ଜନନୀ ଦେବକୀଙ୍କ ହାତ ଦୁଇଟି ଧରି ପିତା ଧିରେ ତାଙ୍କୁ ଉଠାଇବାକୁ ଚେଷ୍ଟା କଲେ । ସେ ସମୟରେ କାରାକକ୍ଷରେ କେହି ନାହାନ୍ତି । ଜନନୀ ଦେବକୀ ଦୁର୍ବଳ ଶରୀରରେ ଉଠି ବସିଲେ, ଶିଶୁଟିକୁ କୋଳାଗ୍ରତ କରିବାମାତ୍ରେ ଚମକି ପଡ଼ି କହିଲେ- 'ଏ କ'ଣ ଆର୍ଯ୍ୟପୁତ୍ର ? ମୁଁ ଯେଉଁ ଶିଶୁକୁ ଜନ୍ମ ଦେଇଥିଲି ଇଏତ ସେ ନୁହେଁ !'

ପିତା କୁଣ୍ଠିତ କଣ୍ଠରେ କହିଲେ- 'ତୁମ ପୁତ୍ର ନିରାପଦରେ ଗୋପରେ ଅଛି । ଏ ଶିଶୁ କନ୍ୟାଟି ନନ୍ଦରାଣୀଙ୍କର । ମୋତେ ଆଉ କିଛି ପଚାରନାହିଁ ଦେବକୀ । ମୁଁ ନିରୁପାୟ । ମୁଁ କେବଳ ଆଦେଶ ହିଁ ପାଳନ କରିଛି । କେହି କିଛି ଶୁଣି ଅନର୍ଥ ଘଟାଇବା ପୂର୍ବରୁ ତୁମେ ଚୁପ୍ ରୁହ ।'

ମାତା ଦେବକୀଙ୍କ ଆଖିରୁ ଲୁହ ନୁହେଁ, ଯେମିତି ହୃଦୟରୁ ସବୁ ଲହୁ ଝରିଆସିଲା । ସେଦିନର ଜନନୀ ଆଖିର ଲୁହ ମୋପାଇଁ ଯେ କେତେ ଦୁର୍ମୂଲ୍ୟ, ତା' ମୁଁ ହିଁ ଜାଣେ । କାରଣ ଯେଉଁ ଲୁହ ଅନୁତାପ ଓ ଅନୁଶୋଚନାରୁ ଝରିଆସେ, ତା'ର ମୂଲ୍ୟ ମୋ ପାଇଁ ବହୁତ ବେଶୀ । ପିତା ବସୁଦେବ ମାତାଙ୍କୁ ସାନ୍ତ୍ୱନା ଦେବା ଉଦ୍ଦେଶ୍ୟରେ କହିଲେ- 'ତୁମେ ରତ୍ନଗର୍ଭା ଦେବକୀ !'

ଏତିକି ଶୁଣିବା ମାତ୍ରେ ଜନନୀ ଦେବକୀ ଲୁହ ଆଉ କୋହରେ ଭାଙ୍ଗି ପଡ଼ିଲେ- 'ବ୍ୟର୍ଥଗର୍ଭା ଆର୍ଯ୍ୟପୁତ୍ର ! ମୋ ଭଳି ବ୍ୟର୍ଥ ଗର୍ଭା ନାରୀ ଏ ବିଶ୍ୱ ସଂସାରରେ ଦ୍ୱିତୀୟ କେହି ନାହିଁ । ଆଠଟି ସନ୍ତାନଙ୍କୁ ଗର୍ଭରେ ଧାରଣ କରିଛି, ହେଲେ ମୋର ନିଷ୍ଫଳ ମାତୃତ୍ୱ ସେମାନଙ୍କୁ କୋଳଖେ ଧାରଣ କରିବାର ସୁଯୋଗ ପାଇନାହିଁ । କିନ୍ତୁ ଆଜିର ଦୁଃଖ ଆଜିର ଏ ଅଶ୍ରୁ ମୋର ବ୍ୟର୍ଥ ମାତୃତ୍ୱର ଏକ ମସୀଲିପ୍ତ ଅଧ୍ୟାୟ । ଯଶୋମତୀ ତନୟା ପାଇଁ ଯେତେ ଅଶ୍ରୁ ଝରିଗଲେ ବି ଆମ ସ୍ୱାର୍ଥପରତାକୁ ଆମେ ନିଜେବି କ୍ଷମା କରିପାରିବା ନାହିଁ । ଆର୍ଯ୍ୟ ! ଆମର ଜନ୍ମିତ ସନ୍ତାନଙ୍କୁ କଂସ ହାତରେ ଟେକିଦେବାପାଇଁ ଆମେ ସଂକଳ୍ପବଦ୍ଧ ହୋଇଥିଲେ, ମାତ୍ର ଆଉ ଗୋଟିଏ ମା'କୋଳରୁ ସନ୍ତାନକୁ ଛଡ଼େଇ ଆଣି ବଳିଦେବାର ଅଧିକାର ଆମର ନାହିଁ । ନିଜ ସନ୍ତାନର ସୁରକ୍ଷାପାଇଁ ଏଭଳି ହୃଦୟହୀନ ଆଚରଣ ତୁମେ କାହିଁକି କଲ ଆର୍ଯ୍ୟ ? କାହିଁକି ଏ ଜଘନ୍ୟ ପାପରେ ଆମେ ଭାଗୀ ହେବା ? କେଉଁ ଜନ୍ମର ପାପ ଫଳରୁ ବାରମ୍ବାର ପ୍ରସବ ବେଦନା ସହ୍ୟ କରିବା ସତ୍ୱେ ଗୋଟିଏ ବି ସନ୍ତାନକୁ କୋଳରେ ଧରି ସ୍ତନ୍ୟପାନ କରାଇ ମାତୃତ୍ୱର ମହିମାରେ ମଣ୍ଡିତା ହୋଇପାରିଲି ନାହିଁ ଏ ଜନ୍ମରେ, ପୁଣି ଏଭଳି ପାପାଚରଣ ? ମା'ର ମର୍ମବେଦନା ଆଉ ଗୋଟିଏ ମା' ହିଁ ବୁଝେ ।'

ପିତା ବସୁଦେବ କିଛି କହି ପାରୁନଥିଲେ କି ସହି ପାରୁ ନଥିଲେ । ତଳକୁ ମୁହଁ ପୋତି ବସି ରହିଥିଲେ ହତବାକ୍ ଭାବେ, କୁଣ୍ଠା ଓ ସଂକୋଚରେ, ଆତ୍ମଗ୍ଲାନି ଓ ଅନୁଶୋଚନାରେ ଦଗ୍ଧ ହେଉଥିଲେ କେବଳ । ଠିକ୍ ଏଇ ସମୟରେ କଂସର ଭାରୀ ପଦପାତର ଶବ୍ଦରେ, ଅସ୍ତ୍ରର ଝନତ୍କାରରେ ପାଷାଣ ପ୍ରାଚୀରର ଗାତ୍ର, ପାଷାଣ ଚତ୍ୱର କମ୍ପି ଉଠିଥିଲା । ଜନନୀ ଦେବକୀ ସଦ୍ୟଜାତା ଶିଶୁ କନ୍ୟାଟିକୁ ବକ୍ଷରେ ସଜୋରେ ଚାପି ଧରି ଚିତ୍କାର କରିଉଠିଲେ-'ନା- ନା- ମୁଁ ଏହାକୁ କୌଣସି ମତେ ଦେବି ନାହିଁ । ଇଏତ ପୁତ୍ର ନୁହେଁ, କନ୍ୟାଟିଏ !'

ପିତା ବସୁଦେବ ଅନୁନୟଭରା ସ୍ୱରରେ କହିଉଠିଲେ- 'ହଁ ମଥୁରା ନରେଶ ! ଦେବକୀ ଠିକ୍ କହିଛନ୍ତି । ଦୈବୀବାଣୀ ଯଦି ବିଶ୍ୱାସଯୋଗ୍ୟ ହୁଏ ତେବେ ଅଷ୍ଟମ ଗର୍ଭର ପୁତ୍ର ସନ୍ତାନ ଆପଣଙ୍କ ବିନାଶର କାରଣ ହେବ । କିନ୍ତୁ ଏ ଯେ କନ୍ୟାଟିଏ ! ସେ କୌଣସି ଦିନ ଆପଣଙ୍କ ବିରୁଦ୍ଧରେ ଶସ୍ତ୍ର ଉତ୍ତୋଳନ କରିବ ନାହିଁ । ମୁଁ କଥାଦେଉଛି ।'

ଅଟ୍ଟହାସ ! ପ୍ରବଳ ଅଟ୍ଟହାସରେ ପାଷାଣ ପ୍ରାଚୀର ପ୍ରକମ୍ପିତ ହେଲା । କଂସ କହିଲା- 'କନ୍ୟା ? କିନ୍ତୁ ଅଷ୍ଟମ ଗର୍ଭତ ? ମୃତ୍ୟୁ କ'ଣ କେବଳ ଶସ୍ତ୍ର ଦ୍ୱାରା ହୁଏ ବସୁଦେବ ? ଏଇ ଦେଖ, ବିନା ଶସ୍ତ୍ରରେ ମୁଁ ତୁମ କନ୍ୟାକୁ କିପରି ହତ୍ୟା କରୁଛି ଦେଖିନିଅ ସ୍ୱଚକ୍ଷୁରେ... !'

ପିତା ମାତାଙ୍କ କୋଳରୁ କନ୍ୟାଟିକୁ ଛଡ଼େଇ ପାଷାଣ ବେଦୀରେ କଚାଡ଼ିବାକୁ ଚେଷ୍ଟା

କଲା କଂସ ତା'ର ସମସ୍ତ ଶକ୍ତି ଦେଇ ଏବଂ ସମସ୍ତ ଶକ୍ତି ଦେଇ ପିତା ସେ କନ୍ୟାଟିକୁ ରକ୍ଷା କରିବାକୁ ଚେଷ୍ଟା କଲେ । ଏଇଭଳି ପରସ୍ପର ବିରୋଧ ଭିତରେ ଶିଶୁ କନ୍ୟାଟି ଉଭୟଙ୍କ ହାତରୁ ଖସିଗଲା ଓ କ୍ଷିପ୍ର ଭାବରେ ଆକାଶ ମାର୍ଗକୁ ଉଠିଗଲା । ଅଲୌକିକ ଭାବେ ଏକ ପକ୍ଷୀ ସଦୃଶ କ୍ଷୁଦ୍ରରୁ କ୍ଷୁଦ୍ରତର ଏକ ତେଜସ୍ବିୟ ରଶ୍ମୀ ମାତ୍ର ହୋଇ ସେହି ଶିଶୁ କନ୍ୟାଟି ଅନନ୍ତ ଅନ୍ତରୀକ୍ଷରେ ଅନ୍ତର୍ଦ୍ଧାନ ହେଉ ହେଉ ଏକ ସାଂଘାତିକ ସତ୍ୟ ପରିବେଷଣ କରିଗଲା, ଯାହାକି କଂସର ହୃଦୟରେ ଏକ ଭୟଙ୍କର ଆଶଙ୍କାର ବୀଜରୋପଣ କରିଗଲା, ଯାହାର ମର୍ମ ହେଉଛି କଂସର ବିନାଶ ଦେବକୀଙ୍କ ଅଷ୍ଟମ ଗର୍ଭଦ୍ୱାରା ସୁନିଶ୍ଚିତ ଏବଂ କଂସର ଶତ୍ରୁ ଅନ୍ୟତ୍ର ସୁରକ୍ଷିତ ଓ ପ୍ରତିପାଳିତ ।

ଏହି ଚିତ୍ତ ଚମତ୍କାରୀ ଅଲୌକିକ ଘଟଣାରେ ସମସ୍ତେ ଅଭିଭୂତ ହୋଇଯାଇଥିଲେ । କେବଳ ମାତା ଦେବକୀ ଅଶ୍ରୁବିକଳ ନୟନରେ ସେହି ଶୂନ୍ୟ ଅନ୍ତରୀକ୍ଷକୁ ଚାହିଁ ବାରମ୍ବାର ପ୍ରଣାମ ଜଣାଉଥିଲେ । ଭୟଙ୍କର ବିପଦଗର୍ଭରୁ ସେହି ତେଜୋମୟୀ ଶିଶୁକନ୍ୟାଟି ଯେ ଆତ୍ମରକ୍ଷା କରି ପାରିଛି ଏତିକି ଚିନ୍ତାକରି ଜନନୀ ଦେବକୀ ପରମ ପରିତୃପ୍ତି ଲାଭ କରୁଥିଲେ । କଂସର ନିଧନ ବାର୍ତ୍ତା ସଂପର୍କରେ ତାଙ୍କର ଆଦୌ ଆଗ୍ରହ ନଥିଲା । ସେ ବଡ ଅନ୍ୟମନସ୍କ ଉଦାସୀନା ଦିଶୁଥିଲେ ।

କଂସ ପ୍ରାଣରେ କିନ୍ତୁ ଶାନ୍ତି ନଥିଲା । ସେହି ତେଜୋମୟୀ ଦେବକନ୍ୟାଟି କଥା ଚିନ୍ତା କରି କଂସ ବିଚଳିତ, ବିବ୍ରତ ହୋଇ ପଡୁଥିଲା । ସେହି ସଦ୍ୟଜାତ ଶିଶୁ କନ୍ୟାଟିକୁ ହତ୍ୟା କରିନପାରିବାର ଦୁର୍ଭାବନାହିଁ ଶେଷରେ କଂସକୁ ଶିଶୁଘାତକରେ ପରିଣତ କରିଦେଲା । କାରାକକ୍ଷରେ ଜନନୀ ଦେବକୀଙ୍କ ଛଅଟି ସନ୍ତାନକୁ ତ ନିର୍ଦ୍ଦୟ କଂସ ହତ୍ୟା କରି ସାରିଥିଲା । ଏଥର ଜିଘାଂସା ଆଉ ମାତା ଦେବକୀ ବା କାରାକକ୍ଷରେ ସୀମିତ ନରହି, ରାଜ୍ୟର ସୀମା ଅତିକ୍ରମ କରି ଜନପଦରୁ ଜନପଦ, ନଗରରୁ ନଗର, ରାଜଧାନୀରୁ ପ୍ରତିବେଶୀ ରାଷ୍ଟ୍ର, ମଥୁରାରୁ ଗୋପଯାଏ ପରିବ୍ୟାପ୍ତ ହେବାକୁ ଲାଗିଲା । କେଉଁଠାରେ ଗୋଟିଏ ଶିଶୁସନ୍ତାନ ଭୂମିଷ୍ଠ ହେବାର ସମ୍ବାଦ ପାଇବାମାତ୍ରେ ଶିଶୁକଣ୍ଠରେ କୋମଳ ଝଂକାର ଝଂକୃତ ନହେଉଣୁ କଂସର ଅନୁଚର ସେଠାରେ ପହଞ୍ଚି ଜନନୀର କୋଳ ଶୂନ୍ୟ କରି ଶିଶୁଟିକୁ ନିର୍ବିଚାରରେ ହତ୍ୟା କରୁଥିଲେ । କେତେ ନିଷ୍ପାପ କଳି ଫୁଟିବା ପୂର୍ବରୁ ଝାଉଁଳି ଝରିଯାଉଥିଲେ । କେତେ ଶିଶୁଙ୍କର ପ୍ରଥମ କ୍ରନ୍ଦନର ପ୍ରଥମ ଶବ୍ଦ ଚିର ନିଶବ୍ଦ ହୋଇଯାଉଥିଲା । ଏକ ମୂକ ଆର୍ତ୍ତନାଦ ଭିତରେ ଜନନୀର ଜନ୍ମ ଜନ୍ମର ସାଧନା ସ୍ତବ୍ଧ ହୋଇ ଯାଉଥିଲା । ଶିଶୁର ପ୍ରଥମ କ୍ରନ୍ଦନ ଶୁଣି ଜନନୀର ଦାବଦଗ୍ଧ ପ୍ରାଣ ପ୍ରଶାନ୍ତିରେ ଭରିଯାଏ; ଅଥଚ ସେଇ ସ୍ୱରଟିକୁ ଗୋପନ କରିବାପାଇଁ ମଥୁରା ଓ ଗୋପନାରୀଙ୍କର ସେ କି ପ୍ରାଣାନ୍ତ ଉଦ୍ୟମ ? କଂସର ସାମ୍ରାଜ୍ୟରେ ସୃଜନର ଆନନ୍ଦରେ

କୌଣସି ଜନନୀ ଆଉ ବିଭୋର ହେଉନଥିଲେ ବରଂ ଏକ ଭୟଙ୍କର ନିର୍ଲିପ୍ତ ଜଡ଼ତା, ଏକ ଶୀତଳ ମୌନତା ଜନନୀର ସମଗ୍ର ସତ୍ତାକୁ ଗ୍ରାସ କରୁଥିଲା । ଏକ ଅସ୍ଥିର ଦୁର୍ଭାବନା ଭିତରେ ପ୍ରତ୍ୟେକ ଜନନୀର ମୁହୂର୍ତ୍ତ ଅତିକ୍ରାନ୍ତ ହେଉଥିଲା । ଆଜି ଯିଏ ଶିଶୁକୁ କୋଳରେ ଧାରଣ କରିଛି ଆସନ୍ତାକାଲି ଯେ ତାକୁ ଏଇଭଳି କୋଳାଗ୍ରତ କରିପାରିବ ଏ ସାମାନ୍ୟା ଆଶାରେ ମଧ୍ୟ ସ୍ଥିରତା ନଥିଲା । ପ୍ରତି ମୁହୂର୍ତ୍ତରେ ମାତୃତ୍ୱ, ମମତ୍ୱ ଓ ବାତ୍ସଲ୍ୟ ଏହିଭଳି ବିଡ଼ମ୍ବିତ ହେଉଥିଲା, ତଥାପି ପ୍ରତିବାଦର ପ୍ରତିସ୍ୱରଟିଏ ଉତ୍ତୋଳିତ ହେଉନଥିଲା କାହିଁକି ? କାହିଁକି ରାଜ୍ୟବାସୀ ଏତେ ହୀନବଳ ହୋଇ ଯାଉଥିଲେ ? କାହିଁକି କେହି ବିଦ୍ରୋହ କରୁନଥିଲେ ? ଶିଶୁହତ୍ୟା ଅର୍ଥାତ୍ ରାଜ୍ୟର ଭବିଷ୍ୟତକୁ, ଭବିଷ୍ୟତର ସମସ୍ତ ଉଜ୍ଜ୍ୱଳ ସମ୍ଭାବନାକୁ ଏଇଭଳି ହତ୍ୟା କରାଯାଉଥିଲା ତଥାପି ରାଜ୍ୟବାସୀ ନୀରବ ରହିଥିଲେ ? ଆଶ୍ଚର୍ଯ୍ୟ ! ପ୍ରକୃତରେ ଆଶ୍ଚର୍ଯ୍ୟ ସେମାନଙ୍କର ସହ୍ୟ ଶକ୍ତି !

ମୋ ସମଗ୍ର ଶୈଶବ ଏଇଭଳି ଅସ୍ଥିରତା, ଅନିଶ୍ଚିୟତା ଭିତରେ ଅତିବାହିତ ହୋଇଛି । ଯଶୋମତୀ ତନୟାଙ୍କ କଣ୍ଠରୁ ଏକ ସ୍ଥିର ନିଶ୍ଚିତ ସମ୍ବାଦ ଶୁଣିବାପରେ ଜନନୀ ଦେବକୀଙ୍କ ଅଷ୍ଟମ ଗର୍ଭର ସନ୍ତାନକୁ ଅନ୍ୱେଷଣ ନକରି ପ୍ରତିହିଂସାପରାୟଣ କଂସ ଯେ ଚୁପ୍ ଚାପ୍ ବସିରହିବ ଏହା ଆଦୌ ସମ୍ଭବ ନଥିଲା । ମୋତେ ଖୋଜିବାକୁ ଯାଇ ସୁକୁମାର, ନିଷ୍ପାପ ଶିଶୁଙ୍କ ରକ୍ତ ତୃଷ୍ଣାରେ ସେ ଉନ୍ମତ୍ତ ହୋଇଉଠିଲା । ବହୁ ନିର୍ଦ୍ଦୋଷ ଶିଶୁଙ୍କର ପ୍ରାଣନାଶ କଲା । ଆଜିପର୍ଯ୍ୟନ୍ତ ମୋ ଅନ୍ତରର ସ୍ତରେ ସ୍ତରେ ସେହି ସବୁ ଜନନୀଙ୍କର ଶୋକାନୁଭୂତି ପୁଞ୍ଜିଭୂତ ହୋଇ ରହିଛି ଏବଂ ସଂଘର୍ଷର ସମ୍ମୁଖୀନ ହେବାପାଇଁ ମୋତେ ଅଧିକ ଆତ୍ମପ୍ରତ୍ୟୟ ସଂପନ୍ନ କରିଛି । କଂସ କିନ୍ତୁ ତା'ର ଉଦ୍ୟମ ଅବ୍ୟାହତ ରଖିଥିଲା । ତା'ର ସନ୍ଦେହର କେନ୍ଦ୍ରବିନ୍ଦୁ ଥିଲା ଗୋପଭୂମି । ତା'ର ନିର୍ଦ୍ଦେଶରେ ବହୁ ଅନୁଚର ଗୋପଭୂମିକୁ ଆସୁଥିଲେ ।

ଜନ୍ମ ଓ ମୃତ୍ୟୁ ସମ୍ପର୍କରେ ମୁଁ ଭୀଷଣ ଅଦୃଷ୍ଟବାଦୀ । କଂସର ଅନୁଚରଗଣ ମୋ ଦ୍ୱାରା ନିହତ ହେଉଥିଲେ । ମୋର ଶିଶୁ ସୁକୁମାର ଦେହରେ ଅଲୌକିକ ଶକ୍ତି ଓ ଅମିତ ପରାକ୍ରମ ଥିବାର ଲକ୍ଷ୍ୟକରି ଗୋପବାସୀ ଚମତ୍କୃତ ହେଉଥିଲେ । ଗୋପବାସୀ କଂସର କ୍ରମାଗତ ଅତ୍ୟାଚାର ଫଳରେ ତଟସ୍ଥ ହୋଇ ରହିଥିଲେ । ମୁଁ ସେମାନଙ୍କ ମନରେ ଆତ୍ମବିଶ୍ୱାସ ଫେରାଇ ଆଣିବାପାଇଁ ଓ ସେମାନଙ୍କୁ ସଂଗଠିତ କରି କଂସ ବିରୁଦ୍ଧରେ ବିପ୍ଳବ କରିବାପାଇଁ ପ୍ରାଣାନ୍ତ ଉଦ୍ୟମ କରୁଥିଲି । ମୁଁ ସେମାନଙ୍କୁ ଜଣେଇଦେବାକୁ ଚାହୁଁଥିଲି ଯଦି ମୋର ଶିଶୁ ସୁକୁମାର ଦେହରେ ଏତେ ଶକ୍ତି ରହିଛି ତେବେ ସମସ୍ତ ଗୋପବାସୀ ସଂଗଠିତ ହେଲେ କେଉଁ ଅସାଧ୍ୟ କର୍ମ ବା ସାଧନ ହୋଇପାରିବ ନାହିଁ ?

ଜନନୀ ଯଶୋମତୀ ଆଦୌ ଜାଣିନଥିଲେ ଯେ, ସେ ଆଉ ଗୋଟିଏ ମା'ର

ସନ୍ତାନକୁ ସ୍ତନ୍ୟଦାନ କରୁଛନ୍ତି ବୋଲି । ନନ୍ଦରାଜା ଯଦିଓ ଜାଣିଥିଲେ, ତେବେ ଏ ଗୋପନ ସତ୍ୟଟିକୁ କାହାରି ନିକଟରେ ପ୍ରକାଶ କରିବେ ନାହିଁ ବୋଲି ସଂକଳ୍ପବଦ୍ଧ ହୋଇଥିଲେ । ତାଙ୍କର ଏ ସଂକଳ୍ପ ସହିତ କଂସର ଅତ୍ୟାଚରରେ ପୀଡ଼ିତ ସମସ୍ତ କରଦ ରାଜ୍ୟର ପ୍ରଜାଙ୍କର ଭବିଷ୍ୟତ ନିରାପତ୍ତା ଜଡ଼ିତ ଥିଲା । ଗୋପରୁ ମଥୁରା ପର୍ଯ୍ୟନ୍ତ ପ୍ରତ୍ୟେକ ଜାଣିଥିଲେ ଗୋପାଳଗଣ ମୁଖ୍ୟ ବୃଦ୍ଧ ନନ୍ଦରାଜା ବାର୍ଦ୍ଧକ୍ୟରେ ଏକ ପୁତ୍ର ସନ୍ତାନର ଜନକ ହୋଇଛନ୍ତି । ତା' ପୂର୍ବରୁ ବସୁଦେବଙ୍କର ଜ୍ୟେଷ୍ଠାରାଣୀ ରୋହିଣୀ ଗର୍ଭବତୀ ଥିବା ଅବସ୍ଥାରେ ମଥୁରାରୁ ନନ୍ଦଙ୍କ ଗୃହକୁ ଚାଲି ଆସିଥିଲେ, କେବଳ କଂସ ଭୟରେ । ସିଏ ପୁଣି ଜନନୀ ଦେବକୀଙ୍କର ସପ୍ତମ ଗର୍ଭର ସନ୍ତାନ । ଦୈବୀ ମାୟା ବଳରେ ଦେବକୀଙ୍କର ଗର୍ଭପାତ ହେବା ଦିନ ହିଁ ତାଙ୍କର ଗର୍ଭବାସ ହୋଇଥିଲା । ସୁତରାଂ କଂସର କ୍ରୂର ଦୃଷ୍ଟିରୁ ଶିଶୁଟିକୁ ବଞ୍ଚାଇବା ପାଇଁ ସେ ରାତି ଅନ୍ଧାରରେ ସମସ୍ତଙ୍କ ଅଜ୍ଞାତରେ ନନ୍ଦରାଣୀଙ୍କ ନିକଟରେ ଆଶ୍ରୟଭିକ୍ଷା କରିଥିଲେ । ରୋହିଣୀ ନନ୍ଦନ ମଧ୍ୟ ଯଶୋଦା ମା'ଙ୍କର ଅତ୍ୟନ୍ତ ପ୍ରିୟଭାଜନ ଥିଲେ, କାରଣ ସେହି ବଳିଷ୍ଠ ଶିଶୁଟି ଉପରେ ଅକୁଣ୍ଠିତ ଭାବେ ସ୍ନେହ ଢାଳି ଦେଉ ଦେଉ ଯଶୋମତୀଙ୍କର ବାର୍ଦ୍ଧକ୍ୟରେ ସୁଦ୍ଧା ଜନନୀ ହେବାର ସମ୍ଭାବନା ଉଜ୍ଜ୍ୱଳ ହୋଇଯାଇଥିଲା ।

ମୋ ଜନ୍ମର ସାତଦିନ ସେଦିନ । କେବଳ ନନ୍ଦରାଜାଙ୍କ ଗୃହ ନୁହେଁ ସମଗ୍ର ଗୋପପୁରରେ ମହୋତ୍ସବ ଅନୁଷ୍ଠିତ ହେଉଥାଏ । ସମଗ୍ର ଗୋପବାସୀ ନିମନ୍ତ୍ରିତ ହୋଇ ଆସିଥା'ନ୍ତି । ସୂତିକା ଗୃହର ବିଧି ବିଧାନ ଶେଷ ହେବାପରେ ପିତା ନନ୍ଦ ହିଁ ପ୍ରଥମେ ମୋତେ କୋଳାଗ୍ରତ କରିଥିଲେ । କୋଳାଗ୍ରତ କରିବା ସମୟରେ ତାଙ୍କର ଚକ୍ଷୁ ଦିଓଟି ଅଶ୍ରୁପୂରିତ ହୋଇଯାଇଥିଲା । ମନେ ମନେ ସେ ଉଚ୍ଚାରଣ କରୁଥିଲେ, - 'ବୃଷ୍ଣି ଓ ଯାଦବ ମାନଙ୍କର ତୁ ଏକ ମହାର୍ଘ ଅମାନତ । ଆଜି ମୋ କୋଳରେ ଥାଇ ତୁ ଭାବୁଚୁ ଆମ ଭିତରେ ପିତାପୁତ୍ରର ସମ୍ପର୍କ- ନାଇଁରେ କାହ୍ନୁ ସେ ସମ୍ପର୍କଠାରୁ ମଧ୍ୟ ଆହୁରି ନିବିଡ଼ ଆମର ସମ୍ପର୍କ । ମୁଁ ଜାଣେ ଦିନେ ନା ଦିନେ ତୋତେ ଯିବାକୁ ପଡ଼ିବ । କାରଣ କେହି ନଜାଣିଲେ ବି ମୁଁ ତ ଜାଣେ ତୁ ରାଜପୁତ୍ର, ତୁ ଏ ଗୋପାଳ ଘରେ ବା କେତେକାଳ ରହିପାରିବୁ ? ତଥାପି ଆଜିର ଏଇ ଅନୁଭୂତି ହିଁ ମୋ ଜୀବନର ପରମ ସଞ୍ଚୟ ।'

ମୁଁ ହୁଏତ କାନ୍ଦି ଉଠିଲି । ପିତା ମା'ଙ୍କ କୋଳରେ ମୋତେ ଶୁଆଇ ଦେଇ ଅନ୍ୟତ୍ର ଚାଲିଗଲେ ।

ସେଦିନ ସମସ୍ତ ଗୋପବାସୀ ଉତ୍ତମ ବସନ ଭୂଷଣ, ମାଲ୍ୟ ଚନ୍ଦନରେ ସୁସଜ୍ଜିତ ହୋଇଥା'ନ୍ତି । ଗୋପ ନାରୀଗଣ ସୁଲଳିତ ସ୍ୱରରେ ମଙ୍ଗଳଗୀତ ଗାନ କରୁଥା'ନ୍ତି । ଯୁବଗଣ ଏକ ଉନ୍ମୁକ୍ତ ପ୍ରାନ୍ତରରେ ଲଉଡ଼ି ଖେଳ ପ୍ରଦର୍ଶନ କରୁଥା'ନ୍ତି । ଛୋଟ ଛୋଟ ଶିଶୁଗୁଡ଼ିକ

କ୍ରୀଡ଼ାରେ ମତ୍ତ ଥା'ନ୍ତି । ନନ୍ଦରାଜାଙ୍କ ଗୃହ ଆମ୍ରପତ୍ରର ତୋରଣ, ରମ୍ଭାବୃକ୍ଷ, ପୂର୍ଣ୍ଣକୁମ୍ଭ ଓ ଝୋଟି ମୁରୁଜରେ ସଜା ହୋଇଥାଏ । ଗାଈ, ବଳଦ ଓ ଷଣ୍ଢ ମାନଙ୍କୁ ମଧ୍ୟ ନାନା ବର୍ଣ୍ଣର ଅବିରରେ ସଜାଇ ହୋଇଥାଏ, ପୟସ୍ୱିନୀ ଗାଭୀ ମାନଙ୍କ ଗଳାରେ ଫୁଲହାର ଝୁଲେଇ ଦିଆ ହୋଇଥାଏ ଓ ରୁପେଲି ଜରିର ପତ୍ର ସମୂହ ତାଙ୍କ ସିଙ୍ଗରେ ବନ୍ଧା ହୋଇଥାଏ । ଏସବୁ ମିଶି ଏକ ଉତ୍ସବ ମୁଖର ପରିବେଶ । ମା' ଝୁଲଣାଟିକୁ ଏଭଳି ଯତ୍ନର ସହିତ ନିଜେ ସଜାଉଥା'ନ୍ତି ଯେ ତାହା ଅଲୌକିକ, ଅପୂର୍ବ ମନେ ହେଉଥାଏ । କାଷ୍ଠନିର୍ମିତ ସେ ଝୁଲଣାର ଖମ୍ବଗୁଡ଼ିକରେ ଅ... ସୁକୋମଳ ତୁଳିତଳ୍ପ ଟିକି ବିଛଣା ଉପରେ ଟିକି ଉପାଧାନ ଗୁଡ଼ିକ ମୂଲ୍ୟବାନ୍ ରେଶମ ବସ୍ତ୍ର ଦ୍ୱାରା ଆବୃତ ହୋଇଥାଏ । ସେହି କ୍ଷୁଦ୍ର ଶଯ୍ୟା ଉପରେ ମା' ସ୍ୱହସ୍ତରେ ସୁବାସିତ କୃଷ୍ଣତୁଳସୀ ମଞ୍ଜରୀ ବିଛେଇ ଦେଇଥା'ନ୍ତି । ଉପାଧାନ ଉପରେ ଏକ ସୁକୋମଳ ମୟୂର ଚନ୍ଦ୍ରିକା ରଖିଦେଇଥା'ନ୍ତି । ଆହୁରି ଅଧିକ ଆକର୍ଷଣୀୟ କରିବା ପାଇଁ ସୁବାସିତ ଚନ୍ଦନ ଲିପ୍ତ ଦୟଣା ମାଳରେ ସମଗ୍ର ଝୁଲଣାକୁ ଆବୃତ କରିଦେଇଥା'ନ୍ତି, ଯେଉଁ ପାଟର ଦଉଡ଼ିଟି ଝୁଲେଇବା ପାଇଁ ବନ୍ଧା ହୋଇଥାଏ ସେଥିରେ ମାଳତୀ ଫୁଲର ହାର ଗୁଡ଼ା ହୋଇଥାଏ । ଦିବ୍ୟ ଗନ୍ଧରେ, ଅଚିନ୍ତନୀୟ ସାଜସଜ୍ଜାରେ ମା' ଏକ ସ୍ୱର୍ଗୀୟ ପରିବେଶ ସୃଷ୍ଟି କରିଥା'ନ୍ତି ।

ଏଇ ସମସ୍ତ ଘଟଣା ବହୁବାର ମୁଁ ଜନନୀ ଯଶୋଦାଙ୍କ ଠାରୁ ଶୁଣିଛି । କହୁ କହୁ ମା'ଙ୍କ ର ନୟନ ଅଶ୍ରୁ ବାଷ୍ପାଚ୍ଛନ୍ନ ହୁଏ, କଣ୍ଠ ବାଷ୍ପରୁଦ୍ଧ ହୁଏ ।

ଗୋପ ନାରୀଗଣ ନିମନ୍ତ୍ରିତ ଅତିଥିଙ୍କ ନିମିତ୍ତ ଘୃତପକ୍ୱ ମିଷ୍ଟାନ୍ନ ଓ ପାୟସାନ୍ନ ପ୍ରସ୍ତୁତରେ ବ୍ୟସ୍ତ ଥା'ନ୍ତି । କେହି କେହି ଘୋଳ ଦହି ଦ୍ୱାରା ସୁପେୟ ପାନୀୟ ପ୍ରସ୍ତୁତ କରୁଥାନ୍ତି । ବହୁ ସଂଖ୍ୟକ ଅତିଥି ଆସି ମୋତେ ଆଶୀର୍ବାଦ କରି ଯାଉଥା'ନ୍ତି । ସାରା ଦିନ ଅତିଥିମାନଙ୍କୁ ଆପ୍ୟାୟନ କରି ମା ଓ ବାପା କ୍ଳାନ୍ତ ହୋଇଯାଇଥା'ନ୍ତି । ଦିନାନ୍ତର ଶେଷ ରଶ୍ମୀ ଉତ୍ସବ ମୁଖର ଗୋପପୁରକୁ ଏକ ଅପୂର୍ବ ବର୍ଣ୍ଣାଳିରେ ସଜାଇ ଦେଇଥାଏ । ଏହି ସମୟରେ ଜଣେ ସମ୍ଭ୍ରାନ୍ତ ମହିଳା ଆମ ଘରେ ପହଞ୍ଚିଲେ । ସମ୍ପୂର୍ଣ୍ଣ ଅପରିଚିତା । ବହୁମୂଲ୍ୟ ସ୍ୱର୍ଣ୍ଣାଳଙ୍କାରରେ ତାଙ୍କର ସର୍ବାଙ୍ଗ ଝଟକୁଥାଏ । ବହୁମୂଲ୍ୟ ପଟ୍ଟବସ୍ତ୍ରରେ ସୁସଜ୍ଜିତା ସେହି ମହିଳାଙ୍କ ଗାମ୍ଭୀର୍ଯ୍ୟରୁ ତାଙ୍କର ଅଭିଜାତ ଲକ୍ଷଣ ସବୁ ସ୍ପଷ୍ଟ ହେଉଥାଏ । ଗୋପର ଗୋପାଳୁଣୀଙ୍କ ଭିତରେ ସେ ବାରିହୋଇ ପଡୁଥାନ୍ତି । ସମସ୍ତ ଗୋପନାରୀଙ୍କ ଦୃଷ୍ଟିର ପ୍ରଶ୍ନବାଚୀକୁ ଉପେକ୍ଷା କରି ସେ ସିଧାସଳଖ ମା'ଙ୍କ ନିକଟରେ ପହଞ୍ଚିଗଲେ । ମା' ଏତେ ସରଳ ନିଷ୍ପାପ ଥିଲେ ଯେ କୌଣସି ଅପରିଚିତା ଆଗନ୍ତୁକା ପ୍ରତି ତାଙ୍କ ମନରେ ଟିକିଏ ହେଲେ ସଂଶୟର ଉଦୟ ହେଲାନାହିଁ । ଆଗନ୍ତୁକା କହିଲେ- 'ଭଉଣୀ ! ଏହି ଘନନୀଳ କାନ୍ତିଦ୍ରୁମର ଏଇ ଟିକି ପୁଅର ରୂପର ଚର୍ଚ୍ଚା ମଥୁରାରେ ମଧ୍ୟ ହେଉଛି । ମୁଁ କେବଳ ଥରେ ତାକୁ ଦେଖି ମୋର ଦାବଦଗ୍ଧ ପ୍ରାଣକୁ ଶୀତଳ କରିବି ବୋଲି ଏତେ ବାଟରୁ ଧାଇଁ ଆସିଛି ।'

ଏତିକି କହି ସନ୍ତୃଷ୍ଟ ନୟନରେ ଝୁଲଣା ଆଡ଼କୁ ଚାହିଁ ସେ ନାରୀ କାନ୍ଦିବାକୁ ଲାଗିଲେ । ଅଶ୍ରୁ ଦେଖିଲେଇ ମା' ବଡ଼ ଦୁର୍ବଳ ହୋଇଯା'ନ୍ତି । ସମ୍ବେଦନଶୀଳା ହୋଇଯା'ନ୍ତି । ଆଗନ୍ତୁକା ତା' ମଧ୍ୟ ଲକ୍ଷ୍ୟ କଲେ ବଡ଼ ସତର୍କ ଭାବେ ।

ମା' ବିଚଳିତ ହୋଇ କହି ଉଠିଲେ- 'କ'ଣ ତୁମର ଦୁଃଖ ଭଉଣୀ ? କାହିଁକି ତୁମେ କାନ୍ଦୁଛ ?'

ଏତିକି କହିବା ମାତ୍ରେ ଅଶ୍ରୁଧାର ତାଙ୍କ ଆଖିକୁ ମଧ୍ୟ ସଂକ୍ରମିତ ହୋଇଆସିଲା । ମା' ସବୁବେଳେ ଏଇଭଳି । ତାଙ୍କର ବିଶ୍ୱତୋମୁଖୀ ସ୍ନେହ, ଅତିଥି ବତ୍ସଳତା ଓ ଉଦାରତାପୂର୍ଣ୍ଣ ସ୍ୱଭାବ କାହାକୁ ସନ୍ଦେହ କରିବା ଜାଣିନଥିଲା । (ମୁଁ ନିଜେ ବି ଶୈଶବରେ ତାଙ୍କର ଏ ଦୁର୍ବଳତାର ଅନେକ ସୁଯୋଗ ନେଇଛି । ମୁଁ ଯେତେବେଳେ କୌଣସି ବାଲ୍ୟ ଚପଳତାର ଦୋଷରେ ଗୋପବାଳାଙ୍କ ଦ୍ୱାରା ଅଭିଯୁକ୍ତ ହୁଏ ଓ ମା' କ୍ରୋଧାନ୍ୱିତା ହୋଇ ବେତ୍ରହସ୍ତରେ ମୋର ପଶ୍ଚାତ୍‌ଧାବନ କରନ୍ତି ସେତେବେଳେ ଖାଲି ଲୁହ ଛଳ ଛଳ ଆଖିରେ ମା'ଙ୍କୁ ଚାହିଁ ଦେବା ମାତ୍ରେ ମା'ଙ୍କର ସବୁ କ୍ରୋଧ କରୁଣା ହୋଇ ଝରିଯାଏ !)

ଆଗନ୍ତୁକାର ଆଗମନରେ କିଛି ଦୂରଭିସନ୍ଧି ଥାଇପାରେ ଏକଥା ସେଦିନ କେହିବି ସନ୍ଦେହ କରିନଥିଲେ । ଆଗନ୍ତୁକା ଏକ ଚିତ୍ତାକର୍ଷକ ଅଭିନୟ ଆରମ୍ଭ କରିଦେଇଥିଲା- 'ଆହାଃ ! ଆଜି ମୋ ପୁଅଟି ଥିଲେ ଏମିତି ଟିକି ଟିକି ହାତ ଗୋଡ଼ ହଲେଇ ଖେଳୁଥା'ନ୍ତା ।'

ତା'ର ଏକଥା ଶୁଣି ଗୋପନାରୀଙ୍କର ସ୍ୱଚ୍ଛ ସରଳ ହୃଦୟ ସମ୍ବେଦନରେ ପରିପୂର୍ଣ୍ଣ ହୋଇଗଲା । ସେମାନେ ସମସ୍ୱରରେ ପ୍ରଶ୍ନକଲେ- 'ତୁମର ସେ ପୁତ୍ରଟି କାହିଁ ଭଉଣୀ ?'

ଏଥର ଆଗନ୍ତୁକା ଆହୁରି ନିପୁଣ ଅଭିନୟ ଆରମ୍ଭ କରିଦେଲା । ଅଶ୍ରୁ ବିକଳ କଣ୍ଠରେ କହିଲା- 'ତୁମ୍ଭେମାନେ କୌଣସି ଖବର ରଖିନାହଁ ଭଉଣୀ ? ଯା'ହେଉ ଗୋପ ଜନନୀ ଓ ଗୋପ ଶିଶୁଗଣ ତା'ହେଲେ ସୁରକ୍ଷିତ ଅଛନ୍ତି । ଆମ ମଥୁରା ନାରୀଙ୍କ ଭାଗ୍ୟରେ ସେଭଳି ଅଖଣ୍ଡ ସୌଭାଗ୍ୟବତୀ ହେବା ହୁଏତ ଲେଖା ନାହିଁ । ଯେଉଁଠି ରାଜାର ଭଉଣୀର ଏ ଦୁର୍ଦ୍ଦଶା, ସେଠି ଆମଭଳି ସାଧାରଣ ମା'ଙ୍କ କଥା କ'ଣ କହିବି ? ଆମ୍ଭେମାନେ ସନ୍ତାନକୁ କେବଳ ଜନ୍ମ ଦେଉ, ତାପରେ ରାଜାଦେଶରେ ବଳି ଦେଉ- କୋଳରେ ଧାରଣ କରି ସ୍ତନ୍ୟଦାନ କରିବାର ସୁଯୋଗ ଆମର ଆସେନାହିଁ । ରାଜାର ଭଉଣୀ ହୋଇ ସୁଦ୍ଧା ମୃତବତ୍ସା ଦେବକୀ ଆଠଟି ସନ୍ତାନ ହରେଇ ସାରିଲେଣି । ମାତୃତ୍ୱ ସେଠାରେ ଏଇଭଳି ଲାଂଛିତ, ବିଡ଼ମ୍ୱିତ । ମଥୁରାର ରାଜଦାଣ୍ଡ ନବଜାତ ଶିଶୁଙ୍କ ରକ୍ତରେ ସିକ୍ତ, କଳଙ୍କିତ । ମୁଁ ସବୁଦିନ ପାଇଁ ମଥୁରା ତ୍ୟାଗ କରି ଚାଲିଆସିଛି । ଯେଉଁଠାରେ ନବଜାତ ଶିଶୁଙ୍କ ସଂହାରଲୀଳା ଚାଲିଛି, ନାରୀ ହୋଇ ମୁଁ ସେ

କଳୁଷିତ ଭୂମିରେ ପାଦ ରଖିପାରିବି ନାହିଁ । ମରଣ ଅବଧି ଏଇଠାରେ ଗୋପଶିଶୁଙ୍କ ଗହଣରେ ହିଁ ମୁଁ ରହିବି, କ୍ଷତାକ୍ତ ହୃଦୟର କ୍ଷତ ହୁଏତ ଲାଘବ ହୋଇଯିବ । ଯେଉଁଠି ଏତେଗୁଡ଼ିଏ ଶିଶୁଙ୍କ ଲୀଳା ଖେଳା ସେ ଗୋପର ମାଟି ମୋ ପାଇଁ ତୀର୍ଥ କ୍ଷେତ୍ରସଦୃଶ ।'

କେବଳ ମା' କାହିଁକି ସେତେବେଳକୁ ଉପସ୍ଥିତ ସମସ୍ତ ଗୋପନାରୀଙ୍କ ସ୍ପର୍ଶକାତର ହୃଦୟରେ ତା'ର ପ୍ରତାରଣାପୂର୍ଣ୍ଣ ଅଭିନୟ ଯଥେଷ୍ଟ ପ୍ରଭାବ ବିସ୍ତାର କରିସାରିଲାଣି । ଏଥର ସେ ଆଗନ୍ତୁକା ତା'ର ଛଳ କଳା-କୌଶଳପୂର୍ଣ୍ଣ ଶେଷ ଅସ୍ତ୍ର ନିକ୍ଷେପ କଲା । ଯୋଡ଼ହସ୍ତରେ ଅଶ୍ରୁବିକଳ କଣ୍ଠରେ ମା'ଙ୍କୁ କହିଲା- 'ଭଗବାନଙ୍କର ନିର୍ଦ୍ଦୟ ବିଚାରକୁ ଦେଖ ଭଉଣୀ । ମୋର ପୁତ୍ର ସନ୍ତାନଟିକୁ ମୋ କୋଳରୁ ଛଡ଼େଇ ନେଲେ ମାତ୍ର ମୋ ବକ୍ଷରୁ ଅମୃତଧାର ଛଡ଼େଇ ନେଲେ ନାହିଁ । ନିର୍ଦ୍ଦୟ କଂସ ମୋର ଶିଶୁ ସନ୍ତାନକୁ ସଂହାର କଲା, ମୋର ମାତୃତ୍ୱର ପରମ ସଂପଦକୁ ନିଶ୍ଚିହ୍ନ କଲା ନାହିଁ କାହିଁକି ? ଦୁଗ୍ଧ ଭାରରେ ମୋର ବକ୍ଷ ଭାଙ୍ଗି ପଡୁଛି, ତୁମେ ଯଦି ଅନୁଗ୍ରହ କରି ଅନୁମତି ଦିଅନ୍ତ ଥରକ ପାଇଁ ମୋର ମାତୃତ୍ୱ ପରିପୂର୍ଣ୍ଣ ହୁଅନ୍ତା, ସାର୍ଥକ ହୁଅନ୍ତା । ତୁମର ଏ ଶିଶୁ ପୁତ୍ରଟି ମୋ ବକ୍ଷରୁ ଅମୃତ ଶୋଷଣ କରନ୍ତା, ମୋ ଜୀବନ ଧନ୍ୟ ହୁଅନ୍ତା ! କିଞ୍ଚିତ୍ ପରିମାଣରେ ପୁତ୍ରଶୋକ ମଧ୍ୟ ଲାଘବ ହୁଅନ୍ତା ।'

ଏତିକି ଶୁଣିବା ମାତ୍ରେ ମା'ଙ୍କ ଅନ୍ତରରେ ସଂବେଦନର ସ୍ରୋତସ୍ୱିନୀ ସୃଷ୍ଟି ହୋଇଗଲା ଯେପରି, ସେଠାରେ ସବୁ ପ୍ରଶ୍ନ, ସବୁ ସଂଶୟ, ସବୁ ଦ୍ୱିଧା ଅବାନ୍ତର । ମୁହୂର୍ତ୍ତକରେ ଦୋଳିରୁ ମୋତେ ଉଠାଇ ଆଣି ଆଗନ୍ତୁକା କୋଳରେ ଦେଇ କାର୍ଯ୍ୟବ୍ୟସ୍ତତା ବଶତଃ ସେ କକ୍ଷରୁ ନିଷ୍କ୍ରାନ୍ତ ହୋଇଗଲେ । ଯେତେଥର ମା'ଙ୍କ କଣ୍ଠରୁ ମୁଁ ଏହି ଆଖ୍ୟାନ ଶୁଣିଛି ସେତେଥର ମମତାମୟୀ ମା'ର ବିଶ୍ୱାସଭରା ସରଳ ହୃଦୟଟି ନିକଟରେ ଭକ୍ତିରେ ମୋ ମୁଣ୍ଡ ନଇଁ ଯାଇଛି ସବୁରି ଅଲକ୍ଷ୍ୟରେ ।

ଏହି ବିଶ୍ୱାସହିଁ ତ ବିଷକୁମ୍ଭକୁ ଅମୃତରେ ପରିଣତ କରିଥିଲା ସେଦିନ । ରାକ୍ଷସୀ ହୃଦୟରେ ମୁହୂର୍ତ୍ତକ ପାଇଁ ମାତୃତ୍ୱ ଜାଗି ଉଠିଥିଲା ଏବଂ ବିଷଲିପ୍ତ ସ୍ତନରୁ ମୁଁ ଅମୃତ ହିଁ ଗ୍ରହଣ କରିଥିଲି । ତା' ନହୋଇଥିଲେ ପ୍ରବଳ ଆବେଗରେ ସେ ମୋତେ ତା' ବକ୍ଷରେ ଏଭଳି ପରମ ସ୍ନେହରେ ଆଲିଙ୍ଗନାବଦ୍ଧ କରିନଥା'ନ୍ତା କିମ୍ବା ମୁଁ ମଧ୍ୟ କୌଣସି ସଂଘର୍ଷ ବା ପ୍ରତିରୋଧ ନକରି ତା' ବକ୍ଷରୁ ସମସ୍ତ ଶକ୍ତି ପ୍ରୟୋଗ କରି ଆନନ୍ଦ ମନରେ ଏଭଳି କ୍ଷୀର ଶୋଷଣ କରିନଥା'ନ୍ତି । ମୁଁ ତ କ୍ଷୀର ହିଁ ଶୋଷଣ କରୁଥିଲି । କ୍ଷୀର ସହିତ ମମତାମୟୀ ଚିରନ୍ତନ ଜନନୀର ଆବେଗ ସିକ୍ତ ପ୍ରାଣଟି ଯେ ମିଶି ରହିଥିଲା ସେକଥା ସେଦିନ ସେ ନିଜେବି କ'ଣ ଜାଣିଥିଲା ? ଏତି ଅନାସ୍ୱାଦିତ ଅନୁଭୂତି ତାକୁ ସେଦିନ ପରିପୂର୍ଣ୍ଣ ମାତୃତ୍ୱ ଦାନ କରିଥିଲା । ହଁ- ହଁ ସେ ଜନନୀରେ ପରିଣତ ହୋଇଥିଲା ମୁହୂର୍ତ୍ତକ ପାଇଁ । ତେଣୁ ତା' ବକ୍ଷର ମଧୁ ମମତାର ଅମୃତ ହୋଇ ଝରି

ଆସିଥିଲା ଅକୁଣ୍ଠିତ ଭାବେ । ଶିଶୁ ଅଧରରେ ସେ ମଧୁକୁ ଢାଳିଦେଇ ନିଃସ୍ୱ ହୋଇଯିବାରେ ହିଁ ତା'ର ପରମ ପ୍ରାପ୍ତି, ପରମ ମୁକ୍ତି ! ପ୍ରାପ୍ତିର ସମସ୍ତ ଆନନ୍ଦରେ ଥରେ ପରିପୂର୍ଣ୍ଣ ହେବା ପରେ ଆଉ କେଉଁ ପ୍ରତ୍ୟାଶାରେ ସେ ମଥୁରା ଫେରିଥା'ନ୍ତା ?

ଶ୍ମଶାନ ବିହାରୀ ଦେବଦେବ ମହାଦେବ ସମୁଦ୍ର ମନ୍ଥନ ପରେ ବିଷ କୁମ୍ଭକୁ କଣ୍ଠସ୍ଥ କରି ନୀଳକଣ୍ଠ ନାମ ଧାରଣ କରିଥିଲେ । ମୁଁ କିନ୍ତୁ ବିଷକୁ କଣ୍ଠସ୍ଥ କଲି ନାହିଁ, ଉଦରସ୍ଥ କଲିନାହିଁ । ବିଷଲିପ୍ତ ସ୍ତନର ରହସ୍ୟ ଉନ୍ମୋଚନ କରି ଗୋପବାସୀଙ୍କୁ ଆହୁରି ଅଧିକ ସଜାଗ କରିଦେଲି କଂସର ନୀଚ ପ୍ରତାରଣା ଓ କୂଟ କାପଟ୍ୟପୂର୍ଣ୍ଣ ଦୁରଭିସନ୍ଧି ସମ୍ପର୍କରେ । ସଂଘର୍ଷ ପାଇଁ ସେମାନଙ୍କ ମନୋବଳ ଆହୁରି ଦୃଢ଼ ହୋଇଗଲା । ମୁଁ ତ ସେତିକି ମାତ୍ର ଚାହୁଁଥିଲି- ପ୍ରତାରଣାର ଗର୍ଭ ଚିରି ଏକ ସଂଶୟମୁକ୍ତ ସୁସ୍ଥ ସମାଜର ପ୍ରତିଷ୍ଠା ହେଉ, ମୃତ୍ୟୁର ଗହ୍ୱରରୁ ଅମୃତର ଉଦ୍‌ଭବ ହେଉ, ତମସାରୁ ଜ୍ୟୋତିର ବିକାଶ ହେଉ, ଅପୂର୍ଣ୍ଣ ମଣିଷ ପରିପୂର୍ଣ୍ଣତାର ସିଦ୍ଧି ପାଉ । ନହେଲେ ଏ ସୁନ୍ଦର କମନୀୟ ସୃଷ୍ଟି ଧ୍ୱଂସ ହୋଇଯିବ ନାହିଁକି ?

ମଥୁରାରୁ ସେଇମାତ୍ର ଦଧି ବିକ୍ରୟ କରି ଫେରିଥିବା କେତେଜଣ ଗୋପାଳଙ୍କ ମୁହଁରୁ କ'ଣ ଶୁଣି ପିତା ଉଦ୍‌ବିଗ୍ନ ଭାବେ ଧାଇଁ ଆସିଲେ ଗୃହର ଅଭ୍ୟନ୍ତରକୁ । ମା' ପାକଶାଳାରେ ଥିବା ଦେଖି ତାଙ୍କର ମାନସିକ ଅସ୍ଥିରତା ବହୁଗୁଣିତ ହୋଇଗଲା । ସେ କମ୍ପିତ କଣ୍ଠରେ କହିଲେ- 'ଜାଣ ଯଶୋମତୀ ! ମଥୁରାରୁ ସେନାପତି ପ୍ରଦ୍ୟୋତର ପତ୍ନୀ ପୁତନା ଗୋପପୁର ଆସିଛି । ସେ କୁଆଡ଼େ ଏକ ନିର୍ମମ ଶିଶୁଘାତିନୀ । କଂସର ସନ୍ତୁଷ୍ଟି ନିମିତ୍ତ ବହୁ ଶିଶୁଙ୍କୁ ସେ ହତ୍ୟା କରିସାରିଲାଣି ।'

ବାସ୍ ! ଏତିକି ଶୁଣିବା ମାତ୍ରେ ମା' ପାଗଳିନୀ ଭଳି ଛୁଟି ଆସିଲେ ଦୋଳି ନିକଟକୁ, ତାଙ୍କ ପଛେ ପଛେ ବହୁସଂଖ୍ୟକ ଗୋପାଳ ଓ ଗୋପାଳୁଣୀ । ସେତେବେଳକୁ ପୂତନାର ନିଷ୍ପ୍ରାଣ ଶରୀର ଭୂଇଁରେ ଲୋଟୁଥାଏ । ତା' ମୁଦ୍ରିତ ନୟନ ଯୁଗଳରେ ମାତୃତ୍ୱର ପରମ ତୃପ୍ତି ଟିକକ ଅଙ୍କିତ ହୋଇଥାଏ, ଅଧର ପ୍ରାନ୍ତରୁ ଝରି ଆସିଥାଏ ପରିପୂର୍ଣ୍ଣତାର ହସ ଧାରେ ତା'ର ସୁପୁଷ୍ଟ ବକ୍ଷୋଜ ଉପରେ ମୁଁ କ୍ରୀଡ଼ା ରତ ଥାଏ । ମା' ମୋତେ ସେଠାରୁ ଉଠାଇ ନେଇ ତାଙ୍କ ପାଦଧୂଳି ମୋ ସର୍ବାଙ୍ଗରେ ବୋଳି ଦେଲେ । ବାପା ବା ମା'ଙ୍କର ବାକ୍‌ସ୍ଫୁର୍ତ୍ତି ହେଉନଥାଏ ।

ମା' ଯେତେଥର ଏକଥା କହନ୍ତି ସେତେଥର ସେ ବିକଳରେ କାନ୍ଦିପକାନ୍ତି । ମୁଁ ତାଙ୍କୁ ସଚେତନ କରି କହେ- 'କୋଉଠିକାର କିଏ ପୂତନା, ସିଏ କେବେଠୁ ମଲାଣି । ତୁମେ କାହିଁକି କାନ୍ଦୁଚ ? ମୁଁ ତ ତୁମ ପାଖେ ପାଖେ ଅଛି ମା !'

ତେବେ ମା'ଙ୍କର ସେ ବ୍ୟାକୁଳତା ଟିକକ ବେଶ୍ ଉପଭୋଗ୍ୟ । ମୋର ସ୍ମୃତିରେ ମା'ଙ୍କର ଏ ବ୍ୟାକୁଳତା ଭଳି ପୂତନା ମଧ ଚିର ଜୀବନ୍ତ ।

ଦୁଃଖଦ ସ୍ମୃତି ତ ଚିର ସ୍ମରଣୀୟା, ଚେଷ୍ଟା କଲେବି ଭୁଲି ହୁଏ ନାହିଁ; କିନ୍ତୁ ଅନେକ ସୁଖଦ ସ୍ମୃତି ବି ସ୍ମରଣୀୟ । ଯାହାକି ସମଗ୍ର ଜୀବନ ପରିକ୍ରମାର କଣ୍ଟକିତ ପଥଧାରରେ ତଥାପି ଫୁଲର ମହୋତ୍ସବ ସୃଷ୍ଟି କରୁଥାଏ । ସ୍ମୃତିର ରୋମନ୍ଥନ ମୋତେ ଶାଶ୍ୱତ ଆନନ୍ଦର ମୃତ ଅନୁଭବରେ ପ୍ରାଣକୁ ରସସିକ୍ତ କରୁଥାଏ, ଅନ୍ତରାତ୍ମାକୁ ମଧୁର କ୍ଷରଣ କରୁଥାଏ । ମୋ ପାଇଁ ସେମିତି ଏକ ଦୁର୍ଲଭ ଅନୁଭବ, ଦୁର୍ଲଭ ସ୍ମୃତି ହେଉଛି ଗୋପ ଭୂମି । ଗୋପ ଭୂମିର ପ୍ରତିଟି ଧୂଳିକଣା ସହ ମୋର ସମ୍ପର୍କ ଘନିଷ୍ଠ । ଗୋପଭୂମିର ପ୍ରତିଟି ମୁହୂର୍ତ୍ତ ମୋ ଜୀବନର ମହାର୍ଘ ସଞ୍ଚୟ । ସେ ସ୍ୱର୍ଣ୍ଣଝରା ମୁହୂର୍ତ୍ତର ମଧୁଲଗ୍ନ । ସେ ସମ୍ପର୍କର ମାଧୁର୍ଯ୍ୟ ସହ ମୁଁ ଏଭଳି ଏକାତ୍ମ ଯେ, ସେ କଥା ଭାଷାରେ ପ୍ରକାଶ କରିପାରିବି ନାହିଁ । ତା' କେବଳ ଅନୁଭବର ବସ୍ତୁ, ଭାବର ବସ୍ତୁ, ହୃଦୟର ବସ୍ତୁ । ଏ ଅମୃତ ଅନୁଭବ ସମସ୍ତଙ୍କ ପାଇଁ ବୋଧଗମ୍ୟ ନୁହେଁ ।

ମା' ଯଶୋମତୀଙ୍କ ସ୍ନେହାଞ୍ଚଳରେ ଆଶ୍ରିତ ହୋଇ ମୁଁ ଚନ୍ଦ୍ରକଳା ନ୍ୟାୟରେ ବୃଦ୍ଧି ପାଉଥିଲି । ଶୂର ବଂଶର ରାଜପୁତ୍ର ମୁଁ ମଣି, ମାଣିକ୍ୟ, ହୀରକ, କନକ ପରିବର୍ତ୍ତେ ବନଫୁଲରେ, କାଇଁଞ୍ଚ ମାଳିରେ, ମୟୂର ଚନ୍ଦ୍ରିକାରେ ସଜାହେଉଥିଲି ; କିନ୍ତୁ ଏସବୁ ଯେ ମୋ ପାଇଁ ଏତେ ମୂଲ୍ୟବାନ୍ ଥିଲା ସମଗ୍ର ଦ୍ୱାରକାର ରାଜକୋଷ ମଧ୍ୟ ତା' ନିକଟରେ ତୁଚ୍ଛ ଥିଲା' ମୁଁ ନିଦରୁ ଉଠିବା ମାତ୍ରେ ମା'ଙ୍କର ଏକମାତ୍ର କାମଥିଲା ଏଇଭଳି ଅଦ୍‌ଭୁତ ବେଶରେ ମୋତେ ସଜାଇବା, ମୋ ଲଲାଟରେ ଗୋରଚନାର ଚିତା ଆଂକିବା, ହଳଦୀ ରଂଗ ଲୁଗା ମୋତେ ପିନ୍ଧାଇବା, ଦୟଣା, ମାଳତୀ, ତୁଳସୀ ମଂଜରୀର ମାଳ ମୋ ଗଳାରେ ଲମ୍ବାଇବା, ଏସବୁ କରିବା ପରେ ବି ତାଙ୍କ ମନ ବୋଧ ହୁଏ ନାହିଁ, ମୋତେ ଅପଲକ ନେତ୍ରରେ କିଛି ସମୟ ଚାହିଁ ରହି ମନକୁ ମନ କହି ଉଠନ୍ତି -'ଆହାଃ' ମୋ ଧନ କେତେ ସୁନ୍ଦର ଦିଶୁଚି ! କାହା ନଜର ଲାଗିଯିବ !'

ଏତିକି କହି ତୁଳସୀ ମୂଳରୁ ଟିକେ ମାଟି ସହ ନିଜ ପାଦର ଧୂଳି ମିଶେଇ ସେ ମୋ ଲଲାଟରେ ତିଳକଟିଏ ଦେଇ ଦିଅନ୍ତି ସବୁରି ଅଲକ୍ଷରେ, କେଉଁ ରତ୍ନଭୂଷା ବା ଏହାର ସମକକ୍ଷ ହୋଇପାରିବ?

ଗୋପଭୂମିର ସବୁ ଯେମିତି ମଧୁର । ଗିରି ଗୋବର୍ଦ୍ଧନ, ବୃନ୍ଦାରଣ୍ୟର ମଧୁକଣ୍ଠୀ ପକ୍ଷୀଙ୍କର କାକଳୀରେ, ଯମୁନାର ନୀଳଜଳୋଚ୍ଛ୍ୱାସର ଚଞ୍ଚଳତାରେ, ଗୋପ ଗୋଧନଙ୍କର ହମ୍ବା ରଡିରେ, ଗୋପବାଳାଙ୍କର କର୍ମ ମୁଖରତାରେ ରାତି ପାହି ସକାଳ ହୁଏ । ଥରେ ଥରେ ବ୍ରାହ୍ମମୁହୂର୍ତ୍ତରେ ମୋ ନିଦ ବି ଭାଙ୍ଗିଯାଏ । ମା' ଦଧି ମନ୍ଥନ କରୁଥା'ନ୍ତି । ମୁଁ ଯେତେ ଧିରେ ଉଠି ମା'ଙ୍କ ପଛରେ ଠିଆ ହେଲେ ବି ମୋ ପାଦର ବାଜେଣୀ ନୁପୁର, ମୋ କଟିର କିଙ୍କିଣୀ ଶବ୍ଦରେ ମା' ମଧୁର ଭାବେ ହସନ୍ତି, ଠିକ୍ ତାଙ୍କ ହାତର ରୁଣୁଝୁଣୁ ଶବ୍ଦ କରୁଥିବା ଚୂଡ଼ି ଭଳି, କହନ୍ତି-

'ଏତେ ଚଞ୍ଚଳ ଉଠି ପଡ଼ିଲୁରେ କହ୍ନେଇ? ମୁଁ ଆଉ କେତେବେଳେ ଦଧି ମନ୍ଥିବି? ଆଚି ଆମରି ଘରୁ କିଛି ନବନୀତ ମଥୁରା ଯିବ ଯେ ମଥୁରା ନରେଶର ଅନ୍ତଃପୁରକୁ !

ମଥୁରା ନରେଶର ଅନ୍ତଃପୁର କଥା ଶୁଣିବା ମାତ୍ରେ ମୋ ରକ୍ତରେ କେମିତି ଏକ ଚଞ୍ଚଳତା ମୁଁ ଅନୁଭବ କରେ, ମୋ ଭିତରେ କେଉଁଠି ଯେମିତି ଏକ ରଣ ଘୋଷର ବାଦ୍ୟ ବାଜି ଉଠେ । ମୁଁ ମା'ଙ୍କର ମନ୍ଥନ ଦଣ୍ଡକୁ ଦୃଢ଼ ମୁଷ୍ଟିରେ ଧରି ରଖେ, ମାଙ୍କୁ ଦହି ମନ୍ଥିବାକୁ ଦିଏ ନାହିଁ, ମା'ଯେ ମୋ କଅଁଳ ମୁଠା ଛଡ଼େଇ ପାରିବେନି, ତା'ନୁହେଁ, କିନ୍ତୁ ମା'ମୋ ଉପରେ ଆଦୌ ଜୋର୍ ଜବରଦସ୍ତ କରିବେ ନାହିଁ ।

ପୁତନାର ମୃତ୍ୟୁ ପରେ ମଥୁରା ନରେଶ କଂସ ଯେ ନିଶ୍ଚେଷ୍ଟ ଭାବେ ବସି ରହିଥିଲା ତା'ନୁହେଁ, ତାର ବିଦ୍ୱେଷ ବରଂ ବହୁ ଗୁଣିତ ହେଉଥିଲା । ଗୋପ ମଥୁରାର ଏକ କରଦ ରାଜ୍ୟ ହୋଇଥିବାରୁ କଂସ ଗୋପରେ କର ଭାର ବୃଦ୍ଧି କରିଥିଲା ତା'ର ଗୁପ୍ତଚର ମାନଙ୍କୁ ଆହୁରି ଅଧିକ ସତର୍କ କରି ଦେଇଥିଲା । ଗୋପର ବା ପାର୍ଶ୍ୱବର୍ତ୍ତୀ ସମସ୍ତ ରାଜ୍ୟର ଶିଶୁଙ୍କ ଉପରେ ସେମାନେ କଡ଼ା ନଜର ରଖୁଥିଲେ । ପ୍ରତ୍ୟେକ ଶିଶୁର କ୍ରିୟାକଳାପ ସଂପର୍କରେ ସମସ୍ତ ତଥ୍ୟ ସଂଗ୍ରହ କରି କଂସ ଦରବାରରେ ସେମାନେ ପରିବେଷଣ କରୁଥିଲେ । ଗୋପରେ ଏ ବିଷୟ ବହୁଳ ଭାବେ ଚର୍ଚ୍ଚିତ ହେଉଥିଲା ଯେ ଏହି ଗୁପ୍ତଚର ଗଣ ଏକ ଅଲୌକିକ ଶିଶୁର ସନ୍ଧାନରେ ଅଛନ୍ତି । ଯିଏକି ଦେବକୀଙ୍କର ଅଷ୍ଟମ ଗର୍ଭର ସନ୍ତାନ ।

ଏସବୁ ବିଷୟ ଏଭଳି ସଂଶୟ ଜଡ଼ିତଯେ, ଗୋପବାସୀଙ୍କ ସରଳ ଅନ୍ତର, ସରଳ ମସ୍ତିଷ୍କରେ ଏହା ଆଦୌ ପ୍ରବେଶ କରୁନଥିଲା । କେବଳ କୌଣସି ଅପରିଚିତ ଆଗନ୍ତୁକ ସେମାନଙ୍କ ପାଇଁ ଆତଙ୍କର କାରଣ ଥିଲା । ତା ସହ ଆମ ଗୋପଶିଶୁଙ୍କ ଗହଣରେ କ୍ରୀଡ଼ା କୌତୁକ ଛଳରେ ଯଦି କୌଣସି ବିଚିତ୍ର ଘଟଣା ଘଟୁଥିଲା ତେବେ ସେମାନଙ୍କର ବିସ୍ମୟର ଅବଧି ରହୁନଥିଲା । ଏଇ ଯେମିତି କଂସର ଅନୁସନ୍ଧାନୀ ଦୃଷ୍ଟି ଜନନୀ ଦେବକୀଙ୍କର ଅଷ୍ଟମ ସନ୍ତାନକୁ ଅନ୍ୱେଷଣ କରିବାକୁ ଅଘା, ଶକା, ତୃଣାବର୍ତ୍ତ ପ୍ରଭୃତି ଜଣକପରେ ଜଣେ ଗୁପ୍ତଚରଙ୍କୁ ଗୋପପୁର ପ୍ରେରଣ କରୁଥିଲା । ସ୍ଥୂଳ ବୁଦ୍ଧି ସଂପନ୍ନ କଂସର ବିଚାରରେ ଶରୀରର ବଳ ହିଁ ସବୁକିଛି । ଜୟ ପରାଜୟ କ'ଣ କେବଳ ଶରୀରର ବଳ ଉପରେ ନିର୍ଭର କରେ? କଂସର ଗୁପ୍ତଚର ଗଣଙ୍କର ଶରୀର ନିଃସନ୍ଦେହରେ ଥିଲା; ମାତ୍ର ବୁଦ୍ଧିର କୌଶଳର ଅଭାବ ପ୍ରଚଣ୍ଡ ଭାବରେ ଥିଲା । ବାରମ୍ବାର ସେମାନେ ମୋ ଦ୍ୱାରା ପରାଭୂତ ହୋଇଛନ୍ତି ତା' କେବଳ ମୋର କୌଶଳ ବଳରେ, ଅଘା, ଶକଟା, ବକାଭଳି ତୃଣାବର୍ତ୍ତ ମଧ୍ୟ ଦିନେ ଗୋପରେ ପଦାର୍ପଣ କଲା । ସେ ଏମାନଙ୍କଠାରୁ ଅଧିକ କୁଶଳୀ ଥିଲା ନିଶ୍ଚୟ । ଏ ଘଟଣା ପୂର୍ବରୁ ଏକଦା ବୃନ୍ଦାବନରେ ଜଣେ ପକ୍ୱକେଶ ବୃଦ୍ଧା ବଂଶୀ ବିକ୍ରେତା ମୋତେ ଏକ ବଂଶୀ ଦେଇଥିଲେ । ସେହି

ବଂଶୀରେ ମଧୁର ମୂର୍ଚ୍ଛନା ତୋଳିବାକୁ ମୋତେ ଭାରୀ ଭଲ ଲାଗେ । ଏହା ବରଂ ମୋର ଅନ୍ୟତମ ବିଳାସ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ପକ୍ୱକେଶ ବୃଦ୍ଧ ଜଣକ ବଂଶୀ ଦେଇଥିଲେ କିନ୍ତୁ ମୂଲ୍ୟ ନେଇ ନଥିଲେ । ମୂଲ୍ୟ ଯାଚିବାରୁ କହିଥିଲେ-'ଏହାର ମୂଲ୍ୟ ତୁମେ ଦେଇପାରିବନାହିଁ ଗୋବିନ୍ଦ! ବରଂ ତୁମେ ଏବଂଶୀ ବଜାଇଲେ ଅନେକଙ୍କୁ ଅନେକ ମୂଲ୍ୟ ଦେବାକୁ ପଡ଼ିବ । ଏହା ମୋର ଉପହାର ବୋଲି ମନେ କରିବ ନନ୍ଦସୁତ!

ମୁଁ କହିଲି, ଆପଣଙ୍କ ନାମ ?

ସେ ବନପଥରେ ଅଦୃଶ୍ୟ ହେଉ ହେଉ ସଂକ୍ଷେପରେ କେବଳ କହିଗଲେ-'ବ୍ରହ୍ମା' !

ତାପରଠାରୁ କାଇଁଚମାଳି, ମୟୂର ଚନ୍ଦ୍ରିକା ଭଳି ମୋ ସାଜସଜ୍ଜାର ନୂତନ ଉପକରଣ ହେଲା ଏହି ବଂଶୀ ! ଚନ୍ଦନ ଚର୍ଚ୍ଚିତ ମେଘବର୍ଣ୍ଣ ଦେହରେ ମୋର ପୀତ ବସନ, ଗଳାରେ ଦୟଣା, ତୁଳସୀ ଓ ମାଳତୀର ମାଳ, କଟିରେ କିଙ୍କିଣି,ପାଦରେ ବାଜେଣୀ ନୁପୁର, ଘନକୁଞ୍ଚିତ କେଶ ର ବାଙ୍କ ଚୂଡ଼ାରେ କାଇଁଚ ମାଳି ସହ ମୟୂର ଚନ୍ଦ୍ରିକା,କୁକ୍ଷିତଟରେ ମୋହନ ବଂଶୀ-ହଁ ଏଇ ବେଶରେ ମା' ମୋତେ ସଜାଇ ଦିଅନ୍ତି ଓ ତାଙ୍କ ଆଖିର ମୁଗ୍ଧ ତନ୍ମୟତା ଯେପରି ମୋ ସୌନ୍ଦର୍ଯ୍ୟର ଆଲେଖ୍ୟ ବହନ କରିଥାଏ । କେବଳ କ୍ରୀଡ଼ା କୌତୁକ ଭିତରେ ହିଁ ମୋର ସମୟ ଅତିବାହିତ ହେଉଥାଏ । ସେଦିନ ଗୋପଦାଣ୍ଡରେ ଏକ ପକ୍ଷୀ ବିକ୍ରେତା ପିଞ୍ଜରାବଦ୍ଧ ବହୁରଂଗୀ ପକ୍ଷୀ ସହ ଉପସ୍ଥିତିହେଲା । ଶ୍ରୀରାମ,ସୁଦାମ,ମୁଁ,ମଧୁମଙ୍ଗଳ ଓ ଜ୍ୟେଷ୍ଠ ଭ୍ରାତା ବଳରାମ ତଥା ଅନ୍ୟ ସାଂଗ ସାଥୀ ସମସ୍ତେ ସେହି ପକ୍ଷୀଙ୍କର କଳ କଣ୍ଠରେ ଆକର୍ଷିତ ହୋଇ ତା' ପଛେ ପଛେ ଚାଲିଲୁ । ଯଦିଓ ସେ ବହୁତ ଗୁଡ଼ିଏ ପକ୍ଷୀ ବିକ୍ରୟ କରିବା ତା'ର ଉଦ୍ଦେଶ୍ୟ ନଥାଏ । ଆମଭିତରୁ କେହି ପକ୍ଷୀଟିଏ କିଣିବାକୁ ଇଛା କଲେ ସେ କହୁଥାଏ- 'ଏ ପକ୍ଷୀ ଗୁଡ଼ିକୁ ଦେଖ, ଏହାଠାରୁ ଆହୁରି ଜାତିଆ ପକ୍ଷୀ ମୁଁ ଆଉକିଛି ଦିନ ପରେ ଆଣିବି, ଏସବୁ ପକ୍ଷୀ ବିହାର ସ୍ଥଳୀ ହେଲା ବୃନ୍ଦାବନ । ମୁଁ ଜାଲ ପାତିବା ମାତ୍ରେ ପକ୍ଷୀମାନେ ଆପେ ଧରା ଦିଅନ୍ତି । ଦେଖିବାକୁ ଚାହଁ ? ତେବେ ଆସ ମୋ ସାଂଗରେ !

ତା'ର ଏ ଆମନ୍ତ୍ରଣରେ ଆମର ଶିଶୁ ମନ ପ୍ରଲୋଭିତ ହୋଇଉଠିଲା ଏବଂ ଆମେ ସମସ୍ତେ ତା'ର ପଶ୍ଚାତ୍‌ଧାବନ କଲୁ । ଗ୍ରାମ ସୀମା ଶେଷ ହେବା ମାତ୍ରେ ଅଚାନକ ଆକାଶରେ କଳାବାଦଲ ଘୋଟି ଆସିଲା, ଖୁବ୍ ଥଣ୍ଡାପବନ ବହିବାକୁ ଆରମ୍ଭ ହେଲା ଏବଂ ପ୍ରଚଣ୍ଡ ଧୂଳି ଝଡ଼ ଆରମ୍ଭ ହୋଇଗଲା । ଅରଣ୍ୟର ଶୁଷ୍କପତ୍ର ଓ ଧୂଳି ଏକାକାର ହୋଇ ଚକ୍ଷୁ ସମ୍ମୁଖରେ ଏଭଳି ଏକ ଧୂସର ଆସ୍ତରଣ ସୃଷ୍ଟି କଲା ଯେ ଆମେ କେହି କାହାରିକୁ ଦେଖି ପାରିଲୁନାହିଁ ଏବଂ ଝଡ଼ର ଶବ୍ଦରେ କେହି କାହାର ସ୍ୱର ମଧ୍ୟ ଶୁଣି ପାରିଲୁ ନାହିଁ । ହଠାତ୍ ମୁଁ ନିଜକୁ ଆବିଷ୍କାର କଲି ସେହି

ପକ୍ଷୀ ବିକ୍ରେତାର ବଳିଷ୍ଠ ବାହୁ ବନ୍ଧନରେ । ସେତେବେଳକୁ ସେ ଯେଉଁ ବାଉଁଶରେ ପିଞ୍ଜରାବଦ୍ଧ ପକ୍ଷୀ ଗୁଡ଼ିକୁ ଝୁଲାଇ ରଖିଥିଲା ତାହା ତଳେ ପଡ଼ି ଯାଇଥିଲା ଓ ପକ୍ଷୀଗୁଡ଼ିକ ଭୀତତ୍ରସ୍ତ ଭାବେ ଚିତ୍କାର କରିବା ଆରମ୍ଭ କରିଦେଇଥିଲେ । ପକ୍ଷୀ ବକ୍ରେତା ତା'ର ଅଧରକୁ ଦଂଶନ କରି କ୍ରୋଧରେ କହୁଥିଲା-'ଆରେ ନନ୍ଦସୁତ ! ଏଥର ତୃଣାବର୍ତ୍ତ କବଳରୁ ଖସିଯାଇପାରିବୁ ? ମୁଁ ପୂତନା, ଅଘା ବା ଶକଟା ନୁହେଁ ଯେ ତୋ ହାତରେ ପ୍ରାଣ ଦେବି, ତତେ ଜୀଅନ୍ତା ବନ୍ଦୀ କରି କଂସରାଜାକୁ ଭେଟିଦେବି, ମଣି ମାଣିକ୍ୟରେ ସେ ମୋ ଅଂଜଳିପୂର୍ଣ୍ଣ କରି ଦେବ ।'

ଏଥର ମୋ ଆଖିରୁ ରହସ୍ୟର ପରଦା ଘୁଞ୍ଚିଗଲା । ମୁଁ କ୍ଷିପ୍ରହସ୍ତରେ ଦୁଇମୁଠା ଧୂଳି ସଂଗ୍ରହ କରି ତା' ଆଖିକୁ ଲକ୍ଷ୍ୟକରି ଫିଙ୍ଗି ଦେଲି । ସେ ତା' ଆଖି ଦୁଇଟିକୁ ଧୂଳିରୁ ରକ୍ଷା କରିବାପାଇଁ ମୋତେ ଛାଡ଼ିଦେଲା । ଠିକ୍ ସେଇ ସମୟରେ ସମସ୍ତ ପିଞ୍ଜରାବଦ୍ଧ ପକ୍ଷୀଙ୍କୁ ପିଞ୍ଜରାମୁକ୍ତ କରି ତା'ରି ଆଡ଼କୁ ଗୋଟି ଗୋଟି କରି ଛାଡ଼ିଲି । ମୁକ୍ତପକ୍ଷୀଗୁଡ଼ିକ ଧୂଳି ଝଡ଼ରେ ବିବ୍ରତ ହୋଇ ଆକାଶକୁ ଉଡ଼ିବାକୁ ଚେଷ୍ଟା ନକରି ତୃଣାବର୍ତ୍ତର ଦେହରେ,ମୁହଁରେ ଡେଣା ଝାଡ଼ିବାକୁ ଲାଗିଲେ । ଫଳରେ ମୁଁ ତା'ର ସମ୍ମୁଖଭାଗରୁ ପଶ୍ଚାଦ୍ ଭାଗକୁ ଚାଲିଆସି ପାରିଲି ଏବଂ ସୁଯୋଗର ଅପେକ୍ଷାରେ ରହିଲି । ସେ ଯେଉଁଠାରେ ଠିଆ ହୋଇ ମୋତେ ଖୋଜୁଥିଲା ତା'ର ଅଳ୍ପ ଦୂରରେ ଗୋଟିଏ ବୁଢ଼ା ଆମ୍ବଗଛ ଝଡ଼ରେ ଭାଂଗି ପଡୁଥିଲା । ମୁହୂର୍ତ୍ତକ ଭିତରେ ମୁଁ ଲକ୍ଷ୍ୟ ସ୍ଥିର କରି ସେହି ଭାଂଗି ପଡୁଥିବା ଡ଼ାଳ ତଳକୁ ତୃଣାବର୍ତ୍ତକୁ ପଛରୁ ଠେଲି ଦେଲି । ଭୟଙ୍କର ଆର୍ତ୍ତନାଦ କରି ତୃଣାବର୍ତ୍ତ ସେହି ଭଂଗା ଗଛ ଡାଳ ତଳେ ଚାପି ହୋଇ ମୃତ୍ୟୁ ବରଣ କଲା । ଝଡ଼ ଥମିବା ପର୍ଯ୍ୟନ୍ତ ନୀରବରେ ଅପେକ୍ଷା କଲି । ସେତେବେଳକୁ ଜ୍ୟେଷ୍ଠ ଭ୍ରାତା ବଳରାମ ଘରେ ପହଞ୍ଚି ମୋତେ ନଦେଖି ବ୍ୟଗ୍ର ବ୍ୟାକୁଳଭାବେ ପିତାଙ୍କ ସହ ମୋତେ ଖୋଜି ଖୋଜି ବୃନ୍ଦାବନକୁ ଚାଲିଆସିଲେ । ଦୂରରୁ ପିତାଙ୍କର 'ଗୋବିନ୍ଦ', 'ଗୋବିନ୍ଦ' ଡାକ ଶୁଭୁଥାଏ । ମୁଁ ପ୍ରତିଜବାବ ଦେବାର ଅଳ୍ପ ସମୟ ଭିତରେ ସେମାନେ ମୋ ପାଖରେ ପହଞ୍ଚିଗଲେ । ତୃଣାବର୍ତ୍ତର ମୃତଶରୀର ନିକଟରେ କାକୁସ୍ଥଭାବେ ମୋତେ ଠିଆ ହୋଇଥିବାର ଦେଖି ପିତା ପ୍ରଥମେ ତଟସ୍ଥ ହୋଇଗଲେ । ତାପରେ ଦୁଇ ବାହୁରେ ତାଙ୍କ କୋଳକୁ ମୋତେ ଉଠାଇ ନେଇ ମୋ ମୁହଁରେ ଅଜସ୍ର ଚୁମ୍ବନ ଆଂକି ଦେଲେ । ମା'ଙ୍କ ମାନସିକ ସଂଘାତ ଚରମ ପର୍ଯ୍ୟାୟରେ ପହଞ୍ଚିଥିଲା । ସେଦିନ ରାତିରେ ମା'ଙ୍କ କୋଳରେ ମୁଁ ପରମ ନିଶ୍ଚିନ୍ତରେ ନିଦ୍ରିତ ଥିବା ସମୟରେ ମୋର ରିଷ୍ଟ ଖଣ୍ଡନ ଓ ଗ୍ରହ ଶାନ୍ତି ପାଇଁ କେଉଁ କେଉଁ ବିଧାନ କରାଯାଇପାରେ ସେହି ଚିନ୍ତାରେ ମା' ସାରା ରାତି ଅତନ୍ଦ୍ର ରହିଥିଲେ ।

ଅଜସ୍ର କର୍ମଭଳି ସହସ୍ର ନାମ ମୋର । ଗୋପାଙ୍ଗନାଗଣ ସିଧାସଳଖ ମୋତେ 'ଲହୁଣୀ ଚୋର' ବୋଲି ଡାକୁଥିଲେ । କୈଶୋରରେ ଆଉ ଏକ ଦୋଷରେ ମଧ୍ୟ ଅଭିଯୁକ୍ତ

କରିଥିଲେ ସେମାନେ, ତା' ହେଉଛି ଗୋପୀମାନଙ୍କର 'ଚିତ୍ତ ଚୋର'। ଗୋପର ଗୋପାଳୁଣୀମାନଙ୍କର ସରଲବଣୀ ମୁଁ ବହୁବାର ଚୋରି କରିଛି । ଲବଣୀ ହାଣ୍ଡି ଭାଙ୍ଗି ଦେଇଛି ଓ ଭଙ୍ଗା ହାଣ୍ଡିରୁ ବହି ଆସୁଥିବା ନବନୀତକୁ ହାତରେ ଟୋଳି ଆଣି ମୋର କ୍ରୀଡ଼ାସାଥୀଙ୍କୁ ବାଣ୍ଟି ଦେଇଛି । ଗୋପୀଗଣ କ୍ରୋଧାନ୍ୱିତା ହୋଇ ମା'ଙ୍କ ଆଗରେ ଅଭିଯୋଗ କରନ୍ତି । ମା'ଙ୍କ ଭଣ୍ଡାରରେ ହାଣ୍ଡି ହାଣ୍ଡି ସର ନବନୀତ ଥିବା ସତ୍ୱେ ମୁଁ ଯେ ଚୌର୍ଯ୍ୟବୃତ୍ତି କରୁଛି ଏକଥା ମା' ଆଦୌ ସହିପାରନ୍ତି ନାହିଁ । ମା' ବେତ୍ରହସ୍ତରେ ମୋତେ ଦଣ୍ଡ ଦେବାପାଇଁ ଆଗେଇ ଆସନ୍ତି । ମୁଁ ଗୋପୀମାନଙ୍କୁ କହେ, 'ମୁଁ ଲହୁଣୀ ଖାଇଛି ?' ମା'ଙ୍କ କ୍ରୋଧ ଦେଖି ସେମାନେ ଫେରିଯା'ନ୍ତି । ଆନ୍ତରିକ ଭାବେ ସେମାନେ ଚାହାନ୍ତି ନାହିଁ ମୁଁ ଦଣ୍ଡ ପାଏ ବୋଲି । ସେମାନେ ଲେଉଟିଯିବା ପରେ ସୁଦ୍ଧା ମା'ଙ୍କ କ୍ରୋଧ ଶାନ୍ତ ହୁଏ ନାହିଁ । ଏ ବିଶ୍ୱବ୍ରହ୍ମାଣ୍ଡରେ ମୁଁ କାହାରିକୁ ଭୟ କରେ ନାହିଁ କେବଳ ମା'ଙ୍କ ଦଣ୍ଡକୁ ହିଁ ଭୟ କରେ । ମା'ଙ୍କର କ୍ରୋଧଦୀପ୍ତ ଗମ୍ଭୀର ମୁହଁକୁ ଚାହିଁବା ମାତ୍ରେ ମୋ ସୃଷ୍ଟି ଯେମିତି ପ୍ରଳୟ ହୋଇଯାଏ । ମା'ଙ୍କ ଆଖିକୁ ଚାହିଁ ମୁଁ ମିଥ୍ୟା ମଧ କହି ପାରେ ନାହିଁ, କହେ- 'ମୁଁ ଲହୁଣୀ ଖାଇଛି ।'

ମୋ ମୁହଁରୁ ସତକଥା ଶୁଣି ମା' ବେତ ତଳେ ପକାଇ ଦିଅନ୍ତି; କିନ୍ତୁ ତାଙ୍କ ରାଗ ଶାନ୍ତ ହୋଇନଥାଏ । ମୁଁ, ମା'ଙ୍କୁ ଦୁର୍ବଳ କରିବାପାଇଁ କହେ- 'ମୋତେ ଯେ ସକାଳ ପହରୁ ସଂଜ ଯାଏ ବଣରେ ଗାଈ ଜଗିବାକୁ ପଡୁଛି, ବଣସାରା ଏତେ ବୁଲି ବୁଲି ଭୋକ ହବ ନାହିଁକି ?'

ତଥାପି ମା' ନୀରବ ରହନ୍ତି । ମୁଁ ତାଙ୍କୁ ଟିକିଏ ଚାହେଁ ଓ ଶେଷ ଅସ୍ତ୍ର ନିକ୍ଷେପ କରେ, କହେ 'କ'ଣ ଟିକେ ଚୋରୀ କରି ଖାଇଦେଲି ବୋଲି ତୁମେ ଯେମିତି ରାଗୁଛ କୌଣସି ମା' ତା ଜନ୍ମିତ ପୁଅ ଉପରେ ଏମିତି ରାଗେ ନାହିଁ ।'

ବାସ୍ ! ଏତିକିରେ ମା'ଙ୍କ ଆଖି ଦୁଇଟି ଲୁହରେ ଭାସିଯାଏ । ମା' ମୋତେ ଛାତିରେ ଜାକି ଧରି ଆକୁଳ ଭାବେ କହିପକାନ୍ତି, 'ନାଇଁରେ କାହ୍ନୁ ସେମିତି କହନା । ତୁ ମୋ ପୁଅ- ମୋ ପୁଅ... ତାଙ୍କର ଅଶ୍ରୁ ବାଷ୍ପାଚ୍ଛନ୍ନ କଣ୍ଠରୁ ଆଉ ଅଧିକ ବାକ୍‌ସ୍ଫୁର୍ତ୍ତି ହୁଏ ନାହିଁ ।

ଥରେ ଥରେ କିନ୍ତୁ ମା'ଙ୍କ ଦ୍ୱାରା ଦଣ୍ଡିତ ହେବାର ପ୍ରଲୋଭନକୁ ମୁଁ ଏଡ଼ାଇପାରେ ନାହିଁ । ସମଗ୍ର ଗୋପପୁରରେ ଗହଳ ଚହଳ ସୃଷ୍ଟି କରି ଗୋପାଳ ବାଳକଙ୍କ ଗହଣରେ ନିର୍ବାଧରେ, ସ୍ୱଚ୍ଛନ୍ଦରେ ମୋ ଦିନଗୁଡ଼ିକ ଅତିକ୍ରାନ୍ତ ହେଉଥିଲା । ଏମିତି କୌଣସି ଦିନ ନଥିଲା ଯେଉଁଦିନ ମୋ ନାଁରେ କିଛି ଅଭିଯୋଗ ମା'ଙ୍କ ପାଖରେ ପହଞ୍ଚୁ ନଥିଲା । ସେଦିନ ବି କିଛି ଲହୁଣୀ ଚୋରୀର ଅଭିଯୋଗ ଧରି ଗୋପୀଗଣ ମା'ଙ୍କ ପାଖରେ ପହଞ୍ଚିଗଲେ । ମା'ମୋତେ ପଚାରିବାରୁ ମୁଁ ବି ସଜୋରେ ପ୍ରତିବାଦ କରି କହିଲି-'ଦେଖୁନ ମୋ ପାଟି' ?

ମା' ଭୟଭୀତା ହୋଇ କହିଲେ-'ନାଇଁରେ କାହ୍ନୁ ତୋ ପାଟି ଭିତରକୁ ମୋର ଭାରୀ ଭୟ । ତୋ ପାଟି ଭିତରେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ଲୁଚି ରହିଲାଭଳି ମୋର ମନେ ହୁଏ । ଏତେ ସେତେ କଥା ନାହିଁ । ମୋ କାମ ସରିବା ପର୍ଯ୍ୟନ୍ତ ଚାଲ୍ ତତେ ମୁଁ ବାନ୍ଧି ରଖିବି । ଦେଖିବି ତୁ କେମିତି କୁଆଡ଼େ ଯିବୁ ?'

ମୁଁ ମନେ ମନେ କହିଲି-'ମା ଗୋ ! ତୁମ ଭଳି ଜନନୀଟିଏ ଜନ୍ମେ ଜନ୍ମେ ମୋତେ ମିଳୁଥାଉ । ତୁମେଯେ ମୋତେ 'ଭାବ' ରେ ବାନ୍ଧି ରଖିଚ,ସେ କଥା ନିଜେବି ଜାଣି ନାହଁ। ଦଉଡ଼ିର ପ୍ରୟୋଜନ ନାହିଁ ମା', ତମର ପଦଟିଏ ସ୍ନେହ ବୋଳା କଥାରେ ମୁଁ ଯୁଗରୁ ଯୁଗାନ୍ତରଯାଏ ବନ୍ଧାହୋଇ ରହି ପାରିବି,ସେ ବନ୍ଧନରୁ ମୁଁ ମୁକ୍ତି ମଧ୍ୟ ଚାହେଁ ନାହିଁ, ତଥାପି ତୁମର ଯଦି ଦଉଡ଼ି ଖଣ୍ଡେର ପ୍ରୟୋଜନ ଅଛି ତେବେ ବାନ୍ଧ ମୋତେ ।

ମା'ମୋ ଅଣ୍ଟାରେ ଦଉଡ଼ି ବାନ୍ଧି ମୋତେ ଟାଣି ଟାଣି ବାଡ଼ିପଟକୁ ନେଇଗଲେ । ମା'ମୋତେ ପ୍ରତ୍ୟହ ଫୁଲରେ ସଜାନ୍ତି ବୋଲି ତମାଳ, କର୍ଣ୍ଣିକାର, ମାଳତୀ,ଦୟଣା, କଦମ୍ବ, କୃଷ୍ଣଚୂଡ଼ା,କରବୀର, ଅର୍ଜ୍ଜୁନ ଭଳି ଅନେକଗୁଡ଼ିଏ ବୃକ୍ଷରେ ସେ ସ୍ଥାନଟି ଛାୟାଛନ୍ନ । ଗୋଟିଏ ଯାଆଁଳା ବୁଢ଼ା ଅର୍ଜ୍ଜୁନ ଗଛରେ ଆଉ ଫୁଲ ଫୁଟୁନଥାଏ । ମା'ମୋତେ ସେଇ ଗଛରେ ବାନ୍ଧି ଦେଲେ ।

ଗୋପାଳୁଣୀଙ୍କର ଅଭିଯୋଗ ମୋତେ ବାଧୁନଥିଲା, ମାତ୍ର ସେମାନଙ୍କର ଦରଦ ମୋତେ ଭୀଷଣ ଲଜ୍ଜିତ କଲା । ଆମର ସେହି ପୁଷ୍ପୋଦ୍ୟାନ ଭିତର ଦେଇହିଁ ଯମୁନାକୁ ଯିବାକୁ ହୁଏ । ସୁତରାଂ ଜଳାଥିନୀ ସମସ୍ତ ଗୋପାଙ୍ଗନା ମୋର ଏ ଦୁର୍ଦ୍ଦଶା ଦେଖିଲେ । ଶ୍ରୀଦାମ, ସୁଦାମ, ମଧୁମଙ୍ଗଳ ପ୍ରଭୃତି ସଖାଗଣ ମା'ଙ୍କ କ୍ରୋଧ ଭୟରେ ବୃନ୍ଦାବନର କଦମ୍ବ ଶାଖାରେ ଲୁଚି ବସିଥା'ନ୍ତି । ସୂର୍ଯ୍ୟତାପ କ୍ରମଶଃ ପ୍ରଚଣ୍ଡ ହେଉଥାଏ । ମା'ଙ୍କର ସେହି ମିଥ୍ୟା ବନ୍ଧନରୁ ମୁକ୍ତି ପାଇଁ ମୁଁ ଅବିରତ ଚେଷ୍ଟା ଚଳେଇ ଥାଏ । ଅକସ୍ମାତ୍ ଏକ ଭୟଙ୍କର ଶବ୍ଦରେ ମୋର ଯେମିତି ବାହ୍ୟଜ୍ଞାନ ଲୋପ ପାଇଗଲା । ଯେମିତି ଏକ ଅର୍ଦ୍ଧଚେତନ ସ୍ତରରେ, ଏକ ସ୍ୱପ୍ନର ଇଲାକାରେ ମୁଁ ପହଞ୍ଚି ଗଲି । ମୁଁ ଅନୁଭବ କଲି ମୋ ପଦପ୍ରାନ୍ତରେ ଦୁଇଜଣ ସୁଦର୍ଶନ ଯୁବକ ବିନମ୍ର ଭାବ ପ୍ରଣତି ଜଣାଇ କହୁଛନ୍ତି-'ପ୍ରଭୁ ! ଏତେ କାଳ ପରେ କୃପାହେଲା ? ଆମେ ଦୁହେଁ କୁବେର ତନୟ । ଆଜି ଆମର ଶାପ ମୁକ୍ତିର ସମୟ ଉପସ୍ଥିତ । ଆମକୁ ଅନୁମତି ଦିଅନ୍ତୁ । ଦିବ୍ୟବିମାନ ପହଞ୍ଚିଗଲାଣି । ଆମେ ସ୍ୱର୍ଗପୁରକୁ ଲେଉଟି ଯିବୁ ।'

ତାପରେ ହଟଗୋଳ ଭିତରେ ମୁଁ ଚେତନସ୍ତରକୁ ଲେଉଟି ଆସିଲି । ସେ ସ୍ଥାନଟି ଜନାକୀର୍ଣ୍ଣ ହୋଇ ଉଠିଥିଲା । ବୁଢ଼ା ଯାଆଁଳା ଅର୍ଜ୍ଜୁନ ବୃକ୍ଷଟି ସମୂଳେ ଉତ୍ପାଟିତ ହୋଇ ଭାଂଗି

ପଡ଼ିଥିଲା । ମା' ମୋତେ ବକ୍ଷରେ ଚାପିଧରି ନିଜର କୃତକର୍ମ ପାଇଁ ନିଜକୁ ଦୋଷାରୋପ କରୁଥିଲେ ।

ସେହି ଜନଗହଳି ଭିତରେ ଏକ ଅପୂର୍ବ ଦୃଶ୍ୟ ଦୃଷ୍ଟିଗୋଚର ହେଲା, ଯାହାର ସ୍ମରଣ ମାତ୍ରେ ଆଜିବି ମୋ ତନୁରେ ରୋମାଞ୍ଚନ ସୃଷ୍ଟି ହେଉଛି । ରକ୍ତବାହୀ ଶିରା ସବୁ ଉତ୍ତାଳ ହୋଇ ଉଠୁଛି, ପ୍ରାଣର କେଉଁ ନିଭୃତ କନ୍ଦରରେ ଏକ ମଧୁର ମୂର୍ଚ୍ଛନା ସୃଷ୍ଟି ହେଉଛି । ପୁଷ୍ପିତା ବ୍ରତତୀ ଭଳି ନୀଳାମ୍ବର ପରିହିତା ଏକ କିଶୋରୀ କନ୍ୟା, ଛାଇଢଙ୍କା ହ୍ରଦରେ ନୀଳକଇଁର ପାଖୁଡ଼ାଭଳି ତା'ର ଦୁଇଟି ଆୟତ ଚକ୍ଷୁ...... ବାସ ! ଆଉ କିଛି ମୁଁ ଦେଖିନାହିଁ ସେତେବେଳେ । ମା' ଓ ପୂର୍ଣ୍ଣମାସୀ ଆଈ ମୋତେ ଆଲିଙ୍ଗନାବଦ୍ଧ କରି ଘରକୁ ନେଇଆସୁଥିଲେ । ଶୁକ୍ଳବେଶ ସମନ୍ୱିତା, ଶୁକ୍ଳାମ୍ବରା ପୂର୍ଣ୍ଣମାସୀ ଆଈ ବୟୋଜ୍ୟେଷ୍ଠା; କିନ୍ତୁ ସୁରସିକା । ମା'ଙ୍କୁ ନଶୁଭିବାଭଳି ମୁଁ ଆଈଙ୍କୁ ପ୍ରଶ୍ନ କଲି - 'ସେ ଝିଅଟି କିଏ ? ସିଏତ ଆମ ଗୋପ ଗ୍ରାମର ନୁହେଁ ।'

ଆଈ ରହସ୍ୟମୟ ଭାବେ ହସିଲେ, କହିଲେ 'ପ୍ରଥମ ଦେଖାରୁ ସର୍ବସ୍ୱାନ୍ତ ହେଇଗଲୁଣି ? ସିଏ ବୃଷଭାନୁ ଦୁହିତା । ଏଇ ପାର୍ଶ୍ୱବର୍ତ୍ତୀ ଗ୍ରାମର ।'

ମୁଁ ସେ ଝିଅଟିକୁ ଆଉଥରେ ଦେଖିବାର ପ୍ରଲୋଭନକୁ ଏଡେଇ ପାରିଲି ନାହିଁ । ସେ କିନ୍ତୁ ଜନଗହଳିରେ ଅଦୃଶ୍ୟ ହୋଇ ସାରିଥିଲା ।

●

## ।। ତୃତୀୟ ଗ୍ରନ୍ଥିମୋଚନ ।।

ରାଜାଯଦି ଅତ୍ୟାଚାରୀ, ବ୍ୟଭିଚାରୀ ବା ବିଶୃଙ୍ଖଳ ହୁଏ ତେବେ ତାର ରାଜତ୍ୱରେ ସର୍ବତ୍ର ବିଶୃଙ୍ଖଳା ପରିବ୍ୟାପ୍ତ ହୁଏ । ତା'ର ଅନୁଚର ଗଣ ସ୍ୱେଚ୍ଛାଚାରୀ ହୋଇ ଉଠନ୍ତି ଓ ଦୁର୍ବଳ ପ୍ରଜାର ନିରାପତ୍ତା ବିପନ୍ନ ହୁଏ । ଦେବକୀଙ୍କର ଅଷ୍ଟମଗର୍ଭର ନିରୁଦ୍ଦିଷ୍ଟ ସନ୍ତାନ ଗୋପଭୂମିରେ ଆତ୍ମଗୋପନ କରିଛି- ଏଇ ଆଶଙ୍କାରେ ଗୋପଭୂମି ତଥା ଗୋପବାସୀ ଦୀର୍ଘ ଦ୍ୱାଦଶବର୍ଷ କାଳ କଂସ ନରେଶର ସନ୍ଦେହ ବଳୟରେ ରହିଥିଲେ । କଂସ ରାଜ୍ୟରେ କେଉଁଠି କିଛି ଆଭ୍ୟନ୍ତରୀଣ ବିଶୃଙ୍ଖଳା ହେଲେ ଗୋପର କେତେଜଣ ପ୍ରମୁଖବ୍ୟକ୍ତିଙ୍କୁ କଂସ ଧରିନେଇ କିଛିଦିନ ପାଇଁ ଅଟକେଇ ରଖୁଥିଲା ଓ ତା'ର ଅନୁଚରଗଣ ସେମାନଙ୍କ ଉପରେ ଯଥେଚ୍ଛା ଅତ୍ୟାଚାର କରୁଥିଲେ । କଂସର ଏଇ ଯଥେଚ୍ଛାଚାରିତାର ସୁଯୋଗ ନେଇ ନାଗବଂଶୀ 'କାଳୀୟ' ସ୍ୱଚ୍ଛତୋୟା କାଳିନ୍ଦୀ ହ୍ରଦର ଜଳରାଶିକୁ ଦୂଷିତ ଓ ବିଷାକ୍ତ କରି ରଖିଥିଲା । କୃଷି ସଂପଦ ଉପରେ ଯେତେ ବେଶି ନୁହେଁ ଗୋ ସଂପଦ ଉପରେ ଗୋପବାସୀଗଣ ଅଧିକ ନିର୍ଭରଶୀଳ ଥିଲେ । ଏହି ଗୋ ସଂପଦ ଅଜ୍ଞତା ବଶତଃ ଅନେକ ସମୟରେ ତୃଷାନିବାରଣ

ନିମିତ୍ତ କାଳିନ୍ଦୀ ହ୍ରଦରେ ପ୍ରବେଶ କରି ବିଷାକ୍ତ ଜଳପାନ କରି ଅକାଳରେ ମୃତ୍ୟୁ ବରଣ କରୁଥିଲେ । ଗୋ ସଂପଦର ପରିମାଣ କ୍ରମଶଃ ହ୍ରାସପ୍ରାପ୍ତ ହେଉଥିଲା । ତଥାପି ଏକ ପକ୍ଷରେ କଂସର ଉପେକ୍ଷା, ତୁଚ୍ଛତାଚ୍ଛିଲ୍ୟ, ଅନ୍ୟପକ୍ଷରେ ବିଷଧର କାଳୀୟର ଆତଙ୍କ ଗୋପବାସୀଙ୍କୁ ତଟସ୍ଥ କରି ରଖିଥିଲା ।

ମୁଁ ସବୁ ସହିପାରେ ହେଲେ ମା' ଆଖିର ଟୋପାଏ ଲୁହ ସହିପାରେ ନାହିଁ । ମା' ଆଖିର ଟୋପାଏ ଲୁହ ମୋ ହୃଦୟରେ ଶୋକର ଅଥଳ ସମୁଦ୍ର ସୃଷ୍ଟି କରେ ।

ଗତ ଦୁଇ ଦିନ ଧରି ଆମର 'ଶ୍ୟାମଳା' ନାମ୍ନୀ ଛଡ଼ାଟି ନିଖୋଜ୍ ହୋଇଥାଏ । ବଂଶୀ ବଜାଇ, ବଂଶୀର ତାଳେ ତାଳେ ନାଚି ନାଚି ପଶୁପକ୍ଷୀଙ୍କୁ ମନ୍ତ୍ରମୁଗ୍ଧ କରିବା ମୋର ଏକ ସୌଖୀନ୍ ବିଳାସ ଥିଲା । ମୋର ବଂଶୀସ୍ୱନ ଶୁଣିବାମାତ୍ରେ ଶ୍ୟାମଳା, ଶ୍ୱେତା, କଇଁ, ତପନ, କୋମଳ ପ୍ରଭୃତି ଗାଈ ବାଛୁରୀଗଣ ଯେଉଁଠି ଥା'ନ୍ତୁନା କାହିଁକି ମୋ ଚାରିପଟେ ବେଢ଼ି ଯାଆନ୍ତି ଓ ନୀରବରେ କଅଁଳ ଦୁବଘାସ ପାକୁଳି କରୁ କରୁ ମୁରଲୀ ଧ୍ୱନିକୁ ଉପଭୋଗ କରନ୍ତି । ସେଦିନ ମୋର ସମସ୍ତ ଚେଷ୍ଟା ବ୍ୟର୍ଥ ହୋଇଥାଏ । ଶ୍ୟାମଳା ଫେରିନଥାଏ । ପିତା ନନ୍ଦ ଓ ଜନନୀ ଉଭୟେ ଦୁଇଦିନ ଧରି ଉପବାସ ଥା'ନ୍ତି । ଶ୍ୟାମଳା ପାଇଁ ମୁଁ ବୃନ୍ଦାବନରେ ଅନେକ ଖୋଜା ଖୋଜି ପରେ ଫେରିଆସି ଦେଖିଲି ଜ୍ୟେଷ୍ଠ ଭ୍ରାତା ବଳରାମ ସେଇମାତ୍ର ଶ୍ୟାମଳାର ମୃତଦେହକୁ କାଳିନ୍ଦୀ ହ୍ରଦରୁ ଉଦ୍ଧାର କରି ସ୍କନ୍ଧରେ ବହନ କରି ଆଣି ଆମ ଦାଣ୍ଡରେ ପକେଇଥା'ନ୍ତି । ଶ୍ୟାମଳାର ବିଷଦଗ୍ଧ ଶରୀର ନୀଳବର୍ଣ୍ଣ ହୋଇଯାଇଥାଏ, ଆଖି ଡୋଳା ଦୁଇଟି ଲେଉଟି ପଡ଼ିଥାଏ, ନାକ ଓ ପାଟିରେ କିଛି ରକ୍ତ ଓ ଫେଣ ଲାଗି ରହିଥାଏ । ମା' ଶ୍ୟାମଳାର ଶରୀରକୁ କୋଳାଗ୍ରତ କରି ନୀରବରେ ଆଉଁଷୁଥା'ନ୍ତି । ତାଙ୍କର ବାକ୍‌ସ୍ଫୁରଣ ରହିତ ସ୍ଫୁରିତ ଓଷ୍ଠାଧାର, ନାସାଗ୍ର ଓ ଅଶ୍ରୁ ଟଳମଳ ନୟନ ଦିଓଟିକୁ ଦେଖିବାମାତ୍ରେ ମୋ ଭିତରେ ଯେମିତି ଏକ ମହାପ୍ରଳୟ ସଂଘଟିତ ହୋଇଗଲା ମୁହୂର୍ତ୍ତକରେ । ମୋ ରକ୍ତବାହୀ ଧମନୀରେ ଯେମିତି ବେଗବାନ୍ ଅଶ୍ୱର କ୍ଷିପ୍ରତା । ମୁଁ ମନେ ମନେ ସଂକଳ୍ପବଦ୍ଧ ହେଲି ସେହି ମୁହୂର୍ତ୍ତରେ ଯେ ଜୀବନ ବିନିମୟରେ ସୁଦ୍ଧା ମୁଁ କାଳିନ୍ଦୀ ଜଳକୁ ବିଷମୁକ୍ତ କରିବି, କାଳୀୟର ଏ ଗର୍ବକୁ ଦମନ କରିବି, ଦଳନ କରିବି ।

ପ୍ରକାଶ କରିବା ବାହୁଲ୍ୟ ମୋ ପ୍ରତିଜ୍ଞା ମୁଁ ପାଳନ କରିଛି କାଳୀୟ ନାଗକୁ ଦଳନ କରି । ମୋ କୈଶୋରର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଘଟଣା ହେଲା ଗୋପରେ ଇନ୍ଦ୍ରୋତ୍ସବ ବନ୍ଦ । ଏହା ଯେତିକି ବୈପ୍ଳବିକ ସେତିକି ଦୁଃସାହସିକ ପଦକ୍ଷେପ ବୋଲି ସେ ସମୟରେ ସମଗ୍ର ଆର୍ଯ୍ୟାବର୍ତ୍ତରେ ଚର୍ଚ୍ଚିତ ହେଉଥାଏ ।

ଯଦିଓ ଗୋପବାସୀଙ୍କ ଜୀବନ ସର୍ବଦା ଆନନ୍ଦ ମୁଖର ମହୋତ୍ସବମୟ ଏହି

ସରଳଚିତ୍ତ ବ୍ୟକ୍ତିଗଣ ଆନନ୍ଦକୁ ଯେଉଁଭଳି ପୂର୍ଣ୍ଣପ୍ରାଣରେ ଉପଭୋଗ କରୁଥିଲେ, ଦୁଃଖକୁ ସେହିଭଳି ପୂର୍ଣ୍ଣପ୍ରାଣରେ ଅନୁଭବ କରୁଥିଲେ । ଇନ୍ଦ୍ରୋତ୍ସବ ଏକ ବ୍ୟୟବହୁଳ ଉତ୍ସବ । ଏହି ଉତ୍ସବର ବ୍ୟୟଭାର ବହନ କରି ଗୋପର ଗୋପାଳଗଣ ଇନ୍ଦ୍ରୋତ୍ସବ ପରେ ପରେ ଅନେକ ଦିନ ପର୍ଯ୍ୟନ୍ତ କଷ୍ଟକର ଜୀବନ୍ ବରଣ କରୁଥିଲେ । ଇନ୍ଦ୍ରଭଳି ଏକ ଅହଂ ସର୍ବସ୍ୱ ଦେବତାର ପୂଜା କାହିଁକି ଯେ ଏଭଳି ଆଡ଼ମ୍ବର ସହକାରେ ପାଳିତ ହେଉଥିଲା ତା' ମୁଁ ବୁଝିପାରୁନଥିଲି । ଇନ୍ଦ୍ର ଦେବତାଙ୍କର ରାଜା ସତ, ମାତ୍ର ତା'ର ନୈତିକ ଅଧଃପତନର ସୀମା ନାହିଁ ! ତା'ର ନୈତିକ ସ୍ଖଳନର କଦର୍ଯ୍ୟ ଇତିହାସ ଯୁଗ ଯୁଗ ପାଇଁ ଦେବସଭ୍ୟତାକୁ କଳୁଷିତ କରିଛି । ମୁନି ଗୌତମଙ୍କର ଅସାମାନ୍ୟା ରୂପସୀ ପତ୍ନୀ ଅହଲ୍ୟାଙ୍କ ସହ ଯେଉଁଭଳି କପଟାଚରଣ କରିଛି ତା'ର କଳଙ୍କିତ ସ୍ମୃତିର ସ୍ୱାକ୍ଷର ତ କୌଣସିଦିନ ଲିଭିବାର ନୁହେଁ । ଦେବରାଜ ନିଜେ ଯେହେତୁ କଳଙ୍କମୁକ୍ତ ନୁହେଁ, ତା'ର ଏଇ ଦୁର୍ବଳତାର ସୁଯୋଗ ନେଇ ସମଗ୍ର ଦେବ ସଭ୍ୟତା ଯେମିତି ଅନୀତି ଓ ଭ୍ରଷ୍ଟାଚାରକୁ ପ୍ରଶ୍ରୟ ଦେଇ ଆସିଛି, ପ୍ରବଞ୍ଚନାର ଚୋରାବାଲି ଉପରେ ଯେମିତି ଠିଆ ହୋଇଛି, ବିଶ୍ୱାସର ମୂଳଦୁଆ ଯେ କୌଣସି ମୁହୂର୍ତ୍ତରେ ଭୁଷୁଡ଼ି ପଡ଼ିବାର ସମ୍ଭାବନା ରହିଛି ।

ଇନ୍ଦ୍ର ଏଭଳି ଏକ ଦେବତା ଯାହାର ପଦ ପଦବୀର ମୋହ ପ୍ରଚଣ୍ଡ । ଏହି ଅହଂ ସର୍ବସ୍ୱ, କ୍ଷମତା ଲୋଭୀ, ଦୁର୍ବଳ ଚିତ୍ତ ଦେବତାଟି ପ୍ରତି ମୁହୂର୍ତ୍ତରେ ତା'ର ଇନ୍ଦ୍ରାସନ ହାତଛଡ଼ା ହୋଇଯିବା ଆଶଙ୍କାରେ ଶଙ୍କିତ । ଇନ୍ଦ୍ରାସନରେ ଯେମିତି ତାର ଏକଚାଟିଆ ଅଧିକାର ! ସେଥିପାଇଁ ତ୍ରିଭୁବନରେ ଦେବ, ଦାନବ, ଯୋଗୀ, ଋଷି, ଯକ୍ଷ, କିନ୍ନର କାହାଠାରେ କୌଣସି ସଦ୍‌ଗୁଣର ସନ୍ଧାନ ପାଇଲେ ସେ ଖୁସି ହେବା ପରିବର୍ତ୍ତେ ବିଚଳିତ ହୋଇଉଠେ, ପୁଣି ଅଧିକ ହୀନମନ୍ୟତାର ପରିଚୟ ଦେଇ ସେହି ସଦ୍‌ଗୁଣଶାଳୀ ବ୍ୟକ୍ତିତ୍ୱକୁ ଭୂଲୁଣ୍ଠିତ କରିବାପାଇଁ ନିହାତି କଦର୍ଯ୍ୟ, ନୀଚ ଷଡ଼ଯନ୍ତ୍ରରେ ଲିପ୍ତ ହୋଇଯାଏ । କେହି ଯଦି ଆତ୍ମଶୁଦ୍ଧି ନିମିତ୍ତ ତପସ୍ୟା କରେ, ତେବେ ଇନ୍ଦ୍ରର ଧାରଣା ହୁଏ ସିଦ୍ଧି ଲାଭର ପରମ ଲଗ୍ନରେ ସେ ହୁଏତ ଇନ୍ଦ୍ରାସନ ମାଗି ବସିବ ! ହୁଁଃ ! ମୋହାନ୍ଧ ଦେବେଶ ! କୌଣସି ତପସ୍ୱୀ ଯଦି କଠୋର ତପଶ୍ଚାରଣ କରୁଥାଏ ତେବେ ତା'ର ତପୋଭଙ୍ଗ କରିବା ପାଇଁ ସମସ୍ତ ନୀଚ କୌଶଳ ଇନ୍ଦ୍ର ଆରମ୍ଭ କରିଦିଏ । ଏମିତିକି ଊର୍ଦ୍ଧ୍ୱରେତା ମୁନିର ତପୋଭଙ୍ଗ ନିମିତ୍ତ ଦେବଭୋଗ୍ୟା, ଗଣବଧୂ ଅପ୍‌ସରା ମାନଙ୍କୁ ମଧ୍ୟ ଏହି ନୀଚ ଷଡ଼ଯନ୍ତ୍ରରେ ନିଯୁକ୍ତ କରିଦିଏ । ଜଣେ ଊର୍ଦ୍ଧ୍ୱରେତା ମୁନିର ତପସ୍ୟାର ସିଦ୍ଧି ତୁଳନାରେ ଇନ୍ଦ୍ରପଦ କେତେ ତୁଚ୍ଛ ! ତଥାପି ମୁନି ବିଶ୍ୱାମିତ୍ରଙ୍କର ସିଦ୍ଧିର ପରମ ଲଗ୍ନର ଅବ୍ୟବହିତ ପୂର୍ବରୁ ଇନ୍ଦ୍ର ସ୍ୱର୍ଗର ଅପ୍‌ସରା ମେନକାଙ୍କୁ ପ୍ରେରଣ କରି ଯେଉଁଭଳି ଭାବରେ ମୁନିଶ୍ରେଷ୍ଠ ବିଶ୍ୱାମିତ୍ରଙ୍କୁ ଉପହସିତ କରାଇଲା ତାହା ଚିନ୍ତା କରିବାମାତ୍ରେ ସମଗ୍ର ଦେବସଭ୍ୟତା ପ୍ରତି ବିଦ୍ୱେଷରେ ମୋର ପ୍ରାଣ ତିକ୍ତ ହୋଇଯାଏ । ଇନ୍ଦ୍ର ଭଳି ଏକ ଅହଂ ସର୍ବସ୍ୱ ଦେବତାର ଅନମନୀୟତା ଅସହ୍ୟ !

ତା' ଅପେକ୍ଷା ବରଂ ଗୋପବାସୀ ପ୍ରକୃତିକୁ କାହିଁକି ଆରାଧନା କରିବେ ନାହିଁ ? ନଦୀ, ନିର୍ଝର, ଗିରି, ଅରଣ୍ୟ, ପୃଥିବୀ ମାତା ସର୍ବୋପରି ଆକାଶ-ଏମାନେ କ'ଣ ପୂଜାର ଅଯୋଗ୍ୟ ? ତେବେ ମୋର ଏ ଚିନ୍ତାଧାରା କାହାକୁ ବା ବୁଝାଇବି ? ଗୋପବାସୀଙ୍କ ପାଇଁ ବିପ୍ଳବ ଠାରୁ ସଂସ୍କାର ବଡ଼, ନୂତନତା ଠାରୁ ପରମ୍ପରା ବଡ଼ । ପ୍ରଥାସିଦ୍ଧ ପରମ୍ପରାର ବିରୁଦ୍ଧାଚରଣ ସେମାନେ କେବେହେଲେ କରିବେ ନାହିଁ ।

ସୁତରାଂ ଯେତେବେଳେ ଘରେ ଘରେ ଇନ୍ଦ୍ରପୂଜାର ଆୟୋଜନ ଚାଲିଥାଏ ସେତେବେଳେ ମୁଁ ସଂପୂର୍ଣ୍ଣ ଏକାକୀ ବୃନ୍ଦାରଣ୍ୟରେ କଦମ୍ବର ଏକ ସୁପୁଷ୍ଟ ଶାଖାରେ ଶୋଇରହି ଅନନ୍ୟମନସ୍କ ଭାବେ ଆକାଶକୁ ଚାହିଁ ରହିଥାଏ । ସାଗର, ପୃଥିବୀ, ନଦୀ, ନିର୍ଝର ସମସ୍ତଙ୍କର ଇତିହାସ ଅଛି, ଭୂଗୋଳ ଅଛି, ସୀମା ପରିସୀମା ଅଛି । ହେଲେ ଆକାଶର ଇତିହାସ, ଭୂଗୋଳ, ସୀମା, ପରିସୀମା କିଛି ନାହିଁ । ଅନନ୍ତ ଶୂନ୍ୟତା.......ଅସୀମ ତା'ର ବ୍ୟାପ୍ତି । ମୁଁ ଚିରକାଳ ପ୍ରକୃତିର ସ୍ତାବକ । ଆକାଶର ଅନନ୍ତ ନୀଳିମାକୁ ମୁଁ ତନ୍ମୟ ଭାବରେ ଚାହିଁ ରହିଥିଲି ! କଦମ୍ବର ଶାଖାରେ ଶାଖାରେ ଫୁଲର ମହୋତ୍ସବ, ସୁରଭିର ବିପଣୀ, ବୃକ୍ଷ ଶାଖାରେ ପୁଚ୍ଛ ବିସ୍ତାର କରି ବସି ରହିଥିବା ମୟୂର ଉତ୍ତରାକାଶରେ ଏକ ମେଘଖଣ୍ଡକୁ ଦେଖି ନୃତ୍ୟ ରଚନା ପାଇଁ ପ୍ରସ୍ତୁତ ହେଉଥିଲା । ଋତୁ ବର୍ଷା, ପୂର୍ଣ୍ଣଗର୍ଭା ଯମୁନା ନଦୀରେ ଜଳୋଚ୍ଛ୍ୱାସର କଳଗୀତି । ଏସବୁର ସମାହାରରେ ମୋର ଆତ୍ମସତ୍ତା ନିମଗ୍ନ ହୋଇ ଯାଇଥିଲା ଯେମିତି, ଠିକ୍ ଏଇ ସମୟରେ ମୋର ସଖା ସୁଦାମର ପ୍ରଶ୍ନରେ ମୋର ମଧୁର ମୁଗ୍ଧତା ଭାଂଗିଗଲା । ସେ ପଚାରିଲା-'ହଇରେ ଶ୍ୟାମ ! ସମଗ୍ର ଗୋପବାସୀ ଆନନ୍ଦରେ ଉନ୍ମତ୍ତ । ରାତି ପାହିଲେ ଇନ୍ଦ୍ରପୂଜା । ଅଥଚ ତୁ ଏଠି ଏକା କ'ଣ ଚିନ୍ତା କରୁଛୁ ?'

ମୁଁ ଉଠିବସି ଅଳସ ଭାଂଗିଲି । ତାପରେ ଅଳ୍ପହସି ଦେଇ କହିଲି-'ଇନ୍ଦ୍ରର ପୂଜା ? କାହିଁକି ? ଆମେତ ଇନ୍ଦ୍ରର ପ୍ରଜା ନୁହେଁ ! ତୁ କହ ସଖା ! ଏ ପବିତ୍ର ଭୂମିର ସୁଖ ଶାନ୍ତି ପଛରେ ଇନ୍ଦ୍ରର କୌଣସି ଅବଦାନ ଅଛିକି ? ଇନ୍ଦ୍ର ପୂଜା ପଛରେ ଭୟ ଥାଇପାରେ କିନ୍ତୁ ଆନ୍ତରିକ ଭକ୍ତି ବା ଶ୍ରଦ୍ଧା ନାହିଁ । ଯେଉଁ କାର୍ଯ୍ୟରେ ଆନ୍ତରିକ ଅନୁମୋଦନ ନାହିଁ, ସେଭଳି କାର୍ଯ୍ୟ ମୁଁ କରିବି କାହିଁକି ? ତା'ଛଡ଼ା ମୋର ଦେଶ ମାତୃକାକୁ ଯୁଗ ଯୁଗ ଧରି ଯିଏ ଫୁଲରେ, ଫଳରେ, ଶସ୍ୟରେ, ସୁଖରେ, ଶାନ୍ତିରେ, ଐଶ୍ୱର୍ଯ୍ୟରେ, ଜଳ ଓ ଆଲୋକରେ, ଉତ୍ତାପ ଓ ପବନରେ ଅକୃପଣ ଉଦାର ଭାବେ ସଜେଇ ଆସିଛି ମୁଁ ସେହି ପ୍ରକୃତିର ଏକ ଅଂଶ ବିଶେଷ ଗିରିଗୋବର୍ଦ୍ଧନ, ଯମୁନା ନଦୀ ବା ଅରଣ୍ୟାନୀ ଏମାନଙ୍କୁ କାହିଁକି ଆରାଧନା କରିବି ନାହିଁ ?'

ମୋର ଏହି ବକ୍ତବ୍ୟ ସୁଦାମ ମାଧ୍ୟମରେ ଯେତେବେଳେ ଗୋପରେ ପ୍ରଚାରିତ ହେଲା, ନବୀନ ଗୋଷ୍ଠୀଙ୍କ ପାଇଁ ଏହି ଯୁକ୍ତି ଅକାଟ୍ୟ ବୋଲି ମନେ ହେଲା । ସେମାନେ

ସଂଘବଦ୍ଧଭାବେ ମୋ ନିକଟରେ ଆସି ପହଞ୍ଚିଗଲେ ଓ ଇନ୍ଦ୍ରପୂଜା କରିବେ ନାହିଁ ବୋଲି ଶେଷ ନିଷ୍ପତ୍ତି ମଧ୍ୟ ଜଣାଇ ଦେଲେ । ପ୍ରାଚୀନ ପନ୍ଥୀଗଣ କିନ୍ତୁ ଜରାହତ, ଭୟାର୍ତ୍ତ । ପରଂପରାର ବିରୁଦ୍ଧାଚରଣ କରିବାକୁ ସେମାନେ ସାହସ କଲେ ନାହିଁ କାରଣ ସେମାନଙ୍କ ଶରୀର ଭଳି ମନର ବଳ ମଧ୍ୟ ଶୀଥିଳ ହୋଇଆସିଥାଏ । ପ୍ରାଣ ପ୍ରାଚୁର୍ଯ୍ୟର ଉଦ୍ଦାମତା, ଚଞ୍ଚଳତା ସେମାନଙ୍କଠାରେ ଆଶା କରିବା ବୃଥା ।

ମୋର ଆଦ୍ୟ କୈଶୋରରେ ବିପ୍ଳବର ସେହି ପ୍ରଥମ ସ୍ଫୁଲିଙ୍ଗ ଗୋପବାସୀଙ୍କୁ ଉଚ୍ଚକିତ କରୁଥାଏ । ଚିରଦିନ ବିପ୍ଳବର ନାନ୍ଦୀଗାନ ଆରମ୍ଭ ହୋଇଥାଏ ନବୀନ ଗୋଷ୍ଠୀ ଠାରୁ ! ଗୋପପୁରରେ ଏହା ସଂପୂର୍ଣ୍ଣ ଅଭିନବ ଘଟଣା । ଏହି ବିପ୍ଳବ ସଂପର୍କରେ ବହୁବିଚିତ୍ର ଚମତ୍କାରୀ ସମ୍ବାଦ ପଲ୍ଲବିତ ହୋଇ ଇନ୍ଦ୍ରର ଶ୍ରୁତିଗୋଚର ନିଶ୍ଚୟ ହୋଇଥିଲା ଏବଂ ତାହା ନିଶ୍ଚିତ ଭାବରେ ଶ୍ରୁତିରୋଚକ ନଥିଲା । ଏ ବିଦ୍ରୋହକୁ ଦମନ କରିବା ପାଇଁ ବଜ୍ରବାହୁ ଇନ୍ଦ୍ର ପ୍ରତିହିଂସାରେ ପ୍ରମତ୍ତ ହୋଇ ଉଠିଲା ।

ଦଣ୍ଡେ ନୁହେଁ......ଦିନେ ନୁହେଁ...... ସାତଦିନ କାଳ ଅବିରାମ ବୃଷ୍ଟି, ପ୍ରଚଣ୍ଡ ଝଡ଼ ତୋଫାନ ସହ ବଜ୍ର ବିଦ୍ୟୁତ । ବୃନ୍ଦାବନର ବହୁ ପୁରାତନ ବୃକ୍ଷ ଝଡ଼ର ଆଘାତରେ ଭୂତଳଶାୟୀ ହେଲା । ସମଗ୍ର ଗୋପପୁର ଜଳମଗ୍ନ ହୋଇଗଲା । ଗୋ-ସଂପଦ ଦିନ ଦିନ ଧରି ଅନାହାରରେ ରହିଲେ । ବନ୍ୟା ସ୍ରୋତରେ କେତେ ଗୋଧନ ନିଶ୍ଚିହ୍ନ ବି ହୋଇଗଲେ । ଗୋଧନ ହିଁ ଗୋପର ଶ୍ରେଷ୍ଠ ସଂପଦ, ସେମାନେ ଯଦି ଜଳ ସ୍ରୋତରେ ନିମଗ୍ନ ହୋଇଯାନ୍ତି ତେବେ ତ ଗୋପବାସୀ ନିଃସମ୍ବଳ ହୋଇଯିବେ ? ଏହି କ୍ରମାଗତ ବର୍ଷା ଫଳରେ ଗୋପରେ ଏକ ଅଚଳାବସ୍ଥା ସୃଷ୍ଟି ହୋଇଗଲା । ଏପରିକି ସାତଦିନ ପୂର୍ବେ ଯେଉଁମାନେ ମୋର ପକ୍ଷ ସମର୍ଥନ କରୁଥିଲେ ସେମାନେ ସୁଦ୍ଧା ମୋତେ ଦୋଷାରୋପ କରି ଇନ୍ଦ୍ରର ସନ୍ତୁଷ୍ଟ ନିମିତ୍ତ ଗୋପନରେ ପରସ୍ପର ସହ ପରାମର୍ଶ କରି ପୁନରାୟ ଇନ୍ଦ୍ରପୂଜାର ଆୟୋଜନ କରିବାକୁ ଲାଗିଲେ । ଏଥିରେ ବା ବିଚିତ୍ରତା କ'ଣ ଅଛି ? ଏହାହିଁ ତ ମାନୁଷୀ ସ୍ୱଭାବ ?

ମୁଁ ଶାନ୍ତ, ନିର୍ଲିପ୍ତ, ନିର୍ବିକାର ଥାଏ । ସମଗ୍ର ଗୋପ ଜଳାର୍ଣ୍ଣବ । ଗୋପଦାଣ୍ଡରେ ଜଳସ୍ରୋତର ପ୍ରଖରତା, ପିଣ୍ଡାକୁ ସ୍ରୋତ ଛୁଇଁ ଥାଏ । କାନ୍ଥକୁ ଆଉଜି ପିତା ବସିଥା'ନ୍ତି ବିଷର୍ଣ୍ଣ ଭାବରେ । ଜ୍ୟେଷ୍ଠ ଭ୍ରାତା ଓ ମୋର ବନ୍ଧୁ ମଧୁ ମଂଗଳ ଜଳସ୍ରୋତରେ ଆର୍ତ୍ତ ଚିତ୍କାର କରି ଭାସି ଯାଉଥିବା ଗାଈ ବାଛୁରୀଙ୍କୁ ଉଦ୍ଧାର କରିବାରେ ଲାଗିଥା'ନ୍ତି । ମା' ତଳକୁ ମୁହଁ ପୋତି ବସିଥା'ନ୍ତି । କାହାରି ମୁହଁକୁ ମୁଁ ସିଧାସଳଖ ଚାହିଁ ପାରୁନଥାଏ । ବଡ଼ ଅପରାଧୀ ଭଳି ନିଜକୁ ମନେ ହେଉଥାଏ । ଏହି ସମୟରେ ପାଣିରୁ ଛାଣି ଆଣି ଜ୍ୟେଷ୍ଠ ଭ୍ରାତା ଯେଉଁ ଧୋବ ଫର ଫର କଅଁଳା ବାଛୁରୀକୁ ମା'ଙ୍କ କୋଳରେ ପକାଇଦେଲେ ସେ'ଯେ ଆମର ସଦ୍ୟ ପ୍ରସୂତି ମଂଗଳି

ଗାଈର ଟିକି ବାଛୁରୀ ଶ୍ୱେତା ! ମା'ଙ୍କର ଧୈର୍ଯ୍ୟର ବନ୍ଧ ଯେପରି ଭାଂଗିଗଲା । ନିଃଶବ୍ଦରେ ମା' ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ । ଅହରହ ବୃଷ୍ଟିପାତ, ଜଳସ୍ରୋତର ଅକୂଳ ପ୍ଲାବନରେ ମୁଁ ସ୍ଥିର, ଅବିଚଳିତ, ଉଦାସୀନ ଥିଲି ମାତ୍ର ମା'ଙ୍କ ଆଖିର ବୁନ୍ଦାଏ ଲୁହ ଯେମିତି ମୋର ପ୍ରିୟ ପୃଥିବୀ, ପରିଜନ ସମସ୍ତଙ୍କୁ କାହିଁ କୁଆଡ଼େ ଭସେଇ ନେବ ବୋଲି ମନେ ହେଲା । ମା' ସେ ଟିକି ବାଛୁରୀଟିକୁ କନ୍ୟା ନ୍ୟାୟରେ ଶ୍ରଦ୍ଧା କରୁଥିଲେ । ତାର ମୃତ ଦେହକୁ ବକ୍ଷ ଲଗ୍ନ କରି ମା ଅଶ୍ରୁ ବିସର୍ଜନ କରୁଥିଲେ । ଜ୍ୟେଷ୍ଠ ଭ୍ରାତା ବଳରାମ ତାଙ୍କୁ ବୃଥା ସାନ୍ତ୍ୱନା ଦେଇ କହୁଥିଲେ-'ମା ! ଇଏତ ପ୍ରକୃତିର ତାଣ୍ଡବ ଲୀଳା, ନିୟତିର ନିର୍ଦ୍ଦେଶ, ଏ ବିପର୍ଯ୍ୟୟ ବିରୁଦ୍ଧରେ କିଏ ବା ତିଷ୍ଠି ପାରିବ ?'

ଦୋଷୀଟିଏ ଭଳି ଚୁପ୍‌ଚାପ୍ ମା'ଙ୍କୁ ନିରୀକ୍ଷଣ କଲି, ଜ୍ୟେଷ୍ଠ ଭ୍ରାତାଙ୍କର ଏ କଥାରେ ମା' ଆଦୌ ସାନ୍ତ୍ୱନା ପାଇଲେ ନାହିଁ, ବରଂ ତାଙ୍କ ଆଖିରୁ ଅଧିକ ବେଗରେ ଅଶ୍ରୁଜଳ ବହିଆସିବାକୁ ଲାଗିଲା । ନାଃ ଆଉ ଅଧିକ କାଳ ବିଳମ୍ବ କରି ଧୈର୍ଯ୍ୟର ପରୀକ୍ଷା ଦେବା ମୋ ପକ୍ଷେ ସମ୍ଭବ ନୁହେଁ । ମା'ଙ୍କର ସେ ଅଶ୍ରୁ ବିକଳ ମୁହଁଟିକୁ ଚାହିଁବାମାତ୍ରେ ମୋର ସର୍ବାଙ୍ଗ କ୍ରୋଧ ଜର୍ଜ୍ଜର ହୋଇଉଠିଲା ଇନ୍ଦ୍ରପ୍ରତି । ମେଘମେଦୁର ଆକାଶକୁ କିଛିକ୍ଷଣ ଚାହିଁଲି । ତାପରେ ସମସ୍ତଙ୍କ ଉପସ୍ଥିତି ଭୁଲି ସ୍ୱଭାବ ବିରୁଦ୍ଧଭାବେ ଚିତ୍କାର କରି ଉଠିଲି ମୁଁ-'ମୂଢ଼ମତି ଦେବେଶ ! ଶୁଣିରଖ ! ଶୁଣିରଖ ! ମୋ ମା'ଙ୍କ ଆଖିର କେତେଟୋପା ଲୁହ ମୋପାଇଁ ବହୁତ ଦୁର୍ମୂଲ୍ୟ । ଏ ଲୁହର ବିନିମୟ ମୂଲ୍ୟ ଅନେକ..... ଅନେକ ବେଶୀ ତୁମକୁ ଦେବାକୁ ପଡ଼ିବ ବଜ୍ରବାହୁ, ହୁଏତ ତୁମର ଇନ୍ଦ୍ରାସନ ମଧ୍ୟ ତା' ତୁଳନାରେ ସାମାନ୍ୟ !'

ମୋ ସ୍ୱରର ପ୍ରଚଣ୍ଡତାରେ ସମସ୍ତେ ଚମକି ପଡ଼ିଲେ, ଅଭିଭୂତ ହୋଇପଡ଼ିଲେ, ପ୍ରଭାବିତ ହୋଇଗଲେ । ଜଳମଗ୍ନ ଗୋପଦାଣ୍ଡରେ ମୁଁ ଚାଲିଲି । ମୋ ପଛେ ପଛେ ଗୋପବାସୀ - ଆବାଳ ବୃଦ୍ଧ ବନୀତା ମନ୍ତ୍ର ମୁଗ୍ଧ ଭଳି ସମସ୍ତେ ମତେ ଅନୁସରଣ କଲେ । ଆମେ ସମସ୍ତେ ଗିରି ଗୋବର୍ଦ୍ଧନ ନିକଟରେ ପହଞ୍ଚିଗଲୁ । ଇନ୍ଦ୍ରର ଏ ପ୍ରତିହିଂସା ମୂଳକ ରଣନୀତି ମୋ ପାଇଁ ଏକ ପ୍ରଚଣ୍ଡ ଆହ୍ୱାନ ସଦୃଶ ଥିଲା । ତା'ର ଠିକଣା ଜବାବ ଦେବାପାଇଁ ମୁଁ ବି ନିଜକୁ ପ୍ରସ୍ତୁତ କରିସାରିଥିଲି ।

ଗିରିଗୋବର୍ଦ୍ଧନକୁ ସ୍ପର୍ଶ କରି ମୁଁ କହିଲି- 'ତୁମେ ସମସ୍ତେ କେବଳ ବିଶ୍ୱାସ ରଖ ଯେ ଏ ଶିଳାଖଣ୍ଡ ନିଷ୍ପ୍ରାଣ ନୁହେଁ, ଜଡ଼ରୁ ଚେତନ ପର୍ଯ୍ୟନ୍ତ ସବୁରି ଭିତରେ ବ୍ରହ୍ମ ବିଦ୍ୟମାନ । ଏ ପ୍ରକୃତି ଜୀବନ୍ତ, ଉଦାର, ସହାନୁଭୂତିପ୍ରବଣ । ଦେଖ ! ଆମେ ସିନା ନିଜକୁ ନିଜେ ରକ୍ଷା କରିବାରେ ଅସମର୍ଥ । ଅସମର୍ଥ ଏଇଥିପାଇଁ ଯେ ଆମ୍ଭମାନଙ୍କର ସଂଗଠନର ଅଭାବ, ଆତ୍ମଶକ୍ତି, ଆତ୍ମବିଶ୍ୱାସ, ଆତ୍ମବଳର ଅଭାବ । ଥରେ ବିଶ୍ୱାସ କରି ଦେଖ । ବିଶ୍ୱାସରେ

ବସୁନ୍ଧରା ତିଷ୍ଠି ରହିଛି, ବିଶ୍ୱାସରେ ସାଗର କୂଳ ଲଂଘନ କରୁନାହିଁ । ବିଶ୍ୱାସ ବଳରେ ସବୁ ଅସମ୍ଭବ ସମ୍ଭବ ହୁଏ । ଇଚ୍ଛାଶକ୍ତି ବଳରେ ସବୁ ଦୁର୍ଲଭ, ଦୁଷ୍ପ୍ରାପ୍ୟ ବସ୍ତୁ ସହଜ ଲଭ୍ୟ ହୁଏ । ଏ ପର୍ବତ ହିଁ ଆମକୁ ସୁରକ୍ଷା ଦେବା ସୁନିଶ୍ଚିତ !'

ଏହି ଆତ୍ମବିଶ୍ୱାସ ମୋର ଇଚ୍ଛାଶକ୍ତିକୁ ପ୍ରଚଣ୍ଡ କରିବା ସହିତ ଗୋପବାସୀଙ୍କ ହୃତ ଆତ୍ମବିଶ୍ୱାସ ଫେରାଇ ଆଣିଲା । ମୁଁ ଗୋବର୍ଦ୍ଧନ ଗିରିକୁ ସ୍ପର୍ଶ କରିବା ମାତ୍ରେ ତାହା ସମଗ୍ର ଗୋପପୁର ଅଧିବାସୀଗଣଙ୍କୁ, ସମସ୍ତ ଗୋସଂପଦକୁ ନିରାପଦ ଆଶ୍ରୟ ଦେଲା ।

ଏହି ଅଭୂତପୂର୍ବ ଘଟଣାରେ ଚମତ୍କୃତ ଗୋପବାସୀ ଆନନ୍ଦରେ ଉଲ୍ଲସିତ ହୋଇ ଉଠିଲେ । ସେମାନଙ୍କର କୋଳାହଳ ମୁଖରତାରେ ଗୋବର୍ଦ୍ଧନ ପ୍ରକଂପିତ ହେଲା । ଝଡ଼, ବୃଷ୍ଟି, ବଜ୍ର, ବିଦ୍ୟୁତ୍, ପ୍ରଳୟଙ୍କରୀ ତୋଫାନର ଗର୍ଜନରେ ଇନ୍ଦ୍ର ତାର ଗୋଟି ଗୋଟି କରି ପ୍ରତିହିଂସାର ସମସ୍ତ ବାଣ ନିକ୍ଷେପ କଲାପରେ ଅବଶେଷରେ ନିରସ୍ତ୍ର ହେଲା, ପରାସ୍ତ ହେଲା, ପରିଶ୍ରାନ୍ତ ହେଲା, ସର୍ବୋପରି ଶାନ୍ତ ହେଲା ।

ଅଷ୍ଟମ ଦିବସର ପ୍ରଭାତ ହେଲା ମେଘମୁକ୍ତ, ଶାନ୍ତ, କମନୀୟ । ନିର୍ମେଘ ଆକାଶରେ ବିପ୍ଲବର ବିଜୟ ତିଳକ ଯେମିତି ଆଙ୍କି ଦେଇଥିଲା ଲୋହିତ ସୂର୍ଯ୍ୟର ଉଦୟ ଉତ୍ସବ । ପୃଥିବୀରେ ସୁନାରଙ୍ଗୀ ଖରା, ବୃନ୍ଦାରଣ୍ୟରେ ପକ୍ଷୀର କୂଜନ.....ଗୋପବାସୀ ଆନନ୍ଦୋନ୍ମତ୍ତ ଭାବେ ଗୋପପୁରକୁ ବାହୁଡ଼ି ଆସିଲେ ।

## ।। ଚତୁର୍ଥ ଗ୍ରନ୍ଥିମୋଚନ ।।

ଗୋପପୁର ମୋ ପାଇଁ ନିତ୍ୟ ବୈକୁଣ୍ଠ । ଗୋପର ଧୂଳିରେ ମିଶି ରହିଥାଏ ଅନୁରାଗର ରେଣୁ, ଗୋପର ଆକାଶ ଯେମିତି ପ୍ରେମଭକ୍ତିର ବ୍ୟାପ୍ତିକୁ ପରିପ୍ରକାଶ କରୁଥାଏ, ବୃନ୍ଦାବନର ପ୍ରତିଟି ବୃକ୍ଷର ଶାଖାରେ ଶାଖାରେ, ମଧୁକଣ୍ଠୀ ପକ୍ଷୀର ସଂଗୀତରେ, ଯମୁନାର ଜଳ କଲ୍ଲୋଳରେ ସୌନ୍ଦର୍ଯ୍ୟ ଓ ପ୍ରେମର ଏକ ସମନ୍ୱିତ ନିର୍ଯ୍ୟାସ । ଏହି ପ୍ରେମ ଓ ସୁନ୍ଦରତାର ନିର୍ଯ୍ୟାସରେ ଗଢ଼ା ଯେପରି ଗୋପ ତରୁଣୀଙ୍କ ତନୁ ଓ ମନ । ଯାହାକୁ ମୁଁ ଭଲପାଏ ତାକୁ ଦାଣ୍ଡ ମଝିରେ ହଟହଟା ନକଲେ ମୋତେ ଶାନ୍ତି ମିଳେ ନାହିଁ । ସୁବର୍ଣ୍ଣର ଶୁଦ୍ଧତା କଷଟି ପଥରରେ ପ୍ରମାଣିତ ହୁଏ ନାହିଁ କି ? ଭକ୍ତିର ଭାବ ଓ ଭୂତିକୁ ପରୀକ୍ଷା ନିରୀକ୍ଷା କରିବାକୁ ହେଲେ ଏ ପ୍ରକାର କଷଟି ପଥର ଯେ ଅପରିହାର୍ଯ୍ୟ ! ଏକଦା ପାଣ୍ଡବ ପଟ୍ଟମହିଷୀ ପାଞ୍ଚାଳୀ ମୋତେ ଏ ପ୍ରଶ୍ନ କରିଥିଲେ, 'ହେ ମାଧବ ! କି ଲାଭ ପାଅ ଏମିତି ହଟହଟା କରିବାରେ ?'

ତାଙ୍କର ସେ ପ୍ରଶ୍ନରେ ସତେକି ଗୋପତରୁଣୀର ମଧୁ ମିଶି ରହିଥିଲା । ମୁଁ ବିନମ୍ର ଭାବେ ସେଦିନ କହିଥିଲି- 'କେବଳ ନିଷ୍ପାପ କୌତୁକ !'

ମୋତେ ଅନେକ ଭଲ ପାଇଛନ୍ତି, ଭକ୍ତି କରିଛନ୍ତି; କିନ୍ତୁ ମୁଁ ଏମିତି ପୂର୍ଣ୍ଣପ୍ରାଣରେ କାହାରି ପ୍ରେମରେ ନିମଜ୍ଜିତ ହୋଇନାହିଁ, ଯେମିତି ଗୋପବାଳାଙ୍କ ପ୍ରେମରେ ହୋଇଛି । ଗୋପତରୁଣୀଗଣ ମୋର ଜନ୍ମ ଜନ୍ମର ସାଧନାର ସିଦ୍ଧି । ତା'ର ଏକମାତ୍ର କାରଣ ସେମାନେ ସର୍ବସ୍ୱ ଜଳାଞ୍ଜଳି ଦେଇ ସର୍ବତ୍ୟାଗିନୀ ଭାବେ କେବଳ ମୋତେ ହିଁ ଆଶା କରିଛନ୍ତି । ଅଥଚ ରାଜାନୁଗ୍ରହ ପ୍ରାପ୍ତି ନିମିତ୍ତ ମଥୁରାକୁ ଯାଉଥିବା ସେମାନଙ୍କର ପରିପୂର୍ଣ୍ଣ ଦୁଗ୍ଧ, ଦଧି, ଘୃତଭାଣ୍ଡ ମୁଁ ଭାଙ୍ଗି ଚୁର୍‌ମାର୍ କରିଦେଇଛି । ସଞ୍ଚିତ ସରଲବଣୀ ନିଜେ ଖାଇ, ଗୋପାଳଗଣଙ୍କୁ ଖୁଆଇ ଅବଶିଷ୍ଟ ନଷ୍ଟ କରିଦେଇଛି । ତଥାପି ସେମାନଙ୍କୁ ପ୍ରଶ୍ନ କରାଯାଉତ ଥରେ, ସେମାନେ ମୋତେ କାହିଁକି କଠିନ ଦଣ୍ଡ ଦେଇ ପାରିନାହାନ୍ତି ? ଦଣ୍ଡ ଦେବାପାଇଁ ଦଳ ବାନ୍ଧି ଯଶୋମତୀ ମା'ଙ୍କ ନିକଟରେ ଗୁହାରୀ କରିଛନ୍ତି; ଅଥଚ ମା' ଛାଟ ଖଣ୍ଡେ ଧରିଲେ ମା'ଙ୍କ ହାତରୁ ଛଡ଼େଇ ଫିଙ୍ଗି ଦେଇଛନ୍ତି କାହିଁକି ? ଏ ପ୍ରଶ୍ନ ସବୁର ଉତ୍ତର ସେମାନେ କୌଣସି କାଳରେ ଦେଇପାରିବେ ନାହିଁ । ମୁଁ କିନ୍ତୁ ଏ ସବୁର ଉତ୍ତର ପାଇଛି । ପାଇଛି ସେମାନଙ୍କର ନିର୍ବାକ୍ ସ୍ଫୁରିତ ଓଷ୍ଠାଧରରୁ, ରକ୍ତାଭ ଗଣ୍ଡଦେଶରୁ, ଭାବବିହ୍ୱଳ ତରଳ ନୟନରୁ, ଘର୍ମାକ୍ତ କପୋଳରୁ, ଶିହରିତ କଳେବରରୁ, ସ୍ପନ୍ଦିତ ହୃଦୟତଟରୁ । ହଁ, ସେମାନଙ୍କ ମୁଖ ମୁଦ୍ରାରେ ଅଂକିତ ହୋଇଥିବା ହୃଦୟର ଭାବ ମୁଁ ହିଁ କେବଳ ପଢ଼ିପାରିଛି ! ପ୍ରେମଭକ୍ତିରେ ବିହ୍ୱଳା ଗୋପ ରମଣୀଗଣ ମୋର ନିତ୍ୟସଖୀ, ଚିରନମସ୍ୟା । ମୁଁ ଜାଣେ ଯେ ମୋ ଚଲାପଥକୁ ନିଷ୍କଣ୍ଟକ କରିବା ପାଇଁ କେବେ ଯଦି ଆବଶ୍ୟକ ପଡ଼ିଥା'ନ୍ତା ତେବେ ସେମାନେ ନିଜ ନିଜର ହୃଦୟ ସୁଦ୍ଧା ପତେଇ ଦେଇଥା'ନ୍ତେ ।

ଏମାନେ ପ୍ରତ୍ୟେକ ଭାବର ଅକ୍ଷୟ ଭଣ୍ଡାର । ଏମାନଙ୍କ ଭିତରେ ସର୍ବାଧିକା ବୃଷଭାନୁ ଜେମା ରାଧିକା ମସିଭାବ ସ୍ୱରୂପିଣୀ, ଯାହାର ସମଗ୍ର ଜୀବନ ହିଁ ଥିଲା ତ୍ୟାଗପୂତ ପ୍ରଣୟ ନିରାଜନାର ଏକ ପ୍ରଶସ୍ତ କ୍ଷେତ୍ର । କୌଣସି ଦିନ ପ୍ରାପ୍ତିର ପ୍ରତ୍ୟାଶା ସେ ରଖିନାହିଁ କେବଳ ପ୍ରଣୟ ଦାନରେ ହିଁ ସେ ଧନ୍ୟା । କେବଳ ମୋରିପାଇଁ ନିନ୍ଦା, ଅପଯଶର ବୋଝବୋହି ବାଟ ଚାଲିଛି ସେ, ଅଥଚ କୌଣସି ଦିନ ପ୍ରତିବାଦ କରିନାହିଁ, ପ୍ରତିକାର ଚାହିଁ ନାହିଁ । ଶାଶୂ କୁଟୀଳା, ନଣନ୍ଦ ଜଟିଳା ତାକୁ ଅହରହ ଯନ୍ତ୍ରଣା ଦେଇଛନ୍ତି । ହଁ-ସେ ଯେ ଅନ୍ୟର ଗୃହବଧୂ ! ତା' ନିଜ ବିଷୟରେ କେତେ ଟିକେ ବା ସେ କହେ ମୋତେ ? ତା'ର ପ୍ରିୟ ସଖୀ ଲଳିତା ବିଶାଖାଙ୍କ ଠାରୁ ମୁଁ ଯାହା ଶୁଣିଛି ମାତ୍ର ।

ମୋର ପ୍ରଥମ ପ୍ରଣୟର ଅପୂର୍ବ ଅନୁଭୂତି ମହାକାଳ ବକ୍ଷରେ ଚିରକାଳ ଲିପିବଦ୍ଧ ହୋଇ ରହିଥାଉ । ସେଇ ଅମୃତ ଅନୁଭବର ସ୍ମୃତିଚାରଣ ଜୀବନରେ ଯେତେବାର କରିଛି

ସେତେଥର ଶିହରିତ ହୋଇଛି । ଅନୁକ୍ତ ବେଦନାର ସ୍ରୋତଟିଏ ହୋଇ ପହଁରି ଯାଇଛି ତାଳୁରୁ ତଳିପାଯାଏ । ଥାଉ ସେ କଥା ପରେ ।

ଗୋପରେ କୃଷିଜୀବିଙ୍କ ତୁଳନାରେ ଗୋ ସଂପଦ ଉପରେ ନିର୍ଭରଶୀଳ ଗୋପାଳଙ୍କ ସଂଖ୍ୟା ସର୍ବାଧିକ । ଗୋପାଳନ ହିଁ ଆମ୍ଭ ମାନଙ୍କର କୌଳିକ ବୃତ୍ତି । ଗୋପର ଗାଭୀ ଗୁଡ଼ିକ ହୃଷ୍ଟ ପୁଷ୍ଟ, ସୁସ୍ଥ ସୁନ୍ଦର । ଏହି ସୁସ୍ଥ ସବଳ ସବତ୍ସା ଧେନୁ ସମସ୍ତର ଜନକ ଯେଉଁ ବୃଷଭ, ସିଏ ବଡ଼ ଉଦ୍ଧତ, ଅହଂକାରୀ । ଗୋପଦାଣ୍ଡରେ ସେ ଚାଲୁଥିବା ସମୟରେ ଦାଣ୍ଡଟା ଶୂନ୍‌ଶାନ୍ ହୋଇଯାଏ ଭୟରେ । ଦୈବାତ୍ କେହି ଯଦି ତା' ଆଗରେ ପଡ଼ିଯାଏ ତେବେ ବିନା କାରଣରେ ତା'ର ସୁତୀକ୍ଷ୍ଣ ସିଙ୍ଗଦ୍ୱାରା ସେ ତାହାକୁ ରକ୍ତାକ୍ତ କରିଦିଏ । ତା'ର ଏହି କ୍ରମାଗତ ଔଦ୍ଧତ୍ୟ ମୋ ପାଇଁ କ୍ରମଶଃ ଅସହ୍ୟ ହେଉଥିଲା । ମୁଁ କେବଳ ସୁଯୋଗ ଅପେକ୍ଷାରେ ଥିଲି ଏକଦା ଜ୍ୟେଷ୍ଠ ଭ୍ରାତା କ୍ରୀଡ଼ାଛଳରେ ଏକ ସର୍ତ୍ତ ଉପସ୍ଥାପନ କରି କହିଲେ-'ଯଦି ଆମ ଭିତରୁ କେହି ଏହି ଉଦ୍ଧତ ବୃଷଭକୁ ବଶୀଭୂତ କରି ତାର ପୃଷ୍ଠ ଦେଶରେ ଆରୋହଣ କରିପାରିବ ତେବେ ମୁଁ ସେ ବାଳକ ମୋର ବୟୋକନିଷ୍ଠ ହୋଇଥିଲେ ସୁଦ୍ଧା ତା'ର ସର୍ବଦା ଅନୁଗତ ହୋଇ ରହିବି । କୌଣସି ଦିନ ତା'ର ବିରୁଦ୍ଧାଚରଣ କରିବି ନାହିଁ । ଭାଇଙ୍କର ଏକଥା ଶୁଣି ମନେ ମନେ ମୁଁ ହସିଲି । ଏହାହିଁ ତ ହେବାର ଥିଲା ।

ମୁଁ କହିଲି-'ମୁଁ ପାରିବି ।'

ମୋର ଦୃଢ଼ତା ଦେଖି ଭାଇ ଭୟଭୀତ ହୋଇଗଲେ । କହିଲେ-'ନାଇଁରେ କାହ୍ନୁ ! ମୁଁ ଏମିତି କହିଦେଲି, ତୁ ମୋର ଏ ସର୍ତ୍ତ ପାଳନ କରିବାକୁ ବାଧ୍ୟ ନୁହେଁ । ଏ ବୃଷଭ ଯେମିତି ଉଦ୍ଧତ ସେତିକି ନିର୍ଦ୍ଦୟ ।'

ଭାଇ ବଳରାମ ଚିରକାଳ ଏଇଭଳି, ସ୍ନେହାତିଶଯ୍ୟରେ ମୋତେ ସର୍ବଦା ଦୁର୍ବଳ ହିଁ ମନେ କରିଥା'ନ୍ତି । ମୁଁ କିନ୍ତୁ ସେତେବେଳକୁ ଦୃଢ଼ ପରିକର ହୋଇ ସାରିଥିଲି ଏ ଉଦ୍ଧତ ବୃଷଭର ଗର୍ବ ଗଞ୍ଜନ କରିବାପାଇଁ । କେଜାଣି କାହିଁକି କୌଣସି ପ୍ରାଣୀର ଗର୍ବ ମୁଁ ସହିପାରେ ନାହିଁ । ମୋର ଯେତେ ଅନ୍ତରଙ୍ଗ ହେଉନା କାହିଁକି ! ମୁଁ ମୋ ଜୀବନର ଦୀର୍ଘ ଅଭିଜ୍ଞତାରୁ ଜାଣିଛି ମଣିଷ ବରଂ ଅନମନୀୟ,ମାତ୍ର ପଶୁ ସ୍ୱଭାବତଃ ଉଗ୍ର ହେଲେ ହେଁ ସରଳ, ସ୍ନେହ କାଙ୍ଗାଳ, ଟିକିଏ ଆଦର, ଯତ୍ନ ସ୍ନେହ ପାଇଲେ ସେ ଅନାୟାସରେ ବଶ୍ୟତା ସ୍ୱୀକାର କରେ । ସ୍ନେହ ବ୍ୟତୀତ ମୋ ହାତରେ ପୁଣି ଥିଲା ମୋହନ ବଂଶୀ । ମୋହନ ବଂଶୀର ମଧୁର ମୂର୍ଚ୍ଛନାରେ ବୃଷଭ 'ବୃଷ ଧ୍ୱଜ' ମୋ ନିକଟରେ ସଂପୂର୍ଣ୍ଣ ଆତ୍ମସମର୍ପଣ କରିଥିଲା, ପରାହତ ହୋଇଥିଲା ତା'ର ସମସ୍ତ ଦର୍ପ ଓ ଅଭିମାନ ।

ବୃନ୍ଦାରଣ୍ୟରେ ଯେଉଁଦିନ ଏହି କୌତୁକାବହ ଦୃଶ୍ୟଟି ଅଭିନୀତ ହେଉଥିଲା ସେଦିନ ଲକ୍ଷ୍ୟ କଲି ଗୋପଦାଣ୍ଡ ଲୋକାରଣ୍ୟ । ଧାଡ଼ି ଧାଡ଼ି ଗୋ ଶକଟ ଯାନ ବହୁବିଧ ଶସ୍ୟ, ଘୃତ, ମଧୁ, ଶର୍କରା, ଦୁଗ୍ଧ ଓ ଦୁଗ୍ଧ ଜାତ ଦ୍ରବ୍ୟ ବହୁବିଧ ଫଳ ତଥା ବିବିଧ ଗୃହୋପକରଣରେ ପରିପୂର୍ଣ୍ଣ । ଆଉ କେତୋଟି ଗୋ-ଶକଟ ଯାନ ରେଶମ ବସ୍ତ୍ରାବୃତ ଓ ଉତ୍ତମ ରୂପେ ସଜ୍ଜିତ ହୋଇ ଅତ୍ୟନ୍ତ ସୁନ୍ଦର ଦିଶୁଥାଏ । ତା'ଭିତରେ ହୁଏତ ମହିଳାମାନେ ଥା'ନ୍ତି । ସେହି ରେଶମୀ ନୀଳ ପରଦାର ଝୀନ ଆବରଣକୁ ମୁହୂର୍ତ୍ତକ ପାଇଁ ଏକ ଫୁଟନ୍ତ ପଦ୍ମ ଉଦ୍‌ଭାସିତ ହୋଇ ଉଠିଲା । ମୁଁ ପଲକ ଫେରାଇ ଆଉଥରେ ଚାହିଁବା ବେଳକୁ ସେ ମୁହଁଟି ପରଦା ଅନ୍ତରାଳରେ ଆତ୍ମଗୋପନ କରିସାରିଥିଲା । କେବଳ ପର୍ଦ୍ଦାର ରେଶମୀ ଝାଲର୍ ଲଗା ଗବାକ୍ଷ ଭିତରୁ ନୀଳକଇଁର ପାଖୁଡ଼ାଭଳି ଦୁଇଟି ଆନନ୍ଦ ବିଲୋଳ ତରଳ ଚକ୍ଷୁ ମୁଗ୍ଧ ବିଭୋର ଭାବେ ମୋତେହିଁ ଚାହିଁ ଚାହିଁ ଦୂରକୁ ଅପସରି ଯାଉଥିଲା ।

ବହୁନାରୀଙ୍କ ସହ ମୋର ଦୃଷ୍ଟି ବିନିମୟ ହୋଇଛି ; କିନ୍ତୁ ସେଦିନର ସେଇ ପରମ ଲଗ୍ନଟି ମୋ ଜୀବନରେ ଅନାସ୍ୱାଦିତ ଏକ ଅମୃତ ଅନୁଭବ । ମୋର ସମଗ୍ର ଶରୀରରେ ଲୋମାଞ୍ଚନ । ଶକଟ ଯାନଟି ଅନ୍ତର୍ହିତ ହେବା ପର୍ଯ୍ୟନ୍ତ ମୁଁ ସେଇ ଦିଗକୁ ଚାହିଁ ରହିଲି । ମୋ ଦୃଷ୍ଟିକୁ ଅନୁସରଣ କରି ପୂର୍ଣ୍ଣମାସୀ ଆଉ କ'ଣ ବୁଝିଲେ କେଜାଣି, ମୋତେ କହିଲେ,

-'ଏଣିକି ସେମାନେ ଅତି ନିକଟରେ ରହିବେ ।'

-'କିଏ ଏମାନେ ?' ମୋର ବିହ୍ୱଳ ପ୍ରଶ୍ନ

ଆଈ ସଂକ୍ଷେପରେ ଉତ୍ତର ଦେଲେ-'ଇଏ ବୃଷଭାନୁ ଜେମା ରାଧା । ଗଧିଆ ଗୋଳ ହେତୁ ସେମାନେ ଗାଁ ଛାଡ଼ି ଏଠିକି ଚାଲି ଆସିଛନ୍ତି ।'

ଆଈଙ୍କ କଥା ଶୁଣୁ ଶୁଣୁ ଶ୍ରୀଦାମ, ସୁଦାମ, ମଧୁ ଉଚ୍ଚକଣ୍ଠରେ ଅଟ୍ଟହାସ କରିଉଠିଲେ-'ସଖା ! ବୃଷଭକୁ ବଶକରିବା ଯଥେଷ୍ଟ ନୁହେଁ । ଗଧିଆକୁ ବଶୀଭୂତ କଲେ ହିଁ ବୃଷଭାନୁ ଜେମା ବଶ୍ୟତା ସ୍ୱୀକାର କରିବେ ।'

ପ୍ରତ୍ୟେକ ଗୋପତରୁଣୀଙ୍କ ଅନ୍ତରତ ଭାବର ଅକ୍ଷୟ ଗନ୍ତାଘର ସଦୃଶ । ମୋ ଚଲାବାଟରେ କଣ୍ଟାଟିଏ ଦେଖିଲେ ସେମାନେ ନିଜ ନିଜର ହୃଦୟକୁ ମୋ ପାଦତଳେ ପତେଇ ଦେବାକୁ ଅକାତର । ପୁଣି ଏମାନଙ୍କ ଭିତରେ ବୃଷଭାନୁ ଜେମା ରାଇ ବିନୋଦିନୀ ମହାଭାବ ସ୍ୱରୂପିଣୀ, ଯାହାର ସମଗ୍ର ଜୀବନ ହିଁ ଥିଲା ତ୍ୟାଗପୂତ ପ୍ରଣୟ ନିରାଜନାର ଏକ ପ୍ରଶସ୍ତ କ୍ଷେତ୍ର । ସେଠାରେ ପ୍ରାପ୍ତିର ପ୍ରତ୍ୟାଶା କିଛି ନଥିଲା । କେବଳ ପ୍ରଣୟ ଦାନରେ ସେ ହେଉଥିଲା ଧନ୍ୟା । ମୋ ପାଇଁ ତ ସେ କମ୍ ନିନ୍ଦିତା ହୋଇ ନାହିଁ ? କମ୍ ଯନ୍ତ୍ରଣା ଭୋଗିନାହିଁ ? ତା'ର

ସମାଜ, ସଂସାର, ସ୍ୱାମୀ, କୁଟୀଳା ଭଳି କଠୋର ନଣନ୍ଦ, ଜଟିଳା ଭଳି ନିର୍ଦ୍ଦୟ ଶାଶୁ- ଏ ସମସ୍ତଙ୍କଠାରୁ ଅହରହ ଲାଞ୍ଛନା, ଯନ୍ତ୍ରଣା ପାଇଛି । ତଥାପି ମୋତେ କୌଣସିଦିନ କହିନାହିଁ, ପ୍ରତିକାର ଚାହିଁ ନାହିଁ । ମୁଁ ଏ ସବୁ ତା'ର ପ୍ରିୟ ସଖୀ ବୃନ୍ଦା, ବିଶାଖା, ଲଳିତା, ଚନ୍ଦ୍ର ଏମାନଙ୍କଠାରୁ ଶୁଣିଛି ।

ମୁଁ ବରଂ ମୋର ସେ ପ୍ରଥମ ପ୍ରଣୟର ଅମୃତ ଅନୁଭୂତି କହେ । ଯାହା ମହାକାଳର ବକ୍ଷରେ ସ୍ୱର୍ଣ୍ଣାକ୍ଷରେ ଲିପିବଦ୍ଧ ହୋଇ ରହିଥିବ ଚିରକାଳ । ରାଧାପ୍ରତି ମୋର ହୃଦୟଭରା ପ୍ରେମଥିବା ସତ୍ତ୍ୱେ, ମୋ ପ୍ରତି ରାଧାର ନିଃଶେଷିତ ଅକୁଣ୍ଠ ଆତ୍ମସମର୍ପଣ ଭାବ ଥିବା ସତ୍ତ୍ୱେ ଆମେ ଦାଂପତ୍ୟ ବନ୍ଧନରେ ବାନ୍ଧିହୋଇ ପାରିନଥିଲୁ । ଅବଶ୍ୟ ଆମେ ଦୁହେଁ ପରସ୍ପରକୁ ଅତିନ୍ଦ୍ରିୟ ସ୍ତରରେ ଉପଲବ୍ଧି କରିପାରିଥିଲୁ । ସେ ପ୍ରାପ୍ତି ଏକ ଦୁର୍ଲଭ ପ୍ରାପ୍ତି । ହରେଇବାର ଯନ୍ତ୍ରଣା ମଧ୍ୟ ସେହିଭଳି ଦୁଃସହ । ଏଭଳି ନିଷ୍କାମ ପ୍ରୀତିର ପ୍ରତିମା ହେବା କେବଳ ଭାରତୀୟ ନାରୀ ପକ୍ଷେ ହିଁ ସମ୍ଭବ । ପ୍ରୀତିର କଠୋର୍ ଅଗ୍ନିପରୀକ୍ଷାରେ ପରିଶୁଦ୍ଧ, ତ୍ୟାଗପୂତ ପ୍ରତିମାଟିଏ ସେ । ତା'ର ପାଦଧୂଳିକୁ ସୁଦ୍ଧା ମୁଁ ସମକକ୍ଷ ନୁହେଁ । ମୋ ପାଇଁ କେତେ ଅଗ୍ନିପରୀକ୍ଷାର ସମ୍ମୁଖୀନା ସେ ନହୋଇଛି ? ବାହାରେ ସମାଜର କୁଟୀଳ ଭ୍ରୁକୁଟି, ଘରେ ଶାଶୁ ନଣନ୍ଦଙ୍କ ଗଞ୍ଜଣା । ପୁଣି ଅନ୍ଧ ବିଧାତାର ଅଦ୍‌ଭୁତ ବିଚାରକୁ ଦେଖ ! ରାଧାଭଳି ଏକ ସର୍ବଗୁଣାଳଙ୍କୃତା, ସଦ୍‌ଗୁଣଶାଳିନୀ, ଅପୂର୍ବ ସୌନ୍ଦର୍ଯ୍ୟଶାଳିନୀ ପୂର୍ଣ୍ଣ ଯୁବତୀର ସ୍ୱାମୀ ଚନ୍ଦ୍ରସେଣା ଏକ ନପୁଂସକ ! କ୍ଳୀବ !! ଅଜସ୍ର ଅତନ୍ଦ୍ର ରାତ୍ରିର ଶୀତଳ କଣ୍ଟକିତ ଶଯ୍ୟାରେ ରାଧାର ତାରୁଣ୍ୟ ବିଳାପ କରିଉଠେ, ତନୁମନ ଉଚ୍ଚାଟ ହୋଇ ଉଠେ । ରାଧା ନୟନର ବିନ୍ଦୁ ବିନ୍ଦୁ ଅଶ୍ରୁକଣା ଚନ୍ଦ୍ରସେଣାର ରକ୍ତରେ କୌଣସି ଚାଞ୍ଚଲ୍ୟ ସୃଷ୍ଟି କରେନାହିଁ । ରାଧାର ଅଶ୍ରୁ ଝରି ନପାରି ତା'ର ଅନ୍ତର ତଳେ ହିମକଣା ହୋଇ ଜମାଟ ବାନ୍ଧେ । ଆଉ ଠିକ୍ ସେତିକିବେଳେ ପାଞ୍ଚୋଟି ଛିଦ୍ରଯୁକ୍ତ ଏକ କ୍ଷୁଦ୍ର ବଂଶ ଦଣ୍ଡ ନିର୍ମିତ ମୋର ମୋହନବଂଶୀ ପ୍ରେମର ମଧୁର ମୂର୍ଚ୍ଛନା ତୋଳିବାପାଇଁ ବ୍ୟଗ୍ର ହୋଇ ଉଠେ । ଏଇ ମଧୁର ମୂହୂର୍ତ୍ତର ପ୍ରତୀକ୍ଷାରେ ରାଧାବି ବିବ୍ରତ, ତନ୍ମୟ ହୋଇ ଉଠେ । କେତେ ଶୀତାର୍ତ୍ତ ଦିନାନ୍ତର ଶେଷ ଲଗ୍ନ, କେତେ ହେମନ୍ତର ଉଦାସ ଅପରାହ୍ନ, କେତେ କୃଷ୍ଣା ରଜନୀର ବିଳମ୍ବିତ ପ୍ରହର, କେତେ ଚନ୍ଦ୍ରିକା ଚର୍ଚ୍ଚିତ ମୋହମୁଗ୍ଧ ରାତ୍ରି ମୋର ବଂଶୀର ମୂର୍ଚ୍ଛନାରେ ବିଳପି ଉଠେ । କଦମ୍ବ ଶାଖାରେ ଅର୍ଦ୍ଧଶାୟିତ ଭାବେ ମୁଁ ବଂଶୀରେ ରାଗିଣୀ ତୋଳି ଗାଏ । ମୋ ଅଜ୍ଞାତସରରେ ସେ ବଂଶୀ ନାଦରେ ମିଶିଯାଏ ମୋର ପ୍ରାଣଭରା ପ୍ରେମ । ତା'ର ସଂଗୁପ୍ତ ଅଶ୍ରୁଲିପ୍ତ ବ୍ୟାକୁଳତା ବିଳାପ ଯେମିତି ମୁଁ କାହାକୁ ଖୋଜିହୁଏ, ଖୋଜିହୁଏ କାହା ପାଦର ନୁପୁର ନିକ୍ୱଣକୁ, ଯିଏକି ମୋର ବଂଶୀନାଦର ଅଶ୍ରୁବିନ୍ଦୁକୁ ନିଃଶେଷିତ କରି ମିଳନର ମଧୁତାନରେ ମୋ ହୃଦୟର ଶୂନ୍ୟ ଅଂଗନକୁ ଅସୁମାର ଫୁଲରେ ସଜାଇ ଦେବ । ଅର୍ଦ୍ଧ ନିମିଳିତ ନୟନରେ ଚାହିଁ

ଦେଖେ ସବୁଜପତ୍ର ଗହଳରେ ନୀଳକଇଁର ପାଖୁଡ଼ା ଭଳି ଘୂର୍ଣ୍ଣମନ୍ତ ଦୁଇଟି ଅଶ୍ରୁ ଢଳ ଢଳ ଆଖି । ନବକିଶଳୟ ସଦୃଶ ସ୍ଫୁରିତ ଦୁଇଟି ଓଷ୍ଠାଧାର ନିଳଚେଳ ପରିହିତା, ନୀଳ ବସ୍ତ୍ରାବୃତା ଏଇ ଅନବଦ୍ୟାଙ୍ଗୀ ହିଁ ମୋ ସ୍ୱପ୍ନର ସିଦ୍ଧି ରାଧିକା, ମୋ ଚିନ୍ତା ଓ ଚେତନାର କେନ୍ଦ୍ରବିନ୍ଦୁ । ମୁଁ ଉନ୍ମତ୍ତ ଭଳି ଧାଇଁଯାଏ ଲତା ଗହଳକୁ, ନବନୀତ କୋମଳ କରପଲ୍ଲବକୁ ତାର ଛୁଇଁଦେବା ମାତ୍ରେ ଲାଜକୁଳୀ ଲତାଟିଏ ଭଳି ସେ ଝାଉଁଳି ଯାଏ, ମୋ ଦୃଷ୍ଟି ପଥରୁ ଅଦୃଶ୍ୟ ହୋଇଯାଏ ତା'ର ନୀଳପଣତ । ଯାଉ ଯାଉ କାନ ପାଖରେ ମୋର କହିଯାଏ- 'ହେ ମୋହନ ! ଗୁରୁଜନ ମେଳରେ ଥିବାବେଳେ କିମ୍ବା ରାତ୍ରିର ନିରୋଳା ପ୍ରହରରେ ଏ ବଂଶୀ ତୁମେ ବଜାଇବ ନାହିଁ । ତୁମକୁ ମୋ ରାଣ । କୁଳବତୀ ନାରୀର ସମସ୍ତ ଧୈର୍ଯ୍ୟ ଓ ପାତିବ୍ରତ୍ୟ ଧର୍ମକୁ ଏହା ଲୁଣ୍ଠନ କରିଦେବ । ଏଇ ମୋହନ ବଂଶୀ ହିଁ ମୋତେ ନିନ୍ଦା ଅପଯଶର ଗହ୍ୱର ଭିତରକୁ ଠେଲି ଦେଉଛି । ଯଦି ମୋତେ କେହି ଏ ବଂଶୀକୁ ଦିଅନ୍ତା ତେବେ ଖଣ୍ଡ ଖଣ୍ଡ କରି ଭାଙ୍ଗି ତାକୁ ଯମୁନା ସ୍ରୋତରେ ଭସାଇ ଦିଅନ୍ତି ।

ତା'ର ଏ କୃତ୍ରିମ କ୍ରୋଧରେ ମୋ ପ୍ରାଣ ପୂରି ଉଠେ । ମୁଁ ଜାଣେ, ମୋ ବଂଶୀ ହିଁ ତା'ପାଇଁ ଏକ ଦୁର୍ଲଭ ସଂପତ୍ତି । ସେ ସର୍ବସ୍ୱ ତ୍ୟାଗ କରିପାରେ, ମାତ୍ର ପ୍ରେମର ମୋହନ ମନ୍ତ୍ରରେ ଜାରିତ, ମଧୁର ରସରେ ରସାଣିତ ବଂଶୀର ଏଇ ଧ୍ୱନି ଯାହା ତାର ରକ୍ତବାହୀ ଧମନୀରେ ମିଶିଯାଇଛି, ଯାହା ତାର ଅନ୍ତରାତ୍ମାରେ ସଞ୍ଚାରିତ ହୋଇଯାଇଛି ତାକୁ ସେ କୌଣସି ମୂଲ୍ୟ ବିନିମୟରେ ବି ତ୍ୟାଗ କରିପାରିବ ନାହିଁ । ରାଧାର ଉପସ୍ଥିତି ହିଁ ମୋତେ ଭିନ୍ନ ସ୍ୱର୍ଗରେ ପହଞ୍ଚାଇ ଦିଏ, ଅତନୁର ଫୁଲଧନୁର ପାଞ୍ଚୋଟି ତୀର ମୋର ହୃଦୟରେ ଏକକାଳୀନ ବିଦ୍ଧ ହୁଏ । ଆଃ ! ସେ ମଧୁର ଜ୍ୱାଳା, ସେ ମଧୁର ଆବେଗ, ସେ ମଧୁର ଯନ୍ତ୍ରଣା, ଆଚ୍ଛନ୍ନତା, ବିହ୍ୱଳତା ମୋର ଚିର ଅବିସ୍ମରଣୀୟ । ମୋର ହୃଦୟ ରାଜ୍ୟର ସିଂହାସନରେ ସେ ଅଭିଷିକ୍ତା ହୁଏ । ଏଇ ତେବେ କ'ଣ ପ୍ରେମ ? ଯେଉଁ ବର୍ଣ୍ଣର ପ୍ରଥମ ପରିଚୟ ମୁଁ ପାଇଥିଲି ରାଧାର ସାକ୍ଷାତଠାରୁ !

ବହୁବାର ଶୁଣିଛି ଲଳିତା ବିଶାଖାଙ୍କଠାରୁ । ମୋ ପାଇଁ ତା'ର ଅଦେୟ କିଛି ନାହିଁ । କେତେ ରାତି ପାହି ସକାଳ ହୋଇଛି । କେତେ ସକାଳ ବି ସଂଧ୍ୟା ହୋଇଛି । ସେ ପ୍ରିୟବତୀର ମିଳନ ଆକାଙ୍କ୍ଷା ମୋର ବହୁଗୁଣିତ ହୋଇଛି ।ରାଧାର ଅନ୍ତର ମଧ୍ୟ କୃଷ୍ଣମୟ, ତାର ଜଗତ କୃଷ୍ଣମୟ । ସମଗ୍ର ଗୋପପୁରୀରେ ରାଧା ମୋପାଇଁ ଏକ ସ୍ୱତନ୍ତ୍ର ଅନୁଭବ - ଏକ ବିଶେଷ ପ୍ରାପ୍ତି । ମୋତେ ଦେବାରେ ହିଁ ତା'ର ପରମ ପ୍ରାପ୍ତି । ବହୁବର୍ଷ ପରେ ଦ୍ୱାରକାରେ ମୋର ଜ୍ୱରାକ୍ରାନ୍ତ ତନୁ ମନକୁ ଶୀତଳ କରିବା ପାଇଁ ଦେବର୍ଷି ନାରଦଙ୍କ ହାତରେ ସେଇ ରାଧାହିଁ ତ ଅହଂ ଶୂନ୍ୟ ଭାବେ ନିଜ ପାଦର ଧୂଳି ସୁଦ୍ଧା ପଠେଇ ଦେଇଥିଲା, ଶ୍ରୀଚନ୍ଦନ ସଦୃଶ ସେଇଠୁ

ପଦରଜ ମୋର ସର୍ବାଙ୍ଗରେ ପ୍ରଲିପ୍ତ ହୋଇ ମୋତେ ଜ୍ୱରମୁକ୍ତ କରିଥିଲା । ଏ ଅମୃତ ଅନୁଭବ ମୁଁ କୌଣସିଦିନ ଭୁଲି ପାରିବିନି ? ଦ୍ୱାରକାର ଅଷ୍ଟ ପାଟବଂଶୀ ଏକଥା ଚିନ୍ତା ବି କରି ପାରିବେ ନାହିଁ ।

ରାଧାର ପର୍ଯ୍ୟବେକ୍ଷଣ ଶକ୍ତି ମଧ୍ୟ ଏତେ ସୂକ୍ଷ୍ମ ? କେବେ କେମିତି ରାଧାର ଅଜ୍ଞାତସାରରେ ସମ୍ଭୋଗମୟୀ ଗୋପତରୁଣୀ ଚନ୍ଦ୍ରାବଳୀ ପୁରରେ ରାତ୍ରି ଯାପନ କଲେ, ମୋ ଆଖିରେ ଚିହ୍ନିତ ହୋଇଥିବା ଅତନ୍ଦ୍ର ରାତିର, ରତି ସମ୍ଭୋଗର କ୍ଳାନ୍ତିର ବିଭକ୍ତି ରାଧା ଆଖିରୁ ବାଦ୍ ଯାଏ ନାହିଁ । ରାଧା ତନ ତନ କରି ମୋର ଶରୀରକୁ ନିରୀକ୍ଷଣ କରେ । କ୍ରୋଧରେ ଉନ୍ମତ୍ତ ହୋଇଯାଏ । ତା'ର ମଧୁର ଗାଳି ଚନ୍ଦନ କସ୍ତୁରୀ ଭଳି ମୋର ସର୍ବାଙ୍ଗରେ ପ୍ରଲିପ୍ତ ହୁଏ ।

ମୁଁ କେଉଁଠୁ ଆରମ୍ଭ କରିବି ? କେଉଁଠି ବା ଶେଷ କରିବି ? ରାଧା ଅନନ୍ୟା । ରାଧାର ପ୍ରିୟ ସଖୀ ଲଳିତା ବିଶାଖା ମଧ୍ୟ ପ୍ରଣୟ ନୀତି ନିପୁଣା । ରାଧାର ଅଧରରେ ଟିକିଏ ହସ ଦେଖିବା ପାଇଁ ଯେଉଁମାନେ ବିନା ସର୍ତ୍ତରେ ନିଜର ଜୀବନ ମଧ୍ୟ ପଣ ରଖିପାରନ୍ତି । ଲଳିତା ମୋ ପାଇଁ ଏକ ଅଧାଦେଖା ସ୍ୱପ୍ନ, ଅଧାଶୁଣା ସଂଗୀତର ସୁର, ଏକ ନିଶବ୍ଦ କବିତା । ଏକ ଅନ୍ତଃସଲୀଳା ବ୍ୟଥାର ସ୍ରୋତ । ରୂପ ଯୌବନ ସବୁ ତା'ର ଥିଲା । ସେ ଇଚ୍ଛା କରିଥିଲେ ସବୁ ପାଇ ପାରିଥା'ନ୍ତା । ମାତ୍ର ସବୁକିଛି ସେ ବର୍ଜନ କରିଥିଲା ପ୍ରିୟସଖୀ ରାଧା ପାଇଁ । କାଳର ବକ୍ଷରେ ଶେଷ ହେମନ୍ତର ଉଦାସ ଅପରାହ୍ନର ବିଷର୍ଣ୍ଣ ଦୀର୍ଘଶ୍ୱାସଟିଏ ହୋଇ ରହିଗଲା ସେ ଚିରକାଳ ତାର ଅଲକ୍ଷରେ ବହୁବାର ତା'ପାଦ ତଳେ ମୁଁ ମୁଣ୍ଡ ନୁଆଇଛି । ଲଳିତା ଯେମିତି ମୋରି ଅଧରର ଏକ ଅସ୍ଫୁଟ ସଂଗୀତର ନିଃଶବ୍ଦ ସ୍ୱର । ଏକ ମଧୁର ପବିତ୍ର କ୍ଷତ - ଏକ ଦୁର୍ଲଭ ସ୍ମୃତି । ସେ କ୍ଷତରେ ଯେବେବି କେହି ମୋ ଅଜ୍ଞାତସାରରେ ଅଂଗୁଳି ସଞ୍ଚାଳନ କରେ ମୁଁ ଏକ ମଧୁର ଜ୍ୱାଳାରେ ଅବଶ ହୋଇଯାଏ, ବିବଶ ହୋଇଯାଏ । କୃଷ୍ଣା ରଜନୀରେ ଅଭୀସାରିକା ରଜନୀରେ ଅଭିସାରିକା ରାଧାର ଅଭିସାରକୁ ସାର୍ଥକ କରିବାପାଇଁ ଲଳିତାହିଁ ତା' ନିଜର କରପଲ୍ଲବରେ ରାଧାକୁ ଚଳାଇ ଆଣେ । ପଥ ଧାରରେ କଣ୍ଟକରେ ରକ୍ତାକ୍ତ ହୁଏ ତାର କୋମଳ କରପଲ୍ଲବ, ସେ କ୍ଷତାକ୍ତ ଯନ୍ତ୍ରଣାକୁ ବିସ୍ମୃତ ହୋଇ ସେ ରାଧାର ପଦତଳକୁ ସୁରକ୍ଷା ଦିଏ । ରାଧା ପାଦରେ ନୁପୂର ଖଞ୍ଜିବା ଠାରୁ, ତନୁରେ ଚନ୍ଦନ କୁଙ୍କୁମ ଲେପନ ପର୍ଯ୍ୟନ୍ତ, କପାଳରେ କସ୍ତୁରୀର ମକରୀ ଆଂକିବାଠାରୁ, ଝୀନ ବସନ ପିନ୍ଧାଇବା ପର୍ଯ୍ୟନ୍ତ, ପାଦରେ ଅଲକ୍ତକ ରେଖା ରଚନା ଠାରୁ, ସୁବିନ୍ୟସ୍ତ କେଶ ବିନ୍ୟାସ ପର୍ଯ୍ୟନ୍ତ, କବରୀରେ ପୁଷ୍ପ ମଣ୍ଡନ ଠାରୁ ନୟନରେ କଜ୍ଜଳ ଆଂକିବା ପର୍ଯ୍ୟନ୍ତ ସୂକ୍ଷ୍ମାତିସୂକ୍ଷ୍ମ ସମସ୍ତ କାର୍ଯ୍ୟ ଲଳିତା ହିଁ ନିର୍ବାହ କରେ ଅକୁଣ୍ଠିତ ଓ ନିରଳସ ଭାବେ । ତାପରେ କୁଞ୍ଜ ଭିତରକୁ ସୁସଜ୍ଜିତା ପ୍ରୀତିବିହ୍ୱଳା ରାଧାକୁ ପଠାଇ ସାରା ରାତି ଅତନ୍ଦ୍ର ଭାବେ କୁଞ୍ଜଦ୍ୱାରରେ ଅପେକ୍ଷା କରେ ଏବଂ ରାତି ପାହି ସକାଳ ହେଲେ ରତିକ୍ଳାନ୍ତା

ରାଧାକୁ ସୁସଜ୍ଜିତା ଭାବେ ନିରାପଦରେ ପୁନରାୟ ଚନ୍ଦ୍ରସେଣା ଭବନରେ ପହଞ୍ଚାଇ ଦିଏ । ତ୍ୟାଗଶୀଳା ଲଳିତାର ଏ ମହନୀୟତା ମୁଁ କୌଣସି ଦିନ ଭୁଲିପାରିବି କି ?

ଗୋପତରୁଣୀଙ୍କ କଥା ନ କହିଲେ ମୋ ଜୀବନ ଅଧା ରହିଯିବ ଯେମିତି । ଏ କଥା କହି ବସିଲେ ମୋର ଗୋଟିଏ ଜନ୍ମ ଯଥେଷ୍ଟ ହେବ ନାହିଁ । ବୃନ୍ଦାରଣ୍ୟହିଁ ଥିଲା ଆମ ମିଳନ, ବିରହ ଓ ଅଭିସାରର ଉପଯୁକ୍ତ କ୍ଷେତ୍ର । ବୃନ୍ଦାରଣ୍ୟର ରେଣୁରେ ରେଣୁରେ ସେ ଇତିହାସ ଲିପିବଦ୍ଧ ହୋଇ ରହିଛି । ସେଦିନ ଋତୁ ବସନ୍ତର ଶେଷ ଚୈତ୍ରର ଗୋଧୂଳି ଲଗ୍ନରେ ପ୍ରିୟ ସଖୀ ବୃନ୍ଦାବତୀଙ୍କର ତଦ୍‌ଗତ ଭାବରେ ତନ୍ମୟ ହୋଇ ମୁଁ ତାଙ୍କୁ ସ୍କନ୍ଧରେ ସୁଦ୍ଧା ଧାରଣ କରିଥିଲି ।

ବୃନ୍ଦାରଣ୍ୟର ସେ ଅରଣ୍ୟ ସଂକୁଳ କଣ୍ଟକିତ ପଥରେ ମୋ ସ୍କନ୍ଧରେ ରୂପସୀ ବୃନ୍ଦା ଅନ୍ୟାନ୍ୟ ଗୋପବାଳାଙ୍କର ଇର୍ଷ୍ୟଣୀୟା ହୋଇଥିଲେ ସେଦିନ । ଭାବର ଭିକ୍ଷୁକ ମୁଁ; କିନ୍ତୁ ଅହଂକାରର, ଗର୍ବର ଦାସତ୍ୱ ଗ୍ରହଣ କରିବା ମୋ ପକ୍ଷେ ଅସମ୍ଭବ । ସେହି ଦୁର୍ଗମ କଣ୍ଟକିତ ପଥରେ ଗୋପବାଳାଙ୍କର ରକ୍ତାକ୍ତ ପଦତଳକୁ ଦେଖିବା ପରେ ଗର୍ବିତା ବୃନ୍ଦାଙ୍କୁ ଯେତେବେଳେ ଅହଂକାର ଗ୍ରାସ କଲା ଠିକ୍ ସେତିକି ବେଳେ ତାଙ୍କ ଭାର ବହନ କରିବା ମୋ ପାଇଁ ଚତୁର୍ଗୁଣ କଷ୍ଟଦାୟକ ହୋଇ ପଡ଼ିଲା । ଭାବର ଭାରକୁ ଶ୍ରଦ୍ଧାର ସହ ବହନ କରେ ମୁଁ; କିନ୍ତୁ ଅହଂର ଭାରକୁ ମୁହୂର୍ତ୍ତଟିଏ ବି ବହନ କରିପାରେ ନାହିଁ । ସୁତରାଂ ମୁଁ ତାଙ୍କୁ ନିମିଷକରେ ଭୂଇଁରେ କଚାଡ଼ି ଦେଇ କୁଞ୍ଜ ଭିତରେ ଆତ୍ମଗୋପନ କରିଥିଲି ? ନଦୀକୁ, ଆକାଶକୁ, ବତାସକୁ, ପ୍ରସୂନକୁ, ଲତାକୁ, ବୃକ୍ଷକୁ, ପକ୍ଷୀକୁ, ଧେନୁକୁ - ସମସ୍ତଙ୍କୁ ପ୍ରଶ୍ନ କଲେ ପାଗଳିନୀ ଭଳି - 'ଗୋବିନ୍ଦଙ୍କୁ କେହି ଦେଖିଛ କି ?'

ଆଉ ଯେଉଁଦିନ ଗୋପତରୁଣୀ ଯମୁନାରେ ଜଳକ୍ରୀଡ଼ା କରୁଥିଲେ ? ସେଦିନ ? ସେ ପର୍ଯ୍ୟନ୍ତ ଯୌବନ ମଦମତ୍ତା ସେଇ ଗୋପତରୁଣୀ ମାନଙ୍କର ଧାରଣା ଥିଲା ଯେ ମୁଁ ସେମାନଙ୍କର । ସେଦିନର ସେ ବସ୍ତ୍ର ହରଣର ଘଟଣା ପରେ ସମସ୍ତ ମାନୁଷୀ ସ୍ୱଭାବର ବର୍ଜନ ପରେ ଅର୍ଥାତ୍ ଲଜ୍ଜ୍ୟା, ଭୟ, କ୍ରୋଧ ସବୁକୁ ପରିତ୍ୟାଗ କଲାପରେ ଯେତେବେଳେ ଉର୍ଦ୍ଧ୍ୱକୁ ଦୁଇହାତ ଟେକି ସର୍ବଶକ୍ତିମାନ୍‌ର ଶରଣାଗତ ହେବାପରେ ସେମାନଙ୍କର ବଦ୍ଧମୂଳ ଭ୍ରାନ୍ତ ଧାରଣା ପରିବର୍ତ୍ତିତ ହେଲାଯେ, ସେମାନେ ମୋର-ମୁଁ ତାଙ୍କର ନୁହେଁ ।

ପ୍ରିୟସଖୀ ବିଶାଖା ଅନେକ ସମୟରେ କହେ - 'ହେ ଘନଶ୍ୟାମ ! ପବନକୁ ଫାଶ ପକେଇ ଧରିବା ଯାହା ତୁମକୁ ପ୍ରୀତିରେ ବାନ୍ଧିବା ତାହା । ପାରଦକୁ ହାତ ମୁଠାରେ ରଖିବା ଯାହା, ତୁମକୁ ଅନ୍ତରଙ୍ଗ ବୋଲି କହିବା ତାହା ।'

ବିଶାଖାର କଥା ମୋ ହୃଦୟକୁ ଗଭୀର ଭାବେ ସ୍ପର୍ଶ କରେ ।

## ।। ପଞ୍ଚମ ଗ୍ରନ୍ଥି ମୋଚନ ।।

ମଥୁରା ନଗରୀରେ ପ୍ରତିବର୍ଷ ବିପୁଳ ସମାରୋହରେ ସୁପ୍ରସିଦ୍ଧ ଧନୁଉତ୍ସବ ଅନୁଷ୍ଠିତ ହୁଏ । ସେ ଉତ୍ସବର ମୁଖ୍ୟ ଆକର୍ଷଣ କଂସ ନରେଶର ବିଶାଳକାୟ ଧନୁ । ଉତ୍ସବ ମଣ୍ଡପଠାରୁ ମଥୁରାନଗରୀର ସୀମାପର୍ଯ୍ୟନ୍ତ ରାସ୍ତାର ଉଭୟ ପାର୍ଶ୍ୱରେ ବିପ୍‌ପଣୀ ଶ୍ରେଣୀ । ପ୍ରବଳ ଜନସମାଗମ ହୁଏ । ମଥୁରାର ମିତ୍ର ରାଷ୍ଟ୍ର ସହ ବହୁ କରଦ ରାଜ୍ୟର ରାଜା ଗଣ ମଧ୍ୟ ବିଭିନ୍ନ ଉପଢ଼ୌକନ ସମ୍ଭାର ସହ ସେଠାରେ ଉପସ୍ଥିତ ହୁଅନ୍ତି । ପ୍ରାୟ ଏକ ସପ୍ତାହ ବ୍ୟାପି ଏ ଆନନ୍ଦ ଉତ୍ସବ ଲାଗିରହେ । ବହୁ ସୌଖିନ୍ ବିଳାସ ସାମଗ୍ରୀ କିଣା ବିକା ହୁଏ । ଏଥିସହିତ ହାତୀ ଘୋଡ଼ାଙ୍କ ଦ୍ୱାରା ବହୁ ଚମକପ୍ରଦ କ୍ରୀଡ଼ା ମଧ୍ୟ ପ୍ରଦର୍ଶିତ ହୁଏ । ପିତା ନନ୍ଦନଙ୍କଠାରୁ ଶୁଣିଥିଲି ଯେ ଆବାଳ ବୃଦ୍ଧବନୀତା ସମସ୍ତଙ୍କ ପାଇଁ ଏହି ଉତ୍ସବମୁଖର ଦିବସ ଗୁଡ଼ିକ ଚିତ୍ତବିନୋଦନର କେନ୍ଦ୍ରସ୍ଥଳୀ ରୂପେ ବିବେଚିତ ହୁଏ । ଏସବୁ ଶୁଣିବାପରେ ପ୍ରବଳ ଆଗ୍ରହ ହେଉଥିଲା ସେହି ଉତ୍ସବମୁଖର ପରିବେଶରେ ଯୋଗଦେବା ପାଇଁ, ମାତ୍ର ମା'ଯଶୋମତୀଙ୍କ ଭୟରେ ଭରସି କରି କିଛି କହି ପାରୁନଥିଲି । ମା'ଙ୍କର ଧାରଣା ଥିଲା ତାଙ୍କ ପଣତ ବ୍ୟତୀତ ମୋ ପାଇଁ ବିଶ୍ୱବ୍ରହ୍ମାଣ୍ଡରେ ଆଉ ଦ୍ୱିତୀୟ ନିରାପଦ ସ୍ଥାନଟିଏ ନାହିଁ ।

ସେଦିନ ପ୍ରଭାତରୁ ଜ୍ୟେଷ୍ଠଭ୍ରାତା ଓ ମୁଁ ଶ୍ରୀଦାମ, ସୁଦାମାଙ୍କ ସହ ଗୋଷ୍ଠକୁ ଚାଲି ଆସିଲୁ । ଗୋ-ଦୋହନ ଶେଷ କରି ମା'ଙ୍କ ନିକଟରେ ପହଞ୍ଚାଇ ଦେଲେ ଆମର ସେଦିନ ବୃନ୍ଦାବନରେ ଏକ ଅଭିନବ କ୍ରୀଡ଼ା କୌଶଳର ଯୋଜନା ଥାଏ । ହଠାତ୍ ଦୂରରୁ ଏକ ସୁସଜ୍ଜିତ ରଥ ଦୃଷ୍ଟିଗୋଚର ହେଲା । କୃଷ୍ଣାଶ୍ୱବାହିତ, ସ୍ୱର୍ଣ୍ଣଛତ୍ରଖଚିତ ପୀତ ଧ୍ୱଜା ଉତ୍ତୋଳିତ ଏକ ସୁଦୃଶ୍ୟ ରଥ । ସେ ରଥରୁ ଅବତରଣ କଲେ ଜଣେ ଅଭିଜାତ ରାଜପୁରୁଷ । ଶୀରରେ ତାଙ୍କର ଶ୍ୱେତ ଉଷ୍ଣୀଶ, ଅଂଗରେ ରାଜ ପରିଚ୍ଛଦ । ଆମେ ସମସ୍ତେ ନୀରବରେ ତାଙ୍କୁ ଚାହିଁ ରହିଲୁ । ଆମର ବିସ୍ମୟର ସୀମା ରହିଲା ନାହିଁ । ସେ ପ୍ରୌଢ଼ବ୍ୟକ୍ତି ଜଣକ ରଥରୁ ଅବତରଣ କରି ଯମୁନାତୀରର ସିକତା ଶଯ୍ୟାକୁ ପ୍ରଥମେ ନିରୀକ୍ଷଣ କଲେ । ତାପରେ ଯେମିତି ବହୁ ବର୍ଷରୁ ସେ ଯାହା ଖୋଜୁଥିଲେ ସେହି ଦୁର୍ଲଭ ରତ୍ନକୁ ପାଇବା ଭଳି ଆନନ୍ଦରେ ବିହ୍ୱଳ ହୋଇ ଉଠିଲେ । ହଠାତ୍ ଏକ ପାଗଳ ଭଳି ସେ ବାଲି ଉପରେ କେଜାଣି କାହା ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣିପାତ କଲେ । ତାପରେ ସେ ବାଲିକୁ ନିଜର ମସ୍ତକରେ ବୋଳି ପକାଇଲେ । ଆମେ ସମସ୍ତେ ତଟସ୍ଥ ଭାବେ ଚାହିଁ ରହିଥାଉ । ସେ ଅଭିଜାତ ବ୍ୟକ୍ତି ଜଣକ ଛୋଟ ଶିଶୁ ଭଳି ଉଚ୍ଚସ୍ୱରରେ ବିଳାପ

କରିବାକୁ ଲାଗିଲେ । ବାଲି ଉପରେ ଗଡ଼ି ଯାଉଥା'ନ୍ତି ସେ, ସାରାଦେହ ସ୍ୱେଦ ଜର୍ଜର, ନୟନ ଅଶ୍ରୁଳିପ୍ତ, ଉଠିବାକୁ ଚେଷ୍ଟାକରି ସୁଦ୍ଧା ପାଦପକାଇ ଚାଲିବାକୁ ଅସମର୍ଥ ହୋଇପଡ଼ିଥା'ନ୍ତି, ଅଶକ୍ତ ହୋଇପଡ଼ିଥାନ୍ତି, ପଦରେ ବେପଥୁ । ଆମେ ଦୁଗ୍ଧଭାଣ୍ଡ ଭୂମିଉପରେ ରଖିଦେଇ ତାଙ୍କ ନିକଟକୁ ଧାଇଁଗଲୁ । ସେ ହତବାକ୍ ଭାବେ ବିହ୍ୱଳ ନେତ୍ରରେ ଚାହିଁ ରହିଲେ । ଅଶ୍ରୁ ଗଦ୍‌ଗଦସ୍ୱରରେ ସେ କ'ଣ କହୁଥା'ନ୍ତି ଆମେ ବୁଝିପାରୁନଥାଉ । କେବଳ ଏତିକି ଅନୁମାନ କରୁଥାଏ ଯେ, ମୋର ଓ ଜ୍ୟେଷ୍ଠଭ୍ରାତାଙ୍କର ପାଦତଳେ ଧ୍ୱଜ, ଅଙ୍କୁଶ, ଯବ, ଧାନ୍ୟ, କଳସ ପ୍ରଭୃତି ଯେଉଁ ଅଷ୍ଟାଦଶଟି ଚିହ୍ନ ଚିହ୍ନିତ ହୋଇଛି ଜନ୍ମଲଗ୍ନରୁ, ଏବଂ ଆମେ ବାଲିରେ ପାଦପକାଇ ଚାଲିଲେ ସେ ଚିହ୍ନ ଗୁଡ଼ିକ ବାଲିରେ ଅଙ୍କିତ ହୋଇଯାଏ, ସେହି ଚିହ୍ନ ସବୁକୁ ଦେଖି ବିଦେଶାଗତ ପ୍ରୌଢ଼ ଜଣଙ୍କର ଏଭଳି ଦୁର୍ଦ୍ଦଶା । ସେ ଅସ୍ପଷ୍ଟ ସ୍ୱରରେ କହୁଥିଲେ - 'ଶିରରେ ଶିଖିପୁଚ୍ଛ, ଗଳାରେ ବନପୁଷ୍ପର ମାଳ, କଟୀରେ ପୀତ ବସନ, ହସ୍ତରେ ମୋହନ ବଂଶୀ, କର୍ଣ୍ଣରେ ମକର କୁଣ୍ଡଳ ଏଇ ତେବେ କ'ଣ ନନ୍ଦସୁତ - ଯଶୋଦା ଦୁଲାଳ ? ଏଇତେବେ ଶୂରମୁଖ୍ୟ ବସୁଦେବ ନନ୍ଦନ, ବନ୍ଦିନୀ ରାଜଜେମାଙ୍କର ଅଷ୍ଟମ ଗର୍ଭର ସନ୍ତାନ ?

ସେତେବେଳକୁ ଶ୍ରୀଦାମ ଗୋ-ଗୋଷ୍ଠରୁ ପିତାଙ୍କୁ ଡାକି ଆଣିଥିଲା । ପିତା ତାଙ୍କୁ ଦେଖୁ ଦେଖୁ ଆନନ୍ଦାତିଶଯ୍ୟରେ ହତବାକ୍ ହୋଇଗଲେ । ତା ପରେ ତାଙ୍କୁ ଆଲିଙ୍ଗନା ବଦ୍ଧ କରି କୁଶଳ ଜିଜ୍ଞାସା କଲେ - 'ମହାଭାଗ ଅକ୍ରୁର ! ଆପଣ ଏତେ କଷ୍ଟ କରି ଗୋପ ଭୁବନକୁ ଆସିଛନ୍ତି ଯେ ! କିଛି ଜରୁରୀ କାର୍ଯ୍ୟ ଅଛି କି ? ମୋତେ ତ ଡକାଇ ନେଇ ପାରିଥା'ନ୍ତେ । ପଥ ମଧ୍ୟରେ ଆପଣଙ୍କର କିଛି ଅସୁବିଧା ହୋଇ ନାହିଁ ତ ? ଆସନ୍ତୁ ପ୍ରଥମେ ଆମ ଦରିଦ୍ର, କୁଟୀରରେ ବିଶ୍ରାମ ନିଅନ୍ତୁ ଓ ଅତିଥି ସେବାର ସୌଭାଗ୍ୟ ମୋର ହେଉ ।'

ସେତେବେଳକୁ ଆଗନ୍ତୁକ ପ୍ରକୃତିସ୍ଥ ହେଲେଣି, ପିତାଙ୍କର ଆମ ଉପରେ ଦୃଷ୍ଟି ପଡ଼ିବା ମାତ୍ରେ କହିଲେ - 'ଆରେ ଶ୍ୟାମ, ବଳରାମ, ଇଯେ ତୁମର ଗୁରୁଜନ ସଂପର୍କରେ ପିତୃବ୍ୟ ।'

ଏତିକି ଶୁଣିବା ମାତ୍ରେ ଆମେ ତାଙ୍କ ପଦସ୍ପର୍ଶ କରିବାକୁ ଗଲୁ । ମାତ୍ର ତା'ପୂର୍ବରୁ ସେ ଆମ ଦୁହିଁଙ୍କୁ ତଳୁ ଉଠାଇ ନିଜ ବକ୍ଷରେ ଭିଡ଼ି ଧରିଲେ । ତାଙ୍କ ନୟନରୁ ପୁଣି ଥରେ ଅଶ୍ରୁର ପ୍ରସ୍ରବଣ ଝରି ଆସିଲା । ତାଙ୍କର ସାରା ଦେହ ରୋମାଞ୍ଚିତ ହୋଇ ଉଠିଲା । ସେ ପିତାଙ୍କୁ ଚାହିଁ କହିଲେ -

'ଏଥର ରାଜପୁତ୍ରଙ୍କର ରାଜସଦନକୁ ଯିବାର ସମୟ ଆସିଗଲା ।'

ପିତା କିଛି ନକହି ତଳକୁ ମୁହଁ ପୋତିଦେଲେ ।

ଏହି ରାଜକୀୟ ଅତିଥିଙ୍କ ସତ୍କାର ନିମିତ୍ତ ସେଦିନ ଆମ ଘରେ ଏକ ଉତ୍ସବର ଆୟୋଜନ କରାହୋଇଥାଏ । ଘୃତ ଓ ଦୁଗ୍ଧରେ ବହୁବିଧ ସୁପାଚ୍ୟ ସୁଖାଦ୍ୟ ମା' ପ୍ରସ୍ତୁତ କରିଥାନ୍ତି । ଭୋଜନ ପର୍ବ ଶେଷ ହେବା ପରେ ପିତା ସୁବାସିତ ତାମ୍ବୁଳ ଅତିଥିଙ୍କୁ ପ୍ରଦାନ କରିବା ସମୟରେ ପ୍ରଶ୍ନ କଲେ- 'ମହାଭାଗ ଅକ୍ରୁର ! ଆସିବାର ଉଦ୍ଦେଶ୍ୟ ତ କହିଲେ ନାହିଁ ?'

ସେ ଏ ପ୍ରଶ୍ନରେ ବିଚଳିତ ହୋଇପଡ଼ିଲେ । ମୋତେ ଓ ମା'ଙ୍କୁ ବଡ଼ ଗଭୀର ଦୃଷ୍ଟିରେ ନିରୀକ୍ଷଣ କଲେ । ସବୁଦିନଭଳି ମା' ମୋର ଭୋଜନ ପରେ ନବାତ ସହ ନବନୀତର ମିଶ୍ରଣ କରି ମୋତେ ଖୁଆଇ ଦେଉଥିଲେ । ଅତିଥି ଏକ କ୍ଷୁଦ୍ର ପେଟିକା ଭିତରୁ ରେଶମ ବସ୍ତ୍ରରେ ଲିଖିତ ଚିଟାଉଟିଏ ବାହାର କରି ପିତାଙ୍କ ହାତକୁ ବଢ଼ାଇ ଦେଲେ । ପିତା ଚିଠିଟି ପଢ଼ି ଶେଷ କରିବା ପୂର୍ବରୁ ସର୍ବସ୍ୱାନ୍ତ ହୋଇଯିବା ଭଳି ବିଷର୍ଣ୍ଣ ଦିଶିଲେ । ଏତେ ବେଶୀ ଭାଙ୍ଗି ପଡ଼ିବା ପିତାଙ୍କୁ ମୁଁ କେବେ ଦେଖିନାହିଁ । ଏପରିକି ଜ୍ୟେଷ୍ଠଭ୍ରାତାଙ୍କ ଭଳି ଅନ୍ୟମନସ୍କ ଦ୍ରଷ୍ଟାଙ୍କ ଆଖିରୁ ଏହା ବାଦ୍ ଗଲା ନାହିଁ ।

ପିତାଙ୍କୁ ପ୍ରଶ୍ନ କରିବାରୁ ସେ ଥର ଥର କଣ୍ଠରେ କହିଲେ- 'ମଥୁରା ନରେଶ କଂସର ଚିଟାଉ !'

ହଁ, ବିସ୍ମିତ ହେବାର ହିଁ କଥା । କାରଣ ଗୋପ ମଥୁରାର ଏକ କରଦ ରାଜ୍ୟ । ପିତା ନନ୍ଦ ଗୋପାଳଗଣ ମୁଖ୍ୟ । ମଥୁରା ଭଳି ଏକ ଶକ୍ତିଶାଳୀ ବିଶାଳ ରାଷ୍ଟ୍ରର ପ୍ରଭାବଶାଳୀ, ପ୍ରତାପୀ ନରେଶ କଂସ ଯେ ଗୋପାଳଗଣ ମୁଖ୍ୟଙ୍କ ନିକଟକୁ ଏକ ସ୍ୱତନ୍ତ୍ର ତଥା ବିଶେଷ ଦୂତ ଭାବେ ଜଣେ ରାଜପୁରୁଷଙ୍କ ହାତରେ ଚିଠି ଖଣ୍ଡିଏ ଦେବେ ଏହା ଯେତିକି ବିସ୍ମୟଜନକ ସେତିକି ଭୟପ୍ରଦ । ଚିଟାଉର ସାରାଂଶ ହେଲା ନିକଟରେ ଅନୁଷ୍ଠିତ ହେବାକୁ ଯାଉଥିବା ଧନୁ ଉତ୍ସବ ନିମିତ୍ତ ଗୋପପୁରରୁ ଅଷ୍ଟୋତ୍ତର ଶତ ଭାର ଦୁଗ୍ଧ, ଦଧି, ଘୃତ, ଘୃତପକ୍ୱ ମିଷ୍ଟାନ୍ନ, ବିଶେଷତଃ କ୍ଷୀରପିଣ୍ଡକ, ଯାହାକି ଗୋପ ରମଣୀଗଣ ହିଁ ପ୍ରସ୍ତୁତ କରନ୍ତି ଓ ତାହା ସମଗ୍ର ଆର୍ଯ୍ୟାବର୍ତ୍ତରେ ତାର ଶୁଦ୍ଧତା, ସ୍ୱାଦୁ ଓ ମିଷ୍ଟତା ପାଇଁ ପ୍ରସିଦ୍ଧି ଅର୍ଜନ କରିଥିଲା । ନବନୀତ ଇତ୍ୟାଦି ନିର୍ଦ୍ଦିଷ୍ଟ ସମୟରେ ମଥୁରାରେ ପହଞ୍ଚିବା ଆବଶ୍ୟକ । ପଚାଶଜଣ ଗୋପାଳ ଯୁବକ ମଧ୍ୟ ଯିବେ ମଥୁରାରେ ସେବା କାର୍ଯ୍ୟରେ ନିଯୁକ୍ତ ହେବାପାଇଁ । ଏତଦ୍ ବ୍ୟତୀତ ସବୁଠାରୁ ଚମକପ୍ରଦ ଆଦେଶ ହେଲା କୃଷ୍ଣ ବଳରାମ ଦୁହେଁ କାଲି ପ୍ରଭାତରେ ଅକ୍ରୁରଙ୍କ ସହ ମଥୁରା ଯାତ୍ରା କରିବେ ।

ଚିଠି ନୁହେଁ, ଯେମିତି ବଜ୍ରପାତ । ମା'ତ ଶୁଣୁ ଶୁଣୁ ମୋତେ ଓ ଜ୍ୟେଷ୍ଠଭ୍ରାତାଙ୍କୁ ଦୃଢ଼ ଭାବେ ଆଲିଙ୍ଗନ କରି ପକାଇଲେ, ଯେମିତିକି ତତ୍‌କ୍ଷଣାତ୍ ଆମ ଦୁହିଙ୍କୁ କେହି ବଳପୂର୍ବକ ତାଙ୍କଠାରୁ ଛଡ଼ାଇ ନେଉଛି । ତା'ପରେ ଅକ୍ରୁରଙ୍କ ଉପସ୍ଥିତିରେ ତାଙ୍କର ସ୍ୱଭାବ ବିରୁଦ୍ଧ ଭାବେ ଚିତ୍କାର କରି ପିତାଙ୍କୁ କହିଲେ- 'ନା- ଏ ଅତିଥିଙ୍କୁ ଫେରିଯିବାକୁ କୁହ । କଂସର ଦାବୀଠାରୁ

ଦୁଇଗୁଣ ଅଧିକ ଦୁଗ୍ଧ ଦଧି ବରଂ ପଠାଇଦିଅ ମାତ୍ର ମୋ ନୀଳମଣି ଆଉ ବଳରାମ ମଥୁରା ଯିବେ ନାହିଁ । ଗୋପ ଗାଁରେ ବଢ଼ିଚନ୍ତି ମୋର ଅବୋଧ ଦୁଇଟି ବାଳୁତ । ମଥୁରା ନଗରର ହାତୀ ଘୋଡ଼ା, ଖଣ୍ଡା ଖେଳ ଦେଖି ସେମାନେ ଡରିଯିବେ ନାହିଁକି ? ଆଲୁଅ ଝଲମଲ ମଥୁରା ନଗରୀରେ ଯଦି ମୋ ପିଲେ ବାଟବଣା ହେଇଯାଆନ୍ତି !'

ମା'ଙ୍କ କଥା ଶୁଣି ଅକ୍ରୁର ଟିକିଏ ହସିଲେ । କିଏ ବା କେମିତି ଜାଣିବ ଯଶୋମତୀ ମାତାଙ୍କର ଏଇ ଅବୋଧ, ଅନ୍ଧ ବାତ୍ସଲ୍ୟ, ଏଇ ଅଫୁରନ୍ତ ମମତା ମୋର କେତେ କାମ୍ୟ । ମୁଁ ଚିରଦିନ ପ୍ରୀତିର କାଙ୍ଗାଳ ଯେ ! ସ୍ନେହରେ ବନ୍ଧା ପଡ଼ିବା ହିଁ ତ ମୋର ଧର୍ମ ।

ଅକ୍ରୁର କହିଲେ ବଡ଼ ଅସହାୟ ଭାବରେ - 'ଜିଦ୍ କରନ୍ତୁ ନାହିଁ ଦେବୀ । କଂସର ନିର୍ଦ୍ଦେଶ ଯେ ଅଲଂଘ୍ୟ ! ଏହାର ବ୍ୟତିକ୍ରମ ହେଲେ ମହାପ୍ରଳୟର ସମ୍ଭାବନା ।

କଂସ ସଂପର୍କରେ ଏତିକି ଶୁଣିବା ମାତ୍ରେ ମୋର ସର୍ବାଙ୍ଗ କ୍ରୋଧରେ ଜର୍ଜ୍ଜରିତ ହୋଇ ଉଠିଲା । ମୁହୂର୍ତ୍ତକରେ ମୁଁ ତାହା ଦମନ କଲି । କାରଣ ଏହାତ ମୋର ଅତିପ୍ରିୟ ଗୋପଭୂମି । ଏହି ପାବନ ଭୂମିକୁ କ୍ରୋଧର ବିଷ ବାଷ୍ପ ସୁଦ୍ଧା ସ୍ପର୍ଶ ନ କରୁ । ବୃନ୍ଦାବନର ପତ୍ର ଶୀର୍ଷେ ଶୀର୍ଷେ କେତେ ପ୍ରୀତିର କବିତା ଲିପିବଦ୍ଧ ହୋଇ ରହିଛି, ଯମୁନାର ଜଳ ଧାରାରେ କେତେ ପ୍ରଣୟଗୀତିର ମଧୁ ମୂର୍ଚ୍ଛନାର ସ୍ୱର ଅଶ୍ରୁତ ହୋଇ ରହିଛି, ଗୋପ ଦାଣ୍ଡର ରେଣୁରେ ରେଣୁରେ ପ୍ରେମର କେତେ ଅନୁକ୍ତ କଥା ଅବ୍ୟକ୍ତ ହେଇ ରହିଛି । ନାଃ ! କ୍ରୋଧ ପ୍ରକାଶର ପରିସର ବା କ୍ଷେତ୍ର ଗୋପଭୂମି ଆଦୌ ନୁହେଁ ।

ମୁଁ ନିଜକୁ ସମ୍ବରଣ କଲି । ଗୋପବାସୀ ପ୍ରତ୍ୟେକ ଅତିଥିକୁ ଈଶ୍ୱର ଜ୍ଞାନ କରନ୍ତି । ସୁତରାଂ ମା' ଯଶୋମତୀ ଓ ପିତା ନନ୍ଦଙ୍କର ଅତିଥି ସତ୍କାରରେ କୌଣସି ତ୍ରୁଟି ରହିଲା ନାହିଁ । ତଥାପି ମା' ବଡ଼ ଅନ୍ୟମନସ୍କ ଦିଶୁଥା'ନ୍ତି । ପିତା ଯେହେତୁ ବାରଣ କରିଥା'ନ୍ତି ଅଶ୍ରୁମୋଚନ କରିବା ପାଇଁ, କିନ୍ତୁ ମା'ଙ୍କ ପକ୍ଷେ ଅଶ୍ରୁରୋଧ କରିବା ଆଦୌ ସମ୍ଭବ ହେଉନଥାଏ । ପିତାଙ୍କ ଚକ୍ଷୁ ଦିଓଟି ମଧ୍ୟ ଉଦାସ କ୍ଳାନ୍ତିରେ ଭରି ଯାଇଥାଏ । ମା' ବାରମ୍ବାର ପିତାଙ୍କୁ ହୁଏତ ନିଜକୁ ପ୍ରଶ୍ନ କରୁଥା'ନ୍ତି - 'ମୁଁ ଯେଉଁ ନୀଳମଣିକୁ ସ୍ତନ୍ୟପାନ କରାଇଛି, ତୁମେ କହୁଚ ସେ ମୋ ପୁଅ ନୁହେଁ ? ମୋ କ୍ଷୀରଧାର ତା'ଧମନୀରେ ରକ୍ତ ହୋଇ ପ୍ରବାହିତ ହେଉଛି, ଅଥଚ ତୁମେ କହୁଚ ସେ ଆଉ କାହାର ପୁଅ ? ଏହା ମୁଁ ବିଶ୍ୱାସ କରିବି କିପରି ?

ମା'ଙ୍କ କଣ୍ଠର ଏଇ 'ନୀଳମଣି' ଡାକଟି ମୋର ଅତିପ୍ରିୟ ।

ଏକ ପକ୍ଷରେ ମଥୁରାର ଉତ୍ସବମୁଖର ପରିବେଶରେ ନିଜକୁ ମିଶାଇ ଦେବା

ପାଇଁ ମୋର କିଶୋର ହୃଦୟ ବ୍ୟାକୁଳ ହୋଇ ଉଠୁଥାଏ । ଅନ୍ୟପକ୍ଷରେ ଆସନ୍ନ ବିଛେଦର ଦୁଃଖ ମୋ ହୃଦୟକୁ ଶତଖଣ୍ଡରେ ଭାଂଗି ଦେଉଥାଏ । ମଥୁରାର ରାଜ ଅନ୍ତଃପୁରରେ ହୁଏତ ପ୍ରାଚୁର୍ଯ୍ୟ ଥାଇପାରେ କିନ୍ତୁ ମା' ଯଶୋମତୀଙ୍କର ବାତ୍ସଲ୍ୟ, ଗୋପାଙ୍ଗନାଙ୍କର ଅନାବିଳ, ମଧୁର ପ୍ରଣୟ ରସ ଦୁର୍ଲଭ, ଦୁଷ୍ପ୍ରାପ୍ୟ । ଗୋପର ଅଭିଜ୍ଞତା, ଗୋପର ଅନୁଭୂତି ହିଁ ମୋ ହୃଦୟରେ ଐଶ୍ୱର୍ଯ୍ୟ ହୋଇ ରହିଥାଉ ଚିରକାଳ । କାରଣ ସମଗ୍ର ବିଶ୍ୱ ସଂସାରରେ ତାହା ଖୋଜିଲେ ମିଳିବ ନାହିଁ ।

ରାତି ପାହି ପାହି ଆସୁଛି ।ଯାତ୍ରାର ପ୍ରସ୍ତୁତି ଚାଲିଛି । ସମସ୍ତ ଗୋପବାସୀଙ୍କ ଆଖିରେ ଅଶ୍ରୁ ।ସମସ୍ତ ଗୋପରମଣୀଙ୍କ ହାତରେ ସର ଲବଣୀର ପାତ୍ର । ମୁଁ ଯେ ମାତ୍ର ତିନୋଟିଦିନ ପାଇଁ ଯାଉଛି ବୋଲି କହିଲେ ବି ସେମାନେ ବିଶ୍ୱାସ କରୁନାହାନ୍ତି । ଯଦିଓ ମୁଁ ଜାଣେ ମୋ ଯାତ୍ରା ଆଗକୁ.....ଆଗକୁ । ପଛକୁ ଫେରି ଚାହିଁଲେ ଅଟକି ରହିବାକୁ ହୁଏ, ଯାହାଗତି ରୋଧକ । ଅତୀତ ମୋର ସ୍ମୃତି ହୋଇଥାଉ । ମୋତେ କିନ୍ତୁ ଆଗକୁ ଯିବାକୁ ପଡ଼ିବ ଗୋପରୁ ମଥୁରା, ମଥୁରାରୁ ଦ୍ୱାରକା - ଦ୍ୱାରକାରୁ ହସ୍ତିନାର କୁରୁକ୍ଷେତ୍ର....ଏବଂ ଶେଷରେ ଏଇ..... ।

ଶେଷଥର ପାଇଁ ଯମୁନାନଦୀ ତୀରବର୍ତ୍ତୀ ବୃନ୍ଦାବନର ସେ ତମାଳକୁଞ୍ଜକୁ ଦେଖିବାକୁ ଧାଇଁଗଲି ରୁଦ୍ଧ ଶ୍ୱାସରେ । ହାତରେ ମୋର ସେଇ ମୋହନ ବଂଶୀଟି ମାତ୍ର ଥାଏ । ଆଶ୍ଚର୍ଯ୍ୟ ରାତି ସଂପୂର୍ଣ୍ଣ ପାହିନଥିଲେ ସୁଦ୍ଧା ସବୁଦିନଭଳି ରାଧାହିଁ ସେ କୁଞ୍ଜରେ ଅପେକ୍ଷା କରିଥିଲା ନତମୁଖୀ ଅଶ୍ରୁମୁଖୀ ଭାବରେ । ତାକୁ ଚାହିଁ ଦେବାମାତ୍ରେ ମୋ ଛାତି ଭିତରେ ବ୍ୟଥାର ବରଫ ସ୍ରୋତଟିଏ ପହଁରିଗଲା । ମୁଁ ପଦଟିଏ ବି ଉଚ୍ଚାରଣ କରିପାରିଲି ନାହିଁ । ଅନ୍ତହୀନ ପ୍ରତୀକ୍ଷାର ପ୍ରତୀକ ରାଧା ପ୍ରୀତିର ମୂର୍ତ୍ତିମନ୍ତ ପ୍ରତିମାଟିଏ ଭଳି ନୀରବରେ ଠିଆ ହୋଇଥିଲା । ତା'ର ନିଶବ୍ଦ, ସ୍ଫୁରିତ ବନ୍ଧ ଓଷ୍ଠାଧର ସହସ୍ରବାର ମୋ ନାମ ଜପୁଥିଲା ଯେମିତି । କେମିତି କହିଥା'ନ୍ତି ଏ କଠୋର ସତ୍ୟ ? କିଛି ନକହି ତାହାତରେ ବଂଶୀଟି ଧରାଇ ଦେଇ ଦ୍ରୁତ ପଦରେ ଚାଲି ଆସିଲି, ପଛକୁ ଲେଉଟି ଚାହିଁବାର ସାହସ ସୁଦ୍ଧା ହେଲା ନାହିଁ, ଚାହିଁଥିଲେ ହୁଏତ ଅଶ୍ରୁଭାରରେ ନିଶ୍ଚିହ୍ନ ହୋଇଯାଇଥା'ନ୍ତି । ବାରମ୍ବାର ମନେପଡୁଥାଏ, ଦିନେ ଶୁଖିଲା, ଝାଉଁଳା ମାଳତୀ ଫୁଲଟିକୁ ପବନରେ ମୋ ପାଖକୁ ଉଡ଼ାଇ ଦେଇ ରାଧା ତା' ମନର ସମସ୍ତ ଗୋପନ ଅଭିବ୍ୟକ୍ତି ପ୍ରକାଶ କରିଥିଲା । ସେ ମଉଳାଫୁଲକୁ ଦେଖିବା ମାତ୍ରେ ରାଧାର ଝାଉଁଳା ମୁହଁଟି ମୋର ମନେ ପଡ଼ିଯାଇ ମୋତେ ବିବ୍ରତ କରିପକାଏ । ସେଇଦିନୁ ସଜଫୁଟା ମାଳତୀ ଭଳି ଶୁଖିଲା ମାଳତୀ ଫୁଲ ମଧ୍ୟ ମୋର ଶ୍ରଦ୍ଧାର ବସ୍ତୁ ହୋଇ ରହିଛି । ମୋର ସମସ୍ତ ଅନୁକ୍ତଭାବ ବ୍ୟକ୍ତ ହୋଇଛି ସେଥିରେ । ରାଧା ପକ୍ଷରେ ତା' ଦୁର୍ବୋଧ୍ୟ ନୁହେଁ । ଏ ଅଭିଜ୍ଞାନର ଅର୍ଥ ସେ ନିଶ୍ଚୟ ବୁଝିବ ।

ଜ୍ୟେଷ୍ଠଭ୍ରାତା ମୋ କାନ ପାଖରେ କହିଲେ - 'ତୁ ବଡ଼ ନିଷ୍ଠୁର ନିର୍ଲିପ୍ତରେ କାହ୍ନୁ ! ରାଧାକୁ ପଦଟିଏ କଥା କହିବା ଉଚିତ ନଥିଲା କି ?

ମୁଁ ବଡ଼ଭାଇଙ୍କ ହାତକୁ ସଜୋରେ ଚାପିଧରିଲି, ଯେମିତି ଏତିକିରେ ସେ ଚୁପ୍ ହୋଇ ଯାଆନ୍ତୁ । ତାପରେ ଖୁବ୍‌ଯତ୍ନରେ ରଖିଥିବାଏକ କ୍ଷୁଦ୍ର ପେଟିକା ତାଙ୍କ ଆଖି ଆଗରେ ଖୋଲି ଧରିଲି । ସେଥିରେ ମୃତ୍ତିକା ଖଣ୍ଡଟିଏ ଥିଲା । ମାତ୍ର, ଗୋପଭୂମିର ମୃତ୍ତିକା । ଭାଇ ଆଶ୍ଚର୍ଯ୍ୟ ହୋଇଗଲେ । ମୁଁ ଧୀର ସ୍ୱରରେ କହିଲି - 'ମୋପାଇଁ ଏହା ଚନ୍ଦନ ତିଳକ ତୁଲ୍ୟ । ଏଥିରେ ମା' ଯଶୋମତୀଙ୍କ ପଦରେଣୁ ମିଶିଛି । ଗୋପରମଣୀଙ୍କ ସହ ରାଧାର ପଦରେଣୁ ବି ମିଶି ରହିଛି ଯେ !'

ମୁଁ ଓ ଭାଇ ରଥରେ ବସିଲୁ । ରଥ ଆଗକୁ ଚାଲିଲା । ଚାହୁଁ ଚାହୁଁ ଗୋପର ସୀମାନ୍ତ ଅତିକ୍ରମ କରିଗଲା । ପ୍ରଣୟ ଚିରକାଳ ଏଇଭଳି ବିରହର କରୁଣ ରାଗିଣୀ ହୋଇଥାଉ । ପ୍ରଣୟ ସ୍ମୃତି ହୋଇ ଥାଉ । ପ୍ରଣୟ ପ୍ରତୀକ୍ଷା ହୋଇଥାଉ । ସେତିକି ହିଁ ତାର ଲୟ - ତାର ସାଧନା - ତା'ର ସିଦ୍ଧି ।

## ।। ଷଷ୍ଠ ଗ୍ରନ୍ଥି ମୋଚନ ।।

ବହୁତ ପଛରେ ରହିଯାଇଥିଲା ଗୋପପୁର, ବୃନ୍ଦାବନ । ଯମୁନା କୂଳେ କୂଳେ ରଥ ଗଡ଼ି ଚାଲିଥିଲା ଆଗକୁ । ବହୁଦୂରରୁ ଏକ କରୁଣ ବଂଶୀଧ୍ୱନୀ ପବନରେ ଭାସି ଆସି ମୋତେ ଉଚ୍ଚକିତ କରିଦେଲା । ଜ୍ୟେଷ୍ଠଭ୍ରାତା ବଡ଼ ବିମର୍ଷ ଭାବେ ବସି ରହିଥିଲେ । ସେ ତାଙ୍କର ହୃଦ୍‌ବୃତ୍ତିକୁ କୌଣସି ଦିନ ସମ୍ବରଣ କରିପାରନ୍ତି ନାହିଁ । ତାହା କ୍ରୋଧ ହେଉ ବା ଶୋକ ହେଉ । ବୃନ୍ଦାବନକୁ ଚାହିଁ ଦେବା ମାତ୍ରେ ତାଙ୍କ ଚକ୍ଷୁରୁ ଅବାରିତ ଅଶ୍ରୁଧାର ଝରି ଆସୁଥିଲା । ଆମ୍ ସମ୍ବରଣ କରିପାରିବାର କଳା ମୋତେ କିନ୍ତୁ ଜଣାଥିଲା । ମାତ୍ର ଆଶ୍ଚର୍ଯ୍ୟ ! ସେଦିନ ମୁଁ ନିଜକୁ ସମ୍ବରଣ କରିପାରୁନଥିଲି । ରଥର ଶବ୍ଦବି ମୁଁ ଶୁଣି ପାରୁନଥିଲି । ମୋତେ କେବଳ ଗୋଟିଏ ମାତ୍ର ଶବ୍ଦ ଶୁଭୁଥିଲା, 'ନୀଳମଣିରେ.....' - ମା' ଯଶୋମତୀଙ୍କର ସ୍ନେହବୋଳା ଡାକଟି, ଶ୍ରଦ୍ଧାର ନିର୍ଯ୍ୟାସରେ ଯେମିତି ସେ ଶବ୍ଦଟି ମୋରିପାଇଁ ହିଁ ସୃଷ୍ଟି କରିଥିଲେ ମା', ଯେଉଁଦିଗକୁ ଚାହୁଁଥିଲି ମା'ଙ୍କୁ ହିଁ ଦେଖୁଥିଲି । ହାତରେ ଲହୁଣି ବାଟିଟି ଧରି ସେ ଯେମିତି ଠିଆ ହୋଇ ଚାହିଁ ରହିଛନ୍ତି ମୋ ଫେରନ୍ତା ବାଟକୁ । ତାଙ୍କ ଆଖିର ଲୁହରେ ବକ୍ଷବାସ ତିନ୍ତି ଯାଇଛି । ମା'ର ଏଇ ମୂର୍ତ୍ତି ମୋ ପାଇଁ ଶ୍ରଦ୍ଧା, ସମ୍ମାନ ଓ ପୂଜାର ବସ୍ତୁ । ଚିରକାଳ ମୋ ମୁଣ୍ଡ ନଇଁଯାଏ ମା'ର ଏଇ ମୂର୍ତ୍ତି ନିକଟରେ । ମା' ଯଶୋମତୀ ମୋର ଚିର ପୂଜନୀୟା । ଯେତେ କଠୋର ସତ୍ୟ ହେଲେବି ମୁଁ

କୌଣସି ଦିନ ସ୍ୱୀକାର କରିବି ନାହିଁ ଯେ ମୁଁ ଯଶୋମତୀଙ୍କର ସନ୍ତାନ ନୁହେଁ ବୋଲି ! ସେଇ ମା'ର କ୍ରୋଡ଼ରେ ମୋର ଅସହାୟ ଶୈଶବ ବିତିଛି, ସେଇ ମା'ର ପଣତ ତଳେ ମୋର ଚଳଚଞ୍ଚଳ ଉଦ୍ଦାମ କୈଶୋର ବି ବିତିଛି । ସେଇ ମା' ତେଣୁ ମୋ ପାଇଁ ପୃଥିବୀ ଠାରୁ ବଡ଼ ! ମୁଁ ତା' ମମତାର ଋଣ କୌଣସି ଜନ୍ମରେ ପରିଶୋଧ କରିପାରିବି ନାହିଁ । ଲୁହ ଦି'ଟୋପା ମୋ ଆଖିରୁ ଝରି ଆସୁଥିଲା । ପୂଜ୍ୟ ଅକ୍ରୁର ଓ ଜ୍ୟେଷ୍ଠଭ୍ରାତ ଦେଖିବା ପୂର୍ବରୁ ମୁଁ ତାକୁ ପୋଛି ପକାଇଲି ।

ରଥ ମଥୁରା ରାଜଦାଣ୍ଡରେ ପହଞ୍ଚି ଯାଇଥିଲା । ମୁଁ ଓ ବଡ଼ଭାଇ ଗ୍ରାମ୍ୟ ପରିବେଶରୁ ଆସିଥିଲୁ । ମଥୁରା ନଗରର ସାଜସଜ୍ଜା, ସୁଉଚ୍ଚ ଅଟ୍ଟାଳିକା ଶ୍ରେଣୀ, ସୁସଜ୍ଜିତ ତୋରଣ, ବହୁବିଧ ପଣ୍ୟସାମଗ୍ରୀ ଗଚ୍ଛିତ ଥିବା କୋଳାହଳ ମୁଖର ଜନାକୀର୍ଣ୍ଣ ବିପଣୀ, ନଗର ପରିକ୍ରମା କରୁଥିବା କୃଷ୍ଣମେଘ ସଦୃଶ ମତ୍ତଗଜ, କ୍ଷିପ୍ରଗାମୀ ଅଶ୍ୱ, ଦୁର୍ବହ ଭାର ବହନ କ୍ଷମ ଉଷ୍ଟ୍ର ଏସବୁ ଦେଖି ପ୍ରକୃତରେ ଆମ ଆଖି ଝଲସି ଯାଉଥାଏ । ସେ ନଗରର ସମସ୍ତ ନାରୀ ପୁରୁଷ ସମ୍ଭ୍ରାନ୍ତ ମନେ ହେଉଥା'ନ୍ତି ମାତ୍ର ଗୋପ ଅଧିବାସୀଙ୍କ ଭଳି ଏତେ ସରଳ ମନେ ହେଉନଥା'ନ୍ତି । ଦେବକୀ ନନ୍ଦନ ବୋଲି ଜାଣିବାପରେ ସେମାନେ ମୋତେ ଦୂରରୁ ଲକ୍ଷ୍ୟ କରୁଥା'ନ୍ତି । କେହି ପାଖକୁ ଆସି ଗୋପବାସୀଙ୍କ ଭଳି ଅନ୍ତରଙ୍ଗ ହେବାକୁ ଚେଷ୍ଟା କରୁନଥା'ନ୍ତି ।

କାହିଁକି କେଜାଣି ପୂଜ୍ୟ ଅକ୍ରୁର ଆମ୍ଭମାନଙ୍କୁ ସେ ରାତ୍ରିରେ ମଥୁରାର ରାଜ ଉଆସକୁ ନନେଇ ତୋଟା ଉପକଣ୍ଠରେ ତାଙ୍କ ନିଜସ୍ୱ ଗୃହରେ ଆତିଥ୍ୟ ପ୍ରଦାନ କରିଥିଲେ । ମଥୁରାରେ ସେଦିନ ମୋର ପ୍ରଥମ ସକାଳ । ମଥୁରା ଭୂମିରେ ପାଦ ଦେବା ବେଳକୁ ମୋର ମନେ ହେଉଥିଲା ଏଠାରେ ଯେପରି ଅନେକ କିଛି ମୋ ପାଇଁ ଅପେକ୍ଷା କରିଛି । ଏହା ଯେପରି ମୋର ପରିତ୍ୟକ୍ତ ଅଥଚ ଚିର ପରିଚିତ ମାତୃକୋଳ । ମଥୁରାର ପବନ ଯେମିତି ମୋ ଜନ୍ମଦାତ୍ରୀର ଅତୃପ୍ତ ମାତୃତ୍ୱର ବିକ୍ଷୁବ୍ଧ ଦୀର୍ଘଶ୍ୱାସ ଭାରରେ ଭାରାକ୍ରାନ୍ତ । ଲୋକମୁଖରୁ ଜନ୍ମ ଅବଧି ଶୁଣି ଆସିଛି ମୋର ଜନ୍ମଦାତା ବସୁଦେବ ଓ ଜନ୍ମଦାତ୍ରୀ ଦେବକୀ କଂସର ଲୌହ କାରାଗାରରେ ବନ୍ଦୀଦଶା ଭୋଗୁଛନ୍ତି । ଶୁଣିଥିଲି ମଥୁରାରେ ଗୋ, ବ୍ରାହ୍ମଣ, ଦେବତା, ସାଧୁ, ସନ୍ଥ ପ୍ରମୁଖ ଲାଞ୍ଛିତ । ପୂଜ୍ୟ ପୂଜାର ପରମ୍ପରା ଏଠାରେ ବିସ୍ମୃତ । ତଥାପି ଏଠି ମଧୁବନ ତୋଟାରେ ଏତେ ସୁବାସିତ ଫୁଲ, ଏତେ ସୁମିଷ୍ଟ ଫଳ ? ତଥାପି ଏଠି ସୁଦାମା ଭଳି ମାଳାକାର ତା' ହୃଦୟର ସମସ୍ତ ନିଷ୍ପାପ ନିର୍ମଳତାରେ, ଫୁଲ ଗଜରାରେ ମୋତେ ଓ ବଡ଼ଭାଇଙ୍କୁ ସୁସଜ୍ଜିତ କରିବାପାଇଁ ତତ୍ପର ?

ସୁଦାମାର ଦର ଦର ଅଶ୍ରୁବିଗଳିତ କୋହ ଉଚ୍ଛଳିତ କଣ୍ଠରୁ ସତେକି ଭାବର ପ୍ଲାବନ ଛୁଟିଥିଲା । ସେ ତା'ର ଥର ଥର ହାତରେ ଫୁଲରେ ଫୁଲରେ ମୋତେ ସୁସଜ୍ଜିତ କଲାପରେ ବି ସତେକି ପରିତୃପ୍ତ ହୋଇ ପାରୁନଥିଲା । ଯେମିତି ଅନନ୍ତ କାଳ ଧରି ମୋତେ ଫୁଲରେ

ସଜାଇଲେ ବି ତା'ର କ୍ଲାନ୍ତି ଆସନ୍ତା ନାହିଁ । ମୋ କଣ୍ଠରେ, ବାହୁରେ, ମଣିବନ୍ଧରେ, ମସ୍ତକରେ ସେ ଫୁଲମାଳ ବାନ୍ଧି ଦେଉଥିଲା । ମୋର କିନ୍ତୁ ମନେ ହେଉଥିଲା । ଫୁଲ ନୁହେଁ ସୁଦାମାର ମଧୁର, ତନ୍ମୟ ନିର୍ମଳ ଭାବ ମୋର ସାରା ଅଙ୍ଗରେ ପ୍ରଲିପ୍ତ ହୋଇ ଯାଉଛି ।

ଏସବୁ ସତ୍ତ୍ୱେ ମଥୁରା ରାଜ ଦାଣ୍ଡରେ ପାଦ ଦେବାମାତ୍ରେ କେଉଁ ଏକ ପ୍ରଚ୍ଛନ୍ନ କ୍ରୋଧ, ପ୍ରଚ୍ଛନ୍ନ ପ୍ରତିଶୋଧର ଲାଳସା ମୋତେ ଅସ୍ଥିର କରୁଥିଲା । ଦୁରାଚାରୀ କଂସର ଅନ୍ୟାୟ, ଅବିବେକିତା ବିରୁଦ୍ଧରେ ବିଦ୍ରୋହର ଆବଶ୍ୟକତା ଥିଲା । ତା'ର ପ୍ରଥମ ନାନ୍ଦୀଗାନ ମୁଁ ଆରମ୍ଭ କରିଥିଲି ମଧୁବନ ତୋଟାକୁ ଧ୍ୱଂସ କରି, ଧନୁ ଉତ୍ସବର ଶ୍ରେଷ୍ଠ ଆକର୍ଷଣ ଧନୁକୁ ଚୂରମାର କରି ଏବଂ କଂସର ବିଶ୍ୱସ୍ତ ଅନୁଚର ଉଦ୍ଧତ ରଜକର ପ୍ରାଣନାଶ କରି । ମୁଁ ଚାହୁଁଥିଲି ମୋର ଏ ସ୍ୱେଚ୍ଛାଚାରିତା ପଲ୍ଲବିତ, ଅତିରଂଜିତ ହୋଇ କଂସ ନିକଟରେ ପରିବେଷିତ ହେଉ ଏବଂ କଂସ ସହ ମୋର ଖୋଲାଖୋଲି ସଂଘର୍ଷ ହେଉ ।

ମୋର ଏ ଉଗ୍ରତା, ପ୍ରଚଣ୍ଡତା, ସଂଘର୍ଷ ସହ ଆଉ ଏକ ଅଭାବିତ ଘଟଣା ଘଟିଗଲା ମଥୁରାରେ, ଯାହାର ମଧୁର ସ୍ମୃତି ଏବେବି ଜୀବନ୍ତ । ସିଏ ହେଲା 'କୁବୁଜା', ହୁଏତ ତା' ଜନ୍ମ ସମୟରେ ପିତୃମାତୃ ଦତ୍ତ କିଛି ଶ୍ରଦ୍ଧାର ନାମଟିଏ ତା'ର ଥିଲା । ସେ ନାମକୁ ସମସ୍ତେ ଏପରିକି ସେ ନିଜେ ମଧ୍ୟ ବିସ୍ମୃତ ହୋଇଯାଇଥିଲା । ଏହି କୁତ୍ସିତ, କଦର୍ଯ୍ୟ ନାମଟି ହିଁ ଥିଲା ତା'ର ସର୍ବ ଶ୍ରେଷ୍ଠ ଓ ସର୍ବଶେଷ ପରିଚୟ । କଂସର ବେଶକାରିଣୀ କୁବୁଜା, କୁତ୍ସିତ ଦର୍ଶନା କୁବ୍ଜା । ଯାହାର ପୃଷ୍ଠଦେଶରେ ତିନୋଟି କୁବ୍ଜ ଉପେକ୍ଷା, ଉପହାସ ଓ ଲାଂଛନାର ପ୍ରତୀକ ହୋଇ ତା'ର ଶୈଶବ, କୈଶୋରକୁ ଅପରର ଦୟା ଓ କୌତୁକର ପାତ୍ରୀଭାବରେ ତାକୁ ଠିଆ କରାଇଥିଲା । ଜୀବନରେ ମଧୁମାସ ବି ତା'ର ଆସିଥିଲା । ଦେହର ଅବସ୍ଥାନ୍ତର ତା' ମନରେ ହୁଏତ କୌଣସି ଭାବାନ୍ତର ସୃଷ୍ଟି କରୁନଥିଲା । ଅହରହ ସେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲା ତା'ର ଏ ଲାଂଛିତ ଯୌବନ ଶେଷ ହୋଇଯାଉ । ଯଥାଶୀଘ୍ର, ସେ ପହଞ୍ଚିଯାଉ ବାର୍ଦ୍ଧକ୍ୟର ନିର୍ଜନ ଉପକଣ୍ଠରେ, ଯେଉଁଠାରେ ତା'ର ବୟସ ହିଁ ତାକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦେଇ ପାରିବ, ଉପହାସ ଓ ଉପେକ୍ଷାର ଉର୍ଦ୍ଧ୍ୱକୁ ଉଠି ଯାଇ ପାରିବ ସିଏ । ତା'ରି ସମବୟସୀ ଗଣ ଜୀବନର ମଧୁମାସକୁ ଦୀର୍ଘକାଳ ଅଟକେଇ ରଖିବା ପାଇଁ କେତେ ଚେଷ୍ଟା ନକରିଚନ୍ତି ସତେ ! ମାତ୍ର କୁବୁଜା ଜୀବନପ୍ରତି ସଂପୂର୍ଣ୍ଣ ଉଦାସୀନା ଥିଲା ।

କଂସର ରାଣୀଗଣ ମଧ୍ୟ ଏଇଭଳି ଏକ କୁତ୍ସିତ ଦର୍ଶନା, ଯୌବନ ପ୍ରତି ବୀତସ୍ପୃହା ନାରୀଟିକୁ କଂସର ବେଶକାରିଣୀ ଭାବରେ ନିଯୁକ୍ତି ଦେଇଥିଲେ । କାରଣ ଏଭଳି ନାରୀଟି ପ୍ରତି କୌଣସି ପୁରୁଷର ଦୁର୍ବଳତା ଆସିବାର ସମ୍ଭାବନା ନଥିଲା । ଏଭଳି ଏକ ଅପମାନିତ ଜୀବନ ବଞ୍ଚିଥିଲା କୁବ୍ଜା । ତା'ର ଅପମାନାହତ କ୍ଷତ ଦିନକୁ ଦିନ ଗଭୀର ହେଉଥିଲା ।

ସୌନ୍ଦର୍ଯ୍ୟ କେବଳ କ'ଣ ଦେହରେ ଥାଏ ? ମନରେ ନ ଥାଏ ? ତା' ନହୋଇ ଥିଲେ ମନର ଚାରୁକଳାଯୁକ୍ତ ସ୍ୱପ୍ନର କାରୁକାର୍ଯ୍ୟ ତା'ର ହସ୍ତକଳା ମାଧ୍ୟମରେ ଫୁଟନ୍ତା କିପରି ? ଚନ୍ଦନ, କସ୍ତୁରୀ, କେଶର, କୁଙ୍କୁମରେ ସେ ଅପୂର୍ବ ଭାବରେ ଅନ୍ୟକୁ ସଜାଇ ଦିଅନ୍ତା କିପରି ?

ଲୋକେ କହୁଥିଲେ ତା'ର ମସ୍ତିଷ୍କ ବିକୃତି ଘଟିଛି । କାରଣ କେହି ତାର ହସ୍ତକଳାର ପ୍ରଶଂସା କଲେ ସେ ପ୍ରୀତି ହେବା ପରିବର୍ତ୍ତେ ବିରକ୍ତ ହେଉଥିଲା । ବିରକ୍ତିରେ କହୁଥିଲା - 'କି ଲାଭ ଏଥିରେ । ସ୍ୱପ୍ନଭଂଗର ଯନ୍ତ୍ରଣା ତମେସବୁ କ'ଣ ଜାଣ ? ମୋର ସବୁ ମଧୁର ସ୍ୱପ୍ନ ଭରା ରାତି ମିଛ ସକାଳରେ ପରିଣତ ହେଉଛି । ଏଭଳି ଅପୂର୍ବଭାବେ କୌଣସି ଦିନ ମୁଁ ମନର ମଣିଷଟିକୁ ମୁଁ ସଜାଇ ପାରିବିକି ? ମୋ ମନର ମଣିଷ ସତେ କ'ଣ ଆସିବ ? ଆସିବ ଏ ହୃଦୟ ବେଦୀରେ ଅଭିଷିକ୍ତ ହେବାକୁ ? ଫୁଲରେ ଚନ୍ଦନରେ ସଜାଇଦେବି ସେଦିନ ମଥୁରାର ରାଜଦାଣ୍ଡରୁ ମୋ ହୃଦୟର ବେଦୀ ପର୍ଯ୍ୟନ୍ତ..... ଆସିବ ସତେ ସିଏ ???

ତା'ର ଏ ଅବୋଧ ପ୍ରଶ୍ନ ପୁନର୍ବାର ତାକୁ ଉପହାସର ସାମଗ୍ରୀରେ ପରିଣତ କରିଦିଏ । ତା'ର କିନ୍ତୁ ଭୃକ୍ଷେପ ନଥାଏ ।

ସେ ନିଜ ମନକୁ ସାନ୍ତ୍ୱନା ଦେଇ କହେ - 'ଆସିବେ । ନିଶ୍ଚେ ସିଏ ଆସିବେ । ନୀଳ ଜୀମୁତ କାନ୍ତି, ଶିରରେ ଶିଖି ପୁଚ୍ଛ, କର୍ଣ୍ଣରେ ମକର କୁଣ୍ଡଳ, କଣ୍ଠରେ କେରି କେରି ଦୟଣାର ମାଳ, କୌସ୍ତୁଭ ମଣି, ହସ୍ତରେ ମୋହନ ବଂଶୀ, ରଂଗା ଅଧରରେ ମନଜିଣାହସ.... ବାରମ୍ବାର ସ୍ୱପ୍ନରେ ଆସିଛନ୍ତି, ଭରା ନିଦରୁ ଉଠି ବସିଛି ମୁଁ, ଖୋଜିଛି, ଚନ୍ଦନ, କସ୍ତୁରୀ ମହକରେ ମୋ ଘର, ମୋ ପ୍ରାଣ ମହକି ଉଠିଛି । ସବୁ ସ୍ୱପ୍ନ କ'ଣ ମିଥ୍ୟା ହୋଇଯିବ ମୋର ? କେବେ ସେ ଆସିବେ ?'

କିଏ ଆସିବେ ? କାହିଁକି ଆସିବେ ? ଏ ପ୍ରଶ୍ନ ତା' ପାଇଁ ଅବାନ୍ତର । ଆମ ବିଷୟରେ ବହୁ ଚମକପ୍ରଦ ସମ୍ବାଦ ଶୁଣି ରାଜଦାଣ୍ଡରେ ସେ ଅପେକ୍ଷା କରିଥିଲା ଆମକୁ ଦେଖିବାକୁ । ହାତରେ ତା'ର ସୁବାସିତ ଚନ୍ଦନ କସ୍ତୁରୀ ସହ ବହୁ ଦୁର୍ମୂଲ୍ୟ ପ୍ରସାଧନ ସାମଗ୍ରୀର ମହାର୍ଘ ପେଟିକା । ଧନୁ ଉତ୍ସବର ଶ୍ରେଷ୍ଠ ଆକର୍ଷଣ ଧନୁଟିକୁ ଆମେ ଭାଂଗି ଦେବା ପରେ ଆମପ୍ରତି ମଥୁରାବାସୀଙ୍କର ସମ୍ଭ୍ରମ ବହୁଗୁଣିତ ହୋଇଯାଉଥିଲା । କଂସ ରଜକର ମୃତ୍ୟୁ ପରେ ତା'ର ବସ୍ତ୍ରାଧାରରୁ ନିଜ ରୁଚି ଅନୁଯାୟୀ ରାଜକୀୟ ପରିଚ୍ଛଦରେ ଆମେ ସୁସଜ୍ଜିତ ହୋଇଥିଲୁ । ସୁଦାମା ମାଳାକାର ଆମ୍ଭମାନଙ୍କୁ ସୁବାସିତ ଶ୍ୱେତ ପୁଷ୍ପମାଳରେ ସୁବେଶ କରି ସାରିଥିଲା । ଆମେ ଦୁଇଭାଇ ମଥୁରା ରାଜଭବନର ରଙ୍ଗସ୍ଥଳୀକୁ ନିର୍ଭୟରେ ଯାତ୍ରା କରୁଥିଲୁ । ପଥ ଧାରର ଉଭୟ ପାର୍ଶ୍ୱରେ ସୁଉଚ୍ଚ ଶ୍ୱେତ ଅଟ୍ଟାଳିକା ଶ୍ରେଣୀର ଗବାକ୍ଷରୁ ମଥୁରା ନାରୀଗଣ ବଡ଼ ଉତ୍ସୁକ

ଭାବରେ ଆମକୁ ଦର୍ଶନ କରୁଥିଲେ । ପଥ ଅତିକ୍ରମ କରୁ କରୁ ହଠାତ୍ ଦୃଷ୍ଟି ପଡ଼ିଲା କୁବ୍‌ଜା ଉପରେ । ନିଶ୍ଚଳ ମୂର୍ତ୍ତିଭଳି ସେ ଠିଆହୋଇ ଏକ ଲୟରେ ମୋତେ ଚାହିଁ ରହିଥିଲା । ତା' ଦେହ ଥର ଥର ହୋଇ କଂପୁଥିଲା ।

ଅସ୍ପଷ୍ଟ ସ୍ୱରରେ କଂପିତ କଣ୍ଠରେ ସେ କହୁଥିଲା - 'ଏଇ ତେବେ ସେଇ ? ମୋର ବହୁବାଂଛିତ ସ୍ୱପ୍ନର ପୁରୁଷ ? ନୀଳ ଜୀମୁତ କାନ୍ତି ...... ଶିରରେ ଶିଖିପୁଚ୍ଛ, କଣ୍ଠରେ କେରି କେରି ଦୟଣା ଓ ତୁଳସୀ ମଞ୍ଜରୀର ମାଳ, ରଂଗ ଅଧରରେ ମନକିଣା ହସ, କଟୀରେ ପିତାମ୍ବର ....ସେଇତ ଆସିଲ ପ୍ରଭୁ ! ଏତେ ବିଳମ୍ବରେ ....?'

ଏତିକି କହୁ କହୁ ସେ ଭୂଇଁରେ ଲୋଟି ଯାଉଥିଲା । ମୁଁ ତାକୁ ତଳୁ ଉଠାଇ ଧରିଲି । ତାର ସମଗ୍ର ଶରୀର ବାତବିକ୍ଷୁବ୍ଧ ରମ୍ଭା ପତ୍ର ଭଳି କଂପୁଥିଲା, ମୁଁ ତାର କଂପିତ କଳେବରକୁ ସଜୋରେ ତଳୁ ଉଠାଇବା ସମୟରେ ତା' ପୃଷ୍ଠ ଦେଶରେ ଥିବା କୁବ୍‌ଜରେ ଟିକିଏ ଜୋର୍‌ରେ ଚାପ ଦେଇଥିଲି । ସେତିକିରେ କୁବୁଜା ଜୀବନ ଧନ୍ୟ ହୋଇଗଲା । ତା'ର ଯେମିତି ପୁନର୍ଜନ୍ମ ହୋଇଗଲା । ତା'ପୃଷ୍ଠଦେଶର କୁବ୍‌ଜ ତିନୋଟି ନିଶ୍ଚିହ୍ନ ହୋଇ ସମତଳ, ସୁଠାମ ହୋଇଗଲା । ଯେମିତି ତା' ଦେହ କଞ୍ଚା ମାଟି ପିଣ୍ଡୁଳା ଓ ମୁଁ ମୃଣ୍ମୟ ଶିଳ୍ପୀ । ମୋ ଇଚ୍ଛାରେ ହିଁ ମୁଁ ଗଢ଼ିବି ଓ ଭାଂଗିବି ।

ମୁଁ ତା' କାନ ପାଖରେ ଧିରେ କହିଲି - 'ମୋତେ ସଜାଇଦିଅ ତୁମରି ରୁଚିରେ, ଯେମିତି ତୁମର ଇଚ୍ଛା ।'

ଏଇ ପଦକ କଥା ଯେମିତି ତା'ହୃଦୟର ରୁଦ୍ଧ ଦ୍ୱାରକୁ ଅକସ୍ମାତ୍ ଖୋଲିଦେଲା, ତା'ହୃଦୟର ଉଷର ଭୂଇଁରୁ ମୁହୂର୍ତ୍ତକରେ ଝରି ଆସିଲା ବିନ୍ଦୁ ବିନ୍ଦୁ ବାରି, ସିକ୍ତ ହୋଇଗଲା ତା'ର ତନୁ, ମନ, ତା'ର ଅବରୁଦ୍ଧ ଆବେଗ ସବୁ ପଲ୍ଲବିତ ହୋଇ ଶାଖାରେ ଶାଖାରେ ଅଜସ୍ର ଚୂତ ମଂଜରୀରେ ମଂଜରିତ ହୋଇଗଲା ଯେପରି । ନବ ବସନ୍ତର ଦୂତ ତା' ପ୍ରାଣ ତନ୍ତ୍ରୀରେ ଗୀତ ଗାଇ ଉଠିଲା । ସବୁ ଭାଷା ସେଠାରେ ନୀରବ ହୋଇ ଯାଇଥିଲା । ତା'ର ଅଶ୍ରୁବିଗଳିତ ନୟନ ଦୁଇଟି ହିଁ କେବଳ ଅଜସ୍ର କଥା, କାହାଣୀ ଓ କବିତାର ଲିପିକାର ହୋଇ ମୋ ସମ୍ମୁଖରେ ନିଜକୁ ବ୍ୟକ୍ତ କରୁଥିଲା । ତା'ର ଏ ବାଚାଳତା, ଏ ଭାବ ତନ୍ମୟତା ମୋତେ ମୁଗ୍ଧ କରି ଦେଇଥିଲା । ମୋ ହୃଦୟର ରୁଦ୍ଧଦ୍ୱାର ସୁଦ୍ଧା ଖୋଲି ଯାଇଥିଲା, ଯେଉଁଠି କୁବୁଜା ହିଁ ବସି ରହିଥିଲା ପୂଜାରିଣୀ ଭଳି, ସହସ୍ର ବାହୁ ମେଲି, ସହସ୍ର କଣ୍ଠରେ ଆକୁଳ ଆବେଗରେ ଆମନ୍ତ୍ରଣ କରୁଥିଲା ମୋତେ ଯୁଗ ଯୁଗ ଧରି । ମୁଁ ପୁଣି ଥରେ କହିଲି - 'ଚଂପା ଫୁଲଟି ଶିବଙ୍କର ଶିରୋଭୂଷା ଯେ ! ଭ୍ରମରର ମନୋହାରୀ ହେବା ପାଇଁ ତା'ର ଜନ୍ମ ନୁହେଁ ।'

ମୋର ହୃଦୟ ଭରା ପ୍ରେମର ସ୍ପର୍ଶରେ ପୁରୁଷର ପ୍ରେମବଂଚିତା କୁବୁଜା ହଠାତ୍ କୁବୁଜାରୁ ଏକ ପରମା ସୁନ୍ଦରୀ ରମଣୀରେ ପରିଣତ ହୋଇଗଲା । ତଥାପି ସେ କିଛି କହିଲା ନାହିଁ । କେବଳ ମହାର୍ଘ ଅଂଗରାଗରେ ପରିପୂର୍ଣ୍ଣ ସୁବର୍ଣ୍ଣ ପେଟିକାକୁ ଧିରେ ଖୋଲିଦେଲା । ତା'ର ଅଭ୍ୟସ୍ତ କ୍ଷିପ୍ର ହସ୍ତରେ ସେ ମୋତେ ଅନୁପମ ଭାବରେ ତା' ମନର ସମସ୍ତ ସୂକ୍ଷ୍ମ ଆବେଗର କାରୁକଳାରେ ସଜାଇଦେଲା ତା'ବାଂଛିତ, ଅଭିଳଷିତ, ମନୋମତ ପୁରୁଷକୁ ସଜାଇବାଭଳି । ମୁଁ ଅଭିଭୂତ ହୋଇଗଲି ତା'ର ଭାବମଗ୍ନ ମନଟିକୁ ଦେଖି । ଏକାତ୍ମ ହୋଇଗଲା ସେ ମୋ ସହ । ତା'ର ଚନ୍ଦନ  କସ୍ତୁରୀ ସୁଗନ୍ଧରେ ଚତୁର୍ଦ୍ଦିଗ ସେତେବେଳକୁ ମହ ମହ, ମୋ ହୃଦୟ ପର୍ଯ୍ୟନ୍ତ ଚହଟି ଆସିଥିଲା ସେ ସୁବାସ । ତା' ଅଧରରୁ ଭାଷା ସ୍ଫୁରୁ ନଥାଏ, କଣ୍ଠ କୋହରେ ଭରିଯାଇଥାଏ, ନୟନ ଅଶ୍ରୁରେ ପୂରି ଯାଇଥାଏ ।

ବଡ଼ କଷ୍ଟରେ ଅଶ୍ରୁ ସମ୍ବରଣ କରି ସେ କହିଲା - 'ବଳୀରାଜାଠାରୁ ତୃତୀୟ ପାଦର ଭୂମି ନେଲାବେଳେ ସ୍ୱର୍ଗଠାରୁ ମର୍ତ୍ତ୍ୟ ପର୍ଯ୍ୟନ୍ତ ତୁମକୁ ସ୍ଥାନ ନିଅଣ୍ଟ ହୋଇ ଥିଲା କେଶବ ! ବଳୀର ଦର୍ପ ଗଞ୍ଜନ କରିଥିଲ ପାତାଳକୁ ତା'ର ମସ୍ତକ ଚାପି ଦେଇ, ମୁକ୍ତି ଦେଇଥିଲ ବଳୀ ରାଜାକୁ । ମୋତେ ବି ମୁକ୍ତି ଦିଅ ଲାଂଛନାରୁ, ଉପେକ୍ଷାରୁ । ଜୀବନର ମଧୁମାସ ମୋର ବ୍ୟର୍ଥ ହୋଇ ଯାଇଛି  । ଫଗୁଣର ମୁଠା ମୁଠା ଫଗୁ ମୋ ହାତମୁଠାରେ ଜଳନ୍ତା ଅଂଗାର ପାଲଟି ଯାଇଛି । ମୋତେ ଏଥର ମୁକ୍ତି ଦିଅ ।'

ମୁଁ ମୃଦୁ ହସି କହିଲି - 'ଜୀବନର ପରମ ରମଣୀୟ ଦିଗ ସହ ତୁମର ଯେ ପରିଚୟ ହୋଇ ନାହିଁ !'

ମୋ ପାଦତଳେ ବସି କୁବୁଜା ଅନୁଚ୍ଚ କଣ୍ଠରେ କହିଲା - 'ଆଉ ଲଜ୍ଜ୍ୟା ଦିଅ ନାହିଁ କେଶବ  ! ମୁଁ ଅନ୍ତତଃ ମୋତେ ତ ଦେଖିଛି, ଯେଉଁଥିପାଇଁ ସାତ ସିନ୍ଦୁକ ଅତଳରେ ଲୁଚାଇ ରଖିଛି ମୁଁ ଦର୍ପଣକୁ । ମୋ ପ୍ରତିବିମ୍ବ ମୋତେ ହିଁ ଭୟଭୀତା କରାଏ, ପରିହାସ କରେ, ମୋ ହୃଦୟରୁ ରକ୍ତ ଝରାଏ ।'

ସେତେବେଳକୁ ରାଜଦାଣ୍ଡରେ କୁବୁଜାର ଚତୁପାର୍ଶ୍ୱରେ ଭିଡ଼ ଜମି ଉଠୁଥାଏ । ବିସ୍ମୟ ଓ ପ୍ରଶ୍ନ ଜମାଟ ବାନ୍ଧୁଥାଏ । ମୁଁ ଭିଡ଼ ଠେଲି ବାହାରି ଆସୁ ଆସୁ କହିଲି - 'ଆଉଥରେ, ଅନ୍ତତଃ ମୋ ପାଇଁ ମୋ କଥା ରକ୍ଷା କରି ଦର୍ପଣରେ ଯାଇ ନିଜକୁ ଦେଖ !'

ମଥୁରା ରାଜଦାଣ୍ଡର ଧୂଳି ତିନ୍ତିଗଲା କୁବୁଜା ଆଖି ଲୁହରେ । ସୌନ୍ଦର୍ଯ୍ୟ କ'ଣ ଦେହରେ ଥାଏ ? ସୌନ୍ଦର୍ଯ୍ୟ ଥାଏ ମନରେ, ଥାଏ ଭାବରେ, ଥାଏ ଦ୍ରଷ୍ଟାର ବିଚାରରେ । କୁବୁଜାର ଅଂଗେ ଅଂଗେ ସେତେବେଳକୁ ଯୌବନ, ଲାବଣ୍ୟ ଓ ସୌନ୍ଦର୍ଯ୍ୟର ଢ଼େଉ । ମୋ

ଆଖିରେ ସେ ଅପରୂପା ଦିଶୁଥାଏ । ଜଗତ ଯଦି ମୋ ଆଖିରେ କୁବୁଜାକୁ ଦେଖୁଥାଏ ତେବେ ତାର ସମସ୍ତ କୁରୂପତା ନଷ୍ଟ ହୋଇ ସେ ରତିପ୍ରତିମା ଭଳି ଅନୁପମା, ପୂର୍ଣ୍ଣଯୌବନା ରମଣୀଟିଏ ହୋଇ ସାରିଥାଏ ।

ତା' କାନପାଖେ କେହି ନଶୁଣିବାଭଳି ଧିରେ କହିଲି - 'ମୁଁ ପୁଣି ଆସିବି' ମୋର ଏ ପ୍ରତିଶୃତି ଶୁଣୁ ଶୁଣୁ ଭାବ ଓ ଭକ୍ତିରେ ସେ ନିମଗ୍ନା ହୋଇଗଲା ।

ଏ ସମସ୍ତ ଚିତ୍ତ ଚମତ୍କାରୀ ସମ୍ବାଦ ମଥୁରା ରାଜଭବନରେ ପହଞ୍ଚି ସାରିଥାଏ ଏବଂ ପ୍ରକାଶ କରିବା ବାହୁଲ୍ୟ ଯେ କଂସର କ୍ରୋଧ ବହୁଗୁଣିତ ହେଉଥାଏ । ଜୀବନର ଅନ୍ୟ ନାମ ହିଁ ତ ମୃତ୍ୟୁ ! ଏହି ସାଧାରଣ ସତ୍ୟଟି  କଂସ  କାହିଁକି ବିଶ୍ୱାସ କରି ପାରୁନଥିଲା ? ଗୋଟିଏ ଜନ୍ମର ଅନ୍ତିମ ଯବନିକା ଟାଣିବା ପାଇଁ କେବଳ କାଳକୁ ହିଁ ଯାହା ଅପେକ୍ଷା ଟିକକହିଁ ତ ଜୀବନ ! ଅଥଚ ଏଇ ତୁଚ୍ଛ କ୍ଷଣିକ ଜୀବନର ମୋହରେ ଶିଶୁ ହତ୍ୟା ଠାରୁ ଆରମ୍ଭ କରି କେତେ ନିରୀହଙ୍କ ଉପରେ ଅକଥନୀୟ ନିର୍ଯ୍ୟାତନା ନକରିଛି ସତେ କଂସ ? ଏତେ କାଳ ଧରି କେବଳ ପାପର ପୁଞ୍ଜି ହିଁ ସଞ୍ଚୟ କରି ଆସିଛି ସେ ମୂଢ଼ ଚେତା ।

ବଡ଼ଭାଇଙ୍କ ସହ ମୋତେ ରଙ୍ଗସଭାକୁ ନିମନ୍ତ୍ରଣ କରିଥାଏ କଂସ । ଗତ ରାତ୍ରିରେ ପୂଜ୍ୟ ଅକ୍ରୁରଙ୍କ ଗୃହରେ ଶୟନ କରିଥିବା ସମୟରେ ମଧ୍ୟ ରାତ୍ରିରେ ହଠାତ୍ ଅସ୍ପଷ୍ଟ କଥାବାର୍ତ୍ତା ଶୁଣି ମୁଁ ଶଯ୍ୟା ଉପରେ ଉଠି ବସିଲି । ଯାତ୍ରା ଜନିତ କ୍ଳାନ୍ତି ହେତୁ ବଡ଼ଭାଇ ଶୋଇ ପଡ଼ିଥା'ନ୍ତି । ପୂଜ୍ୟ ଅକ୍ରୁରଙ୍କୁ ତାଙ୍କର କେହି ଗୁପ୍ତଚର ଆସି କହୁଥାଏ - 'ମହାଭାଗ ! କାହିଁକି ଏ ବାଳକ ଦୁଇଟିଙ୍କୁ ଆପଣ ଗୋପରୁ ଆଣିଲେ ? ଏ ପାପରେ ଆପଣ ମଧ୍ୟ ଭାଗୀ ହୋଇଯିବେ ନାହିଁକି ? ଆପଣ ଜାଣନ୍ତି କି ? କଂସ ତିନି ରାତି ଧରି ଶୋଇ ପାରିନାହିଁ । ଆଖିବୁଜିଲେଇ ତା'ର ଶୟନ କକ୍ଷରୁ ସେ ବଂଶୀଧ୍ୱନୀ  ଶୁଣୁଛି, ତା'ଶୟନ କକ୍ଷରେ ପୂର୍ବାପେକ୍ଷା ଚତୁର୍ଗୁଣ କଡ଼ା ପହରା ବ୍ୟବସ୍ଥା ଥିବା ସତ୍ତ୍ୱେ କେହି ମାୟାବୀ ତା' କକ୍ଷରେ ପ୍ରବେଶ କରି ତାକୁ କୁଆଡ଼େ ଭୟଭୀତ କରୁଛି । ଏପରିକି ତା' କକ୍ଷରୁ କେବଳ ତୁଳସୀ, ମାଳତୀ,ଦୟଣା ସହ ଚନ୍ଦନର ସୁବାସ ଆସୁଛି । ସେ ଶୋଇଥିବା ସମୟରେ ତା' ଛାତି ଉପରେ କୁଆଡ଼େ ଗୋଟାଏ ମୟୂର ଚନ୍ଦ୍ରିକା ପଡ଼ିଲା ଗତ ରାତ୍ରିରେ । ସେ ଏଭଳି କ୍ରୋଧାନ୍ୱିତ ହୋଇ ରହିଛି ଯେ, ଆଖି ଆଗରେ ପାଇଲେ ଏହି  ଅବୋଧ କିଶୋର ଦୁଇଟିଙ୍କୁ ନିଶ୍ଚିହ୍ନ କରିଦେବ । କାରା କକ୍ଷରେ ପ୍ରବେଶ କରି ଦେବକୀ ବସୁଦେବଙ୍କୁ ମଧ୍ୟ ବହୁ କଟୂକଥା କହି ଆସିଛି । ତା'ର ଧାରଣା ବଦ୍ଧମୂଳ ହୋଇଛି ଯେ ଯଶୋଦା ଦୁଲାଳ ଓ ଦେବକୀ ନନ୍ଦନ ଏକ ଓ ଅଭିନ୍ନ । ଏତେ ବର୍ଷ ଧରି ଦେବକୀ ବସୁଦେବ ତା'ସହ ପ୍ରତାରଣା କରି ଆସିଛନ୍ତି ବୋଲି ସେ ଆଜି ସକାଳେ ବସୁଦେବ ଓ ଦେବକୀଙ୍କୁ ଶୃଙ୍ଖଳିତ ଅବସ୍ଥାରେ ବେତ୍ର ପ୍ରହାର କରିଛି । ଏ ବାଳକ ଦୁଇଟିଙ୍କୁ ହତ୍ୟାକରିବା ପାଇଁ ଯେଉଁ

ସାଂଘାତିକ ଯୋଜନା ସବୁ କାର୍ଯ୍ୟକାରୀ ହେବାକୁ ଯାଉଛି ତା' ଶୁଣିଲେ ଯେ କେହି ଭୟରେ ତଟସ୍ଥ ହୋଇଯିବ । ମଥୁରା ନରେଶଙ୍କ ମତ୍ତହସ୍ତୀ କୁବଳୟା ପୀଡ଼କୁ ଆଜି ପ୍ରଚୁର ମଦ୍ୟପାନ କରାଯାଇ ଉନ୍ମତ୍ତ କରିଦିଆଯାଇଛି ଏବଂ ଆଗାମୀ କାଲି ପ୍ରଭାତରେ ରଙ୍ଗସଭାରେ ପ୍ରଥମ ଆକର୍ଷଣ ହେବ ମତ୍ତହସ୍ତୀ କୁବଳୟା ସହ ସୁକୁମାର କିଶୋର କୃଷ୍ଣଙ୍କ ଯୁଦ୍ଧ ।

ଏହା ଅବିଶ୍ୱାସ୍ୟ ହେଲେ ବି ସତ୍ୟ ମହାଭାଗ ! ମଥୁରା ନରେଶଙ୍କ ଦିଗ୍‌ବିଜୟ ସମୟରେ କେତେ ବଳବୀର୍ଯ୍ୟବାନ୍ ଶତ୍ରୁପକ୍ଷର ସେନାବାହିନୀକୁ କୁବଳୟା ଏକାକୀ ମର୍ଦ୍ଦନ କରିଛି । ସେହି କୁବଳୟା ସହ ଯୁଦ୍ଧରେ ଯଦି ଦୈବାତ୍ କୃଷ୍ଣ ନିଜ ଜୀବନ ବଂଚେଇ ପାରନ୍ତି ତେବେ ତାଙ୍କ ପାଇଁ ଆଉ ଏକ ବିପଦ ଗହ୍ୱର ଅପେକ୍ଷା କରି ରହିଛି । ତା' ହେଉଛି ମହାବଳଶାଳୀ ବିଶାଳକାୟ ମଲ୍ଲଯୋଦ୍ଧା ଚାଣୁର ଓ ମୁଷ୍ଟିକଙ୍କ ସହ କୃଷ୍ଣ ବଳରାମଙ୍କର ମଲ୍ଲଯୁଦ୍ଧ । ସୁତରାଂ ବାଳକ ଦୁଇଟିଙ୍କର ଆସନ୍ତା କାଲି ଅକାଳ ମୃତ୍ୟୁ ସୁନିଶ୍ଚିତ...... ।'

ଗୁପ୍ତଚର ମୁହଁରୁ ବାକ୍ୟଟି ଶେଷ ନହେଉଣୁ ଅକ୍ରୁର କହିଲେ - 'ଏ ବାଳକ ଦୁଇଟି ସାଧାରଣ ବାଳକ ନୁହନ୍ତି । ତୁମେ ନିଶ୍ଚିନ୍ତ ରହ ।'

ଅନ୍ଧାର ଭିତରେ ଟିକିଏ ମୁଁ ହସିଲି । ପାର୍ଶ୍ୱ ପରିବର୍ତ୍ତନ କରି ଶୋଇବାକୁ ଚେଷ୍ଟା କଲି । ମାତ୍ର ଯଶୋମତୀ ମା'ଙ୍କର ସ୍ନେହସିକ୍ତ କରୁଣ ମୁହଁଟି ମୋ ଆଖି ଆଗରେ ନାଚି ଉଠିଲା । ମୁଁ ଆଉ ଶୋଇ ପାରିଲି ନାହିଁ । ବଡ଼ଭାଇଙ୍କ ପାଖକୁ ଟିକିଏ ଘୁଞ୍ଚି ଗଲି । ସେ ସ୍ନେହରେ ମୋତେ କୋଳାଗ୍ରତ କରି ତନ୍ଦ୍ରାଜଡ଼ିତ କଣ୍ଠରେ କହିଲେ - 'ମା' ମନେ ପଡୁଚନ୍ତି, ନୁହେଁରେ କାହ୍ନୁ ? ମୁଁ ଅଛି । ତୋର କ'ଣ ଚିନ୍ତା ? ଶୋଇ ପଡ଼ ।'

ଏତିକି କହି ପୁଣି ସେ ଶୋଇ ପଡ଼ିଲେ । ମୁଁ ଜାଣେ, ପରିସ୍ଥିତି ବା ପରିବେଶ ପ୍ରତି ସେ ଆଦୌ ସଚେତନ ନୁହନ୍ତି । ସେ ବଡ଼ ଉଦାସୀନ, ଅନ୍ୟମନସ୍କ, ଖୁବ୍ ସରଳ । ଏହି ପ୍ରକୃତି ହିଁ ତାଙ୍କୁ ନିଶ୍ଚିନ୍ତ ନିଦ୍ରା ଦିଏ, ମାତ୍ର ମୁଁ ? ମୋର ସଦା ସତର୍କ ସଜାଗ ଦୃଷ୍ଟି ହିଁ ଅନେକ ସମୟରେ ଅଶାନ୍ତିର ଦାବଦହନ ଭିତରକୁ ମୋତେ ଠେଲି ଦିଏ । ବଡ଼ଭାଇଙ୍କ ଭଳି ମୁଁ ସୁଖୀ ହୋଇ ପାରେ ନାହିଁ ।

ଏଇସବୁ ଗତରାତିର କଥା ଚିନ୍ତା କରୁ କରୁ ଆମେ ରଙ୍ଗସଭା ନିକଟରେ ପହଞ୍ଚି ସାରିଥିଲୁ । ମଥୁରା ନରେଶଙ୍କ ରଙ୍ଗସଭାକୁ ଆଖିରେ ନଦେଖିଲେ ଭାଷାରେ ବର୍ଣ୍ଣନା କରିହେବ ନାହିଁ । ପ୍ରାୟ ପଚାଶ ଯୋଜନବ୍ୟାପୀ ଏକ ବର୍ଗାକୃତି ଉନ୍ମୁକ୍ତ ପ୍ରାନ୍ତର । ତାର ଚତୁଃପାର୍ଶ୍ୱ ରଜତ ଖମ୍ବ, ଖିଲାଣ ଓ ମଣିମୁକ୍ତା, କାଞ୍ଚନ ଖଚିତ ଚନ୍ଦ୍ରାତପ । ସେହି ଚନ୍ଦ୍ରାତପ ତଳେ ଏକକାଳୀନ ପାଞ୍ଚ ସହସ୍ର ସମ୍ଭ୍ରାନ୍ତ ବ୍ୟକ୍ତି ଉପବିଷ୍ଟ ହେବା ଭଳି ରାଜକୀୟ ଯୋଗ୍ୟ ରୌପ୍ୟ ଆସନ ଶ୍ରେଣୀ ।

ଏହି ରଙ୍ଗସଭାର ପୂର୍ବଭାଗରେ ମଥୁରାର ସୁଦୃଶ୍ୟ ରାଜଭବନ । ରାଜଭବନର ଦକ୍ଷିଣ ଭାଗରେ ରାଣୀହଂସପୁର । ରାଣୀହଂସପୁରର ମୁଖ୍ୟ ତୋରଣ ଦ୍ୱାର ପୁଷ୍ପମାଲ୍ୟ ଜଡ଼ିତ ସ୍ୱର୍ଣ୍ଣ କଳସ ଦ୍ୱାରା ସୁସଜ୍ଜିତ । ହଂସ ମିଥୁନ ଚିହ୍ନିତ ସବୁଜ ରଙ୍ଗର ଧ୍ୱଜା ଉତ୍ତୋଳିତ । ରଙ୍ଗ ସଭାର ପ୍ରବେଶ ଓ ପ୍ରସ୍ଥାନ ପଥରେ ଯୋଜନାବଦ୍ଧ ବିପଣୀ ଶ୍ରେଣୀ । ମଣି ମୁକ୍ତାଠାରୁ ଆରମ୍ଭ କରି ବହୁବିଧ ଦୁଗ୍ଧ ଜାତ, ଘୃତ ପକ୍ୱ ମିଷ୍ଟାନ୍ନ ତଥା ରେଶମ ଓ କାର୍ପାସ ବସ୍ତ୍ର ସମୂହର କ୍ରୟ ବିକ୍ରୟ ଯଥା ରୀତି ଚାଲିଥାଏ । ରଙ୍ଗସଭାର ଉତ୍ତର ପାର୍ଶ୍ୱରେ ନୃତ୍ୟ ଗୀତର ଆୟୋଜନ ହୋଇଥାଏ । ପଶ୍ଚିମ ପାର୍ଶ୍ୱରେ କୃଷ୍ଣ ମର୍ମର ପ୍ରସ୍ତର ନିର୍ମିତ ଏକ ସୁବିଶାଳ ମଣ୍ଡପ । ସେହି ମଣ୍ଡପର ସାଜସଜ୍ଜାରେ ମଥୁରାର ଶିଳ୍ପୀଗଣ ସ୍ୱୀୟ କାରୁକଳାର ସମସ୍ତ ବିଦ୍ୱତ୍ତା ପ୍ରଦର୍ଶନ କରିଥା'ନ୍ତି ଯେପରି । ମଣ୍ଡପ ଉପରେ ରକ୍ତବର୍ଣ୍ଣର ରେଶମ ବସ୍ତ୍ରାବୃତ୍ତ ବହୁମୂଲ୍ୟ ଗଜଦନ୍ତର ଆସନ ସମୂହ ବିଶିଷ୍ଟ ରାଜକୀୟ ଅତିଥିମାନଙ୍କ ନିମିତ୍ତ ଉଦ୍ଦିଷ୍ଟ । ସବୁଠାରୁ ସୁଦୃଶ୍ୟ ଓ ସୁଉଚ୍ଚ ଆସନରେ ସ୍ୱୟଂ ମଥୁରା ନରେଶ କଂସ ହିଁ ବିରାଜିତ ଥାଏ । ଚାରିଆଡ଼କୁ ଆଖି ବୁଲେଇଲେ ମନେହୁଏ କଂସ ବଡ଼ ରସିକ ବ୍ୟକ୍ତି ।

କାଳ ହିଁ ସର୍ବଶକ୍ତିମାନ୍ । ଏକଥା ବୁଝିବାକୁ ହୁଏତ କଂସ ପ୍ରସ୍ତୁତ ନଥିଲା । କଂସର ମୃତ୍ୟୁ ଅବଧାରିତ ଥିଲା । ମୁଁ ନିମିତ୍ତ ମାତ୍ର ଥିଲି । କୁବଳୟା, ଚାଣୁର, ମୁଷ୍ଟିକ - ଏମାନଙ୍କର ମଧ୍ୟ କଂସର ମୃତ୍ୟୁ ପୂର୍ବରୁ ମୃତ୍ୟୁ ହୋଇଥିଲା । ଏହା କଂସ ପାଇଁ ଯେତିକି ଭୀତିପ୍ରଦ ଥିଲା, ମଥୁରାରେ ଜ୍ୟେଷ୍ଠଭ୍ରାତା ଓ ମୋର ଯଶ ଓ ଗୌରବ ବର୍ଦ୍ଧନ ପାଇଁ ସେତିକି ସହାୟକ ହୋଇଥିଲା । କଂସର ହୃଦୟରେ ମୋ ପ୍ରତି ପୋଷିତ ହୋଇଥିବା ଅତିଶୟ ବିଦ୍ୱେଷ ଓ କ୍ରୋଧହିଁ ତା'ର ମୃତ୍ୟୁର କାରଣ ହୋଇଥିଲା । ତା'ର ସମସ୍ତ ସମର୍ଥକ,ସ୍ତାବକ, ଅନୁକାରୀ ଜଣକ ପରେ ଜଣେ ଯେତେବେଳେ ମୃତ୍ୟୁ ବରଣ କଲେ ସେତେବେଳେ ସେ ବଡ଼ ଦୁର୍ବଳ ହୋଇପଡ଼ିଲା । ମୋର ଉପସ୍ଥିତି ସୁଦ୍ଧା ତା'ପାଇଁ ଅସହ୍ୟ ଥିଲା । ଏପରିକି ଅତିମାତ୍ରାରେ କ୍ରୋଧ ହେତୁ ସେ ନିଜ ଶରୀରର ଭାରସାମ୍ୟ ସୁଦ୍ଧା ରକ୍ଷା କରି ପାରି ନଥିଲା, ଫଳତଃ ମଞ୍ଚ ଉପରେ ହିଁ ତାର ପତନ ହୋଇଥିଲା,ମୃତ୍ୟୁ ହୋଇଥିଲା ।

କଂସର ମୃତ୍ୟୁ - ଯେମିତି ଗୋଟାଏ ଅନ୍ଧକାର ଯୁଗର ଅବସାନ ଥିଲା । ଏହା ଏଭଳି ଏକ ଅଭାବନୀୟ ଘଟଣା ଥିଲା ଯେ, ପ୍ରଥମେ କେହି ବିଶ୍ୱାସ କଲେ ନାହିଁ ଓ ପରେ ଯେତେବେଳେ ବିଶ୍ୱାସ କଲେ ସେତେବେଳେ ଯେମିତି ଆନନ୍ଦର ପ୍ଲାବନରେ ସମଗ୍ର ମଥୁରା ପ୍ଲାବିତ ହୋଇଉଠିଲା ।

ମଥୁରାବାସୀଙ୍କର ଆନନ୍ଦ ଉଲ୍ଲାସର ସ୍ରୋତରେ ମିଶିଯିବା ପରିବର୍ତ୍ତେ ମୁଁ ଅଲଗା ଏକ ସ୍ଥାନରେ ଠିଆ ହୋଇ ସେମାନଙ୍କୁ ଲକ୍ଷ୍ୟ କରୁଥିଲି । କରୁଣାରେ ମୋ ହୃଦୟ ପରିପୂରିତ ହୋଇଉଠିଲା । ବହୁ ବର୍ଷ ଧରି ଏମାନଙ୍କ ଛାତିତଳେ ଦୁଃଖ, ନିର୍ଯ୍ୟାତନାର ଅବରୁଦ୍ଧ ସ୍ରୋତ

ଆଜି ହଠାତ୍ ଯେମିତି ମୁକ୍ତି ପାଇଗଲା, ସହସ୍ର ଧାରାରେ ପ୍ରବାହିତ ହୋଇ ଆନନ୍ଦ ସାଗରରେ ନିଶ୍ଚିହ୍ନ ହୋଇଗଲା । କାହିଁକି ଏମାନେ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ସାହାସ ସଞ୍ଚୟକରି ପାରନ୍ତିନି ? କାହିଁକି ବିନା ପ୍ରତିବାଦରେ ରାଜତନ୍ତ୍ରର ସବୁ ଅନ୍ୟାୟକୁ ମୁଣ୍ଡପାତି ସହି ନିଅନ୍ତି ? ଆହାଃ ! ଦୁର୍ବଳ ଅସହାୟ ମଣିଷଗୁଡ଼ିକ !

କଂସର ମୃତ୍ୟୁ ଅବଧାରିତ ଥିଲା । ମୁଁ ନିମିତ୍ତ ମାତ୍ର ଥିଲି ।

ଏହା କିନ୍ତୁ ଏଭଳି ଚମକପ୍ରଦ ସମ୍ବାଦ ଥିଲାଯେ ମୁହୂର୍ତ୍ତକରେ କଂସର ରାଣୀ ହଂସପୁର ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇ ଯାଇଥିଲା । ଜରାସନ୍ଧ ଦୁହିତା, କଂସର ରାଣୀ ଅସ୍ତି ଓ ପ୍ରାପ୍ତି ଏ ସମ୍ବାଦ ପାଇବା ପରେ ହତବାକ୍ ହୋଇଯାଇଥିଲେ । ସେ ପର୍ଯ୍ୟନ୍ତ ଯେଉଁମାନେ ତାଙ୍କର ଦାସ ଦାସୀଥିଲେ, ସେମାନେ ସମସ୍ତେ କାରାଗୃହ ଆଡ଼କୁ ଆନନ୍ଦାବେଗରେ ଧାଉଁଥିଲେ । କଂସର ବେଶକାରିଣୀ କୁବୁଜା ମୋର ସାକ୍ଷାତ ପାଇବା ପରଠାରୁ ଆଉ ରାଣୀହଂସ ପୁରକୁ ଯାଉ ନଥିଲା । ଅସ୍ତି ଓ ପ୍ରାପ୍ତିଙ୍କର ଏକାନ୍ତ ବିଶ୍ୱସ୍ତା ଦାସୀ ମଦାଳସା ମଧ୍ୟ ସେମାନଙ୍କ ନିକଟରେ ଆଉ ନଥିଲା । ସଚରାଚର ଏହାହିଁ ହେବା ସ୍ୱାଭାବିକ । କ୍ଷମତା ହସ୍ତାନ୍ତର ହୋଇଯିବା ପରେ ଅଧସ୍ତନ କର୍ମଚାରୀଙ୍କର ରୀତି ନୀତି, ଆଚାର ବିଚାରରେ ମଧ୍ୟ ପରିବର୍ତ୍ତନ ଘଟେ ।

ଅସ୍ତି ଓ ପ୍ରାପ୍ତି ସଂପର୍କରେ ମୋର ମାଇଁ । ପ୍ରବଳ ଶୋକାବେଗରେ ଜର୍ଜରିତା ହୋଇ ନିଜ ନିଜ କକ୍ଷରେ ସେ ଦୁହେଁ ଏକାକିନୀ ଅଶ୍ରୁ ବିସର୍ଜନ କରୁଥିଲେ । ମୋର ପ୍ରଥମ କର୍ତ୍ତବ୍ୟ ସେମାନଙ୍କୁ ପ୍ରବୋଧନା ଦେବା । ମୁଁ ଓ ବଡ଼ଭାଇ ରାଣୀହଂସ ପୁରର ମୁଖ୍ୟ ତୋରଣ ଦ୍ୱାର ଦେଇ ପ୍ରବେଶ କଲୁ । ନା - ସେଠାରେ ସେଦିନ କୌଣସି ପ୍ରହରୀ ନଥିଲେ । ଶୁଣିଥିଲି କଂସର ରାଣୀମାନେ ମଧ୍ୟ ଉଦ୍ଧତ, ଅହଙ୍କାରୀ । କୌଣସି ଆଶ୍ରିତ ଯଦି ସାମାନ୍ୟତମ ଅପରାଧ କରେ, ତେବେ ତା'ପାଇଁ ସେମାନେ ପ୍ରଚଣ୍ଡ ଶାସ୍ତିର ବ୍ୟବସ୍ଥା କରନ୍ତି । ବ୍ୟଭିଚାରୀ ସ୍ୱାମୀର ପାପରଭାର ପୂଣ୍ୟଶୀଳା ପତ୍ନୀର ପୂଣ୍ୟ ପ୍ରଭାବରେ ଲାଘବ ହେବାର ବହୁ ଦୃଷ୍ଟାନ୍ତ ରହିଛି, ମାତ୍ର କଂସ ଭାଗ୍ୟରେ ସେପରି କିଛି ପୂଣ୍ୟର ପ୍ରଭାବ ନଥିଲା । ବିଶେଷତଃ ଜନନୀ ଦେବକୀଙ୍କର ଅଷ୍ଟମ ଗର୍ଭର ସନ୍ତାନକୁ ଖୋଜି ଖୋଜି କଂସ ଅବଶେଷରେ ଏକ ଶିଶୁ ଘାତକରେ ପରିଣତ ହୋଇ ଯାଇଥିଲା; ଅଥଚ ତା'ର ଦୁଇ ରାଣୀ ଏଇ ସାଂଘାତିକ ଅକ୍ଷମଣୀୟ ପାପରୁ ତାକୁ ନିବୃତ୍ତ କରିପାରି ନଥିଲେ ।

ତଥାପି ମୁଁ ସେମାନଙ୍କ ପାଖକୁ ଯିବାକୁ ଉଦ୍ୟତ ହେଲି । ସେମାନଙ୍କ ଦ୍ୱାର ଦେଶରେ ପହଞ୍ଚିବା ମାତ୍ରେ ହୁଏତ ଭୟରେ, ହୁଏତ ବା କ୍ରୋଧରେ ସେ ଦୁହେଁ ପଲଙ୍କରୁ ଉଠି ଆସି ଦ୍ୱାର ରୁଦ୍ଧ କରି ଦେଲେ । ସେଠାରେ ଆଉ ମୁହୂର୍ତ୍ତେ କାଳ ବିଳମ୍ବ ନକରି ମୁଁ ଓ ବଡ଼ଭାଇ କାରାଗୃହ ଉଦ୍ଦେଶ୍ୟରେ ଯାତ୍ରା କଲୁ ।

ପଥଧାରର ଉଭୟ ପାର୍ଶ୍ୱରେ ଉପସ୍ଥିତ ଜନତା ଆମ ଉପରେ ପୁଷ୍ପ ବୃଷ୍ଟି କରୁଥା'ନ୍ତି ଓ ପରସ୍ପରକୁ କହୁଥା'ନ୍ତି- 'ଏଇ ହେଉଛି ରାଜକନ୍ୟା ଦେବକୀଙ୍କର ଅଷ୍ଟମ ଗର୍ଭର ସନ୍ତାନ, ଅଲୌକିକ ଦେବଶିଶୁ । ଏଇ କାରାଗୃହରୁ ଦିନେ ତାଙ୍କୁ ଶୂରମୁଖ୍ୟ ବସୁଦେବ ନେଇଯାଇଥିଲେ ଗୋପପୁର ନନ୍ଦଗୃହକୁ । ଆଜି ସେ ଫେରି ଆସିଛନ୍ତି ତାଙ୍କର ଜନ୍ମଦାତା ଓ ଜନ୍ମଦାତ୍ରୀଙ୍କ ନିକଟକୁ !'

କାରାଗୃହର ଲୌହ କବାଟକୁ ସେଦିନ ଉନ୍ମୁକ୍ତ କରିଦିଆଯାଇଥିଲା । ବାତାୟନ ନିରୁଦ୍ଧ ଅନ୍ଧକାରମୟ ପାଷାଣ ଗୃହରେ ଶୃଙ୍ଖଳମୁକ୍ତ ହୋଇ ପିତା ବାସୁଦେବ ବସି ରହିଥିଲେ ନୀରବରେ । ହୁଏତ ଏହି ଅବିଶ୍ୱାସ୍ୟ ସଂବାଦ ସେ ବିଶ୍ୱାସ କରିପାରୁନଥିଲେ । ସେ ଚିନ୍ତା କରୁଥିଲେ ଏହା ହୁଏତ କଂସର ଶାସ୍ତି ବିଧାନର ଏକ ନୂତନ ପଦ୍ଧତି । ଆଉ ଜନନୀ ଦେବକୀ ? ମା' ବସୁଧା ଭଳି ଯାହାର ଧୈର୍ଯ୍ୟ ଓ ସହନଶୀଳତା ଅପରିସୀମ । ଥର ଥର କରି ଆଠଥର ସେ ଗର୍ଭଧାରଣ କରିଛନ୍ତି, ଅସହ୍ୟ ପ୍ରସବ ବେଦନା ସହ୍ୟ କରି ସନ୍ତାନ ପ୍ରସବ କରିଛନ୍ତି । ସନ୍ତାନକୁ କ୍ରୋଡ଼ାଗ୍ରତ କରି ତାକୁ ବକ୍ଷର ଅମୃତପାନ କରାଇବା ପୂର୍ବରୁ ତାଙ୍କ କୋଳକୁ ଶୂନ୍ୟ କରି ଦିଆଯାଇଛି । ଏହାହିଁ ତାଙ୍କର ବିଡ଼ମ୍ବିତ ଭାଗ୍ୟଲିପି । ଭାଗ୍ୟ ହିଁ ପ୍ରବଞ୍ଚନା କରିଛି ତାଙ୍କ ସହ । ସେ କାହାକୁ ଦୋଷ ଦେଇଥା'ନ୍ତେ ?

ଅଷ୍ଟମ ଗର୍ଭର ସନ୍ତାନ ଭୂମିଷ୍ଠ ହେବା ପରେ, ସେ ସନ୍ତାନ ମଧ୍ୟ ହାତଛଡ଼ା ହୋଇଯିବା ପରେ ଆଉ ସେ ଗର୍ଭଧାରଣ କରିନାହାନ୍ତି । ଯେମିତି ସବୁ ପ୍ରତିଶ୍ରୁତି ତାଙ୍କର ପୂର୍ଣ୍ଣ ହୋଇଯାଇଛି, ସମସ୍ତ ଧୈର୍ଯ୍ୟର ପରୀକ୍ଷାରେ ସେ ଉତ୍ତୀର୍ଣ୍ଣା ହୋଇଯାଇଛନ୍ତି । ତାଙ୍କର ସମସ୍ତ ଦୁଃଖ ଓ ଯାତନା ଏକ ମୂକ ଆର୍ତ୍ତନାଦ ହୋଇ ପାଷାଣ ପ୍ରାଚୀର ଦେହରେ ଧକ୍କା ଖାଇ ଫେରିଆସେ ତାଙ୍କ ପାଖକୁ, ତାଙ୍କୁ ଆହୁରି ସ୍ତବ୍ଧ କରିଦିଏ । ବର୍ଷ ବର୍ଷ ଧରି ତାଙ୍କର ମୌନ ତପସ୍ୟାରେ ସେ ମଗ୍ନ ହୋଇଯାଆନ୍ତି । କେବଳ ନିଜକୁ ହିଁ ନୀରବରେ ସେ ପ୍ରଶ୍ନ କରନ୍ତି- 'ତୋତେ ଗର୍ଭରେ ଧାରଣ କରିବାର ପୂଣ୍ୟ ଯଦି ଅର୍ଜନ କରିପାରିଲି ତେବେ ତୋତେ ଲାଳନ କରିବାର ସୌଭାଗ୍ୟ ମୋର ହେଲା ନାହିଁ କାହିଁକି ?'

ଜନନୀ ଦେବକୀ ଏତେବର୍ଷ ଧରି ସେହି କାରାଗୃହରେ ଏକ କାଷ୍ଠପୁତ୍ତଳୀକୁ ନିଜର ଶିଶୁ ମନେକରି ତା'ର ପରିଚର୍ଯ୍ୟାରେ ମଗ୍ନ ହୋଇ ରହିଥିଲେ । ସମୟ ମତେ ସେହି ନିର୍ଜୀବ ପୁତ୍ତଳୀକୁ ସ୍ନାନ, ଭୋଜନ, ଶୟନ ସବୁକିଛି କରାଉଥିଲେ । ତାଙ୍କର ଏପ୍ରକାର ମସ୍ତିଷ୍କ ବିକୃତି ଦେଖି କଂସର ଅନୁଚରଣଗଣ ବେଶ୍ ପରିହାସ ମିଶ୍ରିତ ଆଲୋଚନା କରୁଥିଲେ । କିନ୍ତୁ ସହୃଦୟ ବ୍ୟକ୍ତିଗଣ ଦୁଃଖରେ ଭାଙ୍ଗିପଡ଼ି ସାନ୍ତ୍ୱନା ଦେବାକୁ ଶବ୍ଦଟିଏ ସୁଦ୍ଧା ଖୋଜି ପାଉନଥିଲେ । କାରାଗୃହର ଦରଜା ଖୋଲା ହେବାମାତ୍ରେ ସେ କାଷ୍ଠ ପୁତ୍ତଳୀକୁ ନିଜ ବକ୍ଷରେ ଚାପି ଧରି

ଅଶ୍ରୁରୁଦ୍ଧ କଣ୍ଠରେ କହୁଥିଲେ- 'ନା- ନା- ଏହାକୁ ମୁଁ ଆଦୌ ଦେବି ନାହିଁ । ମୋ ଜୀବଦ୍ଦଶାରେ କଂସ କେବେହେଲେ ଏହାକୁ ମୋଠାରୁ ନେଇପାରିବ ନାହିଁ । ଇଏ ମୋର 'ବାସୁଦେବ' । ମୋ ପତିଙ୍କର ପ୍ରୀତିର ସନ୍ତକ ।'

ଏସବୁ ବାଚାଳତା ମଧ୍ୟ ପଲ୍ଲବିତ ହୋଇ କଂସ ନିକଟରେ କଂସ ଦରବାରରେ ପ୍ରଚାରିତ ହେଉଥିଲା । କଂସ ପ୍ରବଳ ଭାବରେ ଅଟ୍ଟହାସ୍ୟ କରି କହୁଥିଲା- 'ହଁ, ସେଇ ନିର୍ଜୀବ କ୍ରୀଡ଼ନକକୁ ସାରା ଜୀବନ କୋଳରେ ଧରୁ ଦେବକୀ । କଂସର ଜୀବନନାଶୀ ଶତ୍ରୁକୁ କୌଣସି ଦିନ ସେ କୋଳାଗ୍ରତ କରିପାରିବ ନାହିଁ ।'

ଏ ସବୁ ମୋତେ ସେହି ମଥୁରାବାସୀଙ୍କଠାରୁ ଶୁଣିବାକୁ ପଡ଼ିଥିଲା । ମୋ ପିତାମାତା ବସୁଦେବ- ଦେବକୀଙ୍କୁ କାରାକକ୍ଷରୁ ମୁକ୍ତି ଦେବାପାଇଁ ମୁଁ ଯେତେବେଳେ ସେଠାରେ ପହଞ୍ଚିଲି ଦେଖିଲି ଜନନୀ ଦେବକୀଙ୍କ କଣ୍ଠ ଅଶ୍ରୁରୁଦ୍ଧ । ତାଙ୍କ ଲୋତକ ପୂରିତ ଚକ୍ଷୁ ଦୁଇଟିରେ ଅପରିଚୟର ଜିଜ୍ଞାସା । ମୁଁ ଓ ବଡ଼ଭାଇ ପିତାଙ୍କ ପଦସ୍ପର୍ଶ କରିବା ମାତ୍ରେ ସେ ତାଙ୍କ ବକ୍ଷରେ ଚାପି ଧରି ଛୋଟ ଶିଶୁ ଭଳି କାନ୍ଦିବାକୁ ଲାଗିଲେ । ଜନନୀଙ୍କ ପଦ ସ୍ପର୍ଶ କରିବାମାତ୍ରେ ତାଙ୍କ ବକ୍ଷରୁ ଅଜସ୍ର ଧାରାରେ କ୍ଷୀର ଧାର ସ୍ରବି ପଡ଼ି ତାଙ୍କ ବକ୍ଷବାସ ସିକ୍ତ କରିଦେଲା । ସେ ଦୁଇପାଦ ପଛକୁ ଘୁଞ୍ଚିଗଲେ । ସେଇ ଦୁଇପାଦ ସମୟର ଏକ ଅଦୃଶ୍ୟ ପ୍ରାଚୀର ହୋଇ ମାତା ପୁତ୍ରଙ୍କୁ ଅପରିଚିତର ପରିଧି ନିକଟରେ ଠିଆ କରାଇଦେଲା । ମୁଁ କହିଲି- 'ମା ! ମୁଁ ତୁମର ବାସୁଦେବ !'

'ତୁ ? ତୁ ମୋର ବାସୁଦେବ ?'

ତାଙ୍କ କଣ୍ଠରେ ଅଭିମାନ, ଅଭିଯୋଗ ପୁଞ୍ଜିଭୂତ ହୋଇଉଠିଲା । ମୋ ଭଳି ଏକ ଚଳଚଞ୍ଚଳ, ଉଦ୍ଦାମ କିଶୋର ଭିତରେ ସେ ଯେମିତି ଖୋଜି ହେଉଥିଲେ ତାଙ୍କର ତ୍ରୟୋଦଶ ବର୍ଷ ତଳର ଏକ ସଦ୍ୟଜାତ ଶିଶୁ ସନ୍ତାନକୁ, ଯାହାକୁ ସମୟର କୂଟ ଚକ୍ରାନ୍ତ ବଳରେ ଭାଦ୍ର କୃଷ୍ଣା ଅଷ୍ଟମୀର ବର୍ଷଣ ମୁଖର ଝଡ଼ ବିକ୍ଷୁବ୍ଧ ଗଭୀର ନିଶୀଥରେ ତାଙ୍କ କୋଳରୁ ଛଡ଼େଇ ନିଆଯାଇଥିଲା । ଯାହାକୁ ଅନୁରାଗରେ ଓ ଅନୁଶାସନରେ ଲାଳନ କରିବାପାଇଁ ତାଙ୍କର ମାତୃହୃଦୟ ପ୍ରତିମୁହୂର୍ତ୍ତରେ ପ୍ରତୀକ୍ଷା କରି ରହିଥିଲା । ତାଙ୍କର ସବୁ ସମୟ ସେଇଠି ହିଁ, ସେଇ ତ୍ରୟୋଦଶ ବର୍ଷ ତଳର ବର୍ଷୁକୀ ନିଶୀରେ ହିଁ ଅଟକି ଯାଇଥିଲା । ହାତଗୋଡ଼ ଛାଟି ଏକ ସ୍ତନନ୍ଧୟ, ରୋରୁଦ୍ୟମାନ ଶିଶୁକୁ ସେ ଖୋଜି ହେଉଥିଲେ ମୋ ଭିତରେ, ଖୋଜି ହେଉଥିଲେ ତା'ର ଶୈଶବର ସମସ୍ତ ଲୀଳା ଖେଳାକୁ । ଯେଉଁ ଶିଶୁଟିର ସମସ୍ତ ଶାରୀରିକ ଓ ମାନସିକ ବିକାଶ ତାଙ୍କରି ଚକ୍ଷୁ ସମ୍ମୁଖରେ ହୋଇଥା'ନ୍ତା, ଯେଉଁ ଶିଶୁଟି ତାଙ୍କରି ଅଙ୍ଗନରେ ପ୍ରଥମ ପାଦ

ଥାପି ଟଳମଳ ହୋଇ ତାଙ୍କ ହାତଧରି ଚାଲି ଶିଖୁଥା'ନ୍ତା, ଦରୋଟି କଣ୍ଠରେ 'ମା' ବୋଲି ପ୍ରଥମେ ତାଙ୍କୁ ସମ୍ବୋଧନ କରିଥା'ନ୍ତା.... କାହିଁ ସେ ଶିଶୁ ? ଏ ଯେ ଏକ ଚଳଚଞ୍ଚଳ କିଶୋର ତାଙ୍କ ସମ୍ମୁଖରେ ଠିଆ ହୋଇ ତାଙ୍କୁ 'ମା' ବୋଲି ଡାକୁଛି ! ମାତୃ ହୃଦୟର ବ୍ୟାକୁଳତା ସହସ୍ର ବାହୁ ମେଲି ଏ ନବକିଶୋର ଦ୍ୱୟଙ୍କୁ ଆଲିଙ୍ଗନାବଦ୍ଧ କରିବାପାଇଁ ଅସ୍ଥିର ଆବେଗରେ ବ୍ୟଗ୍ରତା ପ୍ରକାଶ କରୁଥିଲେ ସୁଦ୍ଧା ଦେବକୀ ଆବେଗ ସମ୍ବରଣ କରିନେଲେ ଟିକିଏ ପଛକୁ ଘୁଞ୍ଚିଯାଇ । ନା- ତାଙ୍କ ଆଖିରେ ଆଉ ଟୋପାଏ ବି ଅଶ୍ରୁ ନଥିଲା । ଏତେ ଗୁଡ଼ାଏ ବର୍ଷ ଭିତରେ ଅଜସ୍ର ଅଶ୍ରୁ ଝରି ଝରି ଏ ପାଷାଣ ପ୍ରାଚୀର ଗାତ୍ରକୁ ହୁଏତ ସିକ୍ତ କରିଥିବ, ସେଇ ଅଜସ୍ର ଅଶ୍ରୁଭାରର ଯନ୍ତ୍ରଣାର ସ୍ୱାକ୍ଷର କିନ୍ତୁ ଲିପିବଦ୍ଧ ହୋଇ ରହିଥିଲା ତାଙ୍କର ବିଷାଦ କାଳିମାଲିପ୍ତ କୋଟରଗତ ଦୁଇଟି କରୁଣ ନୟନ ତଳେ । ପ୍ରକୃତରେ ସେ ପ୍ରୌଢ଼ତ୍ୱରେ ପଦାର୍ପଣ କରିଥିଲେ ବି ତାଙ୍କ ଜୀବନର ଏଇ ଅବାଞ୍ଛିତ ଝଂଜାଘାତ ତାଙ୍କର ପ୍ରକୃତ ବୟସଠାରୁ ତାଙ୍କୁ ବୟସ୍କା କରିଦେଇଥିଲା । ତାଙ୍କର ଏଇ ଅଶ୍ରୁମିଳନ, ବିଷାଦଜୀର୍ଣ୍ଣ ମୂର୍ତ୍ତିଟି ପ୍ରତି ମଥୁରାବାସୀଙ୍କର ସମ୍ବେଦନ ଓ ସମ୍ମାନ ପୁଞ୍ଜିଭୂତ ହୋଇଥିଲା, ତା'ବି ମୁଁ ଲକ୍ଷ୍ୟ କଲି, କାରଣ ତାଙ୍କ ସମ୍ମୁଖରେ କେହି ପଦଟିଏ ବି କଥା କହୁନଥିଲେ ।

ଏଥର ସେ ସିଧା ସଳଖ ମୋତେ ଚାହିଁ ସ୍ଥିର, ନିଷ୍କଂପ କଣ୍ଠରେ ପ୍ରଶ୍ନ କଲେ-'ପ୍ରବଳ ପରାକ୍ରାନ୍ତ ମଥୁରା ନରେଶ ନିହତ ହୋଇଛି ପୁତ୍ର ?'

ମୁଁ ଯନ୍ତ୍ରଚାଳିତ ଭଳି ମୁଣ୍ଡ ହଲାଇ ସମ୍ମତି ଜଣାଇଲି ଏବଂ ଆମର ପିତୃବ୍ୟ ଅକ୍ରୁର ପ୍ରବଳ ଆଗ୍ରହରେ କହି ପକାଇଲେ- 'ଅବିଶ୍ୱାସ୍ୟ ହେଲେ ମଧ୍ୟ ଏହା ସତ୍ୟ ଦେବୀ ! ତୁମ୍ଭର ପୁତ୍ର ଦୁହେଁ ଚାଣୁର, ମୁଷ୍ଟିକ ଭଳି ମହାମଲ୍ଲଙ୍କୁ ପରାସ୍ତ କରିବାରେ ସମର୍ଥ ହୋଇଛନ୍ତି, ଆସବ-ଉନ୍ମତ୍ତ ହସ୍ତୀ କୁବଳୟାକୁ ପରାଜିତ କରିଛନ୍ତି ଏବଂ ପରିଶେଷରେ ଆସୁରୀ ପ୍ରବୃତ୍ତି ସଂପନ୍ନ କଂସକୁ ବିନାଶ କରିଛନ୍ତି ।'

ଆଉ କେତେଜଣ ମଥୁରାବାସୀ ମଧ୍ୟ ସେଇ କଥାକୁ ସମର୍ଥନ କଲେ । ମୁଁ ବ୍ୟତିବ୍ୟସ୍ତ ହୋଇ କହିଲି- 'ନା- ନା- ମା ! ମୁଁ କୌଣସି ଅସ୍ତ୍ରଦ୍ୱାରା ମାତୁଳ କଂସକୁ ବିନାଶ କରିନାହିଁ, ବରଂ ମୋତେ ମଞ୍ଚନିକଟରେ ଦେଖି କ୍ରୋଧୋନ୍ମତ୍ତ ମାତୁଳ ମଞ୍ଚ ଉପରୁ ନିଜର ଭାରସାମ୍ୟ ରକ୍ଷା କରିନପାରି ତଳକୁ ଖସିପଡ଼ି ପ୍ରାଣ ହରାଇଛନ୍ତି ।'

ଜନନୀ ଦେବକୀ ମୋର ଅତି ନିକଟକୁ ଆସିଲେ । ମୋ ମୁହଁଟିକୁ ନିଜର ଦୁଇହାତରେ ତୋଳିଧରି ନିର୍ନିମେଷ ନୟନରେ କିଛିକ୍ଷଣ ମୋତେ ଚାହିଁ ରହି କହିଲେ- 'ଏତେ ଶକ୍ତି ? ଏତେ ଶକ୍ତି ଥିଲାଟିରେ ବାସୁଦେବ ? ପୂତନାଠାରୁ ଆରମ୍ଭ କରି କଂସ ପର୍ଯ୍ୟନ୍ତ କେତେ

ପରାକ୍ରାନ୍ତ ରାକ୍ଷସ ବିନଷ୍ଟ ହେଲେ ଅନାୟାସରେ ଅଥଚ ମୋ ଭାଗ୍ୟ ଏଭଳି ବିଡ଼ମ୍ବିତ କାହିଁକି ହେଲା ? ଆଠଟି ସନ୍ତାନଙ୍କୁ ଭୂମିଷ୍ଠ କଲି ହେଲେ, ମା' ହୋଇପାରିଲି ନାହିଁ କାହିଁକି ? ସେତେବେଳେ ଯଦି ଏତେ ଟିକେ ଶକ୍ତିର ପରୀକ୍ଷା ଦେଇଥା'ନ୍ତୁ ତେବେ ମୋର ବହୁବାଂଛିତ ମାତୃତ୍ୱ କ'ଣ ଏଭଳି ପ୍ରବଞ୍ଚିତ, ବ୍ୟର୍ଥ ହୋଇଯାଇଥା'ନ୍ତା ? ନା- ନା- ନନ୍ଦରାଣୀ ଯଶୋମତୀଙ୍କୁ କୃତଜ୍ଞତା ଜଣାଇ ତାଙ୍କୁ ଛୋଟ କରିଦେବି ନାହିଁ । ମଥୁରାର ଈର୍ଷା ବିଦ୍ୱେଷର ବିଷ ବାଷ୍ପର ଅନ୍ତରାଳରେ ସେ ରୋହିଣୀ ନନ୍ଦନଙ୍କୁ ଓ ତୋତେ ବଞ୍ଚେଇ ପାରିଛନ୍ତି ଏତିକି ମୋ ପାଇଁ ବହୁ ତପସ୍ୟାର ସିଦ୍ଧି ନିଶ୍ଚୟ । ତଥାପି ମୋର କେବଳ ଗୋଟିଏ ଅଭିଯୋଗ, ତୋର ସମଗ୍ର ଶୈଶବକୁ ତୁ ଅକୁଣ୍ଠିତ ଭାବରେ ନନ୍ଦରାଣୀଙ୍କ ସ୍ନେହାଞ୍ଚଳରେ ଅଜାଡ଼ି ଦେଲୁ, ମୋର ଏ ଅଞ୍ଚଳ ଚିରକାଳକୁ ଶୂନ୍ୟ ରହିଗଲା ?'

ଖୁବ୍ ଧିରେ ଧିରେ ମୃଦୁ ଅଥଚ ଗମ୍ଭୀର ସ୍ୱରରେ ସେ ଏତିକି କହି ଚୁପ୍ ହୋଇଗଲେ । ଆଉ କ'ଣ କହିବା ପୂର୍ବରୁ ଭ୍ରାତା ବଳରାମ ଶିଶୁ ଭଳି କାନ୍ଦି ଉଠି କହିଲେ- 'ମା ! ସେତିକି । ତୁମର ପ୍ରତିଟି ଶବ୍ଦରେ ପୁଞ୍ଜିଭୂତ ବେଦନା ଆମକୁ ଭାଙ୍ଗି ଖଣ୍ଡ ଖଣ୍ଡ କରିଦେବ ।'

ଜ୍ୟେଷ୍ଠ ଭ୍ରାତା ସବୁଦିନେ ଏଇଭଳି । ସମସ୍ତ ହୃଦ୍‌ବୃତ୍ତିର ପ୍ରକାଶ ତାଙ୍କର ଏଇଭଳି ପ୍ରଚଣ୍ଡ । ମୁଁ କିନ୍ତୁ ଭିନ୍ନ ଧରଣର । ମା'ଙ୍କର ଏଇ ଅନ୍ୱେଷାର ଉତ୍ତର ମୁଁ ଇଚ୍ଛା କରି ଦେଲିନାହିଁ । ଏହି ଅନ୍ୱେଷା ଚିରକାଳ ଅନ୍ୱେଷା ହୋଇଥାଉ ।

## ।। ସପ୍ତମ ଗ୍ରନ୍ଥି ମୋଚନ ।।

କୁବ୍‌ଜାକୁ କଥା ଦେଇଥିଲି । ତା ପୁରକୁ ଯିବାକୁ ହେବ । କିଛି ଦିନ ଧରି ଏଇ ଗୋଟିଏ ପ୍ରତିଶୃତି ପାଳନ ପାଇଁ ମୁଁ ଅସ୍ଥିର ହେଉଥିଲି । ଦିନେ ଜ୍ୟେଷ୍ଠଭ୍ରାତା ତାହା ଲକ୍ଷ୍ୟ କରି କହିଲେ - 'ଏଇଟା ଗୋପପୁର ନୁହେଁ କାହ୍ନୁ । ଏଇଟା ମଥୁରାର ରାଜ ଭବନ । ଯାର ରୀତି-ନୀତି ଆଇନ ଶୃଙ୍ଖଳା ସବୁ କିଛି ଭିନ୍ନ ଧରଣର ।'

ମୁଁ ତାଙ୍କୁ ଏକ ଲୟରେ ଚାହିଁ ରହି କହିଲି - 'ପ୍ରେମ କ'ଣ କୌଣସି ରୀତି-ନୀତି ଆଇନ ଶୃଙ୍ଖଳାର ଅପେକ୍ଷା ରଖେ ଭାଇ ? '-ମାନେ ? ଗୋପ ତରୁଣୀ ପଣତ ସେଇ ବୃନ୍ଦାବନ ସୀମାରେ । ତେବେ ଏଠି ପୁଣି କିଏ.... ?

ବଡ଼ଭାଇ ବିଚଳିତ ହୋଇ ପଡ଼ିଲେ । ମୁଁ ଚିରାଚରିତ ରୀତିରେ ହସି ହସି କହିଲି - 'ସେଇ ନିର୍ଦ୍ଦୋଷ ଭୁଲ୍‌ଟି ନିଜ ଅଜ୍ଞାତସାରରେ କରିପକାଇଛି ଜଣେ ଏବଂ ପ୍ରାଣଭରି ସେଇ

ଭୁଲ୍‌ଟିକୁ ମରଣ ଅବଧି ସ୍ୱୀକାର କରିବା ପାଇଁ ସେ ଜଣକ ଉତ୍‌କଣ୍ଠାର ସହ ଅପେକ୍ଷା କରିଛି ଜ୍ୟେଷ୍ଠଭ୍ରାତା । ତା' ମୁହଁରୁ ସେଇ ଅନାବିଳ ନିଷ୍ପାପ ସ୍ୱୀକାରୋକ୍ତି ଶୁଣି ଆସିବା ପାଇଁ ମୋତେ ଥରେ ଅନୁମତି ଦିଅ ଭାଇ !' -'କିଏ ସେ ?' ବଡ଼ଭାଇ ଅପେକ୍ଷାକୃତ ନରମ ସ୍ୱରରେ ପ୍ରଶ୍ନ କଲେ ।

'କୁବୁଜା ? ? ?'

ମୋର ଉତ୍ତର ଶୁଣି ତାଙ୍କର ଚକ୍ଷୁ ଦୁଇଟି ବିସ୍ଫାରିତ ହୋଇଗଲା । ଅନେକ କ୍ଷଣଯାଏ ବାକ୍‌ସ୍ଫୁର୍ତ୍ତି ସମ୍ଭବ ହେଲାନାହିଁ ।

ସେ କ୍ରୁଦ୍ଧ ହେଲେ ନାହିଁ, ପ୍ରତିରୋଧ କଲେ ନାହିଁ । ହତବାକ୍ ଭାବେ ମୋତେ ଚାହିଁ ରହିବା ଅର୍ଥ ସେ ମୋତେ ଅନୁମତି ଦେଇଦେଲେ । ମା'ଙ୍କ ପାଦଶବ୍ଦ ଶୁଣିପାରି ବଡ଼ଭାଇ ବି ଚୁପ୍ ହୋଇଗଲେ । ଏ ପ୍ରସଙ୍ଗରେ କୌଣସି ପ୍ରଶ୍ନ ଆଉ କଲେ ନାହିଁ ।

ପିତା ସଂଧ୍ୟା ପୂଜନ ଶେଷ କରି ଆମ୍ଭମାନଙ୍କ ଅପେକ୍ଷାରେ ବସିଥିଲେ । ରାତ୍ରି ଭୋଜନ ଆମ୍ଭେମାନେ ପ୍ରାୟ ଏକ ସମୟରେ କରିଥାଉ । ପିତା ବସୁଦେବ ବହୁବର୍ଷର କାରାବାସ ଜନିତ୍ ଅଭ୍ୟାସ ହେତୁ ସାମାନ୍ୟ ମାତ୍ର ଆହାର ଗ୍ରହଣ କରନ୍ତି । ମଥୁରାରେ ଜବଛତୁ ଓ କ୍ଷୀର ପିଣ୍ଡକ (ଖୁଆପେଡ଼ା) ଅତ୍ୟନ୍ତ ସ୍ୱାଦିଷ୍ଟ, ଉଷ୍ଣ ଦୁଗ୍ଧ ସହ ମୁଁ ରାତିରେ ତାହାହିଁ ଭୋଜନ କରିଥାଏ । ସେଦିନ କିନ୍ତୁ ଖାଦ୍ୟ ସାମଗ୍ରୀ ମୋ ସମ୍ମୁଖରେ ରହିବା ପରେ ବି ମୁଁ ଅନ୍ୟମନସ୍କ ଭାବେ ବସି ରହି ମୁକ୍ତ ବାତାୟନ ପଥଦେଇ ତାରକା ଗୁଂଫିତ ଆକାଶକୁ ଚାହିଁ ରହିଥାଏ, ରାତିର ବୟସ କଳନା କରୁଥାଏ । ଜନନୀ ଦେବକୀ କିଛି ସମୟ ମୋତେ ଚାହିଁ ରହି କହିଲେ - 'ଏଇ ରାତିରେ କୁଆଡ଼େ ବାହାରକୁ ଯିବାକୁ ମନସ୍ଥ କରିଛୁ କିରେ ନୀଳମଣି ?'

ମା'ମାନେ କ'ଣ ସର୍ବଦର୍ଶୀ ? ଅନ୍ତର୍ଯ୍ୟାମୀ ? ମୋର ସମସ୍ତ ଗୋପନ ଯୋଜନା ସୁଦ୍ଧା ତାଙ୍କ ଆଖିରୁ ଲୁଚି ପାରୁ ନାହିଁ କାହିଁକି ? ମୁଁ କିନ୍ତୁ ତାଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଇଛା ନକରି ଏଡ଼େଇ ଦେବା ପାଇଁ କହିଲି - 'ନୀଳମଣି ! ବାଃ ! ଚମତ୍କାର । ତୁମେ ତ ମୋତେ 'ଗୋବିନ୍ଦ' ନାମରେ ଡାକ । 'କେଶବ' ନାମରେ ଡାକ ନହେଲେ 'ବାସୁଦେବ' ବୋଲି କୁହ । ଆଜି ତୁମେ 'ନୀଳମଣି' ବୋଲି ଡାକିଲେ ଯେ ମା ? ଏଇ ନାଁରେ ମୋତେ ମା' ଯଶୋମତୀ ଡାକୁଥିଲେ । ତାଙ୍କ କଣ୍ଠ ନିଃସୃତ ଏଇ ଡାକଟି ପ୍ରତି ମୋର ଭାରୀ ଦୁର୍ବଳତା । ବହୁତ ମନେ ପଡୁଥିଲା ଏଇ ଡାକଟି । ତୁମେ ଡାକି ଦେଲ, ମୋ ପ୍ରାଣ ପୂରି ଉଠିଲା । ଏଇ ଦେଖ ଏକା ଗ୍ରାସରେ ସବୁ ଖାଇ ଶେଷ କରି ଦେଉଛି !'

କେହି ଶୁଣି ନପାରିବା ଭଳି ବଡ଼ଭାଇ ମୋ କାନ ପାଖରେ କହିଲେ - 'ଯଶୋମତୀ

ମା'ଙ୍କର 'ନୀଳମଣୀ' ଡ଼ାକ ପାଇଁ ଝୁରି ହେଉଥିଲୁ ନା ନୀଳକଇଁର ପାଖୁଡ଼ାଭଳି ଅଶ୍ରୁସିକ୍ତ ଦୁଇଟି ପ୍ରେମାତୁର ନୟନକୁ ଝୁରି ହେଉଥିଲୁ ନୀଳମଣି ?'

ମୁଁ ଟିକିଏ ରହସ୍ୟ ମୟ ଭାବେ ହସି ଦେଲି କେବଳ ।

ରାତି ବୟସ କ୍ରମଶଃ ବଢୁଥିଲା । ଥଣ୍ଡା ରାତିର ମିଠା ଜହ୍ନ ଆଲୁଅ । ମୋ ଆଖିକୁ ନିଦ ଆସୁନଥିଲା । ଭାଇ କେତେବେଳୁ ଗଭୀର ନିଦ୍ରାରେ ଅଚେତନ ହୋଇ ପଡ଼ଲେଣି । ମୋର ଦେହଟା ପଡ଼ି ରହିଥିଲା ଗଜଦନ୍ତ ପଲଙ୍କର ସୁକୋମଳ ଶଯ୍ୟାରେ । ମନ କିନ୍ତୁ ଉଡ଼ି ଯାଇଥିଲା ଅନେକବେଳୁ ମଥୁରାର ରାଜଦାଣ୍ଡକୁ, ମଧୁବନ ତୋଟା ନିକଟସ୍ଥ ସେଇ କ୍ଷୁଦ୍ର କୁଟୀର ପାଖକୁ । ମୁଁ ମଥୁରାରେ ପହଞ୍ଚିବା ଦିନଠାରୁ ପ୍ରତିଟି ରାତ୍ରିରେ ସେଠି ଜଣେ ମୋ ପାଇଁ ପ୍ରତୀକ୍ଷା କରି ରହୁଥିଲା । ସେଇ ପତୀକ୍ଷିତା ରମଣୀଟି ପ୍ରତି ରାତିରେ ଫୁଲ ପାଖୁଡ଼ା ବିଛେଇ ଦେଉଥିଲା ରାଜଦାଣ୍ଡରୁ ତା କୁଟୀରଯାଏ, ଏମିତିକି ତା' ହୃଦୟଟିକୁ ଫୁଲର ପାଖୁଡ଼ା କରି ପତେଇ ଦେଇଥିଲା ସେ ମୋ ଚଲାପଥକୁ ପୁଷ୍ପିତ କରିବାକୁ । ରାତିପାହି ସକାଳହେଲେ ଫୁଲ କରି ଫୁଟେଇ ଦେଇଥିବା ତା'ର ଆଶା ଆକାଙ୍କ୍ଷାକୁ ସାଉଁଟି ଦେଇ ସାଇତି ରଖୁଥିଲା ତା' ଅଶ୍ରୁସିକ୍ତ ନୟନ ଯୁଗଳରେ, ତା' ପ୍ରୀତିମୁଗ୍ଧ ହୃଦୟ ଭିତରେ ପୁଣି ଗୋଟିଏ ସଂଧ୍ୟା ପର୍ଯ୍ୟନ୍ତ । ତା'ର ଏ ପ୍ରତୀକ୍ଷାର ଆଦିଅନ୍ତ ନଥିଲା, ତା'ର ଏ ଅନୁକ୍ତ ବେଦନାର ମଧ୍ୟ ସୀମା ପରିସୀମା ନଥିଲା । ମୋ ପାଇଁ - କେବଳ ମୋ ପାଇଁ କେହିଜଣେ ଅପେକ୍ଷା କରିଛି - ଏଇ କଥା ଭାବିବାକୁ ମୋତେ ସବୁଦିନେ ଭାରୀ ଭଲ ଲାଗେ । କାରଣ ଏଇଭଳି ଅପେକ୍ଷା ସହ ଯେମିତି ରାଧାର ପ୍ରେମିକାସତ୍ତା, ତା'ର ଦୀର୍ଘଶ୍ୱାସ ମିଶି ରହିଥାଏ ଓ ସବୁରି ଅଲକ୍ଷ୍ୟରେ ମୋତେ ଛୁଇଁ ଛୁଇଁ ଯାଏ, ଶିହରିତ କରିଦିଏ ।

ମୋରି ପ୍ରତୀକ୍ଷାରେ କେବଳ କେହିଯଦି ମୋର ଅଭିବନ୍ଦନ ବା ସ୍ମରଣ କରେ ତେବେ ତା' ପାଇଁ ହୃଦୟ ଭିତରେ ମୁଁ ପ୍ରବଳ ପ୍ରେମାକର୍ଷଣ ଅନୁଭବ କରେ । ଗୋଟିଏ ପାଦ ସେ ମୋ ଆଡ଼କୁ ଆଗେଇ ଆସିଲେ ମୁଁ ତା' ନିକଟକୁ ଦଶପାଦ ଆଗେଇ ଯାଏ ।

ହଁ, ମୁଁ ସେଦିନ ଆଗେଇ ଯାଇଥିଲି କୁବୁଜାର କୁଟୀର ପର୍ଯ୍ୟନ୍ତ । ପ୍ରକୃତରେ ରାଜଦାଣ୍ଡରୁ ତା' ହୃଦୟର ଦ୍ୱାରଦେଶ ପର୍ଯ୍ୟନ୍ତ ସେ ବିଛେଇ ଦେଇଥିଲା ସୁକୋମଳ, ସୁବାସିତ ଫୁଲର ପାଖୁଡ଼ା । ଯେମିତିକି ରାଜ ରାସ୍ତାର ଧୂଳିରେ ମୋ ପଦତଳ କ୍ଷତବିକ୍ଷତ ନହୁଏ । ପ୍ରସ୍ତୁତ କରି ରଖିଥିଲା କସ୍ତୁରୀ, ଚନ୍ଦନ, କୁଙ୍କୁମ କେଶରର ମହାର୍ଘ ଅଂଗରାଗ, ଗୁନ୍ଥି ରଖିଥିଲା ଦୟଣା, ତୁଳସୀ ଓ ମାଳତୀର ମାଳ, ପ୍ରଦୀପ ପ୍ରଜ୍ୱଳିତ କରି ରଖିଥିଲା । ନିଜେ ମଧ୍ୟ ସାଜିଥିଲା ଅପୂର୍ବ ଭାବରେ । ମୋତେ ସେ ନିଜ ହାତରେ ସଜାଇ ଦେଇଥିଲା ତା'ର ବହୁବାଂଛିତ ମନର ମଣିଷକୁ

ସଜାଇବାଭଳି ନିଜ ରୁଚିରେ । ମାଲ୍ୟ ଚନ୍ଦନର ସୁବାସରେ ମୋର ଅନ୍ତରାତ୍ମା ପର୍ଯ୍ୟନ୍ତ ମହକି ଉଠିଥିଲା ଏକ ଅନିର୍ବଚନୀୟ ଦିବ୍ୟଗନ୍ଧରେ, ତା'ପୁଣି ପ୍ରସାରିତ, ପରିବ୍ୟାପ୍ତ ହୋଇଯାଇଥିଲା କୁବୁଜାର ସମଗ୍ର ପ୍ରାଣସତ୍ତା ପର୍ଯ୍ୟନ୍ତ । ସେ ରାତ୍ରିର ଅନୁଭୂତି ମୋ ପାଇଁ ଚିର ଅବିସ୍ମରଣୀୟ ତଥା ମୋହମୟ ।

ମୋର ପାଦର ଧୂଳି ପାଇଁ ନିଜର ହୃଦୟକୁ ପତେଇ ଦେଇଥିବା ଏହି ନାରୀଟି ନିଜକୁ ସମର୍ପି ଦେଇଥିଲା । ଅଜାଡ଼ି ଦେଇଥିଲା ଅକାତରରେ । ତା' ଅନୁରାଗର ରଂଗ ଅଂକିତ ହୋଇଥିଲା ଉଦୟ ସୂର୍ଯ୍ୟର ଲଲାଟରେ, ତା' ହୃଦୟର ଭାଷା ଭରି ରହିଥିଲା ଅସଂଖ୍ୟ ମଧୁକଣ୍ଠୀ ପକ୍ଷୀର କାକଳିରେ, ତା'ର ସ୍ୱପ୍ନ ଫୁଟିଉଠିଥିଲା ସକାଳର ସୂର୍ଯ୍ୟ ଝଲ ମଲ ପଦ୍ମ ପାଖୁଡ଼ାରେ । ମହାର୍ଘ କେଶର, କସ୍ତୁରୀ, ଚନ୍ଦନ, କୁଙ୍କୁମ, ଅଗୁରୁ ସୁବାସରେ ତା' ପରିଛନ୍ନ କୁଟୀରଟି  ମହକି ଉଠୁଥିଲା । ତାହାହିଁ ଥିଲା କୁବୁଜାର ହୃଦୟର ମହକ । ରାତି ପାହି ସକାଳ ହୋଇଯାଇଥିଲା ।

ମୋ ଜୀବନଟା ଯେମିତି ଅସଂଖ୍ୟ ବୈଚିତ୍ର୍ୟର ସମାରୋହ, ଏହି ଅଜସ୍ର ବୈଚିତ୍ର୍ୟପୂର୍ଣ୍ଣ ସ୍ମୃତିରୁ କେଉଁଠି ମହାର୍ଘ କେଉଁଟି ନୁହେଁ ତା' ମୁଁ ନିଜେବି ଜାଣେନା । କୈଶୋର ପର୍ଯ୍ୟନ୍ତ ଗୋପାଳ ଗୃହରେ ମୁଁ ପ୍ରତିପାଳିତ ହୋଇଛି । ଶସ୍ତ୍ର ବା ଶାସ୍ତ୍ର କାହାରି ସହ ସଂପର୍କ ନଥିଲା କହିଲେ ଚଳେ । ରାଜପରିବାରରେ କିନ୍ତୁ ଠିକ୍ ବିପରୀତ । ଶସ୍ତ୍ର ଓ ଶାସ୍ତ୍ର ହିଁ ଜଣେ କ୍ଷତ୍ରିୟର ଅସଲ ପୁଞ୍ଜି । ଶସ୍ତ୍ର କୌଶଳ ଶିକ୍ଷା ଓ ଶାସ୍ତ୍ରାଧ୍ୟୟନ ଅବଲମ୍ବନରେ ହିଁ ଜଣେ କ୍ଷତ୍ରିୟ ଭବିଷ୍ୟତରେ ତା'ର ସାମ୍ରାଜ୍ୟକୁ ସୁରକ୍ଷା ଦିଏ । ହଁ, ଏକଥା ବି ସତ ଯେ, ବିଦ୍ୟାହିଁ ଜୀବନରେ ପରିପୂର୍ଣ୍ଣତା ଆଣିଦିଏ, ବୁଦ୍ଧି ଓ ରୁଚିକୁ ଉନ୍ନତକରେ, ମାର୍ଜିତକରେ । ବଡ଼ଭାଇଙ୍କର ଓ ମୋର ମୁନି ସାନ୍ଦିପନୀଙ୍କର ଗୁରୁକୁଳ ଆଶ୍ରମକୁ ଯିବାର ବ୍ୟବସ୍ଥା ହେଲା । ଅବନ୍ତୀ ନଗରର ଉପକଣ୍ଠରେ ମୁନିଙ୍କ ଆଶ୍ରମ । ଆଶ୍ରମର ବିଧିବ୍ୟବସ୍ଥା ଅନୁଯାୟୀ ଜଣେ ଶିଷ୍ୟ ଯଥାର୍ଥ ଭାବେ ଶିକ୍ଷିତ ତଥା ଦୀକ୍ଷିତ ନହେବା ପର୍ଯ୍ୟନ୍ତ ଗୃହ ପ୍ରତ୍ୟାବର୍ତ୍ତନର ସମ୍ଭାବନା ନଥାଏ । ଉତ୍ତମ ଶିକ୍ଷା ହିଁ ତ ଏକ ତ୍ୟାଗପୂତ ଦୀକ୍ଷା । ଏଇ ଦୀକ୍ଷା ଗୁରୁହିଁ ଦିଅନ୍ତି । ସମଗ୍ର ଜୀବନକୁ ଏକ ଉତ୍ସର୍ଗୀକୃତ ସାଧନା ବୋଲି ମାନି ନେବାକୁ ପଡ଼େ । ସର୍ବବିଧ ବିଦ୍ୟାରେ ଧୂରୀଣ ନହେବା ପର୍ଯ୍ୟନ୍ତ ସାଧନାର ସିଦ୍ଧି ପ୍ରାପ୍ତି ହୁଏ ନାହିଁ । ବିଭିନ୍ନ ହୃଦବୃତ୍ତିର ବିକାଶତ ଗୁରୁଙ୍କ ଦ୍ୱାରାହିଁ ସମ୍ଭବ ହୁଏ । ପିତା ମାତା ଜନ୍ମ ଦିଅନ୍ତି, ମାତ୍ର ଗୁରୁ ହିଁ ଦିଅନ୍ତି ଦିବ୍ୟଜ୍ଞାନ, ଦିଗ୍ ଦର୍ଶନ । ତେଣୁ ଗୁରୁହିଁ ଦ୍ୱିତୀୟ ଈଶ୍ୱର ।

ଗୁରୁ ଆଶ୍ରମକୁ ଯାତ୍ରା କରିବା ପୂର୍ବରୁ ଆମର ବ୍ରତଉପନୟନ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଗୁରୁ ଆଶ୍ରମରେ ଆମ୍ଭମାନଙ୍କୁ ଭିକ୍ଷା ଉପରେ ନିର୍ଭର କରିବାକୁ ପଡ଼ିବ ଏବଂ

ବ୍ରହ୍ମଚର୍ଯ୍ୟର ବ୍ରତ ପାଳନ କରିବାକୁ ପଡ଼ିବ । ଏଇ ଦୁଇଟି ମହତ୍ କାର୍ଯ୍ୟ ଉପବୀତ ଧାରଣ ଦିବସରୁ ହିଁ ଆରମ୍ଭ ହୋଇଥାଏ । ପ୍ରଥମ ଭିକ୍ଷା ମାତାଙ୍କ ହସ୍ତରୁ ଗ୍ରହଣ କରିବାକୁ ପଡ଼ିଥାଏ । 'ଭବତ୍ ଭିକ୍ଷାଂ ଦେହି' ବୋଲି ମନ୍ତ୍ରୋଚ୍ଚାରଣ କରିବା ମାତ୍ରେ ଜନନୀ ଦେବକୀ ଘୃତ ପକ୍ୱ ଅନ୍ନ ମୋର ଭିକ୍ଷା ପାତ୍ରରେ ଅଜାଡ଼ି ଦେଲେ ଓ ବ୍ୟାକୁଳଭାବେ ରୋଦନ କରିଉଠିଲେ । ମୁଁ ତାଙ୍କ ଲୋତକପୂର୍ଣ୍ଣ ଚକ୍ଷୁ ଦୁଇଟିକୁ ଚାହିଁବା ମାତ୍ରେ ବଡ଼ ଦୁର୍ବଳ ହୋଇ ପଡ଼ିଲି । ପ୍ରଶ୍ନ କଲି - 'ମା ! ମୁଁ ତ ବିଦ୍ୟାର୍ଜ୍ଜନ କରିବାକୁ ଯାଉଛି । ତୁମେ ଏତେ ବ୍ୟାକୁଳ କାହିଁକି ହେଉଛ ?'

ମା' ଅଶ୍ରୁବାଷ୍ପାଚ୍ଛନ୍ନ କଣ୍ଠରେ କହିଲେ - 'ନାଇଁରେ ନୀଳମଣି ! ତୋର ଯାତ୍ରାକୁ ମୋର ବଡ଼ ଭୟ । ଭାଦ୍ର କୃଷ୍ଣା ଅଷ୍ଟମୀ ନିଶିରେ ମୋ କୋଳରୁ ତୁ ବିଚ୍ଛିନ୍ନ ହୋଇଯାଇଥିଲୁ ଯେ, ଶୈଶବ ଉତ୍ତୀର୍ଣ୍ଣ ହେବା ପରେ ଯାଇ ଫେରିଲୁ । ପୁଣି ତୋର ଏ ଯାତ୍ରା ପଛରେ କି ରହସ୍ୟ ସେ କଥା ତୋତେ ହିଁ ଜଣା ।'

ତାଙ୍କର ଏ ଅହେତୁକ ଆଶଙ୍କାପାଇଁ ତାଙ୍କୁ ସାନ୍ତ୍ୱନା ଦେବା ନିରର୍ଥକ ମନେକରି ମୁଁ ନୀରବ ରହିଲି, କିନ୍ତୁ ମନେ ମନେ ତାଙ୍କର ଲୋତକବିନ୍ଦୁକୁ ଚାହିଁ ପ୍ରତିଜ୍ଞା ବଦ୍ଧ ହୋଇଥିଲି ଏ ଲୁହର ମୂଲ୍ୟ ମୋତେ ଦେବାକୁ ପଡ଼ିବ, ଏଠି ନହେଲେ ବି ଆଉ କେଉଁଠି । ଏ ପ୍ରତିଜ୍ଞା ମୁଁ ପାଳନ କରିଛି ଗୁରୁ ଆଶ୍ରମରେ ଗୁରୁ ପତ୍ନୀଙ୍କୁ ତାଙ୍କର ଏକମାତ୍ର ନିରୁଦ୍ଦିଷ୍ଟ ପୁତ୍ରକୁ ଫେରାଇ ଦେଇ ।

ଉପନୟନ ଉତ୍ସବରେ ଯୋଗ ଦେବାପାଇଁ ବହୁ ବନ୍ଧୁ ବାନ୍ଧବ ନିମନ୍ତ୍ରିତ ହୋଇ ମଥୁରା ଆସିଥା'ନ୍ତି । ମୋର ଦୁଇଟି ପିଉସୀ । ଜଣେ ହସ୍ତିନାର ରାଜବଧୂ କୁନ୍ତୀ ଓ ଅନ୍ୟ ଜଣେ ଚେଦିରାଜ ଦମଘୋଷଙ୍କ ରାଣୀ ଶ୍ରୁତଶ୍ରବା । ବ୍ରତୋପନୟନ ଉତ୍ସବରେ ଯୋଗ ଦେବା ପାଇଁ ପିତୃସ୍ୱସା କୁନ୍ତୀ ଆସି ପାରିନଥିଲେ, କାରଣ ସେତେବେଳକୁ ସେ ଏକ ପ୍ରଚଣ୍ଡ ଦୁର୍ଦ୍ଦିନର ସମ୍ମୁଖୀନା ହୋଇଥିଲେ । ଥାଉ ସେ କଥା ପରେ । କିନ୍ତୁ ଚେଦୀରାଣୀ ଶ୍ରୁତଶ୍ରବା ତାଙ୍କର ଏକମାତ୍ର ଶିଶୁପୁତ୍ର ଶିଶୁପାଳ ସହ ମଥୁରା ଆସିଥିଲେ । ସେ ଏକ ଅଦ୍‌ଭୁତ ଶିଶୁ । ଶିଶୁଟି ବିକଳାଙ୍ଗ ତଥା ତା'ର ସ୍ୱର ଗର୍ଦ୍ଦଭର ସ୍ୱର ଭଳି କର୍କଶ । ପିତୃସ୍ୱସା ଶ୍ରୁତଶ୍ରବାଙ୍କୁ କେହି ଜଣେ ସିଦ୍ଧ ତପା ମୁନି କହିଥିଲେ ତାଙ୍କର ଏ ପୁତ୍ରଟି ଅତ୍ୟନ୍ତ ପରାକ୍ରମଶାଳୀ ହେବ । ଶିଶୁର ଏ ଯେଉଁ ଅଙ୍ଗ ବୈକଲ୍ୟ ରହିଛି ତାହା ସବୁଦିନ ରହିବ ନାହିଁ । ଶୃତଶ୍ରବାଙ୍କ ରକ୍ତ ସଂପର୍କୀୟ ଯେଉଁ ବ୍ୟକ୍ତିର ସ୍ପର୍ଶରେ ଏ ଶିଶୁର ଅଂଗ ବୈକଲ୍ୟ ବିଲୁପ୍ତ ହୋଇ ଏ ଶିଶୁ ସର୍ବାଙ୍ଗ ସୁନ୍ଦର ହେବ ଓ କଣ୍ଠ ସ୍ୱର ମଧ୍ୟ ମାନବ ଶିଶୁର କଣ୍ଠ ସ୍ୱର ଭଳି ଲଳିତ କୋମଳ ଓ ମଧୁର ହେବ ସେହି ବ୍ୟକ୍ତି କିନ୍ତୁ ସୁଦୂର ଭବିଷ୍ୟତରେ ଏ ପୁତ୍ରର ମୃତ୍ୟୁର କାରଣ ହେବ । ଶୃତଶ୍ରବାଙ୍କର ପ୍ରଥମ ସ୍ୱପ୍ନ ଥିଲା ଶିଶୁ ପୁତ୍ରଟି ସର୍ବାଙ୍ଗ ସୁନ୍ଦର ହେଉ ଓ ବଳବୀର୍ଯ୍ୟଶାଳୀ ହେଉ । ତା'ପରେ ମୃତ୍ୟୁ; ତା'ତ ଦିନେନା ଦିନେ ଆସିବ । ସୁଦୂର ଭବିଷ୍ୟତ ଚିନ୍ତାରେ ବର୍ତ୍ତମାନକୁ କାହିଁକି ସେ ଜଳାଞ୍ଜଳି ଦିଅନ୍ତେ ? ସେ ତେଣୁ ମଥୁରା ରାଜଭବନରେ ପହଞ୍ଚିବା ମାତ୍ରେ ପ୍ରତ୍ୟେକଙ୍କ କ୍ରୋଡ଼ରେ ସେହି ଅଦ୍‌ଭୁତ ଶିଶୁଟିକୁ

ଦେଉଥିଲେ ଓ କିଛି ସମୟ ନୀରବରେ ନିରୀକ୍ଷଣ କରୁଥିଲେ ତା'ର ଅଂଗ ବୈକଲ୍ୟ ଲୋପ ପାଉଛି କି ନାହିଁ । ତାଙ୍କ ଆଶା ଯେତେବେଳେ ଫଳବତୀ ହେଉ ନଥିଲା ହତାଶରେ ଏକ ବିଷର୍ଣ୍ଣ ଦୀର୍ଘଶ୍ୱାସ ମୋଚନ କରି ସେ ପୁଣି ଶିଶୁଟିକୁ ଉଠାଇ ନେଇ ଆଉ ଜଣକର କ୍ରୋଡ଼ଲଗ୍ନ କରୁଥିଲେ । ଏହା ରାଜଭବନରେ ଏକ କୌତୁକାବହ ଘଟଣାରେ ପରିଣତ ହୋଇଥିଲା । ମୁଁ ବଡ଼ଭାଇଙ୍କ ଭଳି ଗମ୍ଭୀର ପ୍ରକୃତିର ନଥିଲି । ଚିରକାଳ ମୁଁ କୌତୁକପ୍ରିୟ । କୌତୁକ ବଶତଃ ମୁଁ ମଧ୍ୟ ଶିଶୁଟିକୁ କୋଳକୁ ଉଠାଇ ନେଇଥିଲି । ମାତ୍ର ଆଶ୍ଚର୍ଯ୍ୟର କଥା ଶିଶୁଟି କାନ୍ଦି ଉଠିଲା ସତ; କିନ୍ତୁ ଗର୍ଦ୍ଦଭ ଭଳି ବିକୃତ ସ୍ୱରରେ ନୁହେଁ, ମଣିଷ ଶିଶୁର ମଧୁର କଣ୍ଠରେ ସେ କାନ୍ଦି ଉଠିଲା । ଖାଲି ସେତିକି ନୁହେଁ ଚାହୁଁ ଚାହୁଁ ତା'ର ଅଂଗ ବୈକଲ୍ୟ ସମସ୍ତ ମୋର କ୍ରୋଡ଼ରେ ଥିବା ଅବସ୍ଥାରେ ଧିରେ ଧିରେ ନିଶ୍ଚିହ୍ନ ହୋଇଗଲା । ଶିଶୁଟିର ଯେମିତି ପୁନର୍ଜନ୍ମ ହୋଇଗଲା । ପିଉସୀ ଶ୍ରୁତଶ୍ରବା ଆନନ୍ଦ ବିହ୍ୱଳ ଭାବେ ଆମ ଉଭୟଙ୍କୁ ଏକତ୍ର କୋଳାଗ୍ରତ କରି ଉଚ୍ଚ କଣ୍ଠରେ କାନ୍ଦିଉଠିଲେ । ଉପସ୍ଥିତ ସମସ୍ତେ ଏହି ବିଚିତ୍ର ଦୃଶ୍ୟକୁ ବିସ୍ଫାରିତ ନୟନରେ ଚାହିଁ ରହିଥିଲେ । ଘଟଣାର ଆକସ୍ମିକତାରେ ମୁଁ ନିଜେ ବି ଅଭିଭୂତ ହୋଇ ପଡ଼ିଥିଲି । ପିଉସୀ ଶ୍ରୁତଶ୍ରବା ମୋତେ ଅନର୍ଗଳ କହିଚାଲିଥିଲେ- 'ଦେଖ୍ ଗୋବିନ୍ଦ, ତୋର ପିତାମହ ସତ୍ୟବ୍ରତ ହିଁ ମୋ ପୁଅ ଶିଶୁପାଳର ମାତାମହ । ତୁମେ ଦୁହେଁ ଦୁଇ ଭାଇ । ତୁ ମୋର ଭ୍ରାତୃଷ୍ପୁତ୍ର ହେଲେବି ପୁତ୍ର ଭଳି ଆଦରଣୀୟ । ତୁ ମୋତେ ପ୍ରତିଶ୍ରୁତି ଦେ, ଅନ୍ତତଃ ଏକଶତ ଅପରାଧ ନକଲାଯାଏ ତୁ ଶିଶୁପାଳ ଉପରେ ଅସ୍ତ୍ର ପ୍ରହାର କରିବୁ ନାହିଁ ଏବଂ ମୁଁ ଶିଶୁପାଳକୁ ଏଇ ଦିନୁ ଶିକ୍ଷା ଦେବି ଯେମିତି ସେ ତୋ ନିକଟରେ ଏକଶତ ଅପରାଧରେ ଅଭିଯୁକ୍ତ ନହୁଏ !'

ମୁଁ ମୁହୂର୍ତ୍ତେ ଚିନ୍ତା କଲି, ମୋର ରକ୍ତ ସଂପର୍କୀୟ ଆତ୍ମୀୟ ଶିଶୁପାଳ ମୋ ପାଖରେ ଶହେଟା ଅପରାଧ କରିବ ବା କାହିଁକି ? ମୁଁ ପ୍ରତିଶ୍ରୁତି ବଦ୍ଧ ହେଲି, ଅସ୍ତ୍ରଶିକ୍ଷା ଗ୍ରହଣ କରିବା ପୂର୍ବରୁ ନିୟତିର ଅସ୍ତ୍ରାଗାରରେ ସେଦିନ ଶିଶୁପାଳ ନିମିତ୍ତ ଏକ ଅଦୃଶ୍ୟ ଅସ୍ତ୍ର ସଞ୍ଚିତ ହୋଇ ରହିଯାଇଥିଲା ସୁଦୂର ଭବିଷ୍ୟତ ପାଇଁ । ସେ କଥା ଶ୍ରୁତଶ୍ରବା ବା ଶିଶୁପାଳ ଏପରିକି ମୁଁ ନିଜେ ମଧ୍ୟ ଜାଣିନଥିଲି । ସେଦିନ ଯେଉଁ ଅଲୌକିକ ଘଟଣାଟି ମୋ ପାଇଁ କେବଳ କୌତୁକାବହ ଥିଲା ତାହାହିଁ ଶିଶୁପାଳ ମନରେ ଆଜନ୍ମ ବୈରଭାବ ସୃଷ୍ଟି କରିଦେଲା । ଇଚ୍ଛାକରିଥିଲେ ତା'ର ଏ ପୁନର୍ଜନ୍ମ ନିମିତ୍ତ ସେ ସାରାଜୀବନ ମୋ ନିକଟରେ କୃତଜ୍ଞ ରହିପାରିଥା'ନ୍ତା, ମୋର ସହଯୋଗ କାମନା କରି ମୋର ବାହୁଛାୟା ତଳେ ଧର୍ମାଶ୍ରୟୀ ହୋଇ ରହି ପାରିଥା'ନ୍ତା । କିନ୍ତୁ ନାଃ, ନିୟତିର ନିର୍ଦ୍ଦେଶ ଯେ ଅଲଂଘ୍ୟ ! ତାକୁ ଆମେ କେହିବି ଅତିକ୍ରମ କରି ପାରିଥା'ନ୍ତୁ କି ?

କନିଷ୍ଠ ତଥା ସ୍ନେହାସ୍ପଦ ଭ୍ରାତା ନ୍ୟାୟରେ ମୋର ସହଯୋଗୀ ହୋଇ ରହିବା ପରିବର୍ତ୍ତେ ଶିଶୁପାଳର ଅନ୍ତରରେ ମୋ ପ୍ରତି ଚିରପୋଷିତ ଈର୍ଷ୍ୟା, ବିଦ୍ୱେଷର ବିଷବାଷ୍ପ ତାକୁ ଚିରକାଳ ମୋର ବିପକ୍ଷ ଶିବିରରେ ମୋର ବିରୁଦ୍ଧ ଶକ୍ତି ଭାବରେ ଠିଆ କରାଇ ଦେଲା ।

ଏ ଅଲୌକିକ ଘଟଣା ସଂଘଟିତ ହେବା ପରେ ପରେ ଆମେ ଗୁରୁଗୃହ ଯାତ୍ରା କରିଥିଲୁ । ମଥୁରାରୁ ଅବନ୍ତୀ ଅନେକ ଦୂର । ଏଇ କେତେଦିନ ମଥୁରାରେ ଐଶ୍ୱର୍ଯ୍ୟରେ ପ୍ରତିପାଳିତ ହୋଇଥିଲୁ । ଗୁରୁଗୃହରେ ସେ ସବୁ ସ୍ୱପ୍ନପ୍ରାୟ ଥିଲା । ସାନ୍ଦୀପନିଙ୍କ ଆଶ୍ରମରେ ପହଞ୍ଚିବା ବେଳକୁ ରୌଦ୍ରତପ୍ତ ମଧ୍ୟାହ୍ନର ପ୍ରଚଣ୍ଡ ତେଜା ସୂର୍ଯ୍ୟ ଯେପରି ମୋର ମୁଣ୍ଡିତ ମସ୍ତକକୁ ଦଗ୍ଧୀଭୂତ କରି ଦେଉଥିଲା । ପୂର୍ବରୁ ଗୁରୁଦେବଙ୍କ ସହ ପିତା ବସୁଦେବ ସବୁ ଯୋଗାଯୋଗ କରିସାରିଥିଲେ । ମୁନି ଆଶ୍ରମ ଅବନ୍ତୀ ନଗରର ଜନପଦଠାରୁ ବହୁଦୂରରେ ଅବସ୍ଥିତ । ଆମ୍ଭମାନଙ୍କୁ ଆଶ୍ରମରେ ପହଞ୍ଚେଇବାର ଦାୟିତ୍ୱ ନ୍ୟସ୍ତ ଥାଏ ଜଣେ ଶିଷ୍ୟଙ୍କ ଉପରେ । ସେ ମଧ୍ୟାହ୍ନର ସୂର୍ଯ୍ୟ ତେଜକୁ ଭ୍ରୁକ୍ଷେପ ନ କରି ଜନପଦ ସୀମାରେ ଏକ ପ୍ରକାଣ୍ଡ ଶାଲ୍ମଳୀ ତରୁତଳେ ଆମ୍ଭମାନଙ୍କୁ ଅପେକ୍ଷା କରିଥିଲେ । ପ୍ରଥମଦର୍ଶନରେ ହିଁ ତାଙ୍କର ଭାବ ଗଦ୍‌ଗଦ୍ ଚକ୍ଷୁ ଦୁଇଟିର ତରଳତା, ହୃଦୟର ସ୍ୱଚ୍ଛତା, ବ୍ୟକ୍ତିତ୍ୱର ଅନାବିଳ ଅକପଟତାରେ ମୁଁ ମୁଗ୍ଧ ହୋଇଗଲି । ଦେଖିବାକୁ ବଡ଼ ଜୀର୍ଣ୍ଣ ଶୀର୍ଣ୍ଣ; କିନ୍ତୁ ହୃଦୟଟି ଭାବର ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣ । ସେ ବଡ଼ଭାଇଙ୍କୁ ପ୍ରଣାମ କଲେ ଓ କହିଲେ - 'ରୋହିଣୀ ନନ୍ଦନ, ଜ୍ୟେଷ୍ଠ ଭ୍ରାତା ବଳରାମ ନା ? ଆଉ ଇଏତ ମୋର ସଖା ପ୍ରାଣର ସଖା ଗୋବିନ୍ଦ ! ମୁଁ ସୁଦାମା !'

କାହିଁକି କେଜାଣି ମୁଁ ଅଭିଭୂତ ହୋଇଗଲି । ବଡ଼ ଜୀର୍ଣ୍ଣ ଶୀର୍ଣ୍ଣ ଚେହେରା ବନ୍ଧ ଓଷ୍ଠଧାରରେ ଅନୁଚ୍ଚାରିତ ମନ୍ତ୍ରଭଳି ଭକ୍ତି ଲିପିବଦ୍ଧ ହୋଇ ରହିଥାଏ, ଆଖିଦୁଇଟି ଭାବର ତନ୍ମୟତାରେ ତରଳ ହୋଇ ରହିଥାଏ । ଧୂଳି ଧୂସରିତ ପଥ । ପଥଧାରର ଉଭୟ ପାର୍ଶ୍ୱରେ ଅରଣ୍ୟର ଘଞ୍ଚ ସବୁଜିମା । ବୃକ୍ଷର ଡାଳେ ଡାଳେ ମଧୁକଣ୍ଠୀ ପକ୍ଷୀଙ୍କର କାକଳି । ଛାୟାଛନ୍ନ ପରିବେଶ ସୂଚନା ଦେଉଥାଏ ଯେ ଆଶ୍ରମର ସନ୍ନିକଟବର୍ତ୍ତୀ ଆମେ ହୋଇଗଲୁଣି ।

ଗୁରୁଦେବ ଆଶ୍ରମ ଅଂଗନରେ ଅଜିନାସନରେ ଉପବିଷ୍ଟ ହୋଇ ଆମକୁ ଅପେକ୍ଷା କରୁଥିଲେ । ତାଙ୍କ ଉପରେ ଦୃଷ୍ଟି ପଡ଼ିବାମାତ୍ରେ ମୁଣ୍ଡ ନଇଁ ଯାଉଥିଲା ଭକ୍ତିରେ । ସେ ପର୍ବତ ଭଳି ମହାନ୍, ଆକାଶଭଳି ଉଦାର, ସମୁଦ୍ରଭଳି ଗମ୍ଭୀର ତଥା ଜ୍ଞାନର ଦୀପ୍ତିରେ ସୂର୍ଯ୍ୟଭଳି ତେଜସ୍ୱୀ ଦିଶୁଥିଲେ । ଆମେ ଦୁହେଁ ପ୍ରଣତ ହେବା ମାତ୍ରେ ସେ ଆମଦୁହିଁଙ୍କୁ କୋଳାଗ୍ରତ କରି ଆଶୀର୍ବାଦ ଦେଲେ - 'ଚିରଂଜୀବୀ ହୁଅ ବତ୍ସ ! ଜ୍ଞାନର ଗରିମାରେ ଫଳଭାରାନତ ବୃକ୍ଷସମ ହୁଅ !' ଗୁରୁପତ୍ନୀ ଯଦିଓ ଅନ୍ତରଭରା ଆଶୀଷ ଦେଲେ, ମାତ୍ର ବଡ଼ ଅନ୍ୟମନସ୍କ ଓ ବିଷର୍ଣ୍ଣ ଦିଶୁଥିଲେ । ସେ ସଂପର୍କରେ ସୁଦାମାଙ୍କୁ ପ୍ରଶ୍ନ କରିବାରୁ ସେ କହିଲେ 'ପ୍ରଭାସତୀର୍ଥକୁ ସ୍ନାନ ଉଦ୍ଦେଶ୍ୟରେ ଯାଇଥିବା ତାଙ୍କର ଏକମାତ୍ର ପୁତ୍ର ବହୁ ବର୍ଷରୁ ନିରୁଦ୍ଦିଷ୍ଟ ହୋଇ ଯାଇଛନ୍ତି । ହୁଏତ ମୃତ । କିନ୍ତୁ ଗୁରୁମାତା ସେ କଥା ବିଶ୍ୱାସ କରୁନାହାନ୍ତି, ସର୍ବଦା ଆଶାରଖିଛନ୍ତି ସେ ପୁଅ ପୁନଶ୍ଚ ପ୍ରତ୍ୟାବର୍ତ୍ତନ କରିବ ।'

ଏକଥା ଗୋପପୁରରେ ଥିବା ସମୟରେ ଆମେ ଶୁଣିଥିଲୁ ଯେ, ଗୁରୁ ସାନ୍ଦିପନୀଙ୍କର ପୁତ୍ର ପ୍ରଭାସତୀର୍ଥରେ ସଲୀଳ ସମାଧୀ ଲାଭ କରିଛନ୍ତି । ତଥାପି ଗୋଟିଏ ଜନନୀର ଆଶା କ'ଣ ବ୍ୟର୍ଥ ହୋଇଯିବ ?

ଆମେ ଗୁରୁକୁଳରେ କିଛି ଦିନ ରହିବାପରେ ମଥୁରା ନଗରରୁ ରାଜପରିବାରରୁ ଆମର ସଂପର୍କୀୟ ଭ୍ରାତା ତଥା ବନ୍ଧୁ ଉଦ୍ଧବ ମଧ୍ୟ ବିଦ୍ୟାଶିକ୍ଷା ପାଇଁ ଗୁରୁଦେବଙ୍କ ଆଶ୍ରମକୁ ଆସିଲେ । ସେ ମୋର ବଡ଼ ଅନୁଗତ ଥିଲେ । ମୋର ଅବର୍ତ୍ତମାନରେ ମଥୁରାରେ ମୁହୂର୍ତ୍ତେ ସୁଦ୍ଧା ରହିବାକୁ ସେ ଇଛା କରିନାହାନ୍ତି, ତା' ତାଙ୍କୁ ଦେଖିବା ମାତ୍ରେ ମୁଁ ଜାଣି ପାରିଥିଲି ।

ଗୁରୁ ଆଶ୍ରମରେ ଆମର ସମୟସବୁ ନୀତି, କର୍ତ୍ତବ୍ୟ ଓ ଶୃଙ୍ଖଳା ଭିତରେ ବନ୍ଧାଥିଲା । ସେଠାରେ ଭେଦଭାବର ପ୍ରଶ୍ନ ନଥିଲା । ଉଚ୍ଚ, ନୀଚ, ଧନୀ, ନିର୍ଦ୍ଧନ କିଏ ରାଜପୁତ୍ର କିଏ ଦାସପୁତ୍ର ଏସବୁର ଭେଦ ନଥିଲା । ଆମ ସମସ୍ତଙ୍କର ଏକମାତ୍ର ପରିଚୟ ଥିଲା ଯେ ଆମେ ବିଦ୍ୟାର୍ଥୀ । ଶାସ୍ତ୍ରାଧ୍ୟୟନ, ଶସ୍ତ୍ରାଭ୍ୟାସ, ଗୋ ସେବା, ଆଶ୍ରମ ପାଳିତ ପଶୁପକ୍ଷୀଙ୍କ ସେବା ଯତ୍ନ କରିବା, ଆଶ୍ରମର ବୃକ୍ଷ ଲତାଦିର ପରିଚର୍ଯ୍ୟା କରିବା, ଅରଣ୍ୟରୁ କାଷ୍ଠ ସଂଗ୍ରହ କରିବା, ଜନପଦକୁ ଭିକ୍ଷାଟନ ଉଦ୍ଦେଶ୍ୟରେ ଯାତ୍ରା କରିବା, ଅତିଥି ମାନଙ୍କର ପରିଚର୍ଯ୍ୟା କରିବା ପ୍ରଭୃତି ବହୁବିଧ କାର୍ଯ୍ୟ ବ୍ରାହ୍ମ ମୁହୂର୍ତ୍ତରୁ ସୂର୍ଯ୍ୟାସ୍ତ ଯାଏ ଆମ୍ଭମାନଙ୍କୁ କରିବାକୁ ପଡୁଥିଲା । କ୍ଳାନ୍ତ ଶ୍ରାନ୍ତ ଭାବେ ରାତିରେ ମୃଗ ଚର୍ମ ବା ତୃଣଶଯ୍ୟାରେ ଶୟନ କରିବାକୁ ପଡୁଥିଲା । ତଥାପି ବଡ଼ ଶାନ୍ତିପ୍ରଦ, ନିରୁପଦ୍ରବ ସେ ଜୀବନଯାତ୍ରା । ଗୁରୁଙ୍କୁ ପ୍ରଣତ ହେବାମାତ୍ରେ ସେ କଲ୍ୟାଣ କରି କହୁଥିଲେ - 'ମନୁର୍ଭବ'।

ଥରେ ମୁଁ ପଚାରିଲି - 'ଗୁରୁଦେବ ! ଆମେ କ'ଣ ଆହୁରି ମଣିଷ ହୋଇନାହୁଁ' ? ଗୁରୁଦେବ ମୋତେ ଚାହିଁ ରହସ୍ୟମୟଭାବେ ହସିଲେ ଓ କହିଲେ - 'ବର୍ତ୍ତମାନ ତୁମ୍ଭେମାନେ ବିଦ୍ୟାର୍ଥୀ । ବିଦ୍ୟାର୍ଥୀରୁ ମଣିଷ ହେବାଟାହିଁ ସାଧନାର ଅସଲ ସିଦ୍ଧି ?'

ଗୁରୁଦେବଙ୍କର ବିଦ୍ୟାଦାନର ପ୍ରଣାଳୀ ଓ ପଦ୍ଧତି ଏଇଭଳି । କଥା ପ୍ରସଙ୍ଗରେ ବି ସେ ଆମକୁ ଅନେକ ଜ୍ଞାନଦାନ କରନ୍ତି । କାର୍ଯ୍ୟଛଳରେ ଆମର ପରୀକ୍ଷାବି ନିଅନ୍ତି । ସେଇଭଳି ଏକ ପରୀକ୍ଷାର ସମ୍ମୁଖୀନ ହୋଇଥିଲେ ବନ୍ଧୁ ସୁଦାମା । ସେ ଘଟଣାର ଦୁଃଖଦ ସ୍ମୃତି ଭୁଲିବାର ନୁହେଁ, ଯଦିଓ ସେହି ସମୟରେ ତାହା ମୋ ପାଇଁ ବଡ଼ କୌତୁହଳୋଦ୍ଦୀପକ ଥିଲା । ଏକଦା ଗୁରୁମାତା ମୋତେ ଓ ସୁଦାମାଙ୍କୁ ଅରଣ୍ୟକୁ କାଷ୍ଠ ସଂଗ୍ରହ ଉଦ୍ଦେଶ୍ୟରେ ପଠାଇଲେ । ଫେରିବାକୁ ବିଳମ୍ବ ହେବଜାଣି କିଛି ଖୁଦଭଜା ସୁଦାମାଙ୍କ ଉତ୍ତରୀୟରେ ବାନ୍ଧିଦେଇ କହିଲେ - 'ଭୋକ ହେଲେ ଦୁହେଁ ବାଣ୍ଟିକରି ଖାଇବ ।' ଏ ସମସ୍ତ ଘଟଣା ମୋ ଅଜ୍ଞାତରେ ହିଁ ହୋଇଥିଲା ।

ଅର୍ଥାତ୍ ମୁଁ ଜାଣିନଥିଲି ଯେ, ଆମପାଇଁ ଖାଦ୍ୟ ମଧ୍ୟ ଦିଆଯାଇଛି । ଆମେ ଅରଣ୍ୟରେ କାଷ୍ଠ ସଂଗ୍ରହ କରି ଘରି ଫେରିବାକୁ ମନସ୍ଥ କରିଛୁ ଅଚାନକ ଆକାଶ କଳା କଳା ମେଘ ଖଣ୍ଡରେ ପୂରିଗଲା, ପାର୍ବତ୍ୟ ଅଞ୍ଚଳ - ଚାହୁଁ ଚାହୁଁ ପ୍ରଚଣ୍ଡ ଝଂଜାଘାତ ସହ ଅବିରଳ ବାରିବର୍ଷଣ ଆରମ୍ଭ ହୋଇଗଲା । ଅଗତ୍ୟା ଆମେ ଦୁଇ ବନ୍ଧୁ ବୃକ୍ଷର ଦୁଇଟି ଶାଖାରେ ଆଶ୍ରୟ ନେଲୁ । ସାରାରାତି ବୃଷ୍ଟିପାତ ହେଲା । ସେହି ବର୍ଷଣ ମୁଖର ରାତ୍ରିରେ ବୃକ୍ଷ ଶାଖାରେ କ୍ଷୁଧାର ଜ୍ୱାଳାକୁ ନୀରବରେ ସହ୍ୟ କରିବା ବ୍ୟତୀତ ଅନ୍ୟ ଉପାୟ ନଥିଲା । ରାତି ପାହିବା ବେଳକୁ ପୁଣି ଆକାଶ ମେଘମୁକ୍ତ ହୋଇଯାଇଥିଲା । ଆମେ କାଷ୍ଠ ସଂଗ୍ରହ କରି ଆଶ୍ରମ ବାହୁଡ଼ି ଆସିଥିଲୁ । ସରଲବଣୀ ମୋର ଅତିପ୍ରିୟ ବସ୍ତୁ - ଏକଥା ଗୁରୁମାତା ମଧ୍ୟ ଜାଣି ଯାଇଥିଲେ । ଆମେ ପହଞ୍ଚିବାମାତ୍ରେ ଗୋଟିଏ ମୃତ୍ତିକା ପାତ୍ରରେ ସେ କିଛି ସରଲବଣୀ ମୋ ହାତକୁ ବଢ଼େଇ ଦେଇ କହିଲେ - 'ନିଅ ଗୋବିନ୍ଦ ! ତୁମର ପ୍ରିୟ ଖାଦ୍ୟ !'

ମୁଁ ପ୍ରକୃତରେ ବଡ଼ କ୍ଷୁଧାର୍ତ୍ତ ଥାଏ । ଲୁବ୍ଧ ଦୃଷ୍ଟିରେ କିଛି ସମୟ ସେ ପାତ୍ରଟିକୁ ଚାହିଁଲି । ପାତ୍ରରେ ଥିବା ଲବଣୀର ପରିମାଣ ଉଭୟଙ୍କ ଉଦରପୂର୍ତ୍ତି ନିମିତ୍ତ ଯଥେଷ୍ଟ ନୁହେଁ । ସୁତରାଂ ମୁଁ କହିଲି - 'ଗୁରୁମାତା ! ମୁଁ ବରଂ କ୍ଷୁଧାର ଜ୍ୱାଳା ଆଉ କିଛି ସମୟ ସହିପାରିବି । ସୁଦାମାଙ୍କ ଦୁର୍ବଳ ଦେହ କିନ୍ତୁ ଏ ଜ୍ୱାଳା ସହିପାରିବ ନାହିଁ । ଗତରାତ୍ରିରୁ ସେ ବି ମୋ ଭଳି ଉପବାସକ୍ଳିଷ୍ଟ । ବରଂ ବର୍ତ୍ତମାନ ସେ ଏତକ ଗ୍ରହଣ କରନ୍ତୁ ।'

ମୋର ବାକ୍ୟ ଶେଷ ନ ହେଉଣୁ ମେଘ ଗର୍ଜନ ଭଳି ଗୁରୁଦେବ ମନ୍ଦ୍ର ସ୍ୱରରେ କହିଲେ- 'ହତଭାଗ୍ୟ ସୁଦାମା ! ତୁମେ ଏ କ'ଣ କଲ ? ସାମାନ୍ୟ ଖୁଦିଭଜାର ଲୋଭ ସମ୍ବରଣ କରିପାରିଲ ନାହିଁ ? ତା'ଯେ ଅଭିମନ୍ତ୍ରିତ ତଣ୍ଡୁଳ । ତୁମ ନିର୍ଲୋଭତାର ପ୍ରମାଣ ନେବାକୁ ମୁଁ ଚାହୁଁଥିଲି । ତେଣୁ ତ ଗୋବିନ୍ଦର ଅଜ୍ଞାତରେ ତୁମ ଉତ୍ତରୀୟରେ ସେ ସମସ୍ତ ବନ୍ଧା ହୋଇଥିଲା ! ତୁମ ପ୍ରାଣର ବନ୍ଧୁ ଗୋବିନ୍ଦକୁ କାଲି ସାରାରାତି କ୍ଷୁଧାର୍ତ୍ତ ରଖି ଖାଦ୍ୟରୁ ବଞ୍ଚିତ କରି ତୁମେ ଏକା ସେ ଖାଦ୍ୟ ଗ୍ରହଣ କଲ କିପରି ? ଜାଣ ଏହାର ପରିଣତି କ'ଣ ? ଜୀବନ ବ୍ୟାପି ଦାରିଦ୍ର୍ୟ.... !'

ଏତିକି କହି ଗୁରୁଦେବ ବଡ଼ ବିଷର୍ଣ୍ଣ ଭାବରେ ସେ ସ୍ଥାନ ତ୍ୟାଗକରି ଚାଲିଗଲେ । ସୁଦାମାଙ୍କ ଆଖିରୁ ଅବିରତ ଅଶ୍ରୁଧାର ଝରିଆସୁଥିଲା ଅନୁତାପ ଓ ଅନୁଶୋଚନାରେ । ମୁଁ ତାଙ୍କୁ ପ୍ରବୋଧନା ଦେବାକୁ ବୃଥା ଚେଷ୍ଟା କରୁଥିଲି । ପ୍ରକୃତରେ ଏଇ ଘଟଣାର ପରିଣତି ହିଁ ଥିଲା ତାଙ୍କ ଭବିଷ୍ୟତର ଅଲଂଘ୍ୟ ନିର୍ଦ୍ଦେଶ । ସାରାଜୀବନ ମୁଁ ଚେଷ୍ଟା କରିଛି ତାଙ୍କର ଦାରିଦ୍ର୍ୟ କଷଣରୁ ତାଙ୍କୁ ମୁକ୍ତି ଦେବା ପାଇଁ । ହେଲେ ପାରିନାହିଁ । ଦ୍ୱାରିକାଧୀଶ କୃଷ୍ଣର ଐଶ୍ୱର୍ଯ୍ୟର ଅଭାବ ନଥିଲା । ଦରିଦ୍ର ବନ୍ଧୁ ସୁଦାମାକୁ ମୁଁ ବି କିଛି ଦାନ କରିପାରିଥାନ୍ତି; ମାତ୍ର ବନ୍ଧୁ ସୁଦାମା

ଯେଉଁ ସ୍ୱାଭିମାନୀ ବ୍ୟକ୍ତି ଉପଯାଚକ ଭଳି ଯାଚି କରି ଦେଲେ ସେ ଆଦୌ ନେଉନଥା'ନ୍ତେ । କାହାରି ଦୟାର ଦାନ ଗ୍ରହଣ କଲାଭଳି ସଂକୀର୍ଣ୍ଣ ମାନସିକତା ତାଙ୍କର ନଥିଲା । ସେ ମଧ୍ୟ କୌଣସି ଦିନ ମାଗିବେ ନାହିଁ, ତା' ବି ମୁଁ ଜାଣିଥିଲି । ଶେଷକୁ ବହୁ ବର୍ଷ ପରେ ଅତୀତର ଏକ ଅପରାଧ ବୋଧରୁ ମୁକ୍ତି ପାଇଁ ଭକ୍ତ ବନ୍ଧୁ ସୁଦାମା ଐଶ୍ୱର୍ଯ୍ୟ ନଗରୀ ଦ୍ୱାରକାକୁ ଆସିଥିଲେ ମୋତେ ସାକ୍ଷାତ କରିବା ପାଇଁ । ଏବଂ ଉପହାରରେ ବାନ୍ଧି ଆଣିଥିଲେ ତାଙ୍କ ପତ୍ନୀଙ୍କ ସ୍ୱହସ୍ତ ପ୍ରସ୍ତୁତ ଖୁଦଭଜା ଗଣ୍ଡିଏ । ପରମ ଆଗ୍ରହରେ ମୁଁ ସେତକ ଗ୍ରହଣ କରିଥିଲି । ବନ୍ଧୁ ସୁଦାମାଙ୍କୁ ପ୍ରତିଦାନରେ ଦେଇଥିଲି ଅକଳନ ଐଶ୍ୱର୍ଯ୍ୟ ତାଙ୍କ ଅଜ୍ଞାତରେ । ସେଦିନ ସେ ମୋ ଅଂଶର ଖୁଦଭଜା ଉଦରସ୍ଥ କରିଥିଲେ ମୋ ଅଜ୍ଞାତରେ, ଦିନେ ପୁଣି ମୁଁ ମୋ ଅଂଶର ଖୁଦଭଜା ଉଦରସ୍ଥ କଲାପରେ ତାଙ୍କ ଅଂଶର ଐଶ୍ୱର୍ଯ୍ୟ ତାଙ୍କୁ ଫେରାଇ ଦେଇଥିଲି ତାଙ୍କ ଅଜ୍ଞାତରେ ।'

ଏଇ ଘଟଣା ପରେ ସୁଦାମା ବଡ଼ ଲଜ୍ଜିତ ହୋଇ ପଡ଼ିଥିଲେ । ଥରେ ଗୁରୁଦେବଙ୍କୁ ପ୍ରଶ୍ନ କଲେ- 'ଗୁରୁଦେବ ! ଗୋବିନ୍ଦ ହିଁ ମୋର ଏକମାତ୍ର ଧ୍ୟେୟ । ମୁଁ ତାଙ୍କୁ ଅତି ନିକଟ କେମିତି କରିବି ?'

ଗୁରୁଦେବ ଈଷତ୍ ହସିଲେ ଓ କହିଲେ- 'ତୁମେ ତାଙ୍କର ଅନ୍ତରଙ୍ଗ ହେବାକୁ ଚାହୁଁଛ ନା ତାଙ୍କୁ ଅନ୍ତରଙ୍ଗ କରିବାକୁ ଚାହୁଁଚ ? ଅର୍ଥାତ୍ ସେ ତୁମର ହେବେ ନା ତୁମେ ତାଙ୍କର ହେବ ?'

ସୁଦାମା ବଡ଼ ଗୋଳକ ଧନ୍ଦାରେ ପଡ଼ିଗଲେ । ତଥାପି କିଛି ସମୟ ଚିନ୍ତା କରି କହିଲେ- 'ସବୁ ଦିଗରୁ ଯାହା ନିରାପଦ, ତାହା ହିଁ ମୋତେ କୁହନ୍ତୁ ।'

ଗୁରୁଦେବ ସସ୍ନେହରେ କହିଲେ- 'ଅର୍ଥାତ୍ ତୁମେ ମାର୍ଜାର ଭଳି ଭଲ ପାଇବାକୁ ଚାହଁ ନା ମର୍କଟ ଭଳି ?'

ସୁଦାମା ଏହାର ଉତ୍ତର ଦେଇପାରିଲେ ନାହିଁ । ସନ୍ଧ୍ୟା ଆସନ୍ନ । ଗାଈମାନଙ୍କ ଭିତରେ ମୁଁ ବସିଥିଲି । ଅବସର ସମୟରେ ଗୋ-ସେବା ହିଁ ମୋର ସର୍ବାଧିକ ରୁଚି । ଶୈଶବରୁ ବହୁ ସମୟ ଗୋ-ସେବାରେ ହିଁ ଅତିବାହିତ ହୋଇଛି । ଗୋ-ସେବା କରିବା ସମୟରେ ଏବେବି ମୋ ଆଖିରେ ବୃନ୍ଦାବନର ସାନ୍ଦ୍ର ସବୁଜିମା ଜୀବନ୍ୟାସ ପାଏ, ଯମୁନାର କଳ୍ଲୋଳ ମୋ ପ୍ରାଣରେ ଅପୂର୍ବ ସଂଗୀତ ସୃଷ୍ଟି କରେ, ମୋ ଆଖିରେ କଦମ୍ବ ପୁଷ୍ପିତ ସ୍ତବକ, ନୃତ୍ୟରତ ମୟୂର, ଏସବୁ ଗୋଟି ଗୋଟି ହୋଇ ଭାସିଯାଏ । ଗୁରୁଦେବ ଓ ସୁଦାମ ଅଦୂରରେ ବସି ଆଲୋଚନା ରତ ଥିଲେ । ମୁଁ ଗାଈମାନଙ୍କୁ ଦୁବଘାସ ଖୁଆଉ-ଖୁଆଉ ସେ ସବୁ ଶୁଣୁଥିଲି ।

ଗୁରୁଦେବ ସହାସ୍ୟ ବଦନରେ କହିଲେ - 'ସୁଦାମ, ଏଥର ବି ବୁଝି ପାରିଲନି ?

ମର୍କଟ ଶିଶୁ ମା' ମର୍କଟୀକୁ ଜାବୁଡ଼ି ଧରେ କିନ୍ତୁ ମାର୍ଜାର ଶିଶୁ ମା' ମାର୍ଜାରୀ ନିକଟରେ ସଂପୂର୍ଣ୍ଣ ଆତ୍ମ ସମର୍ପଣ କରିଥାଏ । ମା' ମାର୍ଜାରୀ ପାଟିରେ କାମୁଡ଼ି ମାର୍ଜାର ଶିଶୁକୁ ଗୋଟିଏ ସ୍ଥାନରୁ ଅନ୍ୟ ଏକ ନିରାପଦ ସ୍ଥାନକୁ ବୋହି ନେଉଥାଏ । ତୁମେ ଯଦି ଇଛା କରୁଥାଅ ଗୋବିନ୍ଦ ତମର ହୁଅନ୍ତୁ ତେବେ ତୁମେ ତାଙ୍କୁ ଜାବୁଡ଼ି ଧରିବ ନାହିଁ । ଯଦି ଇଛାକର ତୁମେ ଗୋବିନ୍ଦଙ୍କର ହେବ ତେବେ ମାର୍ଜାର ଶିଶୁଭଳି ସଂପୂର୍ଣ୍ଣ ଆତ୍ମ ସମର୍ପଣ କର । ତୁମର ଭଲ ମନ୍ଦ ଚିନ୍ତା ସେ କରନ୍ତୁ । ତୁମେ ନିଶ୍ଚିନ୍ତ ରହ ।'

ସୁଦାମା ଅନେକକ୍ଷଣ ଚୁପ୍‌ରହି ଚିନ୍ତା କଲେ । ତାପରେ କହିଲେ - 'ନା ମୁଁ ତାଙ୍କର ହେବି । ସବୁ ଦିଗରୁ ଏହା ନିରାପଦ ।

ଏଇଭଳି ଅସଂଖ୍ୟ ମଧୁର ସ୍ମୃତି ବିଜଡ଼ିତ ମୋର ଗୁରୁକୁଳର ଜୀବନଯାତ୍ରା, ସୁଦାମା କେବଳ ଶାସ୍ତ୍ରାଧ୍ୟୟନ କରୁଥିଲେ । କାରଣ ସେ ବ୍ରାହ୍ମଣ । ପ୍ରଭୂତ ଶାସ୍ତ୍ର ଜ୍ଞାନହିଁ ବ୍ରାହ୍ମଣର ଜୀବିକାର୍ଜ୍ଜନର ଅସଲ ପୁଞ୍ଜି । ମୁଁ ଓ ଜ୍ୟେଷ୍ଠଭ୍ରାତା ଶାସ୍ତ୍ର ସହ ଶସ୍ତ୍ରାଭ୍ୟାସ ମଧ୍ୟ କରୁଥିଲୁ । କ୍ଷତ୍ରିୟର ଅସଲ ପୁଞ୍ଜିତ ତା'ର ଶସ୍ତ୍ରଜ୍ଞାନ ! ଗୁରୁଦେବ ପ୍ରାୟତଃ ଅନ୍ୟମାନଙ୍କ ଆଗରେ କହନ୍ତି - 'କୃଷ୍ଣ ବଳରାମ ଦୁହିଁଙ୍କ ଭଳି ଶିଷ୍ୟଦ୍ୱୟଙ୍କୁ ବିଦ୍ୟାଦାନ କରିବାରେ ବି ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଅଛି ।'

ଶେଷକୁ ଦିନେ ଗୁରୁକୁଳରୁ ବିଦାୟ ନେବାର ଲଗ୍ନ ବି ନିକଟ ହୋଇ ଆସିଲା । ଆମେ ଦୁହେଁ ସର୍ବ ଶାସ୍ତ୍ର ବିଶାରଦ ଓ ସର୍ବଶସ୍ତ୍ରବୀତ୍ ଭାବେ ଗୁରୁଦେବଙ୍କ ସକଳ ପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇଗଲୁ ।

ଯେଉଁ ପରିବେଶରେ ଯେତେବେଳେ ଯାହାଠାରୁ ବିଦାୟ ନିଆଯାଉନା କାହିଁକି ତା'ମୋ ପାଇଁ ଭାରୀ ଦୁଃଖଦାୟକ । ନିର୍ଦ୍ଧାରିତ ସମୟର ବହୁପୂର୍ବରୁ ସମସ୍ତ ବିଦ୍ୟା ଆୟତ୍ତ କରି ଆମେ ଦୁଇଭାଇ ରାତି ପାହିଲେ ମଥୁରା ଫେରିଯିବୁ । ସୁଦାମା ବାରମ୍ବାର ବିଷର୍ଣ୍ଣ କଣ୍ଠରେ ପ୍ରଶ୍ନ କରୁଥିଲେ - 'ଗୋବିନ୍ଦ, ତୁମେ କ'ଣ ସତରେ ଦୁସ୍ଥ ସୁଦାମାକୁ ମନେ ରଖିବ ?'

ମୁଁ ତାଙ୍କୁ କହୁଥିଲି - 'ମୁଁ ତ ରାଜା ଦ୍ରୁପଦ୍ ନୁହେଁ ଯେ, ଗୁରୁକୁଳର ବନ୍ଧୁଙ୍କୁ ଭୁଲିଯିବି ! ମୋ ପାଇଁ ବନ୍ଧୁତାର ମାପକାଠି ଧନ ନୁହେଁ ସୁଦାମା ! ମନ ହିଁ ମୋପାଇଁ ବନ୍ଧୁତାର ଅସଲ ମାନଦଣ୍ଡ । ଭାବର ଭିକାରୀ ମୁଁ । ମୋର ଆଉ କିଛି ଲୋଡ଼ା ନାହିଁ !'

ସବୁଦିନ ପରି ରାତି ପାହି ସକାଳ ହେଲା । ଆମକୁ ମଧ୍ୟାହ୍ନ ପୂର୍ବରୁ ଆଶ୍ରମ ତ୍ୟାଗ କରିବାକୁ ପଡ଼ିବ । ଅବନ୍ତୀରୁ ଆମ୍ଭେମାନେ ବିଦର୍ଭ ରାଜ୍ୟର କୁଣ୍ଡୀନ ନଗର ଦେଇ ମଥୁରା ଯାତ୍ରା କରିବୁ । ସାତ୍ୟକୀ ରଥ ସହ ଉପସ୍ଥିତ ହୋଇଥା'ନ୍ତି । ବ୍ରାହ୍ମ ମୁହୂର୍ତ୍ତରୁ ଶଯ୍ୟା ତ୍ୟାଗ କରିବା

ମାତ୍ରେ ମୁଁ ଶୁଣି ପାରିଲି ଗୁରୁଦେବଙ୍କୁ ଗୁରୁମାତା କହୁଛନ୍ତି - (ଯଦିଓ ବଡ଼ ଅନୁଚ୍ଚ ସ୍ୱରରେ ତଥାପି ମୋର ଶୁଣିବାରେ କିଛି ଅସୁବିଧା ହେଉନଥିଲା) - 'ଶୁଣିଛି ଶୈଶବରେ ବହୁ ଅଲୌକିକ କର୍ମ ସାଧନ ରାମ ଓ ଗୋବିନ୍ଦ କରିଛନ୍ତି । ମାତ୍ର ସାତଦିନର ଶିଶୁ ହୋଇ କେହି ରାକ୍ଷସୀ ପୂତନାର ମୃତ୍ୟୁର କାରଣ ହୁଏକି ? ଏଇତ ! ନିକଟରେ କଂସ ଭଳି ପରାକ୍ରମୀ ରାକ୍ଷସତ ପୁଣି ତାଙ୍କରି ହାତରେ ନିହତ ହୋଇଛି ? ତେବେ ଆମପାଇଁ ସେ ଏତିକି କାହିଁକି କରିପାରିବେ ନାହିଁ ?

ଗୁରୁଦେବ ମନ୍ଦ୍ର ଗମ୍ଭୀର ସ୍ୱରରେ କହିଲେ - 'ସେମାନେ ଅସାଧାରଣ ଦେବ ଶିଶୁ ନିଶ୍ଚୟ । କିନ୍ତୁ ....... ପ୍ରଥମତଃ ମୁଁ ମୋର ସ୍ୱାର୍ଥସିଦ୍ଧିର ଲାଳସା ରଖି ସେମାନଙ୍କୁ ବିଦ୍ୟାଦାନ କରି ନାହିଁ । ମୁଁ ଯଦି ସେମାନଙ୍କୁ କିଛି ମାଗିବି ତେବେ ଗୁରୁଶିଷ୍ୟର ଏହି ସୁମହାନ୍, ସମୃଦ୍ଧ ଓ ପବିତ୍ର ପରଂପରା ଦୂଷିତ ହୋଇଯିବ । ଦ୍ୱିତୀୟତଃ କାଳର ନିର୍ଦ୍ଦେଶ ଅଲଂଘ୍ୟ । ମୃତ୍ୟୁ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାର ଦୁଃସାହସ ମୋର ନାହିଁ । ତୁମେ ଥରଟିଏ ବିଶ୍ୱାସ କରୁନାହଁ କାହିଁକି ଯେ, ଆମର ପୁତ୍ର ପୁନର୍ଦତ୍ତ କାଳର କବଳିତ !'

ତାପରେ ଗୁରୁମାତାଙ୍କର ନିଶବ୍ଦ କ୍ରନ୍ଦନୋଚ୍ଛ୍ୱାସ, ଗୁରୁଦେବଙ୍କର ଏକ ମର୍ମଭେଦୀ ଦୀର୍ଘଶ୍ୱାସ ବ୍ୟତୀତ ଅନ୍ୟ କୌଣସି ଶବ୍ଦ ନ ଥାଏ ।

ଆମେ ପ୍ରସ୍ତୁତ ହୋଇ ଗୁରୁଦେବଙ୍କ କକ୍ଷକୁ ଗଲୁ । ଆଶ୍ରମର ସମସ୍ତ ବନ୍ଧୁ ଗଣ ଆମ୍ଭମାନଙ୍କୁ ଅନୁସରଣ କଲେ । ଗୁରୁଦେବଙ୍କୁ ପ୍ରଣତ ହୋଇ ମୁଁ ପ୍ରଶ୍ନ କଲି - 'ଗୁରୁଦେବ ! ଶୁଣିଛି ଦକ୍ଷିଣା ନଦେଲେ ବିଦ୍ୟା ଅସଂପୂର୍ଣ୍ଣ ରହେ । ଆପଣତ ଆମ ଠାରୁ କିଛି ଦକ୍ଷିଣା ନେ ଲେ ନାହିଁ ?

ଗୁରୁଦେବ ସସ୍ନେହରେ ମୋତେ ଚାହିଁ କହିଲେ - 'ତୁମ୍ଭମାନଙ୍କର ସାଧନା ସିଦ୍ଧି ଲାଭକରୁ, ବିଶ୍ୱ କଲ୍ୟାଣ ନିମିତ୍ତ ଦେବକାର୍ଯ୍ୟରେ ତୁମ୍ଭେମାନେ ସହାୟ ହୁଅ, ଶେଷ ରକ୍ତ ବିନ୍ଦୁ ଥିବା ପର୍ଯ୍ୟନ୍ତ ଧର୍ମର ଧ୍ୱଜାକୁ ଉତ୍ତୋଳନ କର, ତାହାହିଁ ହେବ ମୋପାଇଁ ଉପଯୁକ୍ତ ଦକ୍ଷିଣା ।'

ବଡ଼ଭାଇ କହିଲେ - 'ଏହାତ ଆପଣଙ୍କର ଆଶୀର୍ବାଦ ଗୁରୁଦେବ ! କିନ୍ତୁ ଦକ୍ଷିଣା ?'

ଗୁରୁଦେବ ହସି ହସି କହିଲେ- 'ନା-ନା ବାସୁଦେବ ତୁମ୍ଭମାନଙ୍କ ଠାରୁ ଦକ୍ଷିଣା ନେବିନାହିଁ । ତୁମକୁ ତ ସେଦିନ କହିଥିଲି ଗାଲବଙ୍କ ଉପାଖ୍ୟାନ । ଦକ୍ଷିଣା ସ୍ୱରୂପ ଯିଏ ନିଜର ଗୁରୁଦେବଙ୍କୁ ଅଷ୍ଟୋତ୍ତର ଶତ ସହସ୍ର ଶୁକ୍ଳୈକ କାର୍ଣ୍ଣ ବିଶିଷ୍ଟ କୃଷ୍ଣ ବର୍ଣ୍ଣର ବେଗଗାମୀ ଅଶ୍ୱ ଦେବାପାଇଁ ବଚନ ବଦ୍ଧ ହୋଇଥିଲେ । ଯେଉଁଥିପାଇଁ ପତି ଗାଲବଙ୍କର ଏହି ପ୍ରତିଶ୍ରୁତିକୁ ପାଳନ କରିବାକୁ ଯାଇ ଯଯାତିକନ୍ୟା ମାଧବୀ ଯେଉଁ ମାନସିକ ନିର୍ଯ୍ୟାତନାର ଶିକାର ହୋଇଥିଲେ ତା'ତ ତୁମର ମନେଥିବ । ତେଣୁ ଦକ୍ଷିଣାର ପ୍ରୟୋଜନ ନାହିଁ ।'

ଗୁରୁମାତା ନୀରବରେ ଅଶ୍ରୁସିକ୍ତ ନୟନରେ ମୋତେ ଏକଲୟରେ ଚାହିଁ ରହିଥା'ନ୍ତି । ତାଙ୍କର ଏଇ ଅଶ୍ରୁବିଧୁର ଭାବଟି ବାରମ୍ବାର ମୋର ସ୍ମୃତି ପଟରେ ଜନନୀ ଯଶୋମତୀଙ୍କୁ ସ୍ମରଣ କରେଇ ଦେଉଥାଏ । ମୁଁ ତାଙ୍କ ପାଦ ଦୁଇଟିରେ ହାତରଖି ପ୍ରଶ୍ନ କଲି - 'ଗୁରୁମାତା ! ଆପଣଙ୍କର କ'ଣ ଇଛା କହନ୍ତୁ । ଏଇ ମୁହୂର୍ତ୍ତରେ ଆପଣଙ୍କ ଇଛା ମୁଁ ପୂର୍ଣ୍ଣ କରିବି ।' ଆଶା ଓ ଆନନ୍ଦରେ ତାଙ୍କ ମୁହଁ ଉଜ୍ଜ୍ୱଳ ହୋଇ ଉଠିଲା ।

-ସତ କହୁଚ ବାସୁଦେବ, ତୁମେ ଆମକୁ ଆମର ବାଂଛିତ ଦକ୍ଷିଣା ଦେଇପାରିବ ? ହଁ, ହଁ ତୁମେ ପାରିବ ନାହିଁ କାହଁକି ? ତୁମ ଉପରେ ମୋର ସେ ଆସ୍ଥା ଅଛି ବତ୍ସ ।'

ତଥାପି ସେ ଅଭିଳାଷ ଟିକକ ପ୍ରକାଶ କରିବା ପାଇଁ ଇତଃସ୍ତତଃ ହେଲେ । ମୁଁ ଯୋଡ଼ ହସ୍ତରେ ମୃଦୁ ହସି କହିଲି - 'ଅରେ ଆଦେଶ ଦିଅନ୍ତୁ ଗୁରୁମାତା । ଦୁର୍ଲଭ ହେଲେ ସୁଦ୍ଧା, ଦୁଷ୍ପ୍ରାପ୍ୟ ହେଲେ ସୁଦ୍ଧା ଆଣିବାକୁ ନିଶ୍ଚେ ଚେଷ୍ଟା କରିବି ।'

ସେ କିନ୍ତୁ ସନ୍ଦେହରେ ମୋତେ ଚାହିଁଲେ । ସଂଶୟ ଜଡ଼ିତ ସ୍ୱରରେ କହିଲେ - 'କିନ୍ତୁ ଗୁରୁଦେବ କହୁଛନ୍ତି । ଜୀବ ମାତ୍ରେ ଇ ଭଂଗୁର । ମାତ୍ର ସେଇ ଭଂଗୁର ପଦାର୍ଥଟି ଯଦି ଜୀବନର ଏକମାତ୍ର ସହାୟ ଆଉ ଅବଲମ୍ବନ ହୋଇଥାଏ ବତ୍ସ, ତେବେ ତା'ଠାରୁ କିଭଳି ମୋହକୁ ତ୍ୟାଗ କରିବି କୁହ ! ତୁମେତ ଜାଣ ପୁନର୍ଦ୍ଦତ୍ତ ମୋର ଏକମାତ୍ର ପୁତ୍ର, ଆମ ବାର୍ଦ୍ଧକ୍ୟର ଏକମାତ୍ର ଅବଲମ୍ବନ....ପ୍ରଭାସ ତୀର୍ଥରେ ସେ ବହୁବର୍ଷରୁ ନିରୁଦ୍ଦିଷ୍ଟ ! (ନା - ମୃତ ଦେହ ବୋଲି ସେ କହିଲେ ନାହିଁ । ଜନନୀ ପକ୍ଷେ ଏକଥା ଉଚ୍ଚାରଣ କରିବା କଷ୍ଟଦାୟକ !) ଦକ୍ଷିଣା ଯଦି ଦେବାକୁ ତୁମେ ଇଚ୍ଛୁକ, ତେବେ ପୁନର୍ଦ୍ଦତ୍ତ କୁ ଦିଅ । ଅନ୍ୟ କେଉଁଥିରେ ଆମର ପ୍ରୟୋଜନ ନାହିଁ

ମୁଁ ବୃଥା ଆସ୍ଫାଳନ ପ୍ରଦର୍ଶନ କଲିନାହିଁ କିମ୍ବା ପ୍ରତିଶ୍ରୁତି ମଧ୍ୟ ଦେଲି ନାହିଁ । କାରଣ ମୋ ପ୍ରତିଶ୍ରୁତି ଉପରେ ଜଗତର କାହାରି ବି ବିଶ୍ୱାସ ନାହିଁ । ବିରନ୍ଦ୍ରମୋଦିନୀମାନେ ଗୋପିରୁ ମଥୁରା ଯାଏ, ଦ୍ୱାରକାରୁ ହସ୍ତିନା ଯାଏ ଅପପ୍ରଚାର ହୁଏ ଯେ ମୁଁ ପ୍ରତିଶ୍ରୁତି ପାଳନ କରେ ନାହିଁ । ତେଣୁ ତାଙ୍କୁ କୌଣସି ପ୍ରତିଶ୍ରୁତି ନ ଦେଇ ମନେ ମନେ ବ୍ରତବଦ୍ଧ ହେଲି ମୋ ନିରୁଦ୍ଦିଷ୍ଟ ପୁନର୍ଦ୍ଦତ୍ତର ରହସ୍ୟ ଉନ୍ମୋଚନ କରିବାକୁ ପଡ଼ିବ ।

ପ୍ରଥମେ ପ୍ରଭାସ ତୀର୍ଥର ବରୁଣାଳୟରେ ବହୁ ଅନୁସନ୍ଧାନ କରିବା ପରେ ବି ପୁନର୍ଦ୍ଦତ୍ତର ସମ୍ବାଦ ମିଳିଲା ନାହିଁ । ପ୍ରବଳ ପ୍ରତାପୀ ରାକ୍ଷସ ଶଙ୍ଖାସୁର ପାଞ୍ଚଜନ୍ୟ ସହ ପ୍ରବଳ ଯୁଦ୍ଧ ହେଲା । ଯୁଦ୍ଧରେ ଶଙ୍ଖାସୁର ପାଞ୍ଚଜନ୍ୟର ମୃତ୍ୟୁ ହେଲା ଏବଂ ବିଜୟର ସଂକେତ ସ୍ୱରୂପ ସୁବିଶାଳ ପାଞ୍ଚଜନ୍ୟ ଶଙ୍ଖ ମୋର କରତଳ ହେଲା । ଏ ଶଙ୍ଖ ମୋର ଅତି ପ୍ରିୟ । ପ୍ରତ୍ୟେକ ଯୁଦ୍ଧ ଯାତ୍ରାରେ ଏ ଶଙ୍ଖର ଘୋର ନାଦ୍ର ଶତ୍ରୁ ହୃଦୟରେ ବିଭୀଷିକା ସୃଷ୍ଟିକରି ସେମାନଙ୍କ ମନୋବଳ

ଭାଂଗି ଦେଇଛି ଓ ବିଜୟ ଲକ୍ଷ୍ମୀ ମୋର ସହଜଲଭ୍ୟ ହୋଇଛି । ଅବଶେଷରେ ନାଗଲୋକରେ ବନ୍ଦୀ ପୁନର୍ଦତ୍ତଙ୍କୁ ମୁକ୍ତି ପ୍ରଦାନ କରି ତାଙ୍କୁ ଫେରାଇ ଆଣିବାରେ ମୁଁ ଓ ଜ୍ୟେଷ୍ଠଭ୍ରାତା ସମର୍ଥ ହୋଇଥିଲୁ ।

ବିଦର୍ଭ ରାଜ୍ୟସୀମାରେ ପହଞ୍ଚି ଦେଖିଲି ବଡ଼ ରୁଚିପୂର୍ଣ୍ଣ ତଥା ସମ୍ଭ୍ରାନ୍ତ ନଗରୀ ବିଦର୍ଭ । ସାତ୍ୟକୀଙ୍କ ଠାରୁ ଶୁଣିଲି ବିଦର୍ଭ ସହ ମଥୁରାର କୂଟ ନୈତିକ ସଂପର୍କ ଆଦୌ ଆଶାଜନକ ନୁହେଁ । କଂସ ଜୀବିତ ଥିବା ପର୍ଯ୍ୟନ୍ତ ତାହା ମଥୁରାର ବନ୍ଧୁ ରାଷ୍ଟ୍ର ଥିଲା । ଯଦିଓ ବିଦର୍ଭ ରାଜ ଭୀଷ୍ମକ ବଡ଼ ନିର୍ବିରୋଧୀ ତଥା ଶାନ୍ତି ସ୍ୱଭାବର ବ୍ୟକ୍ତି; କିନ୍ତୁ ତାଙ୍କର ଜ୍ୟେଷ୍ଠପୁତ୍ର ରୁକ୍ମୀ ଅତ୍ୟନ୍ତ କ୍ରୋଧୀ, ଦାମ୍ଭିକ । ତା'ର ନିଜର ବାହୁବଳ ଉପରେ ଅତୁଟ ଆସ୍ଥା । ନିଜ ରାଜ୍ୟର ଆୟତନ ବୃଦ୍ଧି ନିମିତ୍ତ ସେ ସର୍ବଦା ଚେଷ୍ଟିତ । ସେଥିପାଇଁ ସେ ବଳବୀର୍ଯ୍ୟଶାଳୀ ବ୍ୟକ୍ତିଙ୍କ ନିକଟରେ ନତମସ୍ତକ ହୋଇ କୌଶଳରେ ସେମାନଙ୍କ ସହ ବନ୍ଧୁତା ସୂତ୍ରରେ ଆବଦ୍ଧ ହୁଏ ଏବଂ ଏହାପରେ ଦୁର୍ବଳ ରାଜ୍ୟ ଉପରେ ଆକ୍ରମଣ କରି ନିଜ ରାଜ୍ୟର ସୀମା ବୃଦ୍ଧି କରିନିଏ । ଏଥିରେ ତା'ର ବଳଶାଳୀ ମିତ୍ରଗଣ ତା'ର ପକ୍ଷ ସମର୍ଥନ କରନ୍ତି । ବଡ଼ଭାଇ ଯଦିଓ ବିଦର୍ଭ ବିଷୟରେ ସାତ୍ୟକୀଙ୍କଠାରୁ ଖବର ସଂଗ୍ରହ କରୁଥିଲେ, ମୁଁ ବଡ଼ ନିସ୍ପୃହ ଭାବେ ସେ ସବୁ ଶୁଣୁଥିଲି, ମାତ୍ର ହଠାତ୍ କହିଲି - 'ଏହାତ ଚଞ୍ଚକତା !'

ସାତ୍ୟକୀ କହିଲେ- 'ହଁ ମହାଭାଗ ! ବଳଶାଳୀ ମିତ୍ରଙ୍କ ବାହୁଛାୟା ତଳେ ରହି ସେ ଦୁର୍ବଳଙ୍କ ଉପରେ ଅତ୍ୟାଚାର କରେ । ପିତା ଭୀଷ୍ମକ ଅତ୍ୟନ୍ତ ସଜ୍ଜନ, ମାତ୍ର ସେ ବୃଦ୍ଧ ହୋଇଥିବାରୁ ଦାମ୍ଭିକ ପୁତ୍ରର ପ୍ରତିରୋଧ କରିପାରନ୍ତି ନାହିଁ । କାରଣ ଭବିଷ୍ୟତରେ ଏହି ପୁତ୍ରହିଁ ତ ରାଜ୍ୟଭାର ସମ୍ଭାଳିବ ।'

ବଡ଼ଭାଇ ପଚାରିଲେ - 'କେଉଁମାନେ ତା'ର ବନ୍ଧୁ ?' ସାତ୍ୟକୀ ଉତ୍ତର ଦେଲେ - 'ମଗଧ-ନରେଶ ଜରାସନ୍ଧ, ଚେଦୀରାଜ ଶିଶୁପାଳ ଓ ମୃତ କଂସ - ଏମାନେହିଁ ତା'ର ବନ୍ଧୁ ।'

ମୁଁ ବଡ଼ଭାଇଙ୍କୁ କହିଲି - 'ତେବେତ ସେ ଆମର ଶତ୍ରୁପକ୍ଷ ହେଲା ।'

ବଡ଼ଭାଇ କହିଲେ - 'କିପରି ? ଆମେତ ତା' ସହ କୌଣସି ଶତ୍ରୁତା କରିନାହୁଁ ।'

ସାତ୍ୟକୀ କିଛି ସମୟ ଚୁପ୍ ରହି କହିଲେ - 'ଗୋବିନ୍ଦ ଠିକ୍ କହିଛନ୍ତି । ମଗଧ ନରେଶ ତା'ର ବନ୍ଧୁ । ମଗଧ ନରେଶଙ୍କ ଜାମାତା କଂସ ଯେହେତୁ ଆପଣଙ୍କ ଦ୍ୱାରା ନିହତ ହୋଇଛନ୍ତି ତେଣୁ ଜରାସନ୍ଧଙ୍କ ପକ୍ଷ ସମର୍ଥନ କରି ସେ ଆପଣଙ୍କୁ ମଧ୍ୟ ଶତ୍ରୁ ନଜରରେ ଦେଖିପାରେ । ରାଜା ଭୀଷ୍ମକ ବନ୍ଧୁତାର ପ୍ରସ୍ତାବ ଦେଲେଣି ମଥୁରା ସହ ପୂର୍ବଭଳି ବନ୍ଧୁତା ରକ୍ଷା କରିବା ପାଇଁ । ମାତ୍ର ସେ ପ୍ରସ୍ତାବକୁ ରୁକ୍ମୀ ଅସ୍ୱୀକାର କରୁଛି । ଏପରିକି ତା'ର ଏକମାତ୍ର ଭଗ୍ନୀ

ସର୍ବଗୁଣ ସଂପନ୍ନା ଅସାମାନ୍ୟା ରୂପସୀ ରୁକ୍ମିଣୀଙ୍କର ଇଚ୍ଛାବିରୁଦ୍ଧରେ ତାଙ୍କୁ ଚେଦୀରାଜ ଶିଶୁପାଳଙ୍କୁ ଅର୍ପଣ କରିବ ବୋଲି ମନସ୍ଥ କରିଛି । ଅର୍ଥାତ୍ ଜରାସନ୍ଧ ସର୍ତ୍ତ ରଖିଛି ଯିଏ ମଥୁରା ସହ ସଂପର୍କ ରଖିବ ସିଏ ତା'ର ଚକ୍ଷୁଶୂଳ ହେବ ଏବଂ ଶିଶୁପାଳ ହିଁ ପ୍ରଥମ ବ୍ୟକ୍ତି ଯିଏକି ଏକବାକ୍ୟରେ ମଥୁରାସହ ସମସ୍ତ ସଂପର୍କ ଛିନ୍ନ କରିଛନ୍ତି । ତେଣୁ ମଥୁରାର ଶତୃ ଶିଶୁପାଳ ସହ ରୁକ୍ମୀ ତା'ର ଭଉଣୀଙ୍କର ବିବାହ ଦେବ ବୋଲି ସଂକଳ୍ପବଦ୍ଧ ହୋଇଛି ।

ଏପର୍ଯ୍ୟନ୍ତ ମୁଁ ଅନ୍ୟମନସ୍କ ଭାବେ ସାତ୍ୟକୀଙ୍କ କଥା ଶୁଣୁଥିଲି । ଏଥର କିନ୍ତୁ ବେଶ୍ ସତର୍କ ସଜାଗ ହୋଇଉଠିଲି । ଏହି ସମୟରେ ଅସଂଖ୍ୟ ମଧୁକଣ୍ଠୀ ପକ୍ଷୀ ଯେମିତି ଏକକାଳୀନ ଗୀତ ଗାଇଉଠିଲେ, ମୁଁ ସ୍ୱପ୍ନୋତ୍ଥିତ ଭଳି ପ୍ରଶ୍ନ କଲି - 'ଆମେ କେଉଁଠି ପହଞ୍ଚିଲେ ସାତ୍ୟକୀ ?'

ସାତ୍ୟକୀ କହିଲେ - 'ଏହା ବିଦର୍ଭ ରାଜ ଜେମାଙ୍କର ଉଦ୍ୟାନ ପଥ । ଜେମା ବୋଧହୁଏ ସହଚରୀଙ୍କ ସହ ଉଦ୍ୟାନ ବିହାର କରୁଛନ୍ତି । ଏଇ କଳମୁଖରିତ ହାସ୍ୟାବେଗ ହୁଏତ ସେଇମାନଙ୍କର ।'

ପ୍ରସ୍ତର ପ୍ରାଚୀର ବେଷ୍ଟିତ ସୁବିଶାଳ ଉଦ୍ୟାନ । ବହୁରଂଗୀ ପକ୍ଷୀ, ବହୁରଂଗୀ ଫୁଲର ସମାରୋହ ସେଥିରେ । ଉଦ୍ୟାନର ମଧ୍ୟ ଭାଗରେ ଜେମାଙ୍କର କେଳି ସରୋବର । ପ୍ରାଚୀର ଦେହରେ କାରୁକାର୍ଯ୍ୟପୂର୍ଣ୍ଣ ଶ୍ୱେତମର୍ମରର ଜାଲ । ତା'ରି ମଧ୍ୟ ଦେଇ ଉଦ୍ୟାନ ଭିତରୁ ବାହାରକୁ ଦେଖିହେବ, ମାତ୍ର ବାହାରୁ ଭିତରର କିଛି ହେଲେ ଦିଶିବ ନାହିଁ । କେବଳ ପ୍ରବେଶର ତୋରଣ ଦ୍ୱାର ନିକଟରେ ବାହାର ଲୋକ ଭିତରର କିଛି ଅଂଶ ଦେଖିପାରେ । ମାତ୍ର ସେଠାରେ ସଶସ୍ତ୍ର ପ୍ରହରୀ ନିଯୁକ୍ତ । କୌଣସି ପାନ୍ଥ ଯେପରି ଭିତରକୁ ଉଦ୍ଦେଶ୍ୟପୂର୍ଣ୍ଣ ଭାବେ ଦୃଷ୍ଟି ନଦିଏ ସେତିକି ଦେଖିବା ସେମାନଙ୍କର କାର୍ଯ୍ୟ । ଠିକ୍ ତୋରଣ ଦ୍ୱାର ଦେଇ ରଥ ଅତିକ୍ରମ କରିବା ସମୟରେ କୌତୁହଳ ବଶତଃ ମୁଁ ଉଦ୍ୟାନ ଭିତରକୁ ଚାହିଁ ଦେଲି । ମୁହୂର୍ତ୍ତଟିଏ ମାତ୍ର । ସେଇ ମୁହୂର୍ତ୍ତରେ ଦେଖିଲି ବିଦର୍ଭର ରାଜଜେମାଙ୍କୁ । କେଳି ସରୋବରରେ ସ୍ଫଟିକ ପାବଛ ଉପରେ ବସିରହି ଗୋଟିଏ ସନ୍ତରଣରତ ହଂସୀ ଉଦ୍ଦେଶ୍ୟରେ ସେ ହାତ ବଢ଼େଇ ଥିଲେ ତାକୁ ଧରିବା ପାଇଁ । ହଂସୀଟି ମଧ୍ୟ ତାଙ୍କ ବାହୁକୁ ମୃଣାଳଭ୍ରମରେ ଦଂଶନ କରିବାକୁ ଚେଷ୍ଟା କରୁଥିଲା ଓ ସେ ତା' ସହ ଖେଳୁଥିଲେ । ଅସ୍ତାୟମାନ ସୂର୍ଯ୍ୟର ଲୋହିତ ଆଭା ସମଗ୍ର ଉଦ୍ୟାନର ଶୋଭାକୁ ବହୁ ଗୁଣିତ କରିଥିଲା । ନୀଳବସନ ପରିହିତା ବିଦର୍ଭ ନନ୍ଦିନୀ ଅପୂର୍ବ ଦିଶୁଥିଲେ । ରଥର ଘର୍ଘର ନାଦରେ ସେ ମୁହଁ ଉଠେଇ ମୁହୂର୍ତ୍ତେ ଚାହିଁଦେଲେ ଓ ପର ମୁହୂର୍ତ୍ତରେ ଲଜ୍ଜ୍ୟାବଶତଃ ତଳକୁ ମୁହଁ ପୋତି ଦେଲେ । ସେ ଚାହିଁ ଦେବା ମାତ୍ରେ ମନେ ହେଲା ଯେମିତି ଦୁଇଟି ନୀଳୋତ୍ପଳଦଳ, ଯାହାର ଧାର କିନ୍ତୁ ଖୁବ୍ ଶାଣିତ, ଯାହା ହୃଦୟରେ ବିଦ୍ଧ ହୋଇ ମୋ ହୃଦୟକୁ ରକ୍ତସ୍ନାନ

କରିଦେଲା । ରଥ ଆଗେଇ ଆସିଥିଲା । ମୁଁ ଆଉ ଥରେ ଲେଉଟି ଚାହିଁବାକୁ ଚେଷ୍ଟା କରୁଥିଲି । କିନ୍ତୁ ଜ୍ୟେଷ୍ଠଭ୍ରାତା ମୋ ମନୋଭାବ ବୁଝିପାରି ମୋତେହିଁ କୌତୁକରେ ଚାହିଁ ରହିଥିଲେ । ଯେମିତି ମୁଁ କିଛି ଦେଖିନାହିଁ ସେଇଭଳି ଭାବରେ ତଳକୁ ମୁହଁ ପୋତି ଦେଲି । ଜ୍ୟେଷ୍ଠଭ୍ରାତା ପରିହାସ ଛଳରେ କହିଲେ- 'ତଳକୁ ମୁହଁ ପୋତିଲେ ଚଳିବ ନାହିଁ କାହ୍ନୁ, ବିଦର୍ଭର ପଥ ଘାଟ ଚିହ୍ନିରଖ । ହୁଏତ ପୁନଶ୍ଚ ଆସିବାର ଆବଶ୍ୟକତା ପଡ଼ିପାରେ !'

## ।। ଅଷ୍ଟମ ଗ୍ରନ୍ଥି ମୋଚନ ।।

ପଥ ମଧ୍ୟରେ ସାତ୍ୟକୀ ମୋତେ କିଛି ହେଲେ କହିଲେନାହିଁ । ଟିକିଏ ବିଷର୍ଣ୍ଣ ଜଣା ପଡୁଥିଲେ । ମଥୁରାରେ ପହଞ୍ଚିବା ପରେ ଆମେ ଦେଖିଲୁ ମଥୁରା ନଗର ବଡ଼ ଶ୍ରୀହୀନ ଦିଶୁଛି । କେଉଁଠାରେ ଅଟ୍ଟାଳିକା ଧୂଳିସାତ୍ ହୋଇଛିତ, କେଉଁଠାରେ ବୃଂଷଲତା ପରିବେଷ୍ଟିତ ପୁଷ୍ପୋଦ୍ୟାନ ମଧ୍ୟ ଗୁଳ୍ମ, କଣ୍ଟକରେ ଆଚ୍ଛାଦିତ ହୋଇପଡ଼ିଛି । ସବୁଠାରୁ ବିସ୍ମୟର କଥା ଯେ ମଥୁରା ଦାଣ୍ଡରେ ପୂର୍ବଭଳି କଳମୁଖର ଶିଶୁ ଆଉ କ୍ରୀଡ଼ାରତ ନୁହନ୍ତି । ଅନେକ ପ୍ରବୀଣ ବୃଦ୍ଧ ମଧ୍ୟ ଇହଲୀଳା ସମ୍ବରଣ କରିଗଲେଣି । ଚତୁର୍ଦ୍ଦିଗରେ କେମିତି ଏକ ଅଜଣା ଆତଙ୍କର ଛାଇ ମଥୁରାବାସୀଙ୍କୁ ହୀନବଳ, ନିର୍ବୀର୍ଯ୍ୟ ଶଙ୍କିତ କରିପକାଇଛି । ମୁଁ ଜେଷ୍ଠଭ୍ରାତାଙ୍କ ମୁହଁକୁ ଚାହିଁଲି । ସେ ମଧ୍ୟ ଠିକ୍ ସେଇକଥା ଚିନ୍ତା କରୁଥିଲେ ହୁଏତ । ମୋତେ କହିଲେ - 'ମଥୁରାର ଏ ଦୁରାବସ୍ଥା କାହିଁକି ? କଂସ ପୁଣି ଜୀବନ୍ୟାସ ପାଇଲା ନା କ'ଣ ?'

ଯାହାକୁ ପଚାରିଲୁ ସେମାନେ ନୀରବ ରହିଲେ । ଅର୍ଥାତ୍ ଏସବୁ ଦୁର୍ଘଟଣା ସହ ଯେମିତି ଆମେ ହିଁ ଜଡ଼ିତ । ରାତ୍ରି ଭୋଜନ ସମୟରେ ମା'ଙ୍କୁ ବଡ଼ଭାଇ ପଚାରିଲେ - 'ଏ ସମୟରେ ତ ଶସ୍ୟକ୍ଷେତ୍ର ପକ୍ୱ ଜବରେ ପରିପୂର୍ଣ୍ଣ ଥାଏ ନା ? ଶସ୍ୟ କ୍ଷେତ୍ର ସବୁ ଶୂନ୍ୟ ପଡ଼ିଛି ଯେ ?

ବଡ଼ଭାଇଙ୍କର ଜଅ ରୁଟି, ଜଅ ଛତୁ ବଡ଼ ପ୍ରିୟ ଖାଦ୍ୟ । ମା' ଦୀର୍ଘଶ୍ୱାସଟିଏ ମୋଚନ କରି କହିଲେ- 'ସାରାବର୍ଷ ମଥୁରାର କୃଷକଗଣ ଶସ୍ୟକ୍ଷେତ୍ରରେ ନିଜର ସ୍ୱେଦ, ରକ୍ତ ନିଗାଡ଼ି ଖଟିଲେ । ଜରାସନ୍ଧର ଅନୁଚରଗଣ ପକ୍ୱ ଶସ୍ୟ ସବୁ ଲୁଣ୍ଠନ କରିନେଲେ । ଯାହା ନେଇଁ ନ ପାରିଲେ ତା' ନିଆଁ ଲଗାଇ ପୋଡ଼ି ଦେଲେ । ବିନାଦୋଷରେ ଜରାସନ୍ଧ କେତେଯେ ସୁକୁମାର ଶିଶୁ, ଅଥଚ ବୃଦ୍ଧ ଓ ଅସହାୟ ଅବଳାଙ୍କୁ ହତ୍ୟା କଲାଣି ତା'ର ହିସାବ ନାହିଁ ।'

ଶୁଣୁ ଶୁଣୁ ମୋ ରକ୍ତ ଉତ୍ତାଳ ହୋଇ ଉଠିଲା । ମୁଁ ଖାଦ୍ୟ ଗ୍ରହଣ କରିପାରିଲି ନାହିଁ । ଜରାସନ୍ଧର ସମସ୍ତ କ୍ରୋଧ ଆମ ଦୁଇ ଭାଇଙ୍କ ଉପରେ ପୁଞ୍ଜିଭୂତ; ଅଥଚ ସେ ଅକାରଣରେ

ନିରୀହ ପ୍ରାଣୀଙ୍କୁ ବିନାଶ କରୁଛି କେଉଁ ଉଦ୍ଦେଶ୍ୟରେ ? ଶିଶୁ, ଅବଳା-ବୃଦ୍ଧ ଯେଉଁମାନେ ପ୍ରତିରୋଧ କରିପାରିବେ ନାହିଁ ସେମାନଙ୍କ ଉପରେ ଅସ୍ତ୍ର ଉତ୍ତୋଳନ କରିବା ନ୍ୟାୟସଂଗତ କି ? ମୁଁ ଈଷତ୍ ଗମ୍ଭୀରଭାବେ ପ୍ରଶ୍ନ କଲି - 'କେବେ ଆକ୍ରମଣ କରିଥିଲା ଜରାସନ୍ଧ ?'

'ବହୁବାର ! ଗଥିରେ ଘିଘିରି ଧ୍ୱନି ଶୁଣିଲେଇ ମଥୁରାବାସୀ ଆତଙ୍କିତ ହୋଇ ପଡୁଛନ୍ତି ।'

ଜ୍ୟେଷ୍ଠଭ୍ରାତା ଖାଉ ଖାଉ ମୋତେ ଚାହିଁ କହିଲେ - 'ଜରାସନ୍ଧର ଏ ପରୋକ୍ଷ ଶତ୍ରୁତା, ପ୍ରଚ୍ଛନ୍ନ କ୍ରୋଧ ଆମକୁ ଯୁଦ୍ଧପାଇଁ ନିମନ୍ତ୍ରଣ କରୁଛି କାହ୍ନୁ ! ଏ ବିଷୟରେ ତୋର କିଛି ସନ୍ଦେହ ଅଛି ?'

ମୁଁ ନିରୁତ୍ତର ରହିଲି । କାରଣ ମୁଁ ଜାଣିଥିଲି ଜରାସନ୍ଧର ମୃତ୍ୟୁ ଏତେ ସହଜ ନୁହେଁ । ସେଥିପାଇଁ ଅପେକ୍ଷା କରିବାକୁ ପଡ଼ିବ ।

ମଥୁରାରେ ପହଞ୍ଚିବା ପରେ ମୋର ପ୍ରଥମ କର୍ତ୍ତବ୍ୟ ହେଲା ଜଣେ ଦକ୍ଷ, ବିଶ୍ୱସ୍ତ ଗୁପ୍ତଚର ନିଯୁକ୍ତ କରିବା ଏବଂ ସମସ୍ତଙ୍କ ଅଲକ୍ଷ୍ୟରେ ତାହିଁ କରିଥିଲି । ଶୁଦ୍ଧବ୍ରତ ନାମକ ଯୁବକଟି ଆମ ଯାଦବ କୁଳର । ବହୁ ପୂର୍ବରୁ ମୁଁ ଲକ୍ଷ୍ୟ କରିଥିଲି ଯେ ସେ ସଦାଚାରୀ, ସତ୍ୟନିଷ୍ଠ, ଅଳ୍ପଭାଷୀ, ପ୍ରାୟ ମୌନ କହିଲେ ଚଳେ; କିନ୍ତୁ ତାଙ୍କ ଚକ୍ଷୁ ଓ କର୍ଣ୍ଣ ପରିସ୍ଥିତି ଓ ପରିବେଶ ପ୍ରତି ଚିର ସଚେତନ ଓ ଚିର ସଜାଗ । ସେ ଅତ୍ୟନ୍ତ ସୁଚତୁର । ଏହାହିଁ ଗୁପ୍ତଚରର ବିଶିଷ୍ଟ ଗୁଣ । ଏତଦ୍ ବ୍ୟତୀତ ଯାହା ସବୁଠାରୁ ବେଶୀ ପ୍ରୟୋଜନ ଅର୍ଥାତ୍ ବିଶ୍ୱସ୍ତତା ସେ ଦିଗରୁ ତାଙ୍କୁ ସନ୍ଦେହ କରିବାର କିଛି ନଥିଲା । ସୁତରାଂ ମୁଁ ତାଙ୍କୁହିଁ ଦାୟିତ୍ୱ ଦେଇଥିଲି ଜରାସନ୍ଧର ସମସ୍ତ ଗତିବିଧି ଉପରେ ସତର୍କ ଦୃଷ୍ଟି ରଖିବାପାଇଁ । ଶୁଦ୍ଧବ୍ରତ ବ୍ୟତୀତ ପୂର୍ବୋକ୍ତ ଅକ୍ରୁର ମଧ୍ୟ ଜରାସନ୍ଧ ସମ୍ପର୍କରେ ବିଭିନ୍ନ ସମ୍ବାଦ ଯଥା ସମୟରେ ପରିବେଷଣ କରୁଥିଲେ । ଶୁଦ୍ଧବ୍ରତ ସେଦିନ ଏକ ଚମକପ୍ରଦ ସମ୍ବାଦ ଆସି ଦେଲା । ଶୁଦ୍ଧବ୍ରତ ମୋତେ ଅଭିବାଦନ କରିସାରି ନୀରବରେ ଏକଲୟରେ ମୋତେ ଚାହିଁ ରହିବା ଅର୍ଥ ମୁଁ ହିଁ କେବଳ ବୁଝିପାରେ ଯେ ସେ ଏକାନ୍ତରେ ମୋତେ କିଛି କହିବାକୁ ଚାହିଁଛି ଯାହା ଅତ୍ୟନ୍ତ ଗୋପନୀୟ । ଜ୍ୟେଷ୍ଠଭ୍ରାତା ମୋର ଚଞ୍ଚଳ ଭାବ ଲକ୍ଷ୍ୟ କରି ମୋତେ ଶୁଣାଇବା ଉଦ୍ଦେଶ୍ୟରେ ଉଦ୍ଧବଙ୍କ କାନପାଖରେ କହିଲେ, 'ଶୁଦ୍ଧବ୍ରତ ସହ କାହ୍ନୁର ଏ ଗୋପନ କଥାବାର୍ତ୍ତାରୁ ମୋର ଯାହା ମନେହେଉଛି କୌଣସି ଏକ ସୁକୁମାରୀ କନ୍ୟାର ହୃଦୟ ହରଣର ଯୋଜନା ପ୍ରସ୍ତୁତ କରୁଛି କାହ୍ନୁ ।'

ତାଙ୍କ କଥାରେ ଉଦ୍ଧବ, ସାତ୍ୟକୀ ପ୍ରଭୃତି ଜୋର୍‌ରେ ହସି ଉଠିଲେ । ମୁଁ କୌତୁକ କରି ବଡ଼ଭାଇଙ୍କୁ ଚାହିଁ କହିଲି- 'ଶୈଶବରୁ ଏପର୍ଯ୍ୟନ୍ତ ଲହୁଣୀ ଚୋରୀ ଠାରୁ ଚିତ୍ତ ଚୋରୀ ଯାଏ

ମୋର ସବୁ ଅପକର୍ମର ମୂକ ସାକ୍ଷୀ କିନ୍ତୁ ତୁମେ ଜ୍ୟେଷ୍ଠ ଭ୍ରାତ ! ସେ ଅପରାଧ ପାଇଁ ଯଦି ଶାସ୍ତି ବିଧାନ କରାଯାଏ, ତେବେ ଅର୍ଦ୍ଧେକ ଅଂଶୀଦାର ମଧ୍ୟ ତୁମେଇ ହେବ !

ଜ୍ୟେଷ୍ଠଭ୍ରାତା ପ୍ରବଳ ହାସ୍ୟାବେଗରେ ଉଚ୍ଛ୍ୱସିତ ହୋଇଉଠିଲେ । ସେଇ ଅବସରରେ ମୁଁ ଶୁଦ୍ଧବ୍ରତର ହାତ ଧରି ଉଦ୍ୟାନର ଆମ୍ର ବୀଥିକା ନିକଟକୁ ଚାଲି ଆସିଲି । ସ୍ଥାନଟି ସମ୍ପୂର୍ଣ୍ଣ ନିର୍ଜନ । ବୃକ୍ଷଶାଖାରେ କେତୋଟି ପକ୍ଷୀଙ୍କ ବ୍ୟତୀତ ଆଉ କେହି ନଥିଲେ । ଶୁଦ୍ଧବ୍ରତ ଗମ୍ଭୀର ସ୍ୱରରେ କହିଲେ– 'ଏଥର ଜରାସନ୍ଧର ଆକ୍ରମଣ ପଦ୍ଧତି ସମ୍ପୂର୍ଣ୍ଣ ଭିନ୍ନ ଧରଣର ପ୍ରଭୋ ! ଅଗ୍ରିମ ଆଉ ଶତ୍ରୁକୁ ବଳିବାର ସୁଯୋଗ ଦିଆଯାଏ ନାହିଁ ପ୍ରଭୋ ! ଆପଣ ଅଲୌକିକ କୀର୍ତ୍ତିଶାଳୀ, ଅଦ୍ଭୁତ କର୍ମା– ଆପଣ ଜରାସନ୍ଧକୁ ଶେଷ କରୁନାହାନ୍ତି କାହିଁକି ? କାହାକୁ ଅପେକ୍ଷା ?'

ମୁଁ ଶୁଦ୍ଧବ୍ରତଙ୍କ କାନ୍ଧରେ ହାତରଖି ବେଶ ସହଜ ଭାବରେ କହିଲି– 'ତୁମେ ସେକଥା ବୁଝିପାରିବ ନାହିଁ ଶୁଦ୍ଧବ୍ରତ ! ମୁଁ କେବଳ ସମୟକୁ ଅପେକ୍ଷା କରିଛି । ସମୟ ନଆସିଲେ କଳିଟିଏ ମଧ୍ୟ ଫୁଟି ଫୁଲ ହୁଏ ନାହିଁ । କ୍ଷୁଦ୍ର ପକ୍ଷୀଟିଏ ସୁଦ୍ଧା ସମୟ ପୂର୍ବରୁ ନୀଡ଼କୁ ବାହୁଡ଼େ ନାହିଁ ।'

କିନ୍ତୁ କହୁ କହୁ ମୁଁ ଅନ୍ୟମନସ୍କ ହୋଇଯାଇଥାଏ । ମୋର ଉଦାସ ଦୃଷ୍ଟି ଦିଗନ୍ତରେ ହଜିଯାଇଥାଏ । ମୋର ସେ ରହସ୍ୟମୟ ମୁହଁକୁ ଚାହିଁ ଶୁଦ୍ଧବ୍ରତ କିଛି କହିପାରିଲେ ନାହିଁ । ମୁଁ ତାଙ୍କୁ ଆଶ୍ୱାସନା ଦେଇ କହିଲି– 'ତେବେ ତମେ କହୁଚ ଏଥର ଆକ୍ରମଣର ପଦ୍ଧତିଟିଏ ଭିନ୍ନସ୍ୱାଦର ? ପଦ୍ଧତିଟା କ'ଣ ଶୁଣେ ।'

ଏଥର ଯବନ ପତି କାଳଯବନ ଦ୍ୱାରା ହିଁ ମଥୁରାକୁ ବିଧ୍ୱସ୍ତ କରିବାର ଯୋଜନା କରୁଛି ଜରାସନ୍ଧ । ମୁଁ ଯେତିକି ସୂଚନା ପାଇଛି, ସେଥିରୁ ଅନୁମାନ କରୁଛି ଯେ କାଳଯବନ ସାକ୍ଷାତ ମହାକାଳ ସଦୃଶ ।

ଶୁଦ୍ଧବ୍ରତ ଯିବାପରେ ମୁଁ ସେଇ ଆମ୍ର ବିଥୀକା ତଳେ ବହୁସମୟ ଚୁପ୍‌ଚାପ୍ ବସି ରହିଲି । ମଥୁରାର ନୀରିହ ଜନସାଧାରଣଙ୍କୁ ହତ୍ୟା କରି କାଳଯବନଙ୍କର କୌଣସି ସ୍ୱାର୍ଥସିଦ୍ଧି ହେବାର ନାହିଁ । କେବଳ ସେ ବୀରତ୍ୱର ପ୍ରଚାର କରିବାପାଇଁ ଜରାସନ୍ଧର ନିର୍ଦ୍ଦେଶରେ ମଥୁରା ଆକ୍ରମଣ କରୁଛି । ବାସ୍ ! ମୋତେବି ଆଉ ଜଣକୁ ଖୋଜିବାକୁ ପଡ଼ିବନି, ଯିଏ କି ତାର ପରାକ୍ରମର ଅହଙ୍କାରକୁ ମୁହୂର୍ତ୍ତକ ମଧ୍ୟରେ ପରିଣତ କରିପାରିବ । ମୁଁ ସିଧାସଳଖ ମାତାମହ ମଥୁରାନରେଶ ଉଗ୍ରସେନଙ୍କ କକ୍ଷରେ ପହଞ୍ଚିଲି । ସନ୍ଧ୍ୟା ଉତ୍ତୀର୍ଣ୍ଣ ହୋଇଯାଇଥାଏ । ମାତାମହ ସନ୍ଧ୍ୟାହ୍ନିକ ଶେଷ କରି ସେଇମାତ୍ର ବିଶ୍ରାମ ନେଉଥା'ନ୍ତି । ମୋତେ ଦେଖିବାମାତ୍ରେ ପ୍ରସନ୍ନ

ଶ୍ରଦ୍ଧାରେ ପାଖକୁ ଡାକିଲେ । ମୁଁ ବିନା ଭୂମିକାରେ କହିପକାଇଲି- 'କାଳଯବନ ବଳଶାଳୀ ମଥୁରା ନରେଶ ! ବଳଦ୍ୱାରା ନୁହେଁ, ଛଳ କୌଶଳ ଦ୍ୱାରା ତାକୁ ପରାସ୍ତ କରିବାକୁ ପଡ଼ିବ ।'

ସେ ମୋ କଥା କିଛି ବୁଝିପାରିଲେ ନାହିଁ । ମୁଁ କହିଲି- 'ଆପଣ ଏଇ ମୁହୂର୍ତ୍ତରେ ଜରୁରୀକାଳୀନ ଦରବାର ବସାନ୍ତୁ । ବହୁ ଗୁରୁତ୍ୱପୂର୍ଣ୍ଣ ବିଷୟ ଆଲୋଚନା କରିବାର ଅଛି । ମଥୁରାର ସୁରକ୍ଷା, ନିରାପତ୍ତା ଦୃଷ୍ଟିରୁ ଏହା ଅତ୍ୟନ୍ତ ଆବଶ୍ୟକ ।'

ଆଉ ମୁହୂର୍ତ୍ତେ ସୁଦ୍ଧା ଅପେକ୍ଷା ନକରି ମୁଁ ଦରବାର କକ୍ଷକୁ ଚାଲିଆସିଲି । ଦରବାର କକ୍ଷରେ ପ୍ରଦୀପ ପ୍ରଜ୍ୱଳନକାରୀ ଗୋଟି ଗୋଟି କରି ପ୍ରଦୀପ ପ୍ରଜ୍ୱଳନ କରୁଥାଏ । ସେ ପର୍ଯ୍ୟନ୍ତ କକ୍ଷର ଗୋଟିଏ ପ୍ରାନ୍ତ ଅନ୍ଧକାରରେ ଆବୃତ ଥାଏ । ସେଇଦିଗରୁ କଥୋପକଥନର କିଛି ଛିନ୍ନାଂଶ ଶ୍ରୁତିଗୋଚର ହେଲା, ଯାହା ଆଦୌ ଶ୍ରୁତିରୋଚକ ନୁହେଁ । ଅନ୍ଧାରରେ ତିନି ଚାରିଜଣ ଯାଦବ ଠିଆ ହୋଇ ସେମାନଙ୍କର ବିରକ୍ତି ପ୍ରକାଶ କରୁଥିଲେ; ଯାହାର ମର୍ମ ଏଇଭଳି- 'ଜରାସନ୍ଧ ସହ କୃଷ୍ଣ ବଳରାମ ଶତ୍ରୁତା କରିଛନ୍ତି । ସେଥିପାଇଁ ସେମାନେ କାହିଁକି ବାରମ୍ବାର ଦଣ୍ଡିତ ହେଉଥିବେ ? ବରଂ ଜରାସନ୍ଧ ନିକଟରେ ମଥୁରାର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ କୃଷ୍ଣ ବଳରାମ ସମର୍ପଣ କରିଯିବା ଉଚିତ ।'

ଏ ପ୍ରକାର ବିରୁଦ୍ଧ ମନ୍ତବ୍ୟରେ ମୁଁ ଆଦୌ ଆଶ୍ଚର୍ଯ୍ୟ ହେଲି ନାହିଁ । ଏହାହିଁ ସ୍ୱାଭାବିକ । ବାରମ୍ବାର ଯୁଦ୍ଧ, ବିଗ୍ରହ, ରାଷ୍ଟ୍ର ବିପ୍ଳବ ଦ୍ୱାରା ଶାନ୍ତି ପ୍ରତିଷ୍ଠା ହୁଏ ନାହିଁ । କେବଳ ଜନକ୍ଷୟ, ରକ୍ତ କ୍ଷୟ ହିଁ ସାର ହୁଏ, ମାନସିକ ଶାନ୍ତି ଓ ସ୍ଥିରତା ବିପର୍ଯ୍ୟସ୍ତ ହୁଏ । ମଥୁରାର ଶାନ୍ତିପ୍ରିୟ ପ୍ରଜାଗଣ କାହିଁକି ବା ସହନ୍ତେ ? ସେଇ ମୁହୂର୍ତ୍ତରେ ରଣନୀତିକୁ ପରିବର୍ତ୍ତନ କରିବାକୁ ଚାହିଁଲି ।

ଦରବାର ଗୃହରେ ସେଦିନ ବହୁ ବାଦାନୁବାଦ ପରେ ଯେତେବେଳେ ସମସ୍ତେ ମୋର ଅଭିମତକୁ ଅପେକ୍ଷା କଲେ, ସେତେବେଳେ ମୁଁ ଉଠିପଡ଼ି ବିନାଦ୍ୱିଧାରେ କହିଲି -'ଯେତେଶୀଘ୍ର ସମ୍ଭବ ମଥୁରାବାସୀ ମଥୁରା ତ୍ୟାଗ କରି ଅନ୍ୟତ୍ର ଯିବାକୁ ପ୍ରସ୍ତୁତ ହୁଅନ୍ତୁ । ଯୁଦ୍ଧ କଲାଭଳି ମାନସିକତା ଆଉ କାହାରି ନାହିଁ ।'

ସମସ୍ତ ଦରବାର କକ୍ଷରେ ଏକ ଅସ୍ୱସ୍ତିକର ଗୁଞ୍ଜରଣ ସୃଷ୍ଟି ହେଲା । ଜ୍ୟେଷ୍ଠଭ୍ରାତା କ୍ରୋଧାନ୍ୱିତ ହୋଇ ମୋତେ କହିଲେ - 'ଏଇଟା କ'ଣ ପିଲାଖେଳ କାହ୍ନୁ ? କିଛି ଚିନ୍ତା ନକରି ଏପ୍ରକାର ଦାୟିତ୍ୱହୀନ ମନ୍ତବ୍ୟ ଦେବାର ଉଦ୍ଦେଶ୍ୟ ?'

ମୁଁ ତାଙ୍କୁ ଚାହିଁ ହସିଦେଲି ଓ କହିଲି - 'ମୁଁ ଅନେକ ଦୂରକୁ ଚିନ୍ତାକରି ଏଭଳି ପଦକ୍ଷେପ ଦେଇଛି । ମୁଁ ଜାଣେ ଜନ୍ମମାଟିର ମୋହ ବିସର୍ଜନ କରିବା ବି ଦୁଃସାଧ୍ୟ । ତଥାପି ଯା ବ୍ୟତୀତ ଅନ୍ୟ ଉପାୟ କିଛି ନାହିଁ ।'

ଜଣେ ଯାଦବ ବୃଦ୍ଧ ଉତ୍ତପ୍ତ କଣ୍ଠରେ କହିଲେ - 'ମୋର ଶୈଶବରୁ ବାର୍ଦ୍ଧକ୍ୟ ଯାଏ ଏଇ ମଥୁରାରେ ଅତିକ୍ରାନ୍ତ ହୋଇଛି । ଏଇଠାରେ ହିଁ ଚିତାରୋହଣ କରିବ ମୋର ମର ଶରୀର । ମୁଁ ଅନ୍ୟତ୍ର ଯିବି ନାହିଁ ।'

ଜ୍ୟେଷ୍ଠଭ୍ରାତା ପୁଣି ପ୍ରଶ୍ନ କଲେ - 'ତୋର ଉଦ୍ଦେଶ୍ୟ ସ୍ପଷ୍ଟ କରି କହ କାହ୍ନୁ ! ମୁଁ ବି ବୁଝିପାରୁନି ।'

ମୁଁ କହିଲି - 'ଜ୍ୟେଷ୍ଠଭ୍ରାତା ! ଜରାସନ୍ଧ ବିଜୟୀ ହେଉ ଏହାହିଁ ମୋର ଉଦ୍ଦେଶ୍ୟ ।'

ସମସ୍ତେ ଯେମିତି ସ୍ତମ୍ଭୀଭୂତ ହୋଇଗଲେ । ଜଣେ ପ୍ରବୀଣ ଯାଦବ ପ୍ରଶ୍ନ କଲେ - 'ତେବେ ତୁମେ କ'ଣ ସନ୍ଧି ପ୍ରସ୍ତାବ ଦେବାକୁ ଚାହୁଁଚ ବାସୁଦେବ ?'

ମୁଁ ମୁଣ୍ଡ ହଲାଇ ନାହିଁ କଲି ଓ କହିଲି - 'ମୁଁ ଚାହୁଁଚି ଜରାସନ୍ଧ ଜନମାନବ ଶୂନ୍ୟ ମଥରା ପୁରୀ ଜୟ କରୁ । ତଦ୍ଦ୍ୱାରା ଆମ ପଥ କିନ୍ତୁ ନିଷ୍କଣ୍ଟକ ହେବ । ଆମେ ନିଶ୍ଚିତ ଆହୁରି ଶକ୍ତି ସଂଗ୍ରହ କରିପାରିବା ଓ ଭବିଷ୍ୟତରେ ଶତ୍ରୁକୁ ସମୂଳେ ଧ୍ୱଂସ କରିପାରିବା ।'

ଏହା କିପରି ସମ୍ଭବ କେହି ବୁଝିପାରଲେ ନାହିଁ । କେବଳ ପୂଜ୍ୟ ଅକ୍ରୁର ପ୍ରଶ୍ନ କଲେ - 'ମଥୁରା ତ୍ୟାଗ କରି ଆମ୍ଭେମାନେ ଯିବା କେଉଁଠିକି ?'

ମୁଁ କହିଲି - 'ପଶ୍ଚିମ ପ୍ରାନ୍ତକୁ, ସମୁଦ୍ର ଉପକୂଳକୁ । ମାତ୍ର ଗୁପ୍ତଚର ଦ୍ୱାରା ପ୍ରଚାର କରାଯିବ ଯେ ଜରାସନ୍ଧ ଭୟରେ ମଥୁରାବାସୀ ଇତସ୍ତତଃ ହୋଇ କିଏ କେଉଁଆଡ଼େ ଯାଇ ଆତ୍ମଗୋପନ କରିଛନ୍ତି ।'

ଏଥର ପିତା ବସୁଦେବ ପ୍ରଶ୍ନ କଲେ - 'ଏହାଦ୍ୱାରା ଆମର ଲାଭ ?' ମୁଁ କହିଲି - 'ଲାଭ ଏତିକି ଯେ, କାଳଯବନ ହେଉ ବା ଜରାସନ୍ଧ ହେଉ କୌଣସି ଗୋଟିଏ ଦିଗକୁ ଧ୍ୟାନ ଦେଇପାରିବେ ନାହିଁ । ଏଇ ଅବସରରେ ମଥୁରାବାସୀ ନିର୍ବିଘ୍ନରେ ପଶ୍ଚିମ ଉପକୂଳରେ ପହଞ୍ଚି ପାରିବେ । ଏକଥା ମଧ୍ୟ ପ୍ରଚାର କରାଯିବ ଯେ, ମଥୁରାବାସୀ କୃଷ୍ଣ ବଳରାମଙ୍କ ସଂଗ ତ୍ୟାଗ କରିଛନ୍ତି । କୃଷ୍ଣ ବଳରାମ ମଥୁରାରେ କାଳଯବନକୁ ଅପେକ୍ଷା କରି ରହିଛନ୍ତି । ଫଳତଃ ସବୁଦିଗ ପରିହାର କରି କାଳଯବନ ମଥୁରା ପ୍ରତି ତାର ଦୃଷ୍ଟି ନିବଦ୍ଧ କରିବ । ଏହା ମଥୁରା ବାସୀଙ୍କ ପାଇଁ ନିରାପଦ ।'

ପିତା କହିଲେ - 'ଅର୍ଥାତ୍ ? ତୁ ଓ ବଳଭଦ୍ର କ'ଣ ଏକାକୀ ଏଠାରେ ସତକୁ ସତ ରହିବ ? ତା' କିପରି ସମ୍ଭବ ? ଠିକ୍ ଅଛି ସମସ୍ତେ ଜୀବନ ଲୋଭରେ ଚାଲିଯା'ନ୍ତୁ । ମୁଁ ଓ ଦେବକୀ ତୁମ ଦୁହିଁଙ୍କୁ ଛାଡ଼ି ଯିବୁ ନାହିଁ ।'

ମୁଁ ପିତାଙ୍କୁ ମୁଗ୍ଧ ଦୃଷ୍ଟିରେ ଚାହିଁଲି । କହିଲି - 'ଆମର କୌଣସି କ୍ଷତି ହେବନାହିଁ ପିତା ! ଆପଣ ନିଶ୍ଚିନ୍ତ ରହନ୍ତୁ ।'

ପିତାଙ୍କ ବିବ୍ରତ ଭାବ ଲକ୍ଷ୍ୟ କରି ମନେ ହେଲା ପିତା ସୁସ୍ଥିର ରହି ପାରିଲେ ନାହିଁ । ସେଇ ସମୟ ଯାଇଁ କଥାଟାକୁ ଟାଳି ଦେବାକୁ ପିତା କହିଲେ - 'ମଥୁରାର ଘରଦ୍ୱାର ଜମିଜମା ସବୁ ତ୍ୟାଗକରି ପଶ୍ଚିମ ଉପକୂଳରେ ମଥୁରା ନାଗରିକ ଗଣ କ'ଣ ବଣରେ ରହିବେ ?'

ମୁଁ କହିଲି - 'ନା ପିତା ! ଗତକାଲି ଠାରୁ ମଥୁରା ଓ ତା'ର ଆଖପାଖ ଅଞ୍ଚଳର ପ୍ରାୟ ଏକଶତ ଶିଳ୍ପୀ ପଶ୍ଚିମ ଉପକୂଳକୁ ଯାତ୍ରା କରିଛନ୍ତି ନଗର ନିର୍ମାଣ ଉଦ୍ଦେଶ୍ୟରେ । ପ୍ରଜାମାନଙ୍କୁ ଯଥେଷ୍ଟ କ୍ଷତିପୂରଣ ମଧ୍ୟ ରାଜକୋଷରୁ ଦିଆଯିବ ସେଇ ନୂତନ ନଗରୀରେ ବସବାସ କରିବା ନିମିତ୍ତ । ରୈବତକ ପର୍ବତ ନିକଟବର୍ତ୍ତୀ ସୁପ୍ରସିଦ୍ଧ ପ୍ରଭାସତୀର୍ଥ ନିକଟସ୍ଥ କୁଶସ୍ଥଳୀ ଯାହାକି ଭରତଖଣ୍ଡର ପୂର୍ବ ଉପକୂଳରେ ଅବସ୍ଥିତ, ତାହାହିଁ ହେବ ଆମର ନୂତନ ଆବାସସ୍ଥଳୀ ।'

ମଥୁରା ନରେଶ ଉଗ୍ରସେନ କହିଲେ - 'ସମସ୍ତ ବ୍ୟବସ୍ଥା ଯଦି ସରିଛି ତେବେ ତୁ ଓ ବଳରାମ ଆମ ସହ ଗଲେ କେମିତି ହୁଅନ୍ତା ?'

ମୁଁ ପୁଣି ଟିକେ ହସିଲି, କହିଲି - 'ଆମେ ଗଲେ ମଥୁରା ବାସୀଙ୍କୁ ଦୁର୍ଭାଗ୍ୟହିଁ ଅନୁସରଣ କରିବ । କାଳଯବନ ଭଳି ଦୁର୍ଭାଗ୍ୟକୁ ମୁଁ ମଥୁରାରେ ନିଶ୍ଚିହ୍ନ କରିଦେବାକୁ ଚାହେଁ, ମଥୁରାବାସୀଙ୍କର ପଶ୍ଚାଦ୍ ଧାବନ କରିବାର ସୁଯୋଗ ଯେମିତି ସେ ନପାଏ ।'

ଏ ଆଶ୍ୱାସନାରେ ଦରବାରରେ ଉପସ୍ଥିତ ବିଶିଷ୍ଟ ନାଗରିକ ଗଣ କିଞ୍ଚିତ୍ ଆଶ୍ୱସ୍ତ ହେବାଭଳି ମନେ ହେଲା ।

ମୁଁ କିନ୍ତୁ ସେ ରାତ୍ରିରେ ଆଦୌ ଆଶ୍ୱସ୍ତ ରହିପାରିଲିନାହିଁ । ଗୋଟିଏ ରାତିଭିତରେ ମୋତେ ଅନେକ ଖବର ସଂଗ୍ରହ କରିବାକୁ ପଡ଼ିବ । ବିଶେଷତଃ ମହାତ୍ମା ମୁଚୁକୁନ୍ଦଙ୍କୁ ଆମର ପକ୍ଷଭୁକ୍ତ କରିବାକୁ ପଡ଼ିବ । ଅବଶ୍ୟ ଏହା ବିଶେଷ କଷ୍ଟକର କାର୍ଯ୍ୟ ନୁହେଁ । କାରଣ ଦେବକାର୍ଯ୍ୟ ନିମିତ୍ତ ମୁଚୁକୁନ୍ଦ ଅଂଗୀକାର ବଦ୍ଧ । ତଥାପି ତାଙ୍କର ବିଶ୍ୱାସ ଭାଜନ ହେବା ଆବଶ୍ୟକ । ତା'ଛଡ଼ା ମୁଚୁକୁନ୍ଦଙ୍କ ସଂପର୍କରେ ପୂର୍ଣ୍ଣ ବିବରଣୀ ନପାଇବା ପର୍ଯ୍ୟନ୍ତ ସେ ଆମର କିପରି ସହାୟକ ହୋଇ ପାରିବେ ସେ ବିଷୟରେ ମୁଁ ସନ୍ଦିହାନ ଥିଲି । ବ୍ରାହ୍ମ ମୁହୂର୍ତ୍ତରୁ ଯାତ୍ରାର ଶୁଭାରମ୍ଭ । ତା'ପୂର୍ବରୁ ସମସ୍ତ ବ୍ୟବସ୍ଥା ସଂପନ୍ନ ହେବା ଉଚିତ । ଜ୍ୟେଷ୍ଠଭ୍ରାତା ନିଶ୍ଚିନ୍ତରେ ଶୋଇ ରହିଥିଲେ । ସମଗ୍ର ମଥୁରା ନଗରୀ ଗଭୀର ନିଦ୍ରାରେ ଅଚେତନ । ଏକମାତ୍ର ମୁଁ ହିଁ ଉଜାଗର ଥିଲି । ବହୁଦୂରରୁ ଘୋଡ଼ା ଟାପୁର ଶବ୍ଦ ଶୁଣି ମୁଁ ସତର୍କ ହୋଇ ଉଠିଲି ଓ ଶୟନ କକ୍ଷରୁ ବାହାରି ଆସିଲି ଆମ ରାଜଭବନର ଗୁପ୍ତଦ୍ୱାର ନିକଟକୁ । ଗୋଟିଏ ପ୍ରଦୀପ ହସ୍ତରେ ସେଇଠାରେ ହିଁ

ଅପେକ୍ଷା କଲି ଶୁଦ୍ଧବ୍ରତ ପହଞ୍ଚିବା ପର୍ଯ୍ୟନ୍ତ । ଶୁଦ୍ଧବ୍ରତ ଅନେକ ପଥ ଅତିକ୍ରମ କରି ଆସିଛି । ବଡ଼ କ୍ଲାନ୍ତ ଦିଶୁଥାଏ । ମୁଁ ମୋ ନିଜର ଉତ୍ତରୀୟରେ ତାକୁ ପଙ୍ଖା କରିବାକୁ ଲାଗିଲି । ସେ ମୋ ହାତ ଦୁଇଟିକୁ ଧରି ପକାଇ କହିଲା - 'ଆପଣଙ୍କ କାର୍ଯ୍ୟରେ ନିଯୁକ୍ତ ହୋଇ ପାରୁଛି ତାହାହିଁ ମୋର ପରମ ସୌଭାଗ୍ୟ ପ୍ରଭୁ ! ଆପଣ ଏ କ'ଣ କରୁଛନ୍ତି ?

ଶୁଦ୍ଧବ୍ରତ କିନ୍ତୁ ମୋର ବାଂଛିତ ସଂବାଦ ସଂଗ୍ରହ କରି ଆଣିଥିଲା । ମଥୁରାର ଉପାନ୍ତରେ ବହୁ ଦୂରରେ ଘଞ୍ଚ ଅରଣ୍ୟ ଆଚ୍ଛାଦିତ ଏକ ନିର୍ଜନ ପାର୍ବତ୍ୟ ଗୁଂଫାରେ ମୁଚୁକୁନ୍ଦ ବିଶ୍ରାମାରତ । ଅଧିକାଂଶ ସମୟ ସେ କେବଳ ଶୟନହିଁ କରୁଛନ୍ତି । ହଁ ସେ ହିଁ ପ୍ରକୃତରେ ଇକ୍ଷ୍ୱାକୁ ବଂଶର ଯଶସ୍ୱୀ ରାଜା ଯୁବନାଶ୍ୱଙ୍କର ପୌତ୍ର । ତାଙ୍କର ପିତା ମାନ୍ଧାତା । ରାଜା ଯୁବନାଶ୍ୱ ଶତବର୍ଷରେ ପଦାର୍ପଣ କଲାପରେ ମଧ୍ୟ କୌଣସି ସନ୍ତାନର ଜନକ ହୋଇ ନପାରି ବିଷର୍ଣ୍ଣ ମନରେ ମନ୍ତ୍ରୀଙ୍କ ହସ୍ତରେ ରାଜ୍ୟଭାର ଅର୍ପଣ କରି ବାନପ୍ରସ୍ଥ ଅବଲମ୍ବନ କରିଥିଲେ । କଠୋର ତପଶ୍ଚରଣ କରିଥିଲେ । ଭାର୍ଗବ ମୁନିଙ୍କ ଦ୍ୱାରା ପୁତ୍ରେଷ୍ଟି ଯଜ୍ଞ ଅନୁଷ୍ଠାନ ମଧ୍ୟ କରିଥିଲେ । ଯୁବନାଶ୍ୱଙ୍କ ପତ୍ନୀଙ୍କ ଗର୍ଭରୁ କୌଣସି ସନ୍ତାନ ଭୂମିଷ୍ଠ ହେବାର ହୁଏତ ବିଧି ନିର୍ଦ୍ଦିଷ୍ଟ ନଥିଲା । ମୁନି ଭାର୍ଗବ ଔଷଧିଗୁଣ ସମନ୍ୱିତ ଏକ ଜଳପୂର୍ଣ୍ଣ କୁମ୍ଭକୁ ଏକ ଅନ୍ଧକାର ପୂର୍ଣ୍ଣ ସୁଶୀତଳ ଗୁଂଫାରେ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ରଖିଥିଲେ । ଯାହା ପାନ କଲେ ଯୁବନାଶ୍ୱଙ୍କର ସହଧର୍ମିଣୀ ସନ୍ତାନ ପ୍ରସବର କ୍ଷମତା ଅର୍ଜ୍ଜନ କରିଥା'ନ୍ତେ । ଅଥଚ ଗୋଟିଏ ଦାବଦାହ ଯୁକ୍ତ ଗ୍ରୀଷ୍ମ ଋତୁର ରାତ୍ରି କାଳରେ ତୃଷାତୁର ଯୁବନାଶ୍ୱ ଜଳ ଆଶାରେ ପ୍ରତ୍ୟେକ ମୁନିଙ୍କ ଦ୍ୱାରସ୍ଥ ହୋଇଥିଲେ; କିନ୍ତୁ ନିଦ୍ରାଭିଭୂତ ମୁନିଗଣ ତାଙ୍କର ଡାକ ଶୁଣିପାରିନଥିଲେ । ଅବଶେଷରେ ତୃଷାର୍ତ୍ତ ଯୁବନାଶ୍ୱ ସେହି ଔଷଧିଗୁଣ ସମନ୍ୱିତ ଜଳକୁମ୍ଭର ସନ୍ଧାନ ପାଇ ତାହାକୁ ପାନୀୟ ଜଳ ଭ୍ରମରେ ପାନ କରିଥିଲେ । ତୃଷା ପ୍ରଶମିତ ହେବାପରେ ହିଁ ସେ ଅନୁଭବ କରିଥିଲେ; ଏହା କେବଳ ପାନୀୟ ଜଳ ମାତ୍ର ନୁହେଁ । ମୁନି ଭାର୍ଗବ ଯଦି ଏକଥା ଜାଣନ୍ତି ତେବେ ଆଦୌ କ୍ଷମା ଦେବେ ନାହିଁ । ତଥାପି ସତ୍ୟବାଦୀ ଯୁବନାଶ୍ୱ ଗତ ରାତିର ସମସ୍ତ ଘଟଣା ମୁନିଙ୍କ ସମ୍ମୁଖରେ ସ୍ୱୀକାର କରିଥିଲେ । ମୁନି ଜାଣିଥିଲେ ଏହି ଅଭିମନ୍ତ୍ରିତ ଜଳୌଷଧି ପାନୀୟ କେବେହେଲେ ବ୍ୟର୍ଥ ହେବାର ନୁହେଁ । ଅର୍ଥାତ୍ ଯୁବନାଶ୍ୱ ହିଁ ଗର୍ଭ ଧାରଣ କରିଥିଲେ ଏବଂ ଉପଯୁକ୍ତ ସମୟରେ ବିଜ୍ଞାନୀ ଭାର୍ଗବ ଶଲ୍ୟ ଚିକିତ୍ସା ଦ୍ୱାରା ଯୁବନାଶ୍ୱଙ୍କ ଗର୍ଭରୁ ସନ୍ତାନ ପ୍ରସବ କରାଇ ଥିଲେ । ଏହି ଅଦ୍‌ଭୁତ ଶିଶୁର ନାମକରଣ ସ୍ୱୟଂ ଇନ୍ଦ୍ର ହିଁ କରିଥିଲେ, 'ମାନ୍ଧାତା' । ଯୁବନାଶ୍ୱ ଅରଣ୍ୟରେ ତପଶ୍ଚରଣରେ କାଳାତିପାତ କରିଥିଲେ । ଇନ୍ଦ୍ର ସମେତ ଦେବଗଣଙ୍କ ଦ୍ୱାରା ମାନ୍ଧାତା ବଳବୀର୍ଯ୍ୟ ଶାଳୀ ତଥା ମହାନ୍ ଗୁଣଶାଳୀ ଥିଲେ । ଦେବାସୁର ଯୁଦ୍ଧରେ ଦେବତାଙ୍କ ପକ୍ଷରେ ରହି ଅସୁରଙ୍କୁ ପରାସ୍ତ କରିଥିଲେ । ତାଙ୍କର ଏକମାତ୍ର ପୁତ୍ର ମହାତ୍ମା ମୁଚୁକୁନ୍ଦ, ସେ ମଧ୍ୟ ଦେବକାର୍ଯ୍ୟରେ ଲିପ୍ତ ।

ଦେବାସୁର ଯୁଦ୍ଧରେ ପ୍ରମୁଖ ଭୂମିକା ଗ୍ରହଣ କରି ବହୁବର୍ଷ ଧରି ଯୁଦ୍ଧ କରି ଅସୁର ମାନଙ୍କୁ ପରାସ୍ତ କରିଥିଲେ । ମୁଚୁକୁନ୍ଦ ଶାନ୍ତିପ୍ରିୟ ବ୍ୟକ୍ତି । ଏ ଯୁଦ୍ଧ ସମାପ୍ତ ହେବା ପରେ ସେ ଦେବତାମାନଙ୍କ ଠାରୁ ନିଜର କ୍ଳାନ୍ତି ହରଣ ନିମିତ୍ତ କେବଳ ନିଦ୍ରା ହିଁ ଭିକ୍ଷା କରିଥିଲେ । ମାନ୍ଧାତାଙ୍କ ଭଳି ମୁଚୁକୁନ୍ଦ ମଧ୍ୟ ଦେବତା ମାନଙ୍କ ଠାରୁ ଯୁଦ୍ଧର ବହୁ କୌଶଳ ଶିକ୍ଷା କରିଥିଲେ । ଏପରିକି ଅସମୟରେ ଇଚ୍ଛାକୃତ ଭାବେ ବର୍ଷା, ଝଂଝା ବା ଅଗ୍ନିର ବିପ୍ରାତ ସେ ସୃଷ୍ଟି କରିପାରୁଥିଲେ ।

ଏତିକି ଶୁଣିବା ମାତ୍ରେ ମୋର ଆନନ୍ଦର ସୀମା ରହିଲା ନାହିଁ । 'ଅଗ୍ନିବିପ୍ରାତ', ବୋଲି ମୁଁ ସ୍ଥାନ କାଳ ପାତ୍ର ଭୁଲି ଚିତ୍କାର କରି ଉଠିଲି ଖୁସିରେ । ଶୁଦ୍ଧବ୍ରତ ଅନେକ ସମୟ ମୌନ ରହିବା ପରେ ମୋତେ କହିଲା 'ପ୍ରଭୁ ! ଆପଣଙ୍କ ଅପାର ଲୀଳା ବୁଝିବା ପାଇଁ ମୋର ସାମର୍ଥ୍ୟ ନାହିଁ । ଏବେ ମୋ ପ୍ରତି କ'ଣ ଆଜ୍ଞା ଦେଉଛନ୍ତି ଦିଅନ୍ତୁ ।'

ମୁଁ କହିଲି - 'ତୁମେ ତ ଇକ୍ଷ୍ଵାକୁ ବଂଶ କଥା କହିଲ । ଯାଦବଙ୍କ ସଂପର୍କରେ ମୁଚୁକୁନ୍ଦଙ୍କୁ କିଛି ସୂଚନା ଦେଲକି ? ଶୁଦ୍ଧବ୍ରତ କହିଲା - 'ବ୍ରାହ୍ମ ମୁହୂର୍ତ୍ତରେ ସେ ଆଖି ଖୋଲିବା ମାତ୍ରେ ମୁଁ ପ୍ରଭୁ ରାମଚନ୍ଦ୍ରଙ୍କର ନାମ କୀର୍ତ୍ତନ କରିବାକୁ ଲାଗିଲି । ସେ ଅଭିଭୂତ ହୋଇଗଲେ । ତାପରେ କଂସ ଅତ୍ୟାଚାର ଠାରୁ ଏ ଯାବତ୍ ସମସ୍ତ ଘଟଣା ବର୍ଣ୍ଣନା କଲି । ସେ ମୋତେ ପ୍ରଶ୍ନ କଲେ ତାଙ୍କ ଠାରୁ ଆପଣ କି ପ୍ରକାର ସାହାଯ୍ୟ ଆଶା କରନ୍ତି ?'

ମୁଁ ପୁନଶ୍ଚ ମନ୍ତ୍ରୋଚ୍ଚାରଣ ଭଳି କହିଲି - 'ଅଗ୍ନିବିପ୍ରାତ' । କେବଳ ଅଗ୍ନିବିପ୍ରାତ ହିଁ ଆଶାକରେ । ତା'ମଧ୍ୟ ଯଥାସମୟରେ ଶୁଦ୍ଧବ୍ରତ ! ତୁମେ ପରିଶ୍ରାନ୍ତ ମୁଁ ଜାଣେ । ତଥାପି ତୁମେ ଏଇ ରାତିରେ ଯାଅ । ଠିକ୍ ବ୍ରାହ୍ମ ମୁହୂର୍ତ୍ତରେ ମୁଚୁକୁନ୍ଦଙ୍କୁ ସାକ୍ଷାତ କରି କହିବ ଆସନ୍ତା କାଲି ଯିଏ ତାଙ୍କ ନିଦ୍ରା ଭଂଗ କରିବ ତାର ଯେମିତି ଅଗ୍ନିବିପ୍ରାତରେ ମୃତ୍ୟୁ ହୁଏ । ବାସ୍ ଏତିକି ସହଯୋଗ ମୁଁ କାମନା କରିଛି ବୋଲି ହିଁ ଦେଖ । ବ୍ରାହ୍ମ ମୁହୂର୍ତ୍ତ ପରେ ମୁଚୁକୁନ୍ଦ ପୁଣି ନିଦ୍ରାଭିଭୂତ ହୋଇଯିବେ । ତୁମେ ଶୀଘ୍ର ଯାଅ ଏତିକି ସମ୍ବାଦ ତାଙ୍କୁ ଦେଇଦିଅ ବନ୍ଧୁ ।'

ଶୁଦ୍ଧବ୍ରତ ଘୋଡ଼ା ଝପଟାଇ ଦେଲା । ମୁଁ ତା'ର ଯିବା ବାଟକୁ ଚାହିଁ ରହିଲି । ରାତ୍ରିର ବୟସ କ୍ରମଶଃ ବୃଦ୍ଧି ପାଉଥିଲା ।

ବ୍ରାହ୍ମ ମୁହୂର୍ତ୍ତରୁ ଯାତ୍ରା ଆରମ୍ଭ ହୋଇଗଲା । ରାଜା ଉଗ୍ରସେନ ନିର୍ଦ୍ଦେଶ ଦେଇଥିଲେ ସ୍ତ୍ରୀ, ବାଳକ, ବୃଦ୍ଧ ଓ ଅପାରଗ ବ୍ୟକ୍ତିଙ୍କର ଯେମିତି କୌଣସି ଅସୁବିଧା ନହୁଏ । ମଧ୍ୟାହ୍ନ ସମୟରେ ଓ ସଂଧ୍ୟାପରେ ସେମାନଙ୍କର ବିଶ୍ରାମ ନେବାର ବ୍ୟବସ୍ଥା ହୋଇଥାଏ । ଗଜ, ହୟ, ରଥ ସହ ପ୍ରଚୁର ଗୋ-ଶକଟ ଯାନ ଓ ଗୋ-ଧନର ବିରାଟ ଶୋଭାଯାତ୍ରା, ପ୍ରଚୁର ଖାଦ୍ୟସାମଗ୍ରୀ, ପୁଣି ଏସବୁର ସୁରକ୍ଷା ନିମିତ୍ତ ସଶସ୍ତ୍ର ଯୋଦ୍ଧା- ସବୁଥିବା ସତ୍ତ୍ୱେ

ମଥୁରାବାସୀଙ୍କ ମନରେ ଯେମିତି ସରାଗ ନଥାଏ । ପଥଧାରର ପକ୍ୱ ଯବ କ୍ଷେତ, ରସାଳ ଆଖୁ କ୍ଷେତ, ଗହମ କ୍ଷେତ ଏସବୁକୁ ଦେଖିବା ମାତ୍ରେ ସେମାନେ ଅଧିକ ବିଷର୍ଣ୍ଣ ଦିଶୁଥା'ନ୍ତି । ଫସଲ ଅମଳ ପର୍ଯ୍ୟନ୍ତ ହୁଏତ ଏ ଯାତ୍ରାକୁ ମୁଁ ସ୍ଥଗିତ ରଖିପାରିଥା'ନ୍ତି; କିନ୍ତୁ ତା'ଦ୍ୱାରା ମୋର ଉଦ୍ଦେଶ୍ୟ ସିଦ୍ଧି ହୋଇନଥା'ନ୍ତା । ମୁଁ ଗୁପ୍ତଚରଠାରୁ ସମ୍ବାଦ ପାଇଥିଲି ଯେ, ଜରାସନ୍ଧ ତା'ର ଯବନ ମିତ୍ର କାଳଯବନର ସାହାଯ୍ୟପ୍ରାର୍ଥୀ । କାଳଯବନ ଜରାସନ୍ଧ ନିକଟରେ ଅଂଗୀକାର ବଦ୍ଧ ହୋଇଛି ଭରତଖଣ୍ଡର ଉତ୍ତରାଖଣ୍ଡକୁ ସଂପୂର୍ଣ୍ଣ ବିଧ୍ୱସ୍ତ କରିଦେବ । ମୁଁ ତେଣୁ ସ୍ଥିର କରିଥିଲି ମଥୁରାବାସୀ ଏଭଳି ସମୟରେ ସ୍ଥାନାନ୍ତରିତ ହେବେ ଯାହାକି ଫସଲ ଅମଳର ସମୟ । ଅଥଚ ଫସଲ କାଟିବା ପୂର୍ବରୁ ସାରାବର୍ଷର ରକ୍ତ ସ୍ୱେଦ ନିଗିଡ଼ା ସଂପଦକୁ ବର୍ଜନ କରି ସେମାନେ ଅନ୍ୟତ୍ର ଚାଲିଯିବେ । ଯାହା ଦେଖିବା ମାତ୍ରେ କାଳଯବନର ବିଶ୍ୱାସ ବଦ୍ଧମୂଳ ହେବ ଯେ ମଥୁରାବାସୀ ପ୍ରକୃତରେ ଭୟଭୀତ ହୋଇ ପଳାୟନ କରିଛନ୍ତି । ସେ ସେମାନଙ୍କୁ ଅଧିକ ଭୟଭୀତ କରାଇବା ପାଇଁ ସେମାନଙ୍କର ପଶ୍ଚାତ୍‌ଧାବନ କରିବ । ବିଶେଷତଃ ତା'ର ସମସ୍ତ ଆକ୍ରୋଶ ମୋରି ଉପରେ କେନ୍ଦ୍ରୀଭୂତ । ସେ ମୋର ହିଁ ପଶ୍ଚାତ୍‌ଧାବନ କରିବ । ମୁଁ ମଧ୍ୟ ଭୟଭୀତ ହେବାଭଳି ଛଳନା କରିବି ଓ ଜୀବନ ବଞ୍ଚାଇବାର ଅଭିନୟରେ ଆଗେ ଆଗେ ଧାଇଁ ଯିବି ସେଇ ନିର୍ଜନ ଗୁମ୍ଫା ନିକଟକୁ, ଯାହା କାଳଯବନର ମୃତ୍ୟୁର ଗହ୍ୱର ଭାବେ ପୂର୍ବରୁ ବିଧି ନିର୍ଦ୍ଦିଷ୍ଟ । ମଥୁରାବାସୀ ଫସଲ କଥା ଚିନ୍ତା କରୁଥିଲେ, ମୁଁ କିନ୍ତୁ ସେମାନଙ୍କର ନିରାପତ୍ତା କଥା ଚିନ୍ତା କରୁଥିଲି ।

ଉତ୍ତରାଖଣ୍ଡର ସୀମାନ୍ତରେ ରାତ୍ରୀ ଯାପନର ବ୍ୟବସ୍ଥା ହୋଇଥିଲା । ସେହିଠାରୁ ଗୋଟିଏ ରାସ୍ତା ସମୁଦ୍ର ତଟବର୍ତ୍ତୀ ଉତ୍ତର ପଶ୍ଚିମ ଦିଗକୁ ତଥା ସୌରାଷ୍ଟ୍ରକୁ ଲମ୍ବିଯାଇଛି । ଆଉ ଗୋଟିଏ ରାସ୍ତା ରାଜର୍ଷି ମୁଚୁକୁନ୍ଦଙ୍କ ଆବାସସ୍ଥଳୀ ଘଞ୍ଚ ଅରଣ୍ୟ ଭିତରେ ନିଶ୍ଚିହ୍ନ ହୋଇଯାଇଛି । ପୂର୍ବରାତିରୁ ଖବର ମିଳି ସାରିଥିଲା କାଳଯବନ ମଗଧରୁ ଅଳ୍ପକେତେକ ସୈନ୍ୟସହ ଯାତ୍ରା କରି ଆମ୍ଭମାନଙ୍କର ଅତିନିକଟ ହୋଇଗଲାଣି । ସୁତରାଂ ରାତି ପାହିବା ପୂର୍ବରୁ ମଥୁରା ବାହିନୀକୁ ମୁଁ ସୌରାଷ୍ଟ୍ର ଉଦ୍ଦେଶ୍ୟରେ ପଠାଇ ଦେଇଥିଲି । ଶେଷକୁ କେବଳ ମୁଁ ଓ ଜ୍ୟେଷ୍ଠଭ୍ରାତା ରହି ଯାଇଥିଲୁ । ମୁଁ ଜାଣିଥିଲି ଜ୍ୟେଷ୍ଠଭ୍ରାତା ମୋତେ ନନେଲେ ଯିବେନାହିଁ ଏବଂ ମୁଁ ଜାଣିଶୁଣି ବିଳମ୍ବ କରୁଥିଲି ।

କାଳଯବନର ବୀରବାଦ୍ୟ ଶୁଣିବାମାତ୍ରେ ଜ୍ୟେଷ୍ଠଭ୍ରାତା ମୋ ନିକଟକୁ ଆସିଲେ । ସେତେବେଳକୁ ମୁଁ ଗୋଟିଏ ବୃକ୍ଷଶାଖାରେ ବସି ନଟବର କୃଷ୍ଣ ବେଶରେ ନିଜକୁ ସଜାଉଥିଲି । ଶିରରେ ମୟୂର ଚନ୍ଦ୍ରିକା ସହ ମୁକ୍ତାମାଳ, କର୍ଣ୍ଣରେ ମକର କୁଣ୍ଡଳ, କଟୀ ତଟରେ କିଙ୍କିଣୀ, ପାଦରେ ବାଙ୍କେଣୀ ନୁପୂର । ବଡ଼ଭାଇଙ୍କୁ ଦେଖିବାମାତ୍ରେ ମୁଗ୍ଧଭାବେ ତାଙ୍କୁ ଚାହିଁ ହସିଦେଲି । ମୋତେ ଦେଖି ତାଙ୍କ ବିସ୍ମୟର ସୀମା ରହିଲା ନାହିଁ । ସେ ମୋର ଆପାଦ ମସ୍ତକ ନିରୀକ୍ଷଣ

କଲେ । ତା'ପରେ କହିଲେ- 'ବୀରବାଦ୍ୟର ଜବାବ ଅସ୍ତ୍ରର ଝନତ୍କାରରେ ଦିଆଯାଏ କାହ୍ନୁ, ସଂଗୀତରେ ନୁହେଁ । ତୋର ଏ ନଟବର ବେଶ ଦେଖି ମନେ ହେଉଛି ତୁ ଯେମିତି ନାଚିବାକୁ ବାହାରିଚୁ ।'

ମୁଁ ସଶବ୍ଦରେ ହସି ଉଠିଲି, କହିଲି- 'ଉଁ ହୁଁ ! ନାଚିବାକୁ ନୁହେଁ ବଡ଼ଭାଇ, ନଚେଇବାକୁ ବାହାରିଚି । ତୁମେ ଖାଲି ଦେଖ ।'

ସେ ନିର୍ବାକ ବିସ୍ମୟରେ ମୋତେ ଚାହିଁ ରହିଲେ । ମୁଁ କହିଲି- 'କିଏ ଜାଣେ ! ଆଉ କେତେଥର ବେଶ ବଦଳେଇବାକୁ ପଡ଼ିବ । ନିଖୁଣ ଅଭିନୟର କଳା ପ୍ରଦର୍ଶନ ଦାୟିତ୍ୱ ମୋର ବଡ଼ ଭାଇ ! ଏଇ ଦେଖ କାଳଯବନ ରଥର ଛତ୍ର ପରିଦୃଷ୍ଟ ହେଲାଣି । ସେ ନିକଟତର ହେବାମାତ୍ରେ ତୁମେ କେବଳ ମୋ ନାମ ଧରି ଡାକିବ !'

ବଡ଼ଭାଇଙ୍କ ଦୃଷ୍ଟି ଆହୁରି ବିସ୍ମୟାଚ୍ଛନ୍ନ ହୋଇ ଉଠିଲା ।

କୃଷ୍ଣ ! କୃଷ୍ଣ !! କୃଷ୍ଣ !!!

ନିର୍ଜନ ବନଭୂମିରେ ଜ୍ୟେଷ୍ଠଭ୍ରାତାଙ୍କର ମନ୍ଦ୍ର ସ୍ୱର ପ୍ରତିଧ୍ୱନିତ ହେବାକୁ ଲାଗିଲା ଓ ମୁଁ ଆଗକୁ ଆଗକୁ ଧାଇଁବାକୁ ଲାଗିଲି । ମୋ ପାଦର ବାଙ୍କେଣି ନୁପୂର ସଶବ୍ଦରେ ମୋ ଗତିପଥକୁ ସ୍ପଷ୍ଟ କରିବାରେ ଲାଗିଲା । କାଳଯବନର ରଥ ସେତେବେଳକୁ ମୋତେ ଅନୁସରଣ କରିବାକୁ ଲାଗିଥିଲା । କାଳଯବନ ଅଟ୍ଟହାସ କରିଉଠିଲା- 'ରହ କୃଷ୍ଣ ! ମଗଧ ନରେଶଠାରୁ ସବୁ ଶୁଣିବାପରେ ମୁଁ ଭାବିଥିଲି କୌଣସି ବୀର ପୁରୁଷକୁ ଭେଟିବି, ମୋର ଏ ତୃଷିତ ଖଡ୍ଗ ବିଜିତ ବୀରର ଶୋଣିତ ପାନ କରିବ, ମାତ୍ର ମୁଁ ଦେଖୁଚି ମୋର ପ୍ରତିପକ୍ଷ ଏକ ନିରସ୍ତ୍ର ଅସହାୟ ବାଳକ ? ଯିଏ ପ୍ରାଣ ଭୟରେ ଅରଣ୍ୟ ପଥରେ ଆତ୍ମଗୋପନ ଉଦ୍ଦେଶ୍ୟରେ ଧାଇଁଛି ? ତଥାପି.... ଏଇ ବାଳକ ଯଦି ମଗଧ ନରେଶର ଶତ୍ରୁ ତେବେ ଏହାକୁ ସଶରୀରେ ବନ୍ଦୀ କରିନେବା ମୋର ଉଚିତ କର୍ତ୍ତବ୍ୟ ହେବ ।'

ବାସ୍ ଏତିକି କହି ରଥରୁ ଅବତରଣ କଲା ଓ ତାର ସୈନ୍ୟସାମନ୍ତଙ୍କୁ ସେହିଠାରେ ଅପେକ୍ଷା କରିବାକୁ ନିର୍ଦ୍ଦେଶ ଦେଇ କହିଲା- 'ବିନା ରକ୍ତପାତରେ ଆମେ ଯୁଦ୍ଧ ଜୟ କରି ସାରିଲେଣି । ମଥୁରା ନଗର ସମ୍ପୂର୍ଣ୍ଣ ଜନଶୂନ୍ୟ । ଏଭଳି ଅଭାବିତ ଯୁଦ୍ଧର ଅଭିଳାଷୀ ମୁଁ ନଥିଲି । ତୁମ୍ଭେମାନେ ମଗଧ ଫେରିଯାଇ ମଗଧ ନରେଶଙ୍କୁ ସନ୍ଦେଶ ଦିଅ ମୁଁ ଯଥାଶୀଘ୍ର ତାଙ୍କର ଶତ୍ରୁ କୃଷ୍ଣ ବଳରାମଙ୍କୁ ବନ୍ଦୀ କରି ତାଙ୍କ ନିକଟରେ ପହଞ୍ଚିବି ।'

ସୈନ୍ୟମାନଙ୍କ ସହ ତା'ର ଏଇ ବାର୍ତ୍ତାଳାପ ଭିତରେ ମୁଁ ଏକ ବୃଦ୍ଧର ବେଶ ଧାରଣ କରିଥିଲି । ମୋର ପୀତ ଉତ୍ତରୀୟରୁ ସେ ମୋତେ ଠିକ୍ ଚିହ୍ନିପାରିଲା ଓ ପ୍ରବଳ ହାସ୍ୟାବେଗକୁ

ସମ୍ବରଣ କରୁ କରୁ କହିଲା- 'ଆରେ ନନ୍ଦସୁତ ! ତୁ ଯେତେ ବେଶ ବଦଳେଇଲେ ବି ମୋ ଆଖିରେ ଧୂଳି ଦେଇପାରିବୁ ନାହିଁ । ମୁଁ ତୋତେ ନିଶ୍ଚୟ ବନ୍ଦୀ କରିନେବି ।'

ନିର୍ଜନ ବନଭୂମିର ବିମୁକ୍ତ ପଥଧାର । ଉଭୟ ପାର୍ଶ୍ୱରେ ଘଞ୍ଚ ସବୁଜିମା କ୍ରମଶଃ ଘଞ୍ଚ ହେଉଥିଲା । ମୋ ସହିତ ଜ୍ୟେଷ୍ଠଭ୍ରାତା ମଧ୍ୟ ଦ୍ରୁତଗତିରେ ଧାବିତ ହେଉ ହେଉ ପ୍ରଶ୍ନ କରୁଥିଲେ- 'ଆରେ କାହ୍ନୁ ! ତୋର ରୀତି ନୀତି କିଛି ବି ବୁଝି ହେଉନାହିଁ । କେବେହେଲେ ନିଜକୁ ସ୍ପଷ୍ଟ କଲୁନାହିଁ ? କେବଳ ଅସ୍ପଷ୍ଟତା, କେବଳ ରହସ୍ୟ ଭିତରେ ମୋତେ ଚିରକାଳ ବାନ୍ଧି ରଖୁଚୁ କାହିଁକି ?'

ମୁଁ କୌଣସି ଉତ୍ତର ଦେଲି ନାହିଁ । ମନେ ମନେ କହିଲି- 'ଏଇ ଅଜ୍ଞାତ ରହସ୍ୟ ଟିକକ ହିଁ ତ ଜୀବନର ସ୍ୱାଦ ବଢ଼ାଇ !'

କାଳଯବନ ପାଇଁ ପଦଯାତ୍ରା ନିଶ୍ଚିତ କଷ୍ଟଦାୟକ । ତଥାପି ସେ ଉର୍ଦ୍ଧ୍ୱଶ୍ୱାସରେ ମୋର ପଶ୍ଚାଦ୍ ଧାବନ କରୁଥାଏ । କଣ୍ଟକିତ ପଥରେ ମୋର ପଦତଳ ମଧ୍ୟ କ୍ଷତବିକ୍ଷତ ରକ୍ତାକ୍ତ ହୋଇଯାଇଥାଏ । ଗୁମ୍ଫାର ଦ୍ୱାରଦେଶରେ ଥକି ପଡ଼ିବା ଭଳି ମୁଁ ବସିପଡ଼ିଲି, ପାଦରୁ ନୂପୁର ଖୋଲି ହାତରେ ଧରିଲି । ସେହି ଗୁମ୍ଫାରେ ମୁଚୁକୁନ୍ଦ ବିଶ୍ରାମ ନେଉଥା'ନ୍ତି । ନୂପୁର ଶବ୍ଦରେ ତାଙ୍କର ନିଦ୍ରାଭଙ୍ଗ ନହେଉ ଏହାହିଁ ଥିଲା ମୋର ଅଭିଳାଷ । ନିଶବ୍ଦରେ ଗୁମ୍ଫା ଭିତରକୁ ପ୍ରବେଶ କଲି । ଗୁମ୍ଫାଦ୍ୱାରରେ ମୋର ଛିନ୍ନ ଉତ୍ତରୀୟକୁ ଫିଙ୍ଗିଦେଲି । ଗୁମ୍ଫାର ଏକ ଅନ୍ଧକାରାଚ୍ଛନ୍ନ କୋଣରେ ଶୁଦ୍ଧବ୍ରତ ମୋତେ ଅପେକ୍ଷା କରିଥିଲା । ମୋତେ ଦେଖୁ ଦେଖୁ କହିଲା- 'ସମସ୍ତ ବ୍ୟବସ୍ଥା ସରିଛି ।'

ମୁଁ ନୀରବରେ ସମ୍ମତି ଜଣାଇ ପାଦର ନୂପୁର ପଟେ ମୁଚୁକୁନ୍ଦଙ୍କ ବିଶ୍ରାମସ୍ଥଳୀ ନିକଟରେ ଧୀରେ ପକାଇଦେଲି ଓ ଶୁଦ୍ଧବ୍ରତ ପାଖକୁ ଫେରିଆସି ବଡ଼ଭାଇ, ମୁଁ ଓ ଶୁଦ୍ଧବ୍ରତ ସେହି ଅନ୍ଧକାର କୋଣରେ ଚୁପ୍‌ଚାପ୍ ଠିଆହୋଇ ରହିଲୁ ପରିଣତି ଅପେକ୍ଷାରେ । କାଳଯବନ ମୋର ଛିନ୍ନ ଉତ୍ତରୀୟକୁ ଦ୍ୱାରଦେଶରେ ଦେଖି ଖୁବ୍‌ଜୋର୍‌ରେ ଅଟ୍ଟହାସ୍ୟ କରିଉଠିଲା ଓ ଗୁମ୍ଫା ଭିତରକୁ ସଦର୍ପରେ ପ୍ରବେଶ କଲା । ସେଠାରେ ଜଟାଜୁଟ ଓ ଶ୍ମଶ୍ରୁ ମଣ୍ଡିତ ରାଜର୍ଷି ମୁଚୁକୁନ୍ଦ ଯୋଗନିଦ୍ରାର ମୁଦ୍ରାରେ ଶୟନ କରିଥିଲେ ଓ ତାଙ୍କ ପାଦତଳେ ମୋର ନୂପୁର ପଟେ ପଡ଼ିଥିଲା । ସେ ଦୃଶ୍ୟ ଦେଖିବା ମାତ୍ରେ କାଳଯବନ କ୍ରୋଧ ଜର୍ଜରିତ ସ୍ୱରରେ ଅନାବଶ୍ୟକ ଭାବେ ଚିତ୍କାର କରି କହିଉଠିଲା- 'ଆରେ ବହୁରୂପୀ ନନ୍ଦ ସୁତ ! ତୁ କେତେବେଳ ବାଳକ, କେତେବେଳେ ବୃଦ୍ଧ ପୁଣି କେତେବେଳେ ଋଷି ରୂପ ଧାରଣ କରୁଛୁ ! ମୁଁ କିନ୍ତୁ ତୋତେ ଠିକ୍ ଚିହ୍ନି ପାରୁଛି । ଆଜି ମୋ ହାତରୁ ତୋର ନିସ୍ତାର ନାହିଁ !'

ତା'ପରେ ଆଉ କିଛି ଶୁଭିଲା ନାହିଁ, କିଛି ଦିଶିଲା ନାହିଁ । କେବଳ ଏକ ତେଜସ୍ୱିୟ ଆଲୋକ ପୁଞ୍ଜ ବ୍ୟତୀତ । ଯେମିତି ଏକ ଅଗ୍ନି ଗୋଲକ କାଳଯବନର କାଳାନ୍ତକ ଭାବେ ମୁହୂର୍ତ୍ତକରେ ତାକୁ ମୁଠାଏ ପାଉଁଶରେ ପରିଣତ କରିଦେଲା । ତାର ସମସ୍ତ ଦମ୍ଭ, ଅହମିକା, ପରାକ୍ରମ ଭସ୍ମସାତ୍ ହୋଇ ଯାଇଥିଲା । ଜ୍ୟେଷ୍ଠଭ୍ରାତା, ମୁଁ ଓ ଶୁଦ୍ଧବ୍ରତ ଘଟଣାର ଆକସ୍ମିକତାରେ ଅଭିଭୂତ ହୋଇପଡ଼ିଥିଲୁ । ଦ୍ୱାରକାର ପଥ ନିଷ୍କଣ୍ଟକ ହୋଇ ଯାଇଥିଲା ।

## ।। ନବମ ଗ୍ରନ୍ଥି ମୋଚନ ।।

କାଳଯବନର ମୃତ୍ୟୁ ପରେ ଯାଦବ, ବୃଷ୍ଣି ଓ ଅନ୍ଧକମାନଙ୍କ ନିକଟରେ ମୋର ପ୍ରତିପତ୍ତି ଓ ପ୍ରାଧାନ୍ୟ ବହୁଗୁଣିତ ହୋଇ ଯାଇଥିଲା । ପରାକ୍ରମଶାଳୀ କାଳଯବନର ମୃତ୍ୟୁ ଜରାସନ୍ଧକୁ ମଧ୍ୟ କମ୍ ଆତଙ୍କିତ କରିନଥିଲା । ତାର ସମସ୍ତ ଦୃଢ଼ ମନୋବଳ ଭାଙ୍ଗିଯାଇଥିଲା । ମଥୁରାରୁ ଆସିଥିବା ସମସ୍ତ ବ୍ୟକ୍ତିଙ୍କୁ ଏକବର୍ଷ ପର୍ଯ୍ୟନ୍ତ ଖାଦ୍ୟ ସାମଗ୍ରୀ ଓ ସ୍ଥାୟୀ ବାସଗୃହ ରାଜକୋଷର ଅର୍ଥବ୍ୟୟରେ ଯୋଗାଇ ଦିଆଯାଇଥିଲା । ଯେଉଁ ନୂତନ ନଗରୀଟି ନିର୍ମିତ ହୋଇଥିଲା ତାର ନାମ ଥିଲା ଦ୍ୱାରିକା । ଗୋ-ଧନ ତ ମଥୁରାରୁ ଆମ ସାଂଗରେ ଆସିଥିଲେ । ଦ୍ୱାରକାର ଭୂମି ମଧ୍ୟ ଉର୍ବରା । ଚାରଣ ଭୂମିର ଅଭାବ ନଥିଲା । ସୁତରାଂ ଖୁବ୍ ଶୀଘ୍ର ଦ୍ୱାରିକା ଏକ ସମୃଦ୍ଧ ନଗରରେ ପରିଣତ ହୋଇଗଲା । ଯଦୁକୂଳ ଅକସ୍ମାତ୍ ଦିନେ ମୋତେ ଦ୍ୱାରକାଧୀଶ ଭାବେ ଘୋଷଣା ମଧ୍ୟ କରିଦେଲେ ସର୍ବସମ୍ମତି କ୍ରମେ । ମୋଠାରୁ ବହୁ ବିଜ୍ଞ, ପ୍ରବୀଣ ରାଜନୀତିଜ୍ଞ ଓ ବୟୋବୃଦ୍ଧ ବ୍ୟକ୍ତି ଥିବା ସତ୍ତ୍ୱେ ମୋତେ କାହିଁକି ଦ୍ୱାରକାଧୀଶ ଭାବେ ଅଭିଷିକ୍ତ କରାଗଲା ସେ ସମ୍ପର୍କରେ ଆପତ୍ତି ଉଠାଇଥିଲି, ମାତ୍ର ଯାଦବମାନଙ୍କର ଯୁକ୍ତି ଥିଲା, ରାଜ୍ୟ ପାଳନ କରିବାପାଇଁ ବୟସଟା ମୁଖ୍ୟ ସମସ୍ୟା ନୁହେଁ । ତା'ଛଡ଼ା ବୟୋବୃଦ୍ଧ ଗଣ ଉପଦେଷ୍ଟାର ଭୂମିକାରେ ରହି ପ୍ରାଣଚାଞ୍ଚଲ୍ୟ ପୂର୍ଣ୍ଣ, କାର୍ଯ୍ୟଦକ୍ଷ ଯୁବ ଶାସକକୁ ଉଚିତ ମାର୍ଗ ଦର୍ଶନ ଦେଇପାରିବେ । ଯୌବନ ହିଁ ଜୀବନର ମଧୁମାସ । ସମସ୍ତ ଗୁରୁତ୍ୱପୂର୍ଣ୍ଣ ସଦ୍‌କାର୍ଯ୍ୟର ଭିତ୍ତିପତନ ଏହି ସମୟରେ ହିଁ ହୋଇଥାଏ । ତେଣୁ ଯୁବକ କୃଷ୍ଣଙ୍କ ହାତରେ ଶାସନଦଣ୍ଡ ରହିଲେ କାହାରି ଆପତ୍ତି କରିବାର କିଛି ନାହିଁ ।

ଏକପକ୍ଷରେ ଶାସକର କଠୋରତା ଓ ଅନ୍ୟପକ୍ଷରେ ଅନୁରାଗ ମିଶ୍ରିତ ହୃଦ୍‌ବୃତ୍ତିର କୋମଳତା ମୋତେ ଦ୍ୱିଧା ବିଭକ୍ତ କରିଥିଲା । କେଜାଣି କାହିଁକି ଗୋଟାଏ ଦୃଶ୍ୟ ମୁଁ ଆଦୌ ଭୁଲି ପାରୁନଥିଲି । ଗୁରୁକୁଳରୁ ଫେରନ୍ତା ପଥରେ ବିଦର୍ଭ ନଗରୀର ସେହି ଯେଉଁ ଅଭାବିତ ଦୃଶ୍ୟଟି..! ଲୀଳା ସରରୋବରରେ ଜଳକ୍ରୀଡ଼ା କରୁଥିବା ସେହି ନବତରୁଣୀ ଗଣ, ତାଙ୍କ ମଧ୍ୟରେ ସବୁଠାରୁ ସମ୍ଭ୍ରାନ୍ତ, ଅଭିଜାତ ମନେହେଉଥିବା ତରୁଣୀ ଜଣକ ନିଶ୍ଚିତ ଭାବରେ ବିଦର୍ଭ

ରାଜନନ୍ଦିନୀ । ଆଷାଢ଼ କୃଷ୍ଣ ମେଘ ବର୍ଣ୍ଣର ପଟ୍ଟବସ୍ତ୍ର ପରିହିତା କନକ ବ୍ରତତୀ ସଦୃଶ ସେହି ଅସାମାନ୍ୟା ରୂପସୀ ରାଜନନ୍ଦିନୀ । ରଥର ଘର୍ଘର ନାଦରେ ମୁହୂର୍ତ୍ତକ ପାଇଁ ଗ୍ରୀବାଭାଂଗି ଲେଉଟି ଚାହିଁ ଦେଇଥିଲେ ମୋତେ, ବାତବିକ୍ଷୁବ୍ଧ ମୃଣାଳ ନାଡ଼ ସହ କନକ ପଦ୍ମଟିଏ ଯେପରି ! ଓଲଟ ପଦ୍ମ ଦଳ ସଦୃଶ ଦୁଇ ଆୟତ ନେତ୍ରରେ ଛାଇଢ଼ଙ୍କା ହ୍ରଦର ଅତଳ ଗଭୀରତା ଓ ନିବିଡ଼ତା । ଏକାକୀ ରହିଲେଇ ମୁଁ ଅନ୍ୟମନସ୍କ ହୋଇଯାଉଥିଲି ଏବଂ ଏକା ରହିବାକୁ ମୋତେ ଭଲ ଲାଗୁଥିଲା । ଏପରିକି ଉତ୍ସବ ଅନୁଷ୍ଠାନଠାରୁ ମଧ୍ୟ ମୁଁ ନିଜକୁ ଦୂରେଇ ରଖୁଥିଲି । ମୋର ଏ ପରିବର୍ତ୍ତନ ଜ୍ୟେଷ୍ଠଭ୍ରାତାଙ୍କ ଆଖିରେ ପଡ଼ିବା ସ୍ୱାଭାବିକ । ବିଶେଷତଃ ତାଙ୍କରି ବିବାହ ନିମିତ୍ତ ଦ୍ୱାରିକାରେ ଏଣେ ଉତ୍ସବର ଆୟୋଜନ । ଦ୍ୱାରାବତୀ ପୁରର ସମୀପବର୍ତ୍ତୀ ରୈବତକ ଖଣ୍ଡର ରାଜନନ୍ଦିନୀ ରେବତୀଙ୍କ ସହ ତାଙ୍କର ବିବାହ ଅନୁଷ୍ଠିତ ହୋଇଯାଇଥିଲା ।

ପୂଜ୍ୟା ରେବତୀ ଅତ୍ୟନ୍ତ ସୁନ୍ଦରୀ, ଦୀର୍ଘାଙ୍ଗୀ ତଥା ଅତ୍ୟଧିକ ଶାନ୍ତ ସ୍ୱଭାବ ବିଶିଷ୍ଟା ଥିଲେ । ତା’ ନହୋଇଥିଲେ କ୍ଷଣକୋପୀ ଜ୍ୟେଷ୍ଠଭ୍ରାତାଙ୍କ ସହ ମାନସିକ ଭାବସାମ୍ୟ ଆଉ କାହାର ବା ରହିଥା’ନ୍ତା ?

ଏହି ଉତ୍ସବ ଉପଲକ୍ଷେ ଆମର ସମସ୍ତ ଆତ୍ମୀୟ ପରିଜନ ଦ୍ୱାରକା ଆସିଥିଲେ । ମୋର ଦୁଇ ପିଉସୀଙ୍କ ମଧ୍ୟରୁ ଶ୍ରୁତଶ୍ରବା ଆସିଥିଲେ ଓ ତାଙ୍କଠାରୁ ଶୁଣିବାକୁ ପାଇଲି ତାଙ୍କ ନନ୍ଦନ ଶିଶୁପାଳ ମୋର ଜ୍ୟେଷ୍ଠଭ୍ରାତାଙ୍କ ବିବାହ ଉତ୍ସବରେ ଯୋଗଦେଇ ସାମାଜିକ କର୍ତ୍ତବ୍ୟ ପାଳନ ପରିବର୍ତ୍ତେ ତା’ର ବନ୍ଧୁ ବିଦର୍ଭ ରାଜତନୟ ରୁକ୍ମୀଙ୍କ ସହ ମୃଗୟା ବିନୋଦ ନିମିତ୍ତ ବିଦର୍ଭ ଯାତ୍ରା କରିଛି । ଏହା ମୋତେ ମର୍ମାହତ କରିଥିଲା । ମୋର ଅନ୍ୟ ପିଉସୀ ହସ୍ତିନାର ରାଣୀ କୁନ୍ତୀ ଯୋଗଦେଇ ପାରିନଥିଲେ । କାରଣ ଆଜନ୍ମ ଦୁଃଖିନୀ କୁନ୍ତୀଙ୍କର ମୁଣ୍ଡ ଉପରେ ସେତେବେଳକୁ ଆକାଶ ଭାଂଗି ପଡ଼ିଥିଲା । ପଣ୍ଡୁ ରାଜା ଶାପଗ୍ରସ୍ତ ହୋଇ ଇହଲୀଳା ସମ୍ବରଣ କରିଥିଲେ ଓ ପୀଉସୀ କୁନ୍ତୀ ତଥା ପଣ୍ଡୁସୁତ ମାନଙ୍କର ଶୋକ ପାଳନର ଅବଧି ଶେଷ ହୋଇନଥିଲା । ମୁଁ ତାଙ୍କୁ ସେ ପର୍ଯ୍ୟନ୍ତ ଦେଖି ନଥିଲେ ସୁଦ୍ଧା ମର୍ମେ ମର୍ମେ କେମିତି ଏକ ଅହେତୁକ ଆକର୍ଷଣ ଅନୁଭବ କରୁଥିଲି ସେମାନଙ୍କ ପାଇଁ, କଂସ ଅତ୍ୟାଚାରରେ ପ୍ରପୀଡ଼ିତ ମୋର ପିତାମାତା ଅନେକ ବର୍ଷ ଧରି କାରାରୁଦ୍ଧ ଅବସ୍ଥାରେ ଥିବାରୁ ପିଉସୀ କୁନ୍ତୀଙ୍କର କୌଣସି ଖବରା ଖବର ନେଇ ପାରିନଥିଲେ । ଯେତେବେଳେ କାରାମୁକ୍ତ ହେଲେ ଓ ନିଜର ସ୍ନେହମୟୀ ଭଗିନୀ କୁନ୍ତୀଙ୍କ ସହ ସଂପର୍କ ସ୍ଥାପନ କରିବାକୁ ଚାହିଁଲେ ସେତେବେଳକୁ ପଣ୍ଡୁ ପତ୍ନୀ ଓ ପଣ୍ଡୁ ସୁତଗଣ କାଳର କୂଟ ଚକ୍ରାନ୍ତରେ ବହୁ ବିପର୍ଯ୍ୟୟର ସମ୍ମୁଖୀନ ହୋଇସାରିଛନ୍ତି । ସେମାନଙ୍କ ଦୃଷ୍ଟି ଅନ୍ତରାଳରେ କୌରବ ମାନଙ୍କର ଲୋଭ ଓ ଲାଳସାର କୁତ୍ସିତ ନାଟକ ମଧ୍ୟ ଆରମ୍ଭ ହୋଇଯାଇଛି । ଦିନେ ଦୂତ ମୁଖରୁ ଏକ ଚମକପ୍ରଦ ସମ୍ବାଦ ଶୁଣିବାକୁ ମିଳିଲା । କୁନ୍ତିଙ୍କର

ତିନୋଟି ପୁତ୍ର ଓ ମାଦ୍ରୀଙ୍କର ଦୁଇ ଯମଜ ସନ୍ତାନ ଏସମସ୍ତେ କୁନ୍ତୀଙ୍କ ଦ୍ୱାରାହିଁ ପ୍ରତିପାଳିତ ହେଉଥିଲେ । ଏମାନେ ସ୍ୱଭାବତଃ ସରଳ ଓ ଅମାୟିକ ଥିଲେ । ଏକଦା କୁରୁପତି ଦୁର୍ଯ୍ୟୋଧନ ଓ ଦୁଃଶାସନ ପ୍ରଭୃତି ପଞ୍ଚୁପାଣ୍ଡବଙ୍କ ସହ ହସ୍ତିନା ଉପକଣ୍ଠରେ ଅବସ୍ଥିତ ଗଂଗା ତୀରବର୍ତ୍ତୀ ପ୍ରମାଣ କୋଟୀ ଉଦ୍ୟାନକୁ ବଣଭୋଜୀ କରିବା ଉଦ୍ଦେଶ୍ୟରେ ଗଲେ । ପୂର୍ବ ପରିକଳ୍ପିତ ଯୋଜନା ଅନୁଯାୟୀ ଖାଦ୍ୟରସିକ ଦ୍ୱିତୀୟ ପାଣ୍ଡବ ବୃକୋଦରଙ୍କୁ କୌରବଭ୍ରାତା ଗଣ ବିଷମୋଦକ ଖୁଆଇ ହାତଗୋଡ଼ ବାନ୍ଧି ସଂଜ୍ଞାଲୁପ୍ତ ଅବସ୍ଥାରେ ତାଙ୍କୁ ଗଂଗା ବକ୍ଷରେ ଭସାଇ ଦେଇଥିଲେ । ଏକଥା ଶୁଣୁ ଶୁଣୁ ଆମ ପରିବାରର ପ୍ରତ୍ୟେକ ସଦସ୍ୟ ଭୟରେ ଶିହରି ଉଠିଥିଲେ । ପିତା କିନ୍ତୁ କହିଲେ - 'ଶୁଣିଛି ଦ୍ୱିତୀୟ ପାଣ୍ଡବ ମହାବଳ ବୀର୍ଯ୍ୟ ଶାଳୀ ? ଅତ୍ୟନ୍ତ ଶିଶୁ ଅବସ୍ଥାରେ ପଦାଘାତରେ ଶତଶୃଙ୍ଗ ଗିରିର ଏକ ଶୃଙ୍ଗକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରି ଦେଇଥିଲା, ଯେଉଁଥିପାଇଁ ଶତଶୃଙ୍ଗ ଗିରି......'

ପିତା ଆଉ କିଛି କହି ପାରିଲେ ନାହିଁ, ମୁଁ କହିଲି 'ଯେଉଁଥିପାଇଁ ଶତଶୃଙ୍ଗ ଗିରି ? କ'ଣ କଲେ ??' ଅନିଚ୍ଛାସତ୍ତ୍ୱେ ପିତା ସେଦିନ କହିଥିଲେ - 'ଶତଶୃଙ୍ଗଗିରି ତାଙ୍କୁ ଅଭିଶାପ ଦେଇଛନ୍ତି ଯେ, ଯେକୌଣସି ଯୁଦ୍ଧର ପ୍ରଥମ ପର୍ଯ୍ୟାୟରେ ତାଙ୍କର ପରାଜୟ ସୁନିଶ୍ଚିତ ।'

-'ଅର୍ଥାତ୍ ? ଅନ୍ତିମ ପର୍ଯ୍ୟାୟରେ ବିଜୟ ଅନିବାର୍ଯ୍ୟ ?'

ମୁଁ ସ୍ୱତଃ ପ୍ରବୃତ୍ତ ଭାବେ କହି ପକାଇଲି । ମାତା ଦେବକୀ ଯୁଦ୍ଧ, ବିପ୍ଳବ ପ୍ରଭୃତିର ଆଲୋଚନା ସୁଦ୍ଧା ଶୁଣିବାକୁ କୌଣସି ଦିନ ଭଲ ପା'ନ୍ତି ନାହିଁ । ସେ ତେଣୁ କହି ପକାଇଲେ - 'ସେ ସବୁ କଥା ଥାଉ । କାହାରି ସହ କୁନ୍ତୀ ନନ୍ଦନ ଗଣଙ୍କୁ ଯୁଦ୍ଧ କରିବାକୁ ନପଡୁ । ସେମାନେ କେବଳ ଦୀର୍ଘଜୀବୀ ହୋଇ ରହନ୍ତୁ ।'

ମୁଁ ମନେ ମନେ କହିଲି ନିଃଶବ୍ଦରେ - 'କିନ୍ତୁ ମା ! ଯୁଦ୍ଧହିଁ ଯେ ସେମାନଙ୍କର ଭବିତବ୍ୟ ! ସେମାନଙ୍କର ପରିଚୟ ପତ୍ର !! ସେମାନଙ୍କର ଯଶ କୀର୍ତ୍ତି, ଅମରତ୍ୱ ସବୁ କିଛି ଯେ ଏଇ ଯୁଦ୍ଧ ଉପରେ ନିର୍ଭର !'

ଦୂତ କହିଲେ - 'ମହାଭାଗ ! ଦ୍ୱିତୀୟ ପାଣ୍ଡବ ବଳବୀର୍ଯ୍ୟଶାଳୀ ବୋଲିତ ବିଷ ମୋଦକ ସୁଦ୍ଧା ଜୀର୍ଣ୍ଣ କରିଦେଇ ହସ୍ତିନା ଫେରି ଆସିଛନ୍ତି । ଶୁଣାଯାଏ ଜଳମଗ୍ନ ଅବସ୍ଥାରେ ସେ ନାଗଲୋକରେ ପହଞ୍ଚି ଥିଲେ । ନାଗଙ୍କର ଦଂଶନ ପ୍ରଭାବରେ ମୋଦକର ବିଷାକ୍ତ ପ୍ରଭାବ ନିଶ୍ଚିହ୍ନ ହୋଇଯାଇଥିଲା । ନାଗରାଜ କୁନ୍ତୀ ପୁତ୍ର ବୋଲି ଜାଣିବା ପରେ ତାଙ୍କୁ କୁଆଡ଼େ ଅମୃତ ପାନ କରିବାକୁ ଦେଇ ଅଧିକ ବଳବୀର୍ଯ୍ୟଶାଳୀ କରି ଲେଉଟାଇ ଦେଇଛନ୍ତି । କୁନ୍ତୀ ପୁତ୍ର ପୁଣି ସଂପର୍କରେ ନାଗରାଜଙ୍କର ଦୌହିତ୍ର । ସେଥିପାଇଁ ନାଗବଂଶରେ ଭୀମସେନ ଅଧିକ ଶ୍ରଦ୍ଧା ଭାଜନ ହୋଇ ଫେରି ଆସିଛନ୍ତି ।'

ଏଇସବୁ ଆଲୋଚନାରେ ଆମେ ବ୍ୟସ୍ତ ଥିବାବେଳେ ଗୁରୁପୁତ୍ର ପୁନର୍ଦତ୍ତ ଆସି ପହଞ୍ଚିଲେ । ତାଙ୍କୁ ଦେଖିବା ମାତ୍ରେ ମୋର ଦକ୍ଷିଣସ୍କନ୍ଧ ଘନ ଘନ ସ୍ଫୁରିତ ହେବାକୁ ଲାଗିଲା । ସେ ବଡ଼ ବିବ୍ରତ ଦିଶୁଥିଲେ । ମୁଁ ତାଙ୍କୁ ପ୍ରଶ୍ନ କଲି - 'ଅବନ୍ତିରୁ ଆସିଲ ନିଶ୍ଚୟ ? ସେ କହିଲେ - 'ନା । ମୁଁ ସିଧା ବିଦର୍ଭରୁ ଆସିଛି ମାଧବ ।' -'ବିଦର୍ଭରୁ ?' ମୋ ସାରା ଦେହରେ ଯେମିତି ଏକ ଶୀତଳ ସୀତ୍କାର ପ୍ରବାହିତ ହୋଇଗଲା । ଯଦିଓ ମୁଁ ଜାଣିଥିଲି ବିଦର୍ଭ ରାଜତନୟାଙ୍କୁ ପୁନର୍ଦତ୍ତ ଭଗିନୀ ନ୍ୟାୟରେ ଅତ୍ୟଧିକ ସ୍ନେହ କରନ୍ତି । ରାଜକନ୍ୟାଙ୍କର ସେ ଶିକ୍ଷାଗୁରୁ ମଧ୍ୟ । ବିଦର୍ଭ ରାଜଭବନରେ ସେଥିପାଇଁ ତାଙ୍କର ଅବାଧ ପ୍ରବେଶ । ତଥାପି ସେ 'ବିଦର୍ଭ' ଶବ୍ଦଟିକୁ ଯେଉଁଭଳି ଭାବରେ ଉଚ୍ଚାରଣ କଲେ ସେଥିରୁ ମନେ ହେଲା ଯେମିତି ମୋତେହିଁ କିଛି ଶୁଣେଇବା ପାଇଁ ସେ ଆସିଛନ୍ତି । ମୁଁ ତାଙ୍କ କାନ୍ଧରେ ହାତରଖି ତାଙ୍କୁ ସିଧା ସଳଖ ଉଦ୍ୟାନ ଭିତରକୁ ନେଇ ଆସିଲି । ସହକାର ଶାଖାରେ ଶାଖାରେ ଚୂତ ମଂଜରୀ ମୁକୁଳିତ ହୋଇଥାଏ । ଶେଷ ଚୈତ୍ରର ଉତଳା ପବନ ସହ ତାଳ ଦେଇ ମଂଜରିତ ଆମ୍ର ଶାଖାରେ ପ୍ରମତ୍ତ କୋକିଳର ଅଶାନ୍ତ କୁହୂସ୍ୱନ । ସେହି ଛାୟାବେଷ୍ଟିତ ସହକାର ଦ୍ରୁମ ତଳେ ଆମେ ଦୁହେଁ ବସି ପଡ଼ିଲୁ । ପୁନର୍ଦତ୍ତ ବିନାଭୂମିକାରେ କହିଲେ - 'ବିଦର୍ଭ ରାଜନନ୍ଦିନୀଙ୍କ ଠାରୁ ତୁମ ପାଇଁ ସନ୍ତକ ଟିଏ ଆଣିଛି ମାଧବ ! ଆଉ ଆଣିଛି ଗୋଟିଏ ପ୍ରେମ ପତ୍ର !'

ମୁଁ ହତବାକ୍ ହୋଇଗଲି । ଯାହା ସହିତ ଥରଟିଏ ସାକ୍ଷାତ ସୁଦ୍ଧା ହୋଇନାହିଁ ସେ ଏପରି ପ୍ରେମ ପତ୍ର ଦେଇ ପାରେ ଜଣେ ଅପରିଚିତ ନିକଟକୁ ?

ପୁନର୍ଦତ୍ତ ନିଜ ଝୁଲାମୁଣି ଭିତରୁ ସଯତ୍ନରେ ସାଇତା ହୋଇଥିବା ଗୋଟିଏ ଶୁଷ୍କମାଳତୀ ଫୁଲ କାଢ଼ି ମୋ' ହାତରେ ଧରାଇ ଦେଇ କହିଲେ - 'ମୋର ଭଗ୍ନିସମା ରୁକ୍ମିଣୀ ଏଇ ସନ୍ତକଟି ତୁମ ନିକଟକୁ ପଠାଇଛନ୍ତି ଏବଂ ଏହି ଚିଟାଉଟି !'

ଶୁଷ୍କମାଳତୀ ଫୁଲଟିକୁ ଧରିବା ମାତ୍ରେ ମୋର ମନେ ହେଲା ବିଦର୍ଭ ନନ୍ଦିନୀ ଏଇଭଳି ଶୁଷ୍କ, ବିରସ, ବିଷର୍ଣ୍ଣଭାବେ ହୁଏତ କାଳଯାପନ କରୁଛନ୍ତି । ଏ ଶୁଖିଲା ଫୁଲଟି ତାହାରି ପ୍ରତିରୂପ । ମାତ୍ର ଚିଟାଉ ବୋଲି ପୁନର୍ଦତ୍ତ ଯାହା ମୋ ଆଖି ଆଗରେ ଟେକିଧରିଛନ୍ତି ତାହା ପ୍ରକୃତରେ ଚିଟାଉ ନୁହେଁ - ଚିତ୍ରପଟଟିଏ । ବିଦର୍ଭ ନନ୍ଦିନୀ ଚିତ୍ର ଶିଳ୍ପରେ ପାରଙ୍ଗମା ବୋଲି ଶୁଣିଥିଲି । ଏବେ ପ୍ରକୃତରେ ଚକ୍ଷୁ କର୍ଣ୍ଣର ବିବାଦ ଭଂଜନ ହେଲା । ସୁନ୍ଦର ଚିତ୍ରଟିଏ । ଚିତ୍ରଟି ଏକ ଅଶାନ୍ତ, ଉଦ୍‌ବେଳିତ ଅଥଚ ସୁଗଭୀର ସମୁଦ୍ରର । ସେଇ ସମୁଦ୍ର ବକ୍ଷରେ ଏକ ତରଣୀ ନିରୁଦ୍ଦେଶ୍ୟ ଭାବରେ ଭାସିଯାଉଛି, ଯେଉଁଥିରେ କାତ ନାହିଁ କିମ୍ବା ନାବିକ ନାହିଁ । ଚିତ୍ରପଟର ନିମ୍ନରେ ଲେଖାହୋଇଛି ଆଗାମୀ ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ । ବହୁ ସମୟ ସେ ଚିତ୍ରଟିକୁ ମୁଁ ନିରୀକ୍ଷଣ କଲି । ବହୁ ଶାସ୍ତ୍ରବିଦ୍ୟାରେ ଧୂରିଣା ବିଦୂଷୀ ବୈଦର୍ଭୀଙ୍କର ଏଚିତ୍ରଟିର ମର୍ମାର୍ଥ କ'ଣ

ହୋଇପାରେ ତାହା ଅନେକ ସମୟ ଚିନ୍ତା କଲି ଏବଂ ପୁନର୍ଦତ୍ତ ଧୈର୍ଯ୍ୟର ସହ ନୀରବରେ ମୋତେ ଅପେକ୍ଷା କଲେ ।

ମୁଁ ପ୍ରଶ୍ନ କଲି - 'ଏଚିତ୍ରପଟ୍ଟଟି ମୋତେ ହିଁ କେବଳ ଦେବାପାଇଁ ରାଜଜେମା ନିର୍ଦ୍ଦେଶ ଦେଇଥିଲେ ?'

ପୁନର୍ଦତ୍ତ କହିଲେ - 'ହଁ ମାଧବ ! ରାଜକୁମାରୀ ବାହାରକୁ ଖୁସି ଜଣା ପଡୁଥିଲେ ବି ମୁଁ ଜାଣେ ତାଙ୍କ ଛାତିଭିତରେ ଦୁଃଖର ପାହାଡ଼ ଜମା ହୋଇ ରହିଛି ।'

ମୁଁ ଅନ୍ୟମନସ୍କ ଭାବେ ପ୍ରଶ୍ନ କଲି - 'କ'ଣ ତାର କାରଣ ?' - 'ରାଜନନ୍ଦିନୀଙ୍କର ଜ୍ୟେଷ୍ଠଭ୍ରାତା ରୁକ୍ମୀ ।'

ପୁନର୍ଦତ୍ତ ଅବିଳମ୍ବେ ଉତ୍ତର ଦେଲେ । ମୁଁ କିଛି ପଚାରିବା ପୂର୍ବରୁ ସେ ପୁଣି କହିଲେ - 'ରାଜନନ୍ଦିନୀ ସର୍ବଗୁଣ ସଂପନ୍ନା । ଆର୍ଯ୍ୟାବର୍ତ୍ତର ସର୍ବଶ୍ରେଷ୍ଠ ରାଜପୁରୁଷ ତାଙ୍କୁ ପାଇଲେ ଧନ୍ୟ ହୋଇଯିବେ । ଅଥଚ ସେଭଳି ଏକ ଅସାମାନ୍ୟା ରମଣୀଙ୍କୁ ରୁକ୍ମୀ ଅପାତ୍ରରେ ଦାନ ଦେବାପାଇଁ ବଦ୍ଧ ପରିକର ? ପୁଣି ରାଜନନ୍ଦିନୀଙ୍କ ଇଛା ବିରୁଦ୍ଧରେ ।'

-'ଅପାତ୍ରରେ ?'ମୁଁ ପ୍ରଶ୍ନକଲି ଉଦାସୀନ ଭାବେ । ସେ କହିଲେ - 'ନୁହେଁତ ଆଉ କ'ଣ ? କାହିଁ ସର୍ବଗୁଣ ସଂପନ୍ନା ବିଦର୍ଭ ନନ୍ଦିନୀ ଆଉ କାହିଁ ଶ୍ରୁତଶ୍ରବା ନନ୍ଦନ ଶିଶୁପାଳ ?'

ଶିଶୁପାଳ !!! ମୋ ହୃଦୟରେ ଯେମିତି କିଏ ବିଷାକ୍ତ ତୀରଟାଏ ବିଦ୍ଧ କରିଦେଲା । ଶିଶୁପାଳର ମୋ ନିକଟରେ ଏକଶତ ଅପରାଧ ପୂର୍ଣ୍ଣ ନ ହେବା ପର୍ଯ୍ୟନ୍ତ ମୁଁ ତା'ର କୌଣସି କ୍ଷତି କରିବି ନାହିଁ ବୋଲି ପ୍ରତିଜ୍ଞା ବଦ୍ଧ । ଏହା ବାରମ୍ବାର ମୋର ମନେ ପଡ଼ିଲା । କିନ୍ତୁ ନିଷିଦ୍ଧ ପଥରେ ସେ ପାଦ ଦେଉଛି କାହିଁକି ? ମୁଁ କେବଳ ସେ ଚିତ୍ରପଟଟିକୁ ନିବିଷ୍ଟଭାବେ ଚାହିଁ ରହିଥାଏ, ପଚାରିଲି, 'ଶିଶୁପାଳ ସହ ରୁକ୍ମୀର ଏତେ ହୃଦ୍ୟତା ହେତୁ କ'ଣ କହିପାରିବ ବନ୍ଧୁ ?'

ପୁନର୍ଦତ୍ତ କହିଲେ - 'ରୁକ୍ମୀ ମଗଧ ନରେଶ ଜରାସନ୍ଧର ପଦଲେହନ କାରୀ ଚାଟୁକାର ମାଧବ ! ଆଉ ଶିଶୁପାଳ ଜରାସନ୍ଧର ବନ୍ଧୁ । ରୁକ୍ମୀ ବଡ଼ ବର୍ତ୍ତମାନ ସର୍ବସ୍ୱ, ସୁବିଧାବାଦୀ ଓ ସ୍ୱାର୍ଥପର ବ୍ୟକ୍ତି । ତା'ନିଜର ନିରାପତ୍ତା ନିମିତ୍ତ ସେ ବଳଶାଳୀ ମଗଧ ନରେଶକୁ ଏଇବାଟରେ ସନ୍ତୁଷ୍ଟ କରିବାକୁ ଚାହେଁ । ରାଜକନ୍ୟାଙ୍କୁ ଏକ ମହାର୍ଘ ଉପଢ଼ୌକନ ଭାବରେ ସେ ମଗଧ ନରେଶର ବନ୍ଧୁଙ୍କୁ ଅର୍ପଣ କରିବାକୁ ଇଚ୍ଛୁକ ।'

ନାରୀ ଏକ ପ୍ରାଣ ସତ୍ତା,ଏକ ଶକ୍ତିଶାଳୀ ଅସ୍ତିତ୍ୱ, ଏକ ଅମୋଘ ଶକ୍ତି - ମୋ ପାଇଁ ନାରୀର ଏଇସବୁ ପ୍ରକୃଷ୍ଟ ପରିଚୟ । ନାରୀକୁ ନିର୍ଜୀବ ଉପଢ଼ୌକନ ସାମଗ୍ରୀ ଭାବରେ

ଯେଉଁମାନେ କଳ୍ପନା କରନ୍ତି ମୋର ସେମାନଙ୍କ ପ୍ରତି ପ୍ରଚଣ୍ଡ ଘୃଣା । ମୁଁ କିନ୍ତୁ ସେସବୁ ବ୍ୟକ୍ତ କଲିନାହିଁ । କେବଳ କହିଲି, 'ରାଜଜେମା କ'ଣ ଇଛା କରନ୍ତି ?'

ପୁନର୍ଦତ୍ତ ଇତସ୍ତତଃ ହୋଇ କହିଲେ - 'ସେ କଥା ଯଦିଓ ସ୍ପଷ୍ଟ ଜାଣିନାହିଁ, ତେବେ ଏତିକି ଅନୁମାନ କରିପାରୁଛି ଯେ ଶିଶୁପାଳଙ୍କୁ ସେ ଆଦୌ ଚାହାନ୍ତି ନାହିଁ, କଂସ ଜୀବିତ ଥିବା ସମୟରେ ଧନୁଉତ୍ସବ ଦେଖିବା ପାଇଁ ସେ ରୁକ୍ମୀଙ୍କ ସହ ନିମନ୍ତ୍ରିତ ହୋଇ ମଥୁରା ଆସିଥିଲେ । ଧନୁଉତ୍ସବ ଯଦିଓ ଦେଖି ପାରିଲେ ନାହିଁ, କାରଣ ଉତ୍ସବର ଅବ୍ୟବହିତ ପୂର୍ବରୁ ଧନୁକୁ ତୁମେ ଭାଂଗି ଦେଇଥିଲ । ମାତ୍ର ସେଇ ସମୟରେ ସେ ତାଙ୍କର ହୃଦୟକୁ ଅର୍ଘ୍ୟରୂପେ ମଥୁରାରେ ଭେଟିଥିବା କୌଣସି ରାଜପୁରୁଷର ପାଦତଳେ ବାଢ଼ି ଦେଇଛନ୍ତି । ମୁଁ ସେ କଥା ନଜାଣିଲେବି ରୁକ୍ମୀ ଜାଣେ । ଆସନ୍ତା ଜ୍ୟେଷ୍ଠ ଶୁକ୍ଳ ଏକାଦଶୀରେ ଯଦିଓ ବିଦର୍ଭରେ ରୁକ୍ମିଣୀଙ୍କର ନାମମାତ୍ର ସ୍ୱୟଂବରର ଆୟୋଜନ ହେଉଛି, କିନ୍ତୁ ରୁକ୍ମିଣୀଙ୍କୁ ବାଧ୍ୟ କରାହୋଇଛି ସେ ଯେପରି ଶିଶୁପାଳ ବ୍ୟତୀତ ଅନ୍ୟ କାହା ଗଳାରେ ବରମାଲ୍ୟ ନଦିଅନ୍ତି ।'

-ମୁଁ ଉତ୍ତପ୍ତ ଭାବେ କହି ଉଠିଲି, 'ତେବେ ସ୍ୱୟଂବରର ପ୍ରହସନ କାହିଁକି ? ସ୍ୱୟଂବର ହେବାର ଅଧିକାରରୁ ଯଦି ରାଜନନ୍ଦିନୀ ବଂଚିତା ? ଏହାତ ସମଗ୍ର ଆର୍ଯ୍ୟବର୍ତ୍ତର ରାଜପୁରୁଷଙ୍କ ଅପମାନ ?'

ପୁନର୍ଦତ୍ତ ଆଉକିଛି ନକହି ଚୁପ୍ ରହିଲେ । ମୁଁ ଅନୁଭବ କରି ପାରିଲି ରାଜକନ୍ୟାଙ୍କର ଦୁର୍ଦ୍ଦଶା । କିଭଳି ମନୋବେଦନାରେ ସନ୍ତୁଳିତା ହେଉଥିବେ ବିଚାରୀ ! ଲଜ୍ଜ୍ୟା ତ୍ୟାଗ କରି ନିରୁପାୟଭାବେ ମୋ ନିକଟକୁ ଏହି ଚିତ୍ରଟି ପଠାଇ ଦେଇଛନ୍ତି । ମୁହୂର୍ତ୍ତକରେ ମୁଁ ମୋ କର୍ତ୍ତବ୍ୟ ସ୍ଥିର କଲି । ମୋ ଶିରୋଭୂଷାରୁ ଏକ ମୟୂର ଚନ୍ଦ୍ରିକା ଆଣି ଚିତ୍ରରେ ଅଂକିତ ଥିବା ତରଣୀର ଆହୁଲାଭାବେ ତାହା ଚିହ୍ନିତ କରି ସେହି ଚିତ୍ରପଟଟିକୁ ପୁନର୍ଦତ୍ତଙ୍କୁ ଦେଇ କହିଲି - 'ବିଦର୍ଭ ନନ୍ଦିନୀଙ୍କୁ ଦେବ ।'

ବୈଶାଖର ଏକ ରୌଦ୍ରତପ୍ତ କ୍ଳାନ୍ତ ଅପରାହ୍ନ । ମୁଁ ଦୂତ ଶୁଦ୍ଧବ୍ରତ ଅପେକ୍ଷାରେ ଥାଏ । ଜ୍ୟେଷ୍ଠଭ୍ରାତା ଅକସ୍ମାତ୍ ପହଞ୍ଚି ବେଶ୍ ଉତ୍ତେଜିତ ଭାବେ କହିଲେ - 'ରୁକ୍ମୀର ଦୁଃସାହାସ ଦେଖୁଚୁତ କାହ୍ନୁ ?

ମୁଁ ତ ତା'ର ଦୁଃସାହାସ ସଂପର୍କରେ ପୂର୍ବରୁ ଅବହିତ ଥିଲି । ତଥାପି ମୃଦୁହସି ପ୍ରଶ୍ନ କଲି - 'ରୁକ୍ମୀ ହଠାତ୍ ଆମର କି କ୍ଷତି କଲା ?' ଜ୍ୟେଷ୍ଠଭ୍ରାତା କହିଲେ- 'କ୍ଷତିନୁହେଁ- ଆମ୍ଭମାନଙ୍କୁ ଅପମାନିତ କରିଛି ପରୋକ୍ଷରେ । ଭୀଷ୍ମଙ୍କ ଦୁଲାଳୀ ରୂପୋତ୍ତମା ରୁକ୍ମିଣୀଙ୍କର ସ୍ୱୟମ୍ବର ହେଉଛି । ବହୁ ରାଜପୁରୁଷ ନିମନ୍ତ୍ରିତ ହୋଇଛନ୍ତି; ଅଥଚ ସେ ଦ୍ୱାରକାକୁ କୌଣସି ନିମନ୍ତ୍ରଣ ଦେଇନାହିଁ ।'

ମୁଁ କହିଲି - 'ସ୍ୱୟମ୍ବର ନୁହେଁ ଭାଇ ! ବଳପୂର୍ବକ ବିବାହର ଆୟୋଜନ କହନ୍ତୁ । ଭୀଷ୍ମ ବୃଦ୍ଧ ହୋଇଯିବା ହେତୁ ପୁତ୍ରର ଅନୁଚିତ କ୍ରିୟା କଳାପର ସୁଦ୍ଧା ପ୍ରତିବାଦ କରି ପାରୁନାହାନ୍ତି । ଏହାହିଁ ହୁଏ । ବାର୍ଦ୍ଧକ୍ୟ ଶରୀରକୁ ଦୁର୍ବଳ କରିବା ସଂଗେ, ମନୋବଳକୁ ମଧ୍ୟ ଭାଂଗିଦିଏ । ବାର୍ଦ୍ଧକ୍ୟର ଆଶ୍ରା ଓ ଅବଲମ୍ବନ ଟିକକ ହରେଇବାକୁ ମଣିଷ ଇଚ୍ଛା କରେ ନାହିଁ । ତେଣୁ ବାଧ୍ୟ ହେଇ ଅନେକ ସମୟରେ ପୁତ୍ରର ଅନ୍ୟାୟକୁ ମଧ୍ୟ ସମର୍ଥନ କରିବାକୁ ପଡ଼ିଥାଏ । ଭୀଷ୍ମ ସେଭଳି ଏକ ନିରୁପାୟ ଅବସ୍ଥାରେ । ଏ ପରିସ୍ଥିତିରେ ରାଜକନ୍ୟାଙ୍କର ସ୍ୱୟମ୍ବର ହେଉନାହିଁ ବରଂ ରୁକ୍ମୀଙ୍କ ସ୍ୱାର୍ଥଯଜ୍ଞରେ ତାଙ୍କୁ ଆହୂତି ଦିଆ ଯାଉଛି ।'

ଆମକଥା ଶେଷ ହୋଇନାହିଁ ଶୁଦ୍ଧବ୍ରତ ଆସି ସେ କକ୍ଷରେ ପହଞ୍ଚିଲେ । ତାଙ୍କର ଘର୍ମାକ୍ତ ଓ ଅବସନ୍ନ କଳେବର ଦେଖି ଯେ କୌଣସି ଲୋକ ଜାଣି ପାରିବ ଯେ ସେ ବହୁଦୂର ପଥ ଖୁବ୍ ଅଳ୍ପସମୟରେ ଅତିକ୍ରମ କରି ଆସିଛନ୍ତି । ଜ୍ୟେଷ୍ଠଭ୍ରାତା ପଚାରିଲେ - 'ତୁମେ କେଉଁଠାରୁ ଆସୁଛ ଶୁଦ୍ଧବ୍ରତ ?

ବଡ଼ କ୍ଳାନ୍ତ ଦିଶୁଛ ଯେ ?

- 'ଆଜ୍ଞା ! ଚେଦି ରାଜ୍ୟରୁ ।'

- 'ଚେଦିରାଜଙ୍କର ସବୁ କୁଶଳ ତ ?'

ବଡ଼ ଭାଇଙ୍କ ପ୍ରଶ୍ନର ଉତ୍ତର ଦେଇ ଶୁଦ୍ଧବ୍ରତ ନିରାସକ୍ତ ଭାବେ କହିଲେ - 'ହଁ ପ୍ରଭୋ ! ଚେଦିରାଜଙ୍କ ରାଜ୍ୟରେ ଉତ୍ସବର ବିପୁଳ ଆୟୋଜନ ଚାଲିଛି । ବିଭିନ୍ନ ରାଜ୍ୟର ବଣିକ ଓ ଜହୁରୀଗଣ ବହୁମହାର୍ଘ ମଣିରତ୍ନ ଓ ମୂଲ୍ୟବାନ୍ ବସ୍ତ୍ର ସମୂହ ସହ ସେଠାରେ ଉପସ୍ଥିତ ହୋଇଛନ୍ତି, କଳିଙ୍ଗରୁ ମହାର୍ଘ, ସୂକ୍ଷ୍ମ ପଟ୍ଟବସ୍ତ୍ର, ସିଂହଳରୁ ଗଜମୁକ୍ତା ସମୂହ । ଅଙ୍ଗ ଓ ଗାନ୍ଧାରରୁ ସମୁଦ୍ରଜାତ ମୁକ୍ତାରାଶି ଓ ପ୍ରବାଳ, କୃଷ୍ଣ, ଶୁକ୍ଳ ଅଶ୍ୱସମୂହ, ମଗଧରୁ ବହୁ ସ୍ୱର୍ଣ୍ଣାଳଙ୍କାର ଓ ପଦ୍ମରାଗ ମଣି ପ୍ରଭୃତି ସହ ବହୁ ପଣ୍ୟ ଦ୍ରବ୍ୟ ଆସି ପହଞ୍ଚିଛି । ବଡ଼ ଭାଇ ପ୍ରଶ୍ନ କଲେ - 'ଉତ୍ସବର ହେତୁ ?'

ବଡ଼ଭାଇ ସାମାନ୍ୟ କଥାରେ ମଧ୍ୟ କ୍ରୋଧାନ୍ୱିତ ହୋଇଯା'ନ୍ତି । ସେ କହିଲେ - 'ଚେଦିରାଜ ଶିଶୁପାଳର ବିବାହ ? ଆମେ ଏକଥା ଶୁଦ୍ଧବ୍ରତଠାରୁ ଶୁଣିବୁ ? କାହିଁକି ସେ କ'ଣ ସ୍ୱତନ୍ତ୍ର ଦୂତ ସହ କୌଣସି ରାଜପୁରୁଷଙ୍କୁ ପଠାଇ ଏ ସଂପର୍କରେ ଆମ୍ଭମାନଙ୍କୁ ସୂଚନା ଦେଇପାରନ୍ତେ ନାହିଁ ? ଆମର ସେ ଆତ୍ମୀୟ..... !'

ମୁଁ ବିନାକାରଣରେ ଅଟ୍ଟହାସ୍ୟ କରି କହିଲି - 'ଆହାଃ ! ବଡ଼ଭାଇ ! ବିବାହ

ଉତ୍ସବର ଆୟୋଜନ ଚାଲିଛି । ବିବାହତ ସଂପନ୍ନ ହୋଇନାହିଁ । ବର ବେଶରେ ସୁସଜ୍ଜିତ ହେବା ଓ ବରଭାବେ ଯୋଗ୍ୟ ବିବେଚିତ ହୋଇ କୌଣସି ରାଜକନ୍ୟାର ପାଣିଗ୍ରହଣ କରିବା ଏକା କଥା ନୁହେଁ ।'

ଜ୍ୟେଷ୍ଠଭ୍ରାତା ମୋ କଥାର ଅର୍ଥ ହୁଏତ ବୁଝିପାରିଲେ ନାହିଁ । ସେତେବେଳକୁ ତାଙ୍କର ପ୍ରିୟ ପାନୀୟ ସେବନର ସମୟ ଉତ୍ତୀର୍ଣ୍ଣ ହେବାକୁ ଯାଉଥିଲା । ପ୍ରାୟତଃ ସନ୍ଧ୍ୟାପରେ ସେହି ଉତ୍କୃଷ୍ଟ ପାନୀୟ ସେବନ କରି ସାରାରାତି ଏକ ଆଚ୍ଛନ୍ନତା ଓ ଆବେଶ ମଧ୍ୟରେ ଅତିବାହିତ କରୁଥିଲେ ସୁଷୁପ୍ତି ମାଧ୍ୟମରେ । ସେ ତେଣୁ ତର ତର ହୋଇ ସେ କକ୍ଷରୁ ନିଷ୍କ୍ରାନ୍ତ ହୋଇଗଲେ ।

ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ ନିକଟ ହୋଇ ଆସୁଥିଲା । ବିଦର୍ଭ ରାଜ୍ୟରେ ଅନୁଷ୍ଠିତ ହେଉଥିବା ସ୍ୱୟମ୍ବର ଉପଲକ୍ଷେ କୌଣସି ନିମନ୍ତ୍ରଣ ଦ୍ୱାରକାରେ ପହଞ୍ଚି ନଥିଲା । ଦ୍ୱାରକାରେ ବହୁ ରାଜବଂଶୀୟ ଧନାଢ଼୍ୟ ସୁପୁରୁଷ ଥିଲେ । ଏହା ସେମାନଙ୍କ ପ୍ରତି ଅପମାନସୂଚକ ଥିଲା । ମୁଁ ଅନ୍ୟମନସ୍କଭାବେ ଆଗାମୀ ପ୍ରଭାତର କାର୍ଯ୍ୟପନ୍ଥା ସ୍ଥିର କରୁଥିଲି । ଜ୍ୟେଷ୍ଠଭ୍ରାତା କ୍ରୋଧଦୀପ୍ତଭାବେ ମୋ କକ୍ଷରେ ପହଞ୍ଚି କହିଲେ - 'କାହ୍ନୁ ! ତୋ ସାରଥୀ ରଥ ପ୍ରସ୍ତୁତ କରୁଛି ଦେଖି ଆସିଲି । କ୍ଷିପ୍ରଗାମୀ ଦୂରଗାମୀ ଅଶ୍ୱମାନଙ୍କ ପାଇଁ ପ୍ରଚୁର ମିଷ୍ଟାନ୍ନ ମଧ୍ୟ ସଜାଡ଼ି ରଖୁଛି ଶୁଦ୍ଧବ୍ରତ । ଆସନ୍ତା କାଲି ଦୂରଯାତ୍ରାର ଯୋଜନା ଅଛିକି ଆମର ? ମୁଁ ଗମ୍ଭୀରଭାବେ କହିଲି - 'ଆମର ନୁହେଁ ଜ୍ୟେଷ୍ଠଭ୍ରାତା । ମୋ'ର । ମୁଁ ହିଁ ଯାଉଛି ।'

- 'ତୁ ? ଏକା ? କୁଆଡ଼େ ?'

- 'ବିଦର୍ଭ !' ମୋର ସଂକ୍ଷିପ୍ତ ଉତ୍ତର ।

ଶୁଣିବାମାତ୍ରେ ଜ୍ୟେଷ୍ଠପୁତ୍ର ଅଗ୍ନିନ୍ୟାୟରେ କ୍ରୋଧରେ ପ୍ରଜ୍ଜ୍ୱଳିତ ହୋଇ କହିଲେ - 'ବିଦର୍ଭ ଯିବା ତୋର କ'ଣ ଦରକାର ? ତୁ ଜାଣୁ ? ବିଦର୍ଭ ରାଜତନୟାଙ୍କର ସ୍ୱୟଂବର ଅନୁଷ୍ଠିତ ହେଉଛି । ବିଦର୍ଭର ଯୁବରାଜ ରୁକ୍ମୀ ସମସ୍ତ ରାଜାଙ୍କୁ ନିମନ୍ତ୍ରଣ କରିଛି କେବଳ ଆମ୍ଭମାନଙ୍କୁ ନିମନ୍ତ୍ରଣ କରିନାହିଁ । ତେବେ ବିନା ନିମନ୍ତ୍ରଣରେ ସେଠାକୁ ଯିବା ଆମର କ'ଣ ଦରକାର ? ଶିଶୁପାଳକୁ ରାଜକନ୍ୟା ବରଣ କରିବ ସେ ଭଳି ଯୋଜନା ମଧ୍ୟ ପୂର୍ବ କଳ୍ପିତ !'

ମୁଁ ସଶବ୍ଦରେ ହସି ଉଠି କହିଲି - 'ସବୁ ଯୋଜନା କ'ଣ କାର୍ଯ୍ୟକାରୀ ହୁଏ ଭାଇ ? ବିଦର୍ଭ ରାଜତନୟା ଏତେ ନିର୍ବୋଧ ନୁହନ୍ତି ।'

ଜ୍ୟେଷ୍ଠଭ୍ରାତା କିଛି ସମୟ ବିମୂଢ଼ ଭଳି ମୋତେ ଚାହିଁ ରହିଲେ । ତାପରେ କ'ଣ ଅନୁମାନ କଲେ କେଜାଣି କହିଲେ - 'ତୋର ଦୂରଭିସନ୍ଧି ବୁଝିବା ମୋ ପକ୍ଷେ ଦୁରୂହ । ତଥାପି

କହୁଚି ସେପରି ଯଦି କିଛି ଅଭିକାକ୍ଷ ଥାଏ ତେବେ ସୈନ୍ୟ ସାମନ୍ତ ସହ ପ୍ରସ୍ତୁତ ହୋଇ ଯିବା ଭଲ ।' ମୁଁ କହିଲି - 'ସେପରି ଦୂରଭିସନ୍ଧି ମୋର ଆଦୌ ନାହିଁ । ମୁଁ କେବଳ ଚାହେଁ ନାରୀ ତା'ର ସ୍ୱମର୍ଯ୍ୟାଦାରେ ଅନୁଷ୍ଠିତା ହେଉ । ବିଦର୍ଭ ରାଜତନୟାଙ୍କର ଇଛାକୁ ଅନ୍ତଃତ ସମ୍ମାନ ଦିଆଯାଉ ।'

ଜ୍ୟେଷ୍ଠଭ୍ରାତା କହିଲେ - 'ସେ ଯାହାବି ହେଉ । ତୁ ଏକା ଗଲେ ମୁଁ ଆଦୌ ନିଶ୍ଚିନ୍ତ ରହିପାରିବି ନାହିଁ ।'

ମୁଁ ପୁଣି ଟିକେ ହସି ଦେଇ କହିଲି - 'ଅକ୍ଷତ ଶରୀରରେ ତୁମ ପାଖକୁ ଯଥା ସମୟରେ ଫେରି ଆସିବି ଏଇ ପ୍ରତିଶୃତି ଦେବା ପରେ ମଧ୍ୟ ?'

ପରଦିନ ବ୍ରାହ୍ମ ମୁହୂର୍ତ୍ତରୁ ଅଳ୍ପ ମାତ୍ର କେତେଜଣ ଅଶ୍ୱାରୋହୀ ଦେହରକ୍ଷୀଙ୍କ ସହ ମୋ ରଥ ବିଦର୍ଭ ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କରିଦେଲା । ପାହାଡ଼, ପର୍ବତ ଘେରା ବିଦର୍ଭ ନଗରୀ । ଗ୍ରୀଷ୍ମର ଦାବଦାହରେ ବୃକ୍ଷଲତା ସମସ୍ତ ବିଶୁଷ୍କପ୍ରାୟ । ମୋ ରଥରେ ସଂଯୋଜିତ ହୋଇଥିବା ଅଶ୍ୱସମୂହ ଜ୍ୟେଷ୍ଠମାସର ପ୍ରଚଣ୍ଡ ରୌଦ୍ରତାପଜନିତ ତୃଷାରେ କାତର ହୋଇପଡୁଥାନ୍ତି । ସେହି ମୁଖ୍ୟ ପଥଦେଇ ବହୁ ନିମନ୍ତ୍ରିତ ରାଜପୁରୁଷଙ୍କ ରଥ, ଗଜ, ଅଶ୍ୱ ବିଦର୍ଭ ଉଦ୍ଦେଶ୍ୟରେ ମଧ୍ୟ ଯାତ୍ରା କରୁଥାଏ । କୌଣସି ଉପାୟରେ ଏମାନଙ୍କ ଭିତରୁ କେହି ଯଦି ଜାଣିଯା'ନ୍ତି ବିନା ନିମନ୍ତ୍ରଣରେ ମୁଁ ବିଦର୍ଭ ଯାତ୍ରା କରୁଛି ରାଜକନ୍ୟାଙ୍କ ସ୍ୱୟଂବରରେ ଯୋଗ ଦେବାପାଇଁ ତେବେ ଅନର୍ଥ ସୃଷ୍ଟି ହେବାର ଆଶଙ୍କା ରହିଛି । ମୁଁ ତେଣୁ ରାଜନବରର ଉପାନ୍ତରେ ଅବସ୍ଥିତ ସିଦ୍ଧିଦାୟିନୀ ଦେବୀ ଗୌରୀ ମାତାଙ୍କ ମନ୍ଦିର ପଶ୍ଚାତରେ ରହିବାକୁ ସ୍ଥିର କଲି । ସେ ସ୍ଥାନଟି ସଂପୂର୍ଣ୍ଣ ଜନଶୂନ୍ୟ । ଚଂପା, ମନ୍ଦାର ଓ କେତୋଟି ବେଲଗଛ ଦ୍ୱାରା ସ୍ଥାନଟି ଛାୟାଛନ୍ନ ହୋଇଥାଏ । ସେହି ଛାୟା ବେଷ୍ଟନୀ ଭିତରେ ବହୁ ପ୍ରାଚୀନ ମନ୍ଦିରଟିଏ । ପୁନର୍ଦତ୍ତ ମୋତେ ପୂର୍ବରୁ କହିଥିଲେ ଯେ, ବିଦର୍ଭ ରାଜବଂଶର ପରଂପରା ଅନୁଯାୟୀ ପ୍ରତ୍ୟେକ ରାଜକନ୍ୟା ବା ରାଜକୁମାର ବିବାହ ଦିନ ଏହି ମନ୍ଦିରକୁ ଆସି ଦେବୀ ଗୌରୀଙ୍କୁ ଆରାଧନା, ପୂଜା, ଅର୍ଚ୍ଚନା ଇତ୍ୟାଦି କରି ତାଙ୍କଠାରୁ ଆଜ୍ଞାମାଳ ନେଇ ବିବାହ ପାଇଁ ପ୍ରସ୍ତୁତ ହୁଅନ୍ତି । ରୁକ୍ମିଣୀଙ୍କ ସହ ସାକ୍ଷାତ ହେବାର ଏହାହିଁ ଉପଯୁକ୍ତ ସ୍ଥାନ । ରାତି ପାହିଲେ ରୁକ୍ମିଣୀଙ୍କ ବିବାହ । ବିଦର୍ଭ ରାଜ୍ୟର ସମଗ୍ର କୁଣ୍ଡୀନ ନଗରୀ ରଜତ ପ୍ରଦୀପମାଳାରେ ସୁସଜ୍ଜିତ ହୋଇଥାଏ । ଗୃହେ ଗୃହେ ରମ୍ଭାବୃକ୍ଷ, ଆମ୍ରପଲ୍ଲବ ଓ ପୂର୍ଣ୍ଣକୁମ୍ଭରେ ତୋରଣ ସଜା ହୋଇଥାଏ । ମଂଗଳ ଗୀତ ଗାନ କରା ହେଉଥାଏ । ବହୁ ଦରିଦ୍ର ବ୍ରାହ୍ମଣଙ୍କୁ ସ୍ୱର୍ଣ୍ଣମୁଦ୍ରା ବିତରଣ କରା ହେଉଥାଏ । ଭୀଷ୍ମକଙ୍କର ଜ୍ୟେଷ୍ଠପୁତ୍ର ରୁକ୍ମୀ ସତେକି ରାଜକୋଷ ମୁକ୍ତ କରିଦେଇଥାନ୍ତି ଏହି ବିବାହ ଉପଲକ୍ଷେ । ଅତିଥି ଅଭ୍ୟାଗତଙ୍କ ପାଇଁ ପର୍ଯ୍ୟାପ୍ତ ପାନ ଭୋଜନର ବ୍ୟବସ୍ଥା ହୋଇଥାଏ । ଶୁଦ୍ଧବ୍ରତ ଓ ସାରଥୀ

ଦାରୁକ ଠାରୁ ଏସବୁ ଶୁଣିବା ପରେ ମୋର ମନେ ହେଲା ରୁକ୍ମୀର ଏପ୍ରକାର ରାଜକୀୟ ଆଡ଼ମ୍ବରରେ ହୃଦୟବତ୍ତା ଅପେକ୍ଷା ଦାମ୍ଭିକତାର ପ୍ରଦର୍ଶନ ବେଶୀ । କୁଣ୍ଡୀନ ନଗରରେ ସେଦିନ ସେଇ ଉତ୍ସବ ମୁଖର ରାତ୍ରିରେ ପ୍ରତ୍ୟେକ ଉନ୍ମତ୍ତ ଓ ଅତନ୍ଦ୍ର । ମୁଁ ମଧ୍ୟ ଉଜାଗର ରହି ରୁକ୍ମିଣୀଙ୍କ ଚଲାପଥକୁ ସାରାରାତି ଧରି ମାଳତୀ ଫୁଲର ପାଖୁଡ଼ାରେ ସଜାଇବାକୁ ଲାଗିଲି । ଗୌରୀମନ୍ଦିରର ମୁଖ୍ୟରାସ୍ତାଟି ଫୁଲରେ ଫୁଲରେ ସୁସଜ୍ଜିତ ତଥା ସୁରଭିତ ହୋଇଗଲା ରାତି ପାହିବା ବେଳକୁ । ମନ୍ଦିରର ଦ୍ୱାର ଦେଶରେ ରଖିଦେଲି ମୋର ଗୌପ୍ୟବଂଶୀ ଓ ମୟୂର ଚନ୍ଦ୍ରିକା ଟିଏ । ତା'ପରେ ଗୌରୀମନ୍ଦିର ପଛପଟେ ଥିବା ଏକ ବୃକ୍ଷଶାଖାରେ କେବଳ ଉପଯୁକ୍ତ ସମୟର ପ୍ରତୀକ୍ଷାରେ ହିଁ ରହିଲି । ବୃକ୍ଷଶାଖାରେ ଆତ୍ମଗୋପନ କରି ବୃନ୍ଦାବନରେ ଗୋପାଙ୍ଗନାଙ୍କର ମୁଖର ଭାବଭଂଗୀରୁ ସେମାନଙ୍କ ମନକଥା ଜାଣିବାରେ ମୁଁ ସିଦ୍ଧହସ୍ତ ଥିଲି । ସେଦିନ ବି ତା'ର ବ୍ୟତିକ୍ରମ ହେଲା ନାହିଁ ।

ବୈଦର୍ଭୀ କ'ଣ ପ୍ରକୃତରେ ମାଳତୀ ଫୁଲକୁ ଏତେ ଭଲ ପାଉଥିଲେ ? ବିବାହର ପ୍ରଥମ ଲଗ୍ନରୁହିଁ ତାଙ୍କର ଚଲାପଥ କୁସୁମିତ ହେଉ ଏହାହିଁ ଥିଲା ମୋର ଆନ୍ତରିକ କାମନା । ମାତ୍ର ସେ ଯେ ଏଭଳି ଆନନ୍ଦରେ ଅଭିଭୂତା ହୋଇଯିବେ ତା' ମୋର ଚିନ୍ତାର ଅତୀତ ଥିଲା । ରଥରୁ ଅବତରଣ କରିବା ମାତ୍ରେ ଶ୍ୱେତ ଶୁଭ୍ର ସୁବାସିତ ବିଛୁରିତ ମାଳତୀ ଫୁଲକୁ ଦେଖି ତାଙ୍କର ପଦ୍ମପଲାଶନିଭ ଚକ୍ଷୁଦ୍ୱଇଟିରେ ଆନନ୍ଦ ରସ ଝଲମଲ ହୋଇଉଠିଲା । ସେ ପ୍ରଥମେ ତଳେ ବସି ପଡ଼ି ସେ ମାଳତୀ ପାଖୁଡ଼ାକୁ ଆଂଜୁଳାରେ ଧରି ନିଜର ବକ୍ଷ, କଣ୍ଠ, ଚିବୁକ ଓଷ୍ଠ ଓ ଚକ୍ଷୁରେ ଲଗାଇ ସଖୀ ମାଧବୀକୁ କହିଲେ - 'ଦେଖୁଚୁ ମାଧବୀ ? ଏ ନିର୍ଜନ ବନଭୂମିରେ ଏମିତି ଅନ୍ତର୍ଯ୍ୟାମୀ କିଏ ସେ ଅଛି ଯେ ଯିଏ ମୋ ପ୍ରିୟ ପୁଷ୍ପରେ ପଥ ଧାରକୁ କୁସୁମିତ କରି ଦେଇଛି ?'

ମାଧବୀ ଖିଲ ଖିଲ ହୋଇ ହସି ଉଠି କହିଲା - 'କିଏ ଆଉ ହେବଗୋ ଜେମାମଣି ? ତମରି ମନର ମଣିଷ ନହେଲେ ତମ ମନ କଥାକୁ ଏମିତି ଫୁଲର କବିତାରେ କିଏ ଆଉ ଗାଇ ପାରିବ ?'

ରାଜନନ୍ଦିନୀ ଅନ୍ୟମନସ୍କ ଉଦାସ ଦୃଷ୍ଟି ତୋଳି ଆକାଶକୁ ଚାହିଁ କହିଲେ - 'ମୋ ମନର ମଣିଷ ? ସେ ଯେ ସୁଦୂରତମ । କାହିଁ ଦ୍ୱାରକା ଆଉ କାହିଁ ବିଦର୍ଭର କୁଣ୍ଡୀନ ନଗର ?'

ସେ ଆଉ କିଛି କହିବାକୁ ଯାଉଥିଲେ । ମାତ୍ର ରୁକ୍ମୀ ସମସ୍ତ ସତର୍କ ବ୍ୟବସ୍ଥା କରିଥିଲା । ଜେମାଙ୍କ ଅନ୍ତରଙ୍ଗ ସଖି ମାଧବୀ ବ୍ୟତୀତ ଅନ୍ୟାନ୍ୟ ଲଳନା ଗଣଯେ ରୁକ୍ମୀ ଦ୍ୱାରା ନିଯୁକ୍ତି ପାଇଥିଲେ ଜେମାଙ୍କ ଗତିବିଧି ଉପରେ ସତର୍କ ଦୃଷ୍ଟି ରଖି ସମସ୍ତ କ୍ରିୟା କଳାପ ବା ପ୍ରତିକ୍ରିୟା ସଂପର୍କରେ ରୁକ୍ମୀକୁ ଅବଗତ କରାଇବାପାଇଁ ଏକଥା ସେମାନଙ୍କୁ ଦେଖିବାମାତ୍ରେ ମୁଁ

ଜାଣିପାରିଥିଲି । କାରଣ ସେମାନେ ବୈଦର୍ଭୀଙ୍କ ନିକଟବର୍ତ୍ତୀ ହେବାରୁ ରୁକ୍ମିଣୀ ଚୁପ୍ ହୋଇଗଲେ । ତାଙ୍କ ଭିତରୁ ଜଣେ ଚତୁର୍ଦ୍ଦିଗକୁ ଅନୁସନ୍ଧାନୀ ଦୃଷ୍ଟିରେ ଚାହିଁ କହିଲା - 'ଏହି ପୁଷ୍ପଦଳରେ ପଥଧାରକୁ କୁସୁମିତ କରିବା ନିଶ୍ଚିତ ଭାବରେ ଚେଦୀରାଜଙ୍କର ଚିନ୍ତା ସମ୍ଭୂତ । ରସିକ ବ୍ୟକ୍ତି ତ !'

ଚେଦୀରାଜଙ୍କ କଥା ଶୁଣୁ ଶୁଣୁ ବୈଦର୍ଭୀଙ୍କ ମୁହଁଟି ଖରା ଝାଉଁଳା କଇଁ ଫୁଲଟିଏ ଭଳି ବିଷର୍ଣ୍ଣ ମଳିନ ଦିଶିଲା । ସଖିମାନଙ୍କର ବିଭିନ୍ନ ହାସ୍ୟ କୌତୁକରେ ସେ କୌଣସି ଅଂଶ ସୁଦ୍ଧା ଗ୍ରହଣ କରି ପାରିଲେ ନାହିଁ । ନୀରବରେ କେବଳ ଆଗକୁ ଆଗେଇ ଚାଲିଲେ । ମନ୍ଦିରର ଗର୍ଭଗୃହର ପାବଚ୍ଛ ଶ୍ରେଣୀ ଯେଉଁଠାରୁ ଆରମ୍ଭ ହୋଇଥିଲା ଠିକ୍ ସେଇଠାରେ ତାଙ୍କ ଦୃଷ୍ଟି ଅଟକିଗଲା । ସେଠାରେ ମାଳତୀ ପାଖୁଡ଼ାରେ ଏକ କ୍ଷୁଦ୍ର ବୋଇତ ଚିତ୍ରିତ ହୋଇଥିଲା, ଯେଉଁଥିରେ କାତ ସ୍ୱରୂପ ରୌପ୍ୟ ବଂଶୀଟି ଥିଲା ଏବଂ ନାବିକ ସ୍ଥାନରେ ମୟୂର ଚନ୍ଦ୍ରିକା । ରାଜନନ୍ଦିନୀ କିଛି ସମୟ ବିହ୍ୱଳ ଦୃଷ୍ଟିରେ ସେ ଦିଗକୁ ଚାହିଁ ରହିଲେ । ତାପରେ ତାଙ୍କର ଆନନ୍ଦ ମଗ୍ନ ଚକ୍ଷୁଦ୍ୱୟଟି ଲୋତକାପ୍ଲୁତ ହୋଇଉଠିଲା । ସମସ୍ତଙ୍କ ଅଲକ୍ଷରେ ସେ ମାଧବୀର ଦୃଷ୍ଟି ଆକର୍ଷଣ କଲେ ସେଇ ଦିଗକୁ । ମାଧବୀ ଅତ୍ୟନ୍ତ ଆନନ୍ଦୋଲ୍ଲାସ ସହ କହିଲା - 'ଏଥର ତେବେ ବରମାଲ୍ୟଟି ଦେବୀ ଗୌରୀଙ୍କ ଚରଣ ଛୁଆଁଇ ଆଣ ଜେମାମଣି । ପ୍ରସ୍ତୁତ ହୁଅ ।'

ପୂଜା ଆରାଧନା ଯଥାରୀତି ଶେଷହେବା ପରେ ପରେ ରାଜନନ୍ଦିନୀ ବରମାଲ୍ୟ ସହ ମନ୍ଦିର ବାହାରକୁ ଆସିବା ମାତ୍ରେ ମୁଁ ତାଙ୍କୁ ଦୁଇ ବାହୁରେ ଟେକି ଆଣି ରଥରେ ବସାଇ ଦେଲି । ଦାରୁକ କ୍ଷିପ୍ରଗାମୀ ଅଶ୍ୱଙ୍କ ସହ ପୂର୍ବରୁ ସତର୍କ ଭାବେ ପ୍ରସ୍ତୁତ ଥିଲେ । ମୋ ନିର୍ଦ୍ଦେଶ ପାଇବା ମାତ୍ରେ ସେ ରଥ ବାହିବା ଆରମ୍ଭ କରିଦେଲେ । ଏହି ଘଟଣାର ଆକସ୍ମିକତାରେ ଅଭିଭୂତା ରାଜନନ୍ଦିନୀ ଘଟଣାର ସତ୍ୟତା ଉପଲବ୍ଧି କରିବା ପୂର୍ବରୁ ଆମେ ଅନେକ ବାଟ ଆଗେଇ ଆସିଥିଲୁ । ତାଙ୍କର ମୁଦ୍ରିତ ଚକ୍ଷୁ ଦୁଇଟିକୁ ଅର୍ଦ୍ଧ ଉନ୍ମୀଳିତ କରି ସେ ମୋତେ ଚାହିଁବାକୁ ଚେଷ୍ଟା କରୁଥିଲେ ହୁଏତ । ମୁଁ କିନ୍ତୁ ଏକ ଲୟରେ ନବିଷ୍ଟ ଭାବେ ଚାହିଁ ରହିଥିଲି, କହିଲି - 'ବିଦର୍ଭ ରାଜ ନନ୍ଦିନୀଙ୍କ ଜୀବନ ତରୀ ଉପଯୁକ୍ତ ନାବିକ ହାତରେ ପଡ଼ିଛି ତ ?'

ଜେମା ଆକଣ୍ଠ ଲଜ୍ୟାରେ ଆଖିଦୁଇଟି ବୁଜି ଦେଲେ । ଲଜ୍ୟା ଓ ନମ୍ରତା ସହ ରୁକ୍ମିଣୀଙ୍କର ରାଜକୀୟ ଗାମ୍ଭୀର୍ଯ୍ୟ ତାଙ୍କୁ ଅପୂର୍ବ କରି ତୋଳିଥାଏ । କେବଳ ପଦ୍ମରାଗମଣି ନିର୍ମିତ ଅଳଂକାର ମଣ୍ଡିତା, ରକ୍ତବର୍ଣ୍ଣର ପଟ୍ଟବସ୍ତ୍ର ପରିହିତା ରୁକ୍ମିଣୀ ବ୍ରାହ୍ମ ମୁହୂର୍ତ୍ତରେ ଉଦୟ ସୂର୍ଯ୍ୟର ଲୋହିତ ଆଭାରେ ସଦ୍ୟ ପ୍ରସ୍ଫୁଟିତ ରକ୍ତପଦ୍ମ ସଦୃଶ ସୁନ୍ଦର ଦିଶୁଥା'ନ୍ତି । ମୁଁ ତାଙ୍କୁ ସେହି ଚଳମାନ ରଥରେ ଅନେକ ସମୟ ଚାହିଁ ରହିଥା'ନ୍ତି ଯଦି ବିପରୀତ ଦିଗରୁ ରଥର ଘର୍ଘରନାଦ ସହ ଅଶ୍ୱର ହେଷ୍ରାରବ ଓ ଗଜର ବୃହଣ ଶୁଣିନଥା'ନ୍ତି । ହଁ, ବିପରୀତ ଦିଗରୁ ସୁବିଶାଳ ବାହିନୀ

ସହ ମୋର ଜ୍ୟେଷ୍ଠଭ୍ରାତା ହିଁ ଆସୁଥିଲେ । ମୋତେ ଦେଖିବା ମାତ୍ରେ କହିଲେ - 'ନୀଳମଣି ! ତୁ ବିଦର୍ଭ ନନ୍ଦିନୀଙ୍କୁ ନେଇ ଯେତେ ଶୀଘ୍ର ପାରୁ ଦ୍ୱାରକା ଫେରିଯା ।' ମୁଁ ରୁକ୍ମୀ, ଶିଶୁପାଳ, ଶାଲ୍ୱ, ଜରାସନ୍ଧ ପ୍ରତ୍ୟେକଙ୍କୁ ଠିକଣା ଜବାବ୍ ଦେଇ ଯାଉଛି । କାରଣ ସେମାନେ ନିଶ୍ଚିତ ଭାବରେ ସେନା ବାହିନୀ ସହ ତୋର ପଶ୍ଚାତ୍‌ଧାବନ କରିବେ । ମୁଁ ସେମାନଙ୍କୁ ଏଇଠାରେ ହିଁ ଯୁଦ୍ଧକରି ଅଟକାଇବି ଓ ପରାସ୍ତ କରିବି । ତୁ ପଛକୁ ନଚାହିଁ ଚାଲିଯା ।'

ଜ୍ୟେଷ୍ଠଭ୍ରାତାଙ୍କର ଏହା ଦମ୍ଭୋକ୍ତି ମାତ୍ର ନଥିଲା । ମୁଁ ଭଲଭାବେ ଜାଣିଥିଲି ଜ୍ୟେଷ୍ଠଭ୍ରାତାହିଁ ବିଜୟୀ ହେବେ ।

ସମସ୍ତ ଘଟଣା ଅନୁଧ୍ୟାନ କରି ଶୁଦ୍ଧବ୍ରତ ଆମ ରଥ ନିକଟରେ ଖୁବ୍ ଶୀଘ୍ର ଆସି ପହଞ୍ଚିଗଲେ । ବିଜୟ ଆମର ସୁନିଶ୍ଚିତ, ଏବିଷୟରେ ମୋର ସନ୍ଦେହ ନଥିଲା । ମୁଁ କେବଳ ପଚାରିଲି - 'ଶିଶୁପାଳ ଅବସ୍ଥା ?'

ମୋର ଏ ପ୍ରଶ୍ନରେ ଶୁଦ୍ଧବ୍ରତ ହାସ୍ୟ ସମ୍ବରଣ କରିପାରିଲେ ନାହିଁ । କହିଲେ - 'ଶିଶୁପାଳଙ୍କର ଅବସ୍ଥା ସବୁଠାରୁ ବେଶୀ ଶୋଚନୀୟ ପ୍ରଭୁ । ବରବେଶରେ ତାଙ୍କୁ ବିବାହ ମଣ୍ଡପରୁ ବାହୁଡ଼ି ପଡ଼ିଲା ।'

ମୁଁ ରୁକ୍ମିଣୀଙ୍କୁ ଟିକିଏ କଣେଇ ଚାହିଁଲି । ତାଙ୍କ ଭଳି ମାର୍ଜିତ ରୁଚିସଂପନ୍ନା ରାଜକନ୍ୟା ମଧ୍ୟ ହାସ୍ୟାବେଗ ସମ୍ଭାଳି ପାରିଲେ ନାହିଁ ।

ଆମ ରଥ ଦ୍ୱାରକା ସୀମାରେ ପହଞ୍ଚିବାକ୍ଷଣି ତୂର୍ଯ୍ୟନାଦ, ଶଙ୍ଖନାଦସହ ହୁଳହୁଳି ଓ ମଂଗଳଗୀତ ଗାୟନ ପଭୃତି ଆରମ୍ଭ ହୋଇଗଲା । ଏଠାରେ ବର-ବଧୂଙ୍କ ଉଦ୍ଦେଶ୍ୟରେ ଏକ ଭବ୍ୟସମ୍ବର୍ଦ୍ଧନାର ଆୟୋଜନ କରି ଜ୍ୟେଷ୍ଠଭ୍ରାତା ବିଦର୍ଭ ଯାତ୍ରା କରିଥିଲେ । ଦ୍ୱାରକା ଉତ୍ସବ ମୁଖର ହୋଇଉଠିଥିଲା ।

●

## ।। ଦଶମ ଗ୍ରନ୍ଥି ମୋଚନ ।।

ବିବାହ ଉତ୍ସବରେ ଯୋଗଦେବାପାଇଁ ବହୁ ଆତ୍ମୀୟ ସ୍ୱଜନ, ବହୁ ଶୁଭେଚ୍ଛୁ ଦ୍ୱାରକା ନଗରୀ ଆସିଥିଲେ । ହସ୍ତିନାର ରାଜବଧୂ କୁନ୍ତୀ, ଯିଏକି ମୋର ପିଉସୀ ତାଙ୍କର ପାଞ୍ଚପୁତ୍ରଙ୍କ ସହ ନିମନ୍ତ୍ରିତ ହୋଇ ଆସିଥିଲେ । ମୋର ପିତା ଏବଂ ପିଉସୀଙ୍କୁ ଭାଗ୍ୟ ପରସ୍ପରଠାରୁ ଏଭଳି ବିଚ୍ଛିନ୍ନ କରି ରଖିଥିଲା ଯେ ସେ ଯାବତ୍ କେହି କାହାରି ସୁଖ ଦୁଃଖରେ ଅଂଶୀଦାର ହୋଇ ପାରିନଥିଲେ । ବିଧିର ଅଲଂଘ୍ୟ ନିର୍ଦ୍ଦେଶରେ ଦୁହେଁ କିନ୍ତୁ ବହୁ ବିପର୍ଯ୍ୟୟର ସମ୍ମୁଖୀନ

ହୋଇଥିଲେ । ପିତା ଯେତେବେଳେ ମଥୁରା ନରେଶ କଂସର କାରାକକ୍ଷରେ ବନ୍ଦୀଦଶା ଭୋଗ କରୁଥିଲେ, କୁନ୍ତୀ ସେତେବେଳେ ନିଜର ଅଭିଶପ୍ତ ପତିଙ୍କ ସହ ହସ୍ତିନାର ସମସ୍ତ ରାଜ ଐଶ୍ୱର୍ଯ୍ୟ ତ୍ୟାଗ କରି ଶତଶୃଙ୍ଗ ଗିରି ଅନ୍ତର୍ଗତ ଅରଣ୍ୟରେ ବନବାସ ଜୀବନକୁ ଆଦରି ନେଇଥିଲେ । କାହା କାହା ଜୀବନରେ ଆଶୀର୍ବାଦ ସୁଦ୍ଧା ଅଭିଶାପରେ ରୂପାନ୍ତରିତ ହୋଇଯାଏ । ପୂଜ୍ୟା କୁନ୍ତୀଙ୍କ ଜୀବନରେ ତାହାହିଁ ହୋଇଛି । ଋଷି ଦୁର୍ବାସାଙ୍କର ଆଶୀର୍ବାଦ ଏକ ଦୁଃସହଭାର ଭଳି ସମଗ୍ର ଜୀବନ ତାଙ୍କୁ ଭାରାକ୍ରାନ୍ତ କରି ରଖିଛି ।

ମୁନି ଦୁର୍ବାସା ସଂସାର ଅନଭିଜ୍ଞ ବ୍ୟକ୍ତି । କାହାକୁ ଅଭିଶାପ ଦେବା ସମୟରେ ସେ ଯେତିକି ଉଗ୍ର ଓ କଠୋର, କାହାକୁ ଆଶୀର୍ବାଦ ଦେବାସମୟରେ ସୁଦ୍ଧା ସେ ସେତିକି ଅପରିଣାମଦର୍ଶୀ । ଏସମସ୍ତ ତଥ୍ୟ ମୁଁ ପୂଜ୍ୟାକୁନ୍ତୀଙ୍କର ବୃଦ୍ଧା ଧାତ୍ରେୟିକାଠାରୁ ସଂଗ୍ରହ କରିଥିଲି । ନିଃସଂକୋଚରେ କୁନ୍ତୀଙ୍କର କୈଶୋର ଓ ଯୌବନର ସମସ୍ତ ଇତିବୃତ୍ତ ସେ ମୋ ଆଗରେ କହିଥିଲା । କେଜାଣି କାହିଁକି ପ୍ରତ୍ୟେକ ମୋ ଆଗରେ ନିଜର ମନକଥା କହି ଭାରମୁକ୍ତ ହୋଇଯା'ନ୍ତି ।

ଶୂରସେନ ନନ୍ଦିନୀ କୁନ୍ତୀ ତାଙ୍କ ପିତାଙ୍କର ଘନିଷ୍ଠ ବନ୍ଧୁ କୁନ୍ତୀ ଭୋଜଙ୍କ ଘରେ ପ୍ରତିପାଳିତା ହେଉଥିଲେ । ଆବାଲ୍ୟରୁ ସେହି ଶିଶୁକନ୍ୟାଟି ଅତ୍ୟନ୍ତ ସେବା ପରାୟଣା ଥିଲେ । ଅତିଥିହିଁ ଥିଲେ ତାଙ୍କ ନିକଟରେ ଭଗବାନଙ୍କ ସଦୃଶ ପୂଜନୀୟ । ଏକଦା ଚତୁର୍ମାସ୍ୟା ବ୍ରତପାଳନ ନିମିତ୍ତ ମୁନି ଦୁର୍ବାସା କୁନ୍ତୀଭୋଜଙ୍କ ରାଜ୍ୟରେ ପହଞ୍ଚିଲେ । କୁନ୍ତୀ ଭୋଜ ବିନାଦ୍ୱିଧାରେ କୁନ୍ତୀଙ୍କ ଉପରେହିଁ ଦୁର୍ବାସାଙ୍କର ସେବା ପରିଚର୍ଯ୍ୟାର ଭାର ନ୍ୟସ୍ତ କରିଦେଲେ । ଏଥିସହିତ କୁନ୍ତୀଙ୍କୁ ସତର୍କ କରି ଦେଇଥିଲେ - 'ଦେଖ୍ ମା ! କୌଣସି ଦିନ ଯେମିତି ମୁନି ଦୁର୍ବାସାଙ୍କର ଅସନ୍ତୋଷର ଭାଜନ ହେବୁ ନାହିଁ । କଣ୍ୱମୁନିଙ୍କ ଆଶ୍ରମରେ ତାଙ୍କର ପାଳିତା କନ୍ୟା ଶକୁନ୍ତଳାର ମୁହୂର୍ତ୍ତକର ଅନ୍ୟମନସ୍କତାକୁ ମଧ୍ୟ ଋଷି ଦୁର୍ବାସା କ୍ଷମା କରିନଥିଲେ । ବିଚାରୀ ପ୍ରିୟ ଚିନ୍ତାରେ ମଗ୍ନ ଥିଲେ ବୋଲି ଅତିଥି ଦୁର୍ବାସାଙ୍କୁ ଦେଖିବାମାତ୍ରେ ସତ୍କାର କରିପାରିନଥିଲେ । ଏଇ ସାମାନ୍ୟ ଅପରାଧ ପାଇଁ ତାଙ୍କ ଜୀବନର ଅନେକ ଗୁଡ଼ାଏ ବର୍ଷ କିପରି ବିପର୍ଯ୍ୟସ୍ତ ହୋଇଗଲା ଜାଣିଛୁତ ? ତୋ ସେବା ପରିଚର୍ଯ୍ୟାର ନିଷ୍ଠା ଉପରେ ନିର୍ଭର କରୁଛି ଆମ ସମସ୍ତଙ୍କର ଭାଗ୍ୟ ଓ ଭବିତବ୍ୟ !'

କି କଠୋର ନିର୍ଦ୍ଦେଶ ! ଗୋଟିଏ କୋମଳମତି କିଶୋରୀ ପାଇଁ କି ଚରମ ପରୀକ୍ଷା ! ଦୀର୍ଘ ଚାରିମାସ କାଳ ନିଜର ଆହାର, ନିଦ୍ରା, ବିଳାସ, ବ୍ୟସନ, ସୁଖ, ସ୍ୱାଚ୍ଛନ୍ଦ୍ୟ ସବୁ କିଛି ପରିହାର କରି ମୁନି ଦୁର୍ବାସା ପ୍ରଦାନ କରିଥିଲେ ଏକ ଅପୂର୍ବ ଦେବଦୁର୍ଲଭ ମାଳା । ଅଦ୍ଭୁତ ତା'ର ରହସ୍ୟ । ସେହି ମନ୍ତ୍ରପୂତ ମାଳାସହ ମନ୍ତ୍ର ଜପ କରି ଯେଉଁ ଦେବପୁରୁଷକୁ ଆହ୍ୱାନ କରିବେ ସେ କୁନ୍ତୀଙ୍କୁ ରମଣ କରି ଏକ ପୁତ୍ର ପ୍ରଦାନ କରିବାକୁ ବାଧ୍ୟ ହେବେ । କୁନ୍ତୀଙ୍କ

ଆହ୍ୱାନକୁ ଉପେକ୍ଷା କଲେ ତା'ର ମୂର୍ଦ୍ଧନାପାତ ନିଶ୍ଚିତ । ଅବଶ୍ୟ ଏହି ଅଲୌକିକ ମାଳାର ପ୍ରଭାବରେ ପରବର୍ତ୍ତୀ ଜୀବନରେ ଅପୁତ୍ରିକ ପଣ୍ଡୁ ପଞ୍ଚପୁତ୍ରର ଜନକ ହୋଇଛନ୍ତି ବିଭିନ୍ନ ଦେବ ପୁରୁଷଙ୍କ ସହଯୋଗରେ ।

କ୍ଷୁଦ୍ରବୁଦ୍ଧି ମନୁଷ୍ୟ କେବଳ ବର୍ତ୍ତମାନକୁ ଦେଖେ । ବିଧାତା ପୁରୁଷ ସୁଦୂର ଭବିଷ୍ୟତ ପ୍ରତି ତା'ର ଦୃଷ୍ଟି ସତର୍କ ଭାବେ ପ୍ରସାରିତ କରି ରଖିଥାଏ । ସେ ଯାହାହେଉ କୁମାରୀକନ୍ୟା କୁନ୍ତୀ କେବଳ କୌତୁହଳ ବଶତଃ ଏକ ବିରାଟ ଭୁଲ୍ କରି ବସିଲେ । ଆକାଶ ମାର୍ଗରେ ରଥାରୂଢ଼ ତେଜସ୍ୱୀ ସୂର୍ଯ୍ୟଦେବଙ୍କୁ ଚାହିଁ ଦିବ୍ୟମାଳା ଧାରଣ କରି ସେ ମନ୍ତ୍ର ଜପିବା ଆରମ୍ଭ କରିବା ମାତ୍ରେ ମାଳାର ପ୍ରଭାବରେ ସୂର୍ଯ୍ୟଦେବ ବି ଧରାପୃଷ୍ଠକୁ ଓହ୍ଲେଇ ଆସିଲେ । ଏହି ଅଜ୍ଞାତ ଅପରାଧର ପ୍ରଭାବରେ କିନ୍ତୁ କୁମାରୀ କୁନ୍ତୀ ଜନନୀ ହୋଇଗଲେ । ରାଜପରିବାରର ଗୋଟିଏ ଅବିବାହିତା କୁମାରୀ କନ୍ୟା ଯେ ସେତେବେଳେ କିପରି ମାନସିକ ଅନ୍ତର୍ଦାହର ସମ୍ମୁଖୀନା ହୋଇଥିବେ ତା' ଜଗତର କୌଣସି ଜଣେବି ସୌଭାଗ୍ୟ ଶାଳିନୀ ଜନନୀ ଉପଲବ୍ଧି କରି ପାରିବେ ନାହିଁ । ଯେଉଁ ସନ୍ତାନକୁ ନେଇ ଦିନେ ସେ ଯଥେଷ୍ଟ ଗର୍ବ କରି ପାରିଥା'ନ୍ତେ, କେବଳ ଅସମୟରେ ତାକୁ ଜନ୍ମ ଦେଇ, ଅବାଂଛିତ କଳଙ୍କର ମୁକୁଟ ପିନ୍ଧାଇ ଚିରଦିନ ତାକୁ ଦୁର୍ଭାଗ୍ୟ ରାହୁର ପୁଚ୍ଛପାଶରେ ବନ୍ଦୀ କରି ରଖିଦେଲେ । କୁଳଗୋତ୍ରହୀନ, ପିତୃପରିଚୟହୀନ, ଅବୈଧ, ଜନ୍ମଜାତକର କଳଙ୍କିତ ଟୀକାକୁ ମସ୍ତକରେ ଧାରଣ କରି ଚିରଦିନ ସେହି ସନ୍ତାନଟି ଅଶାନ୍ତି ଓ ଅସନ୍ତୋଷର ଦାବଦାହରେ ସନ୍ତପ୍ତ ହୋଇଛନ୍ତି । ଆଉ ପୂଜ୍ୟା କୁନ୍ତୀ ? କି ଉତ୍ପୀଡ଼କ ସେ ମାନସିକ ଯନ୍ତ୍ରଣା ? ପୂର୍ଣ୍ଣଗର୍ଭା ଯମୁନାର ଜଳୋଚ୍ଛ୍ୱାସରେ ମଞ୍ଜୁସା ଭିତରେ ସଦ୍ୟଜାତ ଶିଶୁପୁତ୍ରକୁ ଭସାଇଦେବା ସମୟରେ ଦୁଃଖରେ ତାଙ୍କ ବକ୍ଷ ବିଦୀର୍ଣ୍ଣ ହୋଇନଥିବ ? ଯେଉଁଦିନ କୁରୁପାଣ୍ଡବଙ୍କର ଅସ୍ତ୍ର ପରୀକ୍ଷା ପ୍ରାଙ୍ଗଣରେ କେବଳ କୁଳଗୋତ୍ର ଓ ପିତୃ ପରିଚୟ ଅଜ୍ଞାତ ବୋଲି ସେହି ପୁତ୍ରଟିକୁ ରାଜକୁମାରଙ୍କ ସହ ଅସ୍ତ୍ରକୌଶଳ ପ୍ରଦର୍ଶନର ସୁଯୋଗ ଦିଆହୋଇନଥିବ ସେଦିନ କୁନ୍ତୀଙ୍କର ବକ୍ଷ ବିଦୀର୍ଣ୍ଣ ହୋଇନଥିବ ଦୁଃଖରେ ? ଯେଉଁଦିନ ପାଞ୍ଚାଳ ରାଜ୍ୟର ସ୍ୱୟଂବର ମଣ୍ଡପରେ ରାଜନନ୍ଦିନୀ ପାଞ୍ଚାଳୀ ପୁତ୍ର ବୋଲି ସେହି ପୁତ୍ରଟିକୁ ଲାକ୍ଷ ବିନ୍ଧାରୁ ବଂଚିତ କରିଥିବେ ସେ ସମ୍ବାଦ ଶୁଣି କୁନ୍ତୀଙ୍କର ବକ୍ଷ କ'ଣ ବିଦୀର୍ଣ୍ଣ ହୋଇନଥିବ ଦୁଃଖରେ ? ଯେଉଁଦିନ ସେହି ପୁତ୍ରଟି କୌରବଙ୍କର ପକ୍ଷଭୁକ୍ତ ହେବାର ଦୁଃସମ୍ବାଦ ଶୁଣିଥିବେ ସେଦିନ କ'ଣ କୁନ୍ତୀଙ୍କ ବକ୍ଷ ବିଦୀର୍ଣ୍ଣ ହୋଇନଥିବ ଦୁଃଖରେ ? ଯେଉଁଦିନ ଭିକ୍ଷାଶ୍ରୀ ଇନ୍ଦ୍ରଙ୍କୁ ସହଜାତ କବଚ କୁଣ୍ଡଳ ସେହି ଦାନବୀର ପୁତ୍ରଟି ଦାନ କରିଦେଇ ଅଲିଖିତ ସର୍ତ୍ତ ଅନୁଯାୟୀ ପରୋକ୍ଷରେ ମୃତ୍ୟୁ ଦେବତାକୁ ନିମନ୍ତ୍ରଣ କରିଥିବ ସେଦିନ କ'ଣ କୁନ୍ତୀଙ୍କର ବକ୍ଷ ବିଦୀର୍ଣ୍ଣ ହୋଇନଥିବ ଦୁଃଖରେ ? ଆଉ ଯେଉଁଦିନ କୁନ୍ତୀଙ୍କର ଅନୁରୋଧକୁ ଉପେକ୍ଷା କରି ସେହି ପୁତ୍ରଟି ହୁଏତ କର୍ଣ୍ଣ ବିହୀନରେ ନାହିଁତ ଅର୍ଜୁନ

ବିହୀନରେ କୁନ୍ତୀଙ୍କୁ ପଞ୍ଚପୁତ୍ରର ଜନନୀ ହୋଇ ରହିବାକୁ ଅଳି କରିଥିବ ସେଦିନ କ'ଣ କୁନ୍ତୀଙ୍କ ଅନ୍ତରତଳେ ବ୍ୟଥାର ସ୍ରୋତଟିଏ ବହିଯାଇନଥିବ ? ଅହରହ ଅଶ୍ରୁଭାରରେ ଭାରାକ୍ରାନ୍ତ ହୋଇ ରହିଥିବା ପୂଜ୍ୟା କୁନ୍ତୀଙ୍କ ନିକଟରେ ରାଜବଧୂ ସୁଲଭ ଦମ୍ଭ, ଅଭିମାନ, ଗର୍ବ, ଅହଂକାରର ଅବଶେଷ ସୁଦ୍ଧା ନଥିଲା । ମର୍ମେ ମର୍ମେ ଅଶ୍ରୁଭାରସିକ୍ତ ପୂଜ୍ୟା କୁନ୍ତୀ ସର୍ବଦା ନମ୍ର ନତ ହୋଇ ରହିଥିଲେ । ତାଙ୍କୁ ଦେଖିବାମାତ୍ରେ ହିଁ ସ୍ୱତଃ ମୁଁ ନୀରବରେ ତାଙ୍କ ପାଦତଳେ ମୋର ସମସ୍ତ ସଂବେଦନ ଅଜାଡ଼ି ଦେଇଥିଲି । ମନେ ମନେ ସଂକଳ୍ପ ବଦ୍ଧ ହୋଇଥିଲି ଯେ, 'ପୂଜ୍ୟା କୁନ୍ତୀ ଗୋ ! ତୁମର ସମସ୍ତ ଦୁଃଖ ମୋତେ ହିଁ ନିବେଦନ କର, ମୁଁ ଯଥାସାଧ୍ୟ ଚେଷ୍ଟା କରିବି ତୁମର ଦୁଃଖ ହରଣ କରି ତୁମ ମନରେ ଶାନ୍ତି ବିଧାନ କରିବା ପାଇଁ ।'

ପଣ୍ଡୁଙ୍କର ପଞ୍ଚପୁତ୍ରଙ୍କୁ ଦେଖିଲେ ଯେ କେହି ତାଙ୍କ ପ୍ରତି ଆକୃଷ୍ଟ ହୋଇଯିବ । ସେମାନେ ଭଦ୍ର, ମାର୍ଜିତ, ନମ୍ର, ବିନୟୀ, ଶାନ୍ତ, ରୁଚିଶୀଳ ତଥା ଶୂର ବୀର । ଧର୍ମନନ୍ଦନ ଧର୍ମରାଜ ଯୁଧିଷ୍ଠିର ତତ୍ତ୍ୱଜ୍ଞାନୀ, ସ୍ଥିତପ୍ରଜ୍ଞ, ନିର୍ବିକାର ଓ ଅତ୍ୟନ୍ତ ଶୀତଳ ସ୍ୱଭାବର । କୌଣସି ଘଟଣା ବା ଦୁର୍ଘଟଣାରେ ତାଙ୍କ ହୃଦୟରେ କୌଣସି ବିଚଳନ ସୃଷ୍ଟି ହୁଏ ନାହିଁ । ଭାବାନ୍ତର ବିହୀନ ତାଙ୍କର ଏଇ ନିର୍ଲିପ୍ତ ଔଦାସୀନ୍ୟ ପରବର୍ତ୍ତୀ ଜୀବନ କାଳରେ ପଟ୍ଟମହିଷୀ ଦ୍ରୌପଦୀଙ୍କ ମାନସିକ ଯନ୍ତ୍ରଣାକୁ ବହୁଗୁଣିତ କରିଛି ।

ଦ୍ୱିତୀୟ ପାଣ୍ଡବ ପବନ ତନୟ ମହାବଳୀ ଭୀମସେନ, ସୁଗୌର ସୁପୁଷ୍ଟ । ତନୁ ତାଙ୍କର ସର୍ବଦା ଶ୍ୱେତଚନ୍ଦନ ଚର୍ଚ୍ଚିତ । ଶିଶୁଭଳି ସରଳ ନିଷ୍ପାପ ସେ । କୌତୁକ ପ୍ରିୟ, ଖାଦ୍ୟ ରସିକ, କୂଟକପଟ ବିହୀନ, ଅତ୍ୟଧିକ ସ୍ପଷ୍ଟବାଦୀ, ନିର୍ଭୀକ । ତାଙ୍କର ଏଇ ସ୍ୱଭାବ ପାଇଁ ତ ସେ ମୋର ପ୍ରିୟଭାଜନ ଥିଲେ, ଧର୍ମରାଜଙ୍କର ଅତ୍ୟଧିକ ବିଶ୍ୱାସର ପାତ୍ର ଥିଲେ । ବହୁବାର ଜୀବନରେ ପଞ୍ଚପାଣ୍ଡବ ବହୁ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲେ ସତ; ମାତ୍ର ଭୀମସେନଙ୍କର ଅପୂର୍ବ ସାହସିକତା ନିମିତ୍ତ ବିପଦର ଗହ୍ୱରରୁ ଉଦ୍ଧାର ମଧ୍ୟ ପାଇଥିଲେ । ଯୁଧିଷ୍ଠିର ଓ ଭୀମ ମୋର ବୟୋଜ୍ୟେଷ୍ଠ ।

ତୃତୀୟ ପାଣ୍ଡବ ସଖା ପାର୍ଥ ମୋର ସମବୟସ୍କ । ଲୋକେ କହନ୍ତି ବାସବ ତନୟ ସବ୍ୟସାଚୀଙ୍କୁ ଦେଖିଲେହିଁ ମୋତେ ଦେଖିବା ଶେଷ ହୋଇଯାଏ, ମୋତେ ଦେଖିଲେହିଁ ତାଙ୍କୁ ଉପଲବ୍ଧି କରିବା ସହଜ ହୁଏ । ପ୍ରଥମ ଦେଖାରୁହିଁ ଆମେ ଦୁହେଁ ଏଇଭଳି ଅଭିନ୍ନାତ୍ମା ହୋଇଯାଇଥିଲୁ । ପାର୍ଥ ବଡ଼ ବିଦଗ୍ଧ ପୁରୁଷ । ଶାସ୍ତ୍ର ଓ ଶସ୍ତ୍ର ଉଭୟ ବିଦ୍ୟାରେ ସେ ଧୂରୀଣ । ତାଙ୍କର ଧନୁ ଧାରଣର ମୁଦ୍ରା ହିଁ ଜଣାଇ ଦିଏ ଯେ ଆର୍ଯ୍ୟାବର୍ତ୍ତର ସେ ସର୍ବଶ୍ରେଷ୍ଠ ଧନୁର୍ବୀତ୍ । ବଡ଼ ଅଭିମାନୀ ସେ । ମୋ ପାଇଁ ତାଙ୍କର ଅଦେୟ କିଛି ନଥିଲା । ତାଙ୍କ ପାଇଁ ମଧ୍ୟ ମୋର ଶ୍ରଦ୍ଧାର ଭଣ୍ଡାରରେ ଟିକେବି କାର୍ପଣ୍ୟ ନଥିଲା ।

ଚତୁର୍ଥ ଓ ପଞ୍ଚମ ପାଣ୍ଡବ, ମାଦ୍ରୀ ନନ୍ଦନ ଦୁଇ ଯମଜ ସନ୍ତାନ, ଅଥଚ ମାଦ୍ରୀ ତନୟ ବୋଲି ସେମାନେ ନିଜେବି ଭୁଲି ଯାଇଥିଲେ । ଜଗତବି ସେ କଥା ସ୍ମରଣ ରଖୁନଥିଲା । ପୂଜ୍ୟାକୁନ୍ତୀ ନନ୍ଦନ ତ୍ରୟଙ୍କର ଏହୁହେଁ ଅତ୍ୟଧିକ ସ୍ନେହର ପାତ୍ର ଥିଲେ । ନକୁଳ ଅତ୍ୟନ୍ତ ରୂପବାନ । ସହଦେବ ସ୍ୱଭାବତଃ ଲଜ୍ୟାଶୀଳ, ସ୍ୱଳ୍ପବାକ୍, କିନ୍ତୁ ଜ୍ଞାନତପସ୍ୱୀ, ଭବିଷ୍ୟତ୍ ଦ୍ରଷ୍ଟା । ସ୍ୱତଃପ୍ରବୃତ ହୋଇ କାହାରିକୁ ସେ କିଛି କହନ୍ତି ନାହିଁ । ଭବିଷ୍ୟତ ସଂପର୍କରେ ତାଙ୍କୁ ପ୍ରଶ୍ନ କଲେ ସେ କିନ୍ତୁ ସଠିକ୍ ଉତ୍ତର ଦିଅନ୍ତି ।

ଏମାନେ ପ୍ରତ୍ୟେକ ଏଭଳି ମାର୍ଜିତ ବ୍ୟବହାର ସଂପନ୍ନ ଯେ ହସ୍ତିନାପୁରରେ ସେମାନେ କିଭଳି ଅସୁରକ୍ଷିତ ଅବସ୍ଥାରେ ଥିଲେ । କୌରବଭ୍ରାତାଙ୍କର ଈର୍ଷାର ବିଷାକ୍ତ ବଳୟ ଭିତରେ ପ୍ରତିମୁହୂର୍ତ୍ତରେ କିଭଳି ରୁଦ୍ଧଶ୍ୱାସର ଯନ୍ତ୍ରଣା ଅନୁଭବ କରୁଥିଲେ ସେ କଥା ସେମାନେ କାହାରି ଆଗରେ ପ୍ରକାଶ କରୁନଥିଲେ । ତଥାପି ଅତ୍ୟଧିକ ହୃଦ୍ୟତା ବଶତଃ କିଛି ସଂବାଦ ପାର୍ଥଠାରୁ ଓ ଆଉକିଛି ସ୍ପଷ୍ଟବାକ୍ ଭୀମସେନଙ୍କ ଠାରୁ ମୁଁ ସଂଗ୍ରହ କରିଥିଲି । ଏଇ ପଞ୍ଚଭ୍ରାତାଙ୍କୁ ଦେଖି ମୁଁ ସ୍ପଷ୍ଟ ହୃଦୟଙ୍ଗମ କରିଥିଲି ଯେ ଭବିଷ୍ୟତରେ ସମଗ୍ର ଭାରତବର୍ଷକୁ ସୁସଂଗଠିତ କରି ଧର୍ମର ପ୍ରତିଷ୍ଠା ନିମିତ୍ତ ଏଇ ମାନେ ହିଁ ମୋର ଗୋଟିଏ ଶକ୍ତିଶାଳୀ ଆୟୁଧ ତୁଲ୍ୟ । ଏଭଳି ଶକ୍ତିଶାଳୀ, ସୁନିୟନ୍ତ୍ରିତ ଦିବ୍ୟାସ୍ତ୍ର ଗୁଡ଼ିକୁ ମୁଁ ଆଦୌ ହାତଛଡ଼ା କରିବାକୁ ଚାହିଁନଥିଲି ।

କିଛିଦିନ ହେଲା ଲକ୍ଷ୍ୟ କରୁଥିଲି ଭ୍ରାତା ଭୀମସେନ ଜ୍ୟେଷ୍ଠଭ୍ରାତା ବଳରାମଙ୍କର ସାନିଧ୍ୟ ଲାଭ କଲେ କୃତାର୍ଥ ହୋଇ ଉଠୁଛନ୍ତି । ଅନେକ ସମୟରେ ଶିଷ୍ୟସୁଲଭ ନମ୍ରତାର ସହ ତାଙ୍କ ପାଦତଳେ ବସି ମନ ଯୋଗ ସହକାରେ ତାଙ୍କ କଥା ଶୁଣୁଛନ୍ତି । ସେଦିନ କୌତୁକ ଛଳରେ ଜ୍ୟେଷ୍ଠଭ୍ରାତାଙ୍କୁ ପ୍ରଶ୍ନକଲି - 'ଦ୍ୱାରକା ନଗରୀରେ ଏକ ଗୁରୁକୁଳ ଆଶ୍ରମ ସ୍ଥାପନାର ଯୋଜନା ଚାଲିଛି ବୋଧହୁଏ ! ଭ୍ରାତା ଭୀମସେନଙ୍କର ଶିଷ୍ୟ ସୁଲଭ ନିଷ୍ଠା ଏକାଗ୍ରତା ତା'ରି ସୂଚନା ଦେଉଛି । ପୁଣି ଜ୍ୟେଷ୍ଠଭ୍ରାତାଙ୍କର ଉଦ୍ୟାନର ଦକ୍ଷିଣ ପାର୍ଶ୍ୱସ୍ଥ ଅବ୍ୟବହୃତ ମୁକ୍ତ ପ୍ରାଙ୍ଗଣ ପରିଷ୍କୃତ । ଜ୍ୟେଷ୍ଠଭ୍ରାତା ଭୀମଙ୍କୁ ଚାହିଁ ହସିଦେଲେ ଓ ମୋତେ କହିଲେ - 'ଏଭଳି ଶିଷ୍ୟ ମିଳିଲେ ସମଗ୍ର ଜୀବନ ମୁଁ ଗୁରୁକୁଳ ଆଶ୍ରମରେ ବିତେଇ ଦେଇ ପାରିବିରେ ଘନଶ୍ୟାମ । ଭୀମସେନର ବି ନମ୍ର ଆଚରଣ ! ହସ୍ତିନାରେ ରାଜକୁମାର ମାନଙ୍କ ଭିତରେ ଗଦାଯୁଦ୍ଧ ଅମୀମାଂସିତ ରହିଛି । ଉଭୟେ ଶକ୍ତିଶାଳୀ, ଗଦାକୁଶଳୀ । ମୁଁ ଯାହା ଦେଖୁଛି କେବଳ ଗଦାଯୁଦ୍ଧର କେତେକ ନିୟମ ସଂପର୍କରେ ସେ ଦୁହେଁ ଅନଭିଜ୍ଞ । ଏହି ଉନ୍ନତ କୌଶଳ ଶିକ୍ଷା କରିବା ପାଇଁ ଭୀମସେନ ଆଗ୍ରହୀ । ସେହି ମୁକ୍ତ ପ୍ରାଙ୍ଗଣରେ ମୁଁ ତାଙ୍କୁ ଗଦାକୌଶଳ ଶିକ୍ଷା ଦେଉଛି ।'

ମୋର ଗୋଟାଏ ବଡ଼ ସମସ୍ୟା ସମାଧାନ ହୋଇଯିବା ଭଳି ମୁଁ ସେ ଦୁହିଁଙ୍କୁ ଅଭିଭୂତ

ହୋଇ ଚାହିଁ ରହିଲି । ଜ୍ୟେଷ୍ଠଭ୍ରାତା ବେଶ୍ ଗମ୍ଭୀର ସ୍ୱରରେ ପୂର୍ବଭଳି ଭୀମଙ୍କୁ କହିଲାଗିଲେ- 'ଗୋଟିଏ କଥା ସର୍ବଦା ସ୍ମରଣ ରଖିବ ଗଦା କେବଳ ଶକ୍ତିର ପ୍ରତୀକ । ଶୌର୍ଯ୍ୟର ପ୍ରତୀକ । ପ୍ରତିପକ୍ଷର ଶରୀର ମଧ୍ୟରେ ଯାହା ଅଶକ୍ତ, ଦୁର୍ବଳ ଅଂଶ ତା' ଉପରେ ଗଦାଘାତ କରିବ ନାହିଁ । ତାହା ଗଦା କୁଶଳୀର ଅପମାନ ସ୍ୱରୂପ । ଅର୍ଥାତ୍ ପ୍ରତିପକ୍ଷର ନିମ୍ନାଙ୍ଗରେ ଜୀବନ ବିନିମୟରେ ସୁଦ୍ଧା ଗଦାଘାତ କରିବ ନାହିଁ । ତାହା ଗଦାଯୁଦ୍ଧର ନିୟମ ବିରୁଦ୍ଧ !'

ଅଥଚ ବିଧିର ବିଡ଼ମ୍ବନା ଦେଖ ! ଏହି ନିୟମ ବିରୁଦ୍ଧ କାର୍ଯ୍ୟ ଶେଷରେ ଭୀମଙ୍କ ଭଳି ପ୍ରଚଣ୍ଡ ଶୌର୍ଯ୍ୟଶାଳୀ ବୀରଙ୍କୁ ମଧ୍ୟ କରିବାକୁ ପଡ଼ିଛି । ଆଜି ମୋର ଚକ୍ଷୁ ସମ୍ମୁଖରେ ଉଦ୍‌ଭାସିତ ହେଉଛି କୁରୁରଣାଙ୍ଗନର ସେହି ଭୀଷଣ ଦୃଶ୍ୟ । ଅଷ୍ଟାଦଶ ଦିବସର ମହାସମରର ଅନ୍ତିମ ଲଗ୍ନ । ବିନାଯୁଦ୍ଧରେ ସୂଚ୍ୟଗ୍ର ପରିମିତ ଭୂମି ଦେବ ନାହିଁ ବୋଲି ଯେଉଁ ଦୁର୍ଯ୍ୟୋଧନ ଦିନେ ପଣ କରିଥିଲା ଅଷ୍ଟାଦଶ ଦିବସ ବ୍ୟାପି ମହାସମରରେ ଅଜସ୍ର ରକ୍ତ କ୍ଷରଣ, ଅସଂଖ୍ୟ କ୍ଷତ୍ରିୟ ନିଧନ ପରେ ସୁଦ୍ଧା ଯିଏ ଯୁଦ୍ଧ ବନ୍ଦ ନକରି ସର୍ବସ୍ୱ ହରାଇ ସର୍ବସ୍ୱାନ୍ତ ହୋଇଯାଇଥିଲା କେବଳ ନିଜର ଆତ୍ମରକ୍ଷା ପାଇଁ । ହଁ କେବଳ କୌଣସି ଏକ ନିରାପଦ ସ୍ଥାନରେ ଘଡ଼ିଏ ବିଶ୍ରାମ ନେବା ପାଇଁ ଯିଏ ନିଜର ସତୁରୀ ଭାର ଗଦା ସହ ପ୍ରାଣ ବିକଳରେ ଧାଇଁ ଥିଲା, ଯିଏ ଟିକିଏ ଆଶ୍ରୟ ଆଶାରେ ପିତାମହ ଭୀଷ୍ମଙ୍କର ଶରଶଯ୍ୟା ନିକଟକୁ ମଧ୍ୟ ଧାଇଁ ଯାଇଥିଲା । ସେ ଜାଣିନଥିଲାଯେ ସେତେବେଳକୁ ଦ୍ୱିତୀୟ ପାଣ୍ଡବ ବୃକୋଦର ନୁହେଁ ବରଂ ମହାକାଳହିଁ ବୃକୋଦର ରୂପରେ ତା' ପଛେ ପଛେ ଧାଇଁଥିଲା । ସେତେବେଳକୁ ତା'ର ଆଶ୍ରୟ ନିମିତ୍ତ ସମଗ୍ର ତ୍ରିଭୁବନ ଭିତରେ ସୂଚ୍ୟଗ୍ର ପରିମିତ ଭୂମିର ଅବଶେଷ ସୁଦ୍ଧା ନଥିଲା । ଦୁର୍ଯ୍ୟୋଧନର ସେହି ସଂକଟ କାଳରେ ଭୀମସେନ ଗଦାଯୁଦ୍ଧର ସମସ୍ତ ନିୟମକୁ ଉଲ୍ଲଙ୍ଘନ କରି ତା'ର ନିମ୍ନାଙ୍ଗରେ, ତା'ର ଜାନୁପ୍ରଦେଶରେ ଗଦାଘାତ କରିଥିଲେ । ଭଗ୍ନଜାନୁ ଦୁର୍ଯ୍ୟୋଧନ ସରୀସୃପ ଭଳି ଘୁଷୁରି ଘୁଷୁରି ପ୍ରାଣ ବିସର୍ଜନ କରିଥିଲା । ଦ୍ୱିତୀୟ ପାଣ୍ଡବଙ୍କୁ ଏଥିପାଇଁ ପରୋକ୍ଷରେ ମୁଁ ହିଁ ପ୍ରୋତ୍ସାହନ ଦେଇଥିଲି । ହଁ, ହଁ, ମୁଁ ହିଁ ଗଦାଯୁଦ୍ଧର ନିୟମ ଉଲ୍ଲଙ୍ଘନ କରିବାପାଇଁ ନିର୍ଦ୍ଦେଶ ଦେଇଥିଲି । ନହେଲେ ଭୀମସେନ ତାଙ୍କର ପ୍ରତିଜ୍ଞା ପୂରଣ କରିଥା'ନ୍ତେ କିପରି ? - ନହେଲେ ଭାରତୀୟ ସଂସ୍କୃତିରେ ପରଦାର ଯେ ମାତୃବତ୍ ସମ୍ମାନନୀୟା ଯୁଗ ଯୁଗର ଏ ଧାରଣା ଭ୍ରମାତ୍ମକ ହୋଇଯାଇନଥା'ନ୍ତା ? ଯାଜ୍ଞସେନୀଙ୍କ ଅନ୍ତର ତଳେ ସତୀ ଲାଂଛନାର ଦାବଦାହ ଦୀର୍ଘ ପଞ୍ଚଦଶ ବର୍ଷ ଧରି ଯେପରି ଅହରହ ପ୍ରଜ୍ୱଳିତ ହେଉଥିଲା ତା' ନିର୍ବାପିତ ହୋଇଥା'ନ୍ତା କିପରି ? ଆଜି ଏଇ ଅନ୍ତିମ ଲଗ୍ନରେ ମନେ ପଡୁଛି ସେ ଭୀଷଣ ଦୃଶ୍ୟ । ଥାଉ ସେ କଥା ପରେ । ହେ ଗଦାକୁଶଳୀ ବଳରାମ ! ତୁମେ ମୋତେ କ୍ଷମା କରିଦିଅ ।

ପୂଜ୍ୟାକୁନ୍ତୀତ ତାଙ୍କ ପାରିବାରିକ କଳହ ସଂପର୍କର ସୂଚନା ସୁଦ୍ଧା ଦେଲେ ନାହିଁ ।

ବହୁତ ପଚାରିବା ପରେ କେବଳ ଏତିକିମାତ୍ର କହିଲେ ଯେ, 'କୁରୁଶ୍ରେଷ୍ଠ ପିତୃବ୍ୟ ଭୀଷ୍ମ ଓ ମହାମନା ବିଦୁର ଥିବା ପର୍ଯ୍ୟନ୍ତ ମୋ ପୁତ୍ର ଗଣ ହସ୍ତିନାରେ ସଂପୂର୍ଣ୍ଣ ସୁରକ୍ଷିତ ।'

ତାପରେ ପଦ୍ମଦଳ ସଦୃଶ ତାଙ୍କର ଦୁଇ ଆୟତ୍ତ ନେତ୍ରରେ ଜଳବିନ୍ଦୁ ଛଳ ଛଳ ହେଲା । ସେ ମୋତେ ଆଦର କରି ସ୍ନେହ ବିଗଳିତ, ଭାବବିହ୍ୱଳିତ ସ୍ୱରରେ କହିଲେ- 'ସର୍ବୋପରି ମୋ ପୁତ୍ରଗଣଙ୍କ ପଶ୍ଚାତରେ ତୁମେ ରହିଛ ମଧୁସୂଦନ । ତୁମେତ ବିପଦ ଭଂଜନ, ମୋ ପୁତ୍ରମାନେ ବିପନ୍ନ ହେବେ କାହିଁକି ?'

ଥରେ ସମୁଦ୍ରସ୍ନାନ ଉଦ୍ଦେଶ୍ୟରେ ମୁଁ, ପାର୍ଥ ଓ ଭ୍ରାତା ଭୀମ ସମୁଦ୍ରତୀରକୁ ଯାଇଥିଲୁ । ସେଠାରେ ଅଶାନ୍ତ ଲହରୀ ମାଳକୁ ଦେଖି ଅନ୍ୟମନସ୍କ ଭାବେ ମୁଁ ପାର୍ଥଙ୍କୁ ପ୍ରଶ୍ନ କଲି - 'ସଖା ପାର୍ଥ ! ଶୁଣିଛି ତୁମେ ଧନୁର୍ବିଦ୍ୟାରେ ବିବିଧ କୌଶଳ ଆୟତ୍ତ କରିଛ ? ବାୟବାସ୍ତ୍ର ଦ୍ୱାରା କୃତ୍ରିମ ପ୍ରଭଞ୍ଜନ ସୃଷ୍ଟି କରିବାଠାରୁ, ଆଗ୍ନେୟାସ୍ତ୍ର ଦ୍ୱାରା ପ୍ରଜ୍ୱଳିତ ଅଗ୍ନି ସୃଷ୍ଟି କରିବା, ତୀର ସଂଧାନଦ୍ୱାରା କୃତ୍ରିମ ମେଘପଟଳ ସୃଷ୍ଟି କରିବା, ଭୌମ୍ୟାସ୍ତ୍ର ଦ୍ୱାରା ଭୂତଳରେ ପ୍ରବେଶ କରିବା ପର୍ଯ୍ୟନ୍ତ ବହୁ ଅଲୌକିକତା ପ୍ରଦର୍ଶନ କରିଛ !'

ସଖା ପାର୍ଥ ନିଜର ପ୍ରଶଂସା ଶୁଣି ଲଜ୍ଜିତ ହୋଇଗଲେ । କଥାଟାକୁ ଏଡ଼େଇବାକୁ ଚେଷ୍ଟା କଲେ ମାତ୍ର ଭ୍ରାତା ଭୀମ ତତ୍‌କ୍ଷଣାତ୍ କହିଉଠିଲେ- 'ତଥାପି ସେ ସୂତପୁତ୍ରର ଦୁଃସାହସକୁ ଦେଖ କେଶବ ! ଅସ୍ତ୍ର ପରୀକ୍ଷା ଦିବସରେ ଅର୍ଜୁନ ବିବିଧ କୌଶଳ ପ୍ରଦର୍ଶନ କରି ସମଗ୍ର ଦର୍ଶକ ମଣ୍ଡଳୀକୁ ଚମତ୍କୃତ କରିବା ସହିତ ସେମାନଙ୍କର ଚିତ୍ତ ଜୟ କରିସାରିଥିଲା । ଗୁରୁଦେବ ଘୋଷଣା କରିସାରିଥିଲେ ଯେ ଅର୍ଜୁନ ହିଁ ଅଦ୍ୱିତୀୟ ଧନୁର୍ବିତ୍ ! ମାତ୍ର ସେଇ ସମୟରେ ସୂତପୁତ୍ର କର୍ଣ୍ଣ ଅନାହୂତ ଭାବରେ ପ୍ରବେଶ କରି ଏକ ଅବାଂଛନୀୟ ପ୍ରତିକ୍ରିୟା ପ୍ରକାଶ କଲା । ଏ ଜନ୍ମରେ ତ ନୁହେଁ କୌଣସି ଜନ୍ମରେ ସୁଦ୍ଧା ସେ ମୋ କନିଷ୍ଠ ଭ୍ରାତା ଅର୍ଜୁନ ସହ ସମକକ୍ଷ ହୋଇପାରିବକି ? ମା' ଯଦି ସେଦିନ ହଠାତ୍ ଅସୁସ୍ଥ ହୋଇନଥା'ନ୍ତେ ତେବେ ସେଇଦିନ ଧନୁର୍ଯୁଦ୍ଧରେ ସୂତପୁତ୍ରର ଶିରଛେଦ କରିଥା'ନ୍ତା ଅର୍ଜୁନ । ମା'ଙ୍କ ଅସୁସ୍ଥତା ପାଇଁ ସେଦିନ ସେ ସୁଯୋଗ ହାତଛଡ଼ା ହୋଇଯାଇଥିଲା ।'

ଲକ୍ଷ୍ୟକଲି ସୂତପୁତ୍ର କର୍ଣ୍ଣଙ୍କ ପ୍ରତି ଭ୍ରାତା ଭୀମଙ୍କର ତ ଯଥେଷ୍ଟ ଅବଜ୍ଞାଭାବ ଥିଲା । କର୍ଣ୍ଣଙ୍କର ନାମୋଚ୍ଚାରଣ ଶୁଣିବା ମାତ୍ରେ ପାର୍ଥଙ୍କ ମୁଖ ମୁଦ୍ରାରେ ମଧ୍ୟ ଘୃଣାର ବ୍ୟଞ୍ଜନା ସ୍ପଷ୍ଟ ହୋଇ ଉଠିଥିଲା । ପୂଜ୍ୟା କୁନ୍ତୀଙ୍କର ଅଚାନକ ଅସୁସ୍ଥତା ପଶ୍ଚାତରେ ଯେଉଁ ରହସ୍ୟ ସଂଗୁପ୍ତ ହୋଇଥିଲା । ସେ ସଂପର୍କରେ ଏ ଅବୋଧ ପୁତ୍ରଗଣ ବା କ'ଣ ଜାଣନ୍ତି ?

ଆମକୁ ଖୋଜି ଖୋଜି ନକୁଳ ଆସି ସେଠାରେ ପହଞ୍ଚିଗଲେ । ଆମ ଆଳାପ

ଆଲୋଚନା ଶୁଣିବାପରେ ସେ କହିଲେ- 'ଅଧୀରଥ ତନୟ ନିଜର ସମଗୋଷ୍ଠୀ ଲୋକଙ୍କ ସହ ପ୍ରତିଦ୍ୱନ୍ଦିତା ନକରି ଆମଭଳି ଭାଗ୍ୟଶାଳୀ କୁନ୍ତୀ ନନ୍ଦନଙ୍କ ସହ ପ୍ରତିଦ୍ୱନ୍ଦିତା କରିବାକୁ ଗଲେ ଉପହସିତ ହେବା ସାର ହେବ । ପୁଣି ଆଉ କାହାସହ ନୁହେଁ ଭ୍ରାତା ଧନଞ୍ଜୟଙ୍କ ସହ ?'

'ଆମଭଳି ଭାଗ୍ୟଶାଳୀ କୁନ୍ତୀ ନନ୍ଦନ' - ଏଇ ଶବ୍ଦଟି ଶୁଣି ମୁଁ ଟିକେ ଚମକି ଚାହିଁଲି ନକୁଳଙ୍କୁ । କୁନ୍ତୀ ନନ୍ଦନ ହେବାର ମାନ୍ୟତା ମାଦ୍ରୀ ତନୟ ପାଇଛନ୍ତି ଅଥଚ ଯଥାର୍ଥରେ ଯିଏ କୁନ୍ତୀ ନନ୍ଦନ ସମଗ୍ର ଜୀବନ ସେ ନିଜର ପରିଚୟ ହିଁ ଖୋଜିଛନ୍ତି କେବଳ । ଅବଶେଷରେ ଅଜ୍ଞାତକୁଳଶୀଳର କଳଙ୍କ ଟୀକା ମସ୍ତକରେ ବହନ କରି ଚିରକାଳ ଅପମାନର ଶରବ୍ୟ ହୋଇଛନ୍ତି । ଯେଉଁ ପରିଚୟ ଆଶାରେ ସାରାଜୀବନ ସେ ସନ୍ତପ୍ତ ହୋଇଛନ୍ତି ତା' ସେ ପାଇଥିଲେ ବହୁ ବିଳମ୍ବରେ । ଅଭିମାନରେ, କେବଳ ଅଭିମାନରେହିଁ ମୁହଁ ଫେରାଇ ନେଇଥିଲେ କର୍ଣ୍ଣ । କାହାରିକୁ ଜାଣିବାକୁ ସୁଦ୍ଧା ଦେଇନଥିଲେ ସେ ପରିଚୟର ଇତିହାସ । ମୁଁ ନିଜେ ବି ଚେଷ୍ଟା କରିଥିଲି କର୍ଣ୍ଣଙ୍କ ଅନ୍ତରରୁ ପୋଛି ଦେବାପାଇଁ ସହୋଦର ଭ୍ରାତା ଅର୍ଜ୍ଜୁନଙ୍କ ପ୍ରତି ପୋଷିତ ଥିବା ଇର୍ଷା, ବିଦ୍ୱେଷର ବିଷ ବାଷ୍ପକୁ; ହେଲେ ମୁଁ ମଧ୍ୟ କୃତକାର୍ଯ୍ୟ ହୋଇ ପାରିନଥିଲି । ସେ ସବୁ ଅନେକ ପରର କଥା । ସେଦିନ ନକୁଳଙ୍କ କଥା ଶୁଣିବା ପରେ କେବଳ ଏତିକି କହିଥିଲି - 'ଯାହା ଆଖିକୁ ଦିଶେ ତା' ବି ସବୁବେଳେ ସତ୍ୟ ନୁହେଁ ନକୁଳ !'

ମୋର ବାକ୍ୟ ଶେଷ ନହେଉଣୁ ଭ୍ରାତା ଭୀମ କହି ଉଠିଲେ - 'ଠିକ୍ କହିଛ କେଶବ ! ସୂତପୁତ୍ରର ଧାରଣାଯେ କାନ୍ଧରେ ଧନୁଧାରଣ କରି ବୀରତ୍ୱର ମୁଦ୍ରାରେ ଠିଆ ହୋଇ ବୃଥା ଆସ୍ଫାଳନ ପ୍ରକଟ କଲେ ସେ ବୀର ଭାବେ ଗଣ୍ୟ ହୋଇଯିବ । ଯେ କେହି ଧନୁର୍ଦ୍ଧର ଅର୍ଜ୍ଜୁନ ନୁହେଁ । କୁନ୍ତୀ ନନ୍ଦନ ଭାବେ ଜନ୍ମ ନେବା ପାଇଁ, ବିଶେଷତଃ ଅର୍ଜ୍ଜୁନ ଭାବେ ଜନ୍ମ ନେବା ପାଇଁ ବହୁଜନ୍ମର ତପସ୍ୟା ଆବଶ୍ୟକ ।'

ମୁଁ ନୀରବ ରହିଲି । ସେମାନଙ୍କ ଭୁଲ୍ ଭାଂଗିବାକୁ ଚେଷ୍ଟା କଲି ନାହିଁ ।

ଏଇଭଳି ଆନନ୍ଦ ଉତ୍ସବ, ଆଳାପ ଆଲୋଚନା, ହୃଦ୍ୟତା, ସଂବେଦନଶୀଳତା ଭିତରେ କୁନ୍ତୀ ଓ ପଞ୍ଚଭ୍ରାତାଙ୍କର ହସ୍ତିନା ପ୍ରତ୍ୟାବର୍ତ୍ତନ କରିବାର ସମୟ ନିକଟ ହୋଇ ଆସିଲା । ଆମ୍ଭମାନଙ୍କୁ ସାଦର ନିମନ୍ତ୍ରଣ ଜଣାଇ ସେମାନେ ଫେରିଗଲେ । ଯିବା ସମୟରେ ସେମାନେ କହିଗଲେ 'ଗୋବିନ୍ଦ ! ଆମ ଶରୀର ହିଁ ହସ୍ତିନା ଫେରିଯାଉଛି, ଆତ୍ମା କିନ୍ତୁ ତୁମରି ନିକଟରେ ବନ୍ଧା ପଡ଼ିଛି ।'

ଏମାନେ ଚିରଦିନ ଏଇଭଳି ସୁଶୀଳ । ମୁଁ କହିଲି - 'ଉଁହୁଁ । ଶରୀର ଆଉ ଦେହଭିତରେ ସୂକ୍ଷ୍ମ ପ୍ରଭେଦ ଅଛି ସଖା ପାର୍ଥ ! ବର୍ତ୍ତମାନ ତୁମ୍ଭେମାନେ ଦେହୀ । କାରଣ ତୁମର

ଏଇଲେ ସମୃଦ୍ଧିର ସମୟ, ବିକାଶର ସମୟ । ଏଦେହ ଶରୀରରେ ପରିଣତ ହେବ ସେତିକିବେଳେ ଯେତେବେଳେ ତା'ର କ୍ଷୟ ଆରମ୍ଭ ହେବ । ତୁମ୍ଭେମାନେ ଅକ୍ଷୟ ଯଶର ଅଧିକାରୀ ହେବ । ତୁମ୍ଭେମାନେ ମୋପାଇଁ ପାଞ୍ଚଟି ତୀର ସଦୃଶ । ମୁଁ କେବଳ ଗୋଟିଏ ସମୁଚିତ ଧନୁର ସନ୍ଧାନରେ ଅଛି, ଯାହାଦ୍ୱାରା ଏ ତୀର ଗୁଡ଼ିକ ଲକ୍ଷ୍ୟ ପଥରେ ସଂଯୋଜିତ ହୋଇ ପାରିବେ । ସେ ସମୟ ବେଶୀ ଦୂର ନାହିଁ । ଆମର ପୁଣି ସାକ୍ଷାତ ହେବ ।'

କିଛିଦିନ  ରାଜପୁରୀ ମୋତେ ଶୂନ୍ୟ ମନେ ହେଲା । ତାପରେ ହଠାତ୍ ଦିନେ ହସ୍ତିନାରୁ ଦୁର୍ଯ୍ୟୋଧନ ଆସି ପହଞ୍ଚିଲେ ଦ୍ୱାରକାରେ । ତାଙ୍କର ସେ ଆଗମନ ଏପରି ଆଡ଼ମ୍ବରପୂର୍ଣ୍ଣ ଥିଲାଯେ, ଦେଖିଲେ ମନେ ହେଉଥିଲା ଐଶ୍ୱର୍ଯ୍ୟ, ଆଡ଼ମ୍ବର ପ୍ରଦର୍ଶନ ହିଁ ତାଙ୍କର ମୁଖ୍ୟ ଲକ୍ଷ୍ୟ । ବନ୍ଧୁ ଦର୍ଶନଟା ଗୌଣ । ଜ୍ୟେଷ୍ଠଭ୍ରାତାଙ୍କୁ ଦେଖି ଦେଖି ବଡ଼ ଭକ୍ତିସହକାରେ ସେ ତାଙ୍କର ପାଦ ପୂଜା ଆରମ୍ଭ କରିଦେଲେ । ମୋର ମନେ ହେଲା ଦୁର୍ଯ୍ୟୋଧନଙ୍କର ଏ ଭକ୍ତି ମଧ୍ୟ ଏକ ସମ୍ଭ୍ରାନ୍ତ ଛଳନା । ଏହା କୌଣସି ନା କୌଣସି ଉଦ୍ଦେଶ୍ୟ ପ୍ରଣୋଦିତ ।

କିଛି ଦିନ ପରେ ଜାଣିବାକୁ ପାଇଲି ଦୁର୍ଯ୍ୟୋଧନ ଜ୍ୟେଷ୍ଠଭ୍ରାତାଙ୍କ ଠାରୁ ଗଦାକୌଶଳ ଶିକ୍ଷା କରିବାକୁ ଆସିଛନ୍ତି । ଆଶ୍ଚର୍ଯ୍ୟ ! ଜନ୍ମଲଗ୍ନରୁ ହିଁ ଦୁର୍ଯ୍ୟୋଧନ ଭ୍ରାତା ଭୀମଙ୍କୁ ହିଁ ପ୍ରତିଦ୍ୱନ୍ଦୀ ବୋଲି ମନେ କରି ଆସିଛନ୍ତି । ଏତେ ଅସ୍ତ୍ର ଶସ୍ତ୍ର ଥାଉ ଥାଉ ନିଜର ଅସ୍ତ୍ର ଭାବେ ସେ କେବଳ ଗଦାକୁହିଁ ନିର୍ବାଚନ କରିଛନ୍ତି । କାରଣ ଗଦାହିଁ ଭୀମଙ୍କର ପରିଚୟ । କଥା ପ୍ରସଂଗରେ ସେ ଭୀମଙ୍କୁ ଭାଇ ବୋଲି ସ୍ୱୀକାର ନକରି 'ପ୍ରତିପକ୍ଷ' ବୋଲି ସ୍ୱୀକାର କରୁଥିଲେ । ହସ୍ତିନା ରାଜ୍ୟର ସୁରକ୍ଷା ନିମିତ୍ତ ସେ ଗଦାଯୁଦ୍ଧର ଉନ୍ନତ କୌଶଳ ଶିକ୍ଷା କରିବାକୁ ଚାହୁଁ ନଥିଲେ । ସେ ଚାହୁଁଥିଲେ ଏହି କୌଶଳ ଶିକ୍ଷା ମାଧ୍ୟମରେ କିଭଳି ଭୀମସେନଙ୍କୁ ପରାସ୍ତ କରିବେ । ଅର୍ଥାତ୍ ଭୀମଙ୍କ ପ୍ରତି ତଥା ପାଣ୍ଡୁନନ୍ଦନଙ୍କ ପ୍ରତି ତାଙ୍କର ବିଦ୍ୱେଷ ପୋଷିତ ଅନ୍ତରର ବୈରଭାବ କଥା ଓ କାର୍ଯ୍ୟରେ ସ୍ପଷ୍ଟ ହୋଇ ଉଠୁଥିଲା । ତଥାପି ଜ୍ୟେଷ୍ଠଭ୍ରାତା ଦୁର୍ଯ୍ୟୋଧନଙ୍କୁ ଗଦାଯୁଦ୍ଧ ଶିକ୍ଷା ଦେଇଥିଲେ । ଶିକ୍ଷା ସମୟରେ ତାଙ୍କର ଏକାଗ୍ରତା ଓ ନିଷ୍ଠାରେ ଜ୍ୟେଷ୍ଠଭ୍ରାତା ପ୍ରଭାବିତ ହୋଇଯାଇଥିଲେ ମଧ୍ୟ । ମନେ ମନେ ସେ ଏକ କ୍ଷୀଣ ଆଶା ପୋଷଣ କରିଥିଲେ; ଆମର ଏକମାତ୍ର ଅଲ୍ୟଳ ଭଉଣୀ ସୁଭଦ୍ରା ସହ ଦୁର୍ଯ୍ୟୋଧନଙ୍କର ବିବାହ ଦେବାକୁ । ସୁଭଦ୍ରା ସେତେବେଳେ ନିତାନ୍ତ ଶିଶୁକନ୍ୟା । ତଥାପି ତା'ର ମାନସିକତା ମୁଁ ବେଶ୍ ଅଧ୍ୟୟନ କରିଥିଲି ଓ ଜାଣିଥିଲି ତା' ଭଳି ସରଳା ଝିଅଟିଏ ଦୁର୍ଯ୍ୟୋଧନଙ୍କ ଭଳି ଉଗ୍ର ସ୍ୱଭାବ ସଂପନ୍ନ ବ୍ୟକ୍ତି ସହ ମୁହୂର୍ତ୍ତଟିଏ ଶାନ୍ତିରେ ରହି ପାରିବ ନାହିଁ । ଏସବୁ ସତ୍ତ୍ୱେ ଆଉଥରେ ତା'ର ଶିଶୁ ମନଟିକୁ ପରଖିବା ପାଇଁ ଦିନେ ତା'ର କ୍ରୀଡ଼ା ଗୃହରେ ଉପସ୍ଥିତ ହେଲି । ସେ ତା'ର ସହଚରୀ ମାନଙ୍କ ସହିତ ପୁତଳୀ କ୍ରୀଡ଼ାରେ ମଗ୍ନ ଥିଲା । ମୃତ୍ତିକା ନିର୍ମିତ ପୁତଳି ଗୁଡ଼ିକୁ ବଡ଼ ଯତ୍ନରେ ସୁଭଦ୍ରା ତା'

ଟିକି ହାତରେ ସଜାଉଥିଲା । ରାଜକୁମାର ସଜରେ ସଜ୍ଜିତ ଏକ ପୁତଳୀ ଜରିର ପୋଷାକ, ସୋଲର ଜରିଖଚିତ ମୁକୁଟ, କାନ୍ଧରେ ବାଉଁଶ ପାତର ଛୋଟିଆ ଧନୁ ଓ ତୀର । ତା' ନିକଟରେ ମୁଣ୍ଡରେ ଜରି ବୁଟିର ଓଢ଼ଣୀ ଦେଇ ବଧୂସାଜରେ ଆଉଏକ ପୁତଳୀ । ମୁଁ ଅନେକ ସମୟ ତା'ର ନିବିଷ୍ଟତା ଲକ୍ଷ୍ୟ କଲାପରେ କହିଲି 'ରାଜପୁତ୍ରକୁ ଧନୁତୀର କାହିଁକି ଦଉଛୁ ସୁଭଦ୍ରା ? ଗଦା ଦେଉନୁ ଅଧିକ ବଳିଷ୍ଠ ଦିଶିବ !'

ସେ ଚମକି ପଡ଼ି ମୋତେ ଚାହିଁଲା ଓ ଖିଲ୍ ଖିଲ୍ କରି ହସି ଉଠି କହିଲା - 'ଛିଃ ! ଗଦା ଧାରଣ କଲେ ବଳିଷ୍ଠ ଦିଶିବ ସତ, ମାତ୍ର ବୀର ଭଳି, ମାନେ ତୃତୀୟ ପାଣ୍ଡବ ଭ୍ରାତା ଅର୍ଜ୍ଜୁନଙ୍କ ଭଳି ଦିଶିବକି ?

ମୁଁ ପରମ ସ୍ନେହରେ ତାକୁ କୋଳାଗ୍ରତ କରି କହିଲି - 'ତେବେତ ଖୋଜି ଖୋଜି ଗୋଟେ ଧନୁର୍ଦ୍ଧାରୀ ବୀର ସହ ତୋର ବିବାହ ଦେବା ।'

ସେ ଲଜ୍ଜ୍ୟାରେ ମୋ ଛାତିରେ ମୁହଁ ଲୁଚାଇ ଦେଲା । ଧନୁର୍ଦ୍ଧାରୀ ଅର୍ଜ୍ଜୁନଙ୍କୁ ନେଇ ତା' ଟିକି ଟିକି ଆଖିର ଚୂନା ଚୂନା ସ୍ୱପ୍ନ ଗୁଡ଼ିକ ମୁହୂର୍ତ୍ତକ ପାଇଁ ମୋ ଆଖିକୁ ସଂକ୍ରମିତ ହୋଇଆସିଲା

ସେତେବେଳେ ମୁଁ ଚିନ୍ତା କରୁଥିଲି ମଦୋଦ୍ଧତ ଦୁର୍ଯ୍ୟୋଧନର ପ୍ରଶଂସାରେ ଜ୍ୟେଷ୍ଠଭ୍ରାତା ଯେତେ ପଞ୍ଚମୁଖ ହୁଅନ୍ତୁନା କାହିଁକି ମୁଁ ସୁଭଦ୍ରାର ସ୍ୱପ୍ନଭଂଗ ହେବାକୁ ଦେବିନାହିଁ । ଗଭୀର ଅନ୍ତର୍ଦୃଷ୍ଟି ଓ ନିବିଡ଼ ପର୍ଯ୍ୟବେକ୍ଷଣ ଶକ୍ତି ବଳରେ ମୁଁ ଜାଣିଥିଲି ଦୁର୍ଯ୍ୟୋଧନ ସୁଭଦ୍ରା ନିମିତ୍ତ ଆଦୌ ଯୋଗ୍ୟ ପାତ୍ର ନୁହେଁ । ଜ୍ୟେଷ୍ଠଭ୍ରାତା ଅତ୍ୟନ୍ତ ସରଳ ଚିତ୍ତ ବିଶିଷ୍ଟ ବୋଲି ରାମ ଭ୍ରମରେ କାଚଖଣ୍ଡକୁ ଏତେ ସମ୍ମାନ ଦେଉଛନ୍ତି ।

ପ୍ରଶାସକ ହେବାଭଳି ଦୁରୂହ କାର୍ଯ୍ୟ ଆଉକିଛି ନାହିଁ । ଦୋଷଗୁଣକୁ ପରଖିବାର ଶକ୍ତି ଯାହାର ନଥାଏ ସେ ପ୍ରଶାସକ ହେବା ପାଇଁ ଅଯୋଗ୍ୟ । ଅନେକ ଜିନିଷ ଦେଖିବାକୁ ହୁଏ । ଅନେକ ଜିନିଷ ଶୁଣିବାକୁ ହୁଏ ମାତ୍ର ଅଳ୍ପ ପ୍ରକାଶ କରିବାକୁ ହୁଏ । ଆଭ୍ୟନ୍ତରୀଣ ବିଶୃଙ୍ଖଳାର ମୂଳୋତ୍ପାଟନ କରିବା ପାଇଁ ଜଣେ ପ୍ରଶାସକକୁ ସର୍ବଦା ଆଭ୍ୟନ୍ତରୀଣ ପରିସ୍ଥିତି ସଂପର୍କରେ ସଚେତନ ରହିବାକୁ ହୋଇଥାଏ । ଅସନ୍ତୋଷର ଦାବାଗ୍ନି ପ୍ରଜ୍ଜ୍ୱଳିତ ହେବା ପୂର୍ବରୁ ସମସ୍ୟାର ସମାଧାନ କରିବାକୁ ହୁଏ । ଏସବୁର ସଂବାଦ ସଂଗ୍ରହ କରିବାକୁ ବିଶ୍ୱସ୍ତ ଗୁପ୍ତଚର ଗଣ ଦ୍ୱାରକାରେ ନିଯୁକ୍ତି ପାଇଥା'ନ୍ତି । ଠିକ୍ ସେହିଭଳି ବହିଃଶତ୍ରୁ ବା ବହିଃମିତ୍ରଙ୍କର ସଠିକ୍ ସଂବାଦ ସଂଗ୍ରହ ନିମିତ୍ତ ସମଗ୍ର ଆର୍ଯ୍ୟାବର୍ତ୍ତରେ ବିଶେଷତଃ ହସ୍ତିନା, ପ୍ରାଗ୍‌ଜ୍ୟୋତିଷପୁର, ପାଞ୍ଚାଳ, ଗାନ୍ଧାର, ମତ୍ସ୍ୟ ପୌଣ୍ଡ୍ରକ, ପ୍ରଭୃତି ରାଷ୍ଟ୍ରରେ ଆମର ଗୁପ୍ତଚରଗଣ ନିଯୁକ୍ତ ଥାଆନ୍ତି ।

## ।। ଏକାଦଶ ଗ୍ରନ୍ଥିମୋଚନ ।।

ଦ୍ୱାରକାରେ ସେତେବେଳକୁ ବହୁଚର୍ଚ୍ଚିତ ବିଷୟ ଥାଏ ଧନାଢ୍ୟ ସତ୍ରାଜିତ୍‌ଙ୍କର ସ୍ୟମନ୍ତକ ମଣି । ସତ୍ରାଜିତ୍ ଓ ତାଙ୍କର କନିଷ୍ଠ ଭ୍ରାତା ପ୍ରସେନ୍‌ଜିତ୍ ଉଭୟେ ଏହି ଦୁର୍ଲଭ ମଣି ପ୍ରଭାବରୁ ଅଜସ୍ର ସ୍ୱର୍ଣ୍ଣ ଖଣ୍ଡର ଅଧିକାରୀ ଥିଲେ । ସୂର୍ଯ୍ୟଦେବଙ୍କ ପ୍ରଦତ୍ତ ଏହି ମଣିଟିକୁ ଉପଯୁକ୍ତ ପୂଜାର୍ଚ୍ଚନା କରି ସୂର୍ଯ୍ୟଦେବଙ୍କୁ ସନ୍ତୁଷ୍ଟ କରି ଦୈନିକ ସେମାନେ ଅଷ୍ଟଭାର ସ୍ୱର୍ଣ୍ଣଖଣ୍ଡ ପ୍ରାପ୍ତ ହେଉଥିଲେ । ବସ୍ତୁ ବିତ୍ତ, ସ୍ୱର୍ଣ୍ଣଖଣ୍ଡହିଁ ଅନେକ ସମୟରେ ମଣିଷକୁ ଦାମ୍ଭିକ, ଅହଂକାରୀ କରିଥାଏ । ମୋର ଅବଶ୍ୟ ବସ୍ତୁବିତ୍ତ ବା ସ୍ୱର୍ଣ୍ଣଖଣ୍ଡ ପ୍ରତି କୌଣସିଦିନ ପ୍ରଲୋଭନ ନଥାଏ । ଦ୍ୱାରକାର ଅଜସ୍ର ଐଶ୍ୱର୍ଯ୍ୟର ସମାରୋହ ଭିତରେ ତୁଳୀତଳ୍ପ ଶଯ୍ୟା ଅପେକ୍ଷା ଜନନୀ ଯଶୋମତୀଙ୍କର ସ୍ନେହାଞ୍ଚଳରେ ମୁଁ ଅଧିକ ଅନାହତ ସୁଖନିଦ୍ରାରେ ଶୟନ କରି ପାରୁଥିଲି । ପ୍ରାଚୁର୍ଯ୍ୟମୟୀ ଦ୍ୱାରକାର ଅସଂଖ୍ୟ ରଜତ, ସୁବର୍ଣ୍ଣ ପାତ୍ରରେ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ଅପେକ୍ଷା ମୃତ୍‌ପାତ୍ରରେ ଜନନୀଙ୍କ ସ୍ୱହସ୍ତ ପ୍ରସ୍ତୁତ ନବନୀତ ହିଁ ମୋତେ ବେଶୀ ଆକର୍ଷଣ କରିଥାଏ । ସୁତରାଂ ସ୍ୟମନ୍ତକ ମଣିର ପ୍ରୟୋଜନ ମୋର ଆଦୌ ନଥିଲା । କିନ୍ତୁ ଦ୍ୱାରକା ନଗରୀର ସମୃଦ୍ଧି ଓ ଉନ୍ନୟନ ମୂଳକ କାର୍ଯ୍ୟପାଇଁ ସେହି ମଣିର ଆବଶ୍ୟକତା ଥିଲା ନିଶ୍ଚୟ । କାରଣ ସେତେବେଳକୁ କଂସର ମୃତ୍ୟୁପରେ କ୍ରମାଗତ ଭାବେ ଊନବିଂଶବାର ମଗଧରାଜ ଜରାସନ୍ଧ ମଥୁରା ଆକ୍ରମଣ କରି ଯାଦବ ଓ ବୃଷ୍ଣିଗଣଙ୍କର ମନୋବଳକୁ ଦୁର୍ବଳ କରିବା ସହିତ ବାରମ୍ବାର ଯୁଦ୍ଧ ବିଗ୍ରହ ଫଳରେ ସେମାନଙ୍କର ଅର୍ଥବଳକୁ ନିତାନ୍ତ ଦୁର୍ବଳ କରିଦେଇଥିଲା । ଶାନ୍ତି ହିଁ ରାଷ୍ଟ୍ରର ସମୃଦ୍ଧି ଆନୟନ କରେ, ଯୁଦ୍ଧନୁହେଁ । ରାଷ୍ଟ୍ରର ପୁନର୍ନିର୍ମାଣ ନିମିତ୍ତ ପ୍ରଭୁତ ସ୍ୱର୍ଣ୍ଣଖଣ୍ଡର ଆବଶ୍ୟକତା ଥିଲା । ସ୍ୟମନ୍ତକ ମଣିଟି ସତ୍ରାଜିତ୍‌ଙ୍କର ବ୍ୟକ୍ତିଗତ ସଂପତ୍ତି ହେଲେହେଁ ଦ୍ୱାରକା ବାସୀ ଦ୍ୱାରକାର ସମୃଦ୍ଧି କଳ୍ପେ ସତ୍ରାଜିତ୍‌ଙ୍କର ସହଯୋଗ କାମନା କରିଥିଲେ । ସତ୍ରାଜିତ୍ କିନ୍ତୁ ଏ ପ୍ରସ୍ତାବରେ ଆଦୌ ରାଜି ନଥିଲେ ।

ଦ୍ୱାରକାବାସୀଙ୍କ ସହ ସମ୍ଭ୍ରାନ୍ତ ସତ୍ରାଜିତ୍‌ଙ୍କର ଏହିଭଳି ପରୋକ୍ଷ ସଂଘର୍ଷ ଚାଲିଥିବା ବେଳେ ସତ୍ରାଜିତ୍‌ଙ୍କର ଭବନ ଅଭ୍ୟନ୍ତରରେ ଏକ କୁମାରୀ କନ୍ୟାର ଚିତ୍ତ ସଂଘର୍ଷ ଚରମ ପର୍ଯ୍ୟାୟରେ ପହଞ୍ଚିଥିଲା । ସେ ହେଉଛନ୍ତି ସତ୍ରାଜିତ୍ ନନ୍ଦିନୀ ସତ୍ୟଭାମା - ମୋ ଜୀବନର ଏକ ରସଘନ ଅଧ୍ୟାୟ । ସେ ମୋତେ କେବେ, କେଉଁଠି, କିପରି ଦେଖିଥିଲେ ମୁଁ କହି ପାରିବି ନାହିଁ । ପଚାରିଲେ କହନ୍ତି - 'ଜନ୍ମ ଜନ୍ମ ଧରି ଦେଖିଛି, ଅତିନିକଟରୁ ଦେଖିଛି । ପ୍ରିୟ ବଲ୍ଲଭ ଭାବେ ଦେଖି ଆସିଛି ।'

ତାଙ୍କ କଥା ସବୁ ଏଇଭଳି । ସେଥିରେ ଯେମିତି ଗୋପକନ୍ୟାଙ୍କର ସ୍ୱରର ପ୍ରତିଧ୍ୱନୀ ମିଶି ରହିଥାଏ । ତେଣୁ ତ ସେ ମୋର ପ୍ରିୟ ବଲ୍ଲଭୀ । ରୁକ୍ମିଣୀଙ୍କର ପ୍ରଣୟାକର୍ଷଣ ଗଭୀର ସରସୀର ଜଳଭଳି ଶାନ୍ତ, ସମାହିତ, ସ୍ଥିର, ଅତଳସ୍ପର୍ଶୀ । ସତ୍ୟଭାମାଙ୍କର ପ୍ରଣୟାବେଗ ସ୍ରୋତମୁଖରା କଳନାଦିନୀ ନଦୀ ଭଳି ଉଦ୍ଦାମ, ଉଚ୍ଛଳ ।

ସତ୍ୟଭାମାଙ୍କୁ ମୁଁ ପ୍ରଥମେ ଦେଖିଲି ଦ୍ୱାରକାନଗରୀର ବସନ୍ତ ଉତ୍ସବରେ । ମହାଶିବରାତ୍ରି ପରଠାରୁ ଉତ୍ସବର ପ୍ରସ୍ତୁତି ଆରମ୍ଭ ହୋଇଯାଏ । ଫାଲଗୁନ ଦଶମୀଠାରୁ ହୋଲି ପର୍ଯ୍ୟନ୍ତ ଦ୍ୱାରକା ରୀତିମତ ଉତ୍ସବ ମୁଖର ହୋଇଉଠେ । ପଡ଼ୋଶୀ ରାଜ୍ୟରୁ ବ୍ୟବସାୟୀଗଣ ସେମାନଙ୍କର ପଣ୍ୟ ଦ୍ରବ୍ୟ ସହ ଆସି ଦ୍ୱାରକାକୁ ଅଧିକ ଲୋକାରଣ୍ୟ କରିଦିଅନ୍ତି । ରାଜଦାଣ୍ଡର ଉଭୟପାର୍ଶ୍ୱରେ ସୁସଜ୍ଜିତ ବିପ୍‌ପଣୀରେ କ୍ରୟ ବିକ୍ରୟ ଅହରହ ଚାଲିଥାଏ । ପ୍ରାୟତଃ ସ୍ତ୍ରୀଲୋକଙ୍କର ଅଳଙ୍କାର, ସୂକ୍ଷ୍ମ ପଟ୍ଟବସ୍ତ୍ର, ଅଂଗରାଗ, ଗୃହସଜ୍ଜାର ଉପକରଣ ମାନ ଅଧିକ ବିକ୍ରୀ ହୁଏ । ସୁତରାଂ କ୍ରେତା ଭାବରେ ସ୍ତ୍ରୀଲୋକମାନେ ହିଁ ଅଧିକ ସଂଖ୍ୟାରେ ଉପସ୍ଥିତ ହୁଅନ୍ତି । ବିବିଧ ବର୍ଣ୍ଣର ବସ୍ତ୍ରରେ ସୁସଜ୍ଜିତା ମହିଳାଗଣ ଦୂରରୁ ପୁଷ୍ପୋଦ୍ୟାନର ଭ୍ରମ ସୃଷ୍ଟି କରୁଥାନ୍ତି । ରାଜଦାଣ୍ଡର ସ୍ଥାନେ ସ୍ଥାନେ ନୃତ୍ୟ, ସଂଗୀତ, ମଲ୍ଲଯୁଦ୍ଧ ଓ ଭୋଜବାଜୀ ପ୍ରଦର୍ଶନ ପ୍ରଭୃତି ବହୁ ଆକର୍ଷଣ ଥାଏ । ସବୁଠାରୁ ବିଶେଷ ଆକର୍ଷଣ ହୋଲିଦିନ ଦ୍ୱାରକାର ଯୁବକ ମାନଙ୍କ ଦ୍ୱାରା ନାଟକ ପ୍ରଦର୍ଶନ । ସେ ନାଟକ ପୁଣି ବ୍ରଜଭୂମିକୁ କେନ୍ଦ୍ରକରି ପ୍ରଦର୍ଶିତ ହୁଏ । ସେହି ନାଟକ ଭିତରେ ଏକ ଚମତ୍କାର ଦୃଶ୍ୟ ଥାଏ ଲହୁଣୀ ଚୋରୀ । ଗୋଟିଏ କଳସୀରେ ଲହୁଣୀ ପରିପୂର୍ଣ୍ଣ କରି କୌଣସି ଉଚ୍ଚସ୍ଥାନରେ ବାନ୍ଧି ଦିଆଯାଏ । ତାହା ଝୁଲନ୍ତ ଅବସ୍ଥାରେ ରହେ । ପ୍ରତ୍ୟେକ ଯୁବକ ମାତ୍ର ଥରଟିଏ ଛୋଟ ଉପଳଖଣ୍ଡ ଦ୍ୱାରା ସେ କଳସୀକୁ ଆଘାତ କରି ସେଥିରେ ଛିଦ୍ର ସୃଷ୍ଟି କରିପାରିଲେ ବିଜୟୀ ବୋଲି ଘୋଷିତ ହୁଅନ୍ତି । ପ୍ରତିବର୍ଷ ମୁଁହିଁ ବିଜୟୀ ହୋଇଥାଏ । ଏ ପ୍ରକାର କ୍ରୀଡ଼ା ସହ ମୁଁ ତ ଶୈଶବରୁ ଅଭ୍ୟସ୍ତ । ଯମୁନା ନଦୀ ତୀରରେ ବହୁ ଜଳାର୍ଥିନୀ ଗୋପ କନ୍ୟାଙ୍କର ଜଳପୂର୍ଣ୍ଣ କଳସୀ ମୁଁ ଅତୀତରେ ଭାଂଗିଛି । ତେଣୁ ଏ ପ୍ରକାର ଲକ୍ଷ୍ୟ ଭେଦରେ ମୋର ସନ୍ଧାନ ଅବ୍ୟର୍ଥ । ଅତୀତର ଏହି ସ୍ମୃତିଚାରଣର ଦିବସଟି ମୋ ପାଇଁ ପ୍ରତିବର୍ଷ ଏକ ଆନନ୍ଦର ଦିବସ । ସେ ବର୍ଷ ମଧ୍ୟ ବହୁ ଆନନ୍ଦ କୋଳାହଳ ମଧ୍ୟରେ ମୁଁ ପରିପୂର୍ଣ୍ଣ ନବନୀତ କଳସୀକୁ ଭାଂଗି ସାରିଥିଲି । ଯୁବଗୋଷ୍ଠୀ ଆନନ୍ଦୋନ୍ମତ୍ତ ଭାବେ ନୃତ୍ୟ କରୁଥିଲେ । ପୁରନାରୀ ମାନେ ଏକତ୍ରିତ ହୋଇ ମଂଗଳଗୀତ ଗାନ ସହ ପୁଷ୍ପ ମାଲ୍ୟଦ୍ୱାରା ମୋତେ ଅଭ୍ୟର୍ଥନା ଜଣାଉଥିଲେ । ହଠାତ୍ ଏକ ସୁଉଚ୍ଚ ସୌଧର ଉପରି ଭାଗରୁ ଏକ ଶ୍ୱେତସୁଗନ୍ଧରାଜର ସୁବାସିତ ପୁଷ୍ପମାଲ୍ୟ ମୋ କଣ୍ଠ ଲଗ୍ନ ହେଲା । କେଉଁଠାରୁ ଏ ମାଳା ଆସିଲା ବୋଲି ମୁଁ ଉପରକୁ ଚାହିଁବାମାତ୍ରେ ଦେଖିଲି ତାହା ସତ୍ରାଜିତ୍‌ଙ୍କର ଭବନ । ସେଠାରେ ରକ୍ତ କୋକନଦ ତୁଲ୍ୟ ଦୁଇଟି

ହାତ ପାପୁଲିଦ୍ୱାରା ଲଜ୍ଜ୍ୟାରେ ମୁହଁ ଢାଙ୍କି ଜଣେ ନବୀନା ତରୁଣୀ ଠିଆ ହୋଇଥିଲେ । ଶ୍ୱେତପଦ୍ମ ସଦୃଶ ତାଙ୍କର ସୁକୁମାର ମୁଖ ମଣ୍ଡଳରେ ସବୁଠାରୁ ଆକର୍ଷଣୀୟ ତାଙ୍କର ଚକ୍ଷୁଦୁଇଟି । ଯାହା ସମୁଦ୍ର ଭଳି ସୁନୀଳ ଓ ଗଭୀର, ଅଜସ୍ର ସ୍ୱପ୍ନରେ ଯାହା ବାଙ୍ମୟ । ମୋ ଗଳାରେ ଲମ୍ବିଥିବା ପୁଷ୍ପମାଲ୍ୟଟିକୁ ମୁଁ ଆଉଥରେ ଚାହିଁଲି । ଶୁଦ୍ଧବ୍ରତକୁ ତାଙ୍କର ପରିଚୟ ଜିଜ୍ଞାସା କଲି । ଶୁଦ୍ଧବ୍ରତ କହିଲା - 'ସେ ସତ୍ରାଜିତ ନନ୍ଦିନୀ ସତ୍ୟଭାମା, ତାଙ୍କ ପିତା ସତ୍ୟକ ନନ୍ଦନଙ୍କ ସହ ସତ୍ୟଭାମାଙ୍କର ବିବାହ ଦେବାକୁ ଆଗ୍ରହୀ ।'

ମୁଁ କିଛି କହିଲି ନାହିଁ । ଲକ୍ଷ୍ୟକଲି ଯେତେବେଳେ ନୃତ୍ୟଗୀତ ସହ ସମ୍ଭ୍ରାନ୍ତ ମହିଳାଗଣ ଫଗୁ ଖେଳ ଆରମ୍ଭ କଲେ ସେତେବେଳେ ସତ୍ୟଭାମା ମୋ ସାନଭଉଣୀ ସୁଭଦ୍ରାକୁ କୋଳାଗ୍ରତ କରି ତା ମସ୍ତକରେ ଅବିର ବିଞ୍ଚି ବିଞ୍ଚି ତା' କାନ ପାଖରେ କ'ଣ ଯେମିତି କହିଲେ ।

ସେଦିନ ରାତ୍ରିରେ ଉତ୍ସବର ସମସ୍ତ କୋଳାହଳ ପ୍ରଶମିତ ହେବାପରେ ମୁଁ ସୁଭଦ୍ରା ନିକଟକୁ ଗଲି । ସୁଭଦ୍ରା ଚନ୍ଦ୍ରଶାଳାରେ ଏକାକିନୀ ବୀଣାବାଦନ କରୁଥାଏ । ମୁଁ କିଛି ସମୟ ଚୁପ୍‌ଚାପ୍ ତା' ପାଖରେ ବସିଲି । କିଛି ସମୟ ପରେ କହିଲି- 'ସତ୍ରାଜିତ୍ ନନ୍ଦିନୀଙ୍କ ସହ ତୋର ତ ବେଶ୍ ହୃଦ୍ୟତା ! କାରଣ କ'ଣ ?'

ସେ ତତ୍‌କ୍ଷଣାତ୍ ସବୁ ରହସ୍ୟ ଉଦ୍‌ଘାଟନ କରିବା ଭଳି ହସିଉଠିଲା ଓ କହିଲା- 'କାର୍ଯ୍ୟ ବି ତୁମେ, କାରଣ ବି ତୁମେ ଜ୍ୟେଷ୍ଠ ଭ୍ରାତା ! ସତ୍ରାଜିତ ନନ୍ଦିନୀ ବଡ଼ ବିପଦରେ ପଡ଼ିଛନ୍ତି ।'

ମୁଁ ବ୍ୟତିବ୍ୟସ୍ତ ଭାବେ କହି ପକାଇଲି- 'ବିପଦ ? କିପରି ବିପଦ ?'

ସେ କୃତ୍ରିମ ଗାମ୍ଭୀର୍ଯ୍ୟ ସହ କହିଲା- 'ଗୋଟେ କୁମାରୀ କନ୍ୟା ବିପଦରେ ପଡ଼େ କାହିଁକି ? ଭାଉଜ ରୁକ୍ମିଣୀ କାହିଁକି ବିପଦରେ ପଡ଼ିଥିଲେ ? ନାରୀ ବୋଲି ସେମାନଙ୍କର ଇଚ୍ଛା ଅନିଚ୍ଛାକୁ ସମ୍ମାନ ଦିଆଯିବ ନାହିଁ ? ବସ୍ତୁ ବିତ୍ତ ଭଳି ହସ୍ତରୁ ହସ୍ତାନ୍ତର କରାଯାଉଥିବ ? ଆଗ୍ରହ, ଆସକ୍ତି, ଅଭିରୁଚି, ଅନୁରକ୍ତି କିଛି ନଥିଲେ ସୁଦ୍ଧା ସେ ଜଣକ ସହ ସାରାଜୀବନ.... ସାରାଜୀବନ ସଂସାର ବାନ୍ଧିବ ?'

ଉତ୍ତେଜନା ବଶତଃ ସୁଭଦ୍ରାର ମୁଖମଣ୍ଡଳ ରକ୍ତାଭ ହୋଇଉଠୁଥିଲା କ୍ରମଶଃ । ସେ ଟିକିଏ ରହି କହିଲା- 'ସତ୍ରାଜିତଙ୍କର ଦାମ୍ଭିକତାକୁ ଦେଖ ! ମୋ ଭ୍ରାତା କେଉଁ ଗୁଣରେ ଊଣା ଯେ ? ସ୍ୟମନ୍ତକ ମଣିର ଅଧିକାରୀ ବୋଲି ସେ ଯେମିତି ଧରାକୁ ସରା ଜ୍ଞାନ କରୁଛନ୍ତି । ତା' ଛଡ଼ା ସତ୍ୟଭାମା ସାତ୍ୟକୀଙ୍କୁ ଭ୍ରାତା ଭଳି ସମ୍ମାନ କରନ୍ତି । ସାତ୍ୟକୀ ମଧ୍ୟ ତାଙ୍କୁ ଭଗିନୀ ଭଳି ସ୍ନେହ କରନ୍ତି; ଅଥଚ ସତ୍ରାଜିତ୍‌ଙ୍କର ଜିଦ୍ ଯେ ସେ ତାଙ୍କ କନ୍ୟାକୁ ସାତ୍ୟକୀଙ୍କୁ ଅର୍ପଣ କରିବେ । ଯାହାକୁ ଅର୍ପଣ କରାଯିବ, ଯିଏ ଅର୍ପିତା ହେବେ ସେମାନଙ୍କର ଅନାସକ୍ତି ସତ୍ତ୍ୱେ ।'

ମୁଁ କହିଲି- 'ସତ୍ୟଭାମା କ'ଣ ଆଉ କାହାର ବାଗ୍‌ଦତ୍ତା ?'

ସୁଭଦ୍ରା କହିଲା- 'ମୁଁ କେମିତି ଜାଣିବି ? ପଚାରିବାରୁ କହିଲେ- ଗୋଟାଏ କୃଷ୍ଣବର୍ଣ୍ଣର ଶିଳାକୁ ହୃଦୟ ଅର୍ପଣ କଲେ ଯାହା ହୁଏ, ଆକାଶର ମେଘପୁଞ୍ଜକୁ ପ୍ରୀତିଦାନ କଲେ ଯାହା ହୁଏ ।'

- 'ଏହାର ଅର୍ଥ ?' ମୁଁ ପ୍ରଶ୍ନ କଲି ।

ସେ ଖିଲିଖିଲି ହୋଇ ହସି ଉଠି କହିଲା- 'ସେ କଥା ବି ପଚାରିଥିଲି । ସେ କହିଲେ ବାସୁଦେବ ନାରୀ ମନସ୍ତତ୍ତ୍ୱବିତ୍ ବୋଲି ଶୁଣିଛି, ତାଙ୍କୁ ପଚାରିବ ।'

ସେଦିନ ଦରବାରକୁ ଯିବାରେ ମୋର ଟିକିଏ ବିଳମ୍ବ ହୋଇଗଲା । ରୁକ୍ମିଣୀ ଅସୁସ୍ଥା ଥିଲେ । ଅସୁସ୍ଥା ରୁକ୍ମିଣୀଙ୍କର ପରିଚର୍ଯ୍ୟାର ଭାର ମୁଁ ନିଜେହିଁ ଗ୍ରହଣ କରିଥିଲି । ପ୍ରତ୍ୟେକ ସ୍ତ୍ରୀ ଅସୁସ୍ଥତା-ସମୟରେ ସ୍ୱାମୀଠାରୁ ଏତିକିହିଁ ଆଶା କରନ୍ତି । ଏହାହିଁ ଯେମିତି ସ୍ୱାମୀର ଅନୁରକ୍ତିର ପରିମାପକ ! ରୁକ୍ମିଣୀ ସନ୍ତାନ ସମ୍ଭବା ଥିଲେ । ତାଙ୍କର ଯତ୍ନ ନେବା ତ ମୋର କର୍ତ୍ତବ୍ୟ । ବିଳମ୍ବରେ ଦରବାରରେ ପହଞ୍ଚିବା ପରେ ଲକ୍ଷ୍ୟକଲି ପିତା ବସୁଦେବ ଚିନ୍ତାମଗ୍ନ ଓ ବିଷର୍ଣ୍ଣ, ଜ୍ୟେଷ୍ଠଭ୍ରାତାଙ୍କ ମୁଖମଣ୍ଡଳତ ଉତ୍ତେଜନାରେ ରକ୍ତବର୍ଣ୍ଣ ଧାରଣ କରିଥାଏ । କୌଣସି ଏକ ବିଷୟର ଅସ୍ପଷ୍ଟ ଆଲୋଚନାରେ ପ୍ରତ୍ୟେକ ଉତ୍ତେଜିତ, ମୋତେ ଦେଖୁ ଦେଖୁ ଜ୍ୟେଷ୍ଠଭ୍ରାତା ବଳରାମ କହିଉଠିଲେ - 'ମୁଁ ବହୁ ପୂର୍ବରୁ କହୁଥିଲିନା ଦୈନିକ ଅଷ୍ଟଭାର ସ୍ୱର୍ଣ୍ଣ ଖଣ୍ଡର ଅଧିକାରୀ ହୋଇ ସତ୍ରାଜିତ୍‌ର ଔଦ୍ଧତ୍ୟର ସୀମା ନାହିଁ । ବଳପୂର୍ବକ ତା'ଠାରୁ ସ୍ୟମନ୍ତକ ମଣି ଆଣି ଯଦି ଆମେ ଦ୍ୱାରକା ରାଜକୋଷରେ ରଖିଥା'ନ୍ତେ ତେବେ ଆଜି କୃଷ୍ଣ ନାମରେ ଏଭଳି କୁତ୍ସିତ ଅପବାଦ ଦେବାକୁ ସେ ସାହସ କରିନଥା'ନ୍ତା । ଚୋରୀ ପୁଣି ହତ୍ୟା ?'

ତାପରେ ପ୍ରତ୍ୟେକ କିଛି କିଛି କହିବାକୁ ଆରମ୍ଭକଲେ । ସମସ୍ତଙ୍କ କଥାର ସାରାସାର ଏତିକି ସଂଗ୍ରହ କଲି ଯେ ସତ୍ରାଜିତ୍‌ଙ୍କ କନିଷ୍ଠଭ୍ରାତା ପ୍ରସେନ୍‌ଜିତ ଓ ସ୍ୟମନ୍ତକ ମଣି - ଏ ଉଭୟେ ନିରୁଦ୍ଦିଷ୍ଟ । ସ୍ୟମନ୍ତକ ମଣିକୁ ଗଳାରେ ଲମ୍ବେଇ ପ୍ରସେନ୍‌ଜିତ୍ ମୃଗୟା ଉଦ୍ଦେଶ୍ୟରେ ଯାଇଥିଲେ । ଘଞ୍ଚ ଅରଣ୍ୟରେ ନିରୁଦ୍ଦିଷ୍ଟ ହୋଇଗଲେ । ତାଙ୍କ ସହ ଯାଇଥିବା ଲୋକ ମାନେ ବହୁ ଅନ୍ୱେଷଣ ପରେ ତାଙ୍କର କୌଣସି ସନ୍ଧାନ ନପାଇ ଫେରି ଆସିଛନ୍ତି । ସତ୍ରାଜିତ୍‌ଙ୍କର ଧାରଣା ବଦ୍ଧମୂଳ ହୋଇଛି ଯେ ପ୍ରସେନ୍‌ଜିତ୍‌ଙ୍କୁ ହତ୍ୟା କରି ଏ ଦୁର୍ଲଭ ମଣିକୁ ମୁଁ ହିଁ ଅପହରଣ କରି ଆଣିଛି ।

ଯଦିଓ ଏ ଭିତ୍ତିହୀନ ଅଭିଯୋଗକୁ ଖଣ୍ଡନ କରିବା ପାଇଁ ମୋର ଆଦୌ ସ୍ପୃହା ନଥିଲା । ସନ୍ତାନ ସମ୍ଭବା ରୁକ୍ମିଣୀଙ୍କ ପାଇଁ ମୁଁ ବଡ଼ ଚିନ୍ତିତ ଥିଲି । ମୁଁ କୌଣସି ଉକ୍ତି ପ୍ରତ୍ୟୁକ୍ତି ନକରି ଅଧୋବଦନରେ ରାଣୀହଂସପୁରକୁ ଫେରି ଆସୁଥିଲି । ଜ୍ୟେଷ୍ଠଭ୍ରାତା ମୋ କାନ୍ଧରେ

ହାତରଖି ସସ୍ନେହରେ ପ୍ରଶ୍ନ କଲେ - ଆରେ ନୀଳମଣି ! କଥା କ'ଣ ? ତୁ ବଡ଼ ବିମର୍ଷଯେ ? ଏ ମଣି ହରଣ ପଛରେ କାହାର ହାତ ଥାଇପାରେ ?'

ମୁଁ ମଧୁର ଭାବେ ହସି ଦେଇ କହିଲି - 'ସମୟ ହିଁ କହିବ । ସତ୍ରାଜିତ୍ ଦିନେ ନିଶ୍ଚୟ ବୁଝିବେ, ଅତୀତରେ ମୁଁ ଲବଣୀ ଚୋରୀ କରିଛି । ଗୋପୀଙ୍କର ହୃଦୟ ଚୋରୀ କରିଛି ସତ, ମାତ୍ର ମଣି ହରଣ କଲାଭଳି ସ୍ଥୂଳତା, ନୀଚ ମାନସିକତା ମୋ ଠାରେ ନାହିଁ ।'

ଆଉ କୌଣସି ଉତ୍ତରକୁ ଅପେକ୍ଷା ନରଖି ମୁଁ ସିଧା ଚାଲି ଆସିଲି । ରାଣୀହଂସ ପୁରକୁ ଯିବା ସମୟରେ ଦେଖିଲି ସୁଭଦ୍ରା ତା'ର କକ୍ଷ ଭିତରେ ବାତାୟନ ନିକଟରେ ଠିଆହୋଇଛି ଏବଂ ବାତାୟନର ବାହାରେ ପୁଷ୍ପୋଦ୍ୟାନରେ ଜଣେ ଦାସୀ ଶ୍ରେଣୀର ଅପରିଚିତା ମହିଳା ସୁଭଦ୍ରାକୁ କ'ଣ କହୁଛି ଓ ସେ ନିବିଷ୍ଟ ଭାବରେ ଶୁଣୁଛି । ମୁଁ ସୁଭଦ୍ରା କକ୍ଷକୁ ପ୍ରବେଶ କରିବା ମାତ୍ରେ ଦାସୀ ବାହାରକୁ ଚାଲିଗଲା । ମୋର ସନ୍ଦେହ ଘନୀଭୂତ ହେଲା । ତା'ର ବିନ୍ଦୁ ବିସର୍ଗ ସୁଦ୍ଧା ସୁଭଦ୍ରାକୁ ଜାଣିବାକୁ ନଦେଇ ସେଇ ଦିଗକୁ କେବଳ ଚାହିଁ ରହିଲି । ସୁଭଦ୍ରା ସେ କଥା ଲକ୍ଷ୍ୟ କରି କହିଲା - 'ସେ କିଏ ଜାଣିଛ ଭାଇ ? ସତ୍ରାଜିତ୍ ନନ୍ଦିନୀ ଚାହାନ୍ତି ତୁମେ କିନ୍ତୁ ଏ ମିଥ୍ୟା ଅଭିଯୋଗର ପ୍ରତିବାଦ କର । ମଣି ମିଳୁ କି ନମିଳୁ, ମଣିଚୋରକୁ ଧରିଆଣି ତାଙ୍କ ପିତାଙ୍କ ସମ୍ମୁଖରେ ତୁମେ ତୁମର ନିର୍ଦ୍ଦୋଷତାର ପ୍ରମାଣ ଦିଅ । କାରଣ ସତ୍ରାଜିତ୍ ଭବନରେ ଅହରହ ତୁମ ନିନ୍ଦା ଶ୍ରବଣ ତାଙ୍କ ପକ୍ଷେ ଅସହ୍ୟ ।'

ଏତିକି କହିସାରି ବେଶ୍ ବିଜ୍ଞତାର ସହ ସୁଭଦ୍ରା ହସିଲା ମୋତେ ଚାହିଁ । ମୁଁ କୌତୁକୋଚ୍ଛଳ କଣ୍ଠରେ କହିଲି - 'ଆଜ୍ଞା ଶିରୋଧାର୍ଯ୍ୟ । ହେଲେ ମା'ଙ୍କୁ କହିବି । ତମ ଝିଅ ସୁଭଦ୍ରା ଏବେ ବଡ଼ ହୋଇଗଲାଣି । ରାଜ୍ୟର ବଡ଼ ବଡ଼ ସମସ୍ୟାରେ ମୁଣ୍ଡ ଭର୍ତ୍ତି କଲାଣି । ଏଣିକି ଏ ଟିକି ଉଆସରେ ସେ ଜାଗା ଧରୁନାହିଁ । କୌଣସି ବୀର ପ୍ରଶସ୍ତ ହୃଦୟର ସିଂହାସନରେ ଅଧିଷ୍ଠିତା ହେବାର ସମୟ ତା'ର ଆସିଗଲାଣି ।' 'ଧେତ୍' । ସୁଭଦ୍ରାର ଗଣ୍ଡ ଲଜ୍ଜ୍ୟାରେ ରକ୍ତିମ ହୋଇ ଉଠିଲା ।

ତାପରଦିନ ପ୍ରଭାତରୁ ଅଳ୍ପ ସଂଖ୍ୟକ ସୈନ୍ୟଙ୍କ ସହ ମୁଁ ଘଞ୍ଚ ଅରଣ୍ୟ ପଥରେ ଯିବା ପାଇଁ ପ୍ରସ୍ତୁତ ହୋଇ ସାରିଥିଲି । ଜ୍ୟେଷ୍ଠଭ୍ରାତାଙ୍କ ଠାରୁ ଆଶୀର୍ବାଦ ନେବା ସମୟରେ ସେ ମୋ କାନ୍ଧରେ ହାତରଖି ପ୍ରଶ୍ନ କଲେ - 'ତୋର ଏ ଯାତ୍ରା ମଣି ଅନ୍ୱେଷଣରେ ନା ରମଣୀର ଅନ୍ୱେଷଣରେ ?'

- ଚିରାଚରିତ ଭାବେ ହସିଦେଇ ମୁଁ କହିଲି - 'ରମଣୀ କାହିଁ ?

- 'କାହିଁକି ? ସତ୍ରାଜିତ୍ ନନ୍ଦିନୀ ! ସୁଭଦ୍ରା ମୋତେ ସବୁ କହିଛି ।'

ମୁଁ କୌଣସି ଉତ୍ତର ନଦେଇ ଘୋଡ଼ା ଝପଟାଇ ଦେଲି ।

ଆଶ୍ଚର୍ଯ୍ୟ ! ଘଞ୍ଚ ଅରଣ୍ୟରେ ପ୍ରସେନ୍‌ଜିତଙ୍କ ଶବର ସନ୍ଧାନ ମିଳିବାରେ କୌଣସି ଅସୁବିଧା ହେଲା ନାହିଁ, ଅଥଚ ମଣିର ସନ୍ଧାନ ମିଳିବା ଦୁଷ୍କର ହୋଇ ପଡ଼ିଲା । କେବଳ ପ୍ରସେନ୍‌ଜିତଙ୍କ ଶବପିଣ୍ଡ ନିକଟରେ ସିଂହ ଓ ଭଲ୍ଲୁକଙ୍କ ପଦଚିହ୍ନ ଦେଖି ମନେ ହେଲା ଏଇମାନଙ୍କ ଦ୍ୱାରା ପ୍ରସେନ୍‌ଜିତ୍ ନିହତ ହୋଇଛନ୍ତି । କିଛି ବାଟ ଆଗକୁ ଯିବା ପରେ ସିଂହର ଶବ ମଧ୍ୟ ଦୃଷ୍ଟିଗୋଚର ହେଲା । ଭଲ୍ଲୁକର ପଦାଙ୍କ ଅନୁସରଣ କରି ମୁଁ ଏକ ପରିତ୍ୟକ୍ତ ଗୁଂଫା ନିକଟରେ ପହଞ୍ଚିଲି । ତା'ର ପ୍ରବେଶପଥ ନିତାନ୍ତ ଅପରିସର ହେଲେ ହେଁ ଭିତର କିନ୍ତୁ ବେଶ୍ ପରିଛନ୍ନ ଓ ରୁଚିସଂପନ୍ନ ଭାବେ ସୁସଜ୍ଜିତ । ସବୁଠାରୁ ଆଶ୍ଚର୍ଯ୍ୟର କଥା ଗୁଂଫାର ଅଧିଶ୍ୱର ଗୋଟେ ପ୍ରକାଣ୍ଡକାୟ ଭଲ୍ଲୁକ ଏବଂ ସେ ଆର୍ଯ୍ୟମାନଙ୍କ ସଦୃଶ । ସଭ୍ୟ ମାର୍ଜିତ ମଣିଷଟିଏ ଭଳି କଥୋପକଥନ କରିପାରେ । ତା'ର ଗୃହସଜ୍ଜାର ପରିପାଟୀ ଦେଖି ମୋର ଭ୍ରମ ହେଉଥିଲା ଯେ ମୁଁ ଯେମିତି ଗୁଂଫାଭିତରେ ନୁହେଁ ଆର୍ଯ୍ୟାବର୍ତ୍ତର କୌଣସି ଏକ ଅଭିଜାତ ରାଜଭବନରେ ପ୍ରବେଶ କରିଛି । ଭଲ୍ଲୁକ ଉପାସନାରେ ମଗ୍ନ ଥିଲା । ତା ନିକଟରେ ଏକ ଅପୂର୍ବ ସୁନ୍ଦରୀ କନ୍ୟା ଗଳାରେ ସ୍ୟମନ୍ତକ ମଣିଟି ଝୁଲାଇ ପୂଜାର୍ଚ୍ଚନା ନିମିତ୍ତ ନୈବେଦ୍ୟ ସଜାଡୁଥିଲା । ଏହି ଦୁର୍ଲଭ ମଣିର ଆଲୋକ ପ୍ରଭାବରେ ଗୁଂଫାଟି ଆଲୋକିତ ହୋଇଉଠିଥିଲା । ସେହି ଉଜ୍ଜ୍ୱଳ ଆଲୋକରେ ଦେଖିଲି କୃଷ୍ଣଶିଳାରେ ନିର୍ମିତ ଶ୍ରୀରାମଙ୍କ ପ୍ରତିମୂର୍ତ୍ତିକୁ ଭଲ୍ଲୁକ ଓ ତା'ର କନ୍ୟା ଏକାଗ୍ର ଚିତ୍ତରେ ପୂଜାର୍ଚ୍ଚନା କରୁଥିଲେ । ସେମାନଙ୍କ ପୂଜାଶେଷ ହେବା ପର୍ଯ୍ୟନ୍ତ ମୁଁ ଦ୍ୱାର ଦେଶରେ ଅପେକ୍ଷା କଲି । ପୂଜା ସମାପ୍ତ ହେବା ପରେ ମୋର ଉଦ୍ଦେଶ୍ୟ ଜାଣିପାରି ଭଲ୍ଲୁକ ଜାମ୍ବବାନ୍ ପ୍ରଚଣ୍ଡ ବିକ୍ରମରେ ଯୁଦ୍ଧଂ ଦେହି ଆହ୍ୱାନଦେଲେ ।

ଦୀର୍ଘ ଚତୁର୍ଦ୍ଦଶ ଦିବସ ବ୍ୟାପି ପ୍ରବଳ ଯୁଦ୍ଧ ପରେ ଜାମ୍ବବାନ ପରାଜୟ ସ୍ୱୀକାର କଲେ । ଜାତସ୍ମର ଜାମ୍ବବାନ ତ୍ରେତାଯୁଗର ବହୁ ଅଜ୍ଞାତ ତଥ୍ୟ ମୋ ସମ୍ମୁଖରେ ବ୍ୟକ୍ତକଲେ । ସର୍ବୋପରି ମୁଁ ଯେ କୃଷ୍ଣବାସୁଦେବ ଏଇ ପରିଚୟ ଟିକକ ପାଇବା ପରେ ତାଙ୍କର ପରମାସୁନ୍ଦରୀ କନ୍ୟା ଜାମ୍ବବତୀଙ୍କ ସହ ସ୍ୟମନ୍ତକ ମଣିକୁ ମୋତେ ଅର୍ପଣ କଲେ । ଯଥାସମୟରେ ସ୍ୟମନ୍ତକ ମଣିକୁ ମୁଁ ସତ୍ରାଜିତ୍‌ଙ୍କୁ ଅର୍ପଣ କରି ତାଙ୍କର ବିଶ୍ୱାସ ଭାଜନ ହୋଇଥିଲି ଏବଂ ସତ୍ୟଭାମାଙ୍କର ଅର୍ଦ୍ଧାଧିକ ସମସ୍ୟା ସମାଧାନ କରିଦେଇଥିଲି । ତାଙ୍କର ଇଚ୍ଛାପୂରଣରେ ଆଉ କୌଣସି ପ୍ରତିବନ୍ଧକ ନଥିଲା । ଆଉ ମୋ କଥା ? ଅଯାଚିତ୍ ଭାବରେ ମୋତେ ଯଦି ମଣି ପରିବର୍ତ୍ତେ ରମଣୀରତ୍ନ ମିଳନ୍ତି ତେବେ ମୋର ବା ଦୋଷ କେଉଁଠି ? ଆଉ ରୁକ୍ମିଣୀ ? ଚତୁର୍ଦ୍ଦଶ ଦିବସ ବ୍ୟାପି ଜାମ୍ବବାନଙ୍କ ସହ ଯୁଦ୍ଧ ସମୟରେ ମୋର କୌଣସି ବାର୍ତ୍ତା ନପାଇ ରୁକ୍ମିଣୀ ଯେଉଁ ଅନିଶ୍ଚୟତା ଓ ଅସ୍ଥିରତା ଭିତରେ କାଳ କାଟୁଥିଲେ ହଠାତ୍ ବିଜୟଲାଭ କରି ମୁଁ ଫେରିଆସିଥିବା

ଦେଖି ଆନନ୍ଦରେ ଆତ୍ମହରା ହୋଇ ମୋର ସ୍ୱାଗତ ସମ୍ବର୍ଦ୍ଧନା ସହ ସେ ଆଉ ଦୁଇଟି ସପତ୍ନୀଙ୍କର ମଧ୍ୟ ସ୍ୱାଗତ ସମ୍ବର୍ଦ୍ଧନା କରି ପକାଇଲେ ଅକୁଣ୍ଠ ଚିତ୍ତରେ ।

କିଛିଦିନ ମୁଁ ବଡ଼ ଚିନ୍ତିତ ଥିଲି । ଏକଥା ରାଣୀହଂସପୁରରୁ ଆରମ୍ଭ କରି ଦରବାର ପର୍ଯ୍ୟନ୍ତ ପ୍ରତ୍ୟେକଙ୍କୁ ଜଣାଥିଲା । ସଂଧ୍ୟାପରେ ଏକା ଏକା ରାଜପ୍ରାସାଦରୁ ବାହାରି ମୁଁ ଚାଲି ଚାଲି ନିରୋଳା ସ୍ଥାନକୁ ଯାଉଥିଲି । ଯେମିତି କାହାକୁ ଅନ୍ୱେଷଣ କରୁଥିଲି । ଥରେ ମୋତେ ଏ ସଂପର୍କରେ ସତ୍ୟଭାମା ପ୍ରଶ୍ନ କଲେ । ମୁଁ କହିଲି - 'ମୁଁ ହସ୍ତିନା ବିଷୟ ଚିନ୍ତା କରୁଛି ।'

ଏତିକି ଶୁଣିବା ମାତ୍ରେ ସତ୍ୟଭାମା ଖୁବ୍ ଜୋର୍‌ରେ ହସି ଉଠି କହିଲେ 'ମୋତେ ତ ଆପଣ ହସାଇଲେ ପ୍ରଭୁ ! ଯେଉଁ ରାଜ୍ୟ ସବୁ ଦିଗରୁ ସୁରକ୍ଷିତ, ବିଶେଷତଃ ମୁଁ ଯାହା ଶୁଣିଛି କେବଳ ହସ୍ତିନା ରାଜ୍ୟ ଓ ରାଜସିଂହାସନକୁ ସୁରକ୍ଷା ଦେବା ପାଇଁ କୁରୁ ପିତାମହ ଭୀଷ୍ମ ସୁଦୂର ଅତୀତରୁ ପ୍ରତିଜ୍ଞାବଦ୍ଧ, ସେଭଳି ପ୍ରଚଣ୍ଡ ବୀର ଯେଉଁ ରାଜ୍ୟର ରକ୍ଷକ, ସେ ରାଜ୍ୟ ବିଷୟରେ ଚିନ୍ତା କରିବାରେ କ'ଣ ଅଛି ?'

କିଛି ସମୟ ମୁଁ ତାଙ୍କୁ ଅନ୍ୟମନସ୍କ ଭାବେ ଚାହିଁଲି ତାପରେ କହିଲି । 'ହସ୍ତିନା ରାଜ୍ୟ ବା ରାଜସିଂହାସନର ସୁରକ୍ଷା କଥା ମୁଁ ଚିନ୍ତା କରୁନାହିଁ । ହସ୍ତିନାରେ ବାସ କରୁଥିବା ମୋର ପିଉସୀ ଓ ପିଉସୀ ପୁଅ ଭାଇମାନେ ଯେ ଅସୁରକ୍ଷିତ ତାହାହିଁ ମୋର ଚିନ୍ତାର ବିଷୟ ।'

ସତ୍ୟଭାମା ମଧୁର ଭାବେ ହସିଦେଇ କହିଲେ - 'ଶୁଣିଛି ଆପଣଙ୍କ ପିଉସୀପୁଅ ଭାଇମାନେ ଅତ୍ୟନ୍ତ ସୁଶୀଳ ତଥା ବଳ ବୀର୍ଯ୍ୟଶାଳୀ ପୁଣି ଦେବ ଅଂଶଜାତ ! ସେଭଳି ବୀରପୁରୁଷ ଗଣ ହସ୍ତିନା ଭଳି ସମୃଦ୍ଧିଶାଳୀ ରାଷ୍ଟ୍ରରେ ନିରାପଦ ନୁହନ୍ତି କିପରି ?'

ମୁଁ ଏ ପ୍ରଶ୍ନର ଉତ୍ତର ଦେଲି ନାହିଁ । ମନେ ମନେ କେବଳ କହିଲି 'ତୁମେ କ'ଣ ଜାଣିଛ ଗୋ ପ୍ରିୟେ ? ସମଗ୍ର ଆର୍ଯ୍ୟବର୍ତ୍ତରେ ହସ୍ତିନା ଏକ ସମୃଦ୍ଧିଶାଳୀ ରାଷ୍ଟ୍ରରୂପେ ମାନ୍ୟତାପ୍ରାପ୍ତ ହେଲେହେଁ; ଏହାର ଅନ୍ତରାଳରେ ହୀନମନ୍ୟତାର କିଭଳି କୁତ୍ସିତ ନାଟକ ଅଭିନୀତ ହେଉଛି ! ପାଣ୍ଡବ ପଞ୍ଚଭ୍ରାତାଙ୍କର ଜନ୍ମଜାତ ଭଦ୍ରତା ଓ ବଳବୀର୍ଯ୍ୟ ହିଁ ତ ମୁଷ୍ଟିମେୟ କେତେଜଣଙ୍କୁ ଇର୍ଷାକାତର କରିଛି । ରାଷ୍ଟ୍ରରେ ଧର୍ମ ଯେତେବେଳେ ନଷ୍ଟ ହୋଇ ଅଧର୍ମ ପ୍ରବେଶ କରେ ତା'ର ସ୍ୱରୂପ ଏଇଭଳି ବିକଟ ହୋଇ ଉଠେ । ଇର୍ଷା ହିଁ ହୁଏ ତା'ର ପ୍ରଥମ ପର୍ଯ୍ୟାୟ ।'

କିଛିଦିନ ପୂର୍ବେ ଦ୍ୱାରକାର ସଦାସତର୍କ ପ୍ରହରୀଗଣ ଦରବାରକୁ ଜଣେ ଚୋରକୁ ଧରିଆଣି ଥିଲେ । ଲୋକଟି ବଡ଼ ନିଃଶଙ୍କ, ନିର୍ଭିକ ଓ ସ୍ପଷ୍ଟବାଦୀ ଥିଲା । ସିନ୍ଧିକାଠି ସାହାଯ୍ୟରେ ମଥୁରାରେ ସେ ଅନେକ ଲୋକଙ୍କ ଘରୁ ଚୋରୀ କରିଥିଲା, ପୁଣି ଦ୍ୱାରକାରେ ମଧ୍ୟ ସେହି ବୃତ୍ତି ଆରମ୍ଭ କରିଛି । ଦରବାରରେ ଯେତେବେଳେ ଏସବୁ ଅକୁଣ୍ଠିତ ଭାବେ ସ୍ୱୀକାର କରୁଥିଲା

ସେତେବେଳେ ଉପସ୍ଥିତ ସମ୍ଭ୍ରାନ୍ତ ବ୍ୟକ୍ତିଗଣ କେହି ବିଦ୍ରୂପ କରୁଥିଲେ ତ କେହି ଉତ୍ତେଜିତ ହୋଇ ତାହାକୁ ଶୀଘ୍ର ଶାସ୍ତିବିଧାନ କରାଯାଉ, ତା'ର ଚୌର୍ଯ୍ୟ ବୃତ୍ତିରେ ପ୍ରଯୁକ୍ତ ହେଉଥିବା ହସ୍ତ ଦୁଇଟି ଛେଦନ କରାଯାଉ ବୋଲି ଦାବୀ ଜଣାଉଥିଲେ । ମୁଁ କିନ୍ତୁ ତନ୍ମୟ ଭାବରେ ତା'କଥା ଶୁଣୁଥିଲି । ତାକୁ ପ୍ରଶ୍ନ କରିଥିଲି 'ତୁମେ କ'ଣ ସୁଡ଼ଙ୍ଗ ଖୋଦନରେ ପ୍ରବୀଣ ?'

ସେ ମୋ ଠାରୁ ପ୍ରଶ୍ରୟ ପାଇ ଆନନ୍ଦରେ କହିପକାଇଲା - 'ହଁ ଦ୍ୱାରକାଧୀଶ ! ସୁଡ଼ଙ୍ଗ ଖୋଦନରେ ମୂଷିକ ଭଳି ମୁଁ ଧୁରୀଣ ।'

ମୁଁ ତା'ର ଆତ୍ମବିଶ୍ୱାସ ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇ ତାକୁ କୌଣସି ଶାସ୍ତି ଦେବା ପରିବର୍ତ୍ତେ ମୁକ୍ତି ଦେଇଦେଲି ଏବଂ ତା' ସପକ୍ଷରେ ଯୁକ୍ତି ବାଢ଼ିଲି ଯେ - 'ଏତେ ଲୋକଙ୍କ ସମ୍ମୁଖରେ ମୁକ୍ତ କଣ୍ଠରେ ଯିଏ ନିଜର ଦୋଷ ସ୍ୱୀକାର କରିପାରୁଛି, ପାପକୁ ଗୋପନ କରିବାର ପ୍ରୟାସ ସୁଦ୍ଧା କରୁନାହିଁ, ଟିକିଏ ଚେଷ୍ଟାକଲେ ସେ ନିଜେହିଁ ପ୍ରାୟଶ୍ଚିତ କରିପାରିବ, ନିଜକୁ ସଂଶୋଧନ କରିପାରିବ ।'

ମୋର ଏହି ଯୁକ୍ତିରେ ସମସ୍ତେ ସେଦିନ ବିସ୍ମୟରେ ବିମୂଢ଼ ହୋଇ ଯାଇଥିଲେ, ଚୌର୍ଯ୍ୟ ବୃତ୍ତିରେ ଅଭ୍ୟସ୍ତ ସେହି ଅପରାଧୀଟି ସୁଦ୍ଧା । ମୁଁ ତାକୁ ଅଭୟଦେଇ କହିଲି - 'ଯାଅ ! ନଗର ସୀମାନ୍ତର ଅରଣ୍ୟକୁ ଚାଲିଯାଅ, ଆବଶ୍ୟକ ହେଲେ ତମକୁ ଡକେଇବି । ତା' ପୂର୍ବରୁ ତମେ ନଗର ଭିତରକୁ, ଜନପଦ ଭିତରକୁ ଆସିବ ନାହିଁ ।'

ସେଦିନ ସଂଧ୍ୟା ଉତ୍ତୀର୍ଣ୍ଣ ହେବାପରେ ରୁକ୍ମିଣୀଙ୍କ ଅନ୍ତଃପୁରରେ ପହଞ୍ଚି ଦେଖିଲି ରୁକ୍ମିଣୀଙ୍କ ସହ ସତ୍ୟଭାମା ମଧ୍ୟ ମୋତେ ସେଠାରେ ଅପେକ୍ଷା କରିଥିଲେ । ମୋତେ ଦେଖୁ ଦେଖୁ କହିଲେ - 'ଶୁଣୁଛି ଲବଣୀଚୋର, ଚିତ୍ତଚୋର ଦ୍ୱାରକାଧୀଶଙ୍କ ରାଜ୍ୟରେ ଚୌର୍ଯ୍ୟ ବୃତ୍ତି କୁଆଡ଼େ ଅପରାଧରେ ଗଣ୍ୟ ହୁଏ ନାହିଁ ?'

ତାଙ୍କର ଏଇ ମଧୁର ତାହଲ୍ୟରେ ପ୍ରେମର ଯେଉଁ ନିର୍ଯ୍ୟାସ ମିଶି ରହିଥାଏ ମୁଁ ସେଥିରେ ବିମୋହିତ ହୋଇଯାଏ ।

ହଁ, ସମସ୍ତଙ୍କ ଅଲକ୍ଷ୍ୟରେ ବ୍ରାହ୍ମ ମୁହୂର୍ତ୍ତରୁ ପଦବ୍ରଜରେ ମୁଁ ଦିନେ ସେହି ଅପରାଧୀ ନିକଟକୁ ଗଲି । ଶାସ୍ତି ପରିବର୍ତ୍ତେ ମୋ ଠାରୁ ମୁକ୍ତି ପାଇ ଘଞ୍ଚ ଅରଣ୍ୟରେ ଯଦିଓ ସେ ଦରିଦ୍ରଭଳି ଜୀବନ ନିର୍ବାହ କରୁଥିଲା ତଥାପି ପ୍ରତି ମୁହୂର୍ତ୍ତରେ ମୋତେ ହିଁ ପ୍ରତୀକ୍ଷା କରିଥିଲା, ମୋରି ନିର୍ଦ୍ଦେଶର ପ୍ରତୀକ୍ଷାରେ ଥିଲା । ମୁଁ କହିଲି - 'ତୁମେ ହସ୍ତିନାର ମହାମାନ୍ୟ ଅମାତ୍ୟ ମହାତ୍ମା ବିଦୂରଙ୍କୁ ସାକ୍ଷାତ କରି ସୁଡ଼ଙ୍ଗ ଖୋଦନରେ ପାରଙ୍ଗମ ବୋଲି କହିବ । କିନ୍ତୁ ସାବଧାନ୍ ମୁଁ ପଠାଇଛି ବୋଲି କହିବ ନାହିଁ । ତୁମେ ବିଦୂରଙ୍କ କାର୍ଯ୍ୟ କଲେ ସେ ତୁମ ଦାରିଦ୍ର୍ୟ ଦୂର କରିଦେବେ । ଯାଅ । ଆଉ ବିଳମ୍ବ କରନା ।'

ଏତିକି କହି ମୁଁ ଦ୍ରୁତ ପଦରେ ଫେରିଆସିଲି । ପଥସାରା ଗତରାତିରେ ଶୁଦ୍ଧବ୍ରତଠାରୁ ପାଇଥିବା ଗୋପନ ସମ୍ବାଦଟିର ବାରମ୍ବାର ତର୍ଜମା କରୁଥିଲି । ଯେତେ ତର୍ଜମା କଲେ ସୁଦ୍ଧା ଶୁଦ୍ଧବ୍ରତ ଯେଉଁ ସମ୍ବାଦ ଦେଇଥିଲା ତା' ହେଉଛି ପ୍ରତିବର୍ଷ ଭଳି ସେବର୍ଷ ମଧ୍ୟ ହସ୍ତିନାର କରଦ ରାଜ୍ୟ ବାରୁଣାବତରେ ପାରଂପରିକ ମେଳା ଅନୁଷ୍ଠିତ ହେଉଥିଲା । ବାରୁଣାବତ ଏକ ପୁରାତନ ଶୈବପୀଠ । ଆର୍ଯ୍ୟାବର୍ତ୍ତର ବିଭିନ୍ନ ଅଞ୍ଚଳରୁ ଏହି ଉତ୍ସବ ଉପଲକ୍ଷେ ବହୁ ଶୈବସାଧକ, ସନ୍ଥ ତଥା ପଣ୍ୟଜୀବୀ ଓ ନାଗରିକ ଏକତ୍ରିତ ହୁଅନ୍ତି । ସେ ବର୍ଷ ଏକ ବ୍ୟତିକ୍ରମ ଘଟିଥିଲା । ପ୍ରତିବର୍ଷ ହସ୍ତିନାର କୌଣସି ସେନାନାୟକ ଆସି ସେହି ଉତ୍ସବର ପରିଚାଳନା କରିଥାନ୍ତି । ସେ ବର୍ଷ କିନ୍ତୁ ବାରୁଣାବତରେ ଏକ ସୁଦୃଶ୍ୟ ଅଟ୍ଟାଳିକା ନିର୍ମିତ ହୋଇଥିଲା । ଶୁଣା ଯାଉଥିଲା ଉତ୍ସବ ପରିଚାଳନା ନିମନ୍ତେ ସେ ବର୍ଷ ହସ୍ତିନା ନରେଶ ଧୃତରାଷ୍ଟ୍ର ଯୁବରାଜ ଯୁଧିଷ୍ଠିର ଓ ତାଙ୍କର ଅନ୍ୟ ଭ୍ରାତା ଚତୁଷ୍ଟୟଙ୍କୁ ନିର୍ଦ୍ଦେଶ ଦେଇଥିଲେ ତା' ପୁଣି ଧୂର୍ତ୍ତ ଶକୁନୀ ଓ ଦୂରାଚାରୀ ଦୁର୍ଯ୍ୟୋଧନର ପ୍ରରୋଚନାରେ । ତେଣୁ କୁନ୍ତୀଙ୍କ ସହ ପଣ୍ଡୁ ନନ୍ଦନ ଗଣ ବାରୁଣାବତରେ ମାସାଧିକ କାଳ ବାସ କରିବା ନିଶ୍ଚିତ ଥିଲା । ପ୍ରାସାଦଶିଳ୍ପୀ ପୁରୋଚନ ଦ୍ୱାରା ହିଁ ସେହି ଅଟ୍ଟାଳିକା ନିର୍ମିତ ହୋଇଥିଲା । ଏକଥା ଶୁଣିବା ମାତ୍ରେ ମୁଁ ଚମକି ଉଠିଥିଲି । କାରଣ ପୁରୋଚନ ଅର୍ଥ ବିନିମୟରେ ସ୍ୱୀୟ ମାନବିକତା ଓ ବିବେକ ସବୁକିଛି ବଳି ଦେଇପାରେ । ଏହି ଅଟ୍ଟାଳିକା ନିର୍ମାଣ ପାଇଁ ଦୁର୍ଯ୍ୟୋଧନ ହସ୍ତିନାର ରାଜକୋଷରୁ ପୁରୋଚନକୁ ଯଥେଚ୍ଛା ସ୍ୱର୍ଣ୍ଣମୁଦ୍ରା ଦାନ କରିବାର ସମ୍ବାଦ ମଧ୍ୟ ମୋତେ ଶୁଦ୍ଧବ୍ରତ ଦେଇଥିଲା ।

ମୁଁ ଆଦୌ ସୁସ୍ଥିର ରହିପାରୁନଥିଲି । ରାଜଭବନରେ ପହଞ୍ଚିବା ବେଳକୁ ପୂର୍ବାହ୍ନ ଉତ୍ତୀର୍ଣ୍ଣ ପ୍ରାୟ । ସ୍ୱର୍ଣ୍ଣଝରିରେ କର୍ପୂର ମିଶ୍ରିତ ସୁବାସିତ ଜଳ ଓ ବକୁଳ ଦନ୍ତ ଧାବନ ସହ ସ୍ୱୟଂ ସତ୍ୟଭାମା ମୋତେ ଅପେକ୍ଷା କରି ରହିଥିଲେ । ମୁଁ ତାଙ୍କୁ ଦେଖି ଶଙ୍କିତ ହେବାର ଛଳନା କରିବା ମାତ୍ରେ ସେ କହିଲେ - 'ମୁଁ ଜାଣେ ଦ୍ୱାରକାଧୀଶ ଯାହା କହିବେ ତା' ମନଭୁଲାଣିଆ ମିଛ କଥା ବ୍ୟତୀତ ଆଉ କିଛି ନୁହେଁ । ସେ କପୋଳ କଳ୍ପିତ ମିଥ୍ୟାରେ ମୋର ବିଶ୍ୱାସ ନାହିଁ । ମୁଁ କେବଳ ଏତିକି ଜାଣେ ଯେ ସବୁରି ଅଲକ୍ଷ୍ୟରେ ଦ୍ୱାରକାଧୀଶ ଯେତେବେଳେ ଏଇଭଳି ଗୋପନ ଅଭିସାର କରନ୍ତି ସେତେବେଳେ ତାଙ୍କର ଦୁଇଟି ଉଦ୍ଦେଶ୍ୟ ଥାଏ । ହୁଏତ କୌଣସି ଭକ୍ତକୁ ଉଦ୍ଧାର କରିବାର ଅଭିସନ୍ଧି; ନାହିଁତ କୌଣସି ଭକ୍ତକୁ ଅଥଳ ଜଳରେ ବୁଡ଼ାଇମାରିବାର ଅଭିସନ୍ଧି ! ଏଥିରୁ କେଉଁଟି କାର୍ଯ୍ୟକାରୀ କରି ଫେରିଲେ କହି ପାରିବେକି ?'

ସେ ମୋର ପଦ ପ୍ରକ୍ଷାଳନ କରିବାକୁ ଯାଉଥିଲେ । ମୁଁ ତାଙ୍କ ହାତ ଦୁଇଟିକୁ ଧରିପକାଇ କହିଲି - 'ଦ୍ୱାରକାଧୀଶଙ୍କର ହୃଦୟହାରିଣୀଙ୍କ ନିକଟରେ ଗୋପନ ଅଭିସନ୍ଧି ଅଛପା ନାହିଁ ତା ହେଲେ ? ତେବେ ଶୁଣ ମୁଁ ସେହି ଚୋର ନିକଟକୁ ଯାଇଥିଲି ।' ଚୋର ଶବ୍ଦଟି

ଶୁଣିବା ମାତ୍ରେ ସତ୍ୟଭାମାଙ୍କ ମୁଖରେ ଘୃଣାର ବ୍ୟଞ୍ଜନା ଫୁଟି ଉଠିଲା । କିଛି ସମୟ ଲକ୍ଷ୍ୟ କଲାପରେ ମୁଁ ଗମ୍ଭୀର ଭାବେ କହିଲି- 'କିଏ ଜାଣେ ? ତା'ର ଏହି ତଥାକଥିତ ନୀଚ ବୃତ୍ତି ଦ୍ୱାରା ହୁଏତ କୌଣସି ମହତ୍ ଉଦ୍ଦେଶ୍ୟ ମଧ୍ୟ ସାଧିତ ହୋଇପାରେ ।' ମୋର ଗାମ୍ଭୀର୍ଯ୍ୟକୁ ଦେଖି ସତ୍ୟଭାମା ଚୁପ୍ ହୋଇଗଲେ ।

ତାପରେ ଦିନେ...... ରାତି ପାହୁ ପାହୁ ଦ୍ୱାରକା ନଗରୀର ସର୍ବତ୍ର ଏକ ବହୁଚର୍ଚ୍ଚିତ ଦୁଃସମ୍ବାଦ ଆଲୋଚିତ ହେଉଥିଲା । ପ୍ରଭାତର ସୂଚନାଦେଇ ଶଙ୍ଖନାଦ ହେବା ମାତ୍ରେ ମୋ ନିଦ୍ରା ଭଂଗ ହେଲା । ଶଯ୍ୟାତ୍ୟାଗ କରି ସୂର୍ଯ୍ୟ ନମସ୍କାର କରିବା ପରେ ଦେଖିଲି ମୋର ପ୍ରିୟ ବଲ୍ଲଭୀ ଗଣ ରୁକ୍ମିଣୀ, ସତ୍ୟଭାମା, ଜାମ୍ବବତୀ, କାଳିନ୍ଦୀ, ସୁନନ୍ଦା, ମିତ୍ରବିନ୍ଦା ପ୍ରଭୃତି ଅଷ୍ଟପାଟ ବଂଶୀ ମୋ ଶୟନ କକ୍ଷର ଦ୍ୱାର ଦେଶରେ ଅଶ୍ରୁପୂରିତ ଲୋଚନରେ ଠିଆ ହୋଇଥିଲେ । କାହାରି ମୁହଁରେ ଭାଷାନଥିଲା । ମୁଁ ପ୍ରଶ୍ନ କରିବା ପୂର୍ବରୁ  ଜ୍ୟେଷ୍ଠଭ୍ରାତାଙ୍କର ଦେହରକ୍ଷୀ ଉର୍ଦ୍ଧ୍ୱ-ଶ୍ୱାସରେ ଧାଇଁ ଆସି ମୋତେ ଅଭିବାଦନ ଜଣାଇ କହିଲା - 'ଦ୍ୱାରକାଧୀଶ ! ଆପଣଙ୍କୁ ଜ୍ୟେଷ୍ଠଭ୍ରାତା ଏଇ ମୁହୂର୍ତ୍ତରେ ଡାକିଛନ୍ତି ।'

ମୁଁ ରେବତୀ ଭାଉଜଙ୍କ ନିକଟକୁ ଯାଇ ପରିସ୍ଥିତିର ଗାମ୍ଭୀର୍ଯ୍ୟପ୍ରତି ଗୁରୁତ୍ୱ ନଦେଇ ତାଙ୍କୁ ପ୍ରଶ୍ନ କଲି ରସିକତାର ସହ - 'କଥା କ'ଣ ଭାଉଜ ? ତୁମ ମୁହଁଟି ବିଷର୍ଣ୍ଣ, ଚକ୍ଷୁ ଦୁଇଟି ଉଦାସ । ତୁମର ସାନ ଜା'ମାନଙ୍କ ଅବସ୍ଥା ତତୋଃଧିକ ଶୋଚନୀୟ । ଅପର ପକ୍ଷରେ ଏଇ ବ୍ରାହ୍ମ ମୁହୂର୍ତ୍ତରୁ ପୁଣି ଜ୍ୟେଷ୍ଠଭ୍ରାତା ଶଯ୍ୟା ତ୍ୟାଗ କରିସାରିଲେଣି ଇଏବି ପରମ ଆଶ୍ଚର୍ଯ୍ୟ ! ଗତରାତ୍ରିରେ ମାଧ୍ୱୀପାନୀୟ ପୂର୍ଣ୍ଣପାତ୍ରରେ ପରିବେଷଣ କରିନଥିଲକି  ? ମାଧ୍ୱୀର ନିଶାରେ ଏ ପର୍ଯ୍ୟନ୍ତ ତାଙ୍କର ତନ୍ଦ୍ରାଛନ୍ନତା ରହିବା କଥା । ଅଥଚ ତାଙ୍କର ନିଦ୍ରାଭଂଗ ହୋଇ ସାରିଲାଣି ? ଜ୍ୟେଷ୍ଠଭ୍ରାତା ବ୍ରାହ୍ମ ମୁହୂର୍ତ୍ତରେ ଶଯ୍ୟାତ୍ୟାଗ କଲେ ଅର୍ଥାତ୍ ପ୍ରଳୟ ସଂକେତ ।'

ତଥାପି ସେମାନେ କେହି କିଛି ନକହି କେବଳ ଅଶ୍ରୁ ମୁଞ୍ଚନ କରିବାକୁ ଲାଗିଲେ । ଜ୍ୟେଷ୍ଠଭ୍ରାତାଙ୍କ କକ୍ଷରେ ପହଞ୍ଚି ଦେଖିଲି ପିତା, ଜନନୀ, ପୂଜ୍ୟ ଅକ୍ରୁର, କୃତବର୍ମା, ସତ୍ୟକ ସାତ୍ୟକୀ, ସ୍ୱୟଂ ଜ୍ୟେଷ୍ଠଭ୍ରାତା ପ୍ରତ୍ୟେକ ଶୋକ ବିହ୍ୱଳ ଭାବେ ବସି ରହିଛନ୍ତି । ସୁଭଦ୍ରା ମା'ଙ୍କ କ୍ରୋଡ଼ରେ ତାଙ୍କର କଣ୍ଠଲଗ୍ନା ହୋଇ ବସି ନିଃଶବ୍ଦରେ ରୋଦନ କରୁଛି । ମୋତେ ଦେଖୁ ଦେଖୁ ପିତା ମଧ୍ୟ ସ୍ଥାନ କାଳ ପାତ୍ର ଭୁଲି ବିଳାପ କରି ଉଠିଲେ ଓ ଶୋକୋଚ୍ଛ୍ୱାସକୁ ବହୁ କଷ୍ଟରେ ସମ୍ବରଣ କରି କହିଲେ - 'ସର୍ବନାଶ ହୋଇଛି ମାଧବ ! ସବୁକିଛି ଶେଷ ହୋଇଯାଇଛି । ବିଚାରୀ ଭଉଣୀ ମୋର କୈଶୋରରୁ ଅନେକ ଦୁଃଖ ସହ ସଂଘର୍ଷ କରି ଶେଷରେ ପରାସ୍ତ ହୋଇଛି । ଆହାଃ ମୋର କୋମଳାଙ୍ଗୀ ଭଗିନୀ କୁନ୍ତୀ, ପିତୃଶୂନ୍ୟ ସୁକୁମାର ସରଳ ନିଷ୍ପାପ ପଞ୍ଚପଣ୍ଡୁସୁତ ଶେଷକୁ ଅଗ୍ନିଦଗ୍ଧ ଭାବେ ଅନ୍ତିମ ନିଃଶ୍ୱାସ ତ୍ୟାଗ କଲେ ?'

ମୁଁ ପ୍ରଚଣ୍ଡ ଭାବେ ଚମକି ପଡ଼ିଲି । ଜ୍ୟେଷ୍ଠଭ୍ରାତା କହିଲେ - 'ହସ୍ତିନାର ବିଷାକ୍ତ ପରିବେଶ ସଂପର୍କରେ ପିଉସୀ କୁନ୍ତୀ ଆମ୍ଭଙ୍କୁ କୌଣସି ସୂଚନା ସୁଦ୍ଧା ଦେଲେ ନାହିଁ । ଯଦି ଏହି ଗୃହବିବାଦର ତିକ୍ତତା ସଂପର୍କରେ ସାମାନ୍ୟତମ ସୂଚନା ପାଇଥା'ନ୍ତୁ ତେବେ......'

ମୁଁ ତାଙ୍କ ବାକ୍ୟ ଶେଷ କରିବାକୁ ନଦେଇ କହିଉଠିଲି -'କ'ଣ କରିଥାନ୍ତ ତେବେ ? କାଳର କୁଟୀଳଗତିକୁ ଉଲ୍ଲଂଘନ କରିଥା'ନ୍ତ ?'

ସେହି ଶୋକାକୁଳ ପରିବେଶ ତୁଳନାରେ ଏହି ପ୍ରଶ୍ନଟି ନିତାନ୍ତ କଠୋର ଥିଲା । ସମସ୍ତେ ହତବାକ୍ ହୋଇଗଲେ । ମୁଁ ଯଥାସମ୍ଭବ କୋମଳ ସ୍ୱରରେ ପିତାଙ୍କୁ ପ୍ରବୋଧନା ଦେଇ କହିଲି - 'ହୁଏତ ଏ ସଂବାଦ ଭ୍ରାନ୍ତିମୂଳକ ହୋଇପାରେ !' ଉପସ୍ଥିତ ଥିବା କେତେଜଣ ନାଗରିକ କହିଲେ - 'ନା - ନା ବାସୁଦେବ ଏହା ଅଭ୍ରାନ୍ତ । ଆମ୍ଭେମାନେ ପ୍ରତ୍ୟକ୍ଷଦର୍ଶୀ । ଆମ୍ଭେ ପଣ୍ୟଜୀବୀ । ବାରୁଣାବତ ଉତ୍ସବର ସମସ୍ତ ଆୟୋଜନ ଆମେ ସ୍ୱଚକ୍ଷୁରେ ଦେଖିଛୁ । ଉତ୍ସବ ଉଦ୍‌ଯାପନର ଅବ୍ୟବହିତ ପୂର୍ବରୁ ସେଦିନ ମଧ୍ୟ ରାତ୍ରରେ ଅଗ୍ନିର ଲେଲିହାନ ଜିହ୍ୱାରେ ସବୁକିଛି ଭସ୍ମସାତ୍ ହୋଇଯାଇଛି । ସେଦିନ ସଂଧ୍ୟାରେ ଆର୍ଯ୍ୟା କୁନ୍ତୀ ଓ ପଣ୍ଡୁ ନନ୍ଦନଗଣ ବାରୁଣାବତର ସମସ୍ତ ଅଧିବାସୀ ତଥା ଉତ୍ସବ ଉପଲକ୍ଷେ ବହିରାଗତ ସମସ୍ତ ବ୍ୟକ୍ତିଙ୍କୁ ନିମନ୍ତ୍ରଣ କରି ପ୍ରଚୁର ସୁପାଚ୍ୟ, ସୁଖାଦ୍ୟରେ ପରିତୁଷ୍ଟ ଭୋଜନ ଦେଇଥିଲେ । ପାନାଭିଳାଷୀମାନଙ୍କ ପାଇଁ ମଧ୍ୟ ଉତ୍କୃଷ୍ଟ ପାନୀୟର ବ୍ୟବସ୍ଥା କରିଥିଲେ । ପରିତୃପ୍ତିର ସହ ପ୍ରତ୍ୟେକ ଭୋଜନ କଲାପରେ ନିଦ୍ରାଭିଭୂତ ହୋଇଯାଇଥିଲେ । ଦୁଷ୍ଟ ପ୍ରାସାଦ ଶିଳ୍ପୀ ପୁରୋଚନ କିନ୍ତୁ ମଧ୍ୟରାତ୍ରି ପୂର୍ବରୁ ପ୍ରାସାଦ ଅଭ୍ୟନ୍ତରକୁ ଯିବା ସମସ୍ତେ ଦେଖିଛନ୍ତି । ପ୍ରାସାଦଟି ସଂପୂର୍ଣ୍ଣ ଭସ୍ମୀଭୂତ ହୋଇଯାଇଛି । ସ୍ଥାନୀୟ ଲୋକେ କହୁଛନ୍ତି ସେହି ସୌଧଟି ସଂପୂର୍ଣ୍ଣ ରୂପେ ଜଉ, ଛଣପଟ, ଲାଖ, ଘୃତ ପ୍ରଭୃତି ଦାହ୍ୟ ବସ୍ତୁ ଦ୍ୱାରା ନିର୍ମିତ ହୋଇଥିଲା ମହାଭାଗ ! ତେଣୁ ତାହାର ଅବଶେଷ ସୁଦ୍ଧା ନାହିଁ । ସବୁକିଛି ଜଳି, ପୋଡ଼ି, ତରଳି ଏକାକାର ହୋଇଯାଇଛି ।'

- 'କିନ୍ତୁ ଯାହା ଅଦାହ୍ୟ ସେହି ଅସ୍ଥି ସୁଦ୍ଧା ?'

ଏପ୍ରଶ୍ନରେ ପୁନର୍ବାର ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ମୁଁ ପରିସ୍ଥିତିକୁ ସହଜ କରିବା ପାଇଁ କହିଲି - 'ଅର୍ଥାତ ଅସ୍ଥି ଗୁଡ଼ିକୁ ତ ପୁଣି ତ୍ରିବେଣୀ ସଂଗମରେ ବିସର୍ଜନ କରିବାକୁ ପଡ଼ିବ । ତା' ଛଡ଼ା ହସ୍ତିନା ରାଜପରିବାରରେ ସମସ୍ତେତ ଆମର ଆତ୍ମୀୟ ମାନଙ୍କର ଶତ୍ରୁ ନଥିଲେ । କିଛି ମିତ୍ର ବି ଅଛନ୍ତି । ଯଥା କୁରୁ ପିତାମହ ଭୀଷ୍ମ, ମହାମନା ବିଦୁର, ଦିବ୍ୟଦର୍ଶିନୀ, ମହାସତୀ ଗାନ୍ଧାରୀ - ଏମାନଙ୍କୁ ତ ପୁଣି ସାନ୍ତ୍ୱନା ଦେବା ଆମର କର୍ତ୍ତବ୍ୟ । ଏହି ଶୋକ ପାଳନ ଅବସରରେ ସୁଦ୍ଧା ସେମାନେ ପାଣ୍ଡବଙ୍କ ଶତ୍ରୁପକ୍ଷ ଭୟରେ ଆପଣାର ଶୋକାବେଗକୁ ପ୍ରକଟ

କରିପାରୁଥିବେ କି ନାହିଁ ସନ୍ଦେହ । ଅବଶ୍ୟ ମୁଁ ଆଦୌ ଏକଥା ବିଶ୍ୱାସ କରିପାରୁନାହିଁ ଯେ ପଣ୍ଡୁସୁତଙ୍କ ଭଳି ପ୍ରଚଣ୍ଡ ତେଜସ୍ୱୀ ବୀର ଗଣ ତଥା ଆର୍ଯ୍ୟା କୁନ୍ତୀଙ୍କ ଭଳି ତ୍ୟାଗଶୀଳା ରମଣୀ ଅଗ୍ନିରେ ଦଗ୍ଧୀଭୂତ ହୋଇ ନିଃଶେଷ ହୋଇଯାଇଛନ୍ତି !'

ଜ୍ୟେଷ୍ଠଭ୍ରାତା ଉତ୍ତପ୍ତ କଣ୍ଠରେ କହିଲେ - 'ତଥାପି ଅବିଶ୍ୱାସ ଗୋବିନ୍ଦ ? ତେବେ ଘଟଣାସ୍ଥଳକୁ ଚାଲ । ନିଜ ଆଖିରେ ଦେଖିଲେ ହୁଏତ ବିଶ୍ୱାସ କରିବ ।'

ମୁଁ ତ ପ୍ରକୃତରେ ଏହାହିଁ ଚାହୁଁଥିଲି । ମୋର ଉଦ୍ଦେଶ୍ୟ ଥିଲା ଘଟଣାର ସତ୍ୟତା ପରୀକ୍ଷଣ କରିବାକୁ ହେଲେ ମୋତେ ସେହି ଭସ୍ମସ୍ତୁପ ଭିତରୁ ଅସ୍ଥିଗୁଡ଼ିକୁ ଖୋଜି ବାହାର କରିବାକୁ ପଡ଼ିବ ଏବଂ ପ୍ରକାଣ୍ଡକାୟ ଭୀମସେନଙ୍କ ଅସ୍ଥି ଚିହ୍ନିବାରେ ମୋର ଭୁଲ ହେବନାହିଁ । ମୁଁ ତେଣୁ ଜ୍ୟେଷ୍ଠଭ୍ରାତାଙ୍କ ପ୍ରସ୍ତାବରେ ସମ୍ମତି ପ୍ରଦାନ କରି କହିଲି 'ହଁ ଅଗ୍ରଜ ? ବରଂ ତାହାହିଁ ହେଉ ।'

ବାରୁଣାବତରେ ଅସ୍ଥିକଙ୍କାଳ ସମୂହକୁ ପରୀକ୍ଷା ନିରୀକ୍ଷା କରିବାପରେ ମୁଁ ସଂପୂର୍ଣ୍ଣ ପ୍ରକୃତିସ୍ଥ ହୋଇଯାଇଥିଲି । ହସ୍ତିନାରେ ସେତେବେଳକୁ ଶୋକପାଳନ ଚାଲିଥାଏ । କୁରୁପିତାମହ ଭୀଷ୍ମ, ମାତା ସତ୍ୟବତୀ, ସତୀ ଗାନ୍ଧାରୀ, ଆଚାର୍ଯ୍ୟ ଦ୍ରୋଣ ଏମାନେ ପ୍ରକୃତରେ ଦୁଃଖରେ ଭାଂଗି ପଡ଼ିଥା'ନ୍ତି । ହସ୍ତିନାର ପ୍ରଜାସକଳ ମଧ୍ୟ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଥା'ନ୍ତି । ମଲ୍ଲଶ୍ରେଷ୍ଠ ବଳୀୟ ଭୀମସେନଙ୍କ ଭଳି ମଲ୍ଲଯୋଦ୍ଧାଙ୍କ ଅବର୍ତ୍ତମାନରେ ପ୍ରାଣହୀନ ପିଣ୍ଡଭଳି ନିର୍ଜୀବ ଦିଶୁଥାଏ । ଅର୍ଜୁନଙ୍କୁ ହରାଇ ଆଚାର୍ଯ୍ୟ ଦ୍ରୋଣ ପୁତ୍ର ବିୟୋଗର କଷ୍ଟ ଅନୁଭବ କରୁଥା'ନ୍ତି । ଗୋଟିଏ ପକ୍ଷରେ ଶୋକର ଲହରୀ ଅପରପକ୍ଷରେ ପ୍ରଛନ୍ନ ଆନନ୍ଦର ଲହରୀ । ନିଜର ଆନନ୍ଦାବେଗକୁ ଯେତେ ଗୋପନ କରିବାକୁ ଚେଷ୍ଟା କଲେ ସୁଦ୍ଧା ଶକୁନୀ, କୌରବଭ୍ରାତାଗଣ ଅଶ୍ୱତ୍ଥାମା ପ୍ରଭୃତିଙ୍କ ମୁଖ ମଣ୍ଡଳରେ ତାହା ସ୍ପଷ୍ଟ ପରିସ୍ଫୁଟ ହେଉଥାଏ । ଯଦିଓ ସେମାନେ ଛଳନାରେ ଅଶ୍ରୁବିସର୍ଜନ କରିବାକୁ ଆଦୌ ବିସ୍ମୃତ ହେଉନଥା'ନ୍ତି । କେବଳ ଅଂଗାଧିପତି କର୍ଣ୍ଣଙ୍କ କଣ୍ଠରୁ ଅବଶୋଷ ସ୍ପଷ୍ଟ ପ୍ରତିଭାତ ହେଉଥାଏ । ତାଙ୍କର ଏକମାତ୍ର ପ୍ରତିସ୍ପର୍ଦ୍ଧୀ ପ୍ରତିଦ୍ୱନ୍ଦୀ ଅର୍ଜୁନଙ୍କୁ ହରାଇ ସେ ବାରମ୍ବାର ତାଙ୍କ ବନ୍ଧୁ ମହଲରେ କ୍ଷୋଭ ପ୍ରକାଶ କରି କହୁଥା'ନ୍ତି - 'ଏହା ଆତ୍ମ ପ୍ରତାରଣା ଛଡ଼ା କିଛି ନୁହେଁ । ଏସବୁ ଭୀରୁତାର ପରିଚାୟକ । ଅର୍ଜୁନ ସହ ସମ୍ମୁଖ ସମର କରି ମୁଁ ଜଗତକୁ ଜଣେଇ ପାରିଥା'ନ୍ତି ଯେ କୁନ୍ତୀ ନନ୍ଦନ ଅର୍ଜୁନ ଧନୁର୍ବିଦ୍ୟାରେ କର୍ଣ୍ଣ ନିକଟରେ ନିତାନ୍ତ ଶିଶୁ । ମୋର ଦୁର୍ଭାଗ୍ୟ, ଭାଗ୍ୟ ସେତିକି ସୁଯୋଗ ସୁଦ୍ଧା ମୋତେ ଦେଲାନାହିଁ । ଯୁଦ୍ଧ ନକରି ସେ ଅଜେୟ ହୋଇ ଚାଲିଗଲା !'

ତାଙ୍କର ଏହି ପ୍ରଛନ୍ନ କ୍ଷୋଭ କୌଣସି ଏକ ହୀନ ଚକ୍ରାନ୍ତକୁ ଇଂଗିତ କରୁଥିଲା -

ଏକଥା ଜ୍ୟେଷ୍ଠଭ୍ରାତା ମଧ୍ୟ ବୁଝିପାରୁଥିଲେ । ଯଥାସମ୍ଭବ ଔପଚାରିକତା ଶେଷ କରି ଆମ୍ଭେମାନେ ଦ୍ୱାରକା ଫେରି ଆସିଥିଲୁ । ପଥ ମଧ୍ୟରେ ଜ୍ୟେଷ୍ଠଭ୍ରାତା ମୋତେ ପଚାରିଥିଲେ - 'ଗୋବିନ୍ଦ ! ପଣ୍ଡୁନନ୍ଦନ ଗଣ ମହାମାନ୍ୟ ବିଦୂରଙ୍କର ଅତ୍ୟନ୍ତ ପ୍ରିୟଭାଜନ ଥିଲେ ଶୁଣିଛି । ଅଥଚ ପାଣ୍ଡବଙ୍କ ବିୟୋଗରେ ସେପରି ଭାଂଗି ପଡ଼ିବା ଲକ୍ଷ୍ୟ କଲି ନାହିଁ ତ ?

ମୁଁ ଟିକେ ହସିଦେଇ କହିଲି - 'ବିଦୂର ମହାଜ୍ଞାନୀ । ସେ ଜାଣନ୍ତି ଏ କ୍ଷେତ୍ରରେ ଶୋକ ନିରର୍ଥକ ।'

●

## ।। ଦ୍ୱାଦଶ ଗ୍ରନ୍ଥିମୋଚନ ।।

ଯଥା ସମୟରେ ଜ୍ୟେଷ୍ଠଭ୍ରାତା ଓ ମୁଁ ପୁତ୍ର ସନ୍ତାନର ଜନକ ହୋଇସାରିଥିଲୁ । ଏହି ଉପଲକ୍ଷେ ଦ୍ୱାରକାରେ ବହୁଦିନ ବ୍ୟାପି ଉତ୍ସବ ଲାଗି ରହିଥିଲା । ଆମର କୁଳଗୁରୁ ଏହି ସନ୍ତାନ ମାନଙ୍କର ନାମକରଣ କରିଥିଲେ । ଜ୍ୟେଷ୍ଠଭ୍ରାତାଙ୍କର ପୁତ୍ରର ନାମ ରଖାଯାଇଥିଲା ଆନନ୍ଦ ଓ ରୁକ୍ମିଣୀଙ୍କ ଗର୍ଭରୁ ମୋର ଯେଉଁ ପୁତ୍ର ଜନ୍ମ ନେଇଥିଲା ତାର ନାମ ରଖାଯାଇଥିଲା ପ୍ରଦ୍ୟୁମ୍ନ । ଦ୍ୱାରକାକୁ ପ୍ରାୟ ସାଧୁ, ସନ୍ୟାସୀ, ଗଣକ ପ୍ରଭୃତି ଆସିଥା'ନ୍ତି ଓ ସେମାନଙ୍କର ଅନ୍ତଃପୁରକୁ ଯିବାର ଅବାଧ ସ୍ୱାଧିନତା ଥାଏ । ଜଣେ ତ୍ରିକାଳଜ୍ଞ ଗଣକ ଦ୍ୱାରକା ଆସିଥିଲେ ବୋଲି ଶୁଣିଥିଲି । ସେଦିନ ସଂଧ୍ୟାରେ ରାଜସଭାରୁ ଫେରି ଦେଖିଲି ରୁକ୍ମିଣୀଙ୍କ ଭବନ ଲୋକାରଣ୍ୟ । ବିଶେଷତଃ ଅଷ୍ଟପାଟବଂଶୀଙ୍କ ସମେତ ରେବତୀ ଭାଉଜ, ଜନନୀ ଦେବକୀ ସୁଦ୍ଧା ସେଠାରେ ଉପସ୍ଥିତ ରହି ନବଜାତ ଶିଶୁ ପ୍ରଦ୍ୟୁମ୍ନକୁ ପହରା ଦେଉଛନ୍ତି । ମୁଁ ପହଞ୍ଚିବା ମାତ୍ରେ ସତ୍ୟଭାମା କହିଲେ - 'ଆର୍ଯ୍ୟପୁତ୍ର ! ତ୍ରିକାଳଜ୍ଞ ଗଣକ କ'ଣ କହିଲେ ଜାଣନ୍ତି ? ପ୍ରଦ୍ୟୁମ୍ନ ଆମର ସାଧାରଣ ଶିଶୁ ନୁହେଁ । ସେ ସ୍ୱୟଂ କନ୍ଦର୍ପ ! ଦେବଦେବ ମହାଦେବ ସମାଧିରେ ଥିବା ସମୟରେ ଦେବତାଙ୍କ ଅନୁରୋଧକ୍ରମେ ସମାଧିପୀଠରେ କନ୍ଦର୍ପ ରତିଙ୍କ ସହ ମିଶି ସଂଗୀତ ଓ ନୃତ୍ୟ ପରିବେଷଣ କରି ମହାଯୋଗୀ ମହାଦେବଙ୍କର ଯୋଗ ଭଂଗ କରି ଅଭିଶପ୍ତ ହୋଇଥିଲେ ଓ ମହେଶ୍ୱରଙ୍କର ତୃତୀୟ ନୟନର ଅନଳରେ ଭସ୍ମୀଭୂତ ହୋଇଯାଇଥିଲେ । ପତିର ଭସ୍ମକୁ ଦେଖି ଭଲା ରତି ଥୟ ଧରିଥା'ନ୍ତେ କି ? ସେ ବିଳାପ କରିବାକୁ ଲାଗିଲେ । ତାଙ୍କର କରୁଣ ରୋଦନରେ ଦୟା ପରବଶ ହୋଇ କନ୍ଦର୍ପଙ୍କୁ ଅତନୁ ହେବାର ବରଦାନ କରିଥିଲେ ଦେବ ଦେବ ମହାଦେବ । ନିର୍ଦ୍ଦିଷ୍ଟ ସମୟ ଅତିକ୍ରାନ୍ତ ହେବାପରେ ଶାପମୁକ୍ତି ନିମିତ୍ତ ଅତନୁଙ୍କୁ ଆପଣଙ୍କ ସନ୍ତାନ ରୂପେ ଜନ୍ମ ନେବାକୁ ପଡ଼ିଛି ।'

ମୁଁ ମୋର ସ୍ୱଭାବସୁଲଭ ରସିକତା ସହ କହିଲି 'ଅତି ଉତ୍ତମ । ବର୍ତ୍ତମାନ ଚିନ୍ତାର ହେତୁ କ'ଣ ? ଏଇଛୋଟ ଶିଶୁଟି ପାଇଁ ରତିଙ୍କୁ ଅନ୍ୱେଷଣ କରିବାକୁ ପଡ଼ିବନା କ'ଣ ?'

ସତ୍ୟଭାମା ତତ୍‌କ୍ଷଣାତ୍ ବିରକ୍ତ ପ୍ରକାଶ କରି କହିଲେ - 'ଆପଣଙ୍କର ସବୁଥିରେ ଥଟ୍ଟା । ଜ୍ୟେଷ୍ଠଭଗ୍ନୀ ରୁକ୍ମିଣୀଙ୍କ ବିଷର୍ଣ୍ଣ ମୁହଁକୁ ଚାହିଁ କିଛି ବୁଝିପାରୁନାହାନ୍ତି ? ଗଣକ ଏକଥା ମଧ୍ୟ କହିଛନ୍ତି ଯେ, ଏହି ଶିଶୁ ପୁତ୍ରଟିକୁ ଶମ୍ବରାସୁର ଅପହରଣ କରିନେବ ।'

ମୁଁ କହିଲି - 'ଏ ଶିଶୁପୁତ୍ରଟି ଶମ୍ବରାସୁରର କି କ୍ଷତି କରିଛି ଯେ ସେ ଏହାକୁ ଅପହରଣ କରିନବ ?'

ତଥାପି ଏ ଚାଞ୍ଚଲ୍ୟକର ସଂବାଦଟିକୁ ସଂପୂର୍ଣ୍ଣ ଉପେକ୍ଷା କରିପାରିଲି ନାହିଁ । ରୁକ୍ମିଣୀଙ୍କୁ ଚାହିଁଲି । ନୀଳକଇଁର ପାଖୁଡ଼ାଭଳି ତାଙ୍କର ଚକ୍ଷୁ ଦୁଇଟିରେ ଅଶ୍ରୁ ଢ଼ଳ ଢ଼ଳ ହେଉଥିଲା । ସେ କହିଲେ - 'ଶମ୍ବରାସୁରକୁ କୁଆଡ଼େ ଦେବର୍ଷି ନାରଦ କହିଛନ୍ତି ଯେ ଶମ୍ବରାସୁର ପ୍ରଦ୍ୟୁମ୍ନ ଦ୍ୱାରାହିଁ ନିହତ ହେବ ।'

ଏ ଦେବର୍ଷି ନାରଦ ଏଇଭଳି ଗୁଡ଼ିଏ ଅପ୍ରିୟ ସତ୍ୟକହି ବହୁ ବିଭ୍ରାଟ ସୃଷ୍ଟି କରନ୍ତି । ମାତୁଳ କଂସକୁ ମଧ୍ୟ ନିଜେ ଦେବର୍ଷି ନାରଦଙ୍କ ବାଣୀ କ୍ରୋଧାନ୍ଧ କରିଦେଇଥିଲା । ଆଜି ପୁଣି ତା'ର ପୁନରାବୃତ୍ତି ହେବାକୁ ଯାଉଛି ଶମ୍ବରାସୁର ଘରେ । ତେବେ ଦେବର୍ଷିଙ୍କ ବାକ୍ୟଯେ ମିଥ୍ୟା ନୁହେଁ ତା'ର ବହୁ ପ୍ରମାଣ ରହିଛି । ସୁତରାଂ ଭବିଷ୍ୟତରେ ଶମ୍ବରାସୁରର ମୃତ୍ୟୁର କାରଣ ହୁଏତ ପ୍ରଦ୍ୟୁମ୍ନ ହିଁ ହୋଇପାରେ । ମୋ ପାଇଁ ଏହାହିଁ ଆଶ୍ୱାସନାର ବିଷୟ । ମୁଁ କହିଲି - 'ଶମ୍ବରାସୁର ଭଳି ପ୍ରବଳ ପ୍ରତାପୀ ରାକ୍ଷସକୁ ନିଧନ କରିବାଭଳି ଦୁରୂହ କାର୍ଯ୍ୟ ସିଦ୍ଧି ନିମିତ୍ତ ମାର୍ଗ ନିଶ୍ଚିତ ବିପଦ ସଂକୁଳ ଓ କଣ୍ଟକିତ ହେବ ସତ୍ୟା । ଧୈର୍ଯ୍ୟଧର । ଶମ୍ବରାସୁର ପୁଣି ମାୟାଯୁଦ୍ଧରେ ନିପୁଣ ।'

ସତ୍ୟଭାମା କପଟ କ୍ରୋଧରେ କହିଲେ - 'ଆପଣଙ୍କଠାରୁ କ'ଣ କେହି ଅଧିକ ମାୟାବୀ ଅଛି ନା କ'ଣ ? ସେ ମାୟାରେ ହରଣ କରିପାରିବ ଆଉ ଆପଣ ମାୟାବଳରେ ଏହାକୁ ସୁରକ୍ଷା ଦେଇ ପାରିବେ ନାହିଁ ?'

ମୁଁ ଗଭୀରଭାବେ ଶିଶୁଟିକୁ ଚାହିଁଲି କିଛିକ୍ଷଣ । ତାପରେ କହିଲି - 'ମୁଁ ତ ନିମିତ୍ତ ମାତ୍ର । ଶିଶୁଟିର ଲଲାଟ ଲିପିକୁ ଖଣ୍ଡନ କଲାଭଳି ଶକ୍ତି କାହାରି ନାହିଁ ।'

ତଥାପି ଜ୍ୟେଷ୍ଠଭ୍ରାତା ଅନ୍ତଃପୁରରେ ସତର୍କ ପ୍ରହରା ବ୍ୟବସ୍ଥା କରିଥିଲେ । ରୁକ୍ମିଣୀ ମଧ୍ୟ ପ୍ରାୟ ସାରାରାତି ଉଜାଗରହିଁ ରହୁଥିଲେ । ମୁଁ ନିଜେ ମଧ୍ୟ ସଜାଗ ଥିଲି । ତଥାପି ସୁଦ୍ଧା ମୋର ଶିଶୁପୁତ୍ର ପ୍ରଦ୍ୟୁମ୍ନ ଦିନେ ରାତିରେ ଅପହୃତ ହୋଇଗଲା ।

ଗତରାତିରେ ଶିଶୁଟିକୁ କେନ୍ଦ୍ର କରି ଏତେ ଆନନ୍ଦର କଳରୋଳ, ଅଥଚ ରାତି

ପାହିବା ବେଳକୁ ସମଗ୍ର ଦ୍ୱାରକାପୁରୀ ଶୋକରେ ନିମଗ୍ନ । ମୁଁ ନିଜେ ମଧ୍ୟ ଦୁଃଖରେ ଭାଙ୍ଗି ପଡୁଥିଲି, ରୁକ୍ମିଣୀଙ୍କୁ ସାନ୍ତ୍ୱନା କ'ଣ ଦେଇଥାନ୍ତି ? ପ୍ରଦ୍ୟୁମ୍ନର ବିଛେଦରେ ପ୍ରତ୍ୟେକ ଶୋକାକୁଳ । ଜନନୀ ଦେବକୀ ବିଦର୍ଭ ନନ୍ଦିନୀଙ୍କୁ କୋଳାଗ୍ରତ କରି ସାନ୍ତ୍ୱନା ଦେବାକୁ ଯାଇ ନିଜେ ଦୁଃଖରେ ଶତଖଣ୍ଡ ହୋଇ ଭାଂଗି ପଡୁଥିଲେ ଓ କହୁଥିଲେ - 'ମା ରୁକ୍ମିଣୀ ! ତୋର ଏ ଦୁଃଖ ମୋ ଛଡ଼ା ଆଉ କେହି ବୁଝିପାରିବେ ନାହିଁ ।'

ମା'ଙ୍କର ଏହି ପଦକ ନିଶ୍ଚିତ ଭାବରେ କଂସର ନିର୍ଦ୍ଦୟତାକୁ ଇଂଗିତ କରୁଥିଲା । ଛଅ ଛଅ ଥର ମା'ଙ୍କୁ ଏଇଭଳି ପୁତ୍ର ବିୟୋଗର ଦୁଃଖଦ ଯାତନା ସହ୍ୟ କରିବାକୁ ହୋଇଛି । ଜନନୀ ତା'ର କୌଣସି ସନ୍ତାନର ବିଛେଦ ଯନ୍ତ୍ରଣା ସହ୍ୟ କରିପାରେ ନାହିଁ । ଚିତାରୋହଣ କରିବା ପର୍ଯ୍ୟନ୍ତ ଏ ଦୁଃଖରୁ ତା'ର ନିସ୍ତାର ନଥାଏ । ମୁଁ ସ୍ଥାଣୁ ଭଳି ବସି ରହିଥିଲି । ଜ୍ୟେଷ୍ଠଭ୍ରାତା ମୋତେ ହିଁ ଦୋଷାରୋପ କରୁଥିଲେ - ଶୈଶବରେ ଅନେକ ଶତ୍ରୁର ସମ୍ମୁଖୀନ ହୋଇଥିବା ଗୋବିନ୍ଦ ଏବେ ଏଭଳି ନିଷ୍କ୍ରିୟ କାହିଁକି ? ଶମ୍ବରାସୁର ଦ୍ୱାରକା ନଗରୀରସୁରକ୍ଷିତ ଭବନ ଭିତରୁ ପୁଣି ଦ୍ୱାରକାଧୀଶଙ୍କ ପଟ୍ଟମହିଷୀଙ୍କ ଶୟନକକ୍ଷରୁ ଆମର ଶିଶୁ ସନ୍ତାନକୁ ଅପହରଣ କରିନେଲା । ଅଥଚ ଗୋବିନ୍ଦ ଶମ୍ବରାସୁର ସହ ଯୁଦ୍ଧ କରିବାକୁ ସୁଦ୍ଧା ପଶ୍ଚାଦ୍‌ପଦ ? ଶମ୍ବରାସୁରର ବାହୁବଳ ଅଛି, ଅସ୍ତ୍ର ଶସ୍ତ୍ର ଅଛି ଆଉ ଆମେ କ'ଣ ନିର୍ବୀର୍ଯ୍ୟ ? ନିରସ୍ତ୍ର ?'

ମୁଁ ନିଷ୍କଂପ କଣ୍ଠରେ କହିଲି - 'ସେ ସମୟ ବର୍ତ୍ତମାନ ଆସିନାହିଁ ଜ୍ୟେଷ୍ଠଭ୍ରାତ ! ଅସ୍ତ୍ର ଶସ୍ତ୍ର ବାହୁବଳ ପଞ୍ଚୁପାଣ୍ଡବଙ୍କର ବି ଥିଲା, ତଥାପି ତୁମେତ ପୁଣି କହୁଚ ସେମାନେ ଅଗ୍ନିଦଗ୍ଧ ହୋଇ ପ୍ରାଣ ବିସର୍ଜନ କରିଛନ୍ତି !'

ଅପହୃତ ଶିଶୁକୁ ଅନ୍ୱେଷଣ କରିବା ପାଇଁ ଜ୍ୟେଷ୍ଠଭ୍ରାତା ଚତୁର୍ଦ୍ଦିଗକୁ ସଶସ୍ତ୍ର ଯୋଦ୍ଧା ପଠେଇ ସାରିଥିଲେ । ସଂଧ୍ୟା ସମୟକୁ କେବଳ ଏତିକି ଖବର ପହଞ୍ଚିଲା ଯେ, ମତ୍ସ୍ୟଜୀବୀ ଧୀବର ମାନେ ଦେଖିଛନ୍ତି ଆକାଶମାର୍ଗରୁ ଜଣେ ବିରାଟକାୟ ବ୍ୟକ୍ତି ଏକ ଲଳିତାଙ୍ଗ ସୁକୁମାର ଶିଶୁପୁତ୍ରକୁ ସମୁଦ୍ର ଗର୍ଭକୁ ନିକ୍ଷେପ କରିଛି । ମୁଁ ସମସ୍ତଙ୍କୁ ବାରଣ କଲି 'ଏ ଦୁଃସମ୍ବାଦ ଯେପରି ରାଣୀହଂସ ପୁରରେ ନପହଞ୍ଚେ । ଆକାଶମାର୍ଗରୁ ସମୁଦ୍ରଗର୍ଭକୁ ନିକ୍ଷିପ୍ତ ଶିଶୁର ଅବସ୍ଥା ଚିନ୍ତା କରି ରାଣୀଗଣ ଧୈର୍ଯ୍ୟ ଧରି ପାରିବେ ନାହିଁ । ବରଂ ସେମାନେ ଭ୍ରମରେ ଥା'ନ୍ତୁ ଯେ ଅପହୃତ ସନ୍ତାନକୁ ଚତୁର୍ଦ୍ଦିଗରେ ଅନ୍ୱେଷଣ କରାହେଉଛି । ଯେ କୌଣସି ଦିନ ହୁଏତ ମିଳିଯିବ ।'

ସମୁଦ୍ର ସ୍ନାନ କରିବା ମୋର ପ୍ରାଚୀନ ଅଭ୍ୟାସ । ଦିନେ ବ୍ରାହ୍ମ ମୁହୂର୍ତ୍ତରେ ସମୁଦ୍ର ସ୍ନାନ ସମୟରେ ଦେଖିଲି ଏକ ମତ୍ସ୍ୟଜୀବୀ ଧୀରେ ନୌକା ବାହି ସମୁଦ୍ରରେ ଭାସି ଆସୁଛି । କୂଳରେ ପହଞ୍ଚିଯିବା ପରେ ସେ ଏକ ତୀକ୍ଷ୍ଣ ଅସ୍ତ୍ର ସାହାଯ୍ୟରେ ସମସ୍ତ ବୃହତ୍‌କାୟ ମତ୍ସ୍ୟ ଗୁଡ଼ିକର

ପେଟ ବଡ଼ ନିର୍ଦ୍ଦୟଭାବେ ଚିରି ଦେଉଥିଲା ଓ କିଛି ସମୟ ତନ୍ନ ତନ୍ନ କରି କ'ଣ ପରୀକ୍ଷା କରିବାପରେ ତା' ମୁହଁରେ ହତାଶାର ମୁଦ୍ରାଙ୍କ ସ୍ପଷ୍ଟ ହୋଇ ଉଠୁଥିଲା । ମୁଁ ଅନେକ ସମୟ ନିରୀକ୍ଷଣ କଲାପରେ ତାକୁ ପାଖକୁ ଡାକି ଏହାର କାରଣ ଜିଜ୍ଞାସା କଲି । ସେ ଯାହା କହିଲା ତାହା ଅତ୍ୟନ୍ତ ଚମକପ୍ରଦ । ସେ କହିଲା - 'କିଛି ଦିନ ପୂର୍ବେ ମୋର ଜଣେ ସହଚର ଏଇଭଳି ସମୁଦ୍ରରୁ ମାଛ ଧରୁଥିଲା । ଗୋଟିଏ ବୃହତ୍‌କାୟ ମତ୍ସ୍ୟ ଗର୍ଭରୁ ଏକ ସୁନ୍ଦର ପୁତ୍ର ସନ୍ତାନ ପ୍ରାପ୍ତ ହେଲା ତାହାକୁ ସେ ଶମ୍ବରାସୁରକୁ ଅର୍ପଣ କରି ପ୍ରତି ବଦଳରେ ବହୁଧନ ସଂପତ୍ତିର ଅଧିକାରୀ ହୋଇଛି । ଅଥଚ ମୋର ଦୁର୍ଭାଗ୍ୟ ଦେଖ । ଅତ୍ୟନ୍ତ ଦରିଦ୍ରଭାବେ କାଳ କାଟୁଛି, ଯଦି ଦୈବାତ୍ ମତ୍ସ୍ୟଗର୍ଭରୁ ଏକ ପୁତ୍ର ସନ୍ତାନ ମିଳନ୍ତା ତେବେ ଦ୍ୱାରକାଧୀଶଙ୍କୁ ଉପହାର ଦେଇ ବଦଳରେ ଧନଶାଳୀ ହୁଅନ୍ତି । ଶୁଣୁଛି ତାଙ୍କର ଏକ ଶିଶୁପୁତ୍ର ଅପହୃତ ହୋଇଯାଇଛି ।'

ତା'ର ଏଇ କଥାରୁ ଯେଉଁ ରହସ୍ୟ ଉଦ୍‌ଘାଟିତ ହେଉଥିଲା ତାହା ମନେ ମନେ ତର୍ଜମା କରି ମୁଁ ପୁଲକିତ ହୋଇଯାଉଥିଲି । ଅନ୍ୟମନସ୍କ ହୋଇଯାଉଥିଲି, ଆଶାବାଦୀ ହୋଇଯାଉଥିଲି । ଏହା କ'ଣ ସମ୍ଭବ ? ମୁଁ ପ୍ରଶ୍ନ କଲି - 'ଶିଶୁପୁତ୍ରଟି ତେବେ ଶମ୍ବରାସୁର ଭବନରେ ଯତ୍ନରସହ ଲାଳିତ ହେଉଛି ? କିଏ ତା'ର ଲାଳନ ପାଳନର ଭାର ନେଇଛି ? ଶମ୍ବରାସୁର ର ସହଧର୍ମିଣୀ ?'

ସେ ଉତ୍ତର ଦେଲା - 'ନା - ନା - କୌଣସି ଏକ ପାର୍ବତ୍ୟ ଉପତ୍ୟକାରୁ ରତିନାମକ ଏକ ଅତ୍ୟନ୍ତ ସୁନ୍ଦରୀ ରମଣୀକୁ ଶମ୍ବରାସୁର ଅପହରଣ କରି ଆଣିଛି । ତା'ରି ଉପରେ ଶିଶୁଟିର ପରିଚର୍ଯ୍ୟାର ଭାର ନ୍ୟସ୍ତ ହୋଇଛି । ସେ ରତି କାଳେ ସ୍ୱର୍ଗର କେଉଁ ଅପ୍‌ସରା ବା ଦେବୀ । ସେ ଦିନେ ଉପତ୍ୟକାରେ ରମଣୀୟ ପୁଷ୍ପୋଦ୍ୟାନରେ ବିହାର କରୁଥିବା ସମୟରେ ଶମ୍ବରାସୁର ତାକୁ ଅପହରଣ କରି ଆଣିଛି ।'

ଏ ସଂବାଦ ମୋ ପାଇଁ ଆହୁରି ଚମକପ୍ରଦ ଥିଲା । ମୁଁ କହିଲି ସେହି ଶିଶୁପୁତ୍ରଟି ବିଷୟରେ ତୁମେ ଯେତେବେଳେ ଯାହା ଶୁଣିବ ମୋତେ ସେ ସଂବାଦ ଦେଇପାରିବକି ? ମୁଁ ତୁମକୁ ଏ ସଂବାଦ ପରିବର୍ତ୍ତେ ବହୁ ଅର୍ଥ ଦେବି ।'

ସେ କିଛି ସମୟ ମୋତେ ସନ୍ଦେହରେ ଚାହିଁ ସମ୍ମତ ହେଲା ଓ ପ୍ରଶ୍ନ କଲା - 'ଏଥିରେ ତୁମର ଲାଭ ? ତୁମେ କିଏ ? ମୁଁ ଟିକିଏ ହସି ଦେଲି ଓ କହିଲି - 'ତୁମରି ଭଳି ଦ୍ୱାରକାର ଜଣେ ଅଧିବାସୀ ମାତ୍ର ।'

ମୁଁ ଅଭୟ ଦେଇ କହିଲି - 'ଆରେ ନା- ନା ତୁମର କୌଣସି ଭୟ ନାହିଁ ।'

ତଥାପି ସନ୍ଦେହରେ ସେ କହିଲା - 'ତୁମେ କିନ୍ତୁ ସେଇ ଅପହୃତ ଶିଶୁ ବିଷୟରେ ଏତେ ଖବର କାହିଁକି ସଂଗ୍ରହ କରୁଛ ?'

ତାପରେ ସ୍ୱଗତୋକ୍ତି କଲାଭଳି କହିଲା - 'ତୁମ ଓଠରେକି ଭୁବନ ମୋହନ ହସ, ତୁମ କର୍ଣ୍ଣରେ ମକର କୁଣ୍ଡଳ, କଣ୍ଠରେ କୌସ୍ତୁଭ ମଣି, ଶିରରେ ମୟୂର ଚନ୍ଦ୍ରିକା । ଶୁଣିଛି ଦ୍ୱାରକାଧୀଶ ଏଇ ସାଜରେ ସଜ୍ଜିତ ହୁଅନ୍ତି....... ତୁମେ ଆଉ ସତରେ ଦ୍ୱାରକାଧୀଶ ନୁହଁ ତ ? ଯା'ତ ଶୁଣିଛି, ସେ ବହୁତ ମାୟାବୀ !'

ମୁଁ ଆଉ କଥା ବଢ଼େଇବାକୁ ନଦେଇ ମୋ ଗଳାରୁ ଏକ ମୁକ୍ତାମାଳ କାଢ଼ି ତା' ହାତରେ ଦେଇ କହିଲି - 'ନିଅ ବନ୍ଧୁ !'

ସେ ଆଶ୍ଚର୍ଯ୍ୟ ହୋଇ କହିଲା - 'ମୋତେ ଏ ସବୁ କାହିଁକି ଦଉଛ ? କିଏ ଜାଣିବ । ମୁଁ ତମକୁ ଗୋପନ ସଂବାଦ ଦେଉଛି ବୋଲି ଶମ୍ବରାସୁର ଜାଣିଲେ ମୋ ମୁଣ୍ଡକାଟ ହେବ । ପାଞ୍ଚପ୍ରାଣୀ କୁଟୁମ୍ବ ମୋର ଅନାଥ ହୋଇଯିବେ ।'

ମୁଁ ତା'ର ଦୁଇହାତକୁ ସହୃଦୟତାର ସହ ଧରି ପକାଇ କହିଲି -'ସେମିତି କୁହ ନାହିଁ ବନ୍ଧୁ ! ମୁଁ ତୁମକୁ ଏ ମୁକ୍ତା ମାଳଟି ଖୁସିରେ ଦେଉଛି । କାହିଁକି ଜାଣ ? ମୋ ପତ୍ନୀ ସନ୍ତାନ ସମ୍ଭବା ।'

ପ୍ରକୃତରେ ଜାମ୍ବବତୀ ସନ୍ତାନ ସମ୍ଭବା ହୋଇଥିଲେ । ଏ ଗର୍ଭସ୍ଥ ସନ୍ତାନର ସୁରକ୍ଷା ପାଇଁ ଦ୍ୱାରକା ଭବନର ପ୍ରତ୍ୟେକ ସଦସ୍ୟ ତତ୍ପର ଥିଲେ । ଜାମ୍ବବତୀଙ୍କର ସେ ସନ୍ତାନ ଭୂମିଷ୍ଠ ହେବା ପୂର୍ବରୁ ତା'ର ଉପଯୁକ୍ତ ସୁରକ୍ଷାର ଦାୟିତ୍ୱ ସ୍ୱୟଂ ରୁକ୍ମିଣୀ ହିଁ ନେଇ ଥିଲେ । ଅଯତ୍ନ ଓ ଅତିଯତ୍ନ - ଉଭୟ କିନ୍ତୁ ସନ୍ତାନର ଉପଯୁକ୍ତ ଲାଳନରେ ଅନ୍ତରାୟ ଏକଥା ସେତେବେଳେ କେହିତ ବୁଝିବାକୁ ପ୍ରସ୍ତୁତ ନଥିଲେ । ଜାମ୍ବବତୀ ନନ୍ଦନଙ୍କର ନାମକରଣ ରୁକ୍ମିଣୀ ହିଁ କରିଥିଲେ - ଶାମ୍ବ । ରୂପସୀ ଜାମ୍ବବତୀଙ୍କର ନନ୍ଦନ ଶାମ୍ବ ଅତିଶୟ ରୂପବାନ୍ ଥିଲେ ।

ଶୈଶବରୁହିଁ ଶାମ୍ବର ରୂପପ୍ରତି ପ୍ରଚଣ୍ଡ ଆକର୍ଷଣ ଥିଲା । ଅଥଚ ସେଇ ରୂପବାନ୍ ସନ୍ତାନ ମୋର ଦୁଇ ଦୁଇ ଥର ଶାପଗ୍ରସ୍ତ ହୋଇଛି । ଶୈଶବରୁହିଁ କୌଣସି କୁତ୍ସିତ, କଦାକାର ବସ୍ତୁ ବା ବ୍ୟକ୍ତିକୁ ସେ ଦେଖିଲେ ଶିହରି ଉଠୁଥିଲା । ଏପରିକି ମୁନିଋଷି ମାନଙ୍କର ଜଟା, କୌପୀନ ମଧ୍ୟ ତା'ର ଉପହାସର ବସ୍ତୁ ଥିଲା ।

ମୁଁ ସବୁ ସହିପାରେ । କିନ୍ତୁ ପୂଜ୍ୟପୂଜାର ବ୍ୟତିକ୍ରମ, ଗୁରୁ ଗୁରୁଜନଙ୍କର ଅପମାନ ମୋ ସହ୍ୟଶକ୍ତିର ବାହାରେ । ଆଉ ସହିପାରେ ନାହିଁ କାହାରି ଗର୍ବ, ଶାମ୍ବର ଗର୍ବ ଖଣ୍ଡନ କରିବାର ଆବଶ୍ୟକତା ଥିଲା । ମୋର ଆତ୍ମଜ ବୋଲି ଶାମ୍ବର ମତ୍ତତା ଆହୁରି ବୃଦ୍ଧି ପାଉଥିଲା । କାହା ଗର୍ବ ଭଲା ଖଣ୍ଡନ କରିନାହିଁ ମୁଁ ? ମୋର ପ୍ରିୟ ବଲ୍ଲଭୀ ମାନମୟୀ ସତ୍ୟଭାମା ? ସିଏତ ଥରେ ଦ୍ୱାରକାରେ ବ୍ରତ ପାଳନ କରି ଦେବର୍ଷି ନାରଦଙ୍କୁ ନିଜର ଐଶ୍ୱର୍ଯ୍ୟର ପରାକାଷ୍ଠା ପ୍ରଦର୍ଶନ

କରିବାକୁ ମୋ ଓଜନର ସମପରିମାଣର ସ୍ୱର୍ଣ୍ଣଦାନ କରିବାକୁ ଚାହିଁ ଥିଲେ ନା ! ସଫଳ ହେଇପାରିଲେ କି ? ତରାଜୁର ଗୋଟିଏ ପାର୍ଶ୍ୱରେ ମୁଁ ଅନ୍ୟ ପାର୍ଶ୍ୱରେ ଦ୍ୱାରକାର ରତ୍ନ,ଭଣ୍ଡାରର ରତ୍ନ ସମୂହ । ନିଜର ଭୁଲ୍ ବୁଝିପାରି ମୋର ଶରଣାଗତ ହେବା ପରେ ହିଁ ତାଙ୍କୁ ମୁକ୍ତି ମିଳିଥିଲା । ଅଥଚ ସେଇ ସତ୍ୟଭାମାଙ୍କ ପାଇଁ ଇନ୍ଦ୍ରଭୁବନର ଅମରାବତୀରୁ ନନ୍ଦନବନରୁ ମୁଁ କ'ଣ ପାରିଜାତ ବୃକ୍ଷ ଆଣିନଥିଲି ? ଅଷ୍ଟପଟ୍ଟ ବଂଶୀ ଯେତେବେଳେ ନିଜର ପାତିବ୍ରତ୍ୟ ଐକାନ୍ତିକ ନିଷ୍ଠାର ଅହଂକାରରେ ମତ୍ତ ହୋଇଥିଲେ ମୁଁ କ'ଣ ସେମାନଙ୍କୁ କ୍ଷମା ଦେଇଛି ? ଜ୍ୱରଗ୍ରସ୍ତ ହେବାର ଛଳନା କରି ଦିନ ଦିନ ଧରି ଶଯ୍ୟାଶୟୀ ହୋଇ ରହିଛି । ରାଜବୈଦ୍ୟଙ୍କର ସମସ୍ତ ଔଷଧକୁ ବ୍ୟର୍ଥ କରି ଦେଇଛି । ଦେବର୍ଷି ନାରଦଙ୍କ ଜରିଆରେ ଅଷ୍ଟପାଟ ବଂଶୀଙ୍କୁ ଜଣାଇ ଦେଇଛି ଯେ କେହି ପତିବ୍ରତା ନାରୀ ପ୍ରେମର ନିଦର୍ଶନ ସ୍ୱରୂପ ଆପଣାର ପଦରଜ ମୋର ସର୍ବାଙ୍ଗରେ ଲେପନ କରେ ତେବେ ମୁଁ ସୁସ୍ଥ ହୋଇଯିବି । ଏ ସର୍ତ୍ତରେ ଅଷ୍ଟପାଟବଂଶୀ କେହି ସମ୍ମତ ହୋଇନଥିଲେ । କାରଣ ପାପ ପୂଣ୍ୟର ଉର୍ଦ୍ଧ୍ୱକୁ ଯାଇ ସେମାନେ ମୋତେ ଭଲ ପାଇନଥିଲେ । ମୋ ତୁଳନାରେ ପାପ ବୋଧହିଁ ସେମାନଙ୍କ ଦୃଷ୍ଟିରେ ବଡ଼ ହୋଇ ଉଠିଛି । ସେମାନଙ୍କ ମୁହଁରୁ ଏକଥା ଶୁଣିବାପରେ ମୁଁ ଦେବର୍ଷିଙ୍କୁ କହିଥିଲି ସେଦିନ - 'ତେବେ ଯାଅ ଦେବର୍ଷି ! ଗୋପପୁର ଯାଅ । କେଜାଣି ବା ପାପବୋଧ ତୁଳନାରେ ମୋ ଜୀବନର ମୂଲ୍ୟ ସେଠି ବଡ଼ ହୋଇପାରେ !'

ଦେବର୍ଷି ନାରଦ ଗୋପପୁରରୁ ରାଇକିଶୋରୀର ପଦରଜ ନେଇ ଫେରି ଆସିଥିଲେ ଯଥା ସମୟରେ । ମୋର ସର୍ବାଙ୍ଗରେ ପ୍ରଲିପ୍ତ ହୋଇଥିଲା ଐକାନ୍ତିକ ପ୍ରେମର ସେହି ଅମୃତ ରଜ, ଯାହା ମୋର ଜ୍ୱରାକ୍ରାନ୍ତ ତନୁ ମନକୁ ଅପୂର୍ବ ଶୀତଳତାରେ ଭରି ଦେଇଥିଲା । ପ୍ରାଣର ନିଭୃତ କନ୍ଦରରେ ବାଜି ଉଠିଥିଲା ମୋହନ ବଂଶୀ । ମୁଁ କିଛି ନକହିଲେବି ଅଷ୍ଟପାଟବଂଶୀ ବୁଝିଯାଇଥିଲେ ରାଧା ପ୍ରେମ ତୁଳନାରେ ସେମାନଙ୍କ ପ୍ରେମର ନ୍ୟୁନତା ।

ହଁ, ଶାମ୍ବକୁ ବି ମୋର ଶିକ୍ଷା ଦେବାର ଥିଲା । ସେଇଥିପାଇଁ ଦେବର୍ଷି ନାରଦଙ୍କ ସହ ପରାମର୍ଶ କରିଥିଲି । ମୋ ଜୀବନର ଏଇଭଳି ଘଡ଼ିସନ୍ଧି ମୁହୂର୍ତ୍ତରେ ଦେବର୍ଷି ନାରଦ ହିଁ ମୋତେ ସାହାଯ୍ୟ କରିଥା'ନ୍ତି । ସେଦିନ ହଠାତ୍ ଜାମ୍ବବତୀ ଭବନକୁ ଯିବା ପଥରେ ଶାମ୍ବକୁ ଦେଖି ସସ୍ନେହରେ କହିଲି - 'ପୁତ୍ର ଶାମ୍ବ ! ତୁମ୍ଭେ ଏଭଳି ସୁସଜ୍ଜିତ ଯେ ? କେଉଁଆଡ଼େ ଯାଉଛ କି ?'

ଶାମ୍ବ ଟିକିଏ ଲଜ୍ଜିତ ହୋଇ ହସିଲେ । କହିଲେ - 'ନା ! ମୋ ପାଇଁ କିଛି ଆଦେଶ ଥିଲା କି ପିତା ?

ମୁଁ ତ ଏହି ସୁଯୋଗର ଅପେକ୍ଷାରେ ଥିଲି । ତତ୍‌କ୍ଷଣାତ୍ କହିଲି - 'ହୁଁ ! ମୁଁ ତୁମ୍ଭର ମାତା ଜାମ୍ବବତୀଙ୍କ କକ୍ଷରେ ଅଛି । ଏକ ଗୁପ୍ତ ମନ୍ତ୍ରଣା କରିବାର ଅଛି । ସାବଧାନ ! କେହି ଯେମିତି ସେ କକ୍ଷକୁ ପ୍ରବେଶ ନକରନ୍ତି ।'

ଏତିକି କହି ମୁଁ ଦ୍ରୁତପଦରେ ଜାମ୍ବବତୀଙ୍କ କକ୍ଷ ଉଦ୍ଦେଶ୍ୟରେ ଚାଲିଗଲି । ଆଉଠିକ୍ ତାପରେ ହିଁ ଦେବର୍ଷି ନାରଦ ସେଠାରେ ପହଞ୍ଚି ମୋ ସହ ସାକ୍ଷାତ କରିବା ପାଇଁ ଜିଦ୍ ଧରି ବସିଲେ । ଶାମ୍ବ ଜାଣିଥିଲେ, ମୁଁ ଭକ୍ତ ବତ୍ସଳ । ବିଶେଷତଃ ଦେବର୍ଷି ନାରଦଙ୍କୁ ଯେକୌଣସି ସମୟରେ, ଯେକୌଣସି ସ୍ଥାନରେ ମୁଁ ଦର୍ଶନ ଦେଇଥାଏ । ତଥାପି ମୋର ଅନୁମତି ନେବା ପାଇଁ ସରଳମତି ଶାମ୍ବ ଜାମ୍ବବତୀଙ୍କର ଶୟନକକ୍ଷକୁ ଚାଲି ଆସିଥିଲେ । ଜାମ୍ବବତୀ ସେଦିନ ଅପୂର୍ବ ଦିଶୁଥିଲେ । ମୁଁ ତାଙ୍କୁ ମୋର ବାହୁ ପାଶରେ ଆଲିଙ୍ଗନାବଦ୍ଧ କରିଥିଲି ।'

'- ପିତା !'

ଅସଂବୃତା ଜାମ୍ବବତୀ ଶ୍ଳଥ ଅସନକୁ ସଜାଡୁ ସଜାଡୁ କ୍ରୋଧଦୀପ୍ତା ହୋଇ ଉଠିଥିଲେ । ମୁଁ ମଧ୍ୟ ଅନୁରୂପ କ୍ରୋଧରେ ଉନ୍ମତ୍ତ ହୋଇଉଠିଥିଲି । ହଁ, ସେହି ମୁହୂର୍ତ୍ତରେ ମୋର ଆଦେଶ ଅମାନ୍ୟ କରି ମାତାର ଶୟନ କକ୍ଷରେ ଅସମୟରେ ପ୍ରବେଶ କରି ଅସଂବୃତା ବେଶବାସରେ ମାତାଙ୍କୁ ଦର୍ଶନ କରିଥିବା ଅପରାଧରେ ଶାମ୍ବ ଶାପଗ୍ରସ୍ତ ହୋଇଥିଲେ ! ତାଙ୍କର ରୂପାକର୍ଷଣର ମୋହ ମୁହୂର୍ତ୍ତକରେ ଧୂଳିସାତ୍ ହୋଇଯାଇଥିଲା । ପରମ ରୂପବାନ୍ ଶାମ୍ବ ଗଳିତ କୁଷ୍ଠ ବ୍ୟାଧିରେ ପୀଡ଼ିତ ହୋଇ କୁତ୍ସିତ, କଦାକାର ହୋଇଉଠିଥିଲେ । ମୋର ରୂପବାନ୍ ପୁତ୍ରର ଏ ଶୋଚନୀୟ ଦୁର୍ଦ୍ଦଶା ଦେଖି ସେଦିନ କ'ଣ ମୋ ବକ୍ଷ ଦୁଃଖରେ ବିଦୀର୍ଣ୍ଣ ହୋଇନଥିଲା ? ତଥାପି ମୁଁ ନିଜକୁ ସମ୍ବରଣ କରିଥିଲି ! ସେ ସଂବରଣର ଯାତନା କେବଳ ମୁଁ ହିଁ ଜାଣେ ।

ଶାମ୍ବର କକ୍ଷ ସାରା ଦର୍ପଣ ଖଚିତ ହୋଇଥିଲା ତା' ଆବାଲ୍ୟରୁ । ପ୍ରତ୍ୟେକ ଦର୍ପଣ ରେ ପ୍ରତିଫଳିତ ଶତ ଶତ ଶାମ୍ବର ରୂପ ସନ୍ଦର୍ଶନ କରି ମୁଗ୍ଧ ହେବାହିଁ ଥିଲା ଶାମ୍ବର ଏକମାତ୍ର ବିଳାସ । ସେହି ଦର୍ପଣରେ ଯେତେବେଳେ କୁତ୍ସିତ କଦାକାର ଶାମ୍ବର ପ୍ରତିବିମ୍ବ ପ୍ରତିବିମ୍ବିତ ହେଲା ମର୍ମାନ୍ତିକ ଦୁଃଖରେ ଶାମ୍ବ ସେଦିନ ସମସ୍ତ ଦର୍ପଣକୁ ଭାଂଗି ଚୂର୍‌ମାର୍ କରି ଦେଇଥିଲା ସ୍ୱହସ୍ତରେ । ରକ୍ତ କୋକନଦ ତୁଲ୍ୟ ତା'ର କରତଳ ରକ୍ତାକ୍ତ ହୋଇଯାଇଥିଲା । କେବଳ ଶରୀର ନୁହେଁ ସେଇ ମୁହୂର୍ତ୍ତରେ ତା'ର ମନ, ଆତ୍ମା ସବୁ କିଛି ଲହୁ ଲୁହାଣ ହୋଇଯାଇଥିଲା । ଆଶ୍ଚର୍ଯ୍ୟ ! ଶାପଗ୍ରସ୍ତ ଶାମ୍ବ ସେଦିନ ମୋ ପାଖକୁ ଆସି ନଥିଲେ ଶାପମୁକ୍ତି ପାଇଁ । ଅବୋଧ ବାଳୁତ ଭଳି ରୋଦନ କରି କରି ସେ ପହଞ୍ଚି ଥିଲେ ଦେବର୍ଷି ନାରଦଙ୍କ ପାଖରେ । ନାରଦ ତାଙ୍କୁ ପଠାଇଦେଇଥିଲେ ପୂର୍ବଭାରତର ଉପକୂଳବର୍ତ୍ତୀ ଅଞ୍ଚଳ ଅର୍କ କ୍ଷେତ୍ର କୋଣାର୍କର ଚନ୍ଦ୍ରଭାଗାତୀରକୁ ସୂର୍ଯ୍ୟୋପାସନା ନିମିତ୍ତ । ସୌରଶକ୍ତି ବିନା ଓ ସୌର ଆରାଧନା ବିନା ଗଳିତ କୁଷ୍ଠବ୍ୟାଧିରୁ ମୁକ୍ତି ନାହିଁ ଯେ ! ଶାମ୍ବ ଚାଲିଯାଇଥିଲେ ଅର୍କ କ୍ଷେତ୍ର । କଠୋର ତପଶ୍ଚର୍ଯ୍ୟା ଓ ସୌରରଶ୍ମୀରେ ଆପଣାର ଶରୀର ଦଗ୍ଧ କରିବା ପାଇଁ ଓ ଆରୋଗ୍ୟ ଲାଭ କରିବା ପାଇଁ ।

ମୋର ଆତ୍ମୀୟ ସ୍ୱଜନ, ଜ୍ଞାତି ପରିଜନ, ମୋର ପ୍ରିୟ ମଣିଷସମାଜ ପ୍ରତ୍ୟେକ

'ଦୁଃଖ'କୁ ସହନ କରି ଜାଣନ୍ତି ନାହିଁ, ବହନ କରି ଜାଣନ୍ତି ନାହିଁ । କି ଆଶ୍ଚର୍ଯ୍ୟ ! ଆଲୋକ ପରେ ଯେ ଅନ୍ଧାର ଆସିବ, ଏଥିରେ ବିଚିତ୍ରତା କ'ଣ ଅଛି ? ରାତିଟିଏ ପାହିଲେ ସିନା ସକାଳ ହେବ ! ଏମାନେ 'ଦୁଃଖ' କୁ କେବଳ ବ୍ୟାଖ୍ୟା କରନ୍ତି, ବାଣ୍ଟି ଦିଅନ୍ତି, ହୃଦୟ ଭିତରେ ଧାରଣ କରିବାକୁ ଆଦୌ ଚାହାନ୍ତି ନାହିଁ । ଅଥଚ ନିହାତି ସ୍ୱାର୍ଥପରଭାବେ 'ସୁଖ'କୁ ହିଁ କେବଳ ସାଇତି ରଖନ୍ତି । ସେଥିରେ ଯେମିତି କାହାରି ଅଂଶ ନରହେ । ସେଥିପ୍ରତି ସତର୍କ ଥାନ୍ତି । ସେମାନଙ୍କଠାରୁ ମୋର ପ୍ରଭେଦ ଏଇଠାରେ । 'ଦୁଃଖ'ର ବି ଏକ ନିଜସ୍ୱ ମହିମା ଥାଏ । 'ଦୁଃଖ' ମୋ ପାଇଁ ଏକ ମହାର୍ଘ ଅନୁଭୂତି ଓ ସଂଚୟ, 'ଦୁଃଖ'କୁ ଏକ ପବିତ୍ର କ୍ଷତ ଭାବି ମୁଁ ବହନ କରି ଆସିଛି ଚିରକାଳ ସବୁରି ଅଲକ୍ଷ୍ୟରେ । ମୋ ହୃଦୟ ରକ୍ତ ଝରା ହେଲେ ବି ମୁଁ ସେ ସଂଗୁପ୍ତ ସମ୍ବାଦ କାହାରି ଆଗରେ ପ୍ରକାଶ କରିନାହିଁ । ଅଶ୍ରୁତ ସ୍ୱରଟିଏ ଭଳି 'ଦୁଃଖ' ନାମକ ଅନୁକ୍ତ ବ୍ୟଥାଟି ଏକ ଶୀର୍ଣ୍ଣସ୍ରୋତା ନଦୀଭଳି ମୋ ହୃଦୟରେ ଅବିରଳ ପ୍ରବାହିତ ହୋଇଛି । ତଥାପି ମୁଁ ହସିଛି । ସେପରି ହସିବା କେତେ ମର୍ମାନ୍ତିକ ତା'କେବଳ ମୁଁ ହିଁ ଜାଣେ । ସେ ସଂବାଦ ବା କିପରି ରଖିଥାନ୍ତେ  ଦିବ୍ୟଦର୍ଶିନୀ ଗାନ୍ଧାରୀ ? ତେଣୁତ ସେ ମୋତେ ଏଭଳି ଚରମ ଅଭିଶାପ ଦେଇଥିଲେ କୁରୁକ୍ଷେତ୍ରର ମହାଶ୍ମଶାନରେ ! ସେ ଅଭିଶାପକୁ ନିର୍ବିବାଦରେ ମଥାପାତି ବରଣ କରିନେବା ବ୍ୟତୀତ ମୋର ବା ଆଉ କି ଉପାୟ ଥିଲା ? ସତୀ ଗାନ୍ଧାରୀଙ୍କ ଅଭିଶାପକୁ ବର୍ଣ୍ଣେ ବର୍ଣ୍ଣେ ପରିଣତିର ରୂପ ଦେବା ପାଇଁ ବରଂ  ମୁଁ ଅବଶିଷ୍ଟ ଜୀବନ କେବଳ ପାତ୍ର ଅନ୍ୱେଷଣ କରୁଥିଲି । ଦ୍ୱିତୀୟ କେହି ନଥିଲେ ।

ହଁ, ଦ୍ୱିତୀୟବାର,ଦ୍ୱିତୀୟବାର ଶାମ୍ବଙ୍କୁ ହିଁ ଶାପଗ୍ରସ୍ତ ହେବାକୁ ପଡ଼ିଥିଲା । ଏପରିକି ତାଙ୍କୁ ହିଁ ଯଦୁ ବଂଶ ଧ୍ୱଂସର ହେତୁ ବୋଲି ସାବ୍ୟସ୍ତ କରାହୋଇଥିଲା । ହୁଁଃ ! ଧ୍ୱଂସର ହେତୁ କୌଣସି ବ୍ୟକ୍ତି ବିଶେଷ ହେବା ସମ୍ଭବ ? ବ୍ୟକ୍ତି କ'ଣ ଏତେ ଶକ୍ତିଶାଳୀ ? ? ଧ୍ୱଂସତ ମହାକାଳର ଏକ ପରିଚୟ ପତ୍ର ମାତ୍ର ! ଶାମ୍ବ ! ପୁତ୍ର ମୋର ! ତୁମେ କାହିଁକି ଏପରି ରୂପୋନ୍ମତ୍ତ ? କାହିଁକି ଏପରି ଦୁର୍ବାର ? ତୁମ ଶୈଶବରୁହିଁ ମୁଁ ତୁମକୁ ଶିକ୍ଷା ଦେଇ ଆସିଥିଲି ଯେ, ସିଦ୍ଧ ତପା ମୁନିଗଣ ପରିହାସର ପାତ୍ର ନୁହନ୍ତି । ସେମାନେ ପରମ ପୂଜ୍ୟ । ତଥାପି ତୁମେ ସେଇ ଭୁଲ ହିଁ କଲ ? ଅଷ୍ଟବକ୍ର ମୁନିଙ୍କ ସହ ଏପ୍ରକାର କୌତୁକ ପ୍ରବଣତା ?

ଏପ୍ରକାର ପୃଷ୍ଠଭୂମିର ସୁଚିନ୍ତିତ ପରିକଳ୍ପନା ପାଇଁ ମଧ୍ୟ ମୋତେ ଦେବର୍ଷି ନାରଦଙ୍କ ସାହାଯ୍ୟ ନେବାକୁ ପଡ଼ିଥିଲା । ଦ୍ୱାରକାରେ ବସନ୍ତୋତ୍ସବ ଅନୁଷ୍ଠିତ ହେଉଥାଏ । ଦେବର୍ଷି ଶାମ୍ବଙ୍କ ରୂପର ପ୍ରଶଂସାରେ ସେଦିନ ଶତମୁଖ ହୋଇ ଉଠିଥିଲେ । ତାଙ୍କ ପ୍ରଶଂସାରେ ଶାମ୍ବ ଏଭଳି ପ୍ରଭାବିତ ହୋଇଯାଇଥିଲେ ଯେ, ବସନ୍ତୋତ୍ସବ ନିମିତ୍ତ ଦ୍ୱାରକାର ରାଜପୁତ୍ର ଗଣ ଯେଉଁ ନାଟକ ଅଭିନୟ କରୁଥିଲେ, ଶାମ୍ବ ସେଥିରେ ନାରୀ ଭୂମିକାରେ ଅଭିନୟ କରିବାପାଇଁ ସମ୍ମତି

ପ୍ରଦାନ କରିଥିଲେ । ଏକ ଅନ୍ତଃସତ୍ତ୍ୱା ନାରୀର ଭୂମିକା । ଆଉ ସେହି ଦିନହିଁ ଯଦୁବଂଶର ଏକ ଭୟଙ୍କର ବିପର୍ଯ୍ୟୟର ଗର୍ଭବାସ ହୋଇଥିଲା ।

ଦ୍ୱାରକାର ରାଜପୁତ୍ରଗଣ ଅନ୍ତଃସତ୍ତ୍ୱା ନାରୀ ବେଶୀ ଶାମ୍ବଙ୍କୁ ଅଷ୍ଟାବକ୍ରଙ୍କ ସମ୍ମୁଖରେ ଦଣ୍ଡାୟମାନ କରାଇ ପ୍ରଶ୍ନ କରିଥିଲେ -'ମୁନିବର ! ଏ ନାରୀ ଗର୍ଭବତୀ । ଆପଣ ଗଣନା କରି କହନ୍ତୁ ଏ କ'ଣ ପ୍ରସବ କରିବ ?'

ମୁହୂର୍ତ୍ତକ ପାଇଁ ଋଷିବର ସ୍ତବ୍ଧଚକିତ ହୋଇଯାଇଥିଲେ । ପର ମୁହୂର୍ତ୍ତରେ ତାଙ୍କର କଣ୍ଠନିଃସୃତ ଅଭିଶାପ ବଜ୍ରନିର୍ଘୋଷରେ ଧରଣୀରୁ ଅନ୍ତରୀକ୍ଷ ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇ ଯାଇଥିଲା । 'ଲୌହ ମୂଷଳ ! ଲୌହ ମୂଷଳ ?? ଯାହା ତୁମ୍ଭ ମାନଙ୍କ ଭଳି ଦୁର୍ବିନୀତ, ଅପରିଣାମଦର୍ଶୀ ଯଦୁବଂଶର ଧ୍ୱଂସ ସାଧନ କରିବ !!'

ତାହାହିଁ ହୋଇଥିଲା । ତାହାହିଁ ଘଟିଥିଲା । ଦୈବର ଏଇ ଅଲଂଘ୍ୟ ନିର୍ଦ୍ଦେଶକୁ କିଏ ଭଲା ବିରୁଦ୍ଧାଚରଣ କରିପାରିବ ? ସେଦିନ ଶାମ୍ବ ଧାଇଁ ଆସିଥିଲେ ଊର୍ଦ୍ଧ୍ୱଶ୍ୱାସରେ ମୋରି ପାଖକୁ । ତାଙ୍କର ସେ କାତର ମୁହଁଟିକୁ ଦେଖି ମୋ ବକ୍ଷ ତ ବିଦୀର୍ଣ୍ଣ ହୋଇଯାଇଥିଲା ଦୁଃଖରେ । ତଥାପି..... ତଥାପି ଧ୍ୱଂସର ବାର୍ତ୍ତା ବହନ କରି ଆସିଥିବା ମୋର ପ୍ରିୟ ପୁତ୍ରକୁ ସେଦିନ ମୁଁ ବୃଥା ସାନ୍ତ୍ୱନା ଦେଇଥିଲି । ଥାଉ ସେ କଥା ପରେ ।

●

## ।। ତ୍ରୟୋଦଶ ଗ୍ରନ୍ଥି ମୋଚନ ।।

ପାଞ୍ଚାଳ ରାଜ୍ୟରୁ ଦୂତ ଆସି ପହଞ୍ଚିଲା ଏକ ବହୁ ବାଂଛିତ ସମ୍ବାଦ ସହ । ମୁଁ ସମସ୍ତ ସଂବାଦ ସଂଗ୍ରହ କଲାପରେ ଉଚ୍ଚକିତ ତଥା ପୁଲକିତ ହୋଇ ଉଠିଲି । ସାରଥୀ ଦାରୁକଙ୍କୁ ତତ୍‌କ୍ଷଣାତ୍ ନିର୍ଦ୍ଦେଶ ଦେଲି ଆସନ୍ତା କାଲି ପ୍ରଭାତରୁ ଯେପରି ମୋର ଓ ଜ୍ୟେଷ୍ଠଭ୍ରାତାଙ୍କର ରଥ ପ୍ରସ୍ତୁତ ରହେ । ଜ୍ୟେଷ୍ଠଭ୍ରାତାଙ୍କ କକ୍ଷରେ ପହଞ୍ଚି ଦେଖିଲି ସେତେବେଳକୁ ମାଧ୍ୱୀର ନିଶାରେ ସେ ସଂପୂର୍ଣ୍ଣ ଆଚ୍ଛନ୍ନ । ମୁଁ ଟିକିଏ ଇତସ୍ତତଃ ହୋଇ କହିଲି - 'ଜ୍ୟେଷ୍ଠଭ୍ରାତ ! ଆସନ୍ତା କାଲି ପାଇଁ ଯାତ୍ରାର ଆୟୋଜନ କରୁଛି ।' - 'ଯାତ୍ରା ? କେଉଁଠିକି ?' ଜଡ଼ିତ ସ୍ୱରରେ ପ୍ରଶ୍ନକଲେ ବଳରାମ ।

ମୁଁ ସଂକ୍ଷେପରେ କହିଲି - 'ପାଞ୍ଚାଳ !'

'ପାଞ୍ଚାଳ ରାଜ୍ୟ ? କିନ୍ତୁ କାହିଁକି ?'

'ପାଞ୍ଚାଳ ରାଜକୁମାରୀଙ୍କର ସ୍ୱୟଂବର ଯେ !'

ଏତିକି ଶୁଣିବାମାତ୍ରେ ଜ୍ୟେଷ୍ଠଭ୍ରାତାଙ୍କର ଆଛନ୍ନଭାବ ମୁହୂର୍ତ୍ତକରେ ନିଶ୍ଚିହ୍ନ ହୋଇଗଲା । ଭାତୃଜୟା ରେବତୀଙ୍କ ଦୃଷ୍ଟିରେ ସଂଶୟର ମୁଦ୍ରା ସ୍ପଷ୍ଟ ହୋଇଉଠିଲା । ପ୍ରତ୍ୟେକ ନାରୀ ଏଇଭଳି ସ୍ୱାମୀର ହୃଦୟରେ ଏକାଧିପତ୍ୟ ରାଜତ୍ୱରୁ କାଣିଚାଏ ବି ବେଦଖଲ୍ ହେବା ଚାହାନ୍ତି ନାହିଁ । ମୁଁ ଭାତୃଜାୟା ଆର୍ଯ୍ୟା ରେବତୀଙ୍କୁ କହିଲି - 'ନିଶ୍ଚିନ୍ତ ରହନ୍ତୁ ଦେବୀ ! ବଡ଼ଭାଇଙ୍କୁ ଯେମିତି ଏକା ନେଉଛି ସେମିତି ଏକାହିଁ ଫେରାଇ ଆଣିବି । ଆମେ ନିମନ୍ତ୍ରିତ ହୋଇ ପାଞ୍ଚାଳ ଯାଉଛୁ କେବଳ ନୀରବ ଦର୍ଶକର ଭୂମିକା ନେବା ପାଇଁ । ଆମ୍ଭମାନଙ୍କର ପଣ ଜିଣିବାର ନାହିଁ କିମ୍ବା ହୃଦୟ ହରେଇବାର ଭୟ ମଧ୍ୟ ନାହିଁ ।' ଜ୍ୟେଷ୍ଠଭ୍ରାତା ଉଲ୍ଲସି ଭାବେ କହି ଉଠିଲେ । 'ପାଞ୍ଚାଳ ରାଜତନୟା..... ! ଅର୍ଥାତ୍ ? ଯିଏ ଜନ୍ମଲଗ୍ନରୁ କିଶୋରୀ ? କେଉଁ କେଉଁ ରାଜପୁତ୍ର ତା'ର ପାଣିପ୍ରାର୍ଥୀ ? କ'ଣ ତା'ର ସ୍ୱୟଂବରର ସର୍ତ୍ତ ?'

ମୁଁ କହିଲି - 'ଅନେକ ରାଜା ଓ ରାଜପୁତ୍ର ସ୍ୱୟଂବରରେ ଯୋଗ ଦେଉଛନ୍ତି । ଦୂତ ମୁଖରୁ ଯାହା ଶୁଣିଲି ସ୍ୱୟଂବରର ସର୍ତ୍ତ ବଡ଼ ଦୁରୂହ । ଯାହା ଜଣାଯାଉଛି ପାଞ୍ଚାଳ ନରେଶ ଜାମାତା ଚାହାନ୍ତି ନାହିଁ । ଚାହାନ୍ତି ଏକ ସର୍ବଶ୍ରେଷ୍ଠ ଧନୁର୍ବୀତ୍ । ସିଏ ତ ବହୁ ପୂର୍ବରୁ ତୃତୀୟ ପାଣ୍ଡବ ଧନଞ୍ଜୟଙ୍କୁ ଜାମାତା ରୂପେ ବରଣ କରିବାର ଅନେକ ସ୍ୱପ୍ନ ଦେଖିଥିଲେ । ବାରୁଣାବତର ଜତୁଗୃହ ଦାହ ପରେ ତାଙ୍କର ସେ ଆଶା ଧୂଳିସାତ୍ ହୋଇଯାଇଛି । କିଛିଦିନ ପୂର୍ବେ ମୋତେ ଜାମାତା ରୂପେ ବରଣ କରିବାକୁ ପ୍ରସ୍ତାବ ଦେଇଥିଲେ । ମୁଁ କିନ୍ତୁ ତାଙ୍କର ସେ ପ୍ରସ୍ତାବରେ ସମ୍ମତ ନହୋଇ ସ୍ୱୟଂବରର ଆୟୋଜନ ପାଇଁ ପରାମର୍ଶ ଦେଇଥିଲି ।'

ମୁଁ ଏଭଳି ନିରାସକ୍ତ ଭାବେ କହିଲି ଯତେ ଯେମିତି ମୁଁ ଜଣେ ନିର୍ଲିପ୍ତ ସନ୍ନ୍ୟାସୀ ଓ ନାରୀ ମାନଙ୍କ ପ୍ରତି କୌଣସି ଦିନ ଆକର୍ଷଣ ନଥିଲା ବା ନାହିଁ । ମୋର କଥନ ଭଂଗୀରେ ଜ୍ୟେଷ୍ଠଭ୍ରାତା ଓ ଦେବୀ ରେବତୀ ଉଭୟେ ଉଚ୍ଚ କଣ୍ଠରେ ହସି ଉଠିଲେ ।

'ସ୍ୱୟଂବରର ସର୍ତ୍ତ କ'ଣ ?' ସେମାନେ ପ୍ରଶ୍ନ କଲେ ।

ମୁଁ ପୁନରାୟ କହିଲି - 'ବଡ଼ କଠିନ ସର୍ତ୍ତ । ସ୍ୱୟଂବର ମଣ୍ଡପରେ ଏକ ଜଳପୂର୍ଣ୍ଣ ପାତ୍ର ରହିବ । ତା' ସମ୍ମୁଖରେ ଏକ ରଜତ ସ୍ତମ୍ଭ । ସ୍ତମ୍ଭର ଶୀର୍ଷଭାଗରେ ଏକ ଘୂର୍ଣ୍ଣାୟମାନ ଚକ୍ରଦେହରେ ଏକ ରଜତ ମତ୍ସ, ଅହରହ ତାହା ଘୂର୍ଣ୍ଣିତ ହେଉଥିବ । ଜଳପୂର୍ଣ୍ଣ ପାତ୍ରରେ ପ୍ରତିବିମ୍ବିତ ହେଉଥିବା ତା'ର ପ୍ରତିବିମ୍ବକୁ ଲକ୍ଷ୍ୟ କରି ଯେଉଁ ଧନୁର୍ଦ୍ଧର ମତ୍ସ୍ୟର ବାମଚକ୍ଷୁକୁ ଏକ କାଳୀନ ପାଞ୍ଚଗୋଟି ଶରବିଦ୍ଧ କରିବାରେ ସମର୍ଥ ହେବ; ସେ ହିଁ ଦ୍ରୁପଦ ତନୟାଙ୍କର ଯୋଗ୍ୟ ପାଣି ପ୍ରାର୍ଥୀ ହୋଇ ପାରିବ !'

କିଛି ସମୟ ଚୁପ୍ ରହି ଚିନ୍ତାମଗ୍ନ ଭାବେ ଜ୍ୟେଷ୍ଠଭ୍ରାତା କହିଲେ - 'ପ୍ରକୃତରେ କଠିନ

ସର୍ତ୍ତ । ତେବେ  ଜଣେ କ୍ଷତ୍ରିୟ କନ୍ୟା ଜଣେ ବୀରକୁ ବରଣ କରିବାକୁ ଇଚ୍ଛାକରେ । ଏଥିରେ ଦ୍ୱିମତ ହେବାର ନାହିଁ । କିନ୍ତୁ ଦ୍ରୁପଦ କେବଳ ଧନୁର୍ବୀତ୍ କାହିଁକି ଇଚ୍ଛା କରୁଛନ୍ତି ?'

-'ଆଚାର୍ଯ୍ୟ ଦ୍ରୋଣ ଶ୍ରେଷ୍ଠ ଧନୁର୍ବୀତ୍ ଯେ !'

ଜ୍ୟେଷ୍ଠଭ୍ରାତାଙ୍କର ସ୍ମରଣ ଶକ୍ତି ଏତେ ପ୍ରଖର ନଥିଲା । ମୁଁ ତାଙ୍କୁ ସ୍ମରଣ କରାଇ ଦେଇ କହିଲି - 'ଆର୍ଯ୍ୟ ! ଯାଜ୍ଞସେନୀ ଓ ଧୃଷ୍ଟଦ୍ୟୁମ୍ନ ଯଜ୍ଞକୁଣ୍ଡରୁ ଜନ୍ମ ନେଇଥିଲେ ସତ; ମାତ୍ର ଯଥାର୍ଥରେ ରାଜା ଦ୍ରୁପଦଙ୍କ ଅନ୍ତରରେ ବହୁବର୍ଷରୁ ପ୍ରଜ୍ୱଳିତ ହେଉଥିବା ପ୍ରତିଶୋଧର ତୃଷାଗ୍ନିରୁହିଁ ସେମାନେ ଜନ୍ମ ନେଇଛନ୍ତି ।'

ହଁ ! ପ୍ରକୃତରେ ସୁମହାନ୍ ପୁରୁବଂଶରେ ଏହାପରେ ଲୋଭ ଓ ଲିପ୍‌ସା, ଜୀଗିଷା ଓ ଜିଘାଂସା ତଥା ପ୍ରତିଶୋଧ ଓ ପ୍ରତିହିଂସାର ବହୁ କୁତ୍ସିତ ନାଟକ ଅଭିନୀତ ହୋଇଯାଇଛି । ଆଉ ସେଥିପାଇଁ ଯେଉଁ ମହାନ ରଣଯଜ୍ଞ ଅନୁଷ୍ଠିତ ହୋଇଛି ସେଥିରେ ଆଚାର୍ଯ୍ୟ ଦ୍ରୋଣ ଯେମିତି ଏକ ଆହୂତି, ରାଜା ଦ୍ରୁପଦବି ସେମିତି ଏକ ଆହୂତି ମାତ୍ର । ଅଥଚ ପଦ ପଦବୀର ଅହଂକାରରେ ମତ୍ତ ହୋଇ ରାଜା ଦ୍ରୁପଦ ଆଚାର୍ଯ୍ୟ ଦ୍ରୋଣଙ୍କୁ ଏକଦା ବନ୍ଧୁ ବୋଲି ଅସ୍ୱୀକାର କରିଦେଇଥିଲେ ନା ?

ଅଶ୍ୱତ୍‌ଥାମା ! ଅଶ୍ୱତ୍‌ଥାମା !!  ଅଶ୍ୱତ୍‌ଥାମା !!!

ଅଶ୍ୱତ୍‌ଥାମା ହିଁ ଏକମାତ୍ର ଦୁର୍ବଳତା ଆଚାର୍ଯ୍ୟ ଦ୍ରୋଣଙ୍କର । ଶେଷକୁ ତା'ରି ପାଇଁ ରଣଭୂମିରେ ସୁଦ୍ଧା, ଉଦ୍ୟତ ଖଡ୍‌ଗ ସମ୍ମୁଖରେ ସୁଦ୍ଧା ଅସ୍ତ୍ର ତ୍ୟାଗ କରି ନିରସ୍ତ୍ର ଭାବରେ ଆଚାର୍ଯ୍ୟ ପ୍ରାଣ ବିସର୍ଜନ ଦେଇ ଦେଲେ । ସେଇ ଆଚାର୍ଯ୍ୟ ଦ୍ରୋଣ ସେତେବେଳେ ହସ୍ତିନାର ରାଜପୁତ୍ର ମାନଙ୍କର ଶସ୍ତ୍ର ଗୁରୁ ନଥିଲେ କିମ୍ବା ଅହିଛତ୍ରର ଅଧିପତି ମଧ୍ୟ ନଥିଲେ । ଗୁରୁକୁଳରୁ ଫେରିବା ପରେ ତାଙ୍କର ଏକମାତ୍ର ପରିଚୟ ଥିଲା ସେ ଜଣେ ଶସ୍ତ୍ରକୁଶଳୀ ଦରିଦ୍ର ବ୍ରାହ୍ମଣ । ଆଚାର୍ଯ୍ୟ କୃପଙ୍କର ଭଗ୍ନି କୃପୀଙ୍କୁ ବିବାହ କରି ଅଶ୍ୱତ୍‌ଥାମା ନାମକ ପୁତ୍ର ସନ୍ତାନର ଜନକ ହୋଇସାରିଥା'ନ୍ତି । ପ୍ରଚଣ୍ଡ ସ୍ୱାଭିମାନୀ ଦ୍ରୋଣ କାହାର ଦାନ ଉପରେ ନିର୍ଭର କରି ଜୀବନ ନିର୍ବାହ କରିବାକୁ ଆଦୌ ଇଚ୍ଛା କରୁନଥିଲେ । ସେତେବେଳକୁ ଦାରିଦ୍ର୍ୟ ହିଁ ତାଙ୍କର ନିତ୍ୟସାଥୀ ହୋଇଥାଏ  । ଶିଶୁ ଅଶ୍ୱତ୍‌ଥାମା ଶୈଶବରେ ଦୁଗ୍ଧର ବର୍ଣ୍ଣ, ଗନ୍ଧ, ସ୍ୱାଦ ସଂପର୍କରେ ସଂପୂର୍ଣ୍ଣ ଅଜ୍ଞାତ ଥାଏ । ତା'ର ଏକ ସଂଗୀବାଳକ ଦୁଗ୍ଧପାନ କରୁଥିବା ସମୟରେ ସେହି ପାନୀୟ ପ୍ରତି ସେ ଲୋଭାକୃଷ୍ଟ ହୋଇପଡିଥିଲା । ତାହା ସର୍ବୋତ୍କୃଷ୍ଟ ପାନୀୟ ଗୋକ୍ଷୀର ବୋଲି ଜାଣିବା ପରେ ଅବୋଧ ବାଳୁତ ଅଶ୍ୱତ୍‌ଥାମା ପିତାଙ୍କ ଅବସ୍ଥାପ୍ରତି ସଚେତନ ନରହି କୃପୀଙ୍କ ନିକଟରେ ଦୁଗ୍ଧପାନ କରିବା ନିମିତ୍ତ ଜିଦ୍ ଧରି ବସିଲା । କୃପୀ ଚାଉଳ ଚୂନାରେ ପାଣି ମିଶେଇ ଗୋକ୍ଷୀର ବୋଲି ଅଶ୍ୱତ୍‌ଥାମାକୁ ପି'ବାକୁ ଦେଇଦେଲେ । ବାଳକ ଅଶ୍ୱତ୍‌ଥାମା ତା' ମଧ୍ୟ ହୃଷ୍ଟ ଚିତ୍ତରେ

ପାନ କରିବା ସମୟରେ ତା'ର କ୍ରୀଡା ସାଥୀଙ୍କ ଦ୍ୱାରା ଉପହସିତ ହୋଇଥିଲା । ଟୋପାଏ କ୍ଷୀରପାଇଁ ତାଙ୍କର ଏକମାତ୍ର ପୁତ୍ରର ଏ ଦୁର୍ଦ୍ଦଶା ଦ୍ରୋଣାଚାର୍ଯ୍ୟଙ୍କର ଅସହ୍ୟ ହୋଇଉଠିଲା । ତାଙ୍କର ସ୍ମୃତିପଟରେ ଭାସି ଉଠିଲା ଗୁରୁକୁଳର ଦୃଶ୍ୟ । ଏକତ୍ର ବିଦ୍ୟାଧ୍ୟୟନ କରିବାର ଦୃଶ୍ୟ । ଭାସିଉଠିଲା ଧନୀ ଦରିଦ୍ର ନିର୍ବିଶେଷରେ ସଖ୍ୟ ଓ ପ୍ରତିଶ୍ରୁତିର ଦୃଶ୍ୟ । ପାଞ୍ଚାଳ ରାଜକୁମାର ଓ ଦରିଦ୍ର ବ୍ରାହ୍ମଣ ଦ୍ରୋଣଙ୍କର ଏକତ୍ର ଅଧ୍ୟୟନର ଦୃଶ୍ୟ । ଦ୍ରୋଣଙ୍କ ଚକ୍ଷୁରେ ଆଶା ଓ ବିଶ୍ୱାସର ଆନନ୍ଦ ଚିକ୍ ଚିକ୍ କରି ଉଠିଲା । ସେ ପର୍ଯ୍ୟନ୍ତ କିନ୍ତୁ ଜଟିଳତା ତାଙ୍କ ହୃଦୟରେ ପ୍ରବେଶ କରିନଥିଲା । ସେ ପର୍ଯ୍ୟନ୍ତ ହୁଏତ ସେ ଜାଣିନଥିଲେ ରାଜାର ପ୍ରତିଶ୍ରୁତି ଆଦୌ ନିର୍ଭରଯୋଗ୍ୟ ନୁହେଁ ବରଂ ଜଳ ବୁଦ୍ ବୁଦ୍ ଭଳି କ୍ଷଣିକ ତା'ର ସ୍ଥିତି ! ସେଇଥିପାଇଁ..... ସେଇଥିପାଇଁ...... ଦ୍ରୋଣ ପାଞ୍ଚାଳ ଦରବାରରେ ପହଞ୍ଚି ରାଜାଦ୍ରୁପଦଙ୍କୁ ବନ୍ଧୁତାର ଦୁହାଇ ଦେଇ ସାମାନ୍ୟ ଏକ ଦାନ ମାଗିଥିଲେ । ଦ୍ରୁପଦଙ୍କ ରାଜକୋଷର ରତ୍ନ ଭଣ୍ଡାରରେ ତାହା ଅତି ସାମାନ୍ୟ । ଗୋଟିଏ ଦୁଗ୍ଧବତୀ ସବତ୍ସା ଗାଭୀଟିଏ ! ଏତିକି ଦାବୀତ ରାଜା ଦ୍ରୁପଦ ଅନାୟାସରେ ପୂରଣ କରିପାରିଥା'ନ୍ତେ । ଯଦି ଦ୍ରୋଣ ଏକ ଦରିଦ୍ର ବ୍ରାହ୍ମଣ ନ୍ୟାୟରେ ତାଙ୍କ ନିକଟରେ ହାତ ପାତିଥା'ନ୍ତେ । ମାତ୍ର ଦ୍ରୋଣ ଯେ ରାଜା ଦ୍ରୁପଦଙ୍କୁ ବନ୍ଧୁ ବୋଲି ଦାବୀ କରି ବସିଲେ ? ଗାଭୀଟିଏ ବା କିଛି ସ୍ୱର୍ଣ୍ଣଖଣ୍ଡ ଦାନ ଦେବା ତାଙ୍କ ପକ୍ଷେ ଅସମ୍ଭବ ନଥିଲା; ମାତ୍ର ରାଜା ସହ ଦରିଦ୍ରର ବନ୍ଧୁତା ? ତା'ତ ଏକାବେଳେକେ ଅସମ୍ଭବ !

ନାଃ ! ଦ୍ରୋଣଙ୍କର ଏ ଦୁଇଟି ଦାବୀରୁ କୌଣସି ଗୋଟିଏ ବି ପୂରଣ ହୋଇନଥିଲା । ଅପମାନିତ, ଲାଂଛିତ ଦ୍ରୋଣ ଫେରି ଆସିଥିଲେ ଶୂନ୍ୟହସ୍ତରେ ହୃଦୟ ଭିତରେ ଏକ ପ୍ରତିହିଂସାର ପ୍ରଦୀପକୁ ପ୍ରଜ୍ଜ୍ୱଳନ କରି । ସେଇଦିନରୁ ସେ ଉପଯୁକ୍ତ ପାତ୍ରର ଅନ୍ୱେଷଣରେ ଥିଲେ । ଯିଏ କି ସମସ୍ତ ଶସ୍ତ୍ରବିଦ୍ୟାରେ ପାରଙ୍ଗମ ହୋଇ ଭବିଷ୍ୟତରେ ଦ୍ରୁପଦର ଗର୍ବ ଖଣ୍ଡନ କରିପାରିବ ।

ପଣ୍ଡୁସୁତ ଓ ଗାନ୍ଧାରୀତନୟ ଗଣ ସେତେବେଳକୁ କ୍ରମଶଃ ବଢ଼ି ଉଠୁଥା'ନ୍ତି । ବିଦ୍ୟାଧ୍ୟୟନ କରିବାର ଉପଯୁକ୍ତ ବୟସରେ ପଦାର୍ପଣ କରିଥା'ନ୍ତି । କୃପାଚାର୍ଯ୍ୟ ଓ ପିତାମହ ଭୀଷ୍ମଙ୍କଠାରୁ ଯଦିଓ ସେମାନେ ଶସ୍ତ୍ର ଓ ଶାସ୍ତ୍ର ଅଧ୍ୟୟନର ସୁଯୋଗ ପାଉଥା'ନ୍ତି । ସେଦିନ ରାଜକୁମାର ଗଣ କନ୍ଦୁକ କ୍ରୀଡ଼ା କରୁଥିବା ସମୟରେ କନ୍ଦୁକଟି ଶୁଷ୍କ କଣ୍ଟକ ଗୁଳ୍ମ ଆଚ୍ଛାଦିତ, ଅବ୍ୟବହୃତ ଏକ କୂପରେ ଜଳମଗ୍ନ ହୋଇଗଲା । କାହାପାଇଁ କେତେବେଳେ ସୁଯୋଗ କେଉଁଭଳି ଭାବରେ ଉପସ୍ଥିତ ହୁଏ ତା କେବଳ ବିଧାତାକୁ ହିଁ ଜଣା । ଏଇ ସାମାନ୍ୟ କନ୍ଦୁକ ଆଚାର୍ଯ୍ୟ ଦ୍ରୋଣଙ୍କର ଭାଗ୍ୟକୁ ଆମୂଳ ପରିବର୍ତ୍ତନ କରିଦେଇପାରିଲା । କୂପମଗ୍ନ କନ୍ଦୁକଟିକୁ ଉଦ୍ଧାର କରିନପାରି ରାଜକୁମାର ଗଣ ବଡ଼ ବିବ୍ରତ ହୋଇ ପଡ଼ିଲେ । ଆଚାର୍ଯ୍ୟ ଦ୍ରୋଣ ଦ୍ରୁପଦ

ଦରବାରରୁ ଅପମାନିତ ହୋଇ ଫେରିବାପରେ କ୍ଷତ୍ରିୟ ବିଦ୍ୱେଷୀ ପର୍ଶୁରାମଙ୍କ ନିକଟକୁ ଧନ ଆଶାରେ ଯାଇ ଶସ୍ତ୍ରଜ୍ଞାନ ନେଇ ଫେରିଆସିଥିଲେ । ସେହି ଅଭିନବ ଶସ୍ତ୍ର କୌଶଳ ବଳରେ ସେ ରାଜକୁମାରଗଣଙ୍କର କନ୍ଦୁକଟିକୁ ଉଦ୍ଧାର କରିବାର ସମର୍ଥ ହୋଇଥିଲେ । ତାଙ୍କର ସେ ଅପୂର୍ବ ତୀର ସଂଯୋଜନା ଅର୍ଜୁନଙ୍କୁ ମୁଗ୍ଧ, ତଟସ୍ଥ କରିଦେଇଥିଲା ।

ଅବଶେଷରେ ପିତାମହ ଭୀଷ୍ମଙ୍କ ଦ୍ୱାରା ହସ୍ତିନା ରାଜପୁତ୍ରଙ୍କ ଶସ୍ତ୍ରଗୁରୁ ରୂପେ ନିଯୁକ୍ତି ପାଇଥିଲେ ଆଚାର୍ଯ୍ୟ । ପ୍ରତ୍ୟେକ ରାଜପୁତ୍ରଙ୍କୁ ଉପଯୁକ୍ତ ଶିକ୍ଷା ଦେଇଥିଲେ ତଥା ଶିଷ୍ୟଭଳି ଶିଷ୍ୟଟିଏ ଗଢ଼ିଥିଲେ ଆଚାର୍ଯ୍ୟ । ସେ ହେଉଛନ୍ତି ତୃତୀୟ ପାଣ୍ଡବ ଅର୍ଜୁନ । ହଁ, ତାଙ୍କରି ଦ୍ୱାରା ଦ୍ରୁପଦ-ଅପମାନର ପ୍ରତିଶୋଧ ମଧ୍ୟ ନେଇଥିଲେ । ପାଞ୍ଚାଳ ନରେଶଙ୍କୁ ବନ୍ଦୀ ଭାବରେ ଦ୍ରୋଣଙ୍କ ସମ୍ମୁଖରେ ଠିଆ ହେବାକୁ ପଡ଼ିଥିଲା ଏବଂ ଦ୍ରୋଣଙ୍କର ବନ୍ଧୁତାର ପ୍ରସାରିତ ହସ୍ତକୁ ଗ୍ରହଣ କରିବାକୁ ମଧ୍ୟ ପଡ଼ିଥିଲା । ଅର୍ଜୁନ ହିଁ ଥିଲେ ସେଦିନ ଦ୍ରୋଣଙ୍କର ଆୟୁଧ । ସେଇ ଆୟୁଧକୁ ଦ୍ରୋଣଙ୍କ ବିରୁଦ୍ଧରେ ବ୍ୟବହାର କରିବାକୁ ମଧ୍ୟ ଦ୍ରୁପଦ ବଦ୍ଧପରିକର । ବ୍ରାହ୍ମଣ କ୍ଷଣକୋପୀ; କିନ୍ତୁ ପ୍ରତିଶୋଧ ପରାୟଣ ନୁହେଁ । କ୍ଷତ୍ରିୟ ଧୈର୍ଯ୍ୟଶୀଳ·ସତ, ମାତ୍ର ପ୍ରତିଶୋଧ ନେବାର ପ୍ରତିଶୃତିକୁ ସେ ସମଗ୍ର ଜୀବନ ଧରି ପାଳନ କରେ । ଯେଉଁଥିପାଇଁ ଅତୀତରେ ରାଜା ଦ୍ରୁପଦ ଯଜ୍ଞର ଆୟୋଜନ କରିଥିଲେ ଏବଂ ସେହି ଯଜ୍ଞଲବ୍ଧ ସନ୍ତାନ ହେଲେ ଧୃଷ୍ଟଦ୍ୟୁମ୍ନ ଓ ଯାଜ୍ଞସେନୀ !

ଶୁକ୍ଳା ତ୍ରୟୋଦଶୀର ଚନ୍ଦ୍ର ଧିର ମନ୍ଥରଗତିରେ ଆକାଶ ପରିକ୍ରମା କରୁଥିଲା । ଜ୍ୟେଷ୍ଠଭ୍ରାତାଙ୍କର ରକ୍ତାଭ ଚକ୍ଷୁ ଦିଓଟିରୁ ମାଧ୍ୱୀର ନିଶା ଛାଡ଼ି ଛାଡ଼ି ଆସୁଥିଲା । ମୋ ଚିନ୍ତା ଜଗତରୁ ମୋତେ ଫେରାଇ ଆଣିବାପାଇଁ ସେ ପ୍ରଶ୍ନ କଲେ - 'ଗୋବିନ୍ଦ ! ତୁମେ ଅତୀତରେ ଯେଉଁ ଦ୍ରୁପଦ ସନ୍ତାନ ଶିଖଣ୍ଡିନୀ ବିଷୟରେ କହୁଥିଲ, ଯିଏ ଶୈଶବରୁ ପୁତ୍ତଳୀ କ୍ରୀଡ଼ା ତ୍ୟାଗ କରି ଅସ୍ତ୍ର ଶସ୍ତ୍ର ସହ ଖେଳିବା ଆରମ୍ଭ କରିଦେଇଥିଲା, ଯିଏ ଅବିବାହିତ, ବୟସ୍କ ପୁରୁଷଙ୍କୁ ଦେଖିଲେ ବିନା କାରଣରେ ବିଦ୍ୱେଷ ପ୍ରକାଶ କରୁଥିଲା, ତା'ର ଖବର କ'ଣ ?'

ଶିଖଣ୍ଡିନୀ କଥା ପଡୁ ପଡୁ କେଜାଣି କାହିଁକି ମୋ ଚକ୍ଷୁ ସମ୍ମୁଖରେ ଶୁକ୍ଳକେଶ ସମନ୍ୱିତ, ଶୁକ୍ଳ ଶ୍ମଶ୍ରୁ ଶୋଭିତ, ଶୁକ୍ଳାମ୍ବର ଧାରୀ, ଶ୍ୱେତ ଅଶ୍ୱବାହୀ ରଥାସୀନ ପ୍ରବୀଣ ରାଜନୀତିଜ୍ଞ, ନ୍ୟାୟନିଷ୍ଠ, ନୀତି ନିୟନ୍ତ୍ରିତ, ଆଜନ୍ମ ବ୍ରହ୍ମଚାରୀ, ଋଜୁ ଦେହା, ମହାପରାକ୍ରମଶାଳୀ, ଅମିତତେଜା ଅପରାଜେୟ ଯୋଦ୍ଧା ଗଙ୍ଗାପୁତ୍ର, କୁରୁ ପିତାମହ ଭୀଷ୍ମଙ୍କ ଭାବଗମ୍ଭୀର ମୂର୍ତ୍ତିଟି ଉଦ୍‌ଭାସିତ ହୋଇଉଠିଲା । ମୁଁ ମୁହୂର୍ତ୍ତକ ପାଇଁ ଅନ୍ୟ ମନସ୍କ ହୋଇଉଠିଲି । ପ୍ରତିହିଂସା କ'ଣ ଏଭଳି ଏକ ବସ୍ତୁ ଯାହା ଜନ୍ମରୁ ଜନ୍ମାନ୍ତର, ଯୁଗରୁ ଯୁଗାନ୍ତର ଯାଏ ମଣିଷ ସହ ପ୍ରଧାବିତ ହେଉଥାଏ ? ତା'ର ସମସ୍ତ ଶାନ୍ତି ନଷ୍ଟ କରୁଥାଏ ?

-'ଗୋବିନ୍ଦ ?'

ବଡ଼ଭାଇଙ୍କ ଡାକରେ ମୁଁ ଆତ୍ମସ୍ଥ ହୋଇ ହସି ଦେଇ କହିଲି -'ଓ ! ଶିଖଣ୍ଡିନୀ ? ସେ ବର୍ତ୍ତମାନ କ୍ଲୀବ ଶିଖଣ୍ଡୀ ଭାବେ କାମ୍ପିଲ୍ୟର ଜଣେ ଶସ୍ତ୍ରକୁଶଳୀ ଯୋଦ୍ଧାରୂପେ ପରିଗଣିତ ।'

ଜ୍ୟେଷ୍ଠଭ୍ରାତା କିଛି ସମୟ ଚୁପ୍ ରହି କହିଲେ, 'ତୁମ କଥା ସବୁ ମୋତେ ରହସ୍ୟମୟ ମନେ ହେଉଛି । ଦ୍ରୁପଦ ପରିବାରରେ ଯେତେ ଖାଲ, ଖମା ଅଛି ସେ ସବୁ ପ୍ରତିଶୋଧ ମାଧ୍ୟମରେ, ରକ୍ତତର୍ପଣ ମାଧ୍ୟମରେ ସେମାନେ ତେବେ ପୂରଣ କରିବାକୁ ଚାହାନ୍ତି ?'

ମୁଁ ଏପ୍ରଶ୍ନର ଉତ୍ତରକୁ ଏଡ଼େଇ ଦେଇ କହିଲି - 'ଜ୍ୟେଷ୍ଠଭ୍ରାତା ! ଆସନ୍ତା କାଲି ସମଗ୍ର ଦିନ ଆମର ଯାତ୍ରାରେ ଅତିବାହିତ ହେବ । ଆଜି ଟିକେ ବିଶ୍ରାମ ନେଇଯିବା ।'

ରୁକ୍ମିଣୀଙ୍କ କକ୍ଷରେ ପହଞ୍ଚି ଦେଖିଲି ରୁକ୍ମିଣୀଙ୍କ ସହ ସତ୍ୟଭାମା ମଧ୍ୟ ବଡ଼ ତତ୍ପରଭାବେ ଆମର ଆଗାମୀ କାଲିର ଯାତ୍ରା ପାଇଁ ଅନେକ ଜିନିଷ ସଜାଡ଼ି ରଖୁଛନ୍ତି । ସତ୍ୟଭାମା ମାନମୟୀ, ଠିକ୍ ଗୋପ କନ୍ୟାଙ୍କ ଭଳି । ମୋତେ ଦେଖୁ ଦେଖୁ ସେ କହିଲେ - 'ପୁଣି କେଉଁ ନୂତନ ଭବ ନବବଧୂର ସ୍ୱାଗତ ସମ୍ବର୍ଦ୍ଧନା ପାଇଁ ସୁସଜ୍ଜିତ ହେବ ପ୍ରଭୁ ?'

-'ନବବଧୂ ?' ମୁଁ ଯଥାର୍ଥରେ ବିସ୍ମୟପ୍ରକାଶ କଲି ।

-'ସ୍ୱୟଂବରର ନିମନ୍ତ୍ରଣ ପାଇ ଯେତେବେଳେ ଆପଣ ପାଞ୍ଚାଳ ଯାତ୍ରା କରୁଛନ୍ତି; ସପତ୍ନି ଆଗମନର ସମ୍ଭାବନା ଯେ ଉଜ୍ଜ୍ୱଳ ଏକଥା ଜାଣିବାକୁ ମୋର ବାକୀ ନାହିଁ ।' 'ଯଦିଓ ପାଞ୍ଚାଳ ନରେଶ ଯଜ୍ଞଲବ୍ଧା ସେହି ଅଦ୍‌ଭୁତ କନ୍ୟାଟିର ପାଣିଗ୍ରହଣ କରିବାକୁ ସର୍ବପ୍ରଥମେ ମୋତେହିଁ ଅନୁରୋଧ କରିଥିଲେ, ମୁଁ କିନ୍ତୁ ତୁମ ଭୟରେ ସେ ଆଶା ତ୍ୟାଗ କରିଛି । ସ୍ୱୟଂବରର ଆୟୋଜନ କରିବାକୁ ବରଂ ମୁଁ ନିଜେହିଁ ତାଙ୍କୁ ପରାମର୍ଶ ଦେଇଛି ।'

କାତର ହେବାର ଅଭିନୟ କରି ମୁଁ କହିଲି । ମୋର ଅଭିନୟ ଦେଖି ସତ୍ୟଭାମା ଓ ରୁକ୍ମିଣୀ ହାସ୍ୟ ସମ୍ବରଣ କରି ପାରିଲେ ନାହିଁ । ମୁଁ କହିଲି - 'ମୁଁ ବରଂ ସଖା ଆଉ ସଖୀର ଅନ୍ୱେଷଣରେ ଯାଉଛି । ଦ୍ରୁପଦ ତନୟାଙ୍କୁ ମୁଁ ଦେଖିନାହିଁ । ଶୁଣିଛି ସମଗ୍ର ଆର୍ଯ୍ୟବର୍ତ୍ତର ସେ ସର୍ବ ଶ୍ରେଷ୍ଠ ସୁନ୍ଦରୀ ଓ ବିଦୂଷୀ । ସେଭଳି ଏକ ସର୍ବ ଗୁଣୋତ୍ତମା ଓ ରୂପୋତ୍ତମା ନାରୀ ନିମିତ୍ତ ମୁଁ କ'ଣ ଯୋଗ୍ୟ ପାତ୍ରକି ?'

ଆଶ୍ଚର୍ଯ୍ୟ ନାରୀର ମନ ! ସପତ୍ନୀ ସମ୍ଭାବନାରେ ଯେଉଁ ସତ୍ୟଭାମା କାତର ହୋଇଉଠୁଥିଲେ, କୌଣସି ରୂପସୀ ନାରୀପାଇଁ ତାଙ୍କ ସ୍ୱାମୀ ଯେ ଅଯୋଗ୍ୟ ଏକଥା ମଧ୍ୟ ତାଙ୍କୁ ଅଧିକ କାତର କରିପକାଇଲା । ସେ ତତ୍‌କ୍ଷଣାତ କହିଉଠିଲେ - 'ପାଞ୍ଚାଳ ନନ୍ଦିନୀ ବରଂ କୁମାରୀ ରହି ପାରନ୍ତି; କିନ୍ତୁ ଆପଣଙ୍କଠାରୁ ଅଧିକ ଯୋଗ୍ୟତମ ପାତ୍ର ମିଳିବା ଅସମ୍ଭବ !'

ମୁଁ ଲଘୁ ପରିହାସରେ କହି ଉଠିଲି - 'ପ୍ରିୟେ ! ଏକଥା ତେବେ ତୁମେ ସ୍ୱୀକାର କରୁଛ ? ତେବେ ତୁମର ବିଚାର ଓ ବିଧାତା ପୁରୁଷର ବିଚାରରେ ଅନେକ ପାର୍ଥକ୍ୟ । ପାଞ୍ଚାଳୀ ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସିଦ୍ଧିପାଇଁ ଜନ୍ମ ନେଇଛନ୍ତି । ଏକମାତ୍ର ମୋର ସହଯୋଗରେ ତାଙ୍କ ଉଦ୍ଦେଶ୍ୟ ସିଦ୍ଧି ହେବନାହିଁ !'

ଏକଥା ମୁଁ ନିଜେ କହୁଥିଲି ବି ବହୁଦୂରରୁ କେହି କହୁଥିବା ଭଳି ମନେ ହେଉଥିଲା । ସତ୍ୟଭାମା ଓ ରୁକ୍ମିଣୀଙ୍କ ଦୃଷ୍ଟି ସେହି ଦୂର ମଣିଷର ଅନୁସନ୍ଧାନରେ ଦିଗନ୍ତରେ ହଜିଯାଇଥିଲା ।

•

## ।।ଚତୁର୍ଦ୍ଦଶ ଗ୍ରନ୍ଥି ମୋଚନ ।

ଯେଉଁ ମିଥିଳା ନଗରୀରେ ଜନକ ତନୟା ସୀତା ଜନ୍ମ ନେଇଥିଲେ, ଯେଉଁ ବିଦର୍ଭ ନଗରୀରେ ମୋର ପ୍ରିୟ ବଲ୍ଲଭୀ ରୁକ୍ମିଣୀ ଜନ୍ମ ନେଇଥିଲେ । ଏହି ପରମ ଲକ୍ଷ୍ମୀଦ୍ୱୟଙ୍କୁ ଜନ୍ମ ଦେଇ ଏ ଦୁଇଟି ନଗରୀ ଯେପରି ସର୍ବଶୋଭା ଓ ସଂପଦର ଭଣ୍ଡାର ହୋଇ ରହିଥିଲା, ଠିକ୍ ସେହିଭଳି ଯଜ୍ଞସମ୍ଭବା ଯାଜ୍ଞସେନୀଙ୍କୁ ପାଇ ଭାରତବର୍ଷର ମଧ୍ୟଖଣ୍ଡ ଅନୁପମ ଶୋଭା ଓ ଅକଳିତ ଐଶ୍ୱର୍ଯ୍ୟର ଭଣ୍ଡାର ହୋଇ ରହିଥିଲା । ପାଞ୍ଚାଳ ନନ୍ଦିନୀଙ୍କ ସ୍ୱୟଂବରର ଆୟୋଜନଯେ ଏପରି ଅପୂର୍ବ ବର୍ଣ୍ଣାଢ଼୍ୟ ତା' ନଦେଖିବା ଲୋକ ବିଶ୍ୱାସ କରି ପାରିବ ନାହିଁ । ନଗର ସୀମାନ୍ତରୁ ଧାଡ଼ି ଧାଡ଼ି ଶ୍ୱେତ ପତାକା ମାନ ମେଘଳ ଆକାଶର ପୃଷ୍ଠଭୂମିରେ ବକାଳିକା ମାଳିକା ପ୍ରାୟ ଶୋଭା ପାଉଥିଲା । ଆମ୍ରପଲ୍ଲବ ଓ ବିବିଧ ବର୍ଣ୍ଣର ପୁଷ୍ପରେ ସୁସଜ୍ଜିତ ତୋରଣମାନ ବହୁଦୂରରୁ ପାଞ୍ଚାଳ ଅଭିମୁଖେ ଆସୁଥିବା ପଥିକଗଣଙ୍କୁ ଆକୃଷ୍ଟ କରୁଥିଲା । ଜନପଥର ଉଭୟ ପାର୍ଶ୍ୱରେ ପ୍ରଚୁର ତଥା ଉତ୍କୃଷ୍ଟ ପାନୀୟ ଓ ଭୋଜ୍ୟ ସାମଗ୍ରୀ ଅର୍ପିତ ହେଉଥିଲା । ନଗର ଉପକଣ୍ଠରେ ପହଞ୍ଚୁଥିବା ପ୍ରତ୍ୟେକ ବହିରାଗତଙ୍କୁ ମାଲ୍ୟ, ଚନ୍ଦନ ଓ ପୁଷ୍ପରେ ଅଭ୍ୟର୍ଥନା କରା ହେଉଥିଲା । ସ୍ୱର୍ଣ୍ଣାଳଙ୍କାର ଭୂଷିତା, ସୁବେଶା, ସୁନ୍ଦରୀ ରମଣୀଗଣ ଲଳିତ ମଧୁର ସ୍ୱରରେ ମଂଗଳ ଗୀତ ଗାନ କରି ପଥିକ ମାନଙ୍କର ମାନସିକ କ୍ଳାନ୍ତି ଅପନୋଦନ କରୁଥିଲେ ।

ନଗର ଦ୍ୱାରରେ ଆମ ରଥ ପହଞ୍ଚିବା ମାତ୍ରେ ପାଞ୍ଚାଳ ନରେଶଙ୍କ ତରଫରୁ ଯୁବରାଜ ଧୃଷ୍ଟଦ୍ୟୁମ୍ନ ଆମ୍ଭମାନଙ୍କୁ ଯଥାବିଧି ସମ୍ବର୍ଦ୍ଧନା ଜଣାଇ ସ୍ୱତନ୍ତ୍ର ଅତିଥି ଭବନକୁ ନେଇଗଲେ ।

ସ୍ୱୟଂବର ତଥାପି ଦୁଇଦିନ ବାକୀ ଥାଏ । ଜତୁଗୃହ ଦାହରେ ପାଣ୍ଡବଗଣ ଭସ୍ମସାତ୍ ହେବାର ସମ୍ବାଦ ଶୁଣିବା ପରେ ଦ୍ରୁପଦ ବଡ଼ ହତୋତ୍ସାହ ହୋଇପଡ଼ିଥା'ନ୍ତି । ସ୍ୱୟଂବର ମଣ୍ଡପ ବୁଲିଦେଖିବା ପରେ ଓ ସ୍ୱୟଂବରର ସର୍ତ୍ତ ଜାଣିବା ପରେ ମୁଁ ସ୍ଥିର ନିଶ୍ଚିତ ଥିଲି ଯେ ସମଗ୍ର ଆର୍ଯ୍ୟବର୍ତ୍ତରେ ମାତ୍ର ଦୁଇ ବା ତିନି ଜଣ ଧନୁର୍ଦ୍ଧାରୀଙ୍କ ବ୍ୟତୀତ ଅନ୍ୟକେହି ଏ ପଣ ଜିଣି

ପାରିବେ ନାହିଁ । ସ୍ୱୟଂବରା କନ୍ୟାର ମତାମତ ଜାଣିବା ଆବଶ୍ୟକ । ଶୁଣିଥିଲି ସେ ପରମା ସୁନ୍ଦରୀ, ଆର୍ଯ୍ୟବର୍ତ୍ତର ସର୍ବଶ୍ରେଷ୍ଠ ବିଦୂଷୀ । ପ୍ରଜ୍ଞା ଓ ମନୀଷା ତାଙ୍କର ଅପୂର୍ବ । ମୋର ଇଛାଥିଲା ମୁଁ ହଠାତ କୌଣସି ସମ୍ବାଦ ନଦେଇ ତାଙ୍କ ପାଖେ ପହଞ୍ଚିବି ଓ ତାଙ୍କ ପ୍ରତିକ୍ରିୟା ଲକ୍ଷ୍ୟ କରିବି; କିନ୍ତୁ ଇଏ ଆଉ ଯମୁନାର ଜଳାର୍ଥିନୀ ଗୋପରମଣୀ ନୁହନ୍ତି; ଇଏ ହେଉଛନ୍ତି ରାଜନନ୍ଦିନୀ !

ଦ୍ରୁପଦ ତନୟା ତାଙ୍କର ନିଜସ୍ୱ ପୁଷ୍ପୋଦ୍ୟାନରେ ଥିଲେ ସହଚରୀ ମୀନାକ୍ଷୀ ସହ । ଦିବସର ସୂର୍ଯ୍ୟ ସେତେବେଳକୁ କ୍ଳାନ୍ତ ପଦରେ ଅସ୍ତ ଚଳ ଶିଖର ଉଦ୍ଦେଶ୍ୟରେ ଆଗେଇ ଯାଉଥିଲା ହୁଏତ । ମାତ୍ର ସେତେବେଳକୁ ଆକାଶ ବ୍ୟାପୀ ମେଘର ବର୍ଣ୍ଣାଢ଼୍ୟ ଶୋଭା ଯାତ୍ରା । ମୁଁ ଉଦ୍ୟାନର ତୋରଣ ନିକଟରେ ପହଞ୍ଚି ଦେଖିଲି ଦ୍ରୁପଦ ତନୟା ତାଙ୍କର ନୀଳୋତ୍ପଳ ଓ ରକ୍ତ-କୋକନଦ ବେଷ୍ଟିତ ଲୀଳାସରୋବରରେ ସ୍ଫଟିକ ପାବଛରେ ବସିଥିଲେ । ସ୍ତ୍ରୀଲୋକଙ୍କୁ ଲୁଚି ଲୁଚି ଦେଖିବାତ ମୋର ବହୁ ପ୍ରାଚୀନ ଅଭ୍ୟାସ ! ମୁଁ ତୋରଣ ଦ୍ୱାରରେ ଥାଇ ନିରୀକ୍ଷଣ କଲି । ତାଙ୍କର ପୃଷ୍ଠଦେଶ ମୋତେ ଦୃଷ୍ଟିଗୋଚର ହେଉଥିଲା । ରଜତ ଶୁଭ୍ରବସନ ସେ ପରିଧାନ କରିଥିଲେ । ସାଧାରଣ ରମଣୀ ତୁଲ୍ୟ ଅଳଙ୍କାରର ବାହୁଲ୍ୟ ତାଙ୍କ ଠାରେ ପରିଲକ୍ଷିତ ହେଉନଥିଲା । କିମ୍ୱା ହୁଏତ ଲଳିତ କୋମଳାଙ୍ଗୀ ଅଳଂକାରର ଭାର ସହ୍ୟ କରିପାରିବେ ନାହିଁ ବୋଲି ଏତେ ସ୍ୱଳ୍ପ ଅଳଂକାର ଧାରଣ କରିଥିଲେ ! ତାଙ୍କର ପୃଷ୍ଠଭାଗରୁ ଯାହା ସର୍ବପ୍ରଥମେ ମୋ ଦୃଷ୍ଟି ଆକର୍ଷଣ କରିଥିଲା, ତା' ହେଉଛି ତାଙ୍କର ଘନକୁଞ୍ଚିତ, ଦୀର୍ଘ, ମେଘବର୍ଣ୍ଣର ଆଜାନୁ ଲମ୍ୱିତ କେଶ ବିନ୍ୟାସ । ଗହଳ କେଶର ଅରଣ୍ୟରେ ଶ୍ୱେତ କୁନ୍ଦକଳିର ମାଳଟିଏ ମେଘଲୋକରେ ବକପଂକ୍ତିର ଭ୍ରମ ସୃଷ୍ଟି କରୁଥିଲା । ସେ ସୁଦୀର୍ଘ କେଶରାଶିକୁ ଦେଖିବାମାତ୍ରେ କେଜାଣି·କାହିଁକି ମୁଁ ମୋ ନିଜ ଅଜ୍ଞାତ ସାରରେ ଚମକି ପଡ଼ିଥିଲି । ସେ ଦୀର୍ଘ ବେଣୀଟି ସ୍ଫଟିକ ପାବଛରେ ଭୂଲୁଣ୍ଠିତ ହେଉଥିବା ଦେଖି ସହଚରୀ ମୀନାକ୍ଷୀ ତାହାକୁ ଆପଣା ପଣତରେ ଝାଡି ଦେଇ ନିଜ କୋଳଉପରେ ଅତିଯତ୍ନରେ ଥୋଇ ଦେଲା । ଦ୍ରୁପଦ ତନୟା ଗୋ ! ଆଜି ଯେଉଁ କେଶଗୁଚ୍ଛ ସୁଦ୍ଧା ତୁମର ଏଭଳି ଯତ୍ନରେ ସୁରକ୍ଷିତ । କିଏ ଜାଣେ ଆଗାମୀ କାଲି ସେ ଧୂଳି ବିଲୁଣ୍ଠିତ,ଘର୍ଷିତ ହେବ କି ନା ? ମୁଁ ନିଜକୁ ସମ୍ବରଣ କରି ପକାଇଲି । ଠିକ୍ ସେତିକିବେଳେ ମୟୂରୀଟିଏ ଡାକି ଦେଲା । ସେ ସହଚରୀକୁ କହିଲେ - 'ଦେଖୁଚୁ ମୀନାକ୍ଷୀ ? ଆଜି ସେ ଆସିବେ ବୋଲି ପ୍ରକୃତିର କି ବର୍ଣ୍ଣାଢ଼୍ୟ ଆୟୋଜନ ? ତାଙ୍କୁ ସ୍ୱାଗତ କରିବା ପାଇଁ ଆଜି ଯେମିତି ପାଞ୍ଚାଳ ନଗରୀର ପ୍ରକୃତି ସୁଦ୍ଧା ଉନ୍ମୁଖ ହୋଇ ଚାହିଁ ରହିଛି !' ମୀନାକ୍ଷୀ ହସିଦେଇ କହିଲା - 'ତୁମେ ଯେମିତି ଆଜି ତାଙ୍କ ବାଟ ଚାହିଁ ବସିଛ ମନେ ହେଉଛି ନରେଶଙ୍କର ସ୍ୱୟଂବର ଆୟୋଜନ ବୃଥା । ସେ ପହଞ୍ଚିବା ମାତ୍ରେ ତୁମେ ବୋଧହୁଏ ଏ ନୀଳୋତ୍ପଳର ମାଳାଟି ·ତାଙ୍କରି ଗଳାରେ ଲମ୍ବାଇଦେବ ? ଏଇଯେ ! ବସି ବସି ସୁନ୍ଦର ମାଳଟିଏ ଗୁନ୍ଥି ସାରିଲଣି !

- 'ଯାଃ' ! ତାଙ୍କ କଣ୍ଠର ଏଇ ପଦିକ  କଥା ଯେମିତି ସହସ୍ର ବୀଣାର ଲଳିତ ଝଂକାରରେ ଝଂକୃତ ହୋଇ ଉଠିଲା । ତାପରେ ସେ ଲେଉଟି  ଚାହିଁଲେ, ମେଘନୟନା ଦ୍ରୁପଦ ତନୟାଙ୍କର କୃଷ୍ଣଭ୍ରମର ସଦୃଶ ଚକ୍ଷୁ ଦିଓଟିରେ ବାଂଛିତ ବ୍ୟକ୍ତି ପାଇଁ ପ୍ରତୀକ୍ଷାର ମୁଦ୍ରା ସ୍ପଷ୍ଟ ଚିହ୍ନିତ ହୋଇଛି । ସେ ପ୍ରତୀକ୍ଷା ଯଦି ମୋ ପାଇଁ ହୋଇଥାଏ ତେବେ ମୋ ଜୀବନ ଧନ୍ୟଗୋ ରାଜନନ୍ଦିନୀ ! ମୁଁ ପ୍ରକୃତରେ କୃତାର୍ଥ ।

ତାଙ୍କର ସମଗ୍ର ଅଙ୍ଗଲତିକାଟି କୃଷ୍ଣ ଅପରାଜିତା ବ୍ରତତୀ ସଦୃଶ ସୁକୁମାର । ରାଜକନ୍ୟା ଶ୍ୟାମାଙ୍ଗୀ; ଅଥଚ ଏଭଳି ରୂପୋତ୍ତମା ଆର୍ଯ୍ୟାବର୍ତ୍ତରେ ଦ୍ୱିତୀୟ କେହି ନାହାନ୍ତି । ହୋମାଗ୍ନି ଓ ପୁଷ୍ପବ୍ରତତୀକୁ, ତେଜସ୍ୱୀ ସୂର୍ଯ୍ୟ ଓ ଚନ୍ଦ୍ରର ବିମଳତାକୁ, ରାତ୍ରିର ଗଭୀରତା ଓ ଦିବସର ଔଜଲ୍ୟକୁ, ଆକାଶର ଅସୀମତା ଓ ଧରଣୀର ମମତ୍ୱକୁ, ସାଗରର ଗାମ୍ଭୀର୍ଯ୍ୟ ଓ ଉର୍ମିର ଉଚ୍ଛ୍ୱାସକୁ ଯଦି କେହି ଏକତ୍ର ଦେଖିବାକୁ ଚାହାନ୍ତି ତେବେ ଯାଜ୍ଞସେନୀଙ୍କୁ ହିଁ ଦେଖିବାକୁ ପଡ଼ିବ ।

ମଧୁକଣ୍ଠୀ ପକ୍ଷୀଙ୍କର କୂଜନ, କୋକିଳର କୁହୁସ୍ୱନ, ପୁଷ୍ପର ସୁଗନ୍ଧି ସହ ପଦ୍ମଗନ୍ଧା ରାଜନନ୍ଦିନୀଙ୍କର ଅଂଗର ସୁବାସ ସମଗ୍ର ପରିବେଶକୁ  ମୋହମୁଗ୍ଧ କରିଦେଇଥାଏ । ମୁଁ ଧିର ପଦକ୍ଷେପରେ ତାଙ୍କ ପାଖରେ ପହଞ୍ଚିବା ମାତ୍ରେ ସେ ମୋତେ ଚାହିଁଲେ । ନା ନା ଭୁଲ କହିଲି, ନୀଳୋତ୍ପଳ ଦଳ ଯେପରି ସହସା ପ୍ରସ୍ଫୁଟିତ ହୋଇଗଲା ।

'ମୁଁ ଆସିଛି କୃଷ୍ଣା !!!'

'କୃଷ୍ଣା' - ଏଇ ନାମଟି ଅକସ୍ମାତ୍ ମୋ ପାଟିରୁ ବାହାରି ଗଲା । କାହିଁକି ତା'ର କାରଣ ମୁଁ ନିଜେବି ଜାଣେ ନାହିଁ । ଆବେଗ  କଂପିତ ଭାବେ ସେ ଉଠି ଠିଆହେଲେ । ବାତକଂପିତ ଏକ ଶ୍ୟାମଳ ଲତିକାଭଳି ସେ ମୋହମୟୀ ଦିଶୁଥିଲେ । ତାଙ୍କର ଆଚରଣର ଶିଷ୍ଟତା, ମାର୍ଜିତ ତଥା ଉନ୍ନତ ରୁଚି ଏବଂ ଗାମ୍ଭୀର୍ଯ୍ୟକୁ ଲକ୍ଷ୍ୟକଲା ପରେ ମନେ ହେଲା ସେ ଯଥାର୍ଥରେ ଏକ ଦୁର୍ଲଭ କନ୍ୟାରତ୍ନ !

ସେ ମୋତେ ରାଜକୀୟ ରୀତିରେ ଅଭିବାଦନ ଜଣାଇଲାପରେ ସ୍ଫଟିକ ପାବଚ୍ଛରେ ମୋତେ ବସିବାକୁ କହି ମୀନାକ୍ଷୀକୁ ନିର୍ଦ୍ଦେଶ ଦେଲେ କିଛି ଟଟକା ଦ୍ରାକ୍ଷାରସ ଆଣିବାପାଇଁ । ମୀନାକ୍ଷୀ ଯିବା ପରେ କହିଲେ - 'ଆପଣ ତେବେ ସେହି ଅଲୌକିକ କିମ୍ୱଦନ୍ତୀ ପୁରୁଷ କୃଷ୍ଣ ବାସୁଦେବ ?'

- 'ନିଃସନ୍ଦେହ ! କିନ୍ତୁ ଚିହ୍ନିଲ କିପରି ?'

କିଛି ସମୟ ମୋତେ ଅନ୍ତର୍ଭେଦୀ ଦୃଷ୍ଟିରେ ଚାହିଁବା ପରେ କହିଲେ - 'ଶିରରେ

ଶିଖିପୁଚ୍ଛ, କର୍ଣ୍ଣରେ ମକର କୁଣ୍ଡଳ, ଗଳାରେ କୌସ୍ତୁଭ ସହ ବନମାଳ, ଶ୍ୟାମଘନ ଅଂଗର ପରିଧେୟ ପୀତବସନ, ବିମ୍ବାଧରରେ ଭୁବନ ମୋହନ ହସ - ଏସବୁ ଏକାଧାରରେ ଏ ବିଶ୍ୱବ୍ରହ୍ମାଣ୍ଡରେ ଦ୍ୱିତୀୟ କାହାର ନାହିଁତ ?'

'ରାଜନନ୍ଦିନୀଙ୍କର ବଚନ ଭଂଗୀ ଅପୂର୍ବ !' ମୁଁ କହିଲି ।

ସରୋବରରେ ସନ୍ତରଣଶୀଳା ମରାଳୀର ଚଞ୍ଚୁରୁ ସ୍ୱୀୟ ମୃଣାଳ କୋମଳ ହସ୍ତରେ କୌତୁକରେ ମୃଣାଳନାଳକୁ ଓଟାରି ଆଣୁ ଆଣୁ ସେ କହିଲେ - 'ଆଗମନର ଅଭିପ୍ରାୟ କହିଲେ ନାହିଁତ ମଧୁସୂଦନ ?'

- 'ଅଭିପ୍ରାୟ ଅତ୍ୟନ୍ତ ମହତ୍ ! ବନ୍ଧୁ ଅନ୍ୱେଷଣରେ ମୁଁ ଆସିଛି ।'

'ବନ୍ଧୁ ?'

- 'ହୁଁ ! ରାଜନନ୍ଦିନୀଙ୍କ ସହ ବନ୍ଧୁତାତ ହୋଇ ସାରିଲାଣି । ପୁଣି ଯେଉଁ ଭାଗ୍ୟବାନ ରାଜନନ୍ଦିନୀଙ୍କ ପାଣିଗ୍ରହଣ କରିବେ ସିଏ ବି ତ ମୋର ବନ୍ଧୁ ହେବେ ନା ?'

ମରାଳୀଟି ମୃଣାଳଟିକୁ ହରାଇ ତା'ର ଅସନ୍ତୋଷ ପ୍ରକାଶ କରୁଥିଲା । ରାଜକୁମାରୀ କୃଷ୍ଣା ତା' ଚଞ୍ଚୁରେ ମୃଣାଳଟି ଦେଇ ଲଜ୍ୟା ନମ୍ର ଭାବେ ହସିଲେ । 'ଶୁଣିଛି ହସ୍ତିନା, ମଦ୍ର, କାଶୀ, ଚେଦି, ଅଙ୍ଗ, କଳିଙ୍ଗରାଜ୍ୟ ପ୍ରଭୃତିରୁ ବହୁ ରାଜକୁମାର ଆସିଛନ୍ତି ।'

- 'ଆଉ ଦ୍ୱାରକାଧୀଶ ?' ମୀନାକ୍ଷୀ ହାତରୁ ଦ୍ରାକ୍ଷା ପାନୀୟ ମୋତେ ବଢ଼ାଇ ଦେଉ ଦେଉ କୃଷ୍ଣା କହିଲେ । 'ନା- ନା- କୃଷ୍ଣା ! ମୁଁ ତ ସ୍ୱୟଂବର ମଣ୍ଡପକୁ ଯିବି ନାହିଁ ବୋଲି ବହୁ ଆଗରୁ ପାଞ୍ଚାଳ ନରେଶଙ୍କୁ ଜଣେଇ ଦେଇଛି । ତେବେ ଉପସ୍ଥିତ ସମସ୍ତ ରାଜକୁମାର ବୀର ନିଶ୍ଚୟ; କିନ୍ତୁ ଶ୍ରେଷ୍ଠ ଧନୁର୍ବୀତ୍ କୁନ୍ତୀ ନନ୍ଦନ ଅର୍ଜୁନକୁ ବାଦ୍ ଦେଲେ ଆଉ ମାତ୍ର ଜଣେ ।'

ରାଜକୁମାରୀ ଉତ୍ସୁକ ନେତ୍ରରେ ମୋତେ ନୀରବରେ ଚାହିଁଲେ । ଲଜ୍ୟାବଶତଃ ପ୍ରଶ୍ନ କଲେ ନାହିଁ । ମୁଁ ଏହା ଲକ୍ଷ୍ୟ କରି କହିଲି - 'ସେ ଜଣକ ଏ ପଣ ନିଶ୍ଚୟ ଜିଣି ପାରିବେ, ମାତ୍ର ରାଜନନ୍ଦିନୀ କ'ଣ ତାଙ୍କ ଗଳାରେ ବରମାଲ୍ୟ ଦେବେ ?'

କୃଷ୍ଣା ପୁଣି ମୋତେ ଟିକେ ଚାହିଁଲେ । ମୁଁ କହିଚାଲିଲି - 'ସେହି ବୀରଙ୍କର ଜନ୍ମ ପରିଚୟ ଯେ ରହସ୍ୟାଚ୍ଛନ୍ନ ! ଯଦିଓ ତାଙ୍କର ବର୍ତ୍ତମାନ ପରିଚୟ ଅଂଗାଧିପତି, କିନ୍ତୁ ଏହି ଅଂଗରାଜ୍ୟ ହସ୍ତିନାର ଯୁବରାଜ ଦୁର୍ଯ୍ୟୋଧନର ଦୟାର ଦାନ ମାତ୍ର !'

ମୁଁ ଲକ୍ଷ୍ୟ କଲି ଏତିକି ଶୁଣିବା ମାତ୍ରେ ଯାଜ୍ଞସେନୀଙ୍କର ସମଗ୍ର ଶରୀର କ୍ରୋଧ ଆଉ

ଘୃଣାରେ ଯେପରି ଜର୍ଜରିତ ହୋଇଉଠିଲା । ଅଧରୋଷ୍ଠକୁ ଦଂଶନ କରି ସେ ନିଜକୁ ସମ୍ଭରଣ କଲେ । ବାସ୍ ! ମୋ କାର୍ଯ୍ୟ ସିଦ୍ଧି ହୋଇଗଲା । ମୁଁ ତ ଏତିକି ମାତ୍ର ଲକ୍ଷ୍ୟ କରିବାକୁ ଆସିଥିଲି । ମୋ ପଥ ଯେମିତି ପରିଷ୍କାର ହୋଇଗଲା । ସମ୍ଭ୍ରାନ୍ତ ମହିଳା କୃଷ୍ଣା ତାଙ୍କର ଭାବାବେଗକୁ ଗୋପନ କରିବା ଜାଣିଥିଲେ । କୌଣସି ଅଜ୍ଞାତକୁଳଶୀଳ ବ୍ୟକ୍ତିଗଳାରେ ସେ ଯେ ବରମାଲ୍ୟ ଦେବେ ନାହିଁ ଏ ଧାରଣା ମୋର ବଦ୍ଧମୂଳ ହୋଇଗଲା ।

ଅଂଗାଧିପତି ! ତୁମେ ମୋତେ କ୍ଷମା କରିଦିଅ । ପାଞ୍ଚାଳୀ ସ୍ୱୟଂବର ମଣ୍ଡପରେ ତୁମେ ଯେଉଁ ଭଳି ଲାଂଛିତ ହୋଇଥିଲ ସେଥିପାଇଁ ପରୋକ୍ଷରେ ମୁଁ ହିଁ ଦାୟୀ ।

ଲକ୍ଷ୍ୟକଲି ପାଞ୍ଚାଳୀ ବଡ଼ ଚିନ୍ତାମଗ୍ନା ହୋଇ ଯାଇଛନ୍ତି । ବାସ୍ତବିକ ଏମିତି ଏକ ଅଜଣା ଅଶୁଣା ଲୋକଟି ଗଳାରେ ବରମାଲ୍ୟ ଲୟେଇ ଦେଇ ଆଗେଇଯିବା ଯେ କି ଦୁଷ୍କର କାର୍ଯ୍ୟ ତା' ପ୍ରତ୍ୟେକ ସ୍ୱୟଂବରା କନ୍ୟା ଜାଣିଥିଲେ । ରକ୍ତ ଗୋଲାପଦଳ ସଦୃଶ ତାଙ୍କର ଅଧର ଈଷଦ୍ ପ୍ରକଂପିତ ହେଉଥିଲା । ସେ ଯେମିତି ଅନେକ କିଛି ମୋତେ କହିବାକୁ ଚାହୁଁଥିଲେ, ଯେମିତି ମୋଠାରୁ ନୈତିକ ଅଭୟ ଆଶା କରୁଥିଲେ । ମୁଁ ବିଦାୟ ନେବାକୁ ଉଦ୍ୟତ ହେବାମାତ୍ରେ ତାଙ୍କ ଚକ୍ଷୁ ଦୁଇଟିରେ ଅନୁନୟ, ଅନୁଯୋଗ ସଂଗକୁ ସଂପୂର୍ଣ୍ଣ ଆତ୍ମସମର୍ପଣ ମୁଦ୍ରାଙ୍କ ସ୍ପଷ୍ଟ ହୋଇଉଠିଲା । ମୁଁ ବିହ୍ୱଳ ହୋଇ ଉଠିଲି । ଏତିକି ହିଁ ମୋର ପ୍ରାପ୍ତି ଏବଂ ଏଇ ସମର୍ପିତ ମାନଙ୍କ ପାଇଁ ମୋର ଅଦେୟ କିଛି ନାହିଁ । ମୁଁ ମଧ୍ୟ ସେଦିନ ମନେ ମନେ ସଂକଳ୍ପ ବଦ୍ଧ ହୋଇଥିଲି ପାଞ୍ଚାଳ ନନ୍ଦିନୀଙ୍କୁ ଚିରକାଳ ଅଭୟ ପ୍ରଦାନ କରିବା ନିମିତ୍ତ ।

କୃଷ୍ଣା ଗୋ ! ମୁଁ ସେ ପ୍ରତିଶ୍ରୁତି ପାଳନ କରିନାହିଁ କି ? ପାଣ୍ଡବ ମାନଙ୍କୁ ବରାଭୟ ଦେବା ସହିତ ବ୍ୟକ୍ତିଗତ ଭାବେ ତୁମକୁ ମୁଁ ବହୁବାର ସୁରକ୍ଷା ଦେଇ ନାହିଁକି ? ତୁମଭଳି ସ୍ୱାଭିମାନିନୀ, ତେଜସ୍ୱିନୀ ନାରୀଙ୍କୁ ସୁତପୁତ୍ରର ପାଣିଗ୍ରହଣ କରିବାର ଅପମାନରୁ ବଞ୍ଚାଇ ନାହିଁ ? ତୁମେ ଯେତେବେଳେ ଗୋଟିଏ ପାଦ ଆଗେଇ ଆସି କୃତାଞ୍ଜଳି ପୁଟରେ ମୋ ନିକଟରେ ଆତ୍ମ ସମର୍ପଣ କରିଛ ମୁଁ ଶତପଦ ଆଗେଇ ଯାଇ ତୁମକୁ ଅଭୟ ଦେଇ ନାହିଁକି ?

ମୁଁ ତ ସର୍ବଦା କହି ଆସୁଥିଲି - 'ସର୍ବଧର୍ମାନ୍ ପରିତେଜ୍ୟ ମାମେକଂ ଶରଣଂ ବ୍ରଜ' ।

ଧରଣୀଠାରୁ ଅନ୍ତରୀକ୍ଷ ଯାଏ ପ୍ରତ୍ୟେକଙ୍କୁ ତଟସ୍ଥ, ସ୍ତମ୍ଭୀଭୂତ କରିଦେଇ, ସମଗ୍ର ବିଶ୍ୱ ଇତିହାସରେ ଯେଉଁ ବିରଳ ଘଟଣାଟି ଘଟିଥିଲା । ଯେଉଁ ଜଘନ୍ୟ ଲାଂଛନାର କୁତ୍ସିତ ପରଂପରା ସୃଷ୍ଟି ହୋଇଥିଲା, ସେଦିନ ? ସେଦିନ ଯେତେବେଳେ ସମସ୍ତ ଅଭିମାନ, ଆଶା, ଭରସା ତ୍ୟାଗ କରି ତୁମେ ନିରାଶ୍ରୟାଭାବେ ମୁଦ୍ରିତ ନୟନରେ ମୋତେହିଁ ଭଜନ କରିବା ଆରମ୍ଭ କରିଥିଲ । ସେଇ ପରିପୂର୍ଣ୍ଣ କୁରୁ ଦରବାରରେ ଅଲକ୍ଷିତ ଭାବେ ମୁଁ.......ହିଁ ତ ତୁମକୁ ସୁରକ୍ଷା

ଦେଇଥିଲି ! କପଟ ଦ୍ୟୁତରେ ସର୍ବସ୍ୱ ହରାଇ ପଣ୍ଡୁନନ୍ଦନଗଣ ତୁମ ସହ ଅରଣ୍ୟବାସୀ ହୋଇଗଲେ । କପଟୀ ଦୁର୍ଯ୍ୟୋଧନ ଷୋହଳହଜାର ଶିଷ୍ୟ ସମେତ ମହାକୋପୀ ଦୁର୍ବାସା ମୁନିଙ୍କ କୋପାନଳରେ ତୁମ୍ଭମାନଙ୍କୁ ଭସ୍ମସାତ୍ କରିବାର ସମସ୍ତ ଯୋଜନା ପ୍ରସ୍ତୁତ କରିସାରିଥିଲା । ଅକ୍ଷୟ ପାତ୍ରର କୋଣରେ ଲାଗିଥିବା ତୁମର ଉଚ୍ଛିଷ୍ଟ ଶାକାନ୍ନ ଟିକକ ମୋର କ୍ଷୁଧା ଶାନ୍ତ କରିବା ସହ ସମଗ୍ର ବିଶ୍ୱବାସୀଙ୍କୁ ପରିତୁଷ୍ଟ କରିଥିଲା । ନା- ନା - ଏସବୁ ମୋ ମୁହଁରେ ଶୋଭା ପାଉନାହିଁ ପାଞ୍ଚାଳୀ ! କେବଳ ସ୍ମୃତିଚାରଣର ପର୍ଯ୍ୟାୟରେ ଏ ଘଟଣାଗୁଡ଼ିକ ଗୋଟିଏ ଗୋଟିଏ କ୍ରମ ମାତ୍ର ।

ବହୁ ପ୍ରତୀକ୍ଷିତ ପାଞ୍ଚାଳନନ୍ଦିନୀଙ୍କ ସ୍ୱୟଂବର ଦିବସ ଉପସ୍ଥିତ ହେଲା । ଅଙ୍ଗ, ବଙ୍ଗ, କଳିଙ୍ଗ, ଗାନ୍ଧାର, ଚେଦି, ମଦ୍ର, ମଗଧ, ବିଦର୍ଭ, ହସ୍ତିନା ପ୍ରଭୃତି ବହୁ ରାଜ୍ୟରୁ ରାଜପୁରୁଷଗଣ ଉପସ୍ଥିତ ହୋଇଥିଲେ । ଜତୁଗୃହ ଦାହ ପରେ ମଦୋଦ୍ଧତ ଦୁର୍ଯ୍ୟୋଧନ ହସ୍ତିନାର ଯୁବରାଜ ଭାବେ ନିଜକୁ ଘୋଷଣା କରିସାରିଥିଲା ଏବଂ ସେହି ମାନ୍ୟତା ମଧ୍ୟ ସେ ସ୍ୱୟଂବର ସଭାରେ ପ୍ରାପ୍ତ ହୋଇଥିଲା । ସ୍ୱୟଂବର ମଣ୍ଡପର ଅତି ନିକଟରେ ବହୁମୂଲ୍ୟ ମଣି ମୁକ୍ତାଖଚିତ ସ୍ୱର୍ଣ୍ଣ ସିଂହାସନରେ ଦୁର୍ଯ୍ୟୋଧନ ଓ ତାଙ୍କରି ଭଳି ସମ୍ଭ୍ରାନ୍ତ ରାଜପୁରୁଷଗଣ, ମୁଁ ଓ ଜ୍ୟେଷ୍ଠଭ୍ରାତା ବସିଥିଲୁ । ଆମ ପଛକୁ ଯେଉଁ ରଜତ ଆସନ ଗୁଡ଼ିକ ଥିଲା, ସେଥିରେ କରଦ ରାଜ୍ୟର ରାଜପୁରୁଷ ଗଣଙ୍କ ସହ ଅଂଗାଧିପତି କର୍ଣ୍ଣ ବସିଥିଲେ । ତାଙ୍କ ମୁଖରେ ମୁଦ୍ରିତ ହୋଇଥିବା ଦୃଢ଼ ଆତ୍ମପ୍ରତ୍ୟୟରୁ ହିଁ ଜଣାପଡୁଥିଲା ଏ ପଣ ସେ ନିଶ୍ଚୟ ଜିଣିବେ । ରଜତ ଆସନ ପଶ୍ଚାତରେ କାଷ୍ଠାସନ ଓ ବେତ୍ରାସନ ମାନ ଥିଲା, ଯାହାକି ଦର୍ଶକ ମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ମଣ୍ଡପର ଅପର ପାର୍ଶ୍ୱରେ ଅନୁରୂପ ମହାର୍ଘ ଆସନରେ ଯଥାବିଧି ବ୍ରାହ୍ମଣ ମାନଙ୍କୁ ବରଣକରି ବସିବାକୁ କୁହା ହେଉଥିଲା । ଗାନ୍ଧାର ଯୁବରାଜ ଶକୁନୀ ମୋତେ ଦେଖି ବିବ୍ରତ ବୋଧ କଲେ । ହସ୍ତିନାରେ କେଉଁ ଅଶୁଭ ଲଗ୍ନରେ ପାଦ ଦେଇଥିଲେ କେଜାଣି ? ତାପରଠାରୁ ହିଁ ହସ୍ତିନାର ଆକାଶ ଯେମିତି ପାଣ୍ଡବ ଓ କୌରବଙ୍କ ବିଦ୍ୱେଷର ବିଷ ବାଷ୍ପରେ ବିଷାକ୍ତ ହୋଇଯାଇଛି । ମୋତେ ଦେଖି ଦେବା ପରେ ଶକୁନୀ ବେଶ୍ ପ୍ରଗଲ୍ଭ ଭଳି କହି ଉଠିଲେ - 'ସ୍ୱୟଂବର ନାମ ମାତ୍ର । ଏ ସର୍ତ୍ତ ଅଂଗରାଜ ହିଁ ଜିଣିବେ । ସେ ଅବଶ୍ୟ ଅଙ୍ଗୀକାରବଦ୍ଧ ଯେ ଯାହା ଜୟ କରିବେ ତାହା କୁରୁପତିଙ୍କୁ ଦାନ କରିବେ । ରାଜ୍ୟ ହେଉ ବା ରଜକନ୍ୟା ହେଉ । ପାଞ୍ଚାଳ ଏଣିକି କୁରୁପତିଙ୍କର ବନ୍ଧୁ ରାଷ୍ଟ୍ର ହିଁ ହେବ ! ଏହା ଏଭଳି ଏକ ଲାଭଦାୟକ ସ୍ୱୟଂବର !'

ମୁଁ କୌତୁକ ମାଧ୍ୟମରେ ବିଦ୍ରୂପ କରିବାକୁ ଆଗେଇଆସି କହିଲି - 'ଏହା ତ ନିଃସନ୍ଦେହ ! କିନ୍ତୁ ଏଭଳି ପ୍ରାପ୍ତିରେ ଗାନ୍ଧାର ରାଜ୍ୟ ବା ଗାନ୍ଧାର ରାଜକୁମାରଙ୍କର କି ଲାଭ ?'

ସେ ଟିକିଏ ଚୁପ୍ ରହି ହଠାତ୍ କ'ଣ ମନେ ପଡ଼ିବାଭଳି କୁରୁପତି ନିକଟକୁ

ଆଗେଇଗଲେ । ମୁଁ ସଭାରେ ଉପସ୍ଥିତ ସମସ୍ତଙ୍କୁ ଲକ୍ଷ୍ୟ କରୁ କରୁ ହଠାତ୍ ବ୍ରାହ୍ମଣ ସଭା ଭିତରେ ମୋ ଚକ୍ଷୁ ଅଟକି ସ୍ଥିର ହୋଇଗଲା । ମୋର ଦକ୍ଷିଣ ନୟନ, ଦକ୍ଷିଣ ବାହୁ ଘନ ଘନ ସ୍ଫୁରିତ ହେବାକୁ ଲାଗିଲା । କାଚ ପାତ୍ରରେ କାଞ୍ଚନକୁ ଢାଙ୍କି ହୁଏ ନାହିଁ । ବ୍ରାହ୍ମଣ ସଭାର ମଧ୍ୟ ସ୍ଥଳରେ ଯେଉଁ ପାଞ୍ଚଜଣ ବ୍ରାହ୍ମଣ ଯୁବକ ବସିଥିଲେ, ସେମାନଙ୍କର ଉନ୍ନତ ଲଲାଟ, ଉନ୍ନତ ନାସା, ବଦ୍ଧ ଅଧର, ସୁପୁଷ୍ଟ ବାହୁ, ପ୍ରଶସ୍ତ ବକ୍ଷ, ସର୍ବୋପରି ସେମାନଙ୍କର ଦୃଢ଼ ମନୋବଳ ଓ ଧୈର୍ଯ୍ୟ ହିଁ କହିଦେଉଥିଲା, ରାମାନନ୍ଦୀ ଚିତାରେ ଶୋଭିତ ହୋଇ, ଉପବୀତ ଧାରଣ କରି ଭିକ୍ଷା ଝୁଲି ହାତରେ ଧରିଥିଲେ ସୁଦ୍ଧା ଏମାନଙ୍କର ପରିଚୟ ଦରିଦ୍ର ବ୍ରାହ୍ମଣ ମାତ୍ର ନୁହେଁ । ଏମାନେ ନିଶ୍ଚିତ ରାଜପୁରୁଷ । ମୁଁ ସେ ଦିଗକୁ ଜ୍ୟେଷ୍ଠଭ୍ରାତାଙ୍କର ଦୃଷ୍ଟି ଆକର୍ଷଣ କରିବା ମାତ୍ରେ ସେ କହିଲେ - 'ମୁଁ ବି ଅନେକ ବେଳୁ ତା' ଲକ୍ଷ୍ୟ କରୁଛି, କିନ୍ତୁ ବିଶ୍ୱାସ ହେଉନାହିଁ, ତୁମେ କୁହତ ସେମାନେ କିଏ ?'

ମୁଁ ଉତ୍ସାହିତ ହୋଇ କହିଲି - 'ଏଇ ଦେଖ, ସେଇ ଯେଉଁ ବଳିଷ୍ଠ ବ୍ରାହ୍ମଣ ଯୁବକ, ଯିଏ ଦୁର୍ଯ୍ୟୋଧନର ଗଦାକୁ ଏକ ଲୟରେ ଚାହିଁ ରହିଛି ତା'ମୁହଁର ନିଷ୍ପାପ ସରଳତାକୁ ଲକ୍ଷ୍ୟକର, ଭ୍ରାତା ଭୀମଙ୍କ ବ୍ୟତୀତ ସେ କିଏ ହୋଇପାରେ ? ଆହୁରି ଦେଖ ସ୍ୱୟଂବର ମଣ୍ଡପରେ ଥିବା ଧନୁକୁ ଯେଉଁ ଯୁବକ ନିବିଷ୍ଟ ଚିତ୍ତରେ ଚାହିଁ ରହିଛି । ତା'ର ବଳିଷ୍ଠ ଭୁଜ ଓ ଆୟତ୍ତ ନେତ୍ରରେ ଆତ୍ମପ୍ରକାଶ କରୁଥିବା ଦୃଢ ସଂକଳ୍ପକୁ ଲକ୍ଷ୍ୟ କର, ଧନୁର୍ବୀତ୍ ଧନଞ୍ଜୟ ବ୍ୟତୀତ ସିଏ ବା ଆଉ କିଏ ହୋଇପାରେ ?'

ଜ୍ୟେଷ୍ଠଭ୍ରାତା କ'ଣ କହି ଆସୁଥିଲେ । ମୁଁ ତାଙ୍କ ପାଟିରେ ହାତଦେଇ ବନ୍ଦ କରିଦେଲି । ଆଉକିଛି ଆଲୋଚନା କରିବା ପୂର୍ବରୁ ସ୍ୱୟଂବର ମଣ୍ଡପକୁ ପାଞ୍ଚାଳ ରାଜକୁମାର ଧୃଷ୍ଟଦ୍ୟୁମ୍ନଙ୍କ ସହ ରାଜନନ୍ଦିନୀ ପଞ୍ଚାଳୀ ବିଜେ ହେବାର ଘୋଷଣା ଶୁଣିବା ମାତ୍ରେ ସଭାସ୍ଥ ପ୍ରତ୍ୟେକ ତଟସ୍ଥ ଭାବେ ଅପଲକ ନୟନରେ ସେଇ ଦିଗକୁ ଚାହିଁ ରହିଲେ । ଅପୂର୍ବ ଦିଶୁଥିଲେ ରାଜନନ୍ଦିନୀ । ଶ୍ୟାମାଙ୍ଗୀ କୃଷ୍ଣା ମୋର ପ୍ରିୟ ପରିଧେୟ ପୀତ ବର୍ଣ୍ଣର ପଟ୍ଟବସ୍ତ୍ର ପରିଧାନ କରିଥିଲେ । ସାଧାରଣ ରମଣୀ ତୁଲ୍ୟ ଅଳଂକାରର ଭାରରେ ହୁଏତ ସେ ଭାରାକ୍ରାନ୍ତା ହେବାକୁ ଅନିଚ୍ଛା ପ୍ରକାଶ କରିଥିଲେ । ନିହାତି ଆବଶ୍ୟକୀୟ ଅଳଂକାର କେତୋଟି ମାତ୍ର ତାଙ୍କ ଅଂଗରେ ଶୋଭା ପାଉଥିଲା । ମହାର୍ଘ, ଦୁର୍ଲଭ ବଜ୍ରସାର ହୀରକର କଣ୍ଠହାର, କେୟୂର, କଙ୍କଣ, ଗଜମୁକ୍ତା ଖଚିତ ସ୍ୱର୍ଣ୍ଣ କିଙ୍କିଣୀ ଓ ଗଜମୁକ୍ତାର ବସଣୀ ଓ ଅଲକ୍ତକ ରଂଜିତ ରକ୍ତ କୋକନଦ ତୁଲ୍ୟ ପଦଯୁଗଳରେ ପ୍ରବାଳ ଖଚିତ ସ୍ୱର୍ଣ୍ଣ ପାଉଁଜ ବ୍ୟତୀତ ଅନ୍ୟ ଅଳଂକାର ସେ ପିନ୍ଧି ନଥିଲେ । ସମଗ୍ର ଆର୍ଯ୍ୟାବର୍ତ୍ତରେ ବହୁ ଚର୍ଚ୍ଚାର ବିଷୟ ଥିଲା ଯାଜ୍ଞସେନୀଙ୍କର ଘନକୁଞ୍ଚିତ ସୁଦୀର୍ଘ କେଶର ଅରଣ୍ୟ । ସୁବିନ୍ୟସ୍ତ ଜୁଡ଼ାରେ ଅମଳ କମଳ ପାଖୁଡ଼ା ସହ ଏକ ଦିବ୍ୟଗନ୍ଧଯୁକ୍ତ ନୀଳୋତ୍ପଳ

ତାଙ୍କର ବେଶବିନ୍ୟାସର ଉନ୍ନତ ରୁଚିକୁ ସର୍ବଜନ ପ୍ରଶଂସିତ କରିଥିଲା । ସେତେବେଳକୁ ମନ୍ଦ୍ରଗମ୍ଭୀର ସ୍ୱରରେ ଧୃଷ୍ଟଦ୍ୟୁମ୍ନ ସ୍ୱୟଂବରର ସର୍ତ୍ତ ଘୋଷଣାକୁ ଯେତିକି ମନ ଦେଇ ଶୁଣୁ ନଥିଲେ ତା'ଠାରୁ ଶତଗୁଣ ମନଯୋଗ ଦେଇ ପାଞ୍ଚାଳ ତନୟାଙ୍କୁ ଦେଖୁଥିଲେ । ମାତ୍ର ପ୍ରକାଶ କରିବା ବାହୁଲ୍ୟ ଯେ ଜଣକପରେ ଜଣେ ବୀର ପୁରୁଷ ସ୍ୱୟଂବର ମଣ୍ଡପକୁ ମତ୍ତଗର୍ବରେ ଆସୁଥିଲେ ଓ ବିଫଳ ମନୋରଥ ଭାବେ ଲଜ୍ଜିତ ହୋଇ ନିଜର ଆସନକୁ ଫେରିଯାଉଥିଲେ । ପାଞ୍ଚାଳୀଙ୍କ ହସ୍ତରେ ଥିବା ନୀଳପଦ୍ମର ବରମାଲ୍ୟ କ୍ରମଶଃ ମଉଳି ମଉଳି ଆସୁଥିଲା । ସ୍ୱୟଂବରା କନ୍ୟାପକ୍ଷେ ଏହା ବଡ଼ ଲଜ୍ଜ୍ୟାଜନକ । ହାତରେ ବରମାଲ୍ୟ ଧରି ଅଗଣିତ ପୁରୁଷଙ୍କ ଲୁବ୍ଧ ଦୃଷ୍ଟି ସମ୍ମୁଖରେ ବାଂଛିତ ଲଗ୍ନକୁ ପ୍ରତୀକ୍ଷା କରିବା ଭଳି ଯନ୍ତ୍ରଣା ଆଉ କିଛି ନାହିଁ । ରାଜକୁମାରୀଙ୍କ ଆନତ ଦୃଷ୍ଟି ଜଳପାତ୍ରରେ ପ୍ରତିବିମ୍ବିତ ପ୍ରତିବିମ୍ବ ଉପରେହିଁ ସ୍ଥିର ଥିଲା । ଏବଂ ତାଙ୍କର ଅନବଦ୍ୟ ସୁଷମାନ୍ୱିତା ମୁଖମଣ୍ଡଳଟି ଲଜ୍ଜ୍ୟାର ରକ୍ତାଭାରେ ରଂଜିତ ହୋଇ ଉଷାଲୋକର ଦ୍ୟୁତି ସଦୃଶ କମନୀୟ ଦିଶୁଥିଲା । ରାଜପୁରୁଷ ମାନଙ୍କର ବିଫଳତା ଦ୍ରୁପଦ ଓ ଧୃଷ୍ଟଦ୍ୟୁମ୍ନଙ୍କର ହତାଶା ବୃଦ୍ଧି କରୁଥିଲା ।

ମଧ୍ୟାହ୍ନର ପ୍ରଚଣ୍ଡ ତେଜା ସହସ୍ରାଂଶୁ ସ୍ୱୟଂବର ମଣ୍ଡପର ଠିକ୍ ଉପରିଭାଗରେ ଅଟକି ରହିଥିଲେ ଯେମିତି । ଠିକ୍ ସେତିକି ବେଳେ ଶକୁନୀ, କୁରୁପତି ଦୁର୍ଯ୍ୟୋଧନ, ଦୁଃଶାସନ ପ୍ରଭୃତି ଅଂଗାଧିପତି କର୍ଣ୍ଣଙ୍କୁ ପ୍ରୋତ୍ସାହନ ଦେଇ ସ୍ୱୟଂବର ମଣ୍ଡପକୁ ପଠାଇଦେଲେ । ମତ୍ତମାତଂଗ ସଦୃଶ ଅଂଗ ରାଜ କର୍ଣ୍ଣ ମଧ୍ୟ ଆଗେଇ ଆସୁଥିଲେ । ପ୍ରକୃତିର ସେତେବେଳକୁ ବଙ୍ଗ, କଳିଙ୍ଗ, କୋଶଳ, ବିଦର୍ଭ, ମଗଧ, କାଶୀ, ମହାରାଷ୍ଟ୍ର, ସୌରାଷ୍ଟ୍ର ପ୍ରଭୃତି ରାଜ୍ୟର ରାଜପୁରୁଷ ଗଣଙ୍କ ପକ୍ଷେ ଯାହା ସମ୍ଭବ ହୋଇପାରିନଥିଲା କର୍ଣ୍ଣଙ୍କ ପଦପାତରୁହିଁ ଜଣା ଯାଉଥିଲା ତାହା ତାଙ୍କ ପକ୍ଷେ ଆଦୌ କଷ୍ଟ ସାଧ୍ୟ ନୁହେଁ । ଜ୍ୟେଷ୍ଠଭ୍ରାତା ବଳରାମ ମୋ କାନ ପାଖରେ କହିଲେ - 'ଅଂଗାଧିପତି ବସୁସେଣ ନିଶ୍ଚିତ ବିଜୟ ଲାଭ କରିବେ ।'

ମୁଁ ଈଷତ୍ ଗମ୍ଭୀର ଭାବେ କହିଲି - 'ଅଂଗ ହସ୍ତିନାର କରଦ ରାଜ୍ୟ । ପାଞ୍ଚାଳ ନରେଶ ବା ପାଞ୍ଚାଳ ରାଜତନୟା ହୁଏତ ଏହା ସ୍ୱୀକାର କରି ନପାରନ୍ତି । ତା'ଛଡ଼ା କର୍ଣ୍ଣଙ୍କର ବଂଶ ପରିଚୟ.....'

ଜ୍ୟେଷ୍ଠଭ୍ରାତା ମୋ କଥା ମଝିରୁ ଅସହିଷ୍ଣୁଭାବେ କହି ଉଠିଲେ- 'ରାଜକୁମାରୀଙ୍କ ସହ ଅର୍ଦ୍ଧେକ ରାଜ୍ୟ ଦାନ ଦେଇପାରନ୍ତି ମହାମାନ୍ୟ ପାଞ୍ଚାଳ ନରେଶ । ରାଜ୍ୟର ଆୟତନ ବୃଦ୍ଧି କର୍ଣ୍ଣଙ୍କ ପକ୍ଷେ ଅସମ୍ଭବ ମଧ୍ୟ ନୁହେଁ ।' ମୁଁ କହିଲି - 'ମହାଦାନୀ କର୍ଣ୍ଣ କାହାରି ଦାନ ଗ୍ରହଣ କରନ୍ତି ନାହିଁ । କାରଣ ଦୁର୍ଯ୍ୟୋଧନର ଅଂଗରାଜ୍ୟ ଦାନ ସର୍ବଦା ତାଙ୍କୁ ନତମସ୍ତକ କରି ରଖିଛି, ଆଉ କାହାରି ଦାନର ଭାର ତାଙ୍କର ସହ୍ୟ ହେବ ନାହିଁ ଭ୍ରାତା !'

ସେତେବେଳକୁ ଅଂଗରାଜ ଇଷ୍ଟସ୍ମରଣ ପରେ ଗୁରୁବନ୍ଦନା ସମାପ୍ତ କରି ଧନୁରେ ଜ୍ୟା ରୋପଣ କରିସାରିଲେଣି । ସେତେ ବେଳକୁ ପାଞ୍ଚାଳ ରାଜକୁମାରୀଙ୍କ ସହଚରୀ ମୀନାକ୍ଷୀ କର୍ଣ୍ଣଙ୍କର ବୀରତ୍ୱ, ରୂପ, ଗୁଣ, ତାଙ୍କର ବହୁଚର୍ଚ୍ଚିତ ମହାନ୍ ଦାନ ପରାୟଣ ସଂପର୍କରେ ସୁବିସ୍ତୃତ ବିବରଣୀ ଦେଇ ସାରି ଯେତେବେଳେ କହିଲା - 'ଏଇଭଳି ସର୍ବଗୁଣାଳଙ୍କୃତ, ବୀରାଗ୍ରଗଣ୍ୟ, ଉଦାରଚେତା, ମହାଦାନୀ ଏହି ପୁରୁଷ ହେଉଛନ୍ତି ଅଂଗାଧିପତି ବସୁସେଣ !'

' - ନା !!!'

କର୍ଣ୍ଣ ସେତେବେଳକୁ ଧ୍ୟାନସ୍ଥ ମୁଦ୍ରାରେ ଜଳପାତ୍ରକୁ ନିରୀକ୍ଷଣ କରି ଶର ସଂଯୋଜନା କରିବାକୁ ଯାଉଥିଲେ । ବିଶ୍ୱର ଶବ୍ଦକୋଷର ଏହି ଚରମ କଠୋର ଶବ୍ଦଟି ଶୁଣିବା ମାତ୍ରେ ସେ ବଜ୍ରାହତ ଭଳି ଚମକି ଉଠିଲେ । ସମଗ୍ର ସଭାସ୍ଥଳୀ ଚମକି ଉଠିଲା । ସେହି ନିସ୍ତବ୍ଧ ବାତାବରଣକୁ ଭେଦ କରି ଏହି କଠୋର ଶବ୍ଦଟି ମୁହୂର୍ତ୍ତକରେ ସୌରମଣ୍ଡଳ ପର୍ଯ୍ୟନ୍ତ ଗତି କରି, ଧକ୍କା ଖାଇ ସ୍ୱୟଂବର ମଣ୍ଡପରେ ପ୍ରତିଧ୍ୱନିତ ହେବାକୁ ଲାଗିଲା । ମୁଁ ଉଦ୍‌ଗ୍ରୀବ, ଉତ୍‌କର୍ଣ୍ଣଭାବେ ଅପେକ୍ଷା କରି ରହିଲି ପାଞ୍ଚାଳକୁମାରୀଙ୍କ ନିଷ୍ପତ୍ତି ଶୁଣିବାପାଇଁ । ପାଞ୍ଚାଳ ଆକାଶରେ ଅଟକି ରହିଥିବା ସୂର୍ଯ୍ୟ ମ୍ଳାନ, ବିବର୍ଣ୍ଣ ଭାବେ ମନ୍ଥରଗତିରେ ଅସ୍ତାଚଳ ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କରିଦେଲେ । ପାଞ୍ଚାଳ ନନ୍ଦିନୀଙ୍କର ମୁଖମଣ୍ଡଳ ସେତେବେଳକୁ ଅବରୁଦ୍ଧ ଉତ୍ତେଜନାରେ ଅଗ୍ନିବର୍ଣ୍ଣ ଧାରଣ କରିଥିଲା । ସେ ସ୍ପଷ୍ଟ ପ୍ରଶ୍ନ କଲେ - 'ଏଇ ତେବେ ଅପରର ଦୟାଶ୍ରିତ ଅଂଗାଧିପତି ? ତାଙ୍କର ବଂଶ ପରିଚୟ ?'

ଏଇ ପ୍ରଶ୍ନର ପ୍ରତିଟି ଶବ୍ଦ ଗର୍ଭରେ ପ୍ରଚ୍ଛନ୍ନ ବ୍ୟଙ୍ଗର ତୀକ୍ଷ୍ଣତା ଆତ୍ମପ୍ରକାଶ କରୁଥିଲା ।

ବଂଶ ପରିଚୟ ! ବଂଶ ପରିଚୟ !! ବଂଶପରିଚୟ !!! ଭାଗ୍ୟ ବିଡ଼ମ୍ବିତ କର୍ଣ୍ଣଙ୍କ ଜୀବନରେ ଏଇ ବଂଶ ପରିଚୟର ଜିଜ୍ଞାସା ହିଁ ତାଙ୍କୁ ବାରମ୍ବାର ଅପମାନିତ କରିଛି । ଅଥଚ ତାଙ୍କର ପ୍ରକୃତ ମାତା ବା ପିତା କେହି ଜଣେ ହେଲେ ଆଗେଇ ଆସି ତାଙ୍କୁ ଘେରି ରହିଥିବା ଏହି ପ୍ରଶ୍ନର ଶୃଙ୍ଖଳକୁ ଭାଂଗି ପାରିନାହାନ୍ତି । ଆଶ୍ଚର୍ଯ୍ୟ !

ଏଇ ବଂଶ ପରିଚୟର ଜିଜ୍ଞାସା ତାଙ୍କୁ କିଭଳି ଅଭିଶାପର ଗହ୍ୱର ଭିତରକୁ ଠେଲିଦେଇଛି ? ବିଚରା କର୍ଣ୍ଣ ରାଜପୁତ୍ରମାନଙ୍କ ସହ ଶସ୍ତ୍ରାଭ୍ୟାସ ଓ ଶାସ୍ତ୍ରାଧ୍ୟୟନ ପାଇଁ ଯୋଗ୍ୟ ବିବେଚିତ ହୋଇନାହାନ୍ତି ଏହି ବଂଶ ପରିଚୟ ପାଇଁ । ଅବଶେଷରେ ମିଥ୍ୟାର ଆଶ୍ରୟ ନେଇ ନିଜକୁ ବ୍ରାହ୍ମଣ ବୋଲି ପରିଚୟ ଦେଇ ମହର୍ଷି ପର୍ଶୁରାମଙ୍କ ନିକଟରୁ ଶସ୍ତ୍ରାଭ୍ୟାସ କୌଶଳ ଶିକ୍ଷା କରିଛନ୍ତି । ଏକ ବିଂଶବାର ଧରଣୀକୁ ନିକ୍ଷତ୍ରୀ କରିଥିବା ମୁନି ପର୍ଶୁରାମ କ୍ଷତ୍ରିୟ ସନ୍ତାନଙ୍କୁ

ଶସ୍ତ୍ର ଶିକ୍ଷା ଦିଅନ୍ତି ନାହିଁ । ଶସ୍ତ୍ର ଶିକ୍ଷା ସମାପ୍ତ ପ୍ରାୟ । ସିଦ୍ଧିର ସେହି ପରମ ବାଂଛିତ ଲଗ୍ନରେ ସୁଦ୍ଧା 'ବଂଶ ପରିଚୟ' ନାମକ ଏହି ଉତ୍ପୀଡ଼କ ପ୍ରଶ୍ନ ।

ମଧ୍ୟାହ୍ନ ଅତିକ୍ରାନ୍ତ ହେବା ଉପରେ । କ୍ଳାନ୍ତ ଗୁରୁ ପର୍ଶୁରାମ ଶିଷ୍ୟ କର୍ଣ୍ଣଙ୍କ କ୍ରୋଡ଼ରେ ମସ୍ତକ ରଖି ନିଦ୍ରାଭିଭୂତ । ଠିକ୍ ଏହି ସମୟରେ କର୍ଣ୍ଣଙ୍କର ନିଷ୍ଠୁର ନିୟତି ସ୍ୱରୂପ ଏକ ବିଷାକ୍ତ କୀଟ ତାଙ୍କର ଜାନୁକୁ ଦଂଶନ କରି କ୍ଷତ ବିକ୍ଷତ କରିଦେଲା । ଭୀଷଣ ଯନ୍ତ୍ରଣା ସତ୍ତ୍ୱେ ଗୁରୁଦେବଙ୍କ ନିଦ୍ରାଭଂଗ ହେବା ଆଶଙ୍କାରେ କର୍ଣ୍ଣ ସମସ୍ତ ଯନ୍ତ୍ରଣାକୁ ନୀରବରେ ପାନ କଲେ । କ୍ଷତସ୍ଥାନରୁ ପ୍ରଚୁର ରକ୍ତସ୍ରାବ ହେବା ଫଳରେ ଏବଂ ଗୁରୁ ପର୍ଶୁରାମଙ୍କ ଗଣ୍ଡଦେଶ ରକ୍ତ ଲିପ୍ତ ହେବା ଫଳରେ ତାଙ୍କର ନିଦ୍ରା ଭଂଗ ହେଲା । ପ୍ରଥମେ ଗୁରୁ ଅବସ୍ଥାକୁ ଅନୁଧ୍ୟାନ କଲେ ଓ କର୍ଣ୍ଣଙ୍କ ଶୋଚନୀୟ ଦୁର୍ଦ୍ଦଶା ଦେଖିବାମାତ୍ରେ ସମ୍ବେଦନଶୀଳ ହେବା ପରିବର୍ତ୍ତେ କ୍ରୋଧାନ୍ୱିତ ହୋଇ ପ୍ରଶ୍ନ କରିଥିଲେ ସେହି ଉତ୍ପିଡ଼କ ପ୍ରଶ୍ନ 'ତୁମର ବଂଶ ପରିଚୟ ? ତୁମେ ନିଶ୍ଚୟ ବ୍ରାହ୍ମଣ ସନ୍ତାନ ନୁହଁ । ବ୍ରାହ୍ମଣ ସନ୍ତାନ ନିକଟରେ ଏପରି ସହ୍ୟଶକ୍ତି ଅସମ୍ଭବ । ତୁମେ ମିଥ୍ୟାର ଆଶ୍ରୟ ନେଇଛ ।'

ମିଥ୍ୟାବାଦୀ ବୋଲି ପ୍ରମାଣିତ ହେବା ପରେ ଗୁରୁଙ୍କ ଦ୍ୱାରା ଶିଷ୍ୟ କର୍ଣ୍ଣ ହେଲେ ଶାପଗ୍ରସ୍ତ - 'ତୁମର ଚରମ ସଂକଟ କାଳରେ ଅସ୍ତ୍ର ପ୍ରୟୋଗ ଓ ପ୍ରତିସଂହାରର ସମସ୍ତ କୌଶଳ ତୁମେ ବିସ୍ମୃତ ହେବ ।'

ସେହିଦିନ, ସେହି ମୁହୂର୍ତ୍ତରେ, ସେହି ପ୍ରଚଣ୍ଡ ଅଭିଶାପ ବାଣୀ ଉଚ୍ଚାରିତ ହେବା ମାତ୍ରେ ହିଁ କର୍ଣ୍ଣାର୍ଜ୍ଜୁନ ଦ୍ୱୈରଥ ସମରରେ କର୍ଣ୍ଣଙ୍କର ପରାଜୟ ନିଶ୍ଚିତ ବୋଲି ସ୍ଥିର କରିଦେଇଥିଲା ତଥାପି... ତଥାପି.... ଅନିଶ୍ଚୟ ଭାଗ୍ୟ ସହ ସଂଗ୍ରାମ କରିଚାଲିଥିଲେ କର୍ଣ୍ଣ ।

ପୁଣିଥରେ ଏହି 'ବଂଶ ପରିଚୟ' ର ପ୍ରଶ୍ନ ଉଠିଥିଲା ହସ୍ତିନା ରାଜକୁମାର ମାନଙ୍କର ଅସ୍ତ୍ର ପରୀକ୍ଷା ଅନୁଷ୍ଠିତ ହେଉଥିବା ପ୍ରାଙ୍ଗଣରେ, ଯେଉଁଠାରେ ଅପେକ୍ଷା କରି ରହିଥିଲେ ହସ୍ତିନା ରାଜ୍ୟର ସମସ୍ତ ରାଜ୍ୟବାସୀଙ୍କ ସହ ବହୁ ପ୍ରତିବେଶୀ ରାଷ୍ଟ୍ର ମାନଙ୍କର ରାଜପୁରୁଷ ଗଣ । ପରୀକ୍ଷାରେ ସର୍ବୋତ ଭାବେ କୃତକାର୍ଯ୍ୟ ହେବାପରେ ତୃତୀୟ ପାଣ୍ଡବ ଧନଞ୍ଜୟ ହିଁ ଆର୍ଯ୍ୟାବର୍ତ୍ତର ସର୍ବଶ୍ରେଷ୍ଠ ବୀର ବୋଲି ଉଦ୍‌ଘୋଷିତ ହେବାମାତ୍ରେ, ଏହି ଘୋଷଣାକୁ ଅସ୍ୱୀକାର କରି ସେଠାରେ ଉପସ୍ଥିତ ହୋଇଥିଲେ ଭାଗ୍ୟହତ କର୍ଣ୍ଣ, ଚାହିଁଥିଲେ ଦେବାକୁ ନିଜର ଅସ୍ତ୍ରପରୀକ୍ଷା, ଇଛା କରିଥିଲେ ପ୍ରମାଣ କରିବାକୁ ଯେ ତୃତୀୟ ପାଣ୍ଡବ ଅପ୍ରତିଦ୍ୱନ୍ଦୀ ବୀର ନୁହେଁ, ତା'ର ପ୍ରଚଣ୍ଡ ପ୍ରତିପକ୍ଷଭାବେ ଯୁଦ୍ଧରେ ଅବତୀର୍ଣ୍ଣ ହେବାପାଇଁ ଏବେବି କର୍ଣ୍ଣ ପ୍ରସ୍ତୁତ !

ସେତେବେଳେ ସେଇ ପ୍ରବଳ କୋଳାହଳ ଭିତରୁ ରାଜକୁମାର ମାନଙ୍କର ଶାସ୍ତ୍ରଗୁରୁ

କୃପାଚାର୍ଯ୍ୟଙ୍କର ଜଳଦ୍‌ଗମ୍ଭୀର ସ୍ୱରରୁ ସେଇ ଅବାଂଛନୀୟ ପ୍ରଶ୍ନଟି ବଜ୍ରତୁଲ୍ୟ କର୍ଣ୍ଣଙ୍କର ସବୁ ଆଶା ଭରସା, ଉତ୍ସାହ ଉଦ୍ଦୀପନାକୁ ଧୂଳିସାତ୍ କରିଦେଇଥିଲା ।

- 'ତୁମର ବଂଶ ପରିଚୟ ଯୁବକ ? ଏହାତ ରାଜକୁମାର ମାନଙ୍କର ଅସ୍ତ୍ରପରୀକ୍ଷା କ୍ଷେତ୍ର । ତୁମେ କେଉଁଦେଶର ରାଜା ? ବା ରାଜକୁମାର ?'

ସମବେତ ଜନତା ଭିତରୁ କେହି ଜଣେ ଶାଣିତ ବ୍ୟଙ୍ଗକରି କହି ଉଠିଥିଲା - 'ରାଜ୍ୟନାହିଁ.... ରାଜକୁମାର ? ଇଏ ହେଉଛନ୍ତି ସୂତ ପୁତ୍ର ! ସୂତ ପୁତ୍ର !! ସାରଥୀ ଅଧୀରଥଙ୍କ ପାଳିତ ପୁତ୍ର, ଯାହାର ପିତୃ ପରିଚୟ ଅଜ୍ଞାତ !'

- 'ଓ ! ଅଜ୍ଞାତ କୁଳଶୀଳ ସହ ରାଜକୁମାରମାନେ ଅସ୍ତ୍ର ପରୀକ୍ଷା ଦିଅନ୍ତି ନାହିଁ ଯୁବକ !'

କୃପାଚାର୍ଯ୍ୟଙ୍କର ମନ୍ଦ୍ରକଣ୍ଠରୁ ନିଷ୍ପତ୍ତିଟିଏ ଭାସିଆସିଥିଲା । ତାପରେ ଭ୍ରାତା ଭୀମସେନଙ୍କର କି କଟୂକ୍ତି - 'ଯାଅ ! ଯାଅ !! ସୂତପୁତ୍ର, ରଥର ଦଉଡ଼ିକୁ ଟାଣି ଧରିବ ଯାଅ, ଅସ୍ତ୍ର ଧାରଣ କରିବାପାଇଁ ତମର ଏ ବଳିଷ୍ଠ ବାହୁ ଅନୁପଯୁକ୍ତ !'

ପାଣ୍ଡବ ସମର୍ଥକ ମାନଙ୍କର କି ଆନନ୍ଦୋଲ୍ଲାସ !

କର୍ଣ୍ଣ ବିହ୍ୱଳ ଦୃଷ୍ଟିରେ ଚାହିଁ ରହିଥିଲେ କେବଳ । ସେ ଲାଂଛନାର ଗରଳକୁ ସେଦିନ ବି ନୀରବରେ ପାନ କରିଥିଲେ । କୁରୁପତି ଦୁର୍ଯ୍ୟୋଧନଙ୍କର ସମସ୍ତ ଇନ୍ଦ୍ରିୟ ଯେମିତି ସଜାଗ ହୋଇଉଠିଥିଲା । ଅର୍ଜ୍ଜୁନର ପ୍ରତିପକ୍ଷ ବୋଲି ସ୍ପର୍ଦ୍ଧା ପ୍ରକାଶ କରିବା କମ୍ ବଡ଼ କଥା ନୁହେଁ । ଏଭଳି ଏକ ବୀରକୁ ଯଦି ସ୍ୱୀୟ ପକ୍ଷଭୁକ୍ତ କରାଯାଏ ତେବେ କେବଳ ବର୍ତ୍ତମାନ ନୁହେଁ ଭବିଷ୍ୟତ ମଧ୍ୟ ନିରାପଦ ।

କୁରୁପତିଙ୍କର ସମସ୍ତ କାର୍ଯ୍ୟ ଅଭିସନ୍ଧିମୂଳକ, ଦୂରାକାଂକ୍ଷାଯୁକ୍ତ ସେଦିନ ସେଇ ମୁହୂର୍ତ୍ତରେ ଅଂଗରାଜ୍ୟର ରାଜାଭାବେ କର୍ଣ୍ଣଙ୍କୁ ଅଭିଷିକ୍ତ କରିଥିଲେ କୁରୁପତି । ଅଭିଜାତ ବର୍ଗର, ରାଜାର ସର୍ବୋପରି ଧନଞ୍ଜୟର ପ୍ରତିପକ୍ଷ ହେବାର ମର୍ଯ୍ୟାଦା ପାଇଥିଲେ କର୍ଣ୍ଣ ସେଦିନ ।

ସେଦିନ ତେବେ ସେ ଲାଂଛନାର ପରିସମାପ୍ତି ହୋଇନଥିଲା ? ସେଇ ବଂଶ ପରିଚୟର କ୍ଳେଦାକ୍ତ ପ୍ରଶ୍ନ ଏପର୍ଯ୍ୟନ୍ତ ତାଙ୍କର ପଶ୍ଚାଦ୍‌ଧାବନ କରୁଛି ?? ସେଦିନ ସିନା କୁରୁପତି ଆଗେଇ ଆସିଥିଲେ କର୍ଣ୍ଣଙ୍କୁ ଶାପମୁକ୍ତି ଦେବାକୁ; କିନ୍ତୁ ଆଜି ? ମୁଁ, ହଁ ମୁଁ ବି - ଯିଏ ବି ଏ ସମସ୍ତ ନାଟକର ସୂତ୍ରଧର ଥିଲା, ସେଇ କୃଷ୍ଣବାସୁଦେବର ଚିତ୍ତ ମଧ୍ୟ କ୍ଷଣକ ପାଇଁ ସମ୍ବେଦନଶୀଳ ହୋଇଉଠିଲା ଏଇ ହତଭାଗ୍ୟ ଚରିତ୍ରଟି ପ୍ରତି ।

କର୍ଣ୍ଣଙ୍କର ତେଜୋଦୀପ୍ତ ମୁଖମଣ୍ଡଳ ଅପମାନରେ ମସୀଲିପ୍ତ ହୋଇ ଉଠିଲା । ସେ ଦୀର୍ଘଶ୍ୱାସ ନେଇ ଗଗନ ମଣ୍ଡଳରେ ଅପସୃୟ ମାନ ସୂର୍ଯ୍ୟଙ୍କୁ ହୁଏତ ଟିକିଏ ଚାହିଁଲେ, କିମ୍ବା ଚାହିଁଲେ ନାହିଁ । ମୋର ସେମିତି ମନେ ହେଲା କେଜାଣି !

ଦ୍ରୌପଦୀଙ୍କ ନିଷ୍ପତ୍ତିକୁ ସମସ୍ତେ ଅପେକ୍ଷା କରି ରହିଲେ । ଶବ୍ଦ ସବୁ ସ୍ପଷ୍ଟ ଥିଲା, ସ୍ୱର ମଧ୍ୟ ସ୍ପଷ୍ଟ । ଆନତ ନେତ୍ର ଯୁଗଳକୁ ଉର୍ଦ୍ଧ୍ୱକୁ ଉତ୍ତୋଳନ କରି ସିଧାସଳଖ କର୍ଣ୍ଣଙ୍କ ମୁଖମଣ୍ଡଳରେ ଦୃଷ୍ଟି ନିବଦ୍ଧ କରି ପାଞ୍ଚାଳ ରାଜତନୟା ଗମ୍ଭୀର ସ୍ୱରରେ କହିଲେ - 'ନା ! ମହାଭାଗ ! ଆପଣ ହୁଏତ ଏ ପଣ ଜିଣି ପାରନ୍ତି । ମୁଁ କିନ୍ତୁ କୌଣସି ନୀଚ କୁଳୋଦ୍‌ଭବ ସୂତ ପୁତ୍ରକୁ ବରଣ କରିବିନାହିଁ !! ହୋମାଗ୍ନି ସମ୍ଭବା କନ୍ୟା କୌଣସି ସାରଥୀ ପୁତ୍ରକୁ ବରଣ କରିବା ଅସମ୍ଭବ ! ତା'ଯଦି ହୁଏ ମୁଁ ଆତ୍ମଘାତିନୀ ହେବି !!!'

ବିଷାକ୍ତ ଛୁରୀଭଳି ତୀକ୍ଷ୍ଣ ବ୍ୟଙ୍ଗ ପୂର୍ଣ୍ଣ ଧାରେ ହସ କର୍ଣ୍ଣଙ୍କ ଓଷ୍ଠ ପ୍ରାନ୍ତରେ ଉଦ୍‌ଭାସିତ ହୋଇ ମୁହୂର୍ତ୍ତକରେ ମିଳେଇ ଗଲା । ଧନୁଟିକୁ ଯଥାସ୍ଥାନରେ ସେ ଥୋଇ ଦେଇ ଯୋଡ଼ହସ୍ତରେ ବିନୀତ ଭାବେ କହିଲେ - 'ନା କଲ୍ୟାଣୀ ! ସେ ଦୁର୍ଯ୍ୟୋଗ ଆସିବାକୁ ମୁଁ ଦେବି ନାହିଁ ।'

ଧୀର ପଦକ୍ଷେପରେ ସେ ନିଜ ସ୍ଥାନକୁ ଲେଉଟିଗଲେ । କୁରୁପତିଙ୍କର କଣ୍ଠରୁ ଅସ୍ପଷ୍ଟଭାବେ ପ୍ରତିସ୍ୱରଟିଏ ଉତ୍ତୋଳିତ ହେଉଥିଲା - 'ବୀରର କ'ଣ ଜାତି ଥାଏ ? ବସୁନ୍ଧରା ବୀର ଭୋଗ୍ୟା, ଆଉ ପାଞ୍ଚାଳ ନନ୍ଦିନୀତ ଜଣେ ରକ୍ତ ମାଂସର ନାରୀ ?'

କର୍ଣ୍ଣ ଯୋଡ଼ହସ୍ତରେ କୁରୁପତିଙ୍କୁ ମଧ୍ୟ ନିଷେଧ କଲେ । ନାଟକର ଏକ କୌତୁକାବହ ଦୃଶ୍ୟ ଉପଭୋଗ କଲାଭଳି ମୁଁ ଆଗ୍ରହରେ ଅପେକ୍ଷା କରି ରହିଲି । ସଭାସୀନ ସମସ୍ତଙ୍କ ଉପରେ ଦୃଷ୍ଟି ପକଉ ପକଉ ଦେଖିଲି ବ୍ରାହ୍ମଣମାନଙ୍କ ଭିତରେ ବସିଥିବା, ସୁଗୌର ତନୁ ବିଶିଷ୍ଟ, ସର୍ବାଙ୍ଗରେ ଶ୍ୱେତ ଚନ୍ଦନ ଲିପ୍ତ ବଳିଷ୍ଠ ବପୁ ବିଶିଷ୍ଟ ଜଣେ ବ୍ରାହ୍ମଣ ହାସ୍ୟ ସମ୍ବରଣ କରିପାରୁନାହାନ୍ତି । ତାଙ୍କଠାରୁ ଅଳ୍ପଦୂରରେ ବସିଥିବା ଅତ୍ୟନ୍ତ ମାର୍ଜିତ ରୁଚି ସଂପନ୍ନ ଦୀର୍ଘକାୟ ବ୍ରାହ୍ମଣ ଜଣକ ତାଙ୍କୁ ନୀରବ ରହିବାକୁ ନିର୍ଦ୍ଦେଶ ଦେଉଛନ୍ତି । ମୁଁ ସେମାନଙ୍କ ଉପରୁ ଦୃଷ୍ଟି ଫେରାଇପାରିଲି ନାହିଁ । ଧୃଷ୍ଟଦ୍ୟୁମ୍ନ କହିଲେ - 'ରାଜକନ୍ୟା ଯେହେତୁ ସ୍ୱୟଂବରା; ତେଣୁ ଏ କ୍ଷେତ୍ରରେ ତାଙ୍କର ନିଷ୍ପତ୍ତିକୁ ସମ୍ମାନ ଦେବା ଆମ ପ୍ରତ୍ୟେକଙ୍କର ବିଧେୟ ।'

ଘଟଣାର ଆକସ୍ମିକତା ଉପଲବ୍ଧି କରି ପ୍ରତ୍ୟେକ ସ୍ତବ୍ଧ ହୋଇଯାଇଥିଲେ । ମୁଁ ବୋଧହୁଏ ମୋ ନିଜ ଅଜ୍ଞାତ ସାରରେ କରତାଳି ଦେଇ ଉଠୁଥିଲି । ଜ୍ୟେଷ୍ଠଭ୍ରାତା ବଳରାମ ମୋର ଦୁଇଟି ହାତକୁ ମୁଠେଇ ଧରି କହିଲେ - 'ଏ କ'ଣ ଅନୁଜ ମାଧବ ? ସର୍ବଦା ମୁଁ ବିଳମ୍ବରେ ବୁଝେ ବୋଲି ତୁମର ଅନୁଯୋଗ ! ମାଧ୍ୱୀର ନିଶା ମୋତେ ସିନା ଆଛନ୍ନ କରିଥାଏ,

ତୁମକୁ କେଉଁ ନିଶା ଆଛନ୍ନ କରିଛି ? ଏତିକି ବୁଝିପାରୁନାହଁ ଯେ, ଦ୍ରୁପଦ ତନୟାଙ୍କର ନିଷ୍ପତ୍ତି ଯେତେ ଶ୍ଳାଘ୍ୟ ହେଲେ ସୁଦ୍ଧା, ଆମ୍ଭେମାନେ ନିରପେକ୍ଷ, ନୀରବ ଦ୍ରଷ୍ଟା ମାତ୍ର; ଆମେ ତାଙ୍କୁ ସମର୍ଥନ କରିବାଦ୍ୱାରା ଅନ୍ୟମାନେ କ୍ଷୁର୍ଣ୍ଣ ହୋଇପାରନ୍ତି ।'

ସେ ବଡ଼ ଧିରସ୍ୱରରେ ଅନ୍ୟମାନେ ଶୁଣି ନପାରିବାଭଳି କହୁଥିଲେ । ମୁଁ ବି ଶାନ୍ତ ଭାବେ ତାଙ୍କୁ ଚାହିଁଲି ଏବଂ ମନେ ମନେ ଉଚାରଣ କଲି - 'ଉଦ୍ଦେଶ୍ୟ ସିଦ୍ଧିର ନିଶା ଯେ ମାଧ୍ୱୀର ନିଶାଠାରୁ ଆହୁରି ଅଧିକ, ତୁମକୁ ସେକଥା କେମିତି ବୁଝାଇବି ଜ୍ୟେଷ୍ଠଭ୍ରାତା ? ଦ୍ରୁପଦ ତନୟା ହିଁ ତ ମୋର ଲକ୍ଷ୍ୟ ସିଦ୍ଧିର ଏକ ଅମୋଘ ଅସ୍ତ୍ର !'

ସେତେବେଳକୁ ଅପରାହ୍ଣ ଅତିକ୍ରାନ୍ତ ହେବାଉପରେ । ସଭାସୀନ ରାଜପୁରୁଷଙ୍କ ଭିତରେ ଏକ ଗୁଞ୍ଜନ ସୃଷ୍ଟି ହୋଇଥାଏ ଯେ, ଏହି ପଣ ଜିଣିବାକୁ ଯଦି କେହି ସମର୍ଥ ନହୁଅନ୍ତି ତେବେ ଅସାମାନ୍ୟ ରୂପଲାବଣ୍ୟ ଥିବା ସତ୍ତ୍ୱେ ସ୍ୱୟଂବରର ବିଧି ଅନୁଯାୟୀ ଦ୍ରୁପଦ କୁମାରୀ ଚିର କୁମାରୀ ହିଁ ରହିବେ । ହତୋତ୍ସାହ ହୋଇ ଧୃଷ୍ଟଦ୍ୟୁମ୍ନ ଏଥର ଘୋଷଣା କଲେ - 'ମୁଁ ଦୁଃଖିତ ଯେ, ଆର୍ଯ୍ୟାବର୍ତ୍ତରେ ଜଣେବି କେହି କ୍ଷତ୍ରିୟ ଏହି ପଣ ଜିଣିବାକୁ ସମର୍ଥ ହେଲେ ନାହିଁ । ବର୍ତ୍ତମାନ ମୁଁ ଆହ୍ୱାନ କରୁଛି ଜାତିବର୍ଣ୍ଣ ନିର୍ବିଶେଷରେ କେହି ବୀର ପୁରୁଷ ଯଦି ଏ ସର୍ତ୍ତ ଜିଣିବାରେ ସମର୍ଥ ହୁଅନ୍ତି ତେବେ ତାଙ୍କ ହସ୍ତରେ ମୁଁ ମୋର ଭଗିନୀକୁ ସଂପ୍ରଦାନ କରିବି ।'

ଦୁର୍ଯ୍ୟୋଧନ ପ୍ରତିବାଦ କରି କହିବାକୁ ଯାଉଥିଲେ - 'ଭିନ୍ନ ଜାତି, ଭିନ୍ନ ବର୍ଣ୍ଣ ପକ୍ଷେ ଯଦି ପଣ ଜିଣିବାରେ ବାଧାନାହିଁ ତେବେ ସଖା କର୍ଣ୍ଣଙ୍କ ବେଳକୁ ଦ୍ରୁପଦ ତନୟା ଏଭଳି ନିଷ୍ପତ୍ତି ନେଇ ନିଜର ଦୂର ଦୃଷ୍ଟି ହୀନତା ଓ ନିର୍ବୋଧତାର ପରିଚୟ ଦେଲେ କାହିଁକି ?'

ସେ ଆଉ କ'ଣ କହିଥା'ନ୍ତେ, ମାତ୍ର କର୍ଣ୍ଣ ତାଙ୍କୁ ବାରଣ କରି କହିଲେ - 'ସଖା ! ଉଚ୍ଚକୁଳରେ ଜନ୍ମ ନେବା ଦୈବର ଅଧୀନ, ମାତ୍ର ପୁରୁଷକାର ମୋର ଅଧୀନ । ଏହି ପୁରୁଷକାରର ପରିଚୟ ଦିନେ ନା ଦିନେ ପାଞ୍ଚାଳୀ ପାଇବେ ।'

ଧୃଷ୍ଟଦ୍ୟୁମ୍ନଙ୍କର ଘୋଷଣା ଶୁଣିବା ପରେ ବ୍ରାହ୍ମଣ ସଭାରେ ପ୍ରବଳ କୋଳାହଳ ସୃଷ୍ଟି ହେଲା । ବ୍ରାହ୍ମଣମାନେ ହିଁ ବିରୁଦ୍ଧାଚରଣ କରିବା ଆରମ୍ଭ କରିଦେଲେ । ନବତନ ମେଘମାଳ କାନ୍ତି, ଆକର୍ଣ୍ଣ ବିସ୍ତୃତ ଚକ୍ଷୁ, ଉନ୍ନତନାସା, ଦୀର୍ଘ ଲଲାଟ, ଶାଳପ୍ରାଂଶୁସମ ବଳିଷ୍ଠଭୁଜ ଓ ପ୍ରଶସ୍ତ ବକ୍ଷ ବିଶିଷ୍ଟ ଯେଉଁ ବ୍ରାହ୍ମଣ ଯୁବକ ଉଠି ଠିଆ ହୋଇଛନ୍ତି । ତାଙ୍କୁ ପ୍ରୋତ୍ସାହନ ଦେବା ପରିବର୍ତ୍ତେ କେତେଜଣ ବ୍ରାହ୍ମଣ ବିରୁଦ୍ଧାଚରଣ କରି କହୁଥିଲେ -'ଏଭଳି ଆସ୍ପର୍ଦ୍ଧା ଆଦୌ ଉଚିତ୍ ନୁହେଁ ବ୍ରାହ୍ମଣ ! ଆମେ ଦରିଦ୍ର, ରାଜକନ୍ୟା ବିବାହ ଉତ୍ସବରେ ଯୋଗଦେଇ ଉତ୍ତମୋତ୍ତମ ଭୋଜନ ସହ ପ୍ରଚୁର ଦକ୍ଷିଣା ଗ୍ରହଣ କରି ନବଦଂପତିଙ୍କୁ ଆଶୀର୍ବାଦ ଦେବା ଆମର କର୍ତ୍ତବ୍ୟ ।

ଯେଉଁଠାରେ ରାଜା ମହାରାଜାମାନେ ଅଯୋଗ୍ୟ ପ୍ରମାଣିତ ହେଲେ ସେଠାରେ ତୁମେ କିଏ ? ଶାସ୍ତ୍ର ହିଁ ଆମର ଭୂଷଣ, ଶସ୍ତ୍ର ଧାରଣ ନୁହେଁ । ତୁମେ ଅଯଥା ସ୍ୱୟଂବର ମଣ୍ଡପକୁ ଯାଇ ଅକୃତକାର୍ଯ୍ୟ ହୋଇ ସମଗ୍ର ବ୍ରାହ୍ମଣ ସମାଜକୁ ଉପହସିତ କରନାହିଁ । ଏଭଳି ପ୍ରଲୋଭନର ଶିକାର ହେବା ବ୍ରାହ୍ମଣ ପକ୍ଷେ ଆଦୌ ଶୋଭନୀୟ ନୁହେଁ ।'

ସେ କିନ୍ତୁ କାହାରି କଥା ଶୁଣିଲେ ନାହିଁ । ସିଂହ ସଦୃଶ ସ୍ୱୟଂବର ମଣ୍ଡପକୁ ଆଗେଇ ଯାଉ ଯାଉ ମୁହୂର୍ତ୍ତକ ପାଇଁ ପାଞ୍ଚାଳ ତନୟାଙ୍କ ସହ ଚାରିଚକ୍ଷୁର ମିଳନ ହୋଇଗଲା । ତାଙ୍କର ଅଧର ପ୍ରାନ୍ତରେ ଆନନ୍ଦରସ ସିଞ୍ଚିତ ସଲଜ୍ଜ ହସ ଧ‌ାରେ ଉଦ୍‌ଭାସିତ ହୋଇ ମିଳେଇ ଗଲା ।

ବ୍ରାହ୍ମଣ ଯୁବକ ଇଷ୍ଟ ସ୍ମରଣ, ଗୁରୁବନ୍ଦନା ଶେଷକରି ଅଭ୍ୟସ୍ତ ହସ୍ତରେ ଜ୍ୟା ରୋପଣ କଲେ ଓ ପାଞ୍ଚୋଟି ସୁତୀକ୍ଷ୍ଣ ନାରାଚ ଧନୁ ଓ ଗୁଣ ମଧ୍ୟରେ ରଖି ଜଳ ପାତ୍ରରେ ପ୍ରତିବିମ୍ବିତ ବିଘୂର୍ଣ୍ଣିତ ମତ୍ସ୍ୟର ବାମ ଚକ୍ଷୁକୁ ମୁହୂର୍ତ୍ତକ ମଧ୍ୟରେ ଅନାୟାସରେ ବିଦ୍ଧ କଲେ । ଆଗେଇ ଆସିଲେ ବରନାରୀ ପାଞ୍ଚାଳୀ ଜୟମାଲ୍ୟ ଧରି । ମତ୍ତ କୋଳାହଳରେ ସଭାସ୍ଥଳ ପରିପୂର୍ଣ୍ଣ ହୋଇଯାଇଥାଏ । ମୁଁ ଆନନ୍ଦୋତ୍ଫୁଲ୍ଲ ଭାବେ ବିଜୟୀ ବୀରର ପଶ୍ଚାତରେ ଠିଆ ହୋଇଥାଏ ତାଙ୍କୁ ଅଭିନନ୍ଦନ ଜଣାଇବା ପାଇଁ । ସେତିକିବେଳେ ଅତି ଧୀର ଓ ଗମ୍ଭୀର ସ୍ୱରରେ ପାଞ୍ଚାଳ ତନୟାଙ୍କୁ ବୀରପୁରୁଷ ପ୍ରଶ୍ନ କଲେ - 'ବଂଶ ପରିଚୟ ଜିଜ୍ଞାସା କରିବ ନାହିଁ ଭଦ୍ରେ ? ମୁଁ ପଣ୍ଡୁସୁତ, ତୃତୀୟ ପାଣ୍ଡବ, ପୃଥାନନ୍ଦନ ପାର୍ଥ !'

ଦ୍ରୌପଦୀ ତ ଲଜ୍ଜ୍ୟାରେ ତଳକୁ ମୁହଁ ପୋତି ଦେଲେ । ମୁଁ ପାର୍ଥଙ୍କୁ ଆଲିଙ୍ଗନାବଦ୍ଧ କରି ପକାଇଲି ।

ସେତେବେଳକୁ ବ୍ରାହ୍ମଣ ଓ କ୍ଷତ୍ରିୟଗଣ ଦୁଇଟି ଦଳରେ ବିଭକ୍ତ ହୋଇସାରିଥିଲେ । କ୍ଷଣପୂର୍ବର ସ୍ୱୟଂବର ମଣ୍ଡପ ରଣଭୂମିରେ ପରିଣତ ହୋଇଗଲା । ଦ୍ୱିତୀୟ ପାଣ୍ଡବ ଭୀମସେନ ଗଦା ଅଭାବରେ ପଥଧାରରେ ବୃକ୍ଷକୁ ଉତ୍ପାଟନ କରି ପ୍ରଚଣ୍ଡ ବିକ୍ରମରେ ସମବେତ କ୍ଷତ୍ରିୟଙ୍କୁ ଆକ୍ରମଣ କରିବାକୁ ଉଦ୍ୟତ ହୋଇଥିଲେ, କାରଣ କ୍ଷତ୍ରିୟଗଣ ଏ ଦରିଦ୍ର ବ୍ରାହ୍ମଣଠାରୁ ବଳପୂର୍ବକ ବରନାରୀ ପାଞ୍ଚାଳୀଙ୍କୁ ଅପହରଣ କରିବାର ଧମକ ଦେଇଥିଲେ । ଅଗତ୍ୟା ମୋତେହିଁ ଉତ୍ତ୍ୟକ୍ତ ଜନତାଙ୍କୁ ଶାନ୍ତ କରିବା ଉଦ୍ଦେଶ୍ୟରେ କହିବାକୁ ପଡ଼ିଥିଲା - 'ଆପଣ ମାନେ ତଥାପି ଜାଣିପାରୁନାହାନ୍ତି କିପରି ? ଯିଏ ଏହି ଲକ୍ଷ୍ୟ ଭେଦନରେ ସମର୍ଥ ହେଲେ ସେ ଆର୍ଯ୍ୟାବର୍ତ୍ତର ସର୍ବଶ୍ରେଷ୍ଠ ଧନୁର୍ଦ୍ଧର ଧନଞ୍ଜୟ !'

କର୍ଣ୍ଣଙ୍କର ପ୍ରତିକ୍ରିୟା ଲକ୍ଷ୍ୟ କରିବା ପାଇଁ 'ସର୍ବଶ୍ରେଷ୍ଠ ଧନୁର୍ଦ୍ଧର' ଶବ୍ଦ ଉପରେ ମୁଁ ଟିକିଏ ଅଧିକ ଗୁରୁତ୍ୱ ଆରୋପ କରିଥିଲି । କର୍ଣ୍ଣ କିନ୍ତୁ ସେଇଭଳି ଉଦାସୀନ ଭାବେ ବସି

ରହିଥିଲେ, ହୁଏତ ଭାବୁଥିଲେ ବାରମ୍ବାର ଅର୍ଜୁନ ହିଁ ତାଙ୍କର ଇପ୍‌ସିତ ବସ୍ତୁକୁ ତାଙ୍କ ଠାରୁ ଅପହରଣ କରିନେଇ ତାଙ୍କ ଅପମାନର କାରଣ ହେଉଛି !

ସଭା ଭିତରୁ ସଂଶୟାତ୍ମକ ପ୍ରଶ୍ନ କେତୋଟି ଭାସି ଆସୁଥିଲା - 'କିନ୍ତୁ ଜତୁ ଗୃହ ଦାହ ପରେ ସୁଦ୍ଧା ସେମାନେ କ'ଣ ଜୀବିତ ?'

ମୁଁ କହିଲି - 'ହଁ ବନ୍ଧୁଗଣ ! ବିଧାତାର ବରଦାନ ନିକଟରେ ଆଉସବୁ ତୁଚ୍ଛ । ବିଧାତାର ବିଚାର ନିକଟରେ ମନୁଷ୍ୟର ବିଚାର ବିମର୍ଶ, ଷଡ଼ଯନ୍ତ୍ର, ଆଶା - ଆକାଙ୍‌କ୍ଷା ସବୁ ଅର୍ଥହୀନ ! ଆମ୍ଭେମାନେ ବରଂ ଖୁସିହୋଇ ବିଧାତା ନିକଟରେ କୃତଜ୍ଞତା ଜଣାଇବା ଉଚିତ ଯେ, ପଞ୍ଚବୀରପୁତ୍ରଙ୍କ ସମେତ ବୀରପ୍ରସବିନୀ ଜନନୀ କୁନ୍ତୀ ଜୀବିତା । ଆପଣମାନଙ୍କର ସନ୍ଦେହର ଅବକାଶ ଆଉ ଅଛିକି ? ଚାହିଁ ଦେଖନ୍ତୁ ବ୍ରାହ୍ମଣର ଛଦ୍ମବେଶରେ ଥିଲେବି ଉଦାରଚେତା ଧର୍ମରାଜ ଯୁଧିଷ୍ଠିରଙ୍କୁ ଆପଣମାନେ ଚିହ୍ନି ପାରୁନାହାନ୍ତି ? ପ୍ରଚଣ୍ଡ ବିକ୍ରମରେ ଯେଉଁ ବଳିଷ୍ଠ ବ୍ୟକ୍ତି ଉତ୍ପାଟିତ ଦ୍ରୁମ ହସ୍ତରେ ଯୁଦ୍ଧ ପାଇଁ ପ୍ରସ୍ତୁତ ସେହି ଚନ୍ଦନଲିପ୍ତ ପ୍ରକାଣ୍ଡ କାୟ ଗୌରତନୁ ଭୀମସେନଙ୍କ ବ୍ୟତୀତ ଆଉ କାହାର ? ଧନଞ୍ଜୟ ଯିଏ ଲକ୍ଷ୍ୟ ଭେଦନ କ୍ଷମ, ସେ ନିଜେହିଁ ତାଙ୍କର ପରିଚୟ । ତାଙ୍କର ପରିଚୟ ଦେବା ଅନାବଶ୍ୟକ । ଆହୁରି ଚାହିଁ ଦେଖନ୍ତୁ ଧର୍ମରାଜଙ୍କ ଅନୁଗତ ଭାବେ ଯେଉଁ ଅତ୍ୟନ୍ତ ରୂପବାନ ଯୁବକ ଠିଆ ହୋଇଛନ୍ତି ତାଙ୍କର ମାର୍ଜିତ ରୁଚି ଜଣେଇ ଦେଉ ନାହିଁକି ସେ ମାଦ୍ରୀନନ୍ଦନ ନକୁଳ ବୋଲି ? ଆଉ ଭୀମସେନଙ୍କୁ ଯେଉଁ ଧୈର୍ଯ୍ୟଶାଳୀ ଯୁବକ ଜଣକ ଯୁଦ୍ଧରୁ ନିବୃତ କରୁଛନ୍ତି ତାଙ୍କର ଧୀରତା ଓ ଗାମ୍ଭୀର୍ଯ୍ୟ ଜଣାଇ ଦେଉନାହିଁକି ସେ କନିଷ୍ଠ ପାଣ୍ଡବ ସହଦେବ ବୋଲି ?'

ଏସବୁ କହିବା ପରେ ମୁଁ ଲକ୍ଷ୍ୟକଲି ସେହି ସଭା ଭିତରୁ କେଜାଣି କେତେବେଳେ ଗାନ୍ଧାରୀ ନନ୍ଦନ ଦୁର୍ଯ୍ୟୋଧନ, ଦୁଃଶାସନ ସେମାନଙ୍କ ମାତୁଳ ଶକୁନୀ ଓ କୁରୁପତିଙ୍କ ସଖା କର୍ଣ୍ଣ ଅଦୃଶ୍ୟ ହୋଇଯାଇଥିଲେ । ଏଥର ମୁଁ ଆଉ ହାସ୍ୟ ସମ୍ବରଣ କରିପାରିଲି ନାହିଁ ।

ଜ୍ୟେଷ୍ଠଭ୍ରାତା ବଳରାମ ଏଥିମଧ୍ୟରେ ଧର୍ମରାଜଙ୍କ ସହ ବାକ୍ୟାଳାପ କରୁଥିଲେ । କିଛି ସମୟପରେ ମୋ ନିକଟକୁ ଆସି କହିଲେ-

'ମାଧବ ! ତୁମ ଅନୁମାନହିଁ ଅଭ୍ରାନ୍ତ । ଯୁଧିଷ୍ଠିରଙ୍କଠାରୁ ମୁଁ ସମସ୍ତ ତଥ୍ୟ ସଂଗ୍ରହ କରିସାରିଲିଣି । ଦ୍ୱାରକା ନଗରୀରେ ଆମର ଗୁପ୍ତଚର ଯେଉଁ ସମ୍ବାଦ ଆଣିଥିଲା ତାହା ସତ୍ୟ । ଆସୁରୀ ସ୍ୱଭାବ ସଂପନ୍ନ କିମ୍ମୀରକ ଦୈତ୍ୟର ଭ୍ରାତା ବକରାକ୍ଷସ ପ୍ରକୃତରେ ନିହତ ହେଇଛି । ଭୀମକର୍ମା ଭୀମଙ୍କ ଦ୍ୱାରାହିଁ ଏ କାର୍ଯ୍ୟ ସଂପନ୍ନ ହୋଇଛି । ବକ ରାକ୍ଷସର ମୃତ୍ୟୁ ପରେ ଏକଚକ୍ରାନଗରୀର ଅଧିବାସୀଗଣ ନିରାପଦରେ ନିଶ୍ଚିନ୍ତ ଜୀବନ ଯାପନ କରୁଛନ୍ତି । ଆମର

ପିତୃସ୍ୱସା ଜନନୀ କୁନ୍ତୀ ଭାଗ୍ୟ ତାଡ଼ିତ ଭାବେ ଜତୁଗୃହର ନିଷ୍ଠୁର ଷଡ଼ଯନ୍ତ୍ର ଗହ୍ୱରରୁ ମୁକ୍ତି ପାଇ ପଞ୍ଚପୁତ୍ରଙ୍କ ସହ ଦୀନ ହୀନ ଭାବେ କାଳାତିପାତ କରୁଛନ୍ତି ଏକ କୁମ୍ଭାରର କୁରାଳଶାଳରେ । ଏବେ ଦ୍ରୌପଦୀଙ୍କ ସହ ପଞ୍ଚଭ୍ରାତା ସେହିଠାକୁ ଯାତ୍ରା କରିବେ ।'

ମୁଁ ଦ୍ରୌପଦୀଙ୍କୁ ଟିକିଏ ଚାହିଁଦେଇ ହସି ହସି କହିଲି -'କ'ଣ ଆଉ କରାଯାଏ ଭ୍ରାତା ? ବରନାରୀ ଦ୍ରୌପଦୀ ଯଦି ସ୍ୱଇଚ୍ଛାରେ ଦାରିଦ୍ର୍ୟ ବରଣ କରିବାକୁ ଚାହାନ୍ତି, ସମସ୍ତଙ୍କ ବଂଶ ପରିଚୟ ଜିଜ୍ଞାସା କରି ସବୁ ଧନୀ ସମ୍ଭ୍ରାନ୍ତଙ୍କୁ ଉପେକ୍ଷା କରି ଖୋଜି ଖୋଜି ମୋର ଦରିଦ୍ର ସଖାଟି ଗଳାରେ ବରମାଲ୍ୟ ଦିଅନ୍ତି ତେବେ ମୁଁ ନାଚାର !'

●

## ।। ପଞ୍ଚଦଶ ଗ୍ରନ୍ଥି ମୋଚନ ।।

ମୋ ଜୀବନର ଏକ ବୃହତ୍ତର ଅଂଶ ପାଣ୍ଡବ ପଞ୍ଚଭ୍ରାତା ଓ ତାଙ୍କର ପ୍ରେୟସୀ, ଶ୍ରେୟସୀ ପାଞ୍ଚାଳୀ ତଥା ସମଗ୍ର ପାଣ୍ଡବ ପରିବାରର ସଦସ୍ୟଙ୍କ ସହ ସଂପୃକ୍ତ । ଦ୍ୱାରକା ନଗରୀରୁ କୁରୁକ୍ଷେତ୍ର ଯାଏ ମୋର ଯେଉଁ ଜୀବନ ପରିକ୍ରମା, ଜୀବନ ଲିପି ସେଥିରେ ଏମିତି କୌଣସି ପୃଷ୍ଠା ନାହିଁ ଯେଉଁଥିରେ କି ପାଣ୍ଡବ ପରିବାରର ମୁଦ୍ରାଙ୍କ ନାହିଁ । ସେମାନଙ୍କୁ ବାଦ୍‌ଦେଇ ମୋର ଆତ୍ମସମୀକ୍ଷା ସଂପୂର୍ଣ୍ଣ ହେବା ଅସମ୍ଭବ । କାହିଁକି କେଜାଣି କହିପାରିବି ନାହିଁ ସେମାନଙ୍କ ସୁଖରେ ହେଉ ବା ଦୁଃଖରେ ହେଉ ମୁଁ ମୋ ଅଂଶ ପାଇବାକୁ ପହଞ୍ଚି ଯାଉଥିଲି । ହୁଏତ ସେମାନଙ୍କର ସହଜାତ ବିନୟ ଓ ଆତ୍ମ ସମର୍ପଣ ଭାବ ହିଁ ମୋତେ ଆକୃଷ୍ଟ କରିଥିଲା ସେମାନଙ୍କ ସହ ଏକାତ୍ମ ହେବା ପାଇଁ ।

ଦ୍ରୁପଦଙ୍କର ବହୁଦିନରୁ ଅଭିଳାଷ ଥିଲା ଅର୍ଜ୍ଜୁନଙ୍କୁ ଜାମାତା ରୂପରେ ପାଇବା ପାଇଁ । ବହୁଦୂର ଅତୀତରେ ଆଚାର୍ଯ୍ୟ ଦ୍ରୋଣଙ୍କ ଗୁରୁଦକ୍ଷିଣା ଦେବାକୁ ଯାଇ ଗୁରୁଙ୍କ ନିର୍ଦ୍ଦେଶରେ ଯେଉଁଦିନୁ ଅର୍ଜ୍ଜୁନ ବଳବୀର୍ଯ୍ୟଶାଳୀ ଦ୍ରୁପଦଙ୍କୁ ବନ୍ଦୀଭାବରେ ଦ୍ରୋଣଙ୍କ ସମ୍ମୁଖରେ ଠିଆ କରାଇଥିଲେ ସେଇଦିନୁ । ସେ ଆଶା ତାଙ୍କର ଫଳବତୀ ହେବା ଦେଖି ତାଙ୍କର ଆନନ୍ଦର ସୀମା ନଥିଲା । କେବଳ ରାଜ୍ୟଭ୍ରଷ୍ଟ ପାଣ୍ଡବଙ୍କର ଆର୍ଥିକ ସଂଗତି ସଂପର୍କରେ ନିଶ୍ଚିନ୍ତ ହେବାପାଇଁ ସେ ଧୃଷ୍ଟଧ୍ୟୁମ୍ନଙ୍କ ସହ ଆଉ ଦୁଇଜଣ ବିଶ୍ୱସ୍ତ ଅନୁଚର ଦେଇ ପାଣ୍ଡବଙ୍କ ଅଜ୍ଞାତସାରରେ ଏମାନଙ୍କୁ ଏକଚକ୍ରା ନଗରୀ ପଠାଇଥିଲେ । ଦ୍ରୁପଦଙ୍କ ସନିର୍ବନ୍ଧ ଅନୁରୋଧକ୍ରମେ ମୁଁ ଓ ଜ୍ୟେଷ୍ଠ ଭ୍ରାତା କିଛିଦିନ କାମ୍ପିଲ୍ୟ ନଗରରେ ଅବସ୍ଥାନ କରିବା ପାଇଁ ମନସ୍ଥ କରିଥିଲୁ । ସେଦିନ ଆମେ ବିଶ୍ରାମ କରୁଥିବା ସମୟରେ ଦ୍ରୁପଦଙ୍କର ଏକ ବିଶ୍ୱସ୍ତ ସେବକ ଜଣାଇଲାଯେ, ରାଜା ଦ୍ରୁପଦ ବିପନ୍ନ, ଆପଣଙ୍କୁ ତତ୍‌କ୍ଷଣାତ୍ ତାଙ୍କ ନିକଟକୁ ଯିବାକୁ ପଡ଼ିବ ।

ଆମ୍ଭେ ଦୁଇଭାଇ ପାଞ୍ଚାଳ ନୃପତିଙ୍କ ମନ୍ତ୍ରଣା କକ୍ଷରେ ପହଞ୍ଚି ଲକ୍ଷ୍ୟ କଲୁ ରାଜା ଦ୍ରୁପଦ ଅତ୍ୟନ୍ତ ମ୍ରିୟମାଣ ହୋଇ ବସି ରହିଛନ୍ତି । ଯୁବରାଜ ଧୃଷ୍ଟଦ୍ୟୁମ୍ନ ଓ ରାଜକୁମାର ଶିଖଣ୍ଡୀ ମଧ୍ୟ ତତୋଽଧିକ ଚିନ୍ତାମଗ୍ନ । ଚିନ୍ତାର ହେତୁ ହେଉଛି ଆର୍ଯ୍ୟାବର୍ତ୍ତରେ ଏଭଳି ଅଭାବିତ ଘଟଣା ଘଟିନାହିଁ, ଭବିଷ୍ୟତରେ ମଧ୍ୟ ଘଟିବ କି ନାହିଁ ସନ୍ଦେହ । ଦ୍ରୁପଦ ତନୟା ବର୍ତ୍ତମାନ ଧର୍ମ ସଂକଟରେ । କେବଳ ଆର୍ଯ୍ୟ ସଂସ୍କୃତି କାହିଁକି ଆର୍ଯ୍ୟେତର ସଂସ୍କୃତିରେ ମଧ୍ୟ ଏ ପ୍ରକାର ଅଶ୍ରୁତପୂର୍ବ ବ୍ୟବସ୍ଥା ନାହିଁ । ଜଣେ ପୁରୁଷ ଏକ କାଳୀନ ବହୁ ପତ୍ନୀ ଗ୍ରହଣ କରିପାରେ; ମାତ୍ର ଜଣେ ଆର୍ଯ୍ୟରମଣୀ ଏକକାଳୀନ ବହୁ ବଲ୍ଲଭା ହେବା ଅର୍ଥ ନିଜକୁ ଖଣ୍ଡ ଖଣ୍ଡ କରି ବିଭାଜନ କରିବା ।

ଧୃଷ୍ଟଦ୍ୟୁମ୍ନଙ୍କର ଏ ଯୁକ୍ତି ଅକାଟ୍ୟ; କିନ୍ତୁ ସଂପୂର୍ଣ୍ଣ ବିବରଣୀ ନଶୁଣି ମୁଁ କୌଣସି ମତାମତ ଦେଇ ପାରିଲି ନାହିଁ । ଯାହା ଶୁଣିଲି ତାହା ଏଇଭଳି । ପଣ୍ଡୁନନ୍ଦନଗଣ ପାଞ୍ଚାଳ ତନୟାଙ୍କ ସହ ଏକଚକ୍ରା ନଗରୀର କୁମ୍ଭାର ଶାଳରେ ପହଞ୍ଚିବା ବେଳକୁ ମଧ୍ୟରାତ୍ରି । ଜନନୀ କୁନ୍ତୀ ଭିକ୍ଷାଶୀ ପୁତ୍ର ମାନଙ୍କୁ ଅପେକ୍ଷା କରି କରି କ୍ଲାନ୍ତିରେ ଶୟନ କରିଥିଲେ । ଏହି ସମୟରେ ପଞ୍ଚଭ୍ରାତା ପହଞ୍ଚିଲେ ଓ 'ମା ! ଆଜି ଆମେ ଅପୂର୍ବ ଦ୍ରବ୍ୟ ଲାଭ କରିଛୁ !'.

ଅପୂର୍ବ ଦ୍ରବ୍ୟ ଲାଭର ସୂଚନାପାଇ ସେ ଦ୍ରବ୍ୟକୁ ନଦେଖି କୁନ୍ତୀ କହିଦେଲେ - 'ଯେଉଁ ଦ୍ରବ୍ୟ ଆଣିଛ ତାକୁ ପାଞ୍ଚଭାଇ ମିଶି ଏକତ୍ର ଭୋଗ କର ।'

ଏ କଥା ଶୁଣୁ ଶୁଣୁ ମୁଁ ମନେ ମନେ ଭାବିଲି, ଯା' ହେଉ ଜନନୀ କୁନ୍ତୀ ମୋର ଦୁରୁହ କାର୍ଯ୍ୟଭାରକୁ ଅର୍ଦ୍ଧେକ ଲାଘବ କରିଦେଇଛନ୍ତି ।'

ରାଜା ଦ୍ରୁପଦ କହିଲେ - 'ତୁମେ କୁହ ମାଧବ ! ପଣ୍ଡୁସୁତ ଭଳି ବୀର ପୁରୁଷର ହୃଦୟ ଯଥେଷ୍ଟ ଉଦାର ହେବା ଉଚିତ । ସେ ରକ୍ତମାଂସର ନାରୀକୁ ଦ୍ରବ୍ୟ ବୋଲି ଅଭିହିତ କଲେ କିପରି ? ପୁଣି କୁନ୍ତୀଙ୍କ ଭଳି ବିଦୂଷୀ ସମାନ ଭାଗରେ 'ଭୋଗ' କରିବାକୁ ନିର୍ଦ୍ଦେଶ ଦେଲେ କିପରି ?'

ମୁଁ ତତ୍‌କ୍ଷଣାତ୍ କୁନ୍ତୀଙ୍କ ପକ୍ଷ ସମର୍ଥନ କରି କହିଲି - 'ଜନନୀ କୁନ୍ତୀ ତ ଜାଣିନଥିଲେ ଏହି 'ଅପୂର୍ବ ଦ୍ରବ୍ୟଟି' 'ଅମୂଲ୍ୟ ନାରୀରତ୍ନ' ବୋଲି ? ଆଉ ଯୁଧିଷ୍ଠିର ? ସେ ହୁଏତ ନିଜର ଉଚ୍ଛ୍ୱସିତ ଆନନ୍ଦକୁ ଦମନ କରିନପାରି ଏପରି ଶବ୍ଦଟିଏ ପ୍ରୟୋଗ କରିଛନ୍ତି !'

ରାଜା ଦ୍ରୁପଦ କହିଲେ - 'ବର୍ତ୍ତମାନ କନ୍ୟା ମୋର ଧର୍ମ ସଂକଟରେ ମାଧବ ! ଆର୍ଯ୍ୟା କୁନ୍ତୀ ଧର୍ମରାଜଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ଏଭଳି କାର୍ଯ୍ୟାନୁଷ୍ଠାନ ଗୃହୀତ ହେଉ, ଯାହା ଫଳରେ ମାତାର ବଚନ ଅନ୍ୟଥା ହେବନାହିଁ ଓ ଦ୍ରୌପଦୀର ସତୀ ଧର୍ମ ସୁରକ୍ଷିତ ରହିବ । ଏ ସ୍ଥଳରେ ଉପାୟ କ'ଣ ?'

-'ପଞ୍ଚପତି ବରଣ ?'

ମୁଁ ନିତାନ୍ତ ସହଜ ଭଂଗୀରେ କହିଲି । ପ୍ରତ୍ୟେକ ବିସ୍ମୟରେ ବିମୂଢ଼ ହୋଇ ମୋତେ ଚାହିଁଲେ । ମୁଁ ବେଶ୍ ସ୍ୱାଭାବିକ ଭଂଗୀରେ ପୁଣି କହିଲି - 'ଏହା ହିଁ ବିଧି ନିର୍ଦ୍ଦିଷ୍ଟ । ଆପଣମାନେ କେବଳ ଭାଂଗିବା କଥା ଚିନ୍ତା କରୁଛନ୍ତି, ଗଢ଼ିବା କଥା ତ ଚିନ୍ତା କରୁନାହାନ୍ତି ? କାହିଁକି ଭାବୁଛନ୍ତି ଦ୍ରୌପଦୀ ପଞ୍ଚପତି ବରଣ କରିବା ଦ୍ୱାରା ପାଞ୍ଚଭାଗରେ ବିଭକ୍ତ ହୋଇଯିବେ ବୋଲି ? କାହିଁକି ଭାବୁନାହାନ୍ତି ଯେ ବରଂ ଅବିଭକ୍ତ ଭାବରେ ଦ୍ରୌପଦୀ ହିଁ ପଞ୍ଚପତିଙ୍କୁ ଏକ ଓ ଅଭିନ୍ନ କରି ରଖିପାରିବେ ଏବଂ ଏହାଦ୍ୱାରା ବିଧାତା ପୁରୁଷଙ୍କର ଏକ ମହତ୍ ଉଦ୍ଦେଶ୍ୟ ସିଦ୍ଧି ହୋଇପାରେ !'

ଦ୍ରୁପଦ ତଥାପି ନିଶ୍ଚିନ୍ତ ହୋଇପାରିଲେ ନାହିଁ । ସଶଙ୍କିତ ଭାବେ ମୋତେ ପ୍ରଶ୍ନ କଲେ -'କିନ୍ତୁ.... ଦ୍ରୌପଦୀ ସଂପର୍କରେ ଯାଜ ମୁନିଙ୍କର ଭବିଷ୍ୟତ ବାଣୀ ଯଦି ସତ୍ୟ ହୁଏ ତେବେ ଏହି ବିବାହ ହିଁ ହୁଏତ ହେବ ସଂଘର୍ଷ ଓ ରକ୍ତପାତର କାରଣ ! ଅର୍ଜୁନଙ୍କୁ ଜାମାତା ରୂପେ ପାଇବା ମୋର ବହୁ ବାଂଛିତ ସ୍ୱପ୍ନ ଥିଲା । କିନ୍ତୁ ସେ ସ୍ୱପ୍ନ ଯେ ଏଭଳି ବିଡ଼ମ୍ବିତ ହୋଇଯିବ ! ଅବଶ୍ୟ ପାଣ୍ଡବ ପଞ୍ଚଭ୍ରାତାଙ୍କୁ ଜାମାତା ରୂପେ ପାଇଲେ ମୋ ଜୀବନ ଧନ୍ୟ ହେବ; ମାତ୍ର ଅନଳ ସମ୍ଭବା ଦ୍ରୌପଦୀର ଜାତକ ଗଣନା କରି ଯାଜ ମୁନି କହିଥିଲେ ପାଞ୍ଚାଳୀ ନିମିତ୍ତ ପାଞ୍ଚାଳ ନରେଶଙ୍କୁ ଭବିଷ୍ୟତ ପୃଥିବୀ ସ୍ମରଣ କରିବ ଏବଂ ଏକଥା ବି କହିଥିଲେ ଯେ ପାଞ୍ଚାଳୀ ଭବିଷ୍ୟତରେ ଭୟଙ୍କର ସଂଘର୍ଷ ଓ ରକ୍ତପାତର କାରଣ ହେବ । ତେବେ ଯଦି ଏଇ ଗୋଟିଏ ନାରୀ ରତ୍ନ ପାଇଁ ପାଞ୍ଚଭାଇଙ୍କ ଭିତରେ ସଂଘର୍ଷ ଓ ରକ୍ତପାତର ସୂତ୍ରପାତ ହୁଏ !'

ମୁଁ ହସି ଉଠିଲି ଓ ହଠାତ୍ ଗମ୍ଭୀର ବି ହୋଇଗଲି । ତାପରେ ମୋ ସ୍ୱର ମଧ୍ୟ ମୋତେ ବହୁ ଦୂରାଗତ ଅପରିଚିତର ସ୍ୱରଭଳି ଅଚିହ୍ନା ଶୁଭିଲା । ମୁଁ ରହସ୍ୟମୟ ଭାବେ କହିଉଠିଲି - 'ମନେ ରଖନ୍ତୁ ରାଜା ଦ୍ରୁପଦ ! ନିକଟ ଭବିଷ୍ୟତରେ ପୃଥିବୀର ଗର୍ଭ ଗହ୍ୱର ପର୍ଯ୍ୟନ୍ତ ପାପର, ଅଧର୍ମର, ବ୍ୟଭିଚାରର ଚେର ବ୍ୟାପିଯିବ, ସେ ଚେରର ମୂଳୋତ୍ପାଟନ କରିବାକୁ ହେଲେ ମାଟିରେ ଜଳନୁହେଁ ରାଜନ୍ ! ରକ୍ତ..... ରକ୍ତ ସିଞ୍ଚନ କରି ସେ ମାଟିକୁ ନରମ କରିବାକୁ ପଡ଼ିବ । ଆଉ ସେ ରକ୍ତ ଏତେ ଅଳ୍ପ ନୁହେଁ ଯେ ପୃଥିବୀର ରକ୍ତ ତୃଷ୍ଣାକୁ ଆପଣଙ୍କ ଜାମାତା ଗଣ ମେଣ୍ଟେଇ ପାରିବେ ! ଅନେକ ରକ୍ତ ...... ଯାହା ଅବଶେଷରେ ଉତାଳ ଲହରୀ ମାଳିନୀ ଏକ ଖରସ୍ରୋତା ନଦୀ ହୋଇ ବହିଯାଇ ପାରିବ ! ମୁନିଙ୍କ ଭବିଷ୍ୟତ ବାଣୀ ଅଭ୍ରାନ୍ତ ହେଇପାରେ, ଆପଣଙ୍କ କନ୍ୟା ଭୟଙ୍କର ଯୁଦ୍ଧର ହେତୁ ହୋଇପାରନ୍ତି ମାତ୍ର ଜାମାତା ଗଣ ଅମୋଘ ପାଞ୍ଚୋଟି ଆୟୁଧ ମାତ୍ର ଯାହାର ଧର୍ମ କେବଳ ଲକ୍ଷ୍ୟ ଭେଦନ କରିବା ।'

ସେମାନଙ୍କର ଚକ୍ଷୁ ବିସ୍ଫାରିତ ହୋଇଯାଇଥିଲା । ମୋର ଏ ଦୁର୍ବୋଧ୍ୟ ବକ୍ତବ୍ୟକୁ

ସେମାନେ ହୁଏତ ଅନୁଶୀଳନ କରି ପାରୁନଥିଲେ । ମୁଁ ପରିବେଶର ଗାମ୍ଭୀର୍ଯ୍ୟକୁ ସହଜ କରିବା ପାଇଁ ଜ୍ୟେଷ୍ଠଭ୍ରାତାଙ୍କୁ କହିଲି - 'ଭ୍ରାତା ! ସାରଥୀକୁ ନିର୍ଦ୍ଦେଶ ଦଉଛି । ଆମକୁ ସାଂଗେ ସାଂଗେ ପାଣ୍ଡବଙ୍କ ଆବାସସ୍ଥଳୀକୁ ଯିବାକୁ ପଡ଼ିବ । ପ୍ରକୃତରେ ପାଣ୍ଡବ ପ୍ରେୟସୀ ବଡ଼ ବିପନ୍ନ ।'

'ସଖୀ ! ପ୍ରିୟସଖୀ !!'

ମୋର ଏ ଡାକ ଶୁଣିବା ମାତ୍ରେ ପାଞ୍ଚଭାଇଙ୍କ ସହ ପାଞ୍ଚାଳୀ ଓ ଜନନୀ କୁନ୍ତୀ ମଧ୍ୟ ବାହାରକୁ ଆସିଲେ ।

ସଖା ଅର୍ଜ୍ଜୁନଙ୍କର ପ୍ରିୟ ବଲ୍ଲଭୀଙ୍କ ପାଇଁ 'ସଖୀ' ବ୍ୟତୀତ ଅନ୍ୟ କୌଣସି ସର୍ବୋତ୍ତମ ସମ୍ବୋଧନ ନଥିଲା । ପରିବାରର ପ୍ରତ୍ୟେକ ସଦସ୍ୟଙ୍କ ସହ କୁଶଳ ଜିଜ୍ଞାସାର ଆଦାନ ପ୍ରଦାନ ପରେ ମୁଁ ଦ୍ରୌପଦୀଙ୍କୁ ପ୍ରଶ୍ନ କଲି - 'ସଖୀ ! ବଡ଼ ଚିନ୍ତାମଗ୍ନ ଦିଶୁଛ ?'

ଦୀର୍ଘ ଆୟତ ଚକ୍ଷୁଦ୍ୱଇଟିକୁ ମୋ ଉପରେ ନିବଦ୍ଧ ରଖି ସେ ଆବେଗ ସ୍ପନ୍ଦିତ ସ୍ୱରରେ କହିଲେ - 'ସଖୀ  ବୋଲି ସମ୍ବୋଧନ କରିଛ । ଏଇ ଅନ୍ତରଂଗ ସଂପର୍କଟିକୁ ଜୀବନସାରା ମନେ ରଖି ପାରିବତ କେଶବ ? ଲୋକେ ତ କହନ୍ତି ମଝି ନଇରେ ବୁଡ଼େଇ ମାରିବାହିଁ ତୁମର ପ୍ରକୃତି !'

- 'ଲୋକେ ମୋର ବହୁତ ଦୁର୍ନାମ କରନ୍ତି । ସେ କଥାରେ କାନ ଦିଅ ନାହିଁ ।'

ମୁଁ କ୍ରମଶଃ କୌତୁକ ପ୍ରବଣ ହୋଇ ଉଠୁଥିଲି ।

ସେ ବ୍ୟାକୁଳ ଭାବେ ହଠାତ୍ କହି ଉଠିଲେ -'ମୁଁ କ'ଣ କରିବି ? ମୁଁ କ'ଣ କରିବି କେଶବ ? ଏମିତି ଧର୍ମ ସଂକଟ କୌଣସି ନାରୀ ଜୀବନରେ ଆସିନାହିଁ ।'

- 'ତୁମେ ନିଜେତ ଏହା ଚାହିଁ ଥିଲ !'

- 'ମୁଁ ? ମୁଁ ଚାହିଁଥିଲି ପଞ୍ଚପତି ? କେବେ ?'

ତାଙ୍କର ବିସ୍ମୟର ଅବଧି ରହିଲା ନାହିଁ ।

ମୁଁ କିନ୍ତୁ ବେଶ୍ ସହଜ ଭଂଗୀରେ କହିଲି - 'ଗତ ଜନ୍ମରେ । ଦେଖ ସଖୀ ଦେବ ଦେବ ମହାଦେବତ  ସଂସାର ବୈରାଗୀ । ତୁମେ ତାଙ୍କୁହିଁ ତପସ୍ୟା କରିଥିଲ ଗତଜନ୍ମରେ ଯେ ଧାର୍ମିକ, ବଳବୀର୍ଯ୍ୟଶାଳୀ, ଶୀଳଯୁକ୍ତ, ରୂପବାନ୍, ନୀତିଜ୍ଞ ପତି ପ୍ରାପ୍ତି ନିମିତ୍ତ । ତୁମ କଣ୍ଠରୁ ଏହି ପାଞ୍ଚୋଟି ଶବ୍ଦ ପାଞ୍ଚଥର ଉଚ୍ଚାରିତ ହୋଇଥିଲା ଓ ସଂସାର ଉଦାସୀ ଶିବ ମଧ୍ୟ ପାଞ୍ଚଥର 'ତଥାସ୍ତୁ' ବୋଲି କହିଥିଲେ । ଏଇଭଳି ପତି ପ୍ରାପ୍ତି ନିମିତ୍ତ କଠୋର ତପଶ୍ଚର୍ଯ୍ୟା ସହ ଗତ ଜନ୍ମରେ ତୁମେ କେତେ ଯେ ରୋଦନ କରିଛ ! ଜାଣ ସଖୀ ! ଗଂଗା ସ୍ରୋତରେ ଭାସିଯାଉଥିବା

ଏକ ସ୍ୱର୍ଣ୍ଣକମଳର ଉତ୍ପତ୍ତିର ଉତ୍ସଜାଣିବା ପାଇଁ ଇନ୍ଦ୍ର ଗଂଗାର ଉତ୍ପତ୍ତି ସ୍ଥଳରେ ପହଞ୍ଚି ଦେଖିଲେ ଗଂଗାତୀରରେ ଜଣେ ଅଗ୍ନିପ୍ରଭା କାନ୍ତି ଯୁକ୍ତା ରୂପସୀ ରମଣୀ ବିଳାପରତ ଅବସ୍ଥାରେ ସ୍ନାନ କରୁଛି ଓ ତା'ର ପ୍ରତିଟି ଅଶ୍ରୁବିନ୍ଦୁ ସ୍ୱର୍ଣ୍ଣକମଳରେ ରୁପାନ୍ତରିତ ହୋଇଯାଉଛି । ଇନ୍ଦ୍ର ସେ ନାରୀର ପରିଚୟ ଜିଜ୍ଞାସା କରିବାରୁ ସେ ନାରୀ ଇନ୍ଦ୍ରଙ୍କୁ ହିମାଳୟର ଶିଖର ଦେଶକୁ ନେଇଗଲା । ତୁଷାରବୃତ ହିମାଳୟର ଶିଖର ଦେଶର ଏକ ସୁରମ୍ୟ ସ୍ଥାନରେ ଅତ୍ୟନ୍ତ ରୂପବାନ୍ ଜଣେ ତରୁଣ ଏକ ଆଲୋକ ସାମାନ୍ୟ ରୂପସୀ ତରୁଣୀ ସହ ପଶା ଖେଳରେ ମଗ୍ନ ଥିଲେ । ଇନ୍ଦ୍ର ସେମାନଙ୍କୁ ପରିଚୟ ଜିଜ୍ଞାସା କଲେ ସୁଦ୍ଧା କୌଣସି ଉତ୍ତର ନପାଇ କୋପାବିଷ୍ଟ ହୋଇ ତ୍ରିଭୁବନର ଅଧୀଶ୍ୱର ବୋଲି ନିଜକୁ ଘୋଷଣା କଲେ । ଇନ୍ଦ୍ରଙ୍କର ଏ ଧୃଷ୍ଟତାରେ ତରୁଣ କୋପାନ୍ୱିତ ହୋଇ ନିଜର ପରିଚୟ ଦେଇ କହିଲେ - ରେ ମୂଢ଼ ! ମୁଁ ତ୍ରିଭୁବନର ଅଧୀଶ୍ୱର ମହାଦେବ, ଆଉ ଏ ତରୁଣୀ ଜଗନ୍ମାତା ପାର୍ବତୀ । ମହାଦେବଙ୍କ କୋପଦୃଷ୍ଟି ପଡ଼ିବାମାତ୍ରେ ଇନ୍ଦ୍ର ପ୍ରସ୍ତରରେ ରୁପାନ୍ତରିତ ହୋଇଗଲେ । ଜଣ ଜଣ କରି ପଞ୍ଚଇନ୍ଦ୍ରଙ୍କର ସମଦଶା ପ୍ରାପ୍ତ ହେଲା । ଏହି ପଞ୍ଚଇନ୍ଦ୍ର ଶାପମୁକ୍ତି ନିମିତ୍ତ ମହାଦେବଙ୍କୁ ପ୍ରାର୍ଥନା କରିବାରୁ ପରଜନ୍ମରେ କୁନ୍ତୀ ଓ ମାଦ୍ରୀଙ୍କର ନନ୍ଦନଭାବେ ଜନ୍ମ ଗ୍ରହଣ କରିଛନ୍ତି ଆଉ ସେହି ରୋରୁଦ୍ୟମାନା ଯୁବତୀ ଜଣକ ତୁମେ ନିଜେ ପାଞ୍ଚାଳୀ ! ତୁମେ ଯେଉଁଭଳି ପତି କାମନା କରିଥିଲ ଗୋଟିଏ ମଣିଷ ଦେହରେ ଏକାଧାରରେ ଏଇ ପାଞ୍ଚୋଟି ଗୁଣ ରହିବା ଅସମ୍ଭବ ।'

ମୋ କଥା ଶେଷ ହେବା ବେଳକୁ ତାଙ୍କ ଚକ୍ଷୁ ଦୁଇଟି ବିସ୍ଫାରିତ ହୋଇଯାଇଥିଲା ଓ ଶ୍ରାବଣର ବର୍ଷୁକୀ ଆକାଶ ଭଳି ଜଳ ଭାରରେ ନଇଁ ଯାଇଥିଲା । ପରିହାସ ଚପଳ କଣ୍ଠରେ ମୁଁ କହିଉଠିଲି - 'ମୋର ସଖା ପାର୍ଥ ବଡ଼ ନିରୀହ ସଖୀ ! ତୁମର ଯେଉଁ ଅସାଧାରଣ ବୁଦ୍ଧି ମତ୍ତା, ଯେଉଁ ଅପୂର୍ବ ବିଦ୍ୱତ୍ତା ପୁଣି ସର୍ବୋପରି ତୁମର ଯେଉଁ ଅସାମାନ୍ୟ ରୂପ ଲାବଣ୍ୟ ସଖା ପାର୍ଥ ଯଦି ଏକାକୀ ବନ୍ଧା ପଡ଼ିଯାଆନ୍ତି ତେବେ ତ ପାଣ୍ଡବଙ୍କ ଭେଳା ବୁଡ଼ିବା ସହ ମୋ ଭେଳାବି ବୁଡ଼ିଯିବ ! ତୁମେ ଯଦି ତୁମର ଏଇ କଟାକ୍ଷ ବାଣରେ ସଖାଙ୍କୁ ବନ୍ଦୀ କରି ରଖିଥା'ନ୍ତ ତେବେତ ପାଣ୍ଡବଗଣ ରାଜ୍ୟହୀନ ହୋଇ ସର୍ବସ୍ୱାନ୍ତ ହୋଇଯିବେ ଆଉ ମୁଁ ତ ବାଧ୍ୟ ହୋଇ ସନ୍ୟାସ ଗ୍ରହଣ କରିବି ।'

ମୋର କହିବାର ଭଂଗୀରେ ପାଞ୍ଚଭାଇଙ୍କ ସହ ପାଞ୍ଚାଳୀ ମଧ୍ୟ ହସି ଉଠିଲେ ।

ମୋର ସମସ୍ତ ସମସ୍ୟାକୁ ସମାଧାନ କରିବାପାଇଁ ଦେବର୍ଷି ଆକସ୍ମିକ ଭାବେ ସେଠାରେ ବର ବଧୂଙ୍କୁ ଆଶୀର୍ବାଦ କରିବାପାଇଁ ପହଞ୍ଚିଗଲେ । ସେଇମାନଙ୍କ ଉପସ୍ଥିତି ଓ ପ୍ରରୋଚନାରେ ସ୍ଥିର ହେଲା ଯେ ଏଇ ଧର୍ମସଂକଟରୁ ଉଦ୍ଧାର ପାଇବା ପାଇଁ ଏକମାତ୍ର ଉପାୟ ହେଉଛି ପାଞ୍ଚାଳ ତନୟା ପଞ୍ଚଭ୍ରାତାଙ୍କ ସହ ଦାଂପତ୍ୟ ଜୀବନ ଅତିବାହିତ କରିବାର ଏକ ସ୍ୱତନ୍ତ୍ର ବିଧାନ ରହିବ । ତା'ହେଉଛି ପଞ୍ଚଭ୍ରାତା ପ୍ରତ୍ୟେକ ଏକବର୍ଷ ଲେଖାଏ ପାଞ୍ଚାଳୀଙ୍କ ସହ ଦାଂପତ୍ୟ

ଜିବନ ଅତିବାହିତ କରିବେ; ଅର୍ଥାତ ପ୍ରତି ଚାରିବର୍ଷରେ ଥରେ ଏକବର୍ଷ ପାଇଁ ଜଣକ ନିକଟରେ ଦ୍ରୌପଦୀ ପତ୍ନୀଧର୍ମ ପାଳନ କରିବେ । ଆହୁରି ଏକ ଚରମ ସର୍ତ୍ତ ହେଲା ଗୋଟିଏ ଭାଇ ସହ ଦାଂପତ୍ୟ ଜୀବନ ଯାତ୍ରା ନିର୍ବାହ କରୁଥିବାର ସମୟରେ ଯଦି ଅନ୍ୟ ଭ୍ରାତା ସେ କକ୍ଷରେ ଭ୍ରମବଶତଃ ପ୍ରବେଶ କରନ୍ତି ତେବେ ସର୍ତ୍ତ ଭଂଗର ଅପରାଧରେ ସେଇ ଭ୍ରାତା ଦ୍ୱାଦଶ ବର୍ଷ ପାଇଁ ନିର୍ବାସିତ ହେବ ।

ଏହି ସର୍ତ୍ତରେ ପ୍ରତ୍ୟେକ ସହମତ ହୋଇଥିଲେ । ଅଶ୍ରୁପୂରିତ ଲୋଚନରେ ପାଞ୍ଚାଳୀ କହିଥିଲେ - 'ତଥାପି.... ତୁମେହିଁ ମୋର ଚିରକାଳର ଦିଗ୍‌ଦର୍ଶକ କେଶବ ! ମୋର ସମସ୍ତ ସୁଖ ଦୁଃଖ ମୁଁ ତୁମରି ପାଦତଳେ ସମର୍ପଣ କରୁଛି । ମୋର ଶୁଦ୍ଧ ଅନ୍ତଃକରଣ ସହ ମୁଁ ମୋ ନିଜକୁ ମଧ୍ୟ ସମର୍ପଣ କରୁଛି ।'

ମୁଁ ବେଶ୍ ପ୍ରଗଳ୍‌ଭ ହୋଇ କହି ଉଠିଲି - 'ସର୍ବନାଶ ! ଦେଖ ସଖା ! ତୁମ୍ଭମାନଙ୍କର ପ୍ରେୟସୀ ସ୍ୱେଚ୍ଛାକୃତ ଭାବେ ମୋ ନିକଟରେ ନିଜକୁ ଅର୍ପଣ କରିଛନ୍ତି । ମୋର କିଛି ଦୋଷ ନାହିଁ । ମୋ ବଂଶୀ ସ୍ୱନ ଶୁଣି ଗୋପରମଣୀ ଗଣ କୁଳଶୀଳ ମାନ ସମ୍ଭ୍ରମ ତ୍ୟାଗ କରି ନୈଶ୍ୟଭିସାରରେ ଯମୁନାତୀରକୁ ଧାଇଁ ଆସୁଥିଲେ କିନ୍ତୁ ଦୋଷ ହେଉଥିଲା ମୋର । ତୁମେ କୃଷ୍ଣା ସେଇଭଳି ଅଭାବିତ ଭାବେ ମୋତେ ହୃଦୟ ଅର୍ପଣ କରୁଛ, ପରେ ତୁମ ପତିଗଣ, ହୁଏତ ସମଗ୍ର ଜଗତ ମୋ ଉପରେ ଦୋଷାରୋପ କରିବ ।'

ଏକଥା ମୁଁହରେ କହୁଥିଲେ ବି ମନରେ ଶତବାର ଉଚ୍ଚାରଣ କରୁଥିଲି - କୃଷ୍ଣା ଗୋ ! ତୁମେ ମୋ ଜୀବନର ଏକ ସ୍ୱତନ୍ତ୍ର ଅଧ୍ୟାୟ । ରାଧା ପ୍ରେମ ମୋତେ ଯେତିକି ବଶୀଭୂତ କରେ, କୃଷ୍ଣାର ଆର୍ତ୍ତି ମୋତେ ସେତିକି ତନ୍ମୟ କରିଦିଏ, ତତ୍ପର କରିଦିଏ । ଆର୍ତ୍ତି ସମୟରେ 'ଅହଂ' କୁ ସଂପୂର୍ଣ୍ଣ ବିସର୍ଜନ ଦେଇ ପୂର୍ଣ୍ଣ ଆତ୍ମସମର୍ପଣ କରିଥା'ନ୍ତି ଦ୍ରୁପଦ ତନୟା ।

ପରେ ମୁଁ ଶୁଣିଛି କୁରୁପିତାମହ ଭୀଷ୍ମ, ମହାମନା ବିଦୁର, ଆଚାର୍ଯ୍ୟ କୃପ ଓ ଆଚାର୍ଯ୍ୟ ଦ୍ରୋଣ, ସର୍ବୋପରି ଜନନୀ ଗାନ୍ଧାରୀଙ୍କ ପ୍ରରୋଚନାରେ ହସ୍ତିନା ନରେଶ, ଅନ୍ଧ ବାତ୍ସଲ୍ୟର ପ୍ରତୀକ ଧୃତରାଷ୍ଟ୍ର ଓ କୁରୁପତି ଦୁର୍ଯ୍ୟୋଧନ ଅବଶେଷରେ ସମ୍ମତ ହୋଇଥିଲେ । ବିଶେଷତଃ ଯେତେବେଳେ ବିଦୁର ସ୍ପଷ୍ଟ କହିଥିଲେ - 'ରାଜନ୍ ! ଲାକ୍ଷା ଗୃହ ଦାହର ଷଡ଼ଯନ୍ତ୍ର ବ୍ୟର୍ଥ ହୋଇଛି । ସୁତରାଂ ଆଉ ଅଧିକ କାଳବିଳମ୍ବ ନକରି ପ୍ରଜାଙ୍କ ମୁଖରକ୍ଷା କରିବାର ଉଦ୍ଦେଶ୍ୟ ଥିଲେ ପଞ୍ଚଭ୍ରାତା, ଆର୍ଯ୍ୟା କୁନ୍ତୀ ଓ ବରନାରୀ ପାଞ୍ଚାଳୀଙ୍କୁ ହସ୍ତିନାକୁ ନିମନ୍ତ୍ରଣ କରି ଆଣନ୍ତୁ ।'

ସତ୍ୟ ପ୍ରକଟିତ ହୋଇଯିବା ଭୟରେ କୁରୁପତି ଦୁର୍ଯ୍ୟୋଧନ ପ୍ରଭୃତି ଆଉ ଅଧିକ ତର୍କ

ବିତର୍କ କରିବାକୁ ସାହସ କରିନଥିଲେ । ସୁତରାଂ ଆର୍ଯ୍ୟା କୁନ୍ତୀଙ୍କ ସହ ତାଙ୍କର ପଞ୍ଚପୁତ୍ର ଓ ବଧୂଦ୍ରୌପଦୀଙ୍କୁ ହସ୍ତିନାରେ ଭବ୍ୟ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । କିନ୍ତୁ ଗୋଟିଏ ଖଡ଼୍‌ଗ କୋଷରେ ଏକକାଳୀନ ଦୁଇଟି ତୀକ୍ଷ୍ଣ ଧାର ଖଡ଼୍‌ଗ ରହିବା ଅସମ୍ଭବ - ଏହି ଯୁକ୍ତି ସେଦିନ ଶକୁନୀ ଓ ଦୁର୍ଯ୍ୟୋଧନ ପ୍ରଦର୍ଶନ କରିଥିଲେ । ଅର୍ଥାତ୍ ହସ୍ତିନାରେ ସଦାଚାରୀ ପାଣ୍ଡବଙ୍କ ଉପସ୍ଥିତି ସେମାନଙ୍କ ପାଇଁ ଅସହ୍ୟ ଥିଲା । ଯେହେତୁ ପଣ୍ଡୁ ନନ୍ଦନଗଣ ପ୍ରଜାଙ୍କର ପ୍ରିୟଭାଜନ ଥିଲେ । ଏକପକ୍ଷରେ ପ୍ରଜାଙ୍କୁ ସଂଶୟମୁକ୍ତ କରିବା ଓ ଅପରପକ୍ଷରେ ଦୁର୍ଯ୍ୟୋଧନଙ୍କୁ ସନ୍ତୁଷ୍ଟ କରିବା ପାଇଁ ରାଜା ଧୃତରାଷ୍ଟ୍ର ଦୟାରେ ଦାନଦେବାଭଳି ରାଜତ୍ୱ ନିମିତ୍ତ ଯେଉଁ ଅନୁର୍ବର, ଘଞ୍ଚ ଅରଣ୍ୟ ଓ ଟଙ୍କିଳ ପ୍ରସ୍ତର ବେଷ୍ଟିତ ଭୂମିଖଣ୍ଡ ପାଣ୍ଡବ ମାନଙ୍କୁ ଅର୍ପଣ କରିଥିଲେ ତା'ର ନାମ ଥିଲା ଖାଣ୍ଡବ ପ୍ରସ୍ଥ । ଅଥଚ ସ୍ୱଳ୍ପ ସମୟ ଭିତରେ ସ୍ୱୀୟ କର୍ମ ନିଷ୍ଠା ଓ ଅଧ୍ୟବସାୟ ବଳରେ ପାଣ୍ଡବମାନେ ସେହି ଅନୁର୍ବର ଭୂମିକୁ ସ୍ୱର୍ଣ୍ଣ ପ୍ରସୂ କରି ତାହାକୁ ଇନ୍ଦ୍ରପ୍ରସ୍ଥରେ ପରିଣତ କରିଥିଲେ ଇନ୍ଦ୍ରପୁରୀ ସଦୃଶ ସମୃଦ୍ଧି ଶାଳୀ କରି ଏବଂ ପ୍ରଜାମାନଙ୍କର ଯଥେଷ୍ଟ ଶ୍ରଦ୍ଧା ଭାଜନ ମଧ୍ୟ ହୋଇଥିଲେ । ଇନ୍ଦ୍ରପ୍ରସ୍ଥକୁ ଅଧିକ ସୌଷ୍ଠବବନ୍ତ ଓ ଶ୍ରୀସଂପନ୍ନ କରି ଅସହିଷ୍ଣୁ କୌରବଙ୍କୁ ଇର୍ଷାନ୍ୱିତ କରିବାପାଇଁ ମୁଁ ମନେ ମନେ ଏକ ଯୋଜନା ପ୍ରସ୍ତୁତ କରିଥିଲି । ଅଗ୍ନିଙ୍କୁ ଦୁରାରୋଗ୍ୟ ବ୍ୟାଧିରୁ ଆରୋଗ୍ୟ କରିବାପାଇଁ ଔଷଧି ସମନ୍ୱିତ ଖାଣ୍ଡବ ବନ ଦହନର ଆବଶ୍ୟକତା ଥିଲା ଏବଂ ଏହି ଦୁଃସାଧ୍ୟକାର୍ଯ୍ୟ ମୋର ସଖା ପାର୍ଥ ବ୍ୟତୀତ ଆଉକିଏ କରନ୍ତା ? ବନରେ ଅଗ୍ନି ସଂଯୋଗ ସମୟରେ ଦ୍ୱିତୀୟ ବିଶ୍ୱକର୍ମା ମୟ ଅର୍ଜୁନଙ୍କୁ ଅନୁରୋଧ କରି ନିଜ ଜୀବନ ବଞ୍ଚାଇ କୃତଜ୍ଞତା ସ୍ୱରୂପ ଇନ୍ଦ୍ରପ୍ରସ୍ଥର ରାଜଭବନରେ ଅଶ୍ରୁତପୂର୍ବ, ଅଦୃଷ୍ଟ ପୂର୍ବ ଏକ ସଭାଗୃହ ନିର୍ମାଣ କରିଥିଲା । ଯାହାର ବାସ୍ତୁଶିଳ୍ପର ସୂକ୍ଷ୍ମ କାରୁକଳା ଯେ କୌଣସି ବ୍ୟକ୍ତିଙ୍କୁ ଲୋଭାକୃଷ୍ଟ କରିବାକୁ ସମର୍ଥ ଥିଲା । ସେଭଳି ଏକ ସୁରମ୍ୟ ପ୍ରାସାଦରେ ରାଜା ଯୁଧିଷ୍ଠିର ଯେତେବେଳେ ରାଜସୂୟ ଯଜ୍ଞର ଆୟୋଜନ କରିଥିଲେ ଦୁର୍ଯ୍ୟୋଧନ ଇର୍ଷ୍ୟାନ୍ୱିତ ହେବା ସ୍ୱାଭାବିକ୍ ।

କଂସର ଶଶୁର ମଗଧ ନରେଶ ଜରାସନ୍ଧ ଏକ ସହସ୍ର ରାଜାଙ୍କୁ ବନ୍ଦୀ କରି ରଖିଥିଲା ଏବଂ ଏକ ନରମେଧ ଯଜ୍ଞାନୁଷ୍ଠାନ କରୁଥିଲା । ଯଜ୍ଞର ଶେଷଦିନରେ ପୂର୍ଣ୍ଣାହୂତି ସମୟରେ ଏହି ଏକ ସହସ୍ର କ୍ଷତ୍ରିୟ ବୀରଙ୍କର ଶିରଛେଦନର ଯୋଜନା ମଧ୍ୟ ପ୍ରସ୍ତୁତ କରିଥିଲା । ଜରାସନ୍ଧ ସହ ମୋର ଶତ୍ରୁତା ବହୁ ପ୍ରାଚୀନ । ରାଜସୂୟ ଯଜ୍ଞପୂର୍ବରୁ ଯଦି ଜରାସନ୍ଧର ମୃତ୍ୟୁ ସମ୍ଭବ ନହୁଏ ତେବେ ଏକ ସହସ୍ର ରାଜା ପାଣ୍ଡବଙ୍କ ପକ୍ଷ ସମର୍ଥନର ସୁଯୋଗ ପାଇବେ ନାହିଁ ଏବଂ ଏତଦ୍ୱାରା ଭବିଷ୍ୟତରେ ମୋର ସମସ୍ତ ସୁପରିକଳ୍ପିତ ଯୋଜନା ପଣ୍ଡ ହୋଇ ଯିବାର ଆଶଙ୍କା ଥିଲା ।

ମୁଁ ଇନ୍ଦ୍ରପ୍ରସ୍ଥ ଯାତ୍ରା କରୁଛି ଜାଣି ସତ୍ୟଭାମା ମୋ ସହ ଯିବାକୁ ବାହାରିଲେ । ଉଦ୍ଦେଶ୍ୟ ଥିଲା ଆର୍ଯ୍ୟାବର୍ତ୍ତର ସର୍ବଶ୍ରେଷ୍ଠ ବିଦୂଷୀ ପଞ୍ଚପାଣ୍ଡବଙ୍କ ପ୍ରେୟସୀ ପାଞ୍ଚାଳୀଙ୍କଠାରୁ

ପାତିବ୍ରତ୍ୟ ଧର୍ମ ଶିକ୍ଷା କରି ଦାଂପତ୍ୟ ଜୀବନରେ ପରିଦୃଷ୍ଟ ହେଉଥିବା ଜଟିଳତାକୁ ନିଶ୍ଚିହ୍ନ କରିବା । ମୁଁ ତାଙ୍କୁ ବାଟସାରା ବୁଝେଇବା ପାଇଁ ଚେଷ୍ଟା କରିଥିଲି ଯେ, ଯାହା କୃଷ୍ଣା ପାରିବେ ତାହା ସମସ୍ତେ ପାରିବେ ନାହିଁ । ସେ ଅନନ୍ୟା । ସତ୍ୟଭାମାଙ୍କୁ ମୁଁ କହିବାକୁ ଚାହୁଁ ଥିଲିଯେ ଏଭଳି ଜଟିଳ ପରିସ୍ଥିତିର ସମ୍ମୁଖୀନା କୃଷ୍ଣାଙ୍କ ବ୍ୟତୀତ ଅନ୍ୟ କୌଣସି ନାରୀ ହେବା ସମ୍ଭବ ନୁହେଁ । ମୁଁ ଦକ୍ଷିଣ ନାୟକ । ମୋର ଅନେକ ପତ୍ନୀଙ୍କ ମଧ୍ୟରୁ ସତ୍ୟଭାମା ଜଣେ । ମାତ୍ର କୃଷ୍ଣା ଜଣେ, ତାଙ୍କର ପଞ୍ଚପତି ।

ସେଦିନ ଇନ୍ଦ୍ରପ୍ରସ୍ଥରେ ପହଞ୍ଚିବାବେଳକୁ ରାତ୍ରି ବେଶ୍ ଗଭୀର ହୋଇଥିଲା । ନଗରର ପଥଧାରରେ ଉତ୍ସବର ଆୟୋଜନ, ବିପଣୀର ପ୍ରସ୍ତୁତି । ଆର୍ଯ୍ୟାବର୍ତ୍ତର ପଶ୍ଚିମଭାଗରୁ ଅଶ୍ୱବେପାରୀ ମାନେ ଶୁକ୍ଳବର୍ଣ୍ଣର ସହସ୍ର ସଂଖ୍ୟକ ଅଶ୍ୱ ଆଣିଥା'ନ୍ତି । ପୂର୍ବଭାଗରୁ ଶ୍ୱେତହସ୍ତୀ ସମୂହ ସହ ବଣିକଗଣ ଉପସ୍ଥିତ ହୋଇଥା'ନ୍ତି । ଦକ୍ଷିଣରୁ ଆସିଥା'ନ୍ତି ଉତ୍କୃଷ୍ଟ ରତ୍ନ ଓ ଗଜମୁକ୍ତା ତଥା ପ୍ରବାଳର ବ୍ୟବସାୟୀ ଗଣ । କଳିଙ୍ଗରୁ ସୂକ୍ଷ୍ମ କାରୁକାର୍ଯ୍ୟ ପୂର୍ଣ୍ଣ ପଟ୍ଟବସ୍ତ୍ର ସହ ବୁଣାକାର ମାନେ ଉପସ୍ଥିତ ହୋଇଥାନ୍ତି । ଚତୁର୍ଦ୍ଦିଗ କୋଳାହଳରେ ପୂରିଯାଇଥାଏ । ରାଜଭବନରେ ପହଞ୍ଚିବା ମାତ୍ରେ ସଖା ଅର୍ଜୁନହିଁ ଆମ୍ଭମାନଙ୍କୁ ସ୍ୱାଗତ କରି ଭିତରକୁ ନେଇଗଲେ । ମୋର ପିଉସୀ ଓ ପାଣ୍ଡବଙ୍କ ସହ ସାକ୍ଷାତ ଓ କୁଶଳ ଜିଜ୍ଞାସା ପର୍ବ ଶେଷ ହେବା ପରେ ଯାଜ୍ଞସେନୀଙ୍କ ଭବନଦ୍ୱାରରେ ପହଞ୍ଚିବା କ୍ଷଣି ପଟ୍ଟ ମହିଷୀ ଯାଜ୍ଞସେନୀ ନିଜେ ପୁଷ୍ପ, ମାଲ୍ୟ, ଚନ୍ଦନ, ପାଦ୍ୟ, ଅର୍ଘ୍ୟ ପ୍ରଭୃତି ସମସ୍ତି ବ୍ୟାହାରରେ ଆମର ବନ୍ଦନା ଶେଷ କଲେ । ମୁଁ କୃତ୍ରିମ ଗାମ୍ଭୀର୍ଯ୍ୟସହ ସତ୍ୟଭାମାଙ୍କୁ କହିଲି - 'ଏହିଠାରୁ ଶିକ୍ଷା ଆରମ୍ଭ କର ସତ୍ୟଭାମା ! ପୁଣି ଏଇ ପାଣ୍ଡବ ବଧୂଙ୍କର ବନ୍ଧୁତାକୁ ସ୍ୱୀକାର କରି ବିଚରା କେଶବ ଯେ କି ହୀନସ୍ଥା ହୁଏ, ତା' ତୁମେ କଳ୍ପନା କରି ପାରିବ ନାହିଁ । ଯେତେବେଳେ ସେ ଯେଉଁ ପତି ସହ ଯେ ଦାଂପତ୍ୟ ଅତିବାହିତ କରୁଥା'ନ୍ତି ସେହି ପତିର ମନୋରଂଜନ ନିମିତ୍ତ ମୋତେ ବି ତାଙ୍କରି ଛାଞ୍ଚରେ ପକେଇବାକୁ ଚେଷ୍ଟା କରନ୍ତି । ଏଇ ଯେମିତି ଯୁଧିଷ୍ଠିରଙ୍କ ସହ ଥିବାବେଳେ ନୀତିଶାସ୍ତ୍ର ଓ ଦ୍ୟୁତ ବ୍ୟତୀତ ମୋପାଇଁ ସୁଦ୍ଧା ସେତେବେଳେ ସବୁକିଛି ନିଷିଦ୍ଧ ହୋଇଯାଏ । ଭୀମସେନଙ୍କ ସହ ଥିବା ସମୟରେ ମୁଁ ତ ତ୍ରାହି ତ୍ରାହି ଡାକ ଛାଡୁଥାଏ । ଘୃତପକ୍ୱ ମିଷ୍ଟାନ୍ନର ଗୁରୁପାକ ଭୋଜନରେ ମୁଁ ଅଣନିଃଶ୍ୱାସୀ ହୋଇଯାଏ । ସଖା ଅର୍ଜୁନଙ୍କ ସହ ଥିବା ସମୟରେ କାବ୍ୟଶାସ୍ତ୍ର ଚର୍ଚ୍ଚାଦ୍ୱାରା ମୁଁ ନିଜେବି କବି ପାଲଟିଯାଏ, ସହଦେବଙ୍କ ସହ ଥିବା ସମୟରେ କେବଳ ଜ୍ୟୋତିଷଶାସ୍ତ୍ର ସଂପର୍କରେ କୌତୁହଳୋଦ୍ଦୀପକ ଆଲୋଚନା ଏବଂ ନକୁଳଙ୍କ ସହ ଥିବା ସମୟରେ ରୂପ ଓ ସୌନ୍ଦର୍ଯ୍ୟ ଚର୍ଚ୍ଚାରେ ଅନୁପମା କୃଷ୍ଣା ମୋତେ ଅମରାବତୀର ଅପ୍‌ସରା ଭଳି ମନେହୁଅନ୍ତି ।'

ବୁଦ୍ଧିମତୀ ସତ୍ୟଭାମା ମୋ କଥାରୁ ଜାଣିପାରିଲେ ଯେ କୃଷ୍ଣା ନିଜକୁ କିଭଳି

ପାଞ୍ଚଭାଗରେ ବିଭକ୍ତ କରି ଐକ୍ୟକୁ ଅକ୍ଷୁର୍ଣ୍ଣ ରଖିଛନ୍ତି । ସେ ଅଭିଭୂତା ଭାବେ କୃଷ୍ଣାଙ୍କୁ ଚାହିଁ ରହିଲେ ।

କୃଷ୍ଣା କହିଲେ - 'ତୁମ ରସିକତା ମୋତେ ପ୍ରାଣାନ୍ତ କରିଦିଏ । ମୋ ଚାହିଁବା ନଚାହିଁବାରେ କ'ଣ କିଛି ହୁଏ କେଶବ ? ତୁମରି ଇଛାର ସ୍ରୋତରେ ହିଁ ତ ମୁଁ ଭାସି ଆସିଛି ଚିରକାଳ !'

ମୁଁ କହିଲି - 'ତୁମର ଅଭିଳଷିତ ପଞ୍ଚଲକ୍ଷଣ ଯୁକ୍ତ ପୁରୁଷ କେବଳ ପାର୍ଥ ନୁହେଁ ସଖୀ ! ମନେରଖ ତୁମେ ସାଧାରଣ ରମଣୀଟିଏ ମାତ୍ର ନୁହେଁ । ତୁମେ ଅଦ୍ୱିତୀୟା, ଅସାମାନ୍ୟା । ସେଥିପାଇଁ ଆବଶ୍ୟକ ହେଲେ ତୁମେ ନିଜକୁ ପାଞ୍ଚଭାଗରେ ବିଭକ୍ତ କରିବ ପୁଣି ପଞ୍ଚ ଆତ୍ମାକୁ ଏକ କରିବ । ଏ ଆର୍ଯ୍ୟବର୍ତ୍ତ ତମଠାରୁ ଅନେକ କିଛି ଆଶାକରେ । ତମେ ଆର୍ଯ୍ୟାବର୍ତ୍ତ ପାଇଁ ଏକ ଉଜ୍ଜ୍ୱଳ ସମ୍ଭାବନା, ଦୃଢ଼ ପ୍ରତିଶୃତି !'

ଏକଥା ସେଦିନ ମୁଁ କୃଷ୍ଣାଙ୍କୁ କାହିଁକି କହିଲି ସେ କଥା ମୋତେ ସେ ପ୍ରଶ୍ନ କରିନାହାନ୍ତି; କିନ୍ତୁ ବହୁବାର ଆକ୍ଷେପ କରିଛନ୍ତି ନିଜର ଭାଗ୍ୟ ଆଉ ଭବିତବ୍ୟକୁ ମୋରି ସମ୍ମୁଖରେ । କହିଛନ୍ତି, ଜନନୀ କୁନ୍ତୀଙ୍କର ଏ କି'ପ୍ରକାର ଆଦେଶ - ଯାହା ଆଣିଛ ପାଞ୍ଚଭାଇ ସମାନ ଭାଗରେ ଭୋଗକର ! ମୁଁ କ'ଣ ଏକ ବସ୍ତୁ ?'

ମୁଁ ହସି ହସି କହିଦିଏ - 'ଜନନୀଙ୍କ ଆଦେଶ ତୁମପାଇଁ ପ୍ରଚ୍ଛନ୍ନ ଆଶୀର୍ବାଦ ।'

କୃଷ୍ଣା କପଟ କ୍ରୋଧରେ କହନ୍ତି - 'ସାଧାରଣ ନାରୀଙ୍କ ଭଳି ଗୋଟିଏ ପୁରୁଷର ଅର୍ଦ୍ଧାଂଗିନୀ ଭାବେ ଗୋଟିଏ ମଣିଷର ସୁଖଦୁଃଖର ଅଂଶୀଦାର ହେବା ପରିବର୍ତ୍ତେ ପଞ୍ଚପୁରୁଷର ଅଭିରୁଚି ସହ ତାଳ ନେଇ ଚାଲିବା ଯେ କି ଦୁଃସହ ?'

ସେ ରାତିରେ ପ୍ରକୃତରେ ମୁଁ ବଡ଼ ଅନ୍ୟମନସ୍କ ଥିଲି । ଭୋଜନ ପରିବେଷଣ ସମୟରେ କୃଷ୍ଣା ବାରମ୍ବାର ତାହା ଲକ୍ଷ୍ୟ କରି ଅବଶେଷରେ ପ୍ରଶ୍ନ କଲେ- 'ଏଭଳି ଆନନ୍ଦ ମୁଖର ପରିବେ୍ଶରେ ମାଧବ ବଡ଼ ଉଦାସୀନ ଅନ୍ୟମନସ୍କ ଯେ ?'

ଦ୍ରୌପଦୀ ଏଭଳି ଏକାଗ୍ରଚିତ୍ତରେ ମୋତେ ଅନୁଧ୍ୟାନ କରନ୍ତି ଯେ ମୋର ଅନ୍ତରର ପ୍ରତ୍ୟେକ ଭାଷା ଅନାୟାସରେ ପଢ଼ିପାରନ୍ତି ।

ମୁଁ ପରିହାସ ଚପଳ କଣ୍ଠରେ କହିଲି - 'ଓଃ ! ପଞ୍ଚଇନ୍ଦ୍ର ସଦୃଶ ସୁଯୋଗ୍ୟ ପତି ଥିବା ସତ୍ତ୍ୱେ ପାଣ୍ଡବ ପଟ୍ଟମହିଷୀ ଯଦି କେବଳ ମୋତେ ହିଁ ଚାହିଁ ରହନ୍ତି ତେବେ ଯେ କୌଣସି ମୁହୂର୍ତ୍ତରେ ତୁମର ବୀର ପତିଗଣ ମୋତେ ଚିତ୍ତ ଚୋର ଅଭିଯୋଗରେ ଅଭିଯୁକ୍ତ କରି ଇନ୍ଦ୍ରପ୍ରସ୍ଥ

ଦରବାରରେ ଅପରାଧୀ ବୋଲି ସାବ୍ୟସ୍ତ କରିବା ବିଚିତ୍ର ନୁହେଁ । ବିଶେଷତଃ ମୋର ସଖା ଅର୍ଜ୍ଜୁନ ଜାଣିଲେ ଆଉ ରକ୍ଷା ନାହିଁ ।'

ସେ ଅଭିମାନକ୍ଷୁବ୍ଧ କଣ୍ଠରେ କହିଉଠିଲେ - 'ମୋ ପ୍ରଶ୍ନଟିକୁ ଏଡ଼େଇ ଯିବାପାଇଁ ଚେଷ୍ଟା କରନାହିଁ ମାଧବ ! ତା' ଛଡ଼ା ତୁମେତ ଜାଣ ତୁମ ସଖାଙ୍କ ପାଇଁ ପାଞ୍ଚାଳୀ ଅନେକ ପ୍ରିୟବଲ୍ଲଭୀଙ୍କ ଭିତରୁ ଜଣେ ମାତ୍ର, କିନ୍ତୁ ମୋର ତୁମ ବ୍ୟତୀତ ଯେ ଆଉ କେହି ନାହାନ୍ତି ମାଧବ, କେହି ନାହାନ୍ତି ! ଆଖି ବୁଜି ହୃଦୟର ଯେତେ ଅତଳ ଗହ୍ୱରକୁ ଦୃଷ୍ଟି ନିକ୍ଷେପ କଲେ ମଧ୍ୟ ସେଠି କେବଳ ତୁମେ ହିଁ ତୁମେ ! ତୁମ ବିନା ଚରାଚର ବିଶ୍ୱ ଶୂନ୍ୟ ।'

ତାଙ୍କର ଏ ଅଭିମାନାହତ ସ୍ୱରରେ ମୋ ପାଇଁ ଯେଉଁ ପ୍ରଚ୍ଛନ୍ନ ଇଂଗିତ ଥିଲା ତା'ମୁଁ ବେଶ୍ ବୁଝି ପାରୁଥିଲି । ଏ ଇଂଗିତ ଥିଲା ପାର୍ଥଙ୍କର ସୁଭଦ୍ରା ହରଣ ନିମିତ୍ତ । ତାଙ୍କର ବଦ୍ଧମୂଳ ଧାରଣା ଥିଲା ଯେ ଏସବୁ ମୋରି ସୁପରିକଳ୍ପିତ ଯୋଜନା । କିନ୍ତୁ ଏହା ମଧ୍ୟ ବିଧି ନିର୍ଦ୍ଦିଷ୍ଟ ! ଭବିଷ୍ୟତ ଯୋଜନା କାର୍ଯ୍ୟକାରୀ ହେବା ନିମିତ୍ତ ଅର୍ଜ୍ଜୁନଙ୍କର ତୀର୍ଥାଟନ ଯେମିତି ଅନିବାର୍ଯ୍ୟ ଥିଲା, ବୈବାହିକ ସମ୍ବନ୍ଧ ଦ୍ୱାରା ପାଣ୍ଡବଙ୍କ ସୈନ୍ୟବଳ ବୃଦ୍ଧି ମଧ୍ୟ ସେହିଭଳି ଅପରିହାର୍ଯ୍ୟ ଥିଲା ।

ମୁଁ ଲକ୍ଷ୍ୟ କରୁଥିଲି, ସଖା ପାର୍ଥ ପାଞ୍ଚାଳୀଙ୍କ ପ୍ରେମାକର୍ଷଣରେ ଦିନକୁଦିନ ବାନ୍ଧି ହୋଇ ପଡୁଥିଲେ । ଯେହେତୁ ସ୍ୱୟଂବର ପଣ ପାର୍ଥହିଁ ଜିଣିଥିଲେ, ପାଞ୍ଚାଳୀଙ୍କର ଅଧିକ ଦୁର୍ବଳତା ଥିଲା, ଏପରିକି ହୃଦୟଦାନ ବ୍ୟାପାରରେ ଅଧିକ ପକ୍ଷପାତିତା ମଧ୍ୟ ଥିଲା । ଏକଥା ଅନ୍ୟ ଭାଇମାନେ ଜାଣନ୍ତୁକି ନଜାଣନ୍ତୁ ନୀତିବାଦୀ ତଥା ଦୂରଦୃଷ୍ଟି ସଂପନ୍ନ ଧର୍ମରାଜ ଯୁଧିଷ୍ଠିର ଉତ୍ତମ ରୂପେ ହୃଦୟଙ୍ଗମ କରିପାରୁଥିଲେ । ଯଦି କୌଣସି ଦିନ ଏହି ଆବେଗିକ ପକ୍ଷପାତର ବାର୍ତ୍ତା ଟିକକ ହସ୍ତିନାରେ ପହଞ୍ଚିଯାଇଥା'ନ୍ତା ତେବେ ଛିଦ୍ରାନ୍ୱେଷୀ କୌରବ ଭ୍ରାତାଗଣଙ୍କର ଆନନ୍ଦର ସୀମା ରହିନଥା'ନ୍ତା । ବସ୍ତୁତଃ ସେମାନଙ୍କ ମାତୁଳ ଶକୁନୀ ଏହି ଛିଦ୍ରପଥଦେଇ ବହୁ ଷଡ଼ଯନ୍ତ୍ରର ଜାଲ ବିଛେଇ ଥା'ନ୍ତେ ।

ଅଗତ୍ୟା ଇନ୍ଦ୍ରପ୍ରସ୍ଥର ଉପକଣ୍ଠରେ ଜଣେ ସାଧାରଣ ନାଗରିକ ବେଶରେ ପାଣ୍ଡବଙ୍କ ଅଜ୍ଞାତସାରରେ ମୋତେ ବେଶ୍ କିଛିଦିନ ସୁଯୋଗର ଅପେକ୍ଷା କରିବାକୁ ପଡ଼ିଥିଲା । ଶେଷକୁ ଦିନେ ସେ ସୁଯୋଗ ଉପସ୍ଥିତ ହୋଇଥିଲା । ଜଣେ ଦରିଦ୍ର ବ୍ରାହ୍ମଣର ଯତ୍‌ସାମାନ୍ୟ ଧନରତ୍ନ ଓ ଗୋଧନ କେତେଜଣ ଅସାମାଜିକ ବ୍ୟକ୍ତି ଅପହରଣ କରିନେଲେ । ମୁଁ ଏହାଶୁଣିବା ମାତ୍ରେ ବ୍ରାହ୍ମଣଙ୍କୁ ନିର୍ଦ୍ଦେଶ ଦେଲି - 'ତୁମେ ଯାଅ ତୃତୀୟ ପାଣ୍ଡବ ଧନଞ୍ଜୟଙ୍କୁ ଏହା ଜଣେଇବ ଓ କହିବ ସେ ଚୋର ମାନଙ୍କର ପଶ୍ଚାଦ୍‌ଧାବନ କରି ତୁମ ଧନ ତୁମକୁ ଫେରାଇଦିଅନ୍ତୁ । ରାଜ୍ୟବାସୀଙ୍କର

ସୁରକ୍ଷା ଭାର ତାଙ୍କରି ଉପରେ ନ୍ୟସ୍ତ । ଏହା ତାଙ୍କର ନୈତିକ ଦାୟିତ୍ୱ । ଯଦି ଏହା କରିବାକୁ ସେ ଅସାମର୍ଥ୍ୟ ପ୍ରକାଶ କରନ୍ତି ତେବେ ତୁମେ ତାଙ୍କୁ ବ୍ରହ୍ମ ଅଭିଶାପର ଧମକ ଦେବ ।'

ବ୍ରାହ୍ମଣ ଇନ୍ଦ୍ରପ୍ରସ୍ଥ ନଗରୀକୁ ଯାତ୍ରାକରିବା ମାତ୍ରେ ମୁଁ ନିଶ୍ଚିନ୍ତ ହୋଇଗଲି । ଦିନାନ୍ତର ଶେଷଭାଗରେ ଇନ୍ଦ୍ରପ୍ରସ୍ଥରେ ପହଞ୍ଚି ଦେଖିଲି ଧନଞ୍ଜୟ ତୀର୍ଥାଟନ ଉଦ୍ଦେଶ୍ୟରେ ପ୍ରସ୍ତୁତ ହେଉଛନ୍ତି । ଅନ୍ୟ ଚାରିଭାଇ ଓ ଜନନୀ କୁନ୍ତୀ ଅତ୍ୟନ୍ତ ବିଷର୍ଣ୍ଣ । ଯୁଧିଷ୍ଠିର ବାରମ୍ବାର ପାର୍ଥଙ୍କୁ ନିବୃତ କରିବାକୁ ଚେଷ୍ଟା କରୁଛନ୍ତି । ପାଞ୍ଚାଳୀ ନିଜର ଭାବାବେଗକୁ ଗୋପନ କରିପାରୁନାହାନ୍ତି କି ପ୍ରକାଶ ମଧ୍ୟ କରିପାରୁ ନାହାନ୍ତି । କଥା କହିଲେ ଯେମିତି ଲୁହ କୋହରେ ଭାଂଗି ପଡ଼ିବେ । ମୋଟ ଉପରେ କେହି ଉତ୍ତର ଦେବା ଅବସ୍ଥାରେ ନଥିଲେ । ଶେଷରେ ମୌନାଶ୍ରୟୀ ସହଦେବଙ୍କୁ ପ୍ରଶ୍ନ କରିବାରୁ ସେ କହିଲେ - 'ଭ୍ରାତା ଅର୍ଜ୍ଜୁନ ସର୍ତ୍ତ ଭଂଗ କରିଛନ୍ତି !'

-'କେଉଁସର୍ତ୍ତ ?' ମୁଁ ନଜାଣିବାର ଅଭିନୟ କଲି ।

ସହଦେବ କହିଲେ - 'ମହର୍ଷି କୃଷ୍ଣ ଦ୍ୱୈପାୟନ, ଦେବର୍ଷି ନାରଦ ଓ ଆପଣ ମିଳିତ ଭାବେ ଆମ୍ଭମାନଙ୍କର ଦାଂପତ୍ୟ ଜୀବନ ନିମିତ୍ତ ଯେଉଁ ସର୍ତ୍ତ ରଖିଥିଲେ । ଆଜି ମଧ୍ୟାହ୍ନ ସମୟରେ ଜଣେ ବ୍ରାହ୍ମଣ ଭ୍ରାତା ଅର୍ଜ୍ଜୁନଙ୍କୁ ଏକପ୍ରକାର ବାଧ୍ୟ କଲା ତା'ର ଅପହୃତ ଧନ ଫେରାଇ ଦେବାପାଇଁ । ଭ୍ରାତା ଭୀମ ରାଜକୋଷରୁ ଚତୁର୍ଗୁଣ ଧନ ଦେବାପାଇଁ ପ୍ରସ୍ତୁତ ହେବା ସତ୍ତ୍ୱେ ସେ ବ୍ରାହ୍ମଣ ତାହା ଗ୍ରହଣ କରିବା ପାଇଁ ଅସ୍ୱୀକାର କରି ବରଂ ଭ୍ରାତା ଅର୍ଜ୍ଜୁନ ଓ ତାଙ୍କର ଗାଣ୍ଡିବକୁ ଶତ ଧିକ୍କାର କଲା, କହିଲା ଏତେ ଯୁକ୍ତି ତର୍କ ନକରି ଏଇତକ ସମୟ ଭିତରେ ଅପହରଣ କାରୀଙ୍କ ପଶ୍ଚାତ୍‌ଧାବନ କରି ସେମାନଙ୍କଠୁ ମୋ ଧନ ଆଣି ମୋତେ ଫେରାଇ ପାରିଥା'ନ୍ତେ । ଭ୍ରାତା ଅର୍ଜ୍ଜୁନ ତାଂକୁ ଅପେକ୍ଷା କରିବାକୁ କହିଲେ, କାରଣ ବର୍ତ୍ତମାନ ଦେବୀ ପାଞ୍ଚାଳୀ ଜ୍ୟେଷ୍ଠଭ୍ରାତା ଯୁଧିଷ୍ଠିରଙ୍କ ସହ ଦାଂପତ୍ୟଜୀବନ ଅତିବାହିତ କରିବାର ସମ୍ବତ୍ସର । ମଧ୍ୟାହ୍ନ ସମୟରେ ଜ୍ୟେଷ୍ଠଭ୍ରାତା ଓ ଦେବୀ ପାଞ୍ଚାଳୀ ବିଶ୍ରାମ ନେଉଥିଲେ । ଆମ୍ଭମାନଙ୍କର ଶସ୍ତ୍ରାଗାର ଧର୍ମରାଜଙ୍କର ଶୟନକକ୍ଷ ସଂଲଗ୍ନରେ ଅବସ୍ଥିତ । ଦ୍ୱିତୀୟ ଦ୍ୱାର ମଧ୍ୟ ନାହିଁ । ଶସ୍ତ୍ର ଆଣିବାକୁ ହେଲେ ଜ୍ୟେଷ୍ଠଭ୍ରାତାଙ୍କ ଶୟନକକ୍ଷ ଭିତର ଦେଇ ଯିବାକୁ ପଡ଼ିବ । ଏଇଭଳି ନିର୍ବୀର୍ଯ୍ୟ, ଆଳସ୍ୟ ପରାୟଣ, ଦୀର୍ଘସୂତ୍ରୀ ହାତରେ ଧର୍ମରାଜ ରାଜ୍ୟବାସୀଙ୍କର ସୁରକ୍ଷା ଭାର ଦେଇଛନ୍ତି ? ଫେରିଯିବା ପୂର୍ବରୁ ମୁଁ ତୁମକୁ ଅଭିଶାପ ଦେବି ଧନଞ୍ଜୟ....... । ବାସ୍ ! ଭ୍ରାତା ଅର୍ଜ୍ଜୁନ ସମସ୍ତ ବିଧି ନିଷେଧର ସୀମା ଲଂଘନ କରି ଜ୍ୟେଷ୍ଠଭ୍ରାତାଙ୍କ ଶୟନ କକ୍ଷରେ ପ୍ରବେଶ କରି ତାଙ୍କର ଧନୁ ତୀର ଆଣି କ୍ଷିପ୍ରବେଗରେ ଅଶ୍ୱଚାଳନା କରି ଦସ୍ୟୁ ମାନଙ୍କର ପଶ୍ଚାତ୍ ଧାବନ କରି ବ୍ରାହ୍ମଣର ସମସ୍ତ ଅପହୃତ ଧନ ଫେରାଇବାରେ ସମର୍ଥ ହୋଇଥିଲେ । କିନ୍ତୁ ସେଇ ଯେଉଁ ମୁହୂର୍ତ୍ତକର ସର୍ତ୍ତଭଂଗର ଅପରାଧ, ଯଦିଓ ଜ୍ୟେଷ୍ଠଭ୍ରାତା ଓ ଦେବୀ ପାଞ୍ଚାଳୀ ପଶାଖେଳରେ

ମଗ୍ନ ଥିଲେ । କିନ୍ତୁ ବିଶ୍ରାମ ସମୟରେ ଦେବୀ ପାଞ୍ଚାଳୀଙ୍କ ବେଶବାସ ଶିଥୀଳ ଥିଲା ହୁଏତ । ଭ୍ରାତା ଅର୍ଜ୍ଜୁନ ନିଜକୁ ନିଜେ କ୍ଷମା କରିପାରୁନାହାନ୍ତି ।

ଅର୍ଜ୍ଜୁନଙ୍କ ତୀର୍ଥାଟନ ନିଧାର୍ଯ୍ୟ ହୋଇଗଲା । ଯାତ୍ରାର ସେହି ସକରୁଣ ମୁହୂର୍ତ୍ତରେ ଲକ୍ଷ୍ୟକଲି ଜନନୀ କୁନ୍ତୀ ଓ ଭ୍ରାତାଗଣ ଅତ୍ୟନ୍ତ ମର୍ମାହତ ହୋଇ ପଡ଼ିଥିଲେ । ପାଞ୍ଚାଳୀ ମୂର୍ତ୍ତିମତୀ ଅଶ୍ରୁଭଳି କରୁଣ ଦିଶୁଥିଲେ । ତାଙ୍କ ଆଖି ଦୁଇଟିରୁ ଧନଞ୍ଜୟଙ୍କ ପାଇଁ କେବଳ ଅଭିଯୋଗ ଓ ଅନୁଯୋଗ ଝରିପଡୁଥିଲା ଯେମିତି - 'ଏ ବ୍ୟବସ୍ଥା ପଛରେ ମୋର ତ' ହାତ ନଥିଲା ଧନଞ୍ଜୟ ! ସ୍ୱୟଂବର ତୁମେ ଜିଣିଥିଲ । ଧର୍ମତଃ ମୁଁ ତୁମର ପତ୍ନୀ । ଜନନୀଙ୍କ ଆଦେଶ ତୁମ୍ଭେମାନେ ପାଳନ କରି ମୋତେ ସାରାଜୀବନ ଏକ ଜଟିଳ ଆବର୍ତ୍ତ ଭିତରକୁ ଠେଲି ଦେଇଥିଲ । ମୋର ବୈବାହିକ ଜୀବନରେ ସର୍ତ୍ତ ତୁମ୍ଭେମାନେ ରଖିଥିଲ, ପୁଣି ସେ ସର୍ତ୍ତ ତୁମେ ଭଂଗକଲ ଧନଞ୍ଜୟ ! ଅଥଚ ଏ ସର୍ତ୍ତଭଂଗ ଅପରାଧର ଶାସ୍ତି ମୁଁ କାହିଁକି ପାଇବି ? ମୋ କଥାତ କେହି ଚିନ୍ତା କରୁନାହଁ ? ଏଇ ଦ୍ୱାଦଶ ବର୍ଷ ଭିତରେ ତୁମକୁ ଏକାନ୍ତରେ ଦୁଇଥର, ଦୁଇବର୍ଷ ପାଇଁ ମୁଁ ପାଇଥା'ନ୍ତି ଧନଞ୍ଜୟ ! ବାରବର୍ଷ ! ବାରବର୍ଷ !! ଜୀବନ ଅନିଶ୍ଚିତ ବୋଲି ମୋଭଳି ତୁମେ ତ ଉପଲବ୍ଧି କରି ପାରୁଥିବ !!!'

ଯାତ୍ରା ସମୟରେ ଜନନୀ କୁନ୍ତୀ ଛୋଟ ଝିଅଟିଏ ଭଳି ଧନଞ୍ଜୟଙ୍କ ବକ୍ଷସଂଲଗ୍ନ ହୋଇ ଅସହାୟଭାବେ ରୋଦନ କରିବାକୁ ଲାଗିଲେ । ଯେମିତି ଅନୁତାପରେ ସେ ଭାଂଗି ପଡୁଥିଲେ । ଯେମିତି ନଦେଖି ନଶୁଣି ସେ ଯେଉଁ ନିର୍ଦ୍ଦେଶ ଦେଇଥିଲେ ତାହା ଆଜି ଦୁଇଟି ଜୀବନକୁ କିଭଳି ବିପର୍ଯ୍ୟୟ ଡାକି ଆଣିଛି ସେ କଥା ଚିନ୍ତା କରି ସେ ନିଜକୁ ନିଜେ କ୍ଷମା କରିପାରୁନଥିଲେ । ଯେମିତି ପୁତ୍ରବଧୂ ପାଞ୍ଚାଳୀଙ୍କର ଏ ମର୍ମାନ୍ତିକ ବେଦନା ପାଇଁ ଓ ପୁତ୍ର ଧନଞ୍ଜୟଙ୍କର ଏ ଆତ୍ମଦହନ ପାଇଁ ସେ ନିଜେହିଁ ଦାୟୀ !

ମୁଁ ତାଙ୍କୁ ସାନ୍ତ୍ୱନା ଦେଇ କହିଥିଲି, 'ଅନୁତାପର ଅଶ୍ରୁଜଳ ସବୁ ଦୁଃଖକୁ ଧୋଇଦିଏ ମା; କିନ୍ତୁ ଏହା ଯେ ବିଧାତାର ଅଲଂଘ୍ୟ ନର୍ଦ୍ଦେଶ । ଏହା ପଛରେ ହୁଏତ କିଛି ସଦୁଦ୍ଦେଶ୍ୟ ଥାଇପାରେ ।'

ପାର୍ଥଙ୍କର ରୂପ, ଗୁଣ, ଶୌର୍ଯ୍ୟର ପ୍ରଚାର ସମଗ୍ର ଆର୍ଯ୍ୟ ଭୂଖଣ୍ଡରେ ପ୍ରଚାରିତ ହୋଇଥିଲା । ବିଭିନ୍ନ ରାଜ୍ୟର ରାଜକନ୍ୟାଗଣ ତାଙ୍କ ପ୍ରତି ଆକୃଷ୍ଟ ହେବା ସ୍ୱାଭାବିକ ଥିଲା । ପାର୍ଥଙ୍କ ଅଜ୍ଞାତରେ ମୁଁ କେତେକ ବିଶ୍ୱସ୍ତ ଅନୁଚରଙ୍କୁ ତାଙ୍କର ଅନୁସରଣ କରି ତାଙ୍କର ସମସ୍ତ କ୍ରିୟା କଳାପର ବିବରଣୀ ମୋତେ ଦେବାପାଇଁ ନିଯୁକ୍ତ କରିଥିଲି । ସେମାନେ ଯଥା ସମୟରେ ସମସ୍ତ ସମ୍ବାଦ ମୋ ନିକଟରେ ପହଞ୍ଚାଇ ପାରୁଥିଲେ ।

ତୀର୍ଥାଟନ ସମୟରେ ନାଗକନ୍ୟା ଉଲୁପୀ, ଆର୍ଯ୍ୟାବର୍ତ୍ତ ଉତ୍ତର ଭୂଖଣ୍ଡର ପାର୍ବତ୍ୟ ପ୍ରଦେଶ ମଣିପୁରର ରାଜଜେମା ଚିତ୍ରାଙ୍ଗଦା, କଳିଙ୍ଗ କନ୍ୟା ପ୍ରଭୃତି ବହୁ ରାଜକୁମାରୀ ପାର୍ଥଙ୍କର ଅସାମାନ୍ୟ ବୀରତ୍ୱରେ ମୁଗ୍ଧହୋଇ ତାଙ୍କୁ ବିବାହ କରିଥିଲେ । ଏହି ସବୁ ବୈବାହିକ ସଂପର୍କ ଦ୍ୱାରା ବନ୍ଧୁତାର ଭିତ୍ତି ସୁଦୃଢ଼ ହୋଇଥିଲା । ଇରାବାନ୍, ବଭ୍ରୁବାହନ ଭଳି ବୀର ପୁତ୍ରଙ୍କର ଜନକ ହେବାର ସୌଭାଗ୍ୟ ମଧ୍ୟ ଅର୍ଜନ କରିଥିଲେ ଅର୍ଜୁନ, ଦ୍ୱାଦଶ ବର୍ଷ ଅତିକ୍ରାନ୍ତ ହୋଇଯାଇଥିଲା । ଇନ୍ଦ୍ରପ୍ରସ୍ଥ ଫେରିଯିବାର ଥିଲା । ସେଇ ଫେରନ୍ତା ପଥରେ ଦ୍ୱାରକା ଆସିଥିଲେ ସଖା ପାର୍ଥ । ସଖାପାର୍ଥ ବଡ଼ ଅନ୍ୟମନସ୍କ, ଉଦାସ ଦିଶୁଥିଲେ । ଋତୁ ବସନ୍ତ, ମାସ ଫାଲ୍‌ଗୁନ । ରୈବତକ ପର୍ବତରେ ଯାତ୍ରାର ସମାରୋହ ଅନୁଷ୍ଠିତ ହେଉଥାଏ । ଦ୍ୱାରକା ରମଣୀ ମାନଙ୍କର ନିତ୍ୟ ଯିବା ଆସିବା ଲାଗି ରହିଥାଏ । ବିଶେଷତଃ ସେହି ଉତ୍ସବ ମୁଖର ପରିବେଶରେ ଦ୍ୱାରକା ରମଣୀଗଣଙ୍କ ଦାୟିତ୍ୱ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଉତ୍ସବର ସର୍ବାଙ୍ଗୀନ ସଫଳତା ନିମିତ୍ତ ସେମାନଙ୍କ ଭୂମିକା ମୁଖ୍ୟ । ମୋର ଆଦରଣୀୟା କନିଷ୍ଠାଭଗ୍ନୀ ସୁଭଦ୍ରାହିଁ ଏହିସବୁ ଆନନ୍ଦ ଉତ୍ସବ ଆୟୋଜନର କେନ୍ଦ୍ର ବିନ୍ଦୁ ହୋଇଥାଏ ।

ଏ ସମ୍ବାଦ ମଧ୍ୟ ପାଇଥିଲି ଏ ଦ୍ୱାଦଶବର୍ଷ ଭିତରେ ଯେଉଁ ବର୍ଷ ଗୁଡ଼ିକ ପାର୍ଥଙ୍କପାଇ ଉତ୍ସର୍ଗୀକୃତ ସେହି ବର୍ଷ ଗୁଡ଼ିକ କୃଷ୍ଣାଙ୍କ ପ୍ରତି ମୋର ସମ୍ମାନ ବହୁଗୁଣିତ ହୋଇଯାଇଥିଲା । କୃଷ୍ଣାଙ୍କ ଆଭିଜାତ୍ୟ ଓ ସ୍ୱାଭିମାନହିଁ ମୋତେ ପ୍ରତି ମୁହୂର୍ତ୍ତରେ ସଚେତନ କରିଦେଇଛି ଯେ, ହତାଶାଠାରୁ ସଂସ୍କାର ବଡ଼ । ଅପ୍ରାପ୍ତିଜନିତ ଅତୃପ୍ତି ପାଇଁ ସେ କୌଣସି ଦିନ ତାଙ୍କର ଜନ୍ମାର୍ଜିତ ସଂସ୍କାରକୁ ବଳି ଦେଇ ନାହାନ୍ତି ।

ମୋ ଭଉଣୀ ସୁଭଦ୍ରା ସେତେବେଳକୁ ଷୋଡ଼ଶ ବର୍ଷରେ ପଦାର୍ପଣ କରିଥାଏ । ଲାବଣ୍ୟ ଓ ସୌନ୍ଦର୍ଯ୍ୟ, ଲାଳିତ୍ୟ ଓ ମାଧୁର୍ଯ୍ୟ, ନମ୍ରତା ଓ କମନୀୟତାର ସେ ଏକ ମଧୁର ସମନ୍ୱୟ । ବଡ଼ ଲଜ୍ୟାଶୀଳା ଓ ବଡ଼ ନମ୍ର, ଧୀର ତା'ର ସ୍ୱଭାବ । ଆଶୈଶବ ତା'ର ପାର୍ଥଙ୍କ ପ୍ରତି ଦୁର୍ବଳତା ଥିବା ମୁଁ ଲକ୍ଷ୍ୟ କରି ଆସିଥିଲି । ଅତୀତରେ ଲାକ୍ଷାଗୃହ ଦାହର ସମ୍ବାଦ ପାଇବା ପରେ ସେ ବେଶୀ ମର୍ମାହତ ହୋଇଥିଲା । ପାଞ୍ଚାଳୀ ସ୍ୱୟଂବର ପରେ ପାଣ୍ଡବଗଣ ଷଡ଼ଯନ୍ତ୍ରର ଯନ୍ତାରୁ ମୁକୁଳି ପାରିଛନ୍ତି ଓ ଜୀବିତ ଅଛନ୍ତି ଜାଣି ତା' ଆଖି ଦୁଇଟିରେ ଆନନ୍ଦାବେଗ ଝଲମଲ ହୋଇଉଠିଥିଲା । କିନ୍ତୁ ପାର୍ଥ ହିଁ ସ୍ୱୟଂବରର ସର୍ତ୍ତ ଜିଣିଛନ୍ତି ଶୁଣିବାମାତ୍ରେ ସବୁରି ଅଲକ୍ଷ୍ୟରେ ମୁହୂର୍ତ୍ତକ ପାଇଁ ତା' ଚକ୍ଷୁ ଦିଓଟିରେ ବିଷର୍ଣ୍ଣ ବେଦନାର ମୁଦ୍ରାଙ୍କ ସ୍ପଷ୍ଟ ହୋଇ ଉଠିଥିଲା । କିନ୍ତୁ ତା' ବି କ୍ଷଣକ ପାଇଁ । ପୁଣି ସେ ନିଜକୁ ସମ୍ବରଣ କରିନେଇଥିଲା । ଏସବୁ କ୍ରିୟା ପ୍ରତିକ୍ରିୟାର ସୂକ୍ଷ୍ମତା କିନ୍ତୁ ମୋ ଦୃଷ୍ଟିରୁ ବାଦ୍ ଯାଇ ନଥିଲା ।

ଜ୍ୟେଷ୍ଠଭ୍ରାତା ବଳରାମଙ୍କର ମଧ୍ୟ ସୁଭଦ୍ରା ଅତ୍ୟନ୍ତ ଆଦରଣୀୟା ଥିଲା ।

ଜ୍ୟେଷ୍ଠଭ୍ରାତା ବଡ଼ ଅବୋଧ । କେମିତି କେଜାଣି ସେ ମନେ ମନେ ସ୍ଥିର କରିଥିଲେ କୁରୁପତି ଦୁର୍ଯ୍ୟୋଧନ ହାତରେ ସୁଭଦ୍ରା ଭଳି ଅଲ୍ୟଳୀ ଭଉଣୀଟିକୁ ଟେକିଦେବାପାଇଁ । ତାଙ୍କର ଯୁକ୍ତି ଥିଲା କୁରୁପତି ଅମାପ ଐଶ୍ୱର୍ଯ୍ୟୀ ଅଧିକାରୀ, ବଳ, ବୀର୍ଯ୍ୟ, ସ୍ୱାଭିମାନ ସବୁଥିରେ ଅଦ୍ୱିତୀୟ; କିନ୍ତୁ ହୃଦୟର ଐଶ୍ୱର୍ଯ୍ୟରେ ଯେ କୁରୁପତି କେତେ ଦୀନ ସେ କଥା ବିଚାର କରି ନଥିଲେ ଭ୍ରାତା ବଳରାମ । ଭୁମନ୍ୟୁ ନନ୍ଦିନୀ ଭାନୁମତୀ ଯାହାଙ୍କ ହସ୍ତରେ ଶଙ୍ଖନିଧି ଓ ପଦ୍ମନିଧି ବିରାଜିତ । ତାଙ୍କ ଭଳି ଏକ ସ୍ୱଭାବ ସରଳା କନ୍ୟାର ପାଣିଗ୍ରହଣ ପରେ ମଧ୍ୟ ଦୁର୍ଯ୍ୟୋଧନଙ୍କର କୌଣସି ପରିବର୍ତ୍ତନ ହେଲା ନାହିଁ । ଅପର ପକ୍ଷରେ କୌରବଗଣ ନାରୀକୁ ଉପଯୁକ୍ତ ମର୍ଯ୍ୟାଦା ଦେଇ ଜାଣନ୍ତି ନାହିଁ । ପୁଣି କୁରୁପତିର ଯେଉଁ ଉଦ୍ଧତ, ଅହଂକାରୀ, କ୍ରୂର ସ୍ୱଭାବ ତା' ସହିତ ସୁଭଦ୍ରାର ମାନସିକ ସ୍ତରରେ ବୁଝାମଣା ହେବା ସମ୍ଭବ କି ? ତେବେ ଜାଣିଶୁଣି ସାରାଜୀବନ ପାଇଁ ସୁଭଦ୍ରାକୁ ମାନସିକ ଅନ୍ତର୍ଦାହ ଭିତରକୁ ଠେଲିଦେବାକୁ ମୁଁ ଚାହିଁଲି ନାହିଁ । କାରଣ ସୁଭଦ୍ରାର ଯେଉଁ ପ୍ରକୃତି ତା'ର ନ୍ୟାଯ୍ୟ ଦାବୀକୁ ସୁଦ୍ଧା ସେ ଦୃଢଭାବେ ଉପସ୍ଥାପନ କରିପାରେ ନାହିଁ । ବଡ଼ଭାଇ ସୁଭଦ୍ରାକୁ ହସ୍ତିନାକୁ ବଧୂବେଶରେ ପଠାଇବା ପାଇଁ ଯେତେ ସ୍ୱପ୍ନ ଦେଖୁଥା'ନ୍ତୁ ସେ ସ୍ୱପ୍ନକୁ ବ୍ୟର୍ଥ କରିଦେବା ପାଇଁ ମୁଁ ଆପ୍ରାଣ ଉଦ୍ୟମ କରିଥିଲି । ରୁକ୍ମିଣୀଙ୍କ ବ୍ୟତୀତ ଆଉ କେହି ଏହାର ସାକ୍ଷୀ ନଥିଲେ । ଅର୍ଜୁନଙ୍କର ଦ୍ୱାଦଶ ବର୍ଷର ତୀର୍ଥାଟନ ପର୍ଯ୍ୟାୟ ସମାପ୍ତ ହେଉଥିଲା । ସେହି ବର୍ଷଟି ଦ୍ୱିତୀୟ ପାଣ୍ଡବ ଭୀମସେନଙ୍କ ସହ ପାଞ୍ଚାଳୀଙ୍କର ମିଳନ ସମ୍ବତ୍ସର । ତାପର ବର୍ଷ ସଖା ଅର୍ଜୁନଙ୍କର ମିଳନ ଲଗ୍ନ ଉପସ୍ଥିତ ହେବ ପାଣ୍ଡବ ପ୍ରେୟସୀଙ୍କ ସହ । ଦ୍ୱାଦଶ ବର୍ଷର ଦୀର୍ଘ ବିଚ୍ଛେଦ ପରେ ପ୍ରଚଣ୍ଡ ପ୍ରେମାବେଗରେ ପାଞ୍ଚାଳୀ ନିଶ୍ଚିତ ସଖାଙ୍କୁ ପ୍ରଣୟ ପାଶରେ ଶୃଙ୍ଖଳିତ କରିପାରିବେ ଓ ସଖାମଧ୍ୟ ଏହି ଅଲଭ୍ୟ ଶୃଙ୍ଖଳରୁ ମୁକ୍ତି ଚାହିଁବେ ନାହିଁ । ପାଣ୍ଡବ ହିଁ ନାରୀକୁ ଉପଯୁକ୍ତ ମର୍ଯ୍ୟାଦା ଦିଅନ୍ତି । ପାଣ୍ଡବଙ୍କ ଇନ୍ଦ୍ରପ୍ରସ୍ଥରେ ସୁଭଦ୍ରାର ସମଗ୍ର ଜୀବନ ନିରାପଦ ଓ ସୁରକ୍ଷିତ । ଆଉ ରହିଲା ସପତ୍ନୀ ପ୍ରସଂଗ ? ଦ୍ରୌପଦୀଙ୍କ ଭଳି ଜଣେ ଅସାଧାରଣ ନାରୀ ହିଁ ହେବେ ସୁଭଦ୍ରାର ସପତ୍ନୀ । ଜଣେ କ୍ଷତ୍ରିୟ କନ୍ୟାଭାବେ ସପତ୍ନୀ ସମ୍ଭାବନା ସଂପର୍କରେ ସୁଭଦ୍ରା ପୂର୍ବରୁ ସଚେତନ ଥିବ ଏବଂ ଉଦାର ହୃଦୟରେ ସପତ୍ନୀକୁ ସହିବାର ଶିକ୍ଷା ମଧ୍ୟ ସେ ପାଇଥିବ । ସୁତରାଂ ମୁଁ ଅଧିକ କାଳ ବିଳମ୍ବ ନକରି ସୌରାଷ୍ଟ୍ର ଅରଣ୍ୟ ଉଦ୍ଦେଶ୍ୟରେ ଏକାକୀ ଯାତ୍ରା କଲି । ଉଦ୍ଦେଶ୍ୟ ଥିଲା ପାର୍ଥଙ୍କ ସାକ୍ଷାତଲାଭ କରିବା । ଶୁଣିଥିଲି ସୌରାଷ୍ଟ୍ର ଅରଣ୍ୟ ପଥ ଦେଇ ସେ ଦ୍ୱାରକା ଆସୁଛନ୍ତି ।

ଏକ ପକ୍ଷରେ ସୁଭଦ୍ରାର ନିରାପତ୍ତା ଅନ୍ୟ ପକ୍ଷରେ ପାଞ୍ଚାଳୀ ଓ ପାର୍ଥଙ୍କର ପରସ୍ପର ପ୍ରତି ପ୍ରେମାକର୍ଷଣର ମୋହକୁ ହ୍ରାସ କରିବା ନିମିତ୍ତ ମୁଁ ବଦ୍ଧ ପରିକର ହୋଇ ପାର୍ଥଙ୍କୁ ସ୍ୱାଗତ କରିବା ପାଇଁ ସୌରାଷ୍ଟ୍ର ଅରଣ୍ୟର ଏକ ପାର୍ବତ୍ୟ ଉପତ୍ୟକାରେ ଅପେକ୍ଷା କରି ରହିଲି । ଅପେକ୍ଷାର କ୍ଲାନ୍ତିକୁ ନିଶ୍ଚିହ୍ନ କରିବାପାଇଁ ଏକ ଅଭିନବ ଉପାୟ ମଧ୍ୟ ଚିନ୍ତାକଲି । ଛଦ୍ମ ରୂପ

ପରିଗ୍ରହରେ ମୁଁ ଆବାଲ୍ୟରୁ ଧୂରନ୍ଧର ଥିଲି । ଗୋପଭୂମିରେ ଥିବା ସମୟରେ ମାନିନୀ ଶ୍ରୀରାଧାଙ୍କ ମାନଭଞ୍ଜନ ନିମିତ୍ତ କେତେବେଳେ ନାପିତୁଣୀ ବେଶ ତ କେତେବେଳେ କେଳୁଣୀ ବେଶ, ପୁଣି କେତେବେଳେ କାଚରାଣୀ ବେଶ ତ କେତେବେଳେ ମାଲ୍ୟାଣୀ ବେଶରେ ମୁଁ ବିଭିନ୍ନ ପସରା ସହ ରାଇକିଶୋରୀଙ୍କ ବାସଭବନରେ ପହଞ୍ଚି ଯାଉଥିଲି । ସେଦିନ ବି ସେଇଭଳି ଏକ ଅଭିନବ, ଅଦ୍‌ଭୁତ ଛଦ୍ମବେଶ ଗ୍ରହଣ କଲି - ନବଗୁଞ୍ଜର ବେଶ । ନଅଗୋଟି ଜୀବଙ୍କର ଅଂଗ ପ୍ରତ୍ୟଙ୍ଗର ସମାହାରରେ ବସି ବସି ନିଜକୁ ସଜାଇଲି । ପ୍ରଥମେ ମୁଖ ମଣ୍ଡଳକୁ ଏକ ସୁନ୍ଦରୀ ରମଣୀର ମୁଖମଣ୍ଡଳରେ ପରିଣତ କରି ମସ୍ତକରୁ ଲମ୍ବାଇ ଦେଲି ଏକ ସୁଦୀର୍ଘ ବେଣୀ, ମସ୍ତକ ଉପରେ କୁକୁଡ଼ାର ଚୂଳ, ସିଂହକଟୀ ସଦୃଶ କ୍ଷୀଣ ମଧ୍ୟମ, ବୃଷଭର ପୃଷ୍ଠ, ସର୍ପର ଲାଞ୍ଜ, ମନୁଷ୍ୟ ହସ୍ତ ସୁଲଭ ଏକ ହସ୍ତରେ ଲୀଳାପଦ୍ମଟିଏ ଧାରଣ କଲି ଆଉ ତିନୋଟି ଗୋଡ଼ରୁ ଗୋଟିଏ ହସ୍ତୀର, ଗୋଟିଏ ଅଶ୍ୱର ଓ ଅନ୍ୟଟି ବ୍ୟାଘ୍ରର ।

ପର୍ବତ ଶୀର୍ଷରୁ ସମତଳ ପ୍ରଦେଶ ଯାଏ ଲମ୍ବିଆସିଥାଏ ସବୁଜ ତରୁଶ୍ରେଣୀ । ବୃକ୍ଷ ଶାଖାରେ ଶାଖାରେ ଅସଂଖ୍ୟ ନାମହୀନ ପକ୍ଷୀଙ୍କର ମଧୁର କାକଳୀ । ଘଞ୍ଚ ଛାୟାଛନ୍ନ ଅରଣ୍ୟ ଭିତରେ ଏକ ସ୍ୱଚ୍ଛ ଜଳାଶୟ ତୀରରେ ମୁଁ ଅପେକ୍ଷା କରିରହିଲି ସଖା ଅର୍ଜୁନଙ୍କୁ । ଘୋଡ଼ା ଟାପୁର ଶବ୍ଦ ଶୁଭିବାମାତ୍ରେ ମୁଁ ଅଧିକ ସଜାଗ ହୋଇ ଜଳାଶୟ ତୀରେ ତୀରେ ଭ୍ରମଣ କରିବାକୁ ଲାଗିଲି । ଅଶ୍ୱାରୋହୀ ଅର୍ଜୁନ ସେଠାରେ ପହଞ୍ଚିଗଲେ । ମୋ ଉପରେ ଦୃଷ୍ଟି ପଡ଼ିବା ମାତ୍ରେ ସେ ଦ୍ରୁତଗତିରେ ଧାବମାନ ଅଶ୍ୱର ଲଗାମ ଟାଣିଧରି ତା'ର ଗତିରୋଧ କରି ଅଶ୍ୱପୃଷ୍ଠରୁ ଅବତରଣ କଲେ ଓ କିଛି ସମୟ ବିସ୍ମୟ ଓ କୌତୁହଳରେ ମୋତେ ଚାହିଁ ରହିଲେ । ତାପରେ ଧୂଳିରେ ଲୋଟିଯାଇ ମୋ ପାଦପାଖରେ ମୁଣ୍ଡଟି ରଖି କହିଲେ - 'ଚିହ୍ନିଛି । ଚିହ୍ନିଛି ସଖା ! ଯେତେ ଅଦ୍‌ଭୁତ ବେଶ ଧାରଣ କଲେବି ତୁମ ରଂଗା ଅଧରରେ ଲାଖି ରହିଥିବା ଏଇ ଭୁବନ ମୋହନ ହସ ଏବଂ ତୁମର କୃଷ୍ଣ ଭ୍ରମର ସଦୃଶ ନୟନ ଯୁଗଳର ଗଭୀର ଦୃଷ୍ଟି ଯାହା ବିଶ୍ୱ ଜନମନର ଭାବ ଗ୍ରହଣରେ ଅକୃପଣ ତାହାହିଁ .... ତାହାହିଁ ଜଣେଇ ଦେବ ଯେ ତୁମେ ହିଁ ତ୍ରିଭୁବନ ପାଳକ ମୋର ପ୍ରିୟ ସଖା ବାସୁଦେବ !'

ତାଙ୍କୁ ତଳୁ ଉଠେଇ ଆଲିଙ୍ଗନ କଲି ଓ ମୋର ଛଦ୍ମବେଶକୁ ଫିଙ୍ଗି ଦେଇ କହିଲି - 'ଆସ ସଖା ! କିଛି ଦିନ ଦ୍ୱାରକାରେ ମୋର ଆତିଥ୍ୟ ଗ୍ରହଣ କର । ତାପରେ ଇନ୍ଦ୍ରପ୍ରସ୍ଥର ପଟ୍ଟମହିଷୀଙ୍କ ପାଖକୁ ଫେରିଯିବ ।'

ପାର୍ଥ ଅଶ୍ୱଚାଳନା କରିବାକୁ ଆରମ୍ଭ କରିବାମାତ୍ରେ ମୁଁ ତାଙ୍କ ପଛରେ ବସି କହିଲି - 'ସଖା ! ଆମେ ରୈବତକ ଦେଇ ଯାତ୍ରା କରିବା । ବର୍ତ୍ତମାନ ସେଠାରେ ଏକ ଉତ୍ସବ ମୁଖର ପରିବେଶ । ସେହି ଆନନ୍ଦମତ୍ତ ପରିବେଶ ତୁମକୁ ଖୁବ୍ ଭଲ ଲାଗିବ ।'

ଏକ ନାଟକୀୟ ପରିବେଶରେ ସୁଭଦ୍ରା ସହ ପାର୍ଥଙ୍କର ସାକ୍ଷାତ ପର୍ବ ଅନୁଷ୍ଠିତ ହୋଇଥିଲା । ରୈବତକରେ ଥିବା ଦେବୀଙ୍କୁ ଆରାଧନା ଓ ପୂଜା କରିବା ନିମିତ୍ତ ସୁଭଦ୍ରା ସ୍ୱହସ୍ତରେ ଏକ ରକ୍ତ ପଦ୍ମର ମାଳା ପ୍ରସ୍ତୁତ କରି ସ୍ୱର୍ଣ୍ଣଥାଳିରେ ଧୂପ, ଦୀପ, ଅଗୁରୁ, ଚନ୍ଦନ, ଚୁଆ ସହ ସେହି ମାଳାଟି ଧରି ରୁକ୍ମିଣୀ ତଥା ତା'ର ଅନ୍ୟାନ୍ୟ ସହଚରୀଙ୍କ ସହ ଦେବୀ ମନ୍ଦିର ଉଦ୍ଦେଶ୍ୟରେ ଯାଉଥିଲା । ପର୍ବତର ମଧ୍ୟ ଭାଗରେ ମନ୍ଦିର, ପର୍ବତର ପାଦ ଦେଶରେ ସ୍ୱଛନୀରା ପୁଷ୍କରିଣୀ ତୀରରୁ ମନ୍ଦିର ପର୍ଯ୍ୟନ୍ତ ପଥର ଉଭୟ ପାର୍ଶ୍ୱ ସୁସଜ୍ଜିତ ହୋଇଥାଏ । ଅସ୍ଥାୟୀ ବିପ୍‌ପଣୀର ସମାରୋହରେ ତାହା ଗହ ଗହ ହୋଇ ଉଠୁଥାଏ । ସୁଭଦ୍ରାଙ୍କୁ ସେଦିନ ରୁକ୍ମିଣୀ ଅପୂର୍ବ ବେଶରେ ସଜାଇଥା'ନ୍ତି । ତା'ର ସୁଗୌର ତନୁରେ ଘନ ସବୁଜ ବର୍ଣ୍ଣର ପଟ୍ଟବସ୍ତ୍ର, ସୁବିନ୍ୟସ୍ତ ବେଣୀରେ ମୁକ୍ତାଜାଲି ସହ କୁନ୍ଦକଳି, କଣ୍ଠରେ ପଦ୍ମରାଗ ମଣିଯୁକ୍ତ ସୁବର୍ଣ୍ଣ ମାଳା, ମୃଣାଳ କୋମଳ ହସ୍ତରେ କନକ କେୟୂର, କଙ୍କଣ, ଚମ୍ପକ କଳି ସଦୃଶ ଅଙ୍ଗୁଷ୍ଠିରେ ହୀରକ ମୁଦ୍ରିକା, କର୍ଣ୍ଣରେ ମଣି କୁଣ୍ଡଳ, ଅଲକ୍ତକ ରସରଂଞ୍ଜିତ ଲୋହିତ ପଦ୍ମ ସଦୃଶ ପଦ ଯୁଗଳରେ ପ୍ରବାଳଖଚିତ କନକ ନୁପୁର, ନମ୍ରନତ ମୀନ ନୟନରେ କଜ୍ଜ୍ୱଳ ରେଖା ଯାହା ଯେ କୌଣସି ବୀରର ହୃଦୟକୁ ସୁଦ୍ଧା ମୁହୂର୍ତ୍ତକରେ ବିଦ୍ଧ କରି ରକ୍ତାକ୍ତ କରିଦେବ, ଲଲାଟରେ କସ୍ତୁରୀ ତିଳକ ଦୁଇଟି ସୁବଙ୍କିମ ଭ୍ରୁର ମଧ୍ୟ ଭାଗରେ ଏପରି ଭାବରେ ଅଂକିତ ହୋଇଥାଏ ଯେମିତି କନ୍ଦର୍ପର ପୁଷ୍ପଧନୁରୁ ନିଷ୍କାସିତ ହୋଇଥିବା ଏକ ଅମୋଘ ବାଣ ।

ମୁଁ ପାର୍ଥଙ୍କୁ ପୁଷ୍କରିଣୀ ତୀରରେ ବସାଇ ସାତ୍ୟକିଙ୍କ ସହ ଏକ ପଣ୍ୟଜୀବୀ ନିକଟକୁ ଚାଲିଗଲି । ସୁଭଦ୍ରା ଅନ୍ୟାନ୍ୟ ରମଣୀଙ୍କ ସହ ପୁଷ୍କରିଣୀରେ ପଦ ପ୍ରକ୍ଷାଳନ କରିବା ପାଇଁ ପାବଛରେ ସ୍ୱର୍ଣ୍ଣ ଥାଳି ରଖିବା ମାତ୍ରେ ଜଳରେ ସନ୍ତରଣ କରୁଥିବା ଏକ ହଂସ ସେଇ ରକ୍ତ ପଦ୍ମ ମାଳାଟିକୁ ଚଞ୍ଚୁରେ ଧରି ଉଡ଼ିବାକୁ ଲାଗିଲା ଓ ତା ପଛେ ପଛେ ସୁଭଦ୍ରା ମଧ୍ୟ ତା'ର ପଶ୍ଚାତ୍ ଧାବନ କଲେ । ଅର୍ଜୁନ ଯେଉଁ ଛାୟାଛନ୍ନ ସହକାର ଦ୍ରୁମ ତଳେ କ୍ଳାନ୍ତ ଭାବେ ବସି ରହିଥିଲେ ଠିକ୍ ସେଇଠାରେ ହଂସର ଚଞ୍ଚୁରୁ ପଦ୍ମମାଳାଟି ଖସି ପଡ଼ି ଅର୍ଜୁନଙ୍କ କଣ୍ଠ ଦେଶ ମଣ୍ଡନ କଲା । ଏ ଦୃଶ୍ୟ ଦେଖିବା ମାତ୍ରେ ସୁଭଦ୍ରା ଆଉ ପାଦେବି ଆଗେଇ ପାରିଲା ନାହିଁ । ଘଟଣାର ଏ ଆକସ୍ମିକତାରେ ଅର୍ଜୁନ ମଧ୍ୟ ଅଭିଭୂତ ହୋଇ ପଡ଼ିଥିଲେ । କେଉଁ ଦୂର ଅତୀତରେ ଏ ଦୁହେଁ ପରସ୍ପରକୁ ଭେଟିଥିଲେ । ସେତେବେଳେ ଅର୍ଜୁନଙ୍କ ଅନ୍ତରରେ ପ୍ରେମାକର୍ଷଣର ଲେଶମାତ୍ର ଅବଶେଷ ହୁଏତ ନଥିଲା; କିନ୍ତୁ ମୋର ଆଦରଣୀୟା ଭଉଣୀ ସୁଭଦ୍ରା ଅନ୍ତରରେ ଅର୍ଜୁନଙ୍କ ପ୍ରତି ଐକାନ୍ତିକ ପ୍ରୀତିର ଯେଉଁ ପ୍ରଦୀପଟି ଦିନେ ପ୍ରଜ୍ୱଳିତ ହୋଇଥିଲା ତାହା ପାଞ୍ଚାଳୀ ସ୍ୱୟଂବର ପରେ ନିର୍ବାପିତ ହୋଇ ସୁଭଦ୍ରାର ଅନ୍ତରକୁ ଏକ ଅନୁକ୍ତ ବ୍ୟଥାର ଭାରରେ ଜର୍ଜର କରିଦେଇଥିଲା । ଅଭାବିତ ଭାବେ ଅର୍ଜୁନଙ୍କୁ ଏକାକୀ 'ଦେଖି ତା' ହୃଦୟରେ ଯେମିତି ଖଣ୍ଡ

ପ୍ରଳୟ ସୃଷ୍ଟି ହୋଇଥିଲା । ଆଉ ଅର୍ଜୁନ ? ତାଙ୍କର ମୁଗ୍ଧ ଚକିତ ଦୃଷ୍ଟି ସୁଭଦ୍ରା ଉପରେ ସ୍ଥିର ହୋଇ ଯାଇଥିଲା ନିଷ୍ପଲକ ଭାବେ । କିଛି ସମୟ ପରେ ଅର୍ଜୁନ ଫୁଲମାଳଟି ଧରି ଠିଆ ହେଲେ ଏବଂ କହିଲେ - 'ଦେବୀ ପୂଜାର ଯୋଗ୍ୟ ଏହି ମାଳଟି ମୋ ଭଳି ଅକିଞ୍ଚନ ଗଳାରେ ଲମ୍ବି ଅପବିତ୍ର ହୋଇଗଲା । ତେବେ ଅନୁମତି ଦେଲେ ଶର ସଂଯୋଜନା ମାଧ୍ୟମରେ ଏହି ପୁଷ୍କରିଣୀରୁ ଶୁଭ୍ର ଶତଦଳରେ ଏଇଭଳି ଏକ ଲୋଭନୀୟ ପୁଷ୍ପମାଲ୍ୟ ନିମିଷକରେ ମୁଁ ପ୍ରସ୍ତୁତ କରିପାରିବି ରୂପୋତ୍ତମା !'

ଅର୍ଜୁନ ଯେ ତାକୁ ଚିହ୍ନି ପାରିଲେ ନାହିଁ ! ସୁଭଦ୍ରାର ସ୍ୱର ଅଭିମାନ କ୍ଷୁବ୍ଧ ହୋଇଉଠିଲା -'ଜାଣେ ବିଦେଶୀ ! ଆପଣ ଅଦ୍ୱିତୀୟ, ଅବ୍ୟର୍ଥ ଶର ସଂଧାନୀ ! ପାଞ୍ଚାଳ ରାଜ ନନ୍ଦିନୀଙ୍କ ସ୍ୱୟଂବରରେ ସେ ପ୍ରମାଣ ଆର୍ଯ୍ୟାବର୍ତ୍ତ ପାଇ ସାରିଛି । ପାଞ୍ଚାଳୀଙ୍କ ଅନ୍ତରର ନିଭୃତତମ ପ୍ରଦେଶ କିଭଳି ଶରବିଦ୍ଧ ତା' ମୋତେ ଅବିଦିତ ନାହିଁ !'

- 'ଅର୍ଥାତ୍ ? ତୁମେ କ'ଣ ମୋତେ ଜାଣ ? ତୁମର ପରିଚୟ ??' - 'ଆର୍ଯ୍ୟବର୍ତ୍ତର ସର୍ବଶ୍ରେଷ୍ଠ ଧନୁର୍ଦ୍ଧର ଧନଞ୍ଜୟଙ୍କୁ କିଏ ନଜାଣେ ? ପୁଣି ମୋ ଭ୍ରାତା ବାସୁଦେବ ଅହରହ ଆପଣଙ୍କ ପ୍ରଶଂସାରେ ଶତମୁଖ । ମୁଁ ଆପଣଙ୍କୁ ଭୁଲିବି କିପରି ?'

ସଖା ବାସୁଦେବଙ୍କ ଭଗିନୀ ସୁଭଦ୍ରା ! ଅର୍ଜୁନ ଆନନ୍ଦରେ ଅଭିଭୂତ ହୋଇଗଲେ । ତାଙ୍କର ନିଷ୍ପଲକ ମୁଗ୍ଧ ଦୃଷ୍ଟିର ଭାଷା ପଢ଼ିବା ମାତ୍ରେ ସୁଭଦ୍ରାଙ୍କ ରକ୍ତ ଗୋଲାପ ସମ ଗଣ୍ଡ ଦୁଇଟି ଆହୁରି ଅଧିକ ରକ୍ତାଭ ହୋଇଉଠିଲା । ସେ ଅତିଶୟ ଶାନ୍ତ ଓ ଧିର ସ୍ୱରରେ କହିଲେ - 'ଦ୍ୱାଦଶ ବର୍ଷର ଏଇ ନିର୍ବାସନ, ତୀର୍ଥାଟନ, ପର୍ଯ୍ୟଟନ ମାଧ୍ୟମରେ ଆପଣ ବହୁ ରାଜକନ୍ୟାଙ୍କର ରାଜଭବନରେ ରାଜକୀୟ ଆତିଥ୍ୟ ଗ୍ରହଣ କରି ସେମାନଙ୍କ ଜୀବନକୁ ଧନ୍ୟ କରିଥିବେ । ଦ୍ୱାରକାରେ କିଛିଦିନ.....'

ସୁଭଦ୍ରା କଥାକୁ ସଂପୂର୍ଣ୍ଣ କରିବାକୁ ସୁଯୋଗ ନଦେଇ ପାର୍ଥ କହି ଉଠିଲେ - 'ରୂପୋତ୍ତମା ସୁଭଦ୍ରା ! ବହୁରାଜ୍ୟ ପରିକ୍ରମା କରିଛି; ମାତ୍ର ଦ୍ୱାରକା ମାଟି ସ୍ପର୍ଶ କରିବା ମାତ୍ରେ ରୂପ ଓ ଲାବଣ୍ୟ, ନମ୍ରତା ଓ କମନୀୟତା, ମାଧୂର୍ଯ୍ୟ ଓ ଲାଳିତ୍ୟ ସାରଲ୍ୟ ଓ କୋମଳତାର ଯେଉଁ ସମନ୍ୱିତ, ଅବିକୃତ ମୂର୍ତ୍ତିଟିକୁ ଦେଖିଛି ତାହାହିଁ ମୋଜୀବନର ସର୍ବଶ୍ରେଷ୍ଠ ଉପଲବ୍ଧି, ପରମ ଧ୍ୟେୟ ।'

ସୁଭଦ୍ରା ପଦଟିଏ ବି କହିପାରିଲା ନାହିଁ । ଆକଣ୍ଠ ଲଜ୍ୟାରେ ସେ ସ୍ଥିର ମୂର୍ତ୍ତିଟିଏ ଭଳି ଠିଆ ହୋଇ ରହିଲା, ତା'ର ସମଗ୍ର ତନୁ ସ୍ୱେଦରେ ଜର୍ଜର ହୋଇଉଠିଲା, କଅଁଳିଆ ଆମ୍ରପଲ୍ଲବ ସଦୃଶ ତା'ର ରକ୍ତାଧର ପ୍ରକଂପିତ ହୋଇଉଠିଲା ।

ଅର୍ଜ୍ଜୁନ କହିଲେ - 'ଏମିତି ଅନେକ ଅଲଭ୍ୟ ବସ୍ତୁ ଥାଏ ସୁନ୍ଦରୀ ଯାହାକୁ ବାହୁ ବଳରେ ଜୟ କରାଯାଇପାରେନା ବରଂ ସର୍ବସ୍ୱାନ୍ତ ଭାବେ ନତଜାନୁ ହୋଇ ପ୍ରାର୍ଥନା କରିବାକୁ ପଡ଼େ । ଏମିତି ଅନେକ ଯୋଦ୍ଧା ଅଛନ୍ତି ଅସ୍ତ୍ର ଧାରଣ ନକରି ସେ ହୃଦୟ ଭଳି ଅମୂଲ୍ୟ ବସ୍ତୁକୁବି ଜୟ କରି ନେଇ ପାରନ୍ତି । ଯେତେ ସଜାଗ ଥିଲେବି ଦେହ ଦେଉଳର ରୁଦ୍ଧଦ୍ୱାର ଭିତରୁ ହୃଦୟଟିକୁ ହରଣ କରିନେଇପାରନ୍ତି ।' ଜାଣ ? ଜାଣ ସେ କିଏ ??'

ମଧୁମାଳତୀ କୁଞ୍ଜରୁ କୋକିଳ ପକ୍ଷୀ ଗାଇ ଉଠିଲା, ଶ୍ୱେତମାଳତୀ ଧିର ପବନରେ ଦୋହଲି ଏଦୁହିଁଙ୍କ ମସ୍ତକରେ ଝରି ପଡ଼ିଲା, ଭ୍ରମର ତା'ର ଗୁଞ୍ଜନ ମାଧ୍ୟମରେ ଏମାନଙ୍କ କାନ ପାଖରେ ଯେମିତି କହିଗଲା ମୁଁ ଜାଣେ ସେ କିଏ । ସେତିକିବେଳେ ରୁକ୍ମିଣୀ ଓ ସହଚରୀ ମାନଙ୍କ ଆସିବା ଶବ୍ଦ ଶୁଣି ସୁଭଦ୍ରା ଲଜ୍ଜାବଶତଃ ଦ୍ରୁତଗତିରେ ଯାଇ କୁଞ୍ଜ ଅନ୍ତରାଳରେ ମୁହୂର୍ତ୍ତକରେ ନିଶ୍ଚିହ୍ନ ହୋଇଗଲେ । ହାତରେ ଧରିଥିବା ରକ୍ତପଦ୍ମ ମାଳଟିକୁ ଗଳାଇ ଲମ୍ୱେଇଦେଇ ପାର୍ଥ ନିଷ୍ପଲକ ଦୃଷ୍ଟିରେ ତାଙ୍କ ଯିବା ବାଟକୁ ଚାହିଁ ରହିଥିଲେ ମୁଁ ତାଙ୍କ କାନ୍ଧରେ ହାତରଖିଲା ପରେ ବି ତାଙ୍କର ଧ୍ୟାନଭଂଗ ହେଲାନାହିଁ । ମୁଁ କହିଲି - 'ସଖା ! କ'ଣ ଖୋଜୁଛ ? କ'ଣ ତୁମର ହଜିଛି ?'

ଅର୍ଜ୍ଜୁନ ମୋ ସ୍ୱରରେ ଚମକି ପଡ଼ି ମୋତେ ଚାହିଁ ପ୍ରକୃତିସ୍ଥ ହେବାପରେ କହିଲେ - 'ହଁ ସଖା ! ପ୍ରକୃତରେ ମୁଁ ହଜି ଯାଇଛି । କିନ୍ତୁ ଏଇ ହରାଇବାର ସୁଖ ଟିକକ ପୃଥିବୀର ସର୍ବଶ୍ରେଷ୍ଠ ପ୍ରାପ୍ତି ଠାରୁ ସୁଦ୍ଧା ବହୁତ ବେଶୀ !'

ମୁଁ ତାଙ୍କୁ ଅଭୟ ଦେବାଭଳି କହିଲି - 'ଖୋଜି ପାଇବାକୁ ଚେଷ୍ଟା କରିବ ନାହିଁ ?'

ସେ ମୋ ହାତକୁ ମୁଠେଇ ଧରିଲେ କେବଳ ।

ତାପରର ଘଟଣା ଅତି ସଂକ୍ଷିପ୍ତ । ରୈବତକ ପର୍ବତର ସମତଳ ଭୂମିରେ ଥିବା ଶାଳବନ ଭିତରେ କିମ୍ବା ପାର୍ବତ୍ୟ ଉପତ୍ୟକାରୁ ଝରି ଆସୁଥିବା ଗିରି ନିର୍ଝର କୂଳରେ ଅର୍ଜ୍ଜୁନ ଓ ସୁଭଦ୍ରାଙ୍କର ବିଶ୍ରମ୍ଭାଳାପରେ ପରୋକ୍ଷ ସାକ୍ଷୀ ଥିଲୁ ମୁଁ ଓ ରୁକ୍ମିଣୀ । ଜ୍ୟେଷ୍ଠଭ୍ରାତା ଦୁର୍ଯ୍ୟୋଧନଙ୍କ ସହ ସୁଭଦ୍ରାର ବିବାହ ପ୍ରସ୍ତାବକୁ ତ୍ୱରାନ୍ୱିତ କରିବାରେ ତତ୍ପର ଥିଲେ । ମୁଁ ବଡ଼ ଅସ୍ଥିରତା ଅନୁଭବ କରୁଥିଲି । ପାର୍ଥଙ୍କର ଇନ୍ଦ୍ରପ୍ରସ୍ଥ ଫେରି ଯିବାର ସମୟ ନିକଟ ହୋଇ ଆସୁଥିଲା । ପାର୍ଥଙ୍କୁ କେବଳ ସୂଚନା ଦେଇଥିଲି କୌଣସି ନାରୀକୁ ଯଦି ଦ୍ୱାରକାରୁ କେହି ଅପହରଣ କରେ, ତେବେ ଦ୍ୱାରକା ଦରବାରର ନିୟମ ଅନୁଯାୟୀ ଅପହରଣକାରୀକୁ କଠୋର ଶାସ୍ତି ଦିଆଯିବାର ବ୍ୟବସ୍ଥା ଅଛି । କାରଣ ଦ୍ୱାରକାରେ ନାରୀର ମର୍ଯ୍ୟାଦା ସୁରକ୍ଷିତ । ଦ୍ୱାରକାର ରମଣୀଗଣ ଶସ୍ତ୍ର, ଶାସ୍ତ୍ର, ଅଶ୍ୱଚାଳନା ଓ ରଥ ଚାଳନା ସବୁ ବିଷୟରେ ପାରଙ୍ଗମ, ପୁରୁଷ ଠାରୁ କୌଣସି ଗୁଣରେ କମ୍ ନୁହନ୍ତି ।

ତା'ପରଦିନ ରୈବତକ ପର୍ବତରେ ଅନୁଷ୍ଠିତ ହେଉଥିବା ଉତ୍ସବ ଉଦ୍‌ଯାପିତ ହୋଇଯାଇଥିଲା । ମୁଁ ଦରବାରରେ ବସିଥିଲେ ସୁଦ୍ଧା ବଡ଼ ଅନ୍ୟମନସ୍କ ଥିଲି । ଜ୍ୟେଷ୍ଠଭ୍ରାତା ଉତ୍ସବର ସାଫଲ୍ୟ ସଂପର୍କରେ ପିତାଙ୍କୁ ବିବରଣୀ ଦେଉଥିଲେ । ଠିକ୍ ଏଇ ସମୟରେ ଗୁପ୍ତଚର 'ନିଶାନ୍ତ' ଆସି ଜଣାଇଲା 'ମହାଭାଗ !'

ତା' ସ୍ୱରର ଉଦ୍‌ବିଗ୍ନତା ଓ କାତରତାକୁ ଲକ୍ଷ୍ୟ କରି ଆମେ ସମସ୍ତେ ତାକୁ ଲେଉଟି ଚାହିଁଲୁ । ସେ ମୋତେ ଟିକେ ଚାହିଁ ଦେଇ ତାପରେ ତଳକୁ ମୁହଁ ପୋତି କଂପିତ କଣ୍ଠରେ କହିଲା - 'ରାଜକୁମାରୀ ସୁଭଦ୍ରା......'

- 'କ'ଣ ହୋଇଛି ରାଜକୁମାରୀ ସୁଭଦ୍ରାର ?'

ଜ୍ୟେଷ୍ଠଭ୍ରାତା ଉଦ୍‌ବିଗ୍ନ ହୋଇଉଠିଲେ । 'ରାଜକୁମାରୀ ସୁଭଦ୍ରାଙ୍କୁ କୁନ୍ତୀନନ୍ଦନ ଧନଞ୍ଜୟ ଅପହରଣ କରିନେଇଛନ୍ତି !'

ଏ ସଂବାଦ ଶ୍ରବଣରେ ସଭାକକ୍ଷରେ ଯେମିତି ବଜ୍ରପାତ ହେଲା । ଜ୍ୟେଷ୍ଠଭ୍ରାତାଙ୍କ କ୍ରୋଧ ଚରମ ହୋଇଉଠିଲା । ସେ ମୋତେ ଲକ୍ଷ୍ୟ କରି କହିଲେ - 'ତୁ ଚୁପ୍‌ଚାପ ବସିଛୁ ଯେ ? ପାର୍ଥର ଏଭଳି ଦୁଃସାହସ ? ଦ୍ୱାରକାନାରୀକୁ ଅପହରଣ କରିନେବାର ସାହସ ଅକ୍ଷମଣୀୟ କାହ୍ନୁ ! ସେ ପିଉସୀ ପୃଥାଙ୍କ ପୁତ୍ର ଭାବରେ ଆମର ଆତ୍ମୀୟ ବୋଲି ଏଭଳି ଆମର ସ୍ୱାଭିମାନ ଓ ସମ୍ମାନକୁ ଭୂଲୁଣ୍ଠିତ କରିବ ? ନାଃ - ମୁଁ ଯୁଦ୍ଧ ଯାତ୍ରା କରିବି ଓ ତାକୁ ଉଚିତ୍ ଶାସ୍ତି ଦେବି ।'

ପ୍ରକାଶ କରିବା ବାହୁଲ୍ୟ ଯେ, ବଡ଼ଭାଇଙ୍କର କଥାର ଯୌକ୍ତିକତା ଉପଲବ୍ଧି କରି ପ୍ରତ୍ୟେକ ତାଙ୍କୁ ସମର୍ଥନ ମଧ୍ୟ କଲେ । ମୁଁ ନିଶାନ୍ତକୁ ପାଖକୁ ଡାକି ପଚାରିଲି -'ତମେ ପ୍ରତ୍ୟକ୍ଷ ଦର୍ଶୀ ?'

ସେ ଉତ୍ସାହିତ ହୋଇ କହିଲା -'ହଁ ମହାଭାଗ ! ଉତ୍ସବ ଉଦ୍‌ଯାପିତ ହେବାପରେ ପୁରନାରୀଙ୍କ ଗହଣରେ ରାଜକନ୍ୟା ଆସୁଥିଲେ । ଆମର ଶିବିକା, ରଥ ସମସ୍ତ ପ୍ରସ୍ତୁତ ଥିଲା । ଦେବୀ ମନ୍ଦିରର ବହିଃ ପ୍ରାଙ୍ଗଣରେ ଧନଞ୍ଜୟ ରଥରେ ଯେମିତି କାହାକୁ ଅପେକ୍ଷା କରୁଥିଲେ । ସୁଭଦ୍ରା ସେଠାରେ ପହଞ୍ଚି ଅକସ୍ମାତ୍ ରଥ ଉପରକୁ ଉଠିଯାଇ ରଥର ଦଉଡ଼ି ନିଜହାତକୁ ନେଇ କ୍ଷିପ୍ର ଗତିରେ ରାଜ୍ୟର ବହିଃସୀମା ଆଡ଼କୁ ରଥ ଛୁଟାଇ ଦେଲେ ଓ ଧନଞ୍ଜୟ ଶସ୍ତ୍ରସଜ୍ଜିତ ହୋଇ ସଜାଗ ଭାବେ ବସି ରହିଲେ ।'

ମୁଁ ପ୍ରବଳ ଉତ୍ସାହରେ କହି ଉଠିଲି - ' ଦେଖ ଜ୍ୟେଷ୍ଠଭ୍ରାତା ! ନିଶାନ୍ତର କଥାକୁ ଅନୁଶୀଳନ କର । ପାର୍ଥ ସୁଭଦ୍ରାଙ୍କୁ ହରଣ କରିନାହାନ୍ତି । ମୋର ଯାହା ମନେ ହେଉଛି, ସୁଭଦ୍ରା

ସ୍ୱେଚ୍ଛାରେ ପାର୍ଥଙ୍କୁ ବରଣ କରିଛନ୍ତି । ଏଇ ଶୁଣ ! ରଥ ଚାଳନା ସୁଭଦ୍ରା କରୁଥିଲେ, ପାର୍ଥ ନୁହେଁ । ପାର୍ଥ କେବଳ ସୁଭଦ୍ରାଙ୍କ ଇଙ୍ଗିତକୁ ଅପେକ୍ଷା କରୁଥିଲେ । ସୁଭଦ୍ରା ଆମର ଏକମାତ୍ର ଆଦରଣୀୟା ଭଉଣୀ । ତା'ର ମନକଥା ଜାଣିବା ପରେ ପାର୍ଥଙ୍କ ସହ ଯୁଦ୍ଧ କରିବା ଆମ ପକ୍ଷେ ଆଦୌ ଉଚିତ ନୁହେଁ; ବରଂ ସୁଭଦ୍ରାର ଇଚ୍ଛାକୁ ସମ୍ମାନ କରିବା ପାଇଁ ଇନ୍ଦ୍ରପ୍ରସ୍ଥ ଯାଇ ମହାରାଜ ଯୁଧିଷ୍ଠିରଙ୍କ ନିକଟରେ ଏ ଦୁହିଁଙ୍କ ବିବାହ ପ୍ରସଙ୍ଗରେ ଆଲୋଚନା କରିବା ଆମର କର୍ତ୍ତବ୍ୟ !'

ତାହାହିଁ ହୋଇଥିଲା । ଏକ ବାକ୍ୟରେ ସମସ୍ତେ ମୋ ସହ ଏକମତ ହୋଇଥିଲେ । ଏକାକାର ହୋଇଥିଲେ । ଜ୍ୟେଷ୍ଠଭ୍ରାତା ବଳରାମ କ୍ଷଣକୋପୀ ସତ; ମାତ୍ର ମୁହୂର୍ତ୍ତକରେ ସକଳ କ୍ରୋଧକୁ ବିସ୍ମୃତ ହୋଇ କ୍ଷମାଶୀଳ ହୋଇ ଯେଉଁ ଉଚ୍ଚ ହୃଦୟବତ୍ତାର ପରିଚୟ ଦିଅନ୍ତି, ତା' ମଧ୍ୟ ବିରଳ ଦୃଷ୍ଟାନ୍ତ । ଜ୍ୟେଷ୍ଠଭ୍ରାତା ମୋ ହାତ ଧରି ଅନୁନୟ କଲାଭଳି କହିଲେ - 'ଆରେ କାହ୍ନୁ ! ଧର୍ମରାଜଙ୍କ ପାଖକୁ ଆମେ ପରେ ସମ୍ବାଦ ଦେବା । ବର୍ତ୍ତମାନ ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ପାର୍ଥ ଓ ସୁଭଦ୍ରାକୁ ଦ୍ୱାରକା ଫେରାଇ ଆଣିବା । ସସମ୍ମାନେ ଡାକି ଆଣିବା । ପିଲା ଦି'ଟା ବଣ ଜଂଗଲରେ ରଥ ଚାଳନା କରି ଆମ ଭୟରେ କେଉଁଠି ଆଶ୍ରୟ ନେବେ କୁଆଡ଼େ ଯିବେ ତା'ର ଠିକଣା ନାହିଁ । ଏଭଳି ଅଭାବିତ ଭାବେ ସେ ଦୁହେଁ ଇନ୍ଦ୍ରପ୍ରସ୍ଥରେ ପହଞ୍ଚିଲେ ଯୁଧିଷ୍ଠିର ଓ ପିଉସୀ ପୃଥା ଭାବିବେ କ'ଣ ? ନା - ନା - ତୁ ନିଜେ ଯାଇ ସେମାନଙ୍କୁ ଏଠିକି ନେଇଆ - ।'

ଜ୍ୟେଷ୍ଠଭ୍ରାତାଙ୍କର ବ୍ୟସ୍ତତା ଦେଖି ମୁଁ ହାସ୍ୟ ସମ୍ବରଣ କରି ପାରିଲି ନାହିଁ । ସାତ୍ୟକୀ, ଦାରୁକ, ନିଶାନ୍ତ - ଏମାନେ ମଧ୍ୟ ପରସ୍ପର ସହ ଦୃଷ୍ଟି ବିନିମୟ କରି ହସିବାକୁ ଲାଗିଲେ ।

ସୁଭଦ୍ରାର ବିବାହ ଉପଲକ୍ଷେ ଦ୍ୱାରକା ଅନେକ ଦିନ ପର୍ଯ୍ୟନ୍ତ ଉତ୍ସବମୁଖର ହୋଇ ରହିଲା । ନିଶାନ୍ତକୁ ସ୍ୱତନ୍ତ୍ର ଦୂତ ଭାବରେ ଏହି ସଂବାଦ ଦେବା ପାଇଁ ଇନ୍ଦ୍ରପ୍ରସ୍ଥ ପ୍ରେରଣ କରାଗଲା । ଏ ବିବାହରେ କୁନ୍ତୀଙ୍କ ସହ କୁନ୍ତୀ ନନ୍ଦନଗଣ ଯେ ଅତ୍ୟନ୍ତ ଆନନ୍ଦ ଅନୁଭବ କରିଥିବେ ଏହା ମୁଁ ଜାଣିଥିଲି । ଏସବୁ ଅନୁମାନ ମୋର ଅଭ୍ରାନ୍ତ ହୋଇଥିଲା । କେବଳ ପାଞ୍ଚାଳୀଙ୍କ ସଂପର୍କରେ ମୁଁ କିଛି ସ୍ଥିର କରି ପାରୁନଥିଲି । ଏ ବିବାହକୁ ସେ କିଭଳି ଗ୍ରହଣ କରିବେ ଏ ବିଷୟରେ ମୁଁ ବଡ଼ ସନ୍ଦିଗ୍ଧ ହୋଇ ପଡ଼ିଥିଲି । ରହସ୍ୟମୟୀ, ସ୍ୱାଭିମାନିନୀ ପାଞ୍ଚାଳୀ ଦୂତ ନିକଟରେ କେବେହେଲେ ନିଜର ମନୋଭାବ ବ୍ୟକ୍ତ କରିନଥିବେ । ତଥାପି ନିଶାନ୍ତ ଇନ୍ଦ୍ରପ୍ରସ୍ଥରୁ ଫେରିବା ପରେ ମୁଁ ତାକୁ ଏକାନ୍ତରେ ସାକ୍ଷାତ କରି ସମସ୍ତଙ୍କ ପ୍ରତିକ୍ରିୟା ବିଷୟରେ ପ୍ରଶ୍ନ କଲି । ସେ କହିଲା - 'ପ୍ରଭୁ ! ଏ ସଂବାଦ ପାଇବା ମାତ୍ରେ ପ୍ରତ୍ୟେକ ଆନନ୍ଦରେ ଉଦ୍‌ଫୁଲ୍ଲିତ ହୋଇ ଉଠିଲେ । ମାତା କୁନ୍ତୀ ମଧ୍ୟ ଘଟଣାର ସତ୍ୟାସତ୍ୟ ଜାଣିବା ପାଇଁ ପ୍ରଶ୍ନ କରିବା ପରେ ଅତି ଆନନ୍ଦରେ ମୋତେ ଗଜମୁକ୍ତାର ମାଳ ପ୍ରଦାନ କଲେ ।'

- 'ଆଉ ପାଣ୍ଡବ ପଟ୍ଟମହିଷୀ ପାଞ୍ଚାଳୀ ?'

ନିଶାନ୍ତ କିଛି ସମୟ ଚୁପ୍ ରହିବା ପରେ ଧିରେ ଧିରେ କହିଲା - 'ପଟ୍ଟମହିଷୀଙ୍କ ଅନ୍ତଃପୁରକୁ ଯିବା ଦୂତ ପକ୍ଷେ ନିଷେଧ । ତଥାପି ଏ ପ୍ରଶ୍ନର ଉତ୍ତର ମୋତେ ଦେବାକୁ ପଡ଼ିବ ଜାଣିଥିଲି, ତେଣୁ ରାଣୀହଂସପୁରର ଜଣେ ପରିଚାରିକା ଠାରୁ ଖବର ନେଇ ଜାଣିଲି, ପାଞ୍ଚାଳୀ ପ୍ରକାଶ ନ କଲେ ମଧ୍ୟ ସୁଖୀ ନୁହନ୍ତି । ଦ୍ୱିତୀୟ ପାଣ୍ଡବ କିଭଳି କୌତୁକ ପ୍ରିୟ ଜାଣନ୍ତିତ ପ୍ରଭୋ ? ଏ ସମ୍ବାଦ ଶୁଣିବା ମାତ୍ରେ ଦେବୀ ପାଞ୍ଚାଳୀଙ୍କ ଭବନ ସମ୍ମୁଖରେ ପହଞ୍ଚି ଅଟ୍ଟହାସ କରି କହିଲେ, 'ବୃଥାରେ ଆଉ ସନ୍ୟାସିନୀ ଭଳି କେତେ କାଳ କାଟିବ ସଖୀ ? ତୁମର ସର୍ବାଧିକ ପ୍ରାଣପ୍ରିୟ ପାର୍ଥ ପୁନର୍ବାର ବିବାହ ବନ୍ଧନରେ ଆବଦ୍ଧ ହୋଇଛନ୍ତି, ପୁଣି ଏକ ସୁନ୍ଦରୀ ନବୀନା ତରୁଣୀ ରାଜକନ୍ୟାର ପାଣି ଗ୍ରହଣ କରିଛନ୍ତି ।'

ଏକଥା ଶୁଣି ପାଞ୍ଚାଳୀ ନିର୍ବିକାର ଭାବେ କହିଲେ, କ୍ଷତ୍ରିୟ ରମଣୀ ଯେ ବୀରତ୍ୱର ପୂଜାରିଣୀ ଏଥିରେ ଆଉ ବିଚିତ୍ରତା କ'ଣ ଅଛି ବୃକୋଦର ?'

-'ଅଛି ! ଅଛି ପାଞ୍ଚାଳୀ !'

ବୃକୋଦର କୌତୁକ ପ୍ରବଣ ଭାବେ ହସି ଉଠି କହିଲେ । 'ମଣିପୁର ରାଜଜେମା ଚିତ୍ରାଙ୍ଗଦା ବା ନାଗରାଜ ଦୁଲାଳୀ ଉଲୁପୀ ଏମାନେ ପାର୍ଥଙ୍କ ଶୌର୍ଯ୍ୟ ଓ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କୁ ବରଣ କରିଥିଲେ । ଏଥର କିନ୍ତୁ ପାର୍ଥ ନିଜେ ଏଇ ନବୀନା ତରୁଣୀର ସୌନ୍ଦର୍ଯ୍ୟରେ ଆତ୍ମ ବିସ୍ମୃତ ହୋଇ ଏଇ କନ୍ୟାଟିକୁ ହରଣ କରିଛନ୍ତି । ଜାଣ ଏ କନ୍ୟାଟି କିଏ ?'

ଏ କନ୍ୟା ପାର୍ଥଙ୍କୁ ବରଣ କରିଥିଲେ ତା' ପାଞ୍ଚାଳୀଙ୍କ ପାଇଁ ଗୌରବର ବିଷୟ ହୋଇଥା'ନ୍ତା; କିନ୍ତୁ ପାର୍ଥ ଏହାକୁ ହରଣ କରିଛନ୍ତି ଏହାତ ପାଞ୍ଚାଳୀଙ୍କ ପାଇଁ ଲଜ୍ୟାର ବିଷୟ ! କିଏ ସେହି କନ୍ୟା ? ଯିଏ ଅନଳ ସମ୍ଭବା କୃଷ୍ଣାଙ୍କ ସହ ରୂପ ଲାବଣ୍ୟର ପ୍ରତିଯୋଗୀତା ପାଇଁ ଆଗେଇ ଆସିପାରିଲା ? ଦେବୀ ପାଞ୍ଚାଳୀ କ୍ଳାନ୍ତ ଅବଶ କଣ୍ଠରେ ପ୍ରଶ୍ନ କଲେ - 'କିଏ ସେହି କନ୍ୟା ?'

ଦ୍ୱିତୀୟ ପାଣ୍ଡବ ଉତ୍ସାହିତ ହୋଇ କହିଲେ - 'ଆମର ନିକଟ ଆତ୍ମୀୟା, ପୁଣି ତୁମର 'ପ୍ରିୟସଖା' ଦ୍ୱାରକାଧୀଶଙ୍କ ଭଗ୍ନୀ ସୁଭଦ୍ରା !'

ବୃକୋଦର କୌତୁକପ୍ରବଣ ଭାବେ ଏକଥା କହିଥିଲେ ମାତ୍ର ଏ ସଂବାଦ ଯେ ପାଞ୍ଚାଳୀଙ୍କ ହୃଦୟରେ ଖଣ୍ଡପ୍ରଳୟ ସୃଷ୍ଟି କରିବ ଏ ଆଶଙ୍କା ତାଙ୍କର ନଥିଲା । ପାଞ୍ଚାଳୀଙ୍କର ଭାବଲେଶହୀନ ନୟନ ଦୁଇଟିକୁ ଚାହିଁଦେବା ମାତ୍ରେ ବୃକୋଦର ଶଙ୍କିତ ହୋଇଉଠିଲେ.

ମର୍ମାହତ ହୋଇ ଉଠିଲେ ଏବଂ ଆଉ ଗୋଟିଏ ଶବ୍ଦ ସୁଦ୍ଧା ଉଚ୍ଚାରଣ ନକରି ନୀରବରେ ଅଧୋବଦନଭାବେ ଫେରି ଆସିଲେ ।'

ନିଶାନ୍ତଠାରୁ ଏସବୁ ଶୁଣିବାପରେ ମୁଁ ଏକାକୀ ଅନେକ ସମୟ ଚିନ୍ତାମଗ୍ନ ଭାବେ ବସି ରହିଲି । ମନେ ମନେ ବାରମ୍ବାର ଉଚ୍ଚାରଣ କରିବାକୁ ଲାଗିଲି - 'କୃଷ୍ଣା ଗୋ ! ମୁଁ ତୁମର ଅପରାଧୀ । ମୋତେ କ୍ଷମା କରିଦିଅ । ପୂର୍ବ ନିର୍ଦ୍ଧାରିତ କାଳର କୁଟୀଳ ଗତିପଥକୁ ତୁମେ ଯଦି ଚିହ୍ନି ପାରନ୍ତ ତେବେ ମୋତେ ଦୋଷାରୋପ କରନ୍ତ ନାହିଁ । ଆମେ ପ୍ରତ୍ୟେକ ଭାଗ୍ୟର କ୍ରୀଡ଼ନକ ସଖୀ । ହୁଏତ ଦିନେ ବୁଝିବ ଏ ବିବାହର ଆବଶ୍ୟକତା ବି ଥିଲା ।'

ଏଇଭଳି କେତେକ'ଣ ଭାବୁଥିଲି ଅନ୍ଧକାରାଛନ୍ନ ନିର୍ଜନ କକ୍ଷରେ ଏକାକୀ ବସି ବସି । ଅନେକ ରାତି ହୋଇଥିଲା । ନିଶବ୍ଦରେ ରୁକ୍ମିଣୀ ଆସି ତାଙ୍କର ପେଲବ କରତଳରେ ମୋ ହାତ ଦୁଇଟିକୁ ମୁଠେଇ ଧରି ମୋର ଅବ୍ୟକ୍ତ ଯନ୍ତ୍ରଣାର ଅଂଶ ନେବାକୁ ନୀରବ ଦାବୀ ଜଣେଇଲେ ଯେମିତି । ମୁଁ ଯେମିତି ହୃତ ଆତ୍ମବଳ ଫେରି ପାଇଲି । ନିତିପ୍ରତି ରୁକ୍ମିଣୀ ସପତ୍ନୀଙ୍କ ଗହଣରେ ରହିଛନ୍ତି । ସତ୍ୟଭାମା, ଜାମ୍ବବତୀ, ସୁନନ୍ଦା, ଶୈବ୍ୟା, ମିତ୍ରବିନ୍ଦା, କାଳିନ୍ଦୀ ପ୍ରଭୃତିଙ୍କୁ ଅକୁଣ୍ଠ ସ୍ନେହଦାନରେ କାର୍ପଣ୍ୟତ କରିନାହାନ୍ତି, ତେବେ ପାଞ୍ଚାଳୀ ନପାରିବେ କାହିଁକି ? ଏମାନଙ୍କଠାରୁ ପାଞ୍ଚାଳୀଙ୍କ ଦୃଢ ମନୋବଳ ତ କୌଣସି ଗୁଣରେ କମ୍ ନୁହେଁ !

ଦ୍ୱାରକାରେ ମଣିମାଣିକ୍ୟର ଅଭାବ ନଥିଲା । ସୁଭଦ୍ରାଙ୍କୁ ପ୍ରଚୁର ଉପଢ୍ୌକନ ସାମଗ୍ରୀ ପ୍ରଦତ୍ତ ହୋଇଥିଲା । ସୁବର୍ଣ୍ଣ କିଙ୍କିଣୀମାଳ ଶୋଭିତ ଶତସଂଖ୍ୟକ ମଦସ୍ରାବୀ ମତ୍ତଗଜ, କ୍ଷିପ୍ର, ବେଗବାନ୍ ଅଷ୍ଟୋତ୍ତରଶତ ଅଶ୍ୱବାହୀ ରଜତ ଜଡ଼ିତ ରଥ ସମୂହ, ସହସ୍ର ସଂଖ୍ୟକ ଅଶ୍ୱତରୀ, ବହୁ ସହସ୍ର ପୟସ୍ୱିନୀ ଗାଭୀ, ସ୍ୱର୍ଣ୍ଣାଳଙ୍କାର ମଣ୍ଡିତା, ନୃତ୍ୟ ବାଦ୍ୟ ପଣ୍ଡିତା, ସୁବେଶା ସୁନ୍ଦରୀ ତରୁଣୀ ଦାସୀ ସମୂହ ତଥା ବହୁ ମଣିରତ୍ନର ଉପହାର ସହ ସୁଭଦ୍ରା ଓ ପାର୍ଥଙ୍କୁ ନିରାପଦରେ ଇନ୍ଦ୍ରପ୍ରସ୍ଥରେ ପହଞ୍ଚେଇଦେବାର ଦାୟିତ୍ୱ ମୋ ଉପରେ ହିଁ ନ୍ୟସ୍ତ ଥିଲା । ସହସ୍ର ସଂଖ୍ୟକ ଅସ୍ତ୍ର ଶସ୍ତ୍ର ସଜ୍ଜିତ ଯୁଦ୍ଧ ବିଦ୍ୟାରେ ନିପୁଣ ସୈନ୍ୟ ମଧ୍ୟ ପ୍ରଦତ୍ତ ହୋଇଥିଲେ । ସୁଭଦ୍ରାର ବିଦାୟ ଲଗ୍ନରେ ମୁଁ ସ୍ୱହସ୍ତରେ ତାକୁ ସଜାଇ ଦେଇଥିଲି ଗୋପଭୂମିର ଏକ ଗୋପାଳୁଣୀ ବେଶରେ, ନିଜେ ମଧ୍ୟ ଦ୍ୱାରକାଧୀଶର ପୋଷାକ ପରିହାର କରି ନନ୍ଦସୁତର ପ୍ରକୃତି ପରିଚୟ ନେଇ ସାଧାରଣ ଗୋପାଳ ବେଶରେ ସଜ୍ଜିତ ହୋଇଥିଲି । ସୁଭଦ୍ରା ରଥରେ ରଖିଥିଲି ଦୁଗ୍ଧ, ଦଧି ଓ ନନବନୀତର ଭାଣ୍ଡ, ମୋ ରଥରେ ଥିଲା ଶିକା ଓ ବାହୁଙ୍ଗୀ । ଆମର ଏ ବେଶ ଦେଖି ସେଦିନ ପ୍ରତ୍ୟେକ ଅବାକ୍ ହୋଇ ଯାଇଥିଲେ ।

ଇନ୍ଦ୍ରପ୍ରସ୍ଥରେ ପାର୍ଥ ଓ ସୁଭଦ୍ରାଙ୍କୁ ବର - ବଧୂଭାବେ ଭବ୍ୟ ସମ୍ବର୍ଦ୍ଧନା ଜ୍ଞାପନ କରିବାରେ କୌଣସି ତ୍ରୁଟି ହୋଇନଥିଲା । ରାଣୀହଂସପୁରର ତୋରଣ ଦ୍ୱାରରେ କେବଳ

ପଟ୍ଟମହିଷୀ ପାଞ୍ଚାଳୀ ଉପସ୍ଥିତ ନଥିଲେ । ସେ ସମ୍ପର୍କରେ ସ୍ୱୟଂ ଧର୍ମରାଜ କ'ଣ କହିବାକୁ ଯାଉଥିଲେ, ମୁଁ ତାଙ୍କୁ କହିବାକୁ ସୁଯୋଗ ନଦେଇ କହିଉଠିଲି - 'ଅସମ୍ଭବ ! ସୁଭଦ୍ରା ମୋ ଭଉଣୀ ବୋଲି ପଟ୍ଟମହିଷୀ ତାକୁ ସ୍ୱାଗତ କରିବା ପାଇଁ ଏଠାରେ ଉପସ୍ଥିତ ରହି ନିଜର ଉପଯୁକ୍ତ ମର୍ଯ୍ୟାଦା ଲଂଘନ କରିବାର ପ୍ରଶ୍ନ ଉଠୁନାହିଁ । ସୁଭଦ୍ରା ମଧ୍ୟ ଏତେ ବେଶୀ ଆଶା କରିବା ଉଚିତ ନୁହେଁ । ସୁଭଦ୍ରା ପଟ୍ଟମହିଷୀଙ୍କର ଆଶ୍ରୟ ପ୍ରାର୍ଥିନୀ ହିଁ ଆଶ୍ରୟ ଦାତ୍ରୀ ନିକଟକୁ ଯିବା ଉଚିତ । ଏ ଶିକ୍ଷା ସୁଭଦ୍ରାର ମଧ୍ୟ ଅଛି ।'

ମୋର ଏ କଥାରେ ପ୍ରତ୍ୟେକ ଆଶ୍ୱସ୍ତ ହେଲେ । ମୋ ଠାରୁ ଇଂଗିତ ପାଇବା ମାତ୍ରେ ସୁଭଦ୍ରା ଦୁଗ୍ଧ, ଦଧି ନବନୀତ ଭାଣ୍ଡକୁ ମସ୍ତକରେ ଧାରଣ କରି ସମସ୍ତଙ୍କୁ ଅବାକ୍ କରିଦେଇ ପରିଚାରିକା ସହ ପାଞ୍ଚାଳୀଙ୍କ ଭବନ ଉଦ୍ଦେଶ୍ୟରେ ଗଲା । ଦାସଦାସୀଙ୍କ ମହଲରେ ଏହା ବେଶ୍ ଆମୋଦଦାୟକ ଦୃଶ୍ୟ ସୃଷ୍ଟି କରିଥିଲା । କୁରୁପିତାମହ ଭୀଷ୍ମ ଉତ୍ସବରେ ଯୋଗଦେବାକୁ ଆସିଥିଲେ । ଏପରିଏକ ଅଭାବିତ ଦୃଶ୍ୟ ଦେଖି ସେ ମଧ୍ୟ ବଡ଼ କୁଣ୍ଠିତ ଭାବେ ମୋ ସହ ଚାଲିଥିଲେ । ପଞ୍ଚଭ୍ରାତା ମଧ୍ୟ ନୀରବରେ ମୋତେ ଅନୁସରଣ କରୁଥିଲେ ।

ପାଞ୍ଚାଳୀ ମୁକ୍ତ ବାତାୟନ ପଥରେ ନିର୍ମେଘ ଆକାଶକୁ ଚାହିଁ ରହିଥିଲେ । ତାଙ୍କ ଦ୍ୱାର ଦେଶରେ ସୁଭଦ୍ରା ପହଞ୍ଚିବା ମାତ୍ରେ ଅବଲୀଳା କ୍ରମେ ସେ ଲେଉଟି ଚାହିଁଲେ । ନାଟକୀୟଭାବେ ସୁଭଦ୍ରା ତାଙ୍କର ପଦସ୍ପର୍ଶ କରିବା ମାତ୍ରେ ସେ ବିହ୍ୱଳ ଦୃଷ୍ଟିରେ ତାକୁ ଚାହିଁ କହିଲେ - 'ତୁମେ କିଏ ଭଉଣୀ ? ମସ୍ତକରେ ଦୁଗ୍ଧ ଦଧି ଭାଣ୍ଡ, ହସ୍ତରେ ନବନୀତ ଭାଣ୍ଡ, ଅଧରରେ ମଧୁଭାଣ୍ଡ, ହୃଦୟରେ ଅମୃତଭାଣ୍ଡ, ମନେ ହେଉଛି ତୁମ ସହ ମୋର ଜନ୍ମଜନ୍ମର ପରିଚୟ, ତଥାପି ଠିକ୍ ଜାଣିପାରୁନାହିଁ ତୁମେ କିଏ ?'

(ପାଞ୍ଚାଳୀ ପ୍ରକୃତରେ ସୁଭଦ୍ରାକୁ ସେପର୍ଯ୍ୟନ୍ତ ଦେଖିନଥିଲେ) ସୁଭଦ୍ରା କହିଲା - 'ମୁଁ ଆପଣଙ୍କର ସେବାଦାସୀ ପଟ୍ଟମହିଷୀ । ଆପଣଙ୍କ ଆଶ୍ରୟ ପ୍ରାର୍ଥିନୀ ।'

- 'ସେବାଦାସୀ ? ତୁମର ବେଶପୋଷାକ ଯାହା ହେଉନା କାହିଁକି ତୁମର ଆଚରଣରୁ ମନେ ହେଉଛି ତୁମେ ସମ୍ଭ୍ରାନ୍ତ ବଂଶଜାତ କନ୍ୟା ଓ ବଧୂ । ବିବାହିତା ନିଶ୍ଚୟ । ତୁମର ପତି ?'

ପାଞ୍ଚାଳୀ ସନ୍ଦିଗ୍ଧ କଣ୍ଠରେ ପ୍ରଶ୍ନ କଲେ । ସୁଭଦ୍ରାର ନମ୍ର ମଧୁର ସ୍ୱଭାବରେ ପାଞ୍ଚାଳୀ କ୍ରମଶଃ ମୁଗ୍ଧ ଓ ପ୍ରଭାବିତ ହେଉଥିଲେ ।

ସୁଭଦ୍ରା ପାଞ୍ଚାଳୀଙ୍କ ପାଦ ପାଖରେ ବସି ପଡ଼ି କହିଲା - 'ମୋର ପତି ଆପଣଙ୍କର ଅପରାଧୀ ପଟ୍ଟମହିଷୀ ! ମାତ୍ର ତାଙ୍କ ପାଇଁ ମୁଁ ସମସ୍ତ ଶାସ୍ତି ଗ୍ରହଣ କରିବାକୁ ପ୍ରସ୍ତୁତ ହୋଇ

ପିତ୍ରାଳୟ ତ୍ୟାଗ କରି ଆସିଛି । ମୋତେ ଫେରାଇ ଦିଅନ୍ତୁ ନାହିଁ । ଦାସୀ ଭାବେ ଆପଣଙ୍କ ସେବା କରିବାର ଅଧିକାର ପାଇଲେ ବି ମୁଁ ଧନ୍ୟ ହେବି । ଆପଣଙ୍କ ଠାରୁ ସେତିକି ଅଭୟ ପାଇଲେ ମୋ ଭ୍ରାତା ମଧ୍ୟ ନିଶ୍ଚିନ୍ତ ହୋଇ ପାରିବେ ।'

- 'କିଏ ତୁମର ଭ୍ରାତା ? କିଏ ତୁମର ପତି ??'

ଉତ୍ତପ୍ତ କଣ୍ଠରେ ପ୍ରଶ୍ନ କଲେ ପାଞ୍ଚାଳୀ - 'ଗୋପର ଗୋପାଳ ଗଣମୁଖ୍ୟ ନନ୍ଦଙ୍କର ପୁତ୍ର କୃଷ୍ଣହିଁ ମୋର ଭ୍ରାତା ଓ ମୁଁ କୁନ୍ତୀ ନନ୍ଦନ ଫାଲଗୁନୀଙ୍କର ପତ୍ନୀ ।'

ପାଞ୍ଚାଳୀ କିଛି ସମୟ ମୁଗ୍ଧ ଦୃଷ୍ଟିରେ ସୁଭଦ୍ରାକୁ ଚାହିଁବା ପରେ ଆନନ୍ଦାବେଗରେ ତାକୁ ଆଲିଙ୍ଗନାବଦ୍ଧ କରି କହିଲେ - 'ତୋ ସ୍ଥାନ ଚିରକାଳ ଏଇଠି ଭଉଣୀ । ନନ୍ଦସୁତଙ୍କ ଭଉଣୀ ବୋଲି ତେବେ ତୋ କଥାରେ ଚାତୁରୀ ଏତେ ବେଶୀ ନା ?'

ପାଞ୍ଚାଳୀଙ୍କ ହୃଦୟରେ ଆଉ ଟିକିଏ ବି କ୍ଷୋଭ ନଥିଲା । କୁରୁପିତାମହ ଭୀଷ୍ମ ମୋତେ ଆଲିଙ୍ଗନ କରି ଭାବ ବିହ୍ୱଳ ହୋଇ କହି ଉଠିଲେ - 'ଧନ୍ୟ ତୁମେ ମଧୁସୂଦନ ! ତୁମର ଚତୁରତା, ତୁମର ମହିମା ସବୁକିଛି ଅପାର ।'

ମେଘ କଟିଯାଇଛି ଜାଣି ଅଧୋବଦନରେ ପାର୍ଥ ପାଞ୍ଚାଳୀଙ୍କ କକ୍ଷ ଆଡ଼କୁ ଅଗ୍ରସର ହେଉଥିଲେ; ମାତ୍ର ଦ୍ୱାରଦେଶରୁ ତାଙ୍କୁ ପ୍ରବେଶର ଅଧିକାର ସୁଦ୍ଧା ନଦେଇ ପାଞ୍ଚାଳୀ ଧିର ସ୍ୱରରେ କହିଲେ - 'ମୁଁ ଏତେ ନିଷ୍ଠୁରା ନୁହେଁ ଧନଞ୍ଜୟ ! ସୁଭଦ୍ରାଭଳି ନମ୍ର ସ୍ୱଭାବର ନବପରିଣୀତା ବଧୂଟିକୁ ଆଜି ଏକାକିନୀ ରହିବାକୁ ମୁଁ ଦେବିନାହିଁ । ପଟ୍ଟମହିଷୀ ଠାରୁ ଶାସ୍ତି ଚାହୁଁଥିଲ ନା ? ତେବେ ଯାଅ - ସୁଭଦ୍ରାସହ ତା'ର ଭବନକୁ ଯାଅ । ନବନିର୍ମିତ ତା'ର ଭବନଟିକୁ ମଦାଳସା ଦ୍ୱାରା ମୁଁ ତୁମ ରୁଚିରେ ସଜେଇଦେଇଛି ।'

ଏ ଶାସ୍ତି ଯେତେ ମଧୁର ହେଉନା କାହିଁକି ପାଞ୍ଚାଳୀଙ୍କ ପାଇଁ ତଥା ଦ୍ୱାଦଶ ବର୍ଷପରେ ଫେରି ଆସିଥିବା ପାର୍ଥଙ୍କ ପାଇଁ ବଡ଼ ପ୍ରଚଣ୍ଡ । ଆଜିବି ମୁଁ ବୁଝି ପାରିଲି ନାହିଁ ଏ ନିର୍ଦ୍ଦେଶ ପଛରେ ପାଞ୍ଚାଳୀଙ୍କର ଉଦାରତା ଥିଲା ନା ପୁଂଜିଭୂତ ଅଭିମାନ ଥିଲା ?

## ।। ଷୋଡ଼ଶ ଗ୍ରନ୍ଥି ମୋଚନ ।।

କେବଳ କଂସର ମୃତ୍ୟୁପରେ ପୃଥିବୀରୁ ଯେ ଅନ୍ୟାୟ, ପାପ ଓ ଅସତ୍ୟର ମୃତ୍ୟୁ ହେଲା ତା'ନୁହେଁ, ସତ୍ୟ ଓ ଧର୍ମର ପଥ ସିନା ସରଳ ରେଖାଟିଏ; କିନ୍ତୁ ପାପତ ବହୁଶାଖା, ସହସ୍ର ପନ୍ଥା ବିଶିଷ୍ଟ । ଗୋଟିଏ ପାପୀର ବିନାଶରେ ପାପତ ସଂପୂର୍ଣ୍ଣ ନିଶ୍ଚିହ୍ନ ହୋଇଯାଏ ନାହିଁ ।

ଏହା ବହୁବାର ମୋ ଜୀବନରେ ପରୀକ୍ଷିତ । କଂସର ମୃତ୍ୟୁପରେ ଜରାସନ୍ଧ ଯେ ମୋତେ ଭଲ ଦୃଷ୍ଟିରେ ଦେଖିବ, ସେ ଆଶା ମୋର ନଥିଲା । ଜରାସନ୍ଧ ବହୁବାର ଆକ୍ରମଣ କରିଛି ଓ ତାର ପ୍ରକୋପରୁ ମଥୁରାର ପ୍ରଜାଙ୍କ ସମେତ ମୋ ନିଜର ଆତ୍ମରକ୍ଷା ପାଇଁ ମୁଁ ପ୍ରବଳ ଚେଷ୍ଟା ବି କରିଛି । ଏକ ପକ୍ଷରେ ଅନ୍ୟାୟୀ, ପାପୀ ଶତୃ ନିଧନ ଯେମିତି ମୋର ଲକ୍ଷ୍ୟ ଥିଲା ଅପର ପକ୍ଷରେ ପାଣ୍ଡବ ମାନଙ୍କୁ ଜନତାର ଆସ୍ଥାଭାଜନ କରିବା, ଅପରାଜେୟ ବୀରଭାବେ ପ୍ରତିପାଦନ କରିବା ମୋର ଉଦ୍ଦେଶ୍ୟ ଥିଲା । କାରଣ ପାଣ୍ଡବ ମାନଙ୍କର ବହୁମୁଖୀ ପ୍ରତିଭା ସାଂଗକୁ ସେମାନଙ୍କର ନମ୍ରତା, ସାଧୁତା, ଉଦାରତା, ମହାନୁଭବତା ତଥା ସଂପୂର୍ଣ୍ଣ ଆତ୍ମ ସମର୍ପଣଭାବ ମୋତେ ଆକୃଷ୍ଟ କରିଥିଲା ।

ଶୁଣିଲି ଜରାସନ୍ଧ ଏକ ସହସ୍ର ରାଜାଙ୍କୁ ବନ୍ଦୀ କରିଛି ଯଜ୍ଞରେ ବଳି ଦେବାପାଇଁ । ଧରଣୀ ତେବେ ବୀର ଶୂନ୍ୟ ହୋଇଯିବ ନା' କ'ଣ ? ଏମିତି ଅକାରଣରେ ବୀର ରକ୍ତ ବହିଯିବାପାଇଁ ଅନ୍ତତଃ ମୁଁ ଏକମତ ହୋଇ ପାରିବି ନାହିଁ । ଜାତି ଓ ଦେଶର ପୁନର୍ନିର୍ମାଣରେ ବୀର ରକ୍ତର ଆବଶ୍ୟକତା ରହିଛି । ମୋର ଗୁପ୍ତଚର ନିଶାନ୍ତ ଠାରୁ ଜାଣିବାକୁ ପାଇଲି ଜରାସନ୍ଧର ସୀମାନ୍ତ ପ୍ରହରୀ ଅଦ୍‌ଭୁତକର୍ମା, ସଦା ସତର୍କ ଓ ସଜାଗ । ସେମାନଙ୍କୁ ଅତିକ୍ରମ କରି ରାଜ ଅବରୋଧ ଭିତରକୁ ପ୍ରବେଶ କରିବା ଦୁଃସାଧ୍ୟ । ମୁଁ ସେଦିନ ମନେ ମନେ ହସିଥିଲି । ଏ ସଂସାରର ଦୁଃସାଧ୍ୟ କ'ଣ ଅଛି ? କାର୍ଯ୍ୟ ସିଦ୍ଧି ପାଇଁ କେଉଁ ଅସାଧ୍ୟ ବା ସାଧନ କରାଯାଇ ନପାରେ ? ତା'ଛଡ଼ା ଏଥିରେ କ'ଣ ମୋର ବ୍ୟକ୍ତିଗତ ସ୍ୱାର୍ଥ ଜଡ଼ିତ କି ? ଯାହାକିଛି ଘଟିବାକୁ ଯାଉଛି ତାହାତ ବୃହତ୍ତର ସ୍ୱାର୍ଥ ପାଇଁ ! ଜରାସନ୍ଧର ଦୁର୍ଗ ଅବରୋଧ ନିମିତ୍ତ ମନେ ମନେ ଏକ ସୁପରିକଳ୍ପିତ ଯୋଜନା ପ୍ରସ୍ତୁତ କଲି । ସାତ୍ୟକୀକୁ ଆଦେଶ ଦେଲି ମୋ ରଥ ପ୍ରସ୍ତୁତ କରିବା ପାଇଁ । ଆଗାମୀ କାଲି ପ୍ରତ୍ୟୁଷରେ ମୁଁ ଇନ୍ଦ୍ରପ୍ରସ୍ଥ ଯିବି । ମୋ ସହ ସତ୍ୟଭାମା ଯିବାର ସ୍ଥିର ହେଲା । ଦ୍ରୌପଦୀଙ୍କ ସହ ତାଙ୍କର ବନ୍ଧୁତା ଘନିଷ୍ଠ ଥିଲା । ଅଷ୍ଟ ପାଟବଂଶୀଙ୍କ ଭିତରେ ସର୍ବାଧିକା ଭକ୍ତିମତ ଥିଲେ ରୁକ୍ମିଣୀ, ସର୍ବାଧିକ ମାନମୟୀ ଥିଲେ ସତ୍ୟଭାମା । 'ଭକ୍ତି' ପ୍ରତି ମୋର ସମ୍ମାନ ଅପରିସୀମ, କିନ୍ତୁ 'ମାନ' ପାଖରେ ମୁଁ ଦୁର୍ବଳ ହୋଇଯାଏ ।

କି ଅଦ୍‌ଭୁତ ଯୋଗାଯୋଗ ! ଇନ୍ଦ୍ରପ୍ରସ୍ଥ ଯାତ୍ରା ଉଦ୍ଦେଶ୍ୟରେ ଆମେ ପ୍ରସ୍ତୁତ ହେଉଛୁ, ଏହି ସମୟରେ ଚତୁର୍ଥ ପାଣ୍ଡବ ନକୁଳ ଦ୍ୱାରକାରେ ପହଞ୍ଚିଲେ । ଧର୍ମରାଜ ଯୁଧିଷ୍ଠିର ଏକ ସ୍ୱତନ୍ତ୍ର ନିମନ୍ତ୍ରଣ ଜଣାଇଛନ୍ତି । ମୋ ଯାତ୍ରାର ପ୍ରସ୍ତୁତି ଦେଖି ନକୁଳ ମଧ୍ୟ ଆଶ୍ଚର୍ଯ୍ୟହୋଇ ପ୍ରଶ୍ନ କଲେ ଯେ - 'ମୋ ହାତରେ ନିମନ୍ତ୍ରଣ ପତ୍ର, ଅଥଚ ଆପଣ କିପରି ଜାଣି ପାରିଲେ ଯେ ଧର୍ମରାଜ ଆପଣଙ୍କ ଉପସ୍ଥିତି କାମନା କରୁଛନ୍ତି ?'

ମୁଁ ତାଙ୍କ କାନ୍ଧରେ ହାତ ରଖି କହିଲି - 'ମୋ ଆଡ଼କୁ ତୁମେ ପାଦଟିଏ ଆଗେଇ

ଆସିଲେ ମୁଁ ତୁମ ଆଡ଼କୁ ଦଶପାଦ ଆଗେଇ ଯିବି । ଏ ସବୁର ଆଉ କ'ଣ ପ୍ରମାଣ ଦେବାକୁ ପଡ଼ିବ ?'

ନକୁଳ ମୁଣ୍ଡ ହଲେଇ ନାହିଁ କଲେ । ଇନ୍ଦ୍ରପ୍ରସ୍ଥରେ ପହଞ୍ଚି ଦେଖିଲି କ'ଣ ଏକ ବିରାଟ ଉତ୍ସବର ଆୟୋଜନ ଚାଲିଛି । ମୋତେ ଦେଖି ଯେମିତି ପାଣ୍ଡବ ଗଣ ଅକୂଳରେ କୂଳର ସନ୍ଧାନ ପାଇଲେ । ଆଲୋଚନା ପ୍ରସଙ୍ଗରେ ଜାଣିଲି ଧର୍ମରାଜ ପିତା ପଣ୍ଡୁଙ୍କର ଅସଂପୂର୍ଣ୍ଣ ସ୍ୱପ୍ନକୁ ସାକାର କରିବା ପାଇଁ ରାଜସୂୟ ଯଜ୍ଞର ଆୟୋଜନରେ ଆଗ୍ରହୀ । ସତକଥା କହିବାକୁ ଗଲେ ମୁଁ ନିଜେ ମଧ୍ୟ ଏଇ ସୁଯୋଗ ଅପେକ୍ଷାରେ ଥିଲି । ଆମେ ସମସ୍ତେ ଆଲୋଚନାରେ ବ୍ୟସ୍ତ । ପାଞ୍ଚାଳୀ ଅତିଥି ପରିଚର୍ଯ୍ୟାରେ ବ୍ୟସ୍ତ । ଶୀତ ଶେଷରେ ଇନ୍ଦ୍ରପ୍ରସ୍ଥର କୃଷକଗଣ ସେଦିନ ଉପହାର ସ୍ୱରୂପ ରାଜ ଅନ୍ତଃପୁରକୁ ସୁମିଷ୍ଟ, ସୁପକ୍ୱ ଇକ୍ଷୁଦଣ୍ଡ ଆଣିଥିଲେ । ପାଞ୍ଚାଳୀ ଜାଣନ୍ତି ଏଇଭଳି ସୁମିଷ୍ଟ ପଦାର୍ଥରେ ରସନା ପରିତୃପ୍ତ କରିବା ମୋର ଏକ ଦୁର୍ବଳତା । ସେ ରଜତ ପାତ୍ରରେ ଆଖୁ କେତେ ଖଣ୍ଡ ଆମ୍ଭମାନଙ୍କ ସମ୍ମୁଖରେ ରଖି ଦେଇ ଅନ୍ୟ କାର୍ଯ୍ୟରେ ଭିତରକୁ ଚାଲିଗଲେ । ଆଖୁ ଖାଉ ଖାଉ ହଠାତ୍ ଆଖୁ ଚୋପାର ଧାରରେ ମୋର ବୃଦ୍ଧାଙ୍ଗୁଳିଟି କଟି ସେହି କ୍ଷତରୁ ପ୍ରଚୁର ରକ୍ତସ୍ରାବ ହେଲା । ପାଣ୍ଡବ ପଞ୍ଚଭ୍ରାତା, ସତ୍ୟଭାମା, ମୋର ପିଉସୀ ପୃଥା ସମସ୍ତେ ବ୍ୟସ୍ତ ବିବ୍ରତ ହୋଇପଡ଼ିଲେ । ସଖା ଅର୍ଜ୍ଜୁନ ଦୂତ ନ ପଠାଇ ନିଜେ ରାଜବୈଦ୍ୟଙ୍କୁ ଡାକିବା ପାଇଁ ଧାଇଁ ଗଲେ । ସତ୍ୟଭାମାଙ୍କ ନୀଳକଇଁ ଭଳି ଆଖି ଦିଓଟି ଏଭଳି ଅଶ୍ରୁ ବାଷ୍ପାଛନ୍ନ ହୋଇଥାଏ ଯେ, ଯେମିତିକି ଆଖୁଚୋପାର ଧାରରେ ନୁହେଁ ଧାରୁଆ ଖଣ୍ଡାଧାରରେ ମୋତେ କେହି କାଟିଦେଇଛି । ଏପରି କୋଳାହଳ, ବ୍ୟସ୍ତ ବିବ୍ରତ ଭାବରେ କାରଣ ଜାଣିବା ପାଇଁ ପାଞ୍ଚାଳୀ ଭିତରୁ ଆସି ସେଠାରେ ପହଞ୍ଚିଗଲେ ଓ ଘଟଣା ଅନୁଧ୍ୟାନ କରିବା ପୂର୍ବରୁ ମୋର କ୍ଷତାକ୍ତ ଅଂଗୁଳି ଉପରେ ଯେମିତି ତାଙ୍କ ଦୃଷ୍ଟି ପଡ଼ିଛି କାଳ ବିଳମ୍ବ ନକରି ତତ୍‌କ୍ଷଣାତ ନିଜର ମହାର୍ଘ ପଟ୍ଟବସ୍ତ୍ରର ପଣତକୁ ଛିଣ୍ଡାଇ ରକ୍ତସ୍ରାବ ବନ୍ଦ କରିବା ପାଇଁ ଜୋର୍‌ରେ ମୋ ଅଂଗୁଳିରେ ବାନ୍ଧି ଦେଲେ । ମୁଁ କୌତୁକରେ ପରିହାସ ଛଳରେ କହିଲି - 'ପାଞ୍ଚଭାଇଙ୍କ ଭିତରୁ କିଏ ଏହି ପଟ୍ଟବସ୍ତ୍ର ଉପହାର ଦେଇଥିଲେ ପାଞ୍ଚାଳୀ ? ଭ୍ରାତା ଭୀମସେନ ଦେଇନଥିଲେ ତ ? ତେବେତ ତମ ଅବସ୍ଥା କ'ଣ ହେବ ମୁଁ ଜାଣେନା, କିନ୍ତୁ ଏ ଶାଢ଼ୀ ଭଳି ମୋତେ ସେ ଦୁଇ ଟୁକୁରା କରିଦେବେ, ଗୋଟେ ଜୀଅନ୍ତା ମଣିଷକୁ ଦୁଇଗଡ଼ କରିବା ତାଙ୍କ ପାଇଁ କିଛି ବିଚିତ୍ର ନୁହେଁ, ହଁ !'

ଏକଥା ବଡ଼ ରହସ୍ୟମୟ ଭାବେ କହିଲି ଓ ସମସ୍ତଙ୍କ ଅଲକ୍ଷ୍ୟରେ ମୋ ଆଖିଆଗରେ ଜରାସନ୍ଧର ମୂର୍ତ୍ତି ଭାସିଉଠିଲା । ଭାସିଉଠିଲା ତା'ର ରକ୍ତାପ୍ଲୁତ ଦ୍ୱିଧା ଖଣ୍ଡିତ ଶରୀର । ମୁଁ ଗମ୍ଭୀର ହୋଇଗଲି ଓ ତାପରେ କହିଲି - 'ଯଦି ଧନଞ୍ଜୟ ଦେଇଥା'ନ୍ତି ତେବେ ଦ୍ୱାରକାର ଅଷ୍ଟ ପାଟବଂଶୀ ଏଣିକି ଚିରାଶାଢ଼ୀ ପିନ୍ଧିବାକୁ ପ୍ରସ୍ତୁତ ହୋଇ ରହନ୍ତୁ । ଅଭିମାନୀ ଧନଞ୍ଜୟ ଟୀର

ସନ୍ଧାନ କରି ମୋର ସମସ୍ତ ମହିଷୀଙ୍କ ପଟ୍ଟବସ୍ତ୍ରକୁ ଛିନ୍ନ ବିଛିନ୍ନ କରିଦେବେ । ଯଦି ନକୁଳ ଦେଇଥା'ନ୍ତି ତେବେ ଅନ୍ୟ କୌଣସି ଶାଢ଼ୀରେ ତମେ ଯେତେ ଅପୂର୍ବ ଦିଶିଲେବି ତୁମକୁ ସେ ଆଖି ଉଠେଇ ଚାହିଁବେ ନାହିଁ । ଯଦି ସହଦେବ ଦେଇଥା'ନ୍ତି ତେବେ ଚିରମୌନ କନିଷ୍ଠ ପାଣ୍ଡବ ତୁମକୁ କିଛି କହିବେ ନାହିଁ ସତ, ହେଲେ ଜୀବନରେ ତମକୁ ଆଉ କେବେ କିଛି ଦେବେ ନାହିଁ ।'

ଧର୍ମରାଜଙ୍କୁ ନେଇ ମୁଁ କୌଣସିଦିନ କୌତୁକ କରେ ନାହିଁ । ତେଣୁ ତାଙ୍କ ପ୍ରସଙ୍ଗ ଉଠେଇଲି ନାହିଁ । କେବଳ କହିଲି - 'ମୋ ଭଳି ଅଧମ ପାଇଁ କେଉଁ ପାଣ୍ଡବର ମୂଲ୍ୟବାନ୍ ଉପହାରକୁ ଏଭଳି ଟୁକୁରା ଟୁକୁରା କରିଦେଲ ?'

ପାଞ୍ଚାଳୀ ମୋ ଅଂଗୁଳି ଉପରେ ସେହି ଛିଣ୍ଡା ପଣତରେ ଗଣ୍ଠି ଦେଉ ଦେଉ କହିଲେ - 'ଏ ରକ୍ତଠାରୁତ ଅଧିକ ମୂଲ୍ୟ ହେବନାହିଁ ଏ ଶାଢ଼ୀର ? ମୋର ପଞ୍ଚପତି କ'ଣ ଏମିତି ସଂକୀର୍ଣ୍ଣମନା ଯେ ମାଧବଙ୍କ ରକ୍ତଠାରୁ ଆପଣାର ଉପହାରକୁ ବଡ଼ କରି ଦେଖିବେ ?'

ଏତିକି କହି ସେ ଚୁପ୍ ହୋଇଗଲେ । କିଛି ସମୟ ପରେ ରକ୍ତସ୍ରାବ ବନ୍ଦ ହୋଇଗଲା । ମୁଁ ସେ ରକ୍ତଲିପ୍ତ ଛିଣ୍ଡା କନାଟି ଅଂଗୁଳିରୁ ଫିଟାଇ ସଯତ୍ନରେ ଭାଂଗି ସତ୍ୟଭାମାଙ୍କୁ କହିଲି - 'ତୁମ ସୁବର୍ଣ୍ଣ ପେଟିକାରେ -ରଖ ମନେ ରହେ ଯେମିତି ! ପାଞ୍ଚାଳୀଙ୍କୁ ଫେରେଇବାକୁ ପଡ଼ିବ ଠିକ୍ ସମୟରେ....... !'

ଏକଥା ମୁଁ ଅସ୍ୱାଭାବିକ ଗମ୍ଭୀର ହୋଇ କହିଥିଲି ଏବଂ ମୋର ଏ ଅନୁଚିତ ଗାମ୍ଭୀର୍ଯ୍ୟ ଦେଖି ସମସ୍ତେ ହସି ପକେଇଲେ । ପାଞ୍ଚାଳୀ କହିଲେ - 'ମାଧବ ! ତୁମ ବନ୍ଧୁ ସୁଦାମା ଖୁଦଭଜା ଗଣ୍ଡିଏ ଦେଲା ବୋଲି ତାକୁ ପରମ ଐଶ୍ୱର୍ଯ୍ୟଶାଳୀ କରିଦେଲ ! ଦେଖାଯାଉ, ଯଦି କହୁଚ, ପାଞ୍ଚାଳୀର ଏ ଛିଣ୍ଡା ପଣତଟି କିପରି ଫେରାଇବ !'

ପ୍ରକାଶ କରିବା ବାହୁଲ୍ୟ ମୁଁ ଫେରେଇ ଦେଇଛି । ପରିପୂର୍ଣ୍ଣ କୁରୁ ଦରବାରରେ କୋଟିଏ ବସ୍ତ୍ର ଦେଇ ମୁଁ ସେଦିନର ସେହି ଛିଣ୍ଡା ପଣତର ଋଣ ପରିଶୋଧ କରିବାକୁ ଚେଷ୍ଟା କରିଛି ମାତ୍ର । ନାରୀର ଲଜ୍ଜ୍ୟାର ମୂଲ୍ୟ ମୋ ନିକଟରେ ବହୁତ ବେଶୀ । କୋଟିଏ ବସ୍ତ୍ର ତା' ତୁଳନାରେ କିଛି ନୁହେଁ ।

ବନ୍ଧୁ ସୁଦାମା କଥା ଦ୍ରୌପଦୀ କହିବାରୁ ମୋ ଆଖି ଦିଓଟି ଆପେ କରୁଣାରେ କୋମଳ ହୋଇଉଠିଲା । ଗୁରୁ ସାନ୍ଦିପନୀଙ୍କ ଆଶ୍ରମରେ ମୁଁ ଓ ବନ୍ଧୁ ସୁଦାମା ଯେତେବେଳେ ବିଦ୍ୟାର୍ଥୀ ଥିଲୁ ସେଇ ସମୟର ଅନେକ ସ୍ମୃତି ଉଦ୍‌ଭାସିତ ହୋଇ ଉଠିଲା । ଗୁରୁମାତାଙ୍କ ଆଦେଶରେ ଆମେ ଦୁହେଁ ଅରଣ୍ୟରୁ କାଷ୍ଠ ସଂଗ୍ରହ ଉଦ୍ଦେଶ୍ୟରେ ଯାଇଥିଲୁ । ବିଳମ୍ବ ହେବାର ଆଶଙ୍କାରେ ଗୁରୁମାତା ଖୁଦ ଭଜା କିଛି ସୁଦାମାଙ୍କୁ ଦେଇଥିଲେ - 'ଭୋକ ହେଲେ ଦୁହେଁ ବାଣ୍ଟି

ଖାଇବ ।' ମୋ ଅଜ୍ଞାତସାରରେ ହିଁ ଦେଇଥିଲେ ବୋଲି ସୁଦାମା ଜାଣିଥିଲେ । ଅଥଚ ଏକଥା ଜାଣିନଥିଲେ ଯେ କୌଣସି ଜିନିଷ ମୋ ଅଜ୍ଞାତସାରରେ ଘଟେ ନାହିଁ । ତଳେ ମୁଁ କାଷ୍ଠ ସଂଗ୍ରହ କରୁଥିବା ସମୟରେ ସେ ଖୁଦ ଭଜାତକ ଉଦରସ୍ଥ କରିଥିଲେ ଏକା ଏକା । ଅବୋଧ ସୁଦାମା ଜାଣିନଥିଲେ ଗୁରୁକୂଳ ଆଶ୍ରମରେ ବିଦ୍ୟାର୍ଥୀଭାବେ ଦୀକ୍ଷିତ ହେବାପରେ ପ୍ରତିମୁହୂର୍ତ୍ତରେ ଆମ୍ଭମାନଙ୍କୁ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଥାଏ । ଆମ୍ଭମାନଙ୍କର ଚାଲିଚଳନ, ଆଚାର, ବିଚାର ତଥା ବିଦ୍ୟାଭ୍ୟାସ ସହ ସରଳତା, ବିନୟ, ପରୋପକାରୀତା, ଦୟା ପ୍ରଭୃତି ବହୁ ସଦ୍‌ଗୁଣର ଶିକ୍ଷା ଆମ୍ଭମାନଙ୍କୁ ଦିଆଯାଏ ଓ ଏ ସବୁର ପରୀକ୍ଷା ଦୈନନ୍ଦିନ ଜୀବନରେହିଁ ଦେବାକୁ ହୁଏ । ସୁଦାମା ଓ ମୋ ଭିତରେ ଘନିଷ୍ଠ ହୃଦତା ଥିବା ସତ୍ତ୍ୱେ ସେଦିନ ପ୍ରଲୋଭନ ବଶତଃ କେବଳ ସେ ଖୁଦଭଜା ଗଣ୍ଡିଏ ମୂର୍ଛି ନପାରି ପରୀକ୍ଷାରେ ଅକୃତକାର୍ଯ୍ୟ ହୋଇଥିଲେ । ଗୁରୁ ସାନ୍ଦିପନୀ ମନେ ମନେ ସଂକଳ୍ପ କରିଥିଲେ ଯେ ଯଦି ସୁଦାମା ନିର୍ଲୋଭତାର ପ୍ରମାଣ ଦିଅନ୍ତି ତେବେ ସେ ଐଶ୍ୱର୍ଯ୍ୟଶାଳୀ ହେବାର ଆଶୀର୍ବାଦ ଗୁରୁଙ୍କଠାରୁ ପାଇବେ ନଚେତ୍ ନାହିଁ । ସାମାନ୍ୟ ପ୍ରଲୋଭନ ସୁଦାମାଙ୍କ ପାଇଁ ଦାରିଦ୍ର୍ୟର କଷଣ ମାଗି ନେଇଥିଲା ।

ସଂଧ୍ୟାପରେ ଆଶ୍ରମକୁ ଫେରି ଆସିବା ପରେ ମୋର ଶୁଷ୍କ, ବିରସ ମୁଖକୁ ଚାହିଁ ଗୁରୁମାତା କହିଲେ - 'ଗୋବିନ୍ଦ ! କ୍ଷୁଧାର୍ତ୍ତ ଭଳି ଜଣାପଡୁଛ ? ଦିନସାରା କିଛି ଖାଇ ନାହଁକି ?'

ମୁଁ ସୁଦାମାଙ୍କୁ ଚାହିଁ ହସି ଦେବା ମାତ୍ରେ ସୁଦାମା ଗୁରୁ ମାତାଙ୍କ ପାଦ ଧରି ବିକଳରେ ରୋଦନ କରି ଉଠିଲେ ଓ କହିଲେ - 'ମୁଁ ଗୋବିନ୍ଦଙ୍କୁ କିଛି ନଦେଇ ଲୁଚି ଲୁଚି ସମସ୍ତ ଖୁଦଭଜା ଖାଇ ଦେଇଛି । ମୋତେ କ୍ଷମା କରନ୍ତୁ ।'

ଗୁରୁ ସାନ୍ଦିପନୀ ବ୍ୟଥିତ ଭାବେ କହିଲେ - 'ହତଭାଗା ! ସାମାନ୍ୟ ଖାଦ୍ୟର ପ୍ରଲୋଭନରେ ପଡ଼ି ନିଜେହିଁ ନିଜର ଦୁର୍ଭାଗ୍ୟକୁ ଡାକି ଆଣିଲୁ ? ଦାରିଦ୍ର୍ୟ ଭଳି ଦୁର୍ଭାଗ୍ୟ ?'

ମୁଁ ସୁଦାମାଙ୍କ ଆଖିରୁ ଲୋତକର ଧାର ପୋଛି ଦେଇ ହସି ହସି କହିଲି - 'ସଖା ! ଏ ଋଣ କିନ୍ତୁ ବାକୀ ରହିଲା । ଦିନେ ନା ଦିନେ ତୁମକୁ ପରିଶୋଧ କରିବାକୁ ହେବ !'

ତା'ପରେ ଶିକ୍ଷା ସମାପ୍ତି ପରେ ମୁଁ ଦ୍ୱାରକା ଓ ସେ ତାଙ୍କ ଗ୍ରାମକୁ ଫେରିଯାଇଥିଲେ । ସେ ଅତ୍ୟନ୍ତ ଦରିଦ୍ର, ସେ ବହୁ ସନ୍ତାନର ଜନକ । ସେ ବିଷ୍ଣୁଙ୍କର ପରମ ଭକ୍ତ । ବହୁବାର ଇଛା ଥିଲେ ବି ତାଙ୍କୁ ସାହାଯ୍ୟ କରିବାର ଅବକାଶ ପାଇନାହିଁ । କାରଣ ମୁଁ ଜାଣିଥିଲି ସେ ସ୍ୱାଭିମାନୀ । ଯାଚି କରି ଧନ ଦେଲେ ସେ ନେବେ ନାହିଁ । ଏହା ତାଙ୍କ ଦାରିଦ୍ର୍ୟ ପ୍ରତି ଉପହାସ ଭଳି ବୋଧ ହେବ, ତାଙ୍କୁ ଦୟା ପ୍ରଦର୍ଶନ କଲାଭଳି ମନେ ହେବ । ମୁଁ କେବଳ ସୁଯୋଗ ଅପେକ୍ଷାରେ ଥିଲି । କେବେ ମୋର ସଖା ସୁଦାମା ଦ୍ୱାରକା ଆସିବେ । ଋଣଭାରରୁ ମୁକ୍ତ

ହେବେ ଓ ପରିପୂର୍ଣ୍ଣ ହେବ ତାଙ୍କର ଶୂନ୍ୟ ଭଣ୍ଡାର । ମୋର ଏ ବ୍ୟାକୁଳ ପ୍ରତୀକ୍ଷାର ଦିନେ ଅନ୍ତ ହେଲା । ସତକୁସତ ସଖା ସୁଦାମା ଖୁଦଭଜା ଗଣ୍ଡିଏ ଧରି ଦ୍ୱାରକାରେ ପହଞ୍ଚିଲେ । କୁଣ୍ଠିତ, ସଙ୍କୁଚିତ ଭାବେ ସେ ଖୁଦଭଜାକୁ ଲୁଚେଇ ରଖୁଥିଲେ । ମୁଁ କହିଥିଲି - 'ପୁନର୍ବାର ସେ ଭୁଲ କରନାହିଁ ବନ୍ଧୁ ! ଷଡ଼ରସର ବ୍ୟଞ୍ଜନ ମଧ୍ୟ ଏହି ଖୁଦଭଜା ତୁଳନାରେ ତୁଚ୍ଛ । ତୁମେ ଋଣ ପରିଶୋଧ କରିବାକୁ ଆସିଛ ଏଥିରେ ଲଜ୍ଜା କାହିଁକି ?'

କଣିକାଏ ଖୁଦ ବିନିମୟରେ ସମସ୍ତ ଐଶ୍ୱର୍ଯ୍ୟଯେ ଦିନେ ମୋ ନିକଟରେ ବନ୍ଧକ ସ୍ୱରୂପ ଥିଲା ତା' ମୋ ଅବୋଧ ବନ୍ଧୁ ବୁଝିପାରି ନଥିଲେ । ଋଣମୁକ୍ତ ଭାବେ ସେ ଫେରିଯାଇଥିଲେ ଧନଧାନ୍ୟଭରା ପ୍ରାଚୁର୍ଯ୍ୟ ଭିତରକୁ । ଦାରିଦ୍ର୍ୟର କଷଣରୁ ସେ ମୁକ୍ତି ପାଇଥିଲେ ।

ତେବେ ମୋ ବିଷୟରେ ଏତେ ଗୁଡ଼ିଏ ସମ୍ବାଦ ଯେ ପାଞ୍ଚାଳୀ ସଂଗ୍ରହ କରିଥିଲେ, ମୁଁ ବିସ୍ମିତ ହେଲି । ତଥାପି କୌତୁକ କରି କହିଲି - 'ସଖା ପାର୍ଥ ! ତୁମ ପ୍ରେୟସୀଙ୍କୁ ଦେଖୁଛତ ? ମୋ ଜୀବନର ସମସ୍ତ ଇତିହାସ ତାଙ୍କ ନଖ ଦର୍ପଣରେ । ତେବେ ଶୈଶବରେ ଲବଣୀ ଚୋର, ଯୌବନରେ ରମଣୀ ଚିତ୍ତ ଚୋର ଭାବେ ମୋର ବେଶ୍ ଦୁର୍ନାମ ଅଛି । ତୁମ ପ୍ରେୟସୀଙ୍କ ପ୍ରଶ୍ରୟ ପାଇ ଯଦି କେବେ କିଛି ଅଘଟଣ ଘଟିଯାଏ ମୋତେ ଆଉ ପରେ ଦୋଷଦେବ ନାହିଁ ।'

ପାଞ୍ଚାଳୀଙ୍କ ବ୍ୟତୀତ ସମସ୍ତେ ହସି ଉଠିଲେ । ପାଞ୍ଚାଳୀ ମୁକ୍ତ ବାତାୟନ ପଥ ଦେଇ ଅନନ୍ତ ଆକାଶକୁ ଚାହିଁ କହିଲେ - 'ଆକାଶର ଇତିହାସ ନାହିଁ, ଭୁଗୋଳ ବି ନାହିଁ । ସାଗର, ପୃଥିବୀ ସମସ୍ତଙ୍କର ଇତିହାସ ଅଛି, ସୀମା ପରିସୀମା ଅଛି । ଆକାଶ କିନ୍ତୁ ଅନନ୍ତ, ଅସୀମ ! ସଖା ! ତୁମେତ ଠିକ୍ ସେଇଭଳି ଅନନ୍ତ । ଅସୀମ, ଶୂନ୍ୟ । ଏ ଛାର ପାଞ୍ଚାଳୀର ଶକ୍ତି କାହିଁ ତୁମକୁ ବାନ୍ଧି ରଖିବା ପାଇଁ ?'

କୃଷ୍ଣା ଏଇଭଳି । କୃଷ୍ଣା ମୋ ଜୀବନ ନାଟକର ଏକ ସ୍ୱତନ୍ତ୍ର ଅଧ୍ୟାୟ । ବହୁ ମହତ୍ତ୍ୱପୂର୍ଣ୍ଣ ତାଙ୍କର ଭୂମିକା ମୋ ଜୀବନ ନାଟକରେ ।

ଆଲୋଚନାରେ ସ୍ଥିର ହେଲା ରାଜସୂୟ ଯଜ୍ଞହେବ କିନ୍ତୁ ତା' ପୂର୍ବରୁ ଶତ୍ରୁ ଜରାସନ୍ଧର ବିନାଶ ଅନିବାର୍ଯ୍ୟ । ସେଥିପାଇଁ ବୃକୋଦର ଓ ପାର୍ଥଙ୍କ ସହଯୋଗ ଅପରିହାର୍ଯ୍ୟ । ଜରାସନ୍ଧର ସୁରକ୍ଷିତ ଦୁର୍ଗ ସଂପର୍କରେ ମୁଁ ସମସ୍ତ ତଥ୍ୟ ସଂଗ୍ରହ କରିଥିଲେ ବି ସେ କଥା ପାଣ୍ଡବଙ୍କ ଆଗରେ କହିଲି ନାହିଁ । କେବଳ ପରବର୍ତ୍ତି ଯୋଜନା ପ୍ରସ୍ତୁତ କରିବାପାଇଁ ଦ୍ୱାରକା ଫେରି ଆସିଲି ।

●

## ।। ସପ୍ତଦଶ ଗ୍ରନ୍ଥିମୋଚନ ।।

ମୋର ନିୟତି ହିଁ ଅଦ୍‌ଭୁତ, ବିପରୀତ ! ଭୂମିଷ୍ଠ ହେଲି କଂସ କାରାକକ୍ଷରେ, ମାତ୍ର ଉତ୍ସବ ଅନୁଷ୍ଠିତ ହେଲା ନନ୍ଦଗୃହରେ । ରାଧା ପ୍ରେମରେ ବଶୀଭୂତ ହେଲି ମାତ୍ର ବିବାହ କରି ସଂସାର ଧର୍ମ ପାଳନ କଲି ଅଷ୍ଟ ପାଟ ବଂଶୀଙ୍କ ସଂଗରେ । କୃଷ୍ଣା ଆର୍ତ୍ତିରେ ବିହ୍ୱଳ ହେଲି, ହେଲେ ସମଗ୍ର ଜୀବନ ତାଙ୍କର ଦୁଃଖର ଗୁରୁଭାରରେ ଭାରାକ୍ରାନ୍ତ କରି ରଖିଲି । ତେଜସ୍ୱିନୀ କୃଷ୍ଣା ସାଧାରଣତଃ ଅହଂକୁ ବାଦ୍ ଦିଅନ୍ତି ନାହିଁ । ମାତ୍ର ମୋତେ ସ୍ମରଣ କି ଅର୍ଚ୍ଚନ କି ବନ୍ଦନ କରିବା ସମୟରେ ଅହଂକୁ ସଂପୂର୍ଣ୍ଣ ବିସର୍ଜନ ଦେଇ ପୂର୍ଣ୍ଣ ଆତ୍ମ ସମର୍ପଣ କରିଥା'ନ୍ତି ।

ଦୟାରେ ଦାନ ଦେବାଭଳି ଧୃତରାଷ୍ଟ୍ର ଯେଉଁ ଅନୁର୍ବର ଭୂମି ଖଣ୍ଡ ପାଣ୍ଡବ ମାନଙ୍କୁ ଅର୍ପଣ କରିଥିଲେ ରାଜତ୍ୱ ନିମିତ୍ତ ତା' ଥିଲା ଇନ୍ଦ୍ରପ୍ରସ୍ଥ, ମାତ୍ର ତାହାହିଁ ଦିନେ କୌରବଙ୍କ ତୁଷାଗ୍ନି ସଦୃଶ ଜଳି ଉଠିବ ଓ କୃଷ୍ଣାଙ୍କ ଭାଗ୍ୟ ସେଥିରେ ଜଡ଼ିତ ହୋଇଯିବ ଏକଥା ବା କିଏ ଜାଣିଥିଲା ? ଆଜି ମୋର ଜୀବନର ଅନ୍ତିମ ଲଗ୍ନରେ ସ୍ମୃତିପଟରୁ କୃଷ୍ଣାଙ୍କୁ ଯେମିତି ବାଦ୍ ଦେଇ ପାରୁନାହିଁ, ପାଣ୍ଡବଙ୍କ ଘାତ ପ୍ରତିଘାତମୟ ଜୀବନଯାତ୍ରାର କ୍ଲେଦାକ୍ତ ସ୍ମୃତିକୁ ମଧ୍ୟ ସେଇଭଳି ମନରୁ ପୋଛି ଦେଇ ପାରୁନାହିଁ । ପାଣ୍ଡବମାନେ ସ୍ୱୀୟ ଅଧ୍ୟବସାୟ ବଳରେ ଭୂମିକୁ ସ୍ୱର୍ଣ୍ଣପ୍ରସୂ କରିବା ସହିତ ପ୍ରଜାମାନଙ୍କର ପ୍ରିୟଭାଜନ ହୋଇଥିଲେ । ଇନ୍ଦ୍ରପ୍ରସ୍ଥକୁ ଅଧିକ ସୌଷ୍ଠବବନ୍ତ ଓ ଶ୍ରୀ ସଂପନ୍ନ କରି ଅସହିଷ୍ଣୁ କୌରବଙ୍କୁ ଇର୍ଷ୍ୟାନ୍ୱିତ କରିବା ପାଇଁ ମୁଁ ମନେ ମନେ ଏକ ଯୋଜନା ପ୍ରସ୍ତୁତ କରିଥିଲି । ଅଗ୍ନି ବହୁ ଯଜ୍ଞ ଘୃତ ସେବନ କରିବା ଫଳରେ ଦୁରାରୋଗ୍ୟ ବ୍ୟାଧିରେ ପୀଡ଼ିତ ଥିଲେ ।

ତାଙ୍କୁ ସେହି ଦୁରାରୋଗ୍ୟ ବ୍ୟାଧିରୁ ଆରୋଗ୍ୟ କରିବା ପାଇଁ ଔଷଧି ସମନ୍ୱିତ ଖାଣ୍ଡବ ବନ ଦହନର ଆବଶ୍ୟକତା ଥିଲା ଏବଂ ଏହି ଦୁଃସାଧ୍ୟ କାର୍ଯ୍ୟ ମୋର ସଖା ପାର୍ଥ ବ୍ୟତୀତ ଆଉ କିଏ କରିଥା'ନ୍ତା ? ବନରେ ଅଗ୍ନିସଂଯୋଗ ସମୟରେ ଦ୍ୱିତୀୟ ବିଶ୍ୱକର୍ମା ମୟ ଅର୍ଜ୍ଜୁନଙ୍କୁ ଅନୁରୋଧକରି ନିଜ ଜୀବନ ବଞ୍ଚାଇ କୃତଜ୍ଞତା ସ୍ୱରୂପ ଇନ୍ଦ୍ରପ୍ରସ୍ଥର ରାଜଭବନରେ ଅଶ୍ରୁତପୂର୍ବ ସଭାଗୃହ ନିର୍ମାଣ କରିଥିଲେ । ଯାହାର ସୂକ୍ଷ୍ମ କାରୁକଳା ଯେ କୌଣସି ବ୍ୟକ୍ତିକୁ ଲୋଭାକୃଷ୍ଟ କରିବାକୁ ସମର୍ଥ ଥିଲା । ସେଭଳି ଏକ ସୁରମ୍ୟ ପ୍ରାସାଦରେ ରାଜା ଯୁଧିଷ୍ଠିର ଯେତେବେଳେ ରାଜସୂୟ ଯଜ୍ଞର ଆୟୋଜନ କରିଥିଲେ ଦୁର୍ଯ୍ୟୋଧନ ଇର୍ଷ୍ୟାନ୍ୱିତ ହେବା ସ୍ୱାଭାବିକ ।

ଅପର ପକ୍ଷରେ କଂସର ଶଶୁର ମଗଧ ନରେଶ ଜରାସନ୍ଧ ଏକ ସହସ୍ର ରାଜାଙ୍କୁ ବନ୍ଦୀ କରି ରଖିଥିଲା ଏବଂ ଏକ ଯଜ୍ଞାନୁଷ୍ଠାନ କରୁଥିଲା । ଯଜ୍ଞର ଶେଷ ଦିନରେ ପୂର୍ଣ୍ଣାହୂତି ସମୟରେ ଏହି ବନ୍ଦୀ ରାଜାମାନଙ୍କର ଶିରଛେଦନର ଯୋଜନା ମଧ୍ୟ ପ୍ରସ୍ତୁତ କରିଥିଲା । ଜରାସନ୍ଧ ସହ ମୋର ଶତୃତା ବହୁ ପ୍ରାଚୀନ । ରାଜସୂୟ ଯଜ୍ଞ ପୂର୍ବରୁ ଯଦି ଜରାସନ୍ଧର ମୃତ୍ୟୁ ସମ୍ଭବ ନହୁଏ ତେବେ ଏକ ସହସ୍ରରାଜା ପାଣ୍ଡବଙ୍କ ପକ୍ଷଭୁକ୍ତ ହେବାର ସୁଯୋଗ ପାଇବେ ନାହିଁ । ଏହାଦ୍ୱାରା ଭବିଷ୍ୟତରେ ମୋର ସମସ୍ତ ଯୋଜନା ପଣ୍ଡ ହୋଇଯିବାର ଆଶଙ୍କା ମଧ୍ୟ ଥିଲା ।

ସେଦିନ ଇନ୍ଦ୍ରପ୍ରସ୍ଥରେ ପହଞ୍ଚିବା ବେଳକୁ ରାତ୍ରି ବେଶ୍ ଗଭୀର ହୋଇଯାଇଥିଲା । ନଗରର ପଥଧାରରେ ଉତ୍ସବର ଆୟୋଜନ, ବିପ୍ପଣୀର ପ୍ରସ୍ତୁତି । ଆର୍ଯ୍ୟାବର୍ତ୍ତର ପଶ୍ଚିମଭାଗରୁ ଅଶ୍ୱ ବେପାରୀମାନେ ଶୁକ୍ଳବର୍ଣ୍ଣର ସହସ୍ର ସଂଖ୍ୟକ ଦ୍ରୁତଗାମୀ ଅଶ୍ୱ ଆଣିଥା'ନ୍ତି । ପୂର୍ବଭାଗରୁ ଶ୍ୱେତ, କୃଷ୍ଣହସ୍ତୀ ସମୂହ ସହ ବଣିକମାନେ ଉପସ୍ଥିତ ହୋଇଥା'ନ୍ତି । ଦକ୍ଷିଣରୁ ଆସିଥା'ନ୍ତି ଉତ୍କୃଷ୍ଟ ରତ୍ନ ଓ ଗଜମୁକ୍ତାର ବ୍ୟବସାୟୀଗଣ । କଳିଙ୍ଗରୁ ସୂକ୍ଷ୍ମ କାରୁକାର୍ଯ୍ୟପୂର୍ଣ୍ଣ ପଟ୍ଟବସ୍ତ୍ର ସହ ବୁଣାକାରମାନେ ଉପସ୍ଥିତ ହୋଇଥା'ନ୍ତି । ଚତୁର୍ଦ୍ଦିଗ କୋଳାହଳରେ ପୂରି ଯାଇଥାଏ । ରାଜଭବନରେ ପହଞ୍ଚିବାମାତ୍ରେ ସଖା ଅର୍ଜ୍ଜୁନହିଁ ମୋତେ ସ୍ୱାଗତ କରି ଭିତରକୁ ନେଇଗଲେ । ମୋର ପିଉସୀ, ଭଗିନୀ ସୁଭଦ୍ରା, ପାଣ୍ଡବ ପଞ୍ଚଭ୍ରାତାଙ୍କ ସହ ସାକ୍ଷାତ ପରେ ଯେତେବେଳେ ଯାଜ୍ଞସେନୀଙ୍କ ସହ ସାକ୍ଷାତ ହେଲା, ସେତେବେଳେ ସେ ପ୍ରଶ୍ନ କଲେ - 'ଏଭଳି ଆନନ୍ଦ ମୁଖର ପରିବେଶରେ ମାଧବ ଅନ୍ୟମନସ୍କ, ଉଦାସୀନ ଜଣାପଡୁଛନ୍ତି ଯେ ?'

ଦ୍ରୁପଦ ତନୟା ଏଇଭଳି । ଏକାଗ୍ର ଚିତ୍ତରେ ମୋତେହିଁ ଅନୁଧ୍ୟାନ, ଅନୁଶୀଳନ କରି ମୋ ଅନ୍ତରର ପ୍ରତ୍ୟେକ ଭାଷା ଅନାୟାସରେ ପଢ଼ିପାରନ୍ତି । କୌଣସି ଗୌରଚନ୍ଦ୍ରିକା ନକରି ମୁଁ କହିଲି - 'ଶତୃନାଶନ ଉଦ୍ଦେଶ୍ୟରେ କାଲି ପ୍ରତ୍ୟୁଷରେ ଦ୍ୱିତୀୟ ପାଣ୍ଡବ ଭ୍ରାତାଭୀମ ଓ ତୃତୀୟ ପାଣ୍ଡବ ସଖା ଅର୍ଜ୍ଜୁନ ମୋ ସହ ଯାତ୍ରା କରିବେ । ଏପ୍ରସ୍ତାବରେ ପାଣ୍ଡବ ପାଟରାଣୀ ସମ୍ମତ ତ ?'

- 'ଶତୃ ?' ପାଞ୍ଚାଳୀ ବିସ୍ମୟରେ ପ୍ରଶ୍ନ କଲେ ।

ମୁଁ ରସିକତା କରି କହିଲି - 'ଏ ମଧୁ ମାସରେ ଅତନୁ ବ୍ୟତୀତ ଅପରାଜିତ ବୀର ପାଣ୍ଡବଙ୍କ ସହ କିଏ ବା ଆଉ ଶତୃତା କରିବାର ଦୁଃସାହସ କରିବ ? ହେଲେ ମୋର ଶତୃ ଅନେକ, ଜନ୍ମବଧି କେବଳ ଶତୃ ମାନଙ୍କ ସହ ମୁକାବିଲା କରିବାକୁ ପଡୁଛି । ମୋ ଶତୃର ବିନାଶ ପାଇଁ ଯଦି ପାଣ୍ଡବ ପାଟରାଣୀ ଭ୍ରାତାଭୀମ ଓ ଅର୍ଜ୍ଜୁନଙ୍କୁ ମୋ ସହ ଯିବାକୁ ଦୟାପୂର୍ବକ ଅନୁମତି ଦିଅନ୍ତେ ତେବେ ମୁଁ ବଡ଼ ଉପକୃତ ହୁଅନ୍ତି ସଖୀ !'

ପାଞ୍ଚାଳୀ କପଟ କ୍ରୋଧରେ କହିଲେ - 'ଗୋପରମଣୀଙ୍କୁ ଚାଟୁକ୍ତିରେ ମୋହିତ

କରିବାର ଅଭ୍ୟାସ ମନେ ଅଛି ତା' ହେଲେ ? କଥାରେ ତୁମକୁ କିଏ ବା ପାରିବ ? ତେବେ ଯାତ୍ରାକରିବ କୁଆଡ଼େ ଜାଣିପାରେକି ?

ମୁଁ ସଂକ୍ଷେପରେ କହିଲି - 'ମଗଧ' ।

ଜରାସନ୍ଧ ଭବନରେ ଶତ୍ରୁର ଅନୁପ୍ରବେଶ ପାଇଁ ସମସ୍ତ ରାସ୍ତା ବନ୍ଦଥିଲା । ତା'ର ଭବନରେ ଚାରୋଟି ଦ୍ୱାରରେ କଡ଼ା ନିରାପତ୍ତା ବ୍ୟବସ୍ଥା ଥିଲା । ସେଥିରେ ଯେଉଁ ଦ୍ୱାର ରକ୍ଷକ ଚତୁଷ୍ଟୟ ନିଯୁକ୍ତ ହୋଇଥିଲେ ସେମାନେ ଯେପରି ଅନୁଗତ ସେପରି ସଜାଗ । ପ୍ରଥମ ଦ୍ୱାରରେ ରକ୍ଷକ ଥିଲା ତା'ର ଆତ୍ମଜ ସହଦେବ, ସଦା ସତର୍କ ସେ । ଦ୍ୱିତୀୟ ଦ୍ୱାର ରକ୍ଷକ ଭେରୀ, ଯିଏକି ଅଭିଶପ୍ତା ମଦନିକା ଅପ୍‌ସରା । ତୃତୀୟ ଦ୍ୱାର ରକ୍ଷକ ଶିମିଳୀ ବୃକ୍ଷ, ତ୍ରେତାଯୁଗରେ ଲଙ୍କପତି ଦଶାନନର ଦ୍ୱାର ରକ୍ଷକର କାର୍ଯ୍ୟ ସେ ସୁଚାରୁରୂପେ କରିଥିଲା । ଚତୁର୍ଥ ଦ୍ୱାରର ସୁରକ୍ଷା ଭାର ନ୍ୟସ୍ତଥିଲା ଗର୍ଦ୍ଦଭ ଉପରେ । ଯିଏକି ଅଭିଶପ୍ତ ବୃଦ୍ଧଶ୍ରବା ଗନ୍ଧର୍ବ । ଏହି ସୁଶିକ୍ଷିତ ରକ୍ଷକଗଣ ଜରାସନ୍ଧର ମିତ୍ର ପକ୍ଷକୁ ବିନାଦ୍ୱିଧାରେ ଭବନ ଭିତରକୁ ପ୍ରବେଶର ଅଧିକାର ଦେଉଥିଲେ; ମାତ୍ର ଶତ୍ରୁପକ୍ଷକୁ ଦେଖିବା ମାତ୍ରେ ଶିମିଳବୃକ୍ଷ ଅସମୟରେ ସୁଦ୍ଧା ଫୁଲଭାରରେ ନଇଁ ପଡୁଥିଲା, ଭେରୀ ଘୋର ନାଦରେ ନିନାଦିତ ହେଉଥିଲା ଓ ଗର୍ଦ୍ଦଭ ଅସ୍ୱାଭାବିକଭାବେ ଶ୍ରୁତିକଟୂ ଶବ୍ଦରେ ଚିତ୍କାର କରୁଥିଲା । ଫଳତଃ ଜରାସନ୍ଧର ସେନାବାହିନୀ ସଜାଗ ହୋଇ ଉଠୁଥିଲେ । ମୁଁ କିନ୍ତୁ ଜାଣିଥିଲି ଏ ଦ୍ୱାରର ରକ୍ଷକ ଗଣ ସମସ୍ତେ ଅଭିଶପ୍ତ, ଶାପମୁକ୍ତିର ଅପେକ୍ଷାରେ ଏମାନେ ଦିନ ଗଣୁଥିଲେ ମାତ୍ର ।

ଶତ୍ରୁପକ୍ଷର ସୂଚନା ପାଇବା ପାଇଁ ଜରାସନ୍ଧର ଆଭ୍ୟନ୍ତରିଣ ବ୍ୟବସ୍ଥାଯେ ଏଭଳି ସୁପରିକଳ୍ପିତ ତାହା ମୋର ଚିନ୍ତାର ଅତୀତ ଥିଲା । ତଥାପି ପ୍ରଥମ, ଦ୍ୱିତୀୟ, ତୃତୀୟ ଦ୍ୱାର ପର୍ଯ୍ୟନ୍ତ ବୀର ଭୀମସେନ ଓ ଧନଞ୍ଜୟଙ୍କର ବୀରତ୍ୱହିଁ ମୋର ସମ୍ବଳ ଥିଲା । ପ୍ରଥମ ଦ୍ୱାର ରକ୍ଷକ ସହଦେବଙ୍କୁ ଭ୍ରାତା ଭୀମ ବଶୀଭୂତ କରିଥିଲେ ଓ ଭେରୀକୁ ଖଣ୍ଡ ବିଖଣ୍ଡ କରି ଦେଇଥିଲେ । ପ୍ରକୃତ ଅସୁବିଧା ସୃଷ୍ଟି ହେଲା ଚତୁର୍ଥଦ୍ୱାର ରକ୍ଷକ ଗର୍ଦ୍ଦଭ ନିକଟରେ । ଭୀମ, ଅର୍ଜୁନ ବ୍ରାହ୍ମଣର ଛଦ୍ମବେଶରେ ଯାଇଥିଲେ ସୁଦ୍ଧା ସେମାନଙ୍କର ଚିତା ତିଳକ ଉପବୀତ ଶୋଭିତ ତନୁରେ ସିଂହ ସଦୃଶ ନିରଙ୍କୁଶ ବିକ୍ରମର ମୁଦ୍ରା ଗର୍ଦ୍ଦଭକୁ ସନ୍ଦେହାକୁଳିତ କରିଥିଲା । ଭୀମ, ଅର୍ଜୁନଙ୍କୁ ସଂପୂର୍ଣ୍ଣ ଉପେକ୍ଷା କରି ସେ ମୋତେ କହିଥିଲା, 'ହେ ଗୋପୀ ବଲ୍ଲଭ ! ତୁମେ ଯଦି ମୋ ପାଦ ଧରିବ ତେବେ ମୁଁ ନୀରବ ରହିବାକୁ ପ୍ରତିଶୃତି ଦେବି ।'

ସର୍ତ୍ତଟି ପ୍ରକୃତରେ ଅପମାନ ଜନକ । ଏହା ଶୁଣିବା ମାତ୍ରେ ସଖା ପାର୍ଥ ଓ ଭ୍ରାତା ଭୀମସେନ ପ୍ରଚଣ୍ଡ ଭାବେ କ୍ରୋଧାନ୍ୱିତ ହୋଇ ଗର୍ଦ୍ଦଭକୁ ହତ୍ୟା କରିବାକୁ ଉଦ୍ୟତ ହେଲେ । ମୁଁ

କିନ୍ତୁ ସେମାନଙ୍କୁ ନିବୃତ୍ତ କରିଥିଲି । କାର୍ଯ୍ୟସିଦ୍ଧି ପାଇଁ ଯେ କୌଣସି ନୀଚକର୍ମରେ ପ୍ରବୃତ୍ତହେବା ମୋର ନୀତି । ତାହାହିଁ କରିଥିଲି । ଗର୍ବଭରର ପାଦ ଧରିଥିଲି ଓ ଅନାୟାସରେ ପ୍ରତାରଣାପୂର୍ଣ୍ଣ କୂଟ କୌଶଳରେ ମିତ୍ରର ମୁଖା ପିନ୍ଧି ରାଜଭବନ ଭିତରକୁ ଯିବାର ଅଧିକାର ମଧ୍ୟ ହାସଲ କରିଥିଲି । ଛଦ୍ମବେଶୀ ବ୍ରାହ୍ମଣଭାବେ ଯେତେବେଳେ ଆମେ ତିନିଜଣ ଯଜ୍ଞବେଦୀ ନିକଟରେ ପହଞ୍ଚି ବେଦଗାନ ଆରମ୍ଭ କଲୁ ଜରାସନ୍ଧ ଯୋଡ଼ହସ୍ତରେ ଉଭାହୋଇ ଆମ୍ଭମାନଙ୍କୁ କିଛି ଦାନ ଦେବା ପାଇଁ ଅଭିଳାଷ ପ୍ରକାଶ କଲା । ମୁଁ ତ ଏହି ସୁଯୋଗ ଅପେକ୍ଷାରେ ଥିଲି । ତତ୍‌କ୍ଷଣାତ୍ କହିଲି- 'ଯୁଦ୍ଧହିଁ ଆମର କାମ୍ୟ । ସେତିକି ମାତ୍ର ଦାନ ଦେଇ ମଗଧ ନରେଶ ଆମର ମନୋବାଂଛା ପୂର୍ଣ୍ଣ କରନ୍ତୁ । ମଗଧ ନରେଶ ଅପରାଜିତ ବୀର ବୋଲି ଶୁଣି ତାଙ୍କ ସହ ଯୁଦ୍ଧ କରିବାକୁ ଆମେ ଆସିଛୁ ।'

ତା'ର ବିସ୍ମୟର ସୀମା ରହିଲା ନାହିଁ । ସେ ଅଟ୍ଟହାସ୍ୟ କରି କହିଲା - 'ମଗଧ ନରେଶ ସହ ତିନୋଟି ସୁକୁମାର ଯୁବକ ଯୁଦ୍ଧ କରିବେ ? ମୃତ୍ୟୁ ତେବେ ତୁମ୍ଭମାନଙ୍କର ଏତେ କାମ୍ୟ ?'

ମୋତେ ଓ ଅର୍ଜ୍ଜୁନଙ୍କୁ ସେ ସଂପୂର୍ଣ୍ଣ ଉପେକ୍ଷା କଲା ଓ ଭୀମସେନଙ୍କର ବଳିଷ୍ଠ ବାହୁ ଯୁଗଳକୁ କିଛି ସମୟ ଚାହିଁବାପରେ କହିଲା - 'ବେଶ୍ ! ମୁଁ ଏହି ଯୁବକ ସହ ମଲ୍ଲଯୁଦ୍ଧ କରିବି । ଯଦିଓ ତା'ର ମୃତ୍ୟୁ ଅନିବାର୍ଯ୍ୟ । ଆଉ ତମ ଦୁହିଁଙ୍କ ସୁକୁମାର ତନୁ ମୋର ମୁଷ୍ଟିପ୍ରହାର ସହ୍ୟକରି ପାରିବ ନାହିଁ । ବରଂ ଏହି ବାଳକର ମୃତ୍ୟୁପରେ ତମେ ଦୁହେଁ ଫେରିଯାଇ ତା'ର ମାତାକୁ ସାନ୍ତ୍ୱନା ଦେବ ।'

ଯୁଦ୍ଧ ଆରମ୍ଭ ହେଲା । ଭୟଙ୍କର ମଲ୍ଲଯୁଦ୍ଧ । ବହୁ ସମୟ ଧରି ଜୟ ପରାଜୟ ଅନିଶ୍ଚିତ ହୋଇ ରହିଲା । ଉଭୟଙ୍କ ଶରୀର କ୍ଳାନ୍ତି, ଶ୍ରାନ୍ତି, ସ୍ୱେଦ ଓ ରକ୍ତରେ ଜର୍ଜ୍ଜରିତ ହୋଇଗଲା । ଜରାସନ୍ଧର ଜନ୍ମ ରହସ୍ୟ ସହ ମୃତ୍ୟୁ ରହସ୍ୟ ଓତଃପ୍ରୋତଃ ଭାବେ ଜଡ଼ିତ । ଜନ୍ମ ସମୟରେ ଯେପରି ସେ ଦ୍ୱିଖଣ୍ଡିତ ହୋଇଥିଲା, ମୃତ୍ୟୁବେଳେ ସେଇଭଳି ତାକୁ ଦ୍ୱିଧା ବିଭକ୍ତ କଲେହିଁ ତା'ର ମୃତ୍ୟୁ ସମ୍ଭବ ହେବ - ଏକଥା ମୁଁ ଜାଣିଥିଲି । ଯେଉଁ ଦୁର୍ବାସା ଋଷି କୁନ୍ତୀଙ୍କ ଜୀବନରେ ଭାଗ୍ୟ ବିପର୍ଯ୍ୟୟକୁ ଡାକି ଆଣିଥିଲେ । ଯେଉଁ ଦୁର୍ବାସା ଋଷି ଶକୁନ୍ତଳାଙ୍କ ଜୀବନରେ ଦୁର୍ଭାଗ୍ୟର କାରଣ ହୋଇଥିଲେ ସେହି ଦୁର୍ବାସାଙ୍କ ବରଦାନ ଜରାସନ୍ଧର ଜୀବନକୁ ମଧ୍ୟ ସମସ୍ୟା ଜଡ଼ିତ କରିଦେଇଥିଲା । ଏକଦା ଅପୁତ୍ରିକ ରାଜା ଭୂପାଳସେନଙ୍କୁ ମହର୍ଷି ଦୁର୍ବାସା ଚୂତଫଳଟିଏ ପ୍ରଦାନ କରି ଏହାରି ପ୍ରଭାବରେ ତାଙ୍କ ରାଣୀ ପୁତ୍ରବତୀ ହେବାର ଆଶୀର୍ବାଦ କରିଥିଲେ । ରାଜା ସେହି ଚୂତ ଫଳଟିକୁ ତାଙ୍କର ପ୍ରିୟବତୀ ରାଣୀ ସୁମତିଙ୍କୁ ଅର୍ପଣ କରିଥିଲେ । ସୁମତୀ ତାହା ରାଜାଙ୍କର ଅନ୍ୟ ଏକ ରାଣୀ ଚାରୁବତୀଙ୍କ ସହ ସମାନ ଭାଗକରି ଖାଇଥିଲେ ।

ଯଥା ସମୟରେ ଦୁଇରାଣୀଙ୍କର ଗର୍ଭବାସ ହୋଇଥିଲା ଓ ଉଭୟ ରାଣୀଙ୍କ ଗର୍ଭରୁ ଦ୍ୱିଖଣ୍ଡିତ ଭାବେ ଜରାସନ୍ଧ ଭୂମିଷ୍ଠ ହୋଇଥିଲା । ଏହି ଦ୍ୱିଖଣ୍ଡିତ ନବଜାତକ ପ୍ରତି ସେଦିନ ତା'ର ଜନକ ଜନନୀ କେହି ହେଲେ ଦୟା ପରବଶ ହୋଇନଥିଲେ ବରଂ ରାଜା ଭୂପାଳସେନ ସୂତିକା ଗୃହରୁ ସେହି ଜୀବନ୍ତ ନବଜାତକକୁ ଶ୍ମଶାନରେ ଫିଙ୍ଗି ଦେଇ ଆସିଥିଲେ ଶ୍ୱାନ ଶିବାଙ୍କର ଭୋଜ୍ୟ ହେବା ପାଇଁ । ଶ୍ମଶାନରେ ଜାରକୀ ରାକ୍ଷସୀ ସେହି ଦ୍ୱିଖଣ୍ଡିତ ନବଜାତକକୁ ଗ୍ରାସ କରିଥିଲା ଓ ପରମୁହୂର୍ତ୍ତରେ ତା'ର ଉଦର ବିଦୀର୍ଣ୍ଣ କରି ଅକ୍ଷତ, ଅଖଣ୍ଡିତ ଶରୀରରେ ଜରାସନ୍ଧର ନବଜନ୍ମ ହୋଇଛି । ଏଭଳି ଅବିଶ୍ୱାସ୍ୟ ଘଟଣା ଘଟିବା ପରେହିଁ ଭୂପାଳସେନ ତାକୁ ପୁତ୍ର ଭାବେ ସ୍ୱୀକୃତି ଦେଇ କୋଳାଗ୍ରତ କରି ରାଜଭବନକୁ ନେଇ ଯାଇଥିଲେ ।

ପ୍ରବଳ ଯୁଦ୍ଧପରେ ଯେତେବେଳେ ଜରାସନ୍ଧ ପରାଜୟର କୌଣସି ସୂଚନା ନ ପାଇଲି ସେତେବେଳେ ତା'ର ମୃତ୍ୟୁଭେଦଟିକୁ କାର୍ଯ୍ୟକାରୀ କରିବା ନିମିତ୍ତ ମୋର ଉତ୍ତରୀୟକୁ ଦ୍ୱିଖଣ୍ଡିତ କରି ଚିରି ଦେଇ ବୃକୋଦରଙ୍କୁ ସଙ୍କେତ ଦେଇଥିଲି । ବୃକୋଦରଙ୍କ ଦ୍ୱାରା ଜରାସନ୍ଧ ନିହତ ହେବାପରେ ତା'ର ପୁତ୍ର ସହଦେବକୁ ମଗଧ ସିଂହାସନରେ ଅଭିଷିକ୍ତ କରି ସହସ୍ର ବନ୍ଦୀ ରାଜାଙ୍କୁ ମୁକ୍ତି ଦେଇଥିଲି ଓ ଅନାୟାସରେ ସେମାନେ ସମସ୍ତେ ପାଣ୍ଡବଙ୍କ ପକ୍ଷଭୁକ୍ତ ହୋଇଯାଇଥିଲେ । ଏସମସ୍ତ କାର୍ଯ୍ୟ ଶେଷ କରି ଯେତେବେଳେ ଆମେ ଇନ୍ଦ୍ରପ୍ରସ୍ଥ ଫେରିଆସିଲୁ ପାଞ୍ଚାଳୀଙ୍କ ଦୃଷ୍ଟି ମୋର ଛିନ୍ନ ଉତ୍ତରୀୟରେହିଁ ପଡ଼ିଥିଲା ଓ ସେ କହିଲେ - 'ଦ୍ୱାରକାଧୀଶଙ୍କର ଏପରି ଛିନ୍ନ ଉତ୍ତରୀୟଯେ ?' ମୁଁ ବୃକୋଦରଙ୍କ ଆଖିସହ ଆଖି ମିଶାଇ ତାଙ୍କୁ ନୀରବ ରହିବାକୁ ଇଙ୍ଗିତ ଦେଇଥିଲି ।

ରାଜସୂୟ ଯଜ୍ଞ ଅନୁଷ୍ଠିତ ହେବା ନିଧାର୍ଯ୍ୟ ହୋଇଯାଇଥିଲା । ମୁଁ ଜାଣିଥିଲି ମୋର ମାଉସୀ ପୁଅ ଭାଇ ଚେଦିରାଜ ଶିଶୁପାଳ ମୋ ପ୍ରତି ଚିର ଅସହିଷ୍ଣୁ । ବିଶେଷତଃ ରୁକ୍ମିଣୀ ବିବାହ ଦିନ୍‌ରୁ ଶିଶୁପାଳର ବିଦ୍ୱେଷ ବହୁଗୁଣିତ ହୋଇଥିଲା । ଅନ୍ୟପକ୍ଷରେ ମୁଁ ତା'ର ଏକଶତ ଦୋଷ କ୍ଷମା କରିବି ବୋଲି ପ୍ରତିଶ୍ରୁତି ବଦ୍ଧ ହୋଇଥିଲି । ସେଥିପାଇଁ ଗଣ୍ଡଗୋଳକୁ ଏଡ଼େଇବା ପାଇଁ ମୁଁ ତା'ଠାରୁ ଦୂରେଇ ଦୂରେଇ ରହୁଥିଲି । କିନ୍ତୁ ଅନେକ ସମୟରେ ବିଧି ନିର୍ଦ୍ଦିଷ୍ଟ ଭାବେ, ଅନିଚ୍ଛାକୃତ ଭାବେ ସମସ୍ୟାରେ ଜଡ଼ିତ ହେବାକୁ ପଡ଼ିଥାଏ । ଅତିଥି ଅଭ୍ୟର୍ଥନାଠାରୁ ଆରମ୍ଭ କରି ଯଜ୍ଞାନୁଷ୍ଠାନ ପର୍ଯ୍ୟନ୍ତ ଲୋକଚକ୍ଷୁରେ ଯାହା ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ, ସେପରି ଦାୟିତ୍ୱ ମୁଁ ନେଇନଥିଲି । ତଥାପି ବିଜ୍ଞମାନଙ୍କ ଦୃଷ୍ଟିରେ ସର୍ବାଧିକ ମହତ୍ୱପୂର୍ଣ୍ଣ ଦାୟିତ୍ୱଟିଏ ନେଇଥିଲି, ତା' ହେଉଛି ସମସ୍ତ ଅତିଥି ମାନଙ୍କୁ ପାଦାର୍ଘ୍ୟ ପ୍ରଦାନ କରିବା, ସମସ୍ତଙ୍କ ପଦ ପ୍ରକ୍ଷାଳନ କରିବା ଏବଂ ଭୋଜନ ଶେଷରେ ସମସ୍ତଙ୍କ ଉଚ୍ଛିଷ୍ଟ ପାତ୍ର ଓ ସ୍ଥାନ ପରିଛନ୍ନ କରିବା ।

ଯଜ୍ଞାରମ୍ଭ ପୂର୍ବରୁ କିଏ ଅଗ୍ରପୂଜ୍ୟ ହେବ ବୋଲି ଯେତେବେଳେ ଧର୍ମରାଜ ଯୁଧିଷ୍ଠିର

ପିତାମହ ଭୀଷ୍ମଙ୍କୁ ପ୍ରଶ୍ନ କଲେ ସେତେବେଳେ ଭୀଷ୍ମ କହିଲେ - 'ଯଶୋଦା ଦୁଲାଳଙ୍କ ଉପସ୍ଥିତିରେ ଏ ପ୍ରଶ୍ନ କାହିଁକି ? ସେ ହିଁ ଅଗ୍ରପୂଜ୍ୟ !'

ତାଙ୍କର ଏ ପ୍ରସ୍ତାବକୁ ମହାମନା ବିଦୂର ସମର୍ଥନ କରିଥିଲେ । ଏ ପ୍ରସ୍ତାବ ଶିଶୁପାଳ ପକ୍ଷେ ଅସହ୍ୟ ଥିଲା । ସେ କୁରୁଶ୍ରେଷ୍ଠ ଭୀଷ୍ମ, ବିଦୂର, ଯୁଧିଷ୍ଠିର ତଥା ମୋତେ ଆକ୍ଷେପ କରି କଟୂକ୍ତି କରିଥିଲା । ତା'ର କଟୂକ୍ତି ମୋ ପାଇଁ ଯାହା ହେଉନା କାହିଁକି ସତ୍ୟସନ୍ଧ ଭୀଷ୍ମଙ୍କୁ ସେ 'ନିମ୍ନଗାର ପୁତ୍ର' ତଥା ମହାମନା ବିଦୂରଙ୍କୁ 'ଦାସୀପୁତ୍ର' ବୋଲି ଯେଉଁଭଳି ଅବଜ୍ଞା ସୂଚକ ସମ୍ବୋଧନ କରିଥିଲା ତା' ମୋର ସହ୍ୟ ଶକ୍ତିର ସୀମା ଲଂଘନ କରିଥିଲା । ଶିଶୁପାଳର ଏକଶତ ଦୋଷ ପୂର୍ଣ୍ଣ ହୋଇଥିଲା ଓ ଆଉ କ୍ଷମା ପାଇବାର ଯୋଗ୍ୟ ସେ ନଥିଲା । ମୁଁ ତାକୁ ହତ୍ୟା କରିଥିଲି । ହଁ, ସେଦିନ ଶିଶୁପାଳର ଶୋଣିତ ଆହୂତିରେ ରାଜସୂୟ ଯଜ୍ଞ ସଂପନ୍ନ ହୋଇଥିଲା ସତ; କିନ୍ତୁ ଭିତରେ ଭିତରେ କୌରବଙ୍କ ଭିତରେ ତୁଷାଗ୍ନି ସଦୃଶ ଈର୍ଷ୍ୟା, ଅସହିଷ୍ଣୁତାର ବିଷ ବାଷ୍ପ କୁହୁଳୁ ଥିଲା । ପାଣ୍ଡବଙ୍କ ସମୃଦ୍ଧି ପରଶ୍ରୀକାତର ଦୁର୍ଯ୍ୟୋଧନ  ଅନ୍ତରରେ ଶେଳବିଦ୍ଧ କରିଥିଲା ।

ଇନ୍ଦ୍ରପ୍ରସ୍ଥରେ ଶିଳ୍ପୀ ମୟ ପାଣ୍ଡବଙ୍କ ପାଇଁ ଯେଉଁ ସଭାଗୃହ ନିର୍ମାଣ କରିଥିଲେ ସେଥିରେ ମୟଙ୍କର ସମଗ୍ର ଜୀବନର ସମସ୍ତ ଦକ୍ଷତା, କାରୁକାର୍ଯ୍ୟ ଓ ଚାରୁଶିଳ୍ପ କେନ୍ଦ୍ରୀଭୂତ ହୋଇଥିଲା । ସ୍ୱଚ୍ଛ ସ୍ଫଟିକରେ ନିର୍ମିତ ଏକ ସୁବିଶାଳ ସରୋବରରେ ଶ୍ୱେତ ମର୍ମର ପ୍ରସ୍ତର ନିର୍ମିତ ରାଜହଂସ, ବକଶ୍ରେଣୀ, ଶ୍ୱେତପଦ୍ମ, ପଦ୍ମରାଗ ମଣିରେ ଲୋହିତପଦ୍ମ, ଇନ୍ଦ୍ରନୀଳ ମଣିରେ ନୀଳପଦ୍ମ, ମର୍କତ ମଣିରେ ପତ୍ରସମୂହ ନିର୍ମିତ ହୋଇଥିଲା । ବାୟୁର ଅନୁକୂଳତା ସହ ସଂଯୋଗ କରି ଏପରି ସ୍ଥାନରେ ସେ ସବୁ ଖଚିତ ହୋଇଥିଲାଯେ, ସେମାନେ ଅଚଳ ବସ୍ତୁ ମାତ୍ର ହେଲେ ସୁଦ୍ଧା ସଚଳ,  ସଜୀବ ପ୍ରାୟ ପ୍ରତିତ ହେଉଥିଲେ । ବିଶେଷତଃ ଇନ୍ଦ୍ରନୀଳ ମଣିର ମୃଣାଳ ସହ ଏକ କୋରକିତ ଶ୍ୱେତ ପଦ୍ମକୁ ଚଞ୍ଚୁରେ ଧାରଣ୍ କରି  ପକ୍ଷବିସ୍ତାର କରି ଶୂନ୍ୟମାର୍ଗକୁ ଉଡ଼ି ଯାଉଥିବା ମରାଳର  ଶିଳ୍ପଟି ଅପୂର୍ବ ରମଣୀୟ । ସ୍ଫଟିକ ସ୍ୱଚ୍ଛ ଏକ ସୁନିର୍ମଳ, ସୁଶୀତଳ ଜଳ ପରିପୂର୍ଣ୍ଣ ସରୋବରର ଚତୁର୍ଦ୍ଦିଗରେ ମର୍ମର ପ୍ରସ୍ତର ବନ୍ଧଦେଇ ତାହାକୁ ଏଭଳି ସ୍ଥିର ରଖିଥିଲେ ଯେ, ତାହା ଜଳାଶୟ ଭଳି ମନେ ନହୋଇ ବରଂ ଚତ୍ୱର ସଦୃଶ ମନେ ହେଉଥିଲା । ଶିଳ୍ପୀ ହସ୍ତର ସୁନିପୁଣତା ବଳରେ ପ୍ରାଚୀର ଗାତ୍ରରେ ଯେଉଁ ରଂଗୀନ ଭିତ୍ତି ଚିତ୍ରମାନ ଖୋଦିତ ହୋଇଥିଲା ତାହା ଫଳ ପୁଷ୍ପ ଶୋଭିତ ଅରଣ୍ୟାନୀର ଭ୍ରମ ସୃଷ୍ଟି କରୁଥିଲା । କେଉଁଠାରେ ଦରଜା ଥିବା ଭଳି ମନେ ହେଉଥିଲେ ମଧ୍ୟ ତାହା ପାଷାଣ ପ୍ରାଚୀର ଥିଲା ତ ପୁଣି କେଉଁଠି ପ୍ରାଚୀର ଥିବାଭଳି ମନେ ହେଉଥିବା ବେଳେ ତାହା ଉନ୍ମୁକ୍ତ ଦ୍ୱାର ହିଁ ଥିଲା । ଛାତ ଦେହରେ ଖଚିତ ହୋଇଥିବା ବହୁବର୍ଣ୍ଣ ମଣିର ପ୍ରଭାବରେ ରାତ୍ରିକାଳରେ କେଉଁଠାରେ ସ୍ପଷ୍ଟ ଦିବାଲୋକରେ ସୁଦ୍ଧା ଚନ୍ଦ୍ର

ତାରକିତ ରାତ୍ରିର ଭ୍ରମ ! କେଉଁଠାରେ ମେଘପୁଞ୍ଜର ଭ୍ରମତ ପୁଣି କେଉଁଠି ରାତ୍ରି କାଳରେ ମଧ୍ୟାହ୍ନର ଭ୍ରମ । ସ୍ୱଚ୍ଛ ସ୍ଫଟିକ ଗୁଡ଼ିକ ଉଦ୍ୟାନରେ ସ୍ଥାନେ ସ୍ଥାନେ ଏପରି ସଜା ହୋଇ ଥିଲା ଯେ ତାହା ନିର୍ଝର ସଦୃଶ ପ୍ରତୀୟମାନ ହେଉଥିଲା । ଯଜ୍ଞସ୍ଥଳ ପାଞ୍ଚସହସ୍ର ନରାଧିପତି ଉପବିଷ୍ଟ ହେବାଭଳି ରତ୍ନଖଚିତ ଗଜଦନ୍ତର ଆସନ ସମୂହ, ଦଶ ସହସ୍ର ସୁବେଶିତ ଦାସ ଦାସୀଙ୍କ ଦ୍ୱାରା ଚାମର ବ୍ୟଜନରେ ସେବିତ, ବହୁସହସ୍ର ମଣିଦ୍ୱାରା ଆଲୋକିତ ହୋଇ ଇନ୍ଦ୍ରସଭା ବା କୁବେର ସଭା ଭଳି ମନେ ହେଉଥିଲା ।

ଏଭଳି ଏକ ସଭାଭବନ ଚିର ଈର୍ଷାଳୁ ଦୁର୍ଯ୍ୟୋଧନର ଅନ୍ତରକୁ ବିଷ ତିକ୍ତ କରିବା ସ୍ୱାଭାବିକ । ମୁଁ ବି କାହିଁକି କୌରବ ମାନଙ୍କର ଈର୍ଷ୍ୟା ଉଦ୍ରେକର ଏଭଳି ସୁଚିନ୍ତିତ ବ୍ୟବସ୍ଥା କରିଥିଲି ? ଇନ୍ଦ୍ରପ୍ରସ୍ଥରୁ ଫେରି ଆସିବା ପରେ କୌରବଗଣ ହସ୍ତିନାରେ ମଧ୍ୟ ଏକ ସୁବିପୁଳ ଆୟତନ ବିଶିଷ୍ଟ ସଭାଗୃହ ନିର୍ମାଣ କରିଥିଲେ ଭିନ୍ନ ଏକ ଦକ୍ଷ ଶିଳ୍ପୀଦ୍ୱାରା । ସେହି ସଭାଗୃହରେ ଯେ ଦିନେ ନାରୀଶକ୍ତି ଏପରି ଚରମ ଲାଂଛନାର ସମ୍ମୁଖୀନା ହେବ, ନାରୀର ଅସହାୟ ଆର୍ତ୍ତନାଦ ଯେ ଦିନେ ସଭାଭବନର ପାଷାଣ ଗାତ୍ରରେ ମଥା ପିଟିବ ଶତ ଶତ ପୁରୁଷଙ୍କ ଲୁବ୍ଧ ଦୃଷ୍ଟି ସମ୍ମୁଖରେ ସେ କଥା ସେଦିନ କେହି ଜାଣି ନଥିଲେ । ଥାଉ ସେ କଥା ପରେ ।

ମହା ସମାରୋହରେ ଅନୁଷ୍ଠିତ ହେଉଥିବା ରାଜସୂୟ ଯଜ୍ଞର ଆଡ଼ମ୍ବର ଯେପରି ଦର୍ଶନୀୟ ବସ୍ତୁ ଥିଲା । ଏହାର ଅଲକ୍ଷ୍ୟରେ ସେଇଭଳି ବହୁ ଘଟଣା ସଂଘଟିତ ମଧ୍ୟ ହେଉଥିଲା । ପ୍ରାଜ୍ଞ ଯୁଧିଷ୍ଠିର କିନ୍ତୁ ନ୍ୟାୟୋଚିତ ଭାବେ ପ୍ରତ୍ୟେକଙ୍କୁ ସନ୍ତୁଷ୍ଟ କରିବାକୁ ଆପ୍ରାଣ ଉଦ୍ୟମ କରିଥିଲେ । ସେ ସମୟରେ ଇନ୍ଦ୍ରପ୍ରସ୍ଥର ରାଜକୋଷକୁ ପ୍ରତ୍ୟହ ସହସ୍ର ଉପଢ଼ୌକନ ସାମଗ୍ରୀ ସହ ମଣି, ରତ୍ନ, ଧନ, ଧାନ୍ୟର ସୁଅ ଛୁଟୁଥିଲା କରଦ ତଥା ନିମନ୍ତ୍ରିତ ରାଜା ମାନଙ୍କ ତରଫରୁ । ଆୟ ଯେପରି ସୁ ପ୍ରତୁଳ, ବ୍ୟୟ ମଧ୍ୟ ସେହିପରି ସୁପ୍ରଚୁର । ଏହି ଆୟବ୍ୟୟ ହିସାବ ରଖିବାର ଗୁରୁଦାୟିତ୍ୱ ତଥା ସମଗ୍ର ରାଜକୋଷର ଦାୟିତ୍ୱ ଧର୍ମରାଜ, ମାନଗୋବିନ୍ଦଙ୍କୁ ହିଁ ଅର୍ପଣ କରିଥିଲେ । ସାଧାରଣତଃ ଏହି ଗୁରୁ ଦାୟିତ୍ୱ ଅତ୍ୟନ୍ତ ବିଶ୍ୱସ୍ତ ପାତ୍ରକୁ ଦିଆଯାଏ । କୌରବ ଭ୍ରାତା ଗଣ ଯେ ପାଣ୍ଡବଙ୍କର ବିଶ୍ୱସ୍ତ- ଏହି ଧାରଣା ସେମାନଙ୍କ ଉଦ୍ଦେଶ୍ୟ ଥିଲା, କିନ୍ତୁ ଏହି ସବୁ ଉଦ୍ଦେଶ୍ୟକୁ କୌରବ ଭ୍ରାତାଗଣ କଦର୍ଥ କରି ନିଜ ନିଜ ଭିତରେ ଆଲୋଚନା କରିଥିଲେ ଯେ ପାଣ୍ଡବମାନେ ପ୍ରାଚୁର୍ଯ୍ୟ ପ୍ରଦର୍ଶନ କରୁଛନ୍ତି ! ଆଉ ଏକ ଅନିଚ୍ଛାକୃତ ଦୁର୍ଘଟଣା ଘଟି ଯାଇଥିଲା, ତା' ହେଉଛି କୃତ୍ରିମ ଜଳାଶୟରେ ଚତ୍ୱର ଭ୍ରମରେ ଦୁର୍ଯ୍ୟୋଧନର ପତନ । ସେହି ଅଭାବିତ ଦୃଶ୍ୟରେ ପାଞ୍ଚାଳ ତନୟା ପୁଣି କୁଆଡ଼େ ହାସ୍ୟ ସମ୍ବରଣ କରିପାରି ନଥିଲେ ! ମହାମାନୀ ଦୁର୍ଯ୍ୟୋଧନ ଦ୍ରୌପଦୀଙ୍କର ଏହି ହାସ୍ୟୋଚ୍ଛ୍ୱାସକୁ କୌଣସି ଦିନ କ୍ଷମା କରିନଥିଲା । ବହୁମୂଲ୍ୟ........ ବହୁମୂଲ୍ୟ ଦେବାପାଇଁ ପଡ଼ିଥିଲା ଏଥିପାଇଁ ପାଞ୍ଚାଳୀଙ୍କୁ ।

ଧର୍ମରାଜ ସମସ୍ତଙ୍କ ଭିତରେ ସୁଚାରୁରୂପେ ଦାୟିତ୍ୱ ବଣ୍ଟନ କରିଥିଲେ । ମୁଁ ଯେତେବେଳେ ପ୍ରଶ୍ନ କରିଥିଲି- 'ଇନ୍ଦ୍ରପ୍ରସ୍ଥ ନରେଶ ମୋର କାର୍ଯ୍ୟଦକ୍ଷତାକୁ ବିଚାରକୁ ଆଣୁନାହାନ୍ତି ମନେ ହେଉଛି ! ମୋତେ କୌଣସି ଦାୟିତ୍ୱ ଦେଲେ ନାହିଁ ଯେ ! ଥରେ ଦାୟିତ୍ୱ ଦେଇ ଦେଖନ୍ତୁ..... ।'

ମୋତେ ଆଉ ଅଧିକା କହିବାକୁ ନଦେଇ ଧର୍ମରାଜ କୃତାଞ୍ଜଳି ପୁଟରେ ଅତ୍ୟନ୍ତ ବିନୟ ସହକାରେ କହିଉଠିଲେ - 'ହେ ଗୋବିନ୍ଦ ! ଏ ଅନୁଷ୍ଠାନ, ଏହାର ଆରମ୍ଭ, ଏହାର ଶେଷ ସବୁତ ତୁମେ ! ତୁମକୁ କି ଦାୟିତ୍ୱ ଦେବି ? ତୁମରି ଇଚ୍ଛାହିଁ ପୂର୍ଣ୍ଣ ହେଉ !'

ମୁଁ ପାଞ୍ଚାଳ ତନୟାଙ୍କୁ ଚାହିଁ ହସି ହସି କହିଲି -'ଶୁଣିଲ ସଖୀ ? ଏଥର ମୁଁ ସ୍ୱାଧୀନ । ଯାହା ଇଚ୍ଛା ତା' କରିପାରେ ।'

ଏହାର ଉତ୍ତରରେ କୃଷ୍ଣା କ'ଣ କହି ଆସୁଥିଲେ, ମାତ୍ର ସେହି କକ୍ଷରେ ପିଉସୀ ପୃଥା ପ୍ରବେଶ କରିବା ଦେଖି ସେ ଚୁପ୍ ହୋଇଗଲେ । ସୁତରାଂ ମୁଁ ମୋର ଇଚ୍ଛାମତେ ଗୋଟିଏ କାମ ବାଛି ନେଇଥିଲି । ତା' ହେଉଛି ସମସ୍ତ ଅତିଥିଙ୍କ ପଦ ପ୍ରକ୍ଷାଳନ କରି ସେମାନଙ୍କୁ ଭୋଜନ କକ୍ଷରେ ବସାଇବା ଓ ଭୋଜନ ପରେ ସେମାନଙ୍କ ଉଚ୍ଛିଷ୍ଟ, ପତ୍ର, ପାତ୍ର ଓ ସ୍ଥାନକୁ ପରିଷ୍କାର କରିବା । କାର୍ଯ୍ୟବ୍ୟସ୍ତତା ଭିତରେ ପଣ୍ଡୁନନ୍ଦନ ଗଣ ଏହା ଲକ୍ଷ୍ୟ କରିନଥିଲେ, ଯେତେବେଳେ ଲକ୍ଷ୍ୟ କଲେ ସେତେବେଳେ ସେମାନଙ୍କର ଲଜ୍ୟାର ସୀମା ରହିଲା ନାହିଁ । ଏପରି ନିକୃଷ୍ଟ କର୍ମ ମୁଁ କାହିଁକି କଲି ବୋଲି ଅବଶୋଷର ଅବଶୋଷ ରହିଲା ନାହିଁ ସେମାନଙ୍କର । ମୁଁ କିନ୍ତୁ ସ୍ପଷ୍ଟ କହି ଦେଇଥିଲି ଯେ କୌଣସି କର୍ମ କେବେହେଲେ ନିକୃଷ୍ଟ ହୁଏ ନାହିଁ ।

ରାଜସୂୟ ଯଜ୍ଞ ଅବସରରେ କୌରବ ଓ ପାଣ୍ଡବଙ୍କର ପାରିବାରିକ ମିଳନ ପର୍ବଟି ବିଶେଷତଃ ଉଭୟ ପକ୍ଷର ଶିଶୁମାନଙ୍କର ଏକତ୍ର ଅବସ୍ଥାନ, କ୍ରିଡ଼ା, ଭୋଜନ, ଶୟନ କିମ୍ବା ବିଭିନ୍ନ ଆନୁଷ୍ଠାନିକ କର୍ମରେ ଏକତ୍ର ଯୋଗଦାନ ବେଶ୍ ଉପଭୋଗ୍ୟ ହୋଇଥିଲା । କେଜାଣି ଏଇ ସୁକୁମାରବୃତ୍ତି ଶିଶୁ ଗୁଡ଼ିକ ଯଦି କୌରବ ପାଣ୍ଡବଙ୍କ ଭିତରେ ଥିବା ଆଜନ୍ମ ବୈରଭାବକୁ ନିଶ୍ଚିହ୍ନ କରି ବନ୍ଧୁତାର ସେତୁ ସ୍ଥାପନ କରିପାରନ୍ତି । କାରଣ ମୁଁ କୌଣସି ଦିନ ଯୁଦ୍ଧ ବା ରକ୍ତପାତ ଚାହିଁନଥିଲି । ଶାନ୍ତି ହିଁ ମୋର ଏକମାତ୍ର କାମ୍ୟ ଥିଲା । ତା' କିନ୍ତୁ ହେବାର ନଥିଲା । ମୋ ଭଳି ଆଉଜଣେ ଦୁଇଜଣ ମଧ୍ୟ ଏ ଉଭୟ ପରିବାରର ମିତ୍ରତା ସୂତ୍ରରେ ବାନ୍ଧି ହୋଇ ଶତସମ୍ବତ୍ସର ସସାଗରା ଧରା ଭୋଗ କରନ୍ତୁ ବୋଲି ଆନ୍ତରିକ ଭାବେ ଚାହିଁ ଥିଲେ । ସେ ହେଉଛନ୍ତି କୁରୁପିତାମହ ଭୀଷ୍ମ ଓ ଏ ଉଭୟ ପରିବାରର ହିତୈଷୀ ମହାମନା ବିଦୁର । ଏ ଦୁହିଙ୍କଠାରୁ ମୁଁ ବୟସର ଅନେକ ଛୋଟ ଥିଲି ଅଥଚ କେଜାଣି କେମିତି ଏକ ଅଦୃଶ୍ୟ ବନ୍ଧନରେ ବାନ୍ଧିହୋଇ

ବୟସର ସମସ୍ତ ସୀମା ଲଂଘି ଏ ଦୁହିଙ୍କ ସହ ବଡ଼ଘନିଷ୍ଠ ଥିଲି । କୁରୁଶ୍ରେଷ୍ଠ ଭୀଷ୍ମଙ୍କ ପ୍ରତି ମୋର ଯଥେଷ୍ଟ ସମ୍ମାନ ଥିଲା । କେବଳ ମୋର କାହିଁକି ସମଗ୍ର ଆର୍ଯ୍ୟାବର୍ତ୍ତରେ ସେ ଜଣେ ଆଦର୍ଶସ୍ଥାନୀୟ ପ୍ରବାଦ ପୁରୁଷ ଥିଲେ । ରାମଚନ୍ଦ୍ର ବିମାତା କୈକେୟୀଙ୍କ ସନ୍ତୁଷ୍ଟ ନିମିତ୍ତ ପିତୃସତ୍ୟ ପାଳନ କରି ଚତୁର୍ଦ୍ଦଶ ବର୍ଷ କାଳ ବନବାସ ଜୀବନ ବରଣ କଲାଭଳି ଭୀଷ୍ମ ମଧ୍ୟ ପିତା ଶାନ୍ତନୁଙ୍କ ସନ୍ତୁଷ୍ଟି ନିମିତ୍ତ ସର୍ବସ୍ୱ ତ୍ୟାଗ କରି, ପ୍ରତିଜ୍ଞାବଦ୍ଧ ହୋଇ ଏକ କଠୋର କଣ୍ଟକିତ ଜୀବନ ବରଣ କରି ନେଇଥିଲେ । ଏଭଳି ତ୍ୟାଗଶାଳୀ ବ୍ୟକ୍ତି ତ୍ରିଭୁବନରେ ବିରଳ । ହସ୍ତିନା ପୁରରେ ଲୋଭ ଓ ଲିପ୍‌ସାର କେତେ କୁତ୍ସିତ ନାଟକ ଅଭିନୀତ ହୋଇଯାଇଛି । ଏହି ବୃଦ୍ଧ କିନ୍ତୁ ସେ ସବୁଠାରୁ ନିଜକୁ ଦୂରେଇ ରଖି ଅତୀତରେ ଦେଇଥିବା ପ୍ରତିଶ୍ରୁତି ପାଳନ କରିବା ପାଇଁ କେବଳ ସୁଦୃଢ଼ ଢାଲ ସଦୃଶ ହସ୍ତିନା ସିଂହାସନକୁ ସୁରକ୍ଷା ଦେଇଆସିଛନ୍ତି । ଶୈଶବରେ ପିତୃକ୍ରୋଡ଼ ତାଙ୍କୁ ତ୍ୟାଗ କରିବାକୁ ପଡ଼ିଛି । କୈଶୋରରେ ପତିତପାବନୀ ମାତା ଜାହ୍ନବୀଙ୍କର ପରମ ନିଶ୍ଚିନ୍ତ ଆଶ୍ରୟ ତ୍ୟାଗ କରିବାକୁ ପଡ଼ିଛି । ଯୌବନରେ ତାଙ୍କର ଶୌର୍ଯ୍ୟ, ବୀର୍ଯ୍ୟ, ସୌନ୍ଦର୍ଯ୍ୟ ସବୁଥିବା ସତ୍ତ୍ୱେ ସଂସାର ଧର୍ମ ତ୍ୟାଗ କରିବାକୁ ପଡ଼ିଛି । ତ୍ୟାଗ.... ତ୍ୟାଗ.... ତ୍ୟାଗ...... ସମଗ୍ର ଜୀବନ କେବଳ ତ୍ୟାଗର ସାଧନା କରିଯାଇଛନ୍ତି ସେ । କ'ଣ ପାଇଛନ୍ତି ? ହସ୍ତିନା ସାମ୍ରାଜ୍ୟ ଏ ପର୍ଯ୍ୟନ୍ତ ତିଷ୍ଠି ରହିଛି ତା' ତ କେବଳ ଏହି ବୃଦ୍ଧଙ୍କର ବାହୁବଳ ପାଇଁ ! ଶ୍ୱେତଶୁଭ୍ର ପଟ୍ଟବସ୍ତ୍ର, ଶ୍ୱେତ ଉତ୍ତରୀୟ, ଶ୍ୱେତ ଉଷ୍ଣୀଷରେ ସୁସଜ୍ଜିତ ଏପରିକି ଶ୍ୱେତ ଅଶ୍ୱ ବାହିତ ରଜତଶୁଭ୍ର ରଥର ଶ୍ୱେତ ଧ୍ୱଜକୁ ଦେଖିଲେ ମନେ ହୁଏ ଆଖିଆଗରେ ଯେମିତି କଠିନ ଶ୍ୱେତ ବରଫାବୃତ ଅଚଳ ହିମାଳୟକୁ ମୁଁ ସନ୍ଦର୍ଶନ କରୁଛି ! ଭକ୍ତି ଓ ଭୟରେ ମୁଣ୍ଡ ନଇଁଯାଏ ।

ସେଦିନ ମୁଁ, ପିତାମହ ଭୀଷ୍ମ, ବିଦୂର, ଧର୍ମରାଜ ଓ ସଖା ଅର୍ଜ୍ଜୁନ ଏକତ୍ର ବସି ଏକ ସୌଜନ୍ୟମୂଳକ ଆଲୋଚନା କରୁଥିଲୁ ଓ ଆଗାମୀ ଦିବସର କାର୍ଯ୍ୟପନ୍ଥା ଗୁଡ଼ିକ ନିର୍ଦ୍ଧାରଣ କରୁଥିଲୁ । ଏହି ସମୟରେ ଶିଶୁକଣ୍ଠର କଳ କୋଳାହଳରେ ଅଳିନ୍ଦଟି ପୂରିଉଠିଲା । ପାଣ୍ଡବ-କୌରବଙ୍କର ସନ୍ତାନ ଗଣ ବୀରଦର୍ପରେ ଗୋଟିଏ କ୍ଷୁଦ୍ର ବାହିନୀ ଭଳି ଆଗେଇ ଆସୁଥିଲେ । ସର୍ବାଗ୍ରେ ଦଳପତି ସଦୃଶ ମୋର ଭାଗୀନେୟ ଅଭିମନ୍ୟୁ ହିଁ ଆସୁଥିଲା । ସେମାନେ ପିତାମହଙ୍କ ନିକଟକୁ କ'ଣ ଏକ ଅଭିଯୋଗ କରିବାକୁ ଆସିଥିଲେ । ସମସ୍ତେ ଅଳିନ୍ଦରେ ଅପେକ୍ଷା କରି ଦୁର୍ଯ୍ୟୋଧନର ପୁତ୍ର ଲକ୍ଷ୍ମଣ କୁମାରକୁ ଭିତରକୁ ପଠେଇଲେ ।

ଲକ୍ଷ୍ମଣ ଆମ ସମସ୍ତଙ୍କର ଶ୍ରଦ୍ଧାଭାଜନ ଥିଲା; ତା'ର ମାତା ଭାନୁମତୀଙ୍କ ଭଳି ସେ ଅତ୍ୟନ୍ତ ସରଳ ପ୍ରକୃତିର ଥିଲା । ଦ୍ରୁପଦ ତନୟା ସ୍ୱୟଂବରା ହେବେ ବୋଲି ଆର୍ଯ୍ୟାବର୍ତ୍ତରେ ଘୋଷିତ ହେବା ପରେ କୁରୁପତି ଦୁର୍ଯ୍ୟୋଧନ ରୀତିମତ ଧନୁର୍ବିଦ୍ୟା ଅଭ୍ୟାସ କରିବା ଆରମ୍ଭ କରିଦେଇଥିଲେ । ଭାନୁମତୀ ସପତ୍ନୀ ଆଶଙ୍କାରେ ଭୟଭୀତା ହୋଇ ମୋରି ଶରଣାଗତ

ହୋଇଥିଲେ । ମୁଁ ତାଙ୍କୁ ପ୍ରତିଶ୍ରୁତି ଦେଇଥିଲି ଯେ ଦୁର୍ଯ୍ୟୋଧନ ଯେପରି ସ୍ୱୟଂବର ସର୍ତ୍ତ ଜିଣିବାରେ ଅସମର୍ଥ ହୁଅନ୍ତି ତା' ନିଶ୍ଚୟ ଦେଖିବି । ତାଙ୍କର ନିଷ୍ପାପ ସାରଲ୍ୟ ସେଦିନ ମୋତେ ଚମତ୍କୃତ କରିଦେଇଥିଲା । ଆମେ ସମସ୍ତେ ଜାଣିଥିଲୁ ଗଦାଚାଳନାରେ ଅପୂର୍ବ କୁଶଳୀ ମାନଗୋବିନ୍ଦ ଧନୁର୍ଚ୍ଚାଳନାରେ ଆଦୌ ପାରଙ୍ଗମ ନୁହନ୍ତି । ତଥାପି ପତ୍ନୀ ନିକଟରେ ପତିର ଶକ୍ତିକୁ ଆଦୌ ନ୍ୟୁନ କରିବା ଉଚିତ ନୁହେଁ । ନହେଲେ ମୁଁ ଜାଣିଥିଲି ଦୁର୍ଯ୍ୟୋଧନ ପକ୍ଷେ ସ୍ୱୟଂବର ସର୍ତ୍ତ ଜିଣିବା ଯେପରି ଅସମ୍ଭବ, ତେଜସ୍ୱିନୀ କୃଷ୍ଣାଙ୍କ ପାଣିଗ୍ରହଣ କରିବା ତା'ପକ୍ଷେ ସେହିପରି ଅବାସ୍ତବ । କୃଷ୍ଣା ପାଣ୍ଡବଙ୍କ ପତ୍ନୀ ହେବାଦ୍ୱାରା ଭାନୁମତୀ ପ୍ରକୃତରେ ଖୁସି ହୋଇଥିଲେ । ମୋତେ ଭ୍ରାତାର ସମ୍ମାନ ଦେଇଥିଲେ ।

ଲକ୍ଷ୍ମଣ ଗୃହଭିତରକୁ ପ୍ରବେଶ କରି ଆମ ସମସ୍ତଙ୍କୁ ଅଭିନନ୍ଦନ ଜଣେଇବାପରେ କୁରୁପିତାମହଙ୍କ କୋଳମଣ୍ଡନ କରି ଅନୁନୟ କଲାଭଳି କହିଲା - 'ପ୍ରପିତାମହ ! ଆପଣ କହନ୍ତୁ ମୋ ମା'ଙ୍କୁ ମୁଁ ଏଠାରେ ଆଉକିଛି ଦିନ ରହିବି ।'

ତାକୁ ଅନୁସରଣ କରି ଆସିଥିବା ପରିଚାରିକା ଜଣକ ବିନମ୍ରତାର ସହ କହିଲା - 'ନା କୁମାର ! ପ୍ରପିତାମହଙ୍କ ନିର୍ଦ୍ଦେଶ ତୁମ୍ଭ ଜନନୀ ଅବଶ୍ୟ ଅମାନ୍ୟ କରିବେ ନାହିଁ । କିନ୍ତୁ ଯଜ୍ଞଶେଷରେ ସମସ୍ତେ ହସ୍ତିନା ଫେରିଯିବେ । ତୁମ୍ଭେ ଏଠାରେ ଏକାରହି କ'ଣ କରିବ ?'

ଲକ୍ଷ୍ମଣ କୁରୁପିତାମହଙ୍କୁ କହିଲା - 'କହି ଦିଅନ୍ତୁ ପ୍ରପିତାମହ, ମୁଁ ଏଠି ଏକା ନୁହେଁ । ଏଠିତ ମୋର ଭ୍ରାତା ଅଭିମନ୍ୟୁ, ଶତାନିକ, ପ୍ରତିବିନ୍ଧ୍ୟ, ଶ୍ରୁତସୋମ ପ୍ରଭୃତି ସମସ୍ତେ ଅଛନ୍ତି । ତା' ଛଡ଼ା ମୁଁ ପିତୃବ୍ୟ ଧନଞ୍ଜୟଙ୍କ ଠାରୁ ଧନୁର୍ଚ୍ଚାଳନା ଶିକ୍ଷା କରିବିଯେ !'

ଅର୍ଜୁନଙ୍କ ସହମତ ଆଶାରେ ସେ ତାଙ୍କୁ ପ୍ରଶ୍ନ କଲା -'ପିତୃବ୍ୟ ! ମୋତେ ଶିକ୍ଷା ଦେବେନାହିଁ ? ଅର୍ଜୁନ ସସ୍ନେହରେ ତାକୁ କୋଳାଗ୍ରତ କରି କହିଲେ - 'ନିଶ୍ଚୟ ପୁତ୍ର !'

ଲକ୍ଷ୍ମଣ ପୁନରାୟ କହିଲା ପରିଚାରିକା ଉଦ୍ଦେଶ୍ୟରେ - 'ଦେଖିଲ ତ ? ମୁଁ ତ ଯାହା ଯେତେବେଳେ ଇଚ୍ଛା କରୁଛି ମୋତେ ତା' ଦିଆଯାଉଛି । ଶତ୍ରୁର ପୁତ୍ରକୁ କ'ଣ କେହି ଏମିତି ଦିଏ, ଏତେ ସ୍ନେହ କରେ ?'

'ଶତ୍ରୁପୁତ୍ର ???' କୁରୁପିତାମହ ଭୀଷ୍ମଙ୍କ ବଜ୍ରଗମ୍ଭୀର କଣ୍ଠରୁ ସ୍ୱତଃ ଏହି ଅବାଂଛିତ ପ୍ରଶ୍ନଟି ବାହାରି ଆସିଲା । ବିଦୂର, ଯୁଧିଷ୍ଠିର, ଅର୍ଜୁନ ପ୍ରତ୍ୟେକ ପରସ୍ପରକୁ ଚାହିଁ ନିଜର ବିସ୍ମୟଭାବ ପ୍ରକାଶ କଲେ । ମୁଁ ନଶୁଣିବାର ଛଳନା କରି ତଳକୁ ମୁହଁ ପୋତି ଚିନ୍ତା କରୁଥିଲି କୁରୁପତି ଅନ୍ତରରେ ସଞ୍ଚିତଥିବା ଇର୍ଷ୍ୟା, ଅସୂୟାର ବିଷ ଭାଣ୍ଡର ବିଷାକ୍ତ ପ୍ରକ୍ରିୟା ତେବେ ଭବିଷ୍ୟତ ବଂଶଧରଙ୍କ ଧମନୀରେ ପ୍ରବାହିତ ହେବାକୁ ଆରମ୍ଭ କଲାଣି ?

ଲକ୍ଷ୍ମଣ ନିର୍ଭିକ ଭାବେ ପିତାମହଙ୍କୁ ଚାହିଁ କହିଲା - 'ହଁ, ଆମେ ଏଠିକି ଆସିବା ପୂର୍ବରୁ ପିତା ଓ ପିତୃବ୍ୟ ଦୁଃଶାସନ କହିଥିଲେ ଶତୃପୁରୀରେ ସତର୍କ ହୋଇ ଚଳିବା ପାଇଁ !'

ତା'ର ଏ ସ୍ପଷ୍ଟବାଦିତାରେ ପ୍ରତ୍ୟେକ ଲଜ୍ଜିତ ହୋଇଗଲେ । ପରିଚାରିକା ଜଣକ ସେ କଥାକୁ ଚାପା ଦେବା ଉଦ୍ଦେଶ୍ୟରେ କହିଲା - 'କୁମାର ! ଦୈନିକ ସ୍ୱୟଂ କୁରୁପତି ତୁମ ଶରୀରରେ କସ୍ତୁରୀ, ଚନ୍ଦନ, କୁଙ୍କୁମ, କେଶରର ଯେଉଁ ପ୍ରଲେପ ଦିଅନ୍ତି, ତୁମେ ଯଦି ଏଠି ରହିବ ତେବେ ସେ କାହା ଦେହରେ ଏ ଅଂଗରାଗ ଲେପନ କରିବେ ?'

ଲକ୍ଷ୍ମଣ ଶିଶୁସୁଲଭ ଉତ୍ସାହରେ କହିଉଠିଲା - 'ଜାଣିଚ ଭ୍ରାତା ଘଟୋତ୍କଚଙ୍କ ଦେହରେ କେବଳ ତୈଳ ମର୍ଦ୍ଦନ କରାଯାଏ । ସେ କେତେ ବଳିଷ୍ଠ ? ମୋତେତ ଫୁଲଭଳି ଟେକି ଦେଉଛନ୍ତି ! ମୋର ବି ସେ ଅଂଗରାଗର ଆବଶ୍ୟକତା ନାହିଁ । ମୁଁ ଭ୍ରାତା ଘଟୋତ୍କଚଙ୍କ ଭଳି ସ୍ନାନ ପୂର୍ବରୁ ତୈଳ ଓ ସ୍ନାନପରେ ପିତୃବ୍ୟ ଭୀମଙ୍କ ସଦୃଶ ସୁବାସିତ ଚନ୍ଦନ ଦେହରେ ଲେପନ କରିବି । ଯେତେବେଳେ ହସ୍ତିନା ଓ ଇନ୍ଦ୍ରପ୍ରସ୍ଥ ମିଶି ଏକ ହୋଇଯିବ, ଯେତେବେଳେ ଜ୍ୟେଷ୍ଠତାତ ଧର୍ମରାଜ ଯୁଧିଷ୍ଠିର ସିଂହାସନରେ ବସିଥିବେ ସେତେବେଳେ ତାଙ୍କ ଦୁଇପାର୍ଶ୍ୱରେ ପିତୃବ୍ୟଭୀମ ଓ ଅର୍ଜ୍ଜୁନଙ୍କ ଭଳି ଆମେ ତ ରହିବୁ - ମୁଁ ଓ ଭ୍ରାତା ଘଟୋତ୍କଚ !'

ତା' ଛୋଟ ଛୋଟ ଆଖି ଦିଓଟିରେ ଏହି ମହତ୍ ପରିକଳ୍ପନାର ସ୍ୱପ୍ନ ଖୁନ୍ଦି ହୋଇଯାଇଥିଲା । କୁରୁପିତାମହ ଅତ୍ୟନ୍ତ ଆଶ୍ୱସ୍ତ ଭାବେ ତାକୁ କୋଳାଗ୍ରତ କରି ତା'ର ମସ୍ତକ ଚୁମ୍ବନ କରି କହିଲେ - 'ତୁମର ଏସ୍ୱପ୍ନ ସାର୍ଥକ ହେଉ ବାଳକ ! ସେ ସୁଦିନ ଆସୁ । ତୁମ ମୁହଁରେ ଫୁଲଚନ୍ଦନ ପଡୁ !

ମୁଁ ଲକ୍ଷ୍ୟକଲି ପାଣ୍ଡବଙ୍କର ପୁତ୍ର ହୋଇଥିଲେ ଯେମିତି ଲକ୍ଷ୍ମଣ କୁମାର ଅଧିକ ଗୌରବାନ୍ୱିତ ହୋଇଥା'ନ୍ତା । ଲକ୍ଷ୍ମଣ ମଧ୍ୟ ମରଣ ଅବଧି ପାଣ୍ଡବଙ୍କର ଅତ୍ୟନ୍ତ ପ୍ରିୟଭାଜନ ଥିଲା । ଶେଷ ପର୍ଯ୍ୟନ୍ତ ମାନୀ ମାନଗୋବିନ୍ଦଙ୍କୁ ପାପର ପିଚ୍ଛିଳ ପଥରୁ ନିବୃତ କରିବାପାଇଁ ବହୁ ଚେଷ୍ଟା କରିଥିଲା ବିଚାରା ! ଦର୍ପୋଦ୍ଧତ ମାନଗୋବିନ୍ଦର ଇର୍ଷ୍ୟା ଅସୂୟା, ଉଚ୍ଚାକାଙ୍କ୍ଷା ପାପ ଓ ବ୍ୟଭିଚାରର ଅତଳ ଆବର୍ତ୍ତରେ ସମଗ୍ର କୁରୁକୁଳକୁ ଦିନେ ଧ୍ୱଂସ କରିଦେଲା ! ଧର୍ମର ପ୍ରତିଷ୍ଠା ପାଇଁ ଦିନେ ଉତ୍ତାଳ ଲହରୀ ମାଳିନୀ ରକ୍ତର ନଦୀଟିଏ ସୃଷ୍ଟି ହେଲା । ପାପର ବିନାଶ ପାଇଁ କେବଳ କ'ଣ ପାପୀମାନଙ୍କର ରକ୍ତରେ ସେଦିନ କୁରୁ ରଣଭୂମିରେ ଲୋହିତ ରକ୍ତ ସ୍ରୋତ ପ୍ରବାହିତ ହୋଇଥିଲା ? ନିଷ୍ପାପ ଶିଶୁ, କିଶୋର, ଯୁବକ ବା ବୃଦ୍ଧ ଯେଉଁମାନଙ୍କୁ ପାପ ସ୍ପର୍ଶ କରିନଥିଲା, ସେମାନେ କ'ଣ ବଳି ପଡ଼ିନାହାନ୍ତି ? ଧର୍ମର ମହାଯଜ୍ଞରେ ଆହୂତ ସ୍ୱରୂପ ଲକ୍ଷ୍ମଣ, ବେଲାଳ, ଇରାବାନ୍, ଘଟୋତ୍କଚ ଏପରିକି ମୋର ଭାଗୀନେୟ ଅଭିମନ୍ୟୁ ମଧ୍ୟ ବଳି

ପଡ଼ିଛନ୍ତି । ଏ ସଂପର୍କରେ ପାଣ୍ଡବ ପକ୍ଷର ନାରୀମାନଙ୍କର ଅବ୍ୟକ୍ତ, ଅପ୍ରକାଶିତ ଦରବାରରେ ବହୁବାର ମୋତେ ପ୍ରଶ୍ନୋତ୍ତରର ସମ୍ମୁଖୀନ ହେବାକୁ ପଡ଼ିଛି । ପ୍ରତ୍ୟେକ ଥର ଅନୁକ୍ତ ବ୍ୟଥାର ସ୍ରୋତ ହୋଇ ମୋର ସମସ୍ତ କହିବାର କଥା ବହି ଯାଇଛି, ମୁଁ କିଛି କହି ପାରିନାହିଁ, କୌଣସି ସଦୁତ୍ତର ଦେଇ ପାରିନାହିଁ ।

ସୁଭଦ୍ରାର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପେସ୍ତାବାଦାମ, କେଶର ଓ ଗୋ-କ୍ଷୀର ମିଶ୍ରିତ ପାନୀୟ ଆମ୍ଭମାନଙ୍କ ପାଇଁ ପରିଚାରିକା ଆଣୁଥିଲା । କ୍ଷୁଦ୍ରବାହିନୀ, ଯାହାର ଅଗ୍ରନେତୃତ୍ୱ ଅଭିମନ୍ୟୁହିଁ ନେଇଥିଲା, ସେମାନେ କ୍ଷିପ୍ରବେଗରେ ଧାଇଁ ଯାଉ ଯାଉ ପରିଚାରିକା ଦେହରେ ଧକ୍କା ଖାଇ ରୌପ୍ୟ ପାତ୍ର ସହ ସମସ୍ତ ପାନୀୟ ତଳେ ପଡ଼ି ନଷ୍ଟ ହୋଇଗଲା । ଭାରସାମ୍ୟ ସମ୍ଭାଳି ନପାରି ତଳେ ପଡ଼ି କାନ୍ଦି ଉଠିଥିବା ସହଦେବଙ୍କର ଶିଶୁପୁତ୍ରଟିକୁ ସୁଭଦ୍ରା ଅତିସ୍ନେହରେ କୋଳାଗ୍ରତ କରି ତା' ଦେହରୁ ଧୂଳି ଝାଡ଼ି ଦେଉ ଦେଉ ଅଭିମନ୍ୟୁର କାନ ମୋଡ଼ି ଦେଇ କହିଲା - 'ସବୁ ଦୁଷ୍ଟାମୀର ଶିକ୍ଷା ଗୁରୁ ତୁ ! ତୋ ହାତ ଗୋଡ଼ ବାନ୍ଧି ପକେଇ ଦେବି ଆଜି !'

ଅଭିମନ୍ୟୁ ପାଞ୍ଚାଳ ତନୟାଙ୍କର ଅତ୍ୟନ୍ତ ପ୍ରିୟ । ସେ ହସି ହସି ସୁଭଦ୍ରା ହାତରୁ ପ୍ରଥମେ ଅଭିମନ୍ୟୁକୁ ମୁକୁଳେଇ ନେଇ କହିଲେ - 'ବୃଥା ଚେଷ୍ଟା ଭଦ୍ରା ? ଅଭିମନ୍ୟୁର ମାତୁଳଙ୍କୁ ତ ଥରେ ମା ଯଶୋମତୀ ଯାମଳାର୍ଜ୍ଜୁନ ବୃକ୍ଷରେ ବାନ୍ଧିଥିଲେ ଯେ ଯାହାହେଲା ଜାଣିଚ, ତାଙ୍କରି ଭଣଜାକୁ ବାନ୍ଧିଲେ ପୁଣି କ'ଣ ଅଦ୍‌ଭୁତ କାଣ୍ଡ ସେ ଘଟେଇବେ କିଏ ଜାଣେ ?'

କୁରୁପିତାମହ ଭୀଷ୍ମ ହସି ଉଠିଲେ । ମୁଁ କୌତୁକ ପ୍ରବଣ ଭାବେ କହିଉଠିଲି - 'ମୁଁ କିଛି ଘଟଣା ଘଟାଏ କି ନଘଟାଏ କୃଷ୍ଣା କିନ୍ତୁ କୌଶଳରେ ତାଙ୍କ ପ୍ରିୟ ପାତ୍ର ଅଭିମନ୍ୟୁକୁ ଜନନୀର ରୋଷ ଦୃଷ୍ଟିରୁ ଦୂରକୁ ପଠେଇ ସାରିଲେଣି ।'

ସୁଭଦ୍ରା ଚମକି ପଡ଼ି ଚାହିଁଲେ । ସତକୁ ସତ ସହଦେବଙ୍କ ଶିଶୁପୁତ୍ର ବ୍ୟତୀତ ଆଉ କେହି ତାଙ୍କ ପାଖରେ ନଥିଲେ । ସେ ଗୁରୁଜନଙ୍କ ସମ୍ମୁଖରେ ବଡ଼ ପାଟିରେ କଥାମଧ୍ୟ କହିପାରୁନଥା'ନ୍ତି କିମ୍ବା ଦ୍ରୁତ ଗତିରେ ସେମାନଙ୍କୁ ଅନୁସରଣ ମଧ୍ୟ କରିପାରୁନଥା'ନ୍ତି । ପୁନର୍ବାର ପାନୀୟ ପ୍ରସ୍ତୁତ କରିବା ପାଇଁ ସେ ସ୍ଥାନରୁ ସେ ନିଷ୍କ୍ରାନ୍ତ ହେଇଯାଉଥିଲେ । ପିତାମହ ମୁଗ୍ଧ ହସ ହସି କହିଲେ - 'ପାଣ୍ଡବ ପରିବାରରେ ଅଖଣ୍ଡ ଶାନ୍ତି ବିଦୂର ! ସୁଭଦ୍ରାର ସ୍ନେହାତିଶଯ୍ୟ ଦେଖିଲେ ମନେ ହେଉଛି ଯେମିତି ଦ୍ରୌପଦୀଙ୍କ ପଞ୍ଚପୁତ୍ରଙ୍କର ଜନନୀ ସେ ଓ ଅଭିମନ୍ୟୁ ପ୍ରତି ଦ୍ରୁପଦନନ୍ଦିନୀଙ୍କ ଆକର୍ଷଣ ଦେଖିଲେ ମନେ ହେଉଛି ଯେମିତି ଅଭିମନ୍ୟୁ କେବଳ ଦ୍ରୌପଦୀଙ୍କର ହିଁ ସନ୍ତାନ !'

ମୁଁ ଉଦାସ, ବିଷର୍ଣ୍ଣ, ଗମ୍ଭୀରଭାବେ କହିଲି - 'ମା' ଯଶୋମତୀହିଁ ସୁଭଦ୍ରାର ଆଦର୍ଶ ହେବା ଉଚିତ । ଶୁଣ ସୁଭଦ୍ରା !'

ସୁଭଦ୍ରା ଧିର ପଦକ୍ଷେପରେ ଆସିଲା । ନତମୁଖୀ ସୁଭଦ୍ରାକୁ କିଛି ସମୟ ଚାହିଁ କହିଲି - 'ଅଭିମନ୍ୟୁକୁ ଆଉ ଶାସନ କରନା ଭଦ୍ରା ! ଜନନୀ ଯଶୋମତୀ ମୋତେ କେବେ ଛାଟରେ ବାଡ଼େଇଥିଲେ, କେବେ ବାନ୍ଧିଥିଲେ ଆଜି ସେଇକଥା ଭାବି ଭାବି କେବଳ ଝୁରିହେଉଛନ୍ତି । ସେମିତି ଅନୁତାପ ତୋତେ ଅନ୍ତଃତ କରିବାକୁ ନପଡୁ । ଭଗ୍ନ ଘଟରେ ଥିବା ସଲିଳ ସଦୃଶ, ଏ ଜୀବନ । କେବେ ନିଃଶେଷ ହୋଇଯିବ କିଏ ଜାଣେ ? '

ମୋ କଥାର ଗୁଢ଼ାର୍ଥ କେହି ସେଦିନ ବୁଝିପାରି ନଥିଲେ । ପିତାମହ ତତ୍‌କ୍ଷଣାତ୍ କହି ଉଠିଲେ 'ଆହାଃ ! ବାସୁଦେବ ! ସୁଭଦ୍ରା ଏଇମାତ୍ର ଜୀବନ ଆରମ୍ଭ କରିଛି । ଭୋଗ ଭାଗ୍ୟରେ ଭରି ଉଠୁ ତା'ର ଦୀର୍ଘ ଜୀବନ ! ତା'ଭଳି କୋମଳ ଝିଅଟିକୁ ଏ ଦାରୁଣ ସତ୍ୟ ସହ ମୁହାଁ ମୁହିଁ ହେବାକୁ ନପଡୁ ।'

ମୁଁ କଥାର ମୋଡ଼ ପରିବର୍ତ୍ତନ କରି କହିଲି 'ନା- ମାନେ.... କୃଷ୍ଣା ତ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ବ୍ୟସ୍ତ । ଭଦ୍ରାହିଁ ପାଣ୍ଡବଙ୍କର ସମସ୍ତ ସନ୍ତାନର ଲାଳନ ପାଳନ ଭାର ନେଉ । ଶାସନର ଆବଶ୍ୟକତା କ'ଣ ? ସ୍ନେହ ଦାନରେ ସେ'ତ ଅକୃପଣା । ତା'ରି ସ୍ନେହାଞ୍ଚଳରେ ଆଶ୍ରିତ ହୋଇ ପାଣ୍ଡବ କୁଳର ଏଇ ଛୋଟ ଛୋଟ ଚାରାଗଛ ଗୁଡ଼ିକ ବଢ଼ି ଉଠନ୍ତୁ । ସବୁଜ ଶ୍ୟାମଳ ହୋଇ ନଭଶ୍ଚୁମ୍ବୀ ଯଶର ଅଧିକାରୀ ହୁଅନ୍ତୁ - ମୋର ଏତିକି କାମନା !'

ସେଦିନ ରାତ୍ରିରେ ଅସହ୍ୟ ଗ୍ରୀଷ୍ମତାପ । ଆକାଶର ଉତ୍ତର କୋଣରେ ମେଘ ଖଣ୍ଡେ ଉଠେଇଥାଏ । ବର୍ଷିବ ବର୍ଷିବ ହୋଇ ବର୍ଷି ପାରୁନଥାଏ । ମୁଁ ଘର ଭିତରେ ବିଶ୍ରାମ ନେଇପାରିଲି ନାହିଁ । ଏମିତି ମୁକ୍ତ ଅଂଗନରେ ବୁଲୁ ବୁଲୁ ଦେଖିଲି ଭ୍ରାତାଭୀମ, ସଖାପାର୍ଥ, ନକୁଳ, ସହଦେବଙ୍କ ସହ କୃଷ୍ଣା ଏକ କୃତ୍ରିମ ଜଳାଶୟ ନିକଟରେ ଚିନ୍ତା ମଗ୍ନ ଭାବେ ବସି ରହିଛନ୍ତି । ମୁଁ ସେଠାରେ ପହଞ୍ଚିଯିବାରୁ ସେମାନେ ଅତ୍ୟନ୍ତ ଆନନ୍ଦିତ ହୋଇଗଲେ । ମୁଁ କହିଲି - 'ଧର୍ମରାଜ ? ଭ୍ରାତା ଭୀମ କୌଣସି କଥା ଗୋପନ ରଖିପାରନ୍ତି ନାହିଁ । ସେ ସାଂଗେ ସାଂଗେ କହିଲେ - 'ସେଇକଥା ଆମେ ଚିନ୍ତା କରୁଛୁ ବାସୁଦେବ ! ପ୍ରତିଦିନ ସଂଧ୍ୟାପରେ ମାତୁଳ ଶକୁନୀ ଓ ଦୁର୍ଯ୍ୟୋଧନ ଆମ ଜ୍ୟେଷ୍ଠଭ୍ରାତାଙ୍କୁ ଡାକି ନେଇ ତାଙ୍କ ସହ ଦ୍ୟୁତକ୍ରୀଡ଼ା କରୁଛନ୍ତି । ଦ୍ୟୁତ ପ୍ରତି ଜ୍ୟେଷ୍ଠଭ୍ରାତାଙ୍କର ଆସକ୍ତି ଓ ଆକର୍ଷଣ କେତେ ପ୍ରଚଣ୍ଡ ତା'ତ ତୁମକୁ ଅଛପା ନାହିଁ । କିନ୍ତୁ ଆମର ଭୟ ଏତିକି ଯେ, ମାତୁଳ ଶକୁନୀ ଓ ଦୁର୍ଯ୍ୟୋଧନଙ୍କର ସମସ୍ତ କାର୍ଯ୍ୟ ଅଭିସନ୍ଧିମୂଳକ । ଯା ଭିତରେ କେଉଁ ଦୂରଭିସନ୍ଧି ରହିଛି ଆମେ ବୁଝିପାରୁନାହୁଁ ।'

ମୁଁ ସହଦେବଙ୍କୁ ଚାହିଁ ଆଖିରେ ଆଖିରେ ପଚାରିଲି -'କ'ଣ ଏହାର କାରଣ?'

ସହଦେବ କହିଲେ - 'ଦ୍ୟୁତକ୍ରୀଡ଼ାରେ ଭ୍ରାତା କେତେ ପ୍ରବୀଣ ସେତିକି ମାତ୍ର ଜାଣିବା ତାଙ୍କର ଉଦ୍ଦେଶ୍ୟ !'

ମୁଁ କହିଲି - 'ବେଶ୍ ତ ! ଜାଣନ୍ତୁ । ଧର୍ମରାଜତ ଆଉ ରାଜାନଳଙ୍କ ସଦୃଶ ରାଜ୍ୟ ପଣ ରଖି ହାରୁନାହାନ୍ତି ଯେ ତାଙ୍କଭ୍ରାତା ଓ ପତ୍ନୀଙ୍କ ପାଇଁ ଚିନ୍ତାର ବିଷୟ ହେବ । ଧର୍ମରାଜ କ୍ଷତ୍ରିୟର ଧର୍ମ ପାଳନ କରୁଛନ୍ତି ମାତ୍ର ।'

ଏହି ସମୟରେ ସୁଶୀତଳ ପବନ ପ୍ରବାହିତ ହେବାସହ ବର୍ଷା ଝରିବା ଆରମ୍ଭ ହୋଇଗଲା ଓ ଆମେ ସମସ୍ତେ ନିଜ ନିଜ ଶୟନ କକ୍ଷକୁ ଫେରିଆସିଥିଲୁ । ପଥ ମଧ୍ୟରେ ଭ୍ରାତା ଭୀମ କହିଲେ - 'ଦୁର୍ଯ୍ୟୋଧନ ସର୍ବଦା ମୋର ସନ୍ଦେହର ବଳୟରେ । ଶୈଶବରେ ପ୍ରମାଣ କୋଟୀ ଉଦ୍ୟାନରେ ମୋତେ ଯେଉଁଭଳି ଛଳକପଟରେ ବିଷଲଡୁ ଖୁଆଇଥିଲା, ଯେଉଁ ଭଳି ବାରୁଣାବନ୍ତର ଜତୁଗୃହରେ ଅଗ୍ନିସଂଯୋଗ କରି ଆମ୍ଭମାନଙ୍କୁ ଭସ୍ମସାତ୍ କରିବାକୁ ଚାହିଁଥିଲା, ତା ପରେ ତାକୁ କ'ଣ ବିଶ୍ୱାସ କରିବା ସମ୍ଭବ ଯଦୁପତି ?'

ମୁଁ କୌତୁକପ୍ରବଣ ଭାବେ କହି ଉଠିଲି - 'କୃଷ୍ଣା ! ମନେ ହେଉଛି ଆଜି ଦ୍ୱିତୀୟ ପାଣ୍ଡବଙ୍କର ଭୋଜନରେ ପରିତୃପ୍ତି ଆସିନାହିଁ, ଆସିଥିଲେ ବର୍ତ୍ତମାନ ତାଙ୍କପାଇଁ ମଧ୍ୟରାତ୍ରି ହୋଇଥା'ନ୍ତା ଓ ସେ ନିଶ୍ଚିନ୍ତରେ ଗଭୀର ନିଦ୍ରାରେ ଅଚେତନ ଥା'ନ୍ତେ ।'

କୃଷ୍ଣା କହିଲେ - 'ଆଜି ତାଙ୍କର ଭୋଜନରେ ବେଶ୍ ପରିତୃପ୍ତି ଆସିଛି । ଘଟୋତ୍କଚ ଆସନ୍ତା କାଲି ଫେରିଯିବ ବୋଲି ତା' ପାଇଁ ପାୟସାନ୍ନ ପ୍ରସ୍ତୁତ କରିଥିଲି । ପ୍ରଚୁର ପରିମାଣରେ ପିତାପୁତ୍ର ହୃଷ୍ଟ ଚିତ୍ତରେ ତାହା ଭୋଜନ କରିଛନ୍ତି ।'

ସମସ୍ତେ ହସି ଉଠିଲେ ।

ତା ପରଦିନ ପ୍ରଭାତରେ ମୁଁ ଅକସ୍ମାତ୍ ଦ୍ୱାରକା ଫେରିଯିବାର ନିଷ୍ପତ୍ତି ଜଣାଇ ଦେଲି । ମାତା କୁନ୍ତୀ, ପ୍ରିୟସଖି ପାଞ୍ଚାଳୀ ଏପରିକି ସୁଭଦ୍ରାର ମଧ୍ୟ ବିସ୍ମୟର ଅବଧି ରହିଲା ନାହିଁ । ସତ୍ୟଭାମାଙ୍କର ଆଉ କିଛିଦିନ ଇନ୍ଦ୍ରପ୍ରସ୍ଥରେ ରହିବାର ଇଚ୍ଛାଥିଲା । ଏ ଭିତରେ ସେ ଦ୍ରୁପଦ ନନ୍ଦିନୀଙ୍କର ଅତି ଘନିଷ୍ଠ ବାନ୍ଧବୀ ହୋଇସାରିଥିଲେ । ମୋର ନିଷ୍ପତ୍ତି ଅଟଳ ତା' ସେ ଜାଣିଥିଲେ । ତେଣୁ ସେ ମଧ୍ୟ ଫେରିବା ପାଇଁ ପ୍ରସ୍ତୁତ ହୋଇଗଲେ । ପଞ୍ଚ ପାଣ୍ଡବ ତ ମୋ ବିଚ୍ଛେଦରେ ଚିରକାଳ କାତର ହୁଅନ୍ତି । ମୋର ଫେରିଆସିବାର ସମ୍ବାଦରେ ଆଉଜଣେ ବ୍ୟକ୍ତି ବଡ଼ ବିଷର୍ଣ୍ଣ ଦିଶିଲେ । ସେ ହେଉଛନ୍ତି କୁରୁପିତାମହ ଭୀଷ୍ମ । ମହାମେରୁ ସଦୃଶ ସେ ବ୍ୟକ୍ତିତ୍ୱ କିନ୍ତୁ ଏତେ ସହଜରେ ନିଜର ଦୁର୍ବଳତା ଅନ୍ୟ ଆଗରେ ପ୍ରକାଶ କରନ୍ତି ନାହିଁ । ସେ କେବଳ କହିଲେ - 'ମୁଁ ମଧ୍ୟ ଆଜି ଫେରିଯିବି ବାସୁଦେବ ! ତୁମେହିଁ ତ ସମସ୍ତ ଉତ୍ସବର କେନ୍ଦ୍ରବିନ୍ଦୁ ।

ତୁମେ ନରହିଲେ ସବୁକିଛି ନିରସ ବୋଧ ହେବ । ଯିବା ପୂର୍ବରୁ ଥରେ ଆସ ମହର୍ଷି କୃଷ୍ଣ ଦ୍ୱୈପାୟନଙ୍କୁ ଦେଖା କରି ଯିବା ।'

ପରାଶର ତନୟ କୃଷ୍ଣ ଦ୍ୱୈପାୟନ ତ୍ରିକାଳଦର୍ଶୀ, ବେଦଜ୍ଞ ବ୍ରାହ୍ମଣ । ବେଦର ବିଭାଜନ କରିଛନ୍ତି । ଅଷ୍ଟାଦଶ ପୁରାଣ ରଚନା କରିଛନ୍ତି । କବି ପ୍ରକୃତିର ଏହି ଋଷି ଅତ୍ୟନ୍ତ ଜ୍ଞାନୀ । ଯଜ୍ଞ ସମାପ୍ତ ହେବା ପରେ ସେ ମଧ୍ୟ ବଦରିକା ଆଶ୍ରମକୁ ଫେରିଯିବେ । ମୁଁ ତାଙ୍କ ନିକଟରେ ପହଞ୍ଚିବା ବେଳକୁ ସେଠାରେ ପାଣ୍ଡବ ପରିବାରର ସମସ୍ତ ସଦସ୍ୟ ଉପସ୍ଥିତ ଥିଲେ । ପିତାମହ ଭୀଷ୍ମ ଓ ବିଦୂର ମଧ୍ୟ ମୋ ସହ ସେଠାରେ ପହଞ୍ଚିଗଲେ । ମହର୍ଷି ବଡ଼ ଗମ୍ଭୀର ଭାବେ ଯୁଧିଷ୍ଠିରଙ୍କୁ କହୁଥିଲେ 'କୁଟୀଳ କାଳର ନିର୍ଦ୍ଦେଶ ଅଲଂଘ୍ୟ ବତ୍ସ ! ତୁମେ କହୁଚ ଏଡ଼େଇ ଦେବାକୁ ଚେଷ୍ଟା କରିବ ? କିପରି ? ପୁତ୍ର ପଣ୍ଡୁ କ'ଣ ଜାଣିନଥିଲେ ତାଙ୍କ ମୃତ୍ୟୁ ରହସ୍ୟ ? ତଥାପି ଏଡ଼େଇ ପାରିଲେ କି ?'

ମୁଁ ବାତାବରଣର ଗମ୍ଭୀରତା ଉପଲବ୍‌ଧି କଲି । ପରିବେଶର ଗମ୍ଭୀରତାକୁ ଭାରମୁକ୍ତ କରିବାପାଇଁ କହିଲି - 'ଉତ୍ତାଳ କାଳ ତରଙ୍ଗ ନିକଟରେ ନତମସ୍ତକ ହେବା ବୁଦ୍ଧି ମତ୍ତାର କାର୍ଯ୍ୟ ହେବ ।' ମହର୍ଷି ମୋତେ ଚାହିଁ ଈଷତ୍ ହସି କହିଲେ - 'ଆସ ! ଆସ କୃଷ୍ଣ ବାସୁଦେବ ! ତୁମେ କୃଷ୍ଣ ବାସୁଦେବ ! ମୁଁ କୃଷ୍ଣ ଦ୍ୱୈପାୟନ ! ତୁମକୁ ବା କେଉଁକଥା ଅଜଣା ?'

ମୁଁ କଥାର ଗତିକୁ ବଦଳାଇବାକୁ ଚେଷ୍ଟା କରୁଥିଲି । ମାତ୍ର ଅଶ୍ରୁମୁଖି ବଧୂ ମାତା କୁନ୍ତୀଙ୍କୁ ଚାହିଁବା ପରେ ମହର୍ଷି ବ୍ୟାସ ତାଙ୍କ ମସ୍ତକରେ ହାତରଖି କହିଲେ -'ଶୁଣିଲ ତ ମା ? ବାସୁଦେବ କ'ଣ କହିଲେ ? ତାହାହିଁ ମଣିଷର ଧର୍ମ । ପିଚ୍ଛିଳ, କର୍ଦ୍ଦମାକ୍ତ ମାର୍ଗରେ ଗତିକଲା ବେଳେ ପାଦ ଚିପିଚିପି ଯିବାକୁ ପଡ଼େ, ତଥାପି ଗୋଡ଼ ଖସେ, ମଣିଷର ପତନ ବି ହୁଏ । ତଥାପି ସତର୍କତା ଅବଲମ୍ବନ କରିବା ହିଁ ବିବେକବାନ୍‌ର କର୍ତ୍ତବ୍ୟ । ଆଗକୁ ପଥ ବଡ଼ ଦୁର୍ଗମ ମା ! ତଥାପି ପଥ ଯେ ଦୀର୍ଘ ! ଅତିକ୍ରମ କରିବାକୁ ତ ପଡ଼ିବ ! ମା ପୃଥା ! ତୁମେ ଚିନ୍ତା କର ନାହିଁ । ବିପଦ ଆସିବ, ଝଡ଼ ଆସିବ, ଝଂଜା ଆସିବ, ପୁଣି ଦିନେ ସୂର୍ଯ୍ୟବି ଉଦୟ ହେବ ଆଲୋକର ରଥରେ । ସତ୍ୟ ଓ ଧର୍ମର ଜୟ ସୁନିଶ୍ଚିତ !'

ସେ ଏତିକି କହି ସହସା ଉଠିପଡ଼ିଲେ । ଶିଷ୍ୟ ପରିବୃତ ଭାବେ ଆଗକୁ ଚାଲିଲେ ଆଉ କୌଣସି ପ୍ରଶ୍ନୋତ୍ତରକୁ ଅପେକ୍ଷା ନକରି । ତାଙ୍କର ଋଜୁ ଶ୍ୟାମ ଶରୀର ଦୃଷ୍ଟି ପଥରୁ ଲୁଚିଯିବା ଯାଏ ସମସ୍ତେ ସଶଙ୍କିତ ଭାବେ ଠିଆ ହୋଇ ରହିଲେ । ମୁହଁରେ ମୋ ଦୃଷ୍ଟି ସ୍ଥିର ହୋଇଗଲା । ସେ ମୋତେ ହିଁ ନିର୍ନିମେଷ ନୟନରେ ଚାହିଁ ରହିଥିଲେ । ଏହି କୁରୁପରିବାରର ଅନେକ ସଦସ୍ୟ ମୋ ପାଇଁ ଗୋଟିଏ ଗୋଟିଏ ରହସ୍ୟ ରୋମାଞ୍ଚଭରା ଉପନ୍ୟାସ ତୁଲ୍ୟ ।

ଯେତେ ଅଧ୍ୟୟନ କଲେ ବି ତୃଷ୍ଣା ମେଣ୍ଟୁ ନାହିଁ । କେଜାଣି କାହିଁକି କୁରୁ ପ୍ରପିତାମହୀ ସତ୍ୟବତୀଙ୍କର ସ୍ମୃତି ଛୋଟିଆ ଢେଉଟିଏ ହୋଇ ମୋ ମନ ଭିତରେ ପହଁରି ଗଲା । କାରଣ ତାଙ୍କୁଇ କେନ୍ଦ୍ର କରି ଦିନେ ହସ୍ତିନାରେ ଗଢ଼ି ଉଠିଥିଲା ଲୋଭ ଆଉ ଲିପ୍‌ସାର, ଭୋଗ ଆଉ ତ୍ୟାଗର ଏକ ରହସ୍ୟ ଘନ ନାଟକ । ଆଜି କୁରୁପତି ଦୁର୍ଯ୍ୟୋଧନ ହସ୍ତିନାର ସିଂହାସନ ଉପରେ ନିଜର ଦାବୀ ସାବ୍ୟସ୍ତ କରିବାକୁ ଚାହୁଁଛି । ତା'ର ଯୁକ୍ତି - ସେ ଜ୍ୟେଷ୍ଠପୁତ୍ର ଧୃତରାଷ୍ଟ୍ରଙ୍କର ପ୍ରଥମ ସନ୍ତାନ । ହସ୍ତିନାର ରାଜବଂଶର ରକ୍ତ ତା' ଧମନୀରେ ପ୍ରବାହିତ, ଯାହା କି ପଣ୍ଡୁପୁତ୍ରଙ୍କ ଦେହରେ ନାହିଁ । ନିର୍ବୋଧ ! ସେ କ'ଣ ଜାଣେ ? ଶାନ୍ତନୁ ବଂଶର ଶେଷ ସ୍ୱାକ୍ଷର ଦେବବ୍ରତ, ହସ୍ତିନା ରାଜପୁରୁଷଙ୍କର ରକ୍ତର ପ୍ରବାହ ତାଙ୍କରିଠାରେ ରୁଦ୍ଧ ହୋଇଯାଇଛି । ସୋମବଂଶର ବଂଶଧାରା ସେଇ ବିଶାଳ ବ୍ୟକ୍ତିତ୍ୱ ନିକଟରେ ହାରମାନି ନିଜକୁ ନିଶ୍ଚିହ୍ନ କରି ଦେଇଛି ତା'ରି ଭିତରେ । ସେ ବ୍ୟକ୍ତି କେବଳ ଦେଇଛି, ଦେବାରେ ହିଁ ତା'ର ତୃପ୍ତି ।

ବୃକ୍ଷଭଳି ଛାୟା ଦାନ କରିଆସିଛି, ମେଘଭଳି ଜଳଦାନ କରିଆସିଛି । କିଛିତ ଗ୍ରହଣ କରି ନାହିଁ ? ମହାନ୍ ପୁରୁବଂଶ ଯାଚକର ଭୂମିକା ଗ୍ରହଣ କରି ତା'ର ଅନ୍ତିମ ନିଃଶ୍ୱାସ ଯାଏ ତା'ଠାରୁ କେବଳ ଋଣ ହିଁ ଗ୍ରହଣ କରୁଥିବ । ପରିଶୋଧ କରିବାର ସମସ୍ତ ପଥ ସେ ନିଜେ ରୁଦ୍ଧ କରିଦେଇଛି ଯେ ! ନିର୍ବୋଧ ଦୁର୍ଯ୍ୟୋଧନ କ'ଣ ଜାଣେ ? ମାତା ସତ୍ୟବତୀଙ୍କର କାନୀନ ପୁତ୍ର ମହର୍ଷି ବ୍ୟାସଙ୍କ ପବିତ୍ର ରକ୍ତର ଧାରା ପ୍ରବାହିତ ହୋଇ ଆସିଛି ପୁରୁବଂଶରେ । ମହର୍ଷି ବ୍ୟାସ ଶାନ୍ତନୁଙ୍କର କ୍ଷେତ୍ରଜ ପୁତ୍ର ।

ବିଚାରୀ ସତ୍ୟବତୀ । ଯେଉଁ ପୁତ୍ରଟିକୁ ଗର୍ଭରେ ଧାରଣ କଲେ, ଅପଯଶ ଆଉ କଳଙ୍କ ଭୟରେ ସେଇ ଶ୍ୟାମଳ ଶିଶୁ ପୁତ୍ରଟିକୁ ପଦ୍ମବନ ବେଷ୍ଟିତ ଯମୁନା ନଦୀର ନିର୍ଜନ ଦ୍ୱୀପର ଋଷି ପରାଶରଙ୍କ ନିକଟରେ ଛାଡ଼ି ଆସିଥିଲେ । ମାତା ଭାବରେ ଶିକ୍ଷା ଦେବାତ ଦୂରର କଥା, ଲାଳନ ପାଳନ କରିବାର ଅଧିକାର ସୁଦ୍ଧା ହରେଇ ବସିଲେ । କେବେ ଦିନେ କୈବର୍ତ୍ତ ବସ୍ତିରେ ଥିଲେ, ମତ୍ସ୍ୟଗନ୍ଧା ଭାବେ ପରିଚିତିଟିଏ ଥିଲା, ସେସବୁ ଋଷି ପରାଶରଙ୍କ ସଂସ୍ପର୍ଶରେ ଆସି ଯେମିତି ସେ ଭୁଲିଯାଇ ପଦ୍ମଗନ୍ଧାରେ ପରିଣତ ହୋଇଥିଲେ ଠିକ ସେହିପରି ପରାଶର ମୁନିଙ୍କୁ ପରିହାର କରିଆସିବା ସମୟରେ ତାଙ୍କ ପ୍ରତି ଥିବା ମୋହ ଆସକ୍ତି ଏସବୁକୁ ମଧ୍ୟ ସେ ବିସର୍ଜନ ଦେଇ ଆସିଥିଲେ । ପୁଣି ସେ ଜନନୀ ହୋଇଥିଲେ ହସ୍ତିନାର ରାଜମହିଷୀ ହେବା ପରେ । ହେଲେ ସେ ପୁତ୍ରଦ୍ୱୟ ମଧ୍ୟ କାଳର ଆହ୍ୱାନରେ କାହିଁ କୁଆଡ଼େ ନିଶ୍ଚିହ୍ନ ହୋଇଗଲେ । ଅଥଚ ଯାହାକୁ ସେ ଗର୍ଭରେ ଧାରଣ କରିନାହାନ୍ତି, ସେଇ ସପତ୍ନୀ ପୁତ୍ର ଗାଙ୍ଗେୟ ଯେମିତି ତାଙ୍କର ଅକାତର, ଅକୃପଣ ଦାନ ରାଶିରେ ସତ୍ୟବତୀଙ୍କୁ ଚିରଦିନ ଋଣୀ କରି ଦେଲେ । ନା-ସେ ଋଣର ଭାର କୌଣସି ଦିନ କୁରୁବଂଶ ପରିଶୋଧ କରିପାରିବ ନାହିଁ । ତ୍ରେତୟା ଯୁଗର ରାମଚନ୍ଦ୍ର

ପିତୃସତ୍ୟ ପାଳନ କରି ବିମାତା କୈକେୟୀଙ୍କ ଆଦେଶରେ ଚତୁର୍ଦ୍ଦଶ ବର୍ଷ ପାଇଁ ବନବାସ ଗ୍ରହଣ କରି ନେଇଥିଲେ । ଏଇ ସୁମହାନ୍ ପୁରୁବଂଶରେ ଯଯାତି ତନୟ ପୁରୁ ମଧ୍ୟ ପିତା ଯଯାତିଙ୍କୁ ଶାପମୁକ୍ତ କରିବା ପାଇଁ ତାଙ୍କର ବାର୍ଦ୍ଧକ୍ୟ ନିଜେ ଗ୍ରହଣ କରି ନିଜର ଯୌବନ ଦାନ କରିଥିଲେ । କିନ୍ତୁ ଏ ସମସ୍ତେ କୁରୁପିତାମହ ଭୀଷ୍ମଙ୍କ ଭଳି ସହସ୍ର ପ୍ରଲୋଭନ ଓ ଭୋଗୈଶ୍ୱର୍ଯ୍ୟ ମଧ୍ୟରେ ବୈରାଗୀର ଜୀବନ ଅତିବାହିତ କରୁନଥିଲେ ! ଏମିତି ଏକ ସନ୍ୟାସୀର ଜୀବନ ସେ କାହିଁକି ବରଣ କଲେ ? ତାଙ୍କର ଦୁର୍ମଦ ଶକ୍ତି ସାମର୍ଥ୍ୟ, ଅଫୁରନ୍ତ ଯୌବନ ସବୁକିଛି ଥିବା ସତ୍ତ୍ୱେ ? ଦାସ ରାଜାଙ୍କର ସେହି ଉତ୍ପୀଡ଼କ ପ୍ରଶ୍ନ ସମୂହର ଉତ୍ତର ଦେବାକୁ ଯାଇ ସେ କାହିଁ ପ୍ରତିଜ୍ଞାର ଦୃଢ଼ ଶୃଙ୍ଖଳରେ ବଚନବଦ୍ଧ ହେଲେ ?

କୁରୁ ପିତାମହଙ୍କୁ ଯେତେ ଯେତେ ଅନୁଶୀଳନ କରିବାକୁ ଚେଷ୍ଟା କରିଛି ସେତେ ବେଶୀ ତାଙ୍କ ନିକଟରେ ମୋର ମୁଣ୍ଡ ନଇଁ ଯାଉଛି । କେଜାଣି କାହିଁକି ସେ ମୋତେ ଠିକ୍ ବୟୋକନିଷ୍ଠ ଭାବେ ଶ୍ରଦ୍ଧା କରୁନଥିଲେ । ମୋତେ ଯଥେଷ୍ଟ ସମ୍ମାନ ଦେଉଥିଲେ ।

ଦାସରାଜ ! ଯେଉଁ ସିଂହାସନର ମୋହରେ ତୁମେ ଏହି ସତ୍ୟସନ୍ଧ ମହାପୁରୁଷ ଭୀଷ୍ମଙ୍କୁ ଚିରବଞ୍ଚିତ କଲ, ସେ ସିଂହାସନ ବି କ'ଣ ତୁମ ପୌତ୍ର ଚିତ୍ରାଙ୍ଗଦ ଓ ବିଚିତ୍ର ବୀର୍ଯ୍ୟ ଭୋଗ କରିପାରିଲେ ? କାଳ କାହାକୁ ବା ପ୍ରବଞ୍ଚିତ ନକଲା ?

ମୋର ଯାତ୍ରା ଲଗ୍ନ ସନ୍ନିକଟ ହେଲା । ମଧ୍ୟାହ୍ନ ଭୋଜନ ପରେ ଏକାକୀ ପାକଶାଳା ନିକଟକୁ ଗଲି । ରାଜ ପରିବାର, ଅତିଥି ଅଭ୍ୟାଗତ, ଆଶ୍ରିତ, ସେବକ ସମସ୍ତେ ଖାଦ୍ୟଗ୍ରହଣ କରିବା ପରେ ପଟ୍ଟମହିଷୀ ପାଞ୍ଚାଳୀ ଖାଦ୍ୟଗ୍ରହଣ କରନ୍ତି । ସେଇମାତ୍ର ଭୋଜନ ସମାପ୍ତ କରି ସେ ପାକଶାଳାକୁ ପରିଛନ୍ନ କରୁଥିବା ଦାସୀକୁ କ'ଣ ନିର୍ଦ୍ଦେଶ ଦେଉଥିଲେ । ମୋତେ ଦେଖି ଆଶ୍ଚର୍ଯ୍ୟ ଭାବେ କହିଲେ - 'ଗୋବିନ୍ଦ, ପାକଶାଳାରେ ?'

ହାତରେ ଧରିଥିବା ବାଉଁଶ ନଳୀଟିକୁ ତାଙ୍କ ହାତକୁ ବଢ଼େଇ ଦେଲି । ବିଶେଷ ଭଂଗୀରେ ନିର୍ମିତ ଏକ ବାଉଁଶ ନଳୀ, ତା'ର ଉଭୟ ପାର୍ଶ୍ୱ ବାଉଁଶ ଠିପି ଦ୍ୱାରା ବନ୍ଦ ଥିଲା । ସେ ପଚାରିଲେ - 'ଏଥିରେ ପୁଣି କି ରହସ୍ୟ ଲୁଚି ରହିଚି ।' ମୁଁ କିଛି ସମୟ ତାଙ୍କୁ ଗମ୍ଭୀରଭାବେ ଚାହିଁଲି ଓ କହିଲି - 'ତୁମ କ୍ଷୀରୋଦ୍ରୀ ପଟ୍ଟବସ୍ତ୍ରର ଛିନ୍ନାଂଶକୁ ସ୍ମୃତିରେ ସନ୍ତକ ଭାବେ ମୁଁ ନେଇ ଯାଉଛି । କଳିଙ୍ଗର ଜଣେ ଦକ୍ଷ ବୁଣାକାର ଦ୍ୱାରା ଏହା ନିର୍ମିତ । ବାଉଁଶ ଦଣ୍ଡ ଭିତରେ ଏହି ସୂକ୍ଷ୍ମ ବସ୍ତ୍ରଟି ରହିଛି । ଏହା ପରିଧାନ କଲେ ଅନ୍ତର୍ବାସର ସୁଦ୍ଧା ପ୍ରୟୋଜନ ନାହିଁ । ସାଧାରଣତଃ ରଜସ୍ୱଳା ନାରୀଗଣ ଏହି ବସ୍ତ୍ର ପରିଧାନ କରନ୍ତି ।'

ମୋ ମୁହଁରୁ ଏପରି କଥା ଶୁଣିବା ପରେ ତାଙ୍କ ମୁହଁ ପାଟଳ ବର୍ଣ୍ଣ ଧାରଣ କଲା । ମୁଁ

ଯଥାଶୀଘ୍ର ଫେରି ଆସିଲି । ସେ ମଧ୍ୟ ମୋତେ କିଛି କହି ପାରିଲେ ନାହିଁ । ରଥ ପ୍ରସ୍ତୁତ ହୋଇ ସାରିଥାଏ । କୁରୁପିତାମହ ଭୀଷ୍ମ, ମହାମନା ବିଦୂର, ପ୍ରାଜ୍ଞ ଯୁଧିଷ୍ଠିର ଓ ତାଙ୍କ ଭ୍ରାତାଗଣ, ପାଣ୍ଡବ ମହିଷୀ ପାଞ୍ଚାଳୀ, ଭଗିନୀ ସୁଭଦ୍ରା, ସେମାନଙ୍କ ସନ୍ତାନଗଣ ତଥା ବହୁ ଆତ୍ମୀୟ ସେବକ ଏବଂ ମାତା କୁନ୍ତୀ ଭବନ ଦ୍ୱାରରେ ଦଣ୍ଡାୟମାନ ହୋଇଥା'ନ୍ତି । ମୋର ଭାଗୀନେୟ ଅଭିମନ୍ୟୁ ତଥା ଦ୍ରୌପଦୀଙ୍କ ପଞ୍ଚପୁତ୍ର ରୀତିମତ ବିଳାପ ଆରମ୍ଭ କରି ଦେଇଥା'ନ୍ତି ଯେ ମୋ ସହ ଦ୍ୱାରକା ଯିବେ ବୋଲି । ସହଦେବଙ୍କ ପୁତ୍ରଟିକୁ ଚାହିଁଲି, ଦୁଇ ବର୍ଷର ଶିଶୁଟିଏ । ପାଞ୍ଚାଳୀଙ୍କ ଉପରେ ଦୃଷ୍ଟି ପଡ଼ିଲା । ମୁଁ ତତ୍‌କ୍ଷଣାତ୍ ମାତା କୁନ୍ତୀଙ୍କୁ ପ୍ରଣାମ କରି କହିଲି - 'ଯାଉଛି । ପୁଣି କେବେ ଦେଖା ହେବ କେଜାଣି ?'

ସୁଭଦ୍ରା ବିଷର୍ଣ୍ଣଭାବେ କହିଲା - 'ଆଉ କିଛି ଦିନ ରହିଥିଲେ କ'ଣ ହେଇଥା'ନ୍ତା ଯେ ?'

ମୁଁ କହିଲି -'ନା ଭଦ୍ରା ! ମୋତେ ପଶ୍ଚିମର ଉପାନ୍ତକୁ ଯିବାକୁ ପଡ଼ିବ । ଅନେକ ଦୂର । ତେବେ ମନେ ରଖ । ଜନନୀ ଯଶୋମତୀ ମୋତେ ଲାଳନ କଲାଭଳି ତୁ ବି ଦ୍ରୌପଦୀଙ୍କ ପଞ୍ଚପୁତ୍ରଙ୍କୁ ଲାଳନ କରିବୁ । ପିଲାଏ ଆଜି କାନ୍ଦୁଛନ୍ତି । ମୁଁ ନେଇପାରୁନାହିଁ । କିନ୍ତୁ ଭଦ୍ରା ସେମିତି କିଛି ଅସୁବିଧା ହେଲେ ଅଭିମନ୍ୟୁ ତଥା ଏହି ପାଞ୍ଚୋଟି ଶିଶୁଙ୍କ ସହ ତୁ ଦ୍ୱାରକା ଚାଲିଯିବୁ ।'

ଯୁଧିଷ୍ଠିର ସହସା ମୋ ପାଖକୁ ଆସି ଉଦ୍‌ବିଗ୍ନ ଭାବେ ପ୍ରଶ୍ନ କଲେ - 'ଏପରି କାହିଁକି କହୁଚ କେଶବ ? ସୁଭଦ୍ରା ଆମ ସମସ୍ତଙ୍କର ପରମ ଶ୍ରଦ୍ଧେୟା ।'

ମୁଁ ଉଦାସୀନ ଭାବେ କହିଲି - 'ତା' ମୁଁ ଜାଣେ ଧର୍ମରାଜ ! ତଥାପି ତା'ର ମାତୃ ଧର୍ମ ସଂପର୍କରେ ସେ ସଚେତନ ରହୁ । ଏଇଥିପାଇଁ କହିଲି । ରାଜା ରାଜକାର୍ଯ୍ୟରୁ ଅବ୍ୟାହତି ପାଇଲେ ମୃଗୟା ବିନୋଦରେ ଯାଏ, ଚିତ୍ତ ବିନୋଦନ ନିମିତ୍ତ ଦ୍ୟୁତ କ୍ରୀଡ଼ାରେବି ଭାଗ ନିଏ ମାତ୍ର ଅତ୍ୟଧିକ ଆସକ୍ତି କ୍ରମେ ଦୁର୍ବଳତା ହୋଇ ମନୁଷ୍ୟର ବୁଦ୍ଧିଭ୍ରଂଶ କରେ, ହେଉ ପଛେ 'ଦ୍ୟୁତ' !'

'ଦ୍ୟୁତ' ଶବ୍ଦ ଉପରେ ପ୍ରାଧାନ୍ୟ ଦେଇ କହିଲି । ପାଞ୍ଚାଳୀ ବଡ଼ କାତର ଭାବେ ପ୍ରଶ୍ନ କଲେ - 'ପୁଣି କେବେ ଆସିବ ଗୋବିନ୍ଦ ?'

ମୁଁ ତାଙ୍କର ପଦ୍ମ କୋରକନିଭ ହାତ ଦୁଇଟିକୁ ସମସ୍ତଙ୍କ ସମ୍ମୁଖରେ ଧରି ପକେଇ ଆବେଗ ସ୍ପନ୍ଦିତ ଗାଢ଼ ସ୍ୱରରେ କହିଲି - 'ଆସିବି ସଖି ! ନିଶ୍ଚୟ ଆସିବି ତୁମେ ଯେତେବେଳେ ଡାକିବ, ଯେଉଁ ମୁହୂର୍ତ୍ତରେ, ମୁଁ ଯେଉଁଠି ଥାଏନା କାହିଁକି, ଠିକ୍ ପହଞ୍ଚିବି । ପାଣ୍ଡବ ନା ପାଣ୍ଡବ ପଟ୍ଟମହିଷୀଙ୍କୁ ମୁଁ ଛାଡ଼ିକରି ଯାଉନାହିଁ । ମୋ ଶରୀର ଯାଉଛି । ତୁମେ ଏକାକିନୀ ବୋଲି ଅନୁଭବ କଲେ ନିଶ୍ଚୟ ମୋତେ ସ୍ମରଣ କରିବ ଓ ମୁଁ ନିଶ୍ଚିତ ପହଞ୍ଚିବି !'

ପାଞ୍ଚାଳୀଙ୍କ ନୟନଦୁଇଟି ଅଶ୍ରୁପୂରିତ ହୋଇଉଠିଲା । ଆଜି ପ୍ରକାଶ କରିବା ବାହୁଲ୍ୟଯେ ମୁଁ ପାଞ୍ଚାଳୀଙ୍କୁ ଦେଇଥିବା ସେ ପ୍ରତିଶୃତି ରକ୍ଷା କରିଥିଲି । କୁରୁପିତାମହ ଭୀଷ୍ମ ଓ ବିଦୂରଙ୍କ ଉଦ୍ଦେଶ୍ୟରେ କହିଲି - 'ଆପଣ ମାନଙ୍କ ଭଳି ମହାଦ୍ରୁମ ଛାୟାରେ ମୋ ପିଉସୀ ପୁଅ ଭାଇମାନେ ନିରାପଦରେ ଥା'ନ୍ତୁ ।' ତାପରେ ଆଉ କାହାରି ପ୍ରତିକ୍ରିୟାକୁ ଅପେକ୍ଷା ନରଖି ମୋ ରଥ ଆଗକୁ ଗଡ଼ି ଚାଲିଲା ।

ଦ୍ୱାରକାରେ ପହଞ୍ଚିବା ପରେ ସେଇ କେତୋଟି ଦିନ ମୁଁ ବଡ଼ ବିବ୍ରତ ବୋଧ କରୁଥିଲି । ଏକଥା ବଡ଼ଭାଇଙ୍କ ଆଖିରୁ ସୁଦ୍ଧା ବାଦ୍ ଯାଇନଥିଲା । ଅନେକ ସମୟରେ ମୁଁ ଚିନ୍ତାମଗ୍ନ, ଅପରାହ୍ନରେ ମୁଁ ବଡ଼ ବିଷର୍ଣ୍ଣ ଭାବେ କ'ଣ ଗୋଟାଏ ଦୁଃସମ୍ବାଦ ଅପେକ୍ଷାରେ ଯେମିତି ଥାଏ । ସତ୍ୟଭାମା ମୋତେ କିଛି ସମୟ ଚାହିଁ ତାପରେ କହିଲେ - 'ଆପଣ ଆଜି ଏତେ ଅନ୍ୟମନସ୍କ ଯେ ? ଆସନ୍ତୁ ଆପଣ ଓ ମୁଁ ପଶା ଖେଳିବା । ଆପଣଙ୍କ ମନ ପ୍ରଫୁଲ୍ଲ ହେବ । ମୁଁ ତ ନିଶ୍ଚୟ ହାରିବି ।'

ମୁଁ ପ୍ରଚଣ୍ଡ ଭାବେ ଚମକି ଉଠି କହିଲି - 'ପଶା ? ଏଠିବି ପଶାଖେଳ ? ବେଶ୍, ଗୋଟି ସଜାଡ଼ି ।'

ପ୍ରକୃତରେ ଖେଳରେ ମୋର ମନ ନଥିଲା । ମୁଁ କହିଲି - 'ଶୁଣୁଛ ସତ୍ୟା ! ମୋତେ କେହି ଜଣେ ପ୍ରାଣ ବିକଳରେ ଡାକୁଛି । ଆହାଃ ! ବଡ଼ ବିପଦରେ ସେ । ନା - ନା - ଏଇଟା ତା'ର ପରାଜୟ ନୁହେଁ । ସେ ବିଜୟିନୀ ! ସେ ବିଜୟିନୀ ! ଏହି ଅସଂଲଗ୍ନ ସଂଳାପରେ ସତ୍ୟଭାମା ଆଶ୍ଚର୍ଯ୍ୟ ହୋଇ ମୋତେ ଚାହିଁଲେ । ଏହା ଯେ ମୋର ପ୍ରକୃତି ବିରୁଦ୍ଧ ! ମୁଁ ତତ୍‌କ୍ଷଣାତ୍ ଉଠିଯାଇ ସୁବର୍ଣ୍ଣ ମଞ୍ଜୁଷାରେ ସାଇତି ରଖିଥିବା ପାଞ୍ଚାଳ ତନୟାଙ୍କର ସେହି କ୍ଷୀରୋଦ୍ରୀ ପଟ୍ଟବସ୍ତ୍ରର ରକ୍ତଲିପ୍ତ ଛିନ୍ନାଂଶକୁ ଆଣି ସେଥିରୁ ଖଣ୍ଡିଏ ଖଣ୍ଡିଏ ସୂତା ଟାଣି ପବନରେ ଉଡ଼ାଇ ଦେବାକୁ ଲାଗିଲି ଅନ୍ୟମନସ୍କ ଭାବେ । ସତ୍ୟଭାମା ପରମ ବିସ୍ମୟରେ ମୋତେ ଚାହିଁ ରହିଥିଲେ କେବଳ । ଅନେକ ସମୟ ପରେ ମୁଁ ପ୍ରକୃତିସ୍ଥ ହେବାପରେ ସେ ମୋ ହାତଟିକୁ ଧରି ପକେଇ କହିଲେ - 'ଇଏ କ'ଣ କଲେ ପ୍ରଭୁ ? ଏହାତ ପାଣ୍ଡବ ପଟ୍ଟମହିଷୀଙ୍କର ସ୍ମୃତିର ସନ୍ତକ ଥିଲା ବୋଲି କହୁଥିଲେ !'

ମୁଁ ବହୁଦୂରରୁ କହିବାଭଳି ରହସ୍ୟମୟ ଭାବେ କହିଲି - 'ଏହା ବି ସ୍ମୃତିର ଅମଳିନ ସ୍ୱାକ୍ଷର -କାଳର ପୃଷ୍ଠାରେ ।'

ସେ ନୀରବରେ କେବଳ ମୋତେ ଚାହିଁ ରହିଲେ । ଏଇ ଘଟଣାର ଅଳ୍ପକିଛି ଦିନ ପରେ ହିଁ ଦ୍ୱାରକାରେ ଦୂତ ମୁଖରୁ ଆମେ ସମସ୍ତେ ଶୁଣିବାକୁ ପାଇଲୁ କୁରୁ ଦରବାରରେ

ଅନୁଷ୍ଠିତ ହୋଇଯାଇଥିବା ଲୋଭ ଓ ଲାଳସାର ସେଇ କୁତ୍ସିତ ଜଘନ୍ୟ ନାଟକର ଇତିବୃତ । ମଣିଷର ଅଦୃଷ୍ଟ ହିଁ ତା'ର ଭବିତବ୍ୟ । ବହୁବାର ସତର୍କ କରିବା ସତ୍ତ୍ୱେ ଧର୍ମରାଜ ଯୁଧିଷ୍ଠିରଙ୍କ ଭଳି ପ୍ରାଜ୍ଞ ବ୍ୟକ୍ତି କାହିଁକି ଦ୍ୟୁତର ଆସକ୍ତିକୁ ପରିହାର କରିପାରିଲେ ନାହିଁ ? କୁରୁ ଦରବାରରେ ସେଦିନ ଶକୁନୀ, ଦୁର୍ଯ୍ୟୋଧନ, କର୍ଣ୍ଣ, ଦୁଃଶାସନ ଓ ଅନ୍ୟାନ୍ୟ କପଟାଚାରୀ କୌରବ ଭ୍ରାତାଙ୍କ ସମଷ୍ଟି ବ୍ୟାହାରରେ ଯେଉଁ କପଟ ଦ୍ୟୁତ କ୍ରୀଡ଼ାର ଆୟୋଜନ କରାହୋଇଥିଲା ତା'ର ପଶ୍ଚାତରେ ଲୁଚିରହିଥିବା ଲୋଭ, ଲାଳସା, କପଟାଚାର, ମିଥ୍ୟାଚାର; ପ୍ରବଞ୍ଚନାର ବିଷବାଷ୍ପର ବିନ୍ଦୁଏ ପରିଚୟ ବି କିପରି ପାଇଲେ ନାହିଁ ଯୁଧିଷ୍ଠିର ? ଯୁଧିଷ୍ଠିରଙ୍କ ହାତକୁ ଥରକ ପାଇଁ ପଶାକାଠି ଆସିଲା ନାହିଁ । ଦୁର୍ଯ୍ୟୋଧନ ପକ୍ଷରୁ କୁଆଡ଼େ ତା'ର ମାତୁଳ ଶକୁନୀହିଁ ଖେଳିଲା ଓ କପଟାଚାରର ଆଶ୍ରୟ ନେଇ ବାରମ୍ବାର ଜିଣିଲା । ସମସ୍ତ ଗୁରୁ, ଗୁରୁଜନ କେମିତି ନୀରବ ଦ୍ରଷ୍ଟା ହୋଇ ରହିଥିଲେ ସେଦିନ ? କେମିତି ପରିପୂର୍ଣ୍ଣ ଦରବାର କକ୍ଷକୁ ଶତ ସଂଖ୍ୟକ ପୁରୁଷର ଲୁବ୍ଧ ଦୃଷ୍ଟି ସମ୍ମୁଖକୁ ଏକବସ୍ତ୍ରା ରଜସ୍ୱଳା ଅନ୍ତଃପୁରଚାରିଣୀ କୂଳବଧୂକୁ ଘର୍ଷିତ କରି ଅଣାଗଲା ? ଏସବୁ ଯେମିତି ଚମକପ୍ରଦ ସେତିକି ଅବିଶ୍ୱାସ୍ୟ । ପୁଣି ଯଦିବା ଆତ୍ମସମ୍ମାନ ସତୀଧର୍ମ ବଳରେ ସୁରକ୍ଷିତ ହେଲା ଓ ଦ୍ରୌପଦୀ ପାଣ୍ଡବଙ୍କୁ ବନ୍ଦୀ ଦଶାରୁ ମୁକ୍ତି ଦେଲେ ପୁନର୍ବାର ଯୁଧିଷ୍ଠିର କିପରି ଦ୍ୟୁତର ଆହ୍ୱାନକୁ ଗ୍ରହଣ କଲେ ? କିପରି ପୁଣି କୌରବଙ୍କ ବହୁ ବାଂଛିତ ରାଜ୍ୟଭୋଗ ଲାଳସାକୁ ଚରିତାର୍ଥ କରିବାପାଇଁ ପଞ୍ଚଇନ୍ଦ୍ର ସଦୃଶ ପଞ୍ଚପାଣ୍ଡବ ଓ ପାଣ୍ଡବ ପ୍ରେୟସୀ ତ୍ରୟୋଦଶବର୍ଷର ଅରଣ୍ୟବାସ ଗ୍ରହଣ କରିନେଲେ ? କାହିଁକି ? କିପରି ?

ବହୁ ଅସମାହିତ ପ୍ରଶ୍ନ ଆମ ସମସ୍ତଙ୍କୁ ବ୍ୟତିବ୍ୟସ୍ତ କରିପକାଇଲା । ମୁଁ ବିପନ୍ନ ପାଣ୍ଡବଙ୍କୁ ସାକ୍ଷାତ କରିବା ପାଇଁ ମନ ସ୍ଥିର କଲି ।

●

## ।। ଅଷ୍ଟାଦଶ ଗ୍ରନ୍ଥି ମୋଚନ ।।

ଦୂତ ଠାରୁ ଯେତିକି ଶୁଣିଥିଲି, ସେତିକି ମୋ ପାଇଁ ଯଥେଷ୍ଟ ନଥିଲା । ଜଣେ ପ୍ରତ୍ୟକ୍ଷଦର୍ଶୀ ଠାରୁ ବିବରଣୀ ଚାହୁଁଥିଲି । ଯାହାକୁ ଭିତ୍ତିକରି ଭବିଷ୍ୟତ ଯୋଜନା ମୋର କାର୍ଯ୍ୟକାରୀ ହୋଇ ପାରିବ । ଦ୍ରୌପଦୀଙ୍କ ପଞ୍ଚପୁତ୍ର ଓ ଅଭିମନ୍ୟୁ ସହ ସୁଭଦ୍ରା ଦ୍ୱାରକା ଆସିଥିଲା । କିନ୍ତୁ ପୂର୍ବଭଳି ସେ କୌଣସି ଆନନ୍ଦ ଉତ୍ସବରେ ଭାଗ ନେଉନଥିଲା । କୌଣସି ପ୍ରକାର ସାଜସଜ୍ଜାରେ ବି ତା'ର ଆଗ୍ରହ ନଥିଲା । ପ୍ରାୟ ମୌନ ରହୁଥିଲା ସେ । ନିତାନ୍ତ ସ୍ୱଳ୍ପ ପରିମିତ ଆହାର ଦେବାରଧନା, ସନ୍ତାନ ମାନଙ୍କର ଲାଳନ ଭିତରେ ତାର ଦିନ ପରେ ଦିନ ଅତୀତ ହେଉଥିଲା । ସର୍ବଦା ଅନ୍ୟମନସ୍କ । ରୁକ୍ମିଣୀ ଦିନେ ମୋତେ କହିଲେ - 'ଆମରି

ଆଗରେ ସେଦିନ ପର୍ଯ୍ୟନ୍ତ ଆନନ୍ଦ ଆମୋଦରେ କାଳ କାଟୁଥିବା ଝିଅଟା ଏମିତି ଯଦି ନିଷ୍ପ୍ରାଣ ପ୍ରତିମା ପାଲଟିଯାଏ ତେବେ ସେ କଷ୍ଟ ଏକା ତା'ର ନୁହେଁ ପ୍ରଭୁ, ସେଥିରେ ଆମେ ସମସ୍ତେ ଅଂଶୀଦାର !'

ମୁଁ ସୁଭଦ୍ରା କକ୍ଷରେ ପହଞ୍ଚିଲି । କକ୍ଷଟିରେ କୌଣସି ଉଜ୍ଜ୍ୱଳ ପ୍ରଦୀପ ନଥିଲା । ସ୍ୱଳ୍ପାଲୋକରେ ନିଦ୍ରିତ ଶିଶୁମାନଙ୍କ ଉପରେ ହାତ ପକେଇ ସେ ଚୁପ୍‌ଚାପ ବାତାୟନ ପଥରେ ଖୋଲା ଆକାଶକୁ ଚାହିଁଥିଲା । ସୁଭଦ୍ରାର ବୟସ ଏ ଭିତରେ ଅନେକ ବଢ଼ିଗଲା ଭଳି ମନେ ହେଉଛି । ପ୍ରକୃତରେ କେତେଦିନ ବା ସେ ସ୍ୱାମୀର ସଂସାରକୁ ଭୋଗ କଲା ? ଦୀର୍ଘ ତ୍ରୟୋଦଶ ବର୍ଷ ଅରଣ୍ୟବାସ ପରେ ସୁଭଦ୍ରା ପ୍ରୌଢ଼ତ୍ୱରେ ପାଦ ରଖିଥିବ । ମୁଁ ଧିରେ ଡାକିଲି - 'ଭଦ୍ରା ! କ'ଣ ଚିନ୍ତା କରୁଛୁ ?'

ସେ ମୋତେ ଚାହିଁଲା ଓ ଛୋଟ ଦୀର୍ଘଶ୍ୱାସଟିଏ ମୋଚନ କରି କହିଲା - 'ଭାବୁଛି କୁରୁବଂଶୀ ମାନଙ୍କ କଥା ଭାଇ ! ଭାବୁଛି ହସ୍ତିନାଭଳି ସୁରକ୍ଷିତ ସାମ୍ରାଜ୍ୟରେ ନାରୀ କେତେ ଅସହାୟ ! ଭାବୁଛି ନିଜର ଅଧିକାର ସାବ୍ୟସ୍ତ କରିବାପାଇଁ ହୁଏତ ରକ୍ତପାତବି ହୋଇପାରେ । ଭାବୁଛି ପଟ୍ଟମହିଷୀ ପାଞ୍ଚାଳୀଙ୍କର କ'ଣ ଏମିତି ଅପରାଧ ଥିଲା ଯେ ତାଙ୍କୁ ଏମିତି ଅଶ୍ରୁତପୂର୍ବ ଅଭୂତପୂର୍ବ ଲାଂଛନା ସହ୍ୟ କରିବାକୁ ପଡ଼ିଲା ?'

ମୁଁ ଅନୁଭବ କଲି ଏ କୋମଳମତି ଝିଅଟିର ହୃଦୟ ସେହି ଜଘନ୍ୟ ଘଟଣାର ଆକସ୍ମିକତାରେ ଖଣ୍ଡବିଖଣ୍ଡ ହୋଇଯାଇଛି । ତାକୁ ଆଶ୍ୱାସନା ଦେବାକୁ କହିଲି - 'ପାଣ୍ଡବ ପଞ୍ଚଭ୍ରାତ ମଧ୍ୟ ବୀର । ଏ ଘଟଣାକୁ ସେମାନେ ଯେ ନୀରବରେ ସହିଯିବେ, ତା'ବି ମନେ ହେଉନାହିଁ ।'

ସୁଭଦ୍ରା ବିଷର୍ଣ୍ଣ କଣ୍ଠରେ କହିଲା - 'ନା, ଭାଇ ! ସହିବାବି ସମ୍ଭବ ନୁହେଁ । ସେଥିପାଇଁ ଦ୍ୱିତୀୟ ପାଣ୍ଡବ ଓ ତୃତୀୟ ପାଣ୍ଡବ ପ୍ରତିଜ୍ଞାବଦ୍ଧ । ଭରତବଂଶୀଗଣ ପ୍ରତିଜ୍ଞାପାଳନରେ କେତେ ଅଟଳ ତା'ତ ତୁମେ ଜାଣ । ତା'ର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ପିତାମହ ଭୀଷ୍ମ । ଅତୀତରେ ଦାସରାଜାଙ୍କ ନିକଟରେ କରିଥିବା ପ୍ରତିଜ୍ଞାର ପାଳନ ପାଇଁ ପିତାମହ ସିଂହାସନର ପୃଷ୍ଠଭାଗରେ ରହି ହସ୍ତିନାର ସିଂହାସନକୁ ସୁରକ୍ଷା ଦେଇ ଆସୁଛନ୍ତି । ସେଥିରେ ଯିଏ ବି ଅଧିରୂଢ଼ ହେଉନା କାହିଁକି । ଭ୍ରାତା ଭୀମସେନଙ୍କ ପ୍ରତିଜ୍ଞା କଥା ଶୁଣିଲେ ତୁମେ ଆଶ୍ଚର୍ଯ୍ୟ ହୋଇଯିବ ।'

ପ୍ରକୃତରେ ଭ୍ରାତା ଭୀମ ଓ ସଖା ଅର୍ଜୁନ କି ପ୍ରକାର ଶପଥ ଗ୍ରହଣ କରିଛନ୍ତି ସେତିକି ଜାଣିବା ମୋର ଅଭିପ୍ରାୟ ଥିଲା । ସତକଥା କହିବାକୁ ଗଲେ ମୁଁ ଭିତରେ ଭିତରେ କୌତୁହଳୀ ହୋଇ ଉଠୁଥିଲି ତଥା କୌତୁକ ବି ଅନୁଭବ କରୁଥିଲି । ପଚାରିଲି - 'କି ପ୍ରକାର ପ୍ରତିଜ୍ଞା ?'

ସେ ଟିକିଏ ଚୁପ୍ ରହି କହିଲା - 'ଭୀଷଣ ସେ ପ୍ରତିଜ୍ଞା । ଇନ୍ଦ୍ରପ୍ରସ୍ଥର ପଟ୍ଟମହିଷୀଙ୍କୁ କେଶାକର୍ଷଣ ପୂର୍ବକ ରାଜଦାଣ୍ଡରେ ଘୋଷାରି ଘୋଷାରି ପାପୀ ଦୁଃଶାସନ ଦରବାର କକ୍ଷକୁ ନେଇଗଲା । ରୋରୁଦ୍ୟମାନା ପଟ୍ଟମହିଷୀଙ୍କର ଶତ ଅନୁରୋଧ ସତ୍ତ୍ୱେ ତାଙ୍କୁ ପୁଣି ବିବସନା କରିବାର ଅଶ୍ଳୀଳ ନିର୍ଦ୍ଦେଶ ଦେଲେ ପାପାତ୍ମା କୌରବଗଣ । ତାଙ୍କୁ 'ବହୁବଲ୍ଲଭା', ଦାସୀ ଭଳି ବହୁ ଇତରଜନୋଚିତ ଅସମ୍ମାନ ଜନକ ବିଶେଷଣରେ ସମ୍ବୋଧନ କଲେ ଦୁରାଚାରୀ କୌରବ ତଥା ଅଂଗରାଜ କର୍ଣ୍ଣ ପ୍ରଭୃତି । ଅମାର୍ଜିତ ଭାବେ ବ୍ୟଭିଚାରୀ ଦୁର୍ଯ୍ୟୋଧନ ସ୍ୱୀୟ ଜଘନ ପ୍ରଦେଶରୁ ବସ୍ତ୍ର ଅପସାରଣ କରି ପଟ୍ଟମହିଷୀଙ୍କୁ ତା'ର ଅଙ୍କଲକ୍ଷ୍ମୀ ହେବାପାଇଁ ଅସମ୍ମାନଜନକ ପ୍ରସ୍ତାବବି ଦେଲା । କୁହ ଭାଇ । ହସ୍ତିନା ଦରବାର କକ୍ଷରେ ଯେଉଁମାନେ ଉପସ୍ଥିତ ଥିଲେ ସେମାନେ ରକ୍ତମାଂସର ମଣିଷ ନା ପ୍ରାଣହୀନ ପ୍ରସ୍ତର ?'

ଉତ୍ତେଜନାରେ ଥରୁଥିଲା ସୁଭଦ୍ରା । ମୁଁ ତା'ର ପିଠି ଆଉଁଷି ଦେଇ କହିଲି - 'ତାପରେ ?'

ସେ କହିଲା - 'ଭ୍ରାତା ଭୀମସେନ ଶପଥ କରିଛନ୍ତି ଦିନେ ନା ଦିନେ ଦୁଃଶାସନର ସେ ଅଶୁଚି ହସ୍ତକୁ ଉତ୍ପାଟନ କରି ସେହି ରକ୍ତରେ ପଟ୍ଟମହିଷୀ ପାଞ୍ଚାଳୀଙ୍କ ବେଣୀ ବନ୍ଧନ କରିବେ । ତାଙ୍କର କେଶଭାର ସେ ପର୍ଯ୍ୟନ୍ତ ମୁକ୍ତୁଳିତ ରହିବ । ଦୁଃଶାସନର ବକ୍ଷ ବିଦୀର୍ଣ୍ଣ କରି ଭ୍ରାତା ଭୀମସେନ ରକ୍ତପାନ କଲେ ତାଙ୍କର ହୃଦୟ ଜ୍ୱାଳା ପ୍ରଶମିତ ହେବ ଏବଂ ନଗ୍ନ ଜଘନ ପ୍ରଦର୍ଶନ କରି କୁରୁପତି ଯେଉଁଭଳି ଅଶ୍ଳୀଳ ଆମନ୍ତ୍ରଣ ଜଣେଇଥିଲା, ତା'ର ପ୍ରତିଫଳ ସ୍ୱରୂପ ଦ୍ୱିତୀୟ ପାଣ୍ଡବ ଗଦାଘାତରେ ତା'ର ଉରୁଭଂଗ କରିବେ ! ଆଉ ତୃତୀୟ ପାଣ୍ଡବତ କର୍ଣ୍ଣକୁ କୌଣସି ଦିନ କ୍ଷମା କରିବେ ନାହିଁ !'

ଏତିକି ଶୁଣିବା ପରେ ମୁଁ ଆଶ୍ୱସ୍ତ ହୋଇଗଲି । କେବଳ ସୁଭଦ୍ରାକୁ ସାନ୍ତ୍ୱନା ଦେବାପାଇଁ କହିଲି -'ପାପ ପ୍ରବଳ ନହେଲେ ପୂଣ୍ୟ ପ୍ରତିଷ୍ଠା ପାଇବ କିପରି ଭଉଣୀ ? ଏସବୁ ପୂର୍ବରୁ ବିଧି ନିର୍ଦ୍ଦେଶିତ । ତୁମେ ବୃଥା ଚିନ୍ତା କରୁଛ ।'

ନିଦ୍ରିତ ଅଭିମନ୍ୟୁ କେତେବେଳେ ସୁଭଦ୍ରାଙ୍କ ପାଖରୁ ଉଠିଆସି ମୋ କ୍ରୋଡ଼ରେ ପରମ ନିଶ୍ଚିନ୍ତରେ, ପରମ ଅଭୟରେ ଶୋଇ ସାରିଥିଲା । ପରମ ସ୍ନେହରେ ତା' ସର୍ବାଙ୍ଗରେ ହାତ ବୁଲେଇ ଆଣୁ ଆଣୁ ମୁଁ ଚିନ୍ତା କରୁଥିଲି - ଏ ଯେଉଁ ନିଦ୍ରିତ ବାଳକ ଗୁଡ଼ିକ ? ଏମାନେ କାହାର କି ଦୋଷ କରିଛନ୍ତି ? ଏମାନଙ୍କୁ ତ ଦିନେ ପୁଣି ଉଦାସୀନ ଭାବେ ମୃତ୍ୟୁର ବ୍ୟୁହ ଭିତରକୁ ଠେଲି ଦିଆଯିବ ? ଏକଥା କିନ୍ତୁ ମୁଁ କହିଲି ନାହିଁ ।

ସୁଭଦ୍ରା ନିଜକୁ ନିଜେ ଶୁଣାଇବା ଭଳି କହୁଥିଲା - 'ମୁଁ ଆଦୌ ଭୁଲି ପାରୁନାହିଁ ସେଇ

ଦାରୁଣ ବିଦାୟ ଲଗ୍ନର ଦୃଶ୍ୟ । ସହଦେବଙ୍କର ଏହି ଦୁଗ୍ଧପୋଷ୍ୟ ଶିଶୁ ପୁତ୍ରଟିକୁ ମୋ କୋଳକୁ ବଢ଼େଇ ଦେଇ ପଟ୍ଟମହିଷୀ ପାଞ୍ଚାଳୀ କହିଥିଲେ - ନେ ସୁଭଦ୍ରା । ମୁଁ ଜାଣେ, ସେଦିନ ଧନଞ୍ଜୟ ତୋତେ ହରଣ କରିବାର ସମ୍ବାଦ ପାଇବା ପରେ ମୁଁ ଅସହିଷ୍ଣୁ ହୋଇ ଉଠିଥିଲି ତୋ ପ୍ରତି । ଅଥଚ ଗୋବିନ୍ଦଙ୍କ ଦୂର ଦୃଷ୍ଟି ପ୍ରଖର । ମୋର ଏହି ଶିଶୁପୁତ୍ର ପାଞ୍ଚୋଟିଙ୍କର ଦାୟିତ୍ୱ ତୋରି ଉପରେ ନ୍ୟସ୍ତ ହେବ ବୋଲି ତୁ ଧନଞ୍ଜୟଙ୍କୁ ବରଣ କରିଥିଲୁ । ଏ ଋଣ ମୁଁ କେମିତି ପରିଶୋଧ କରିବି ? ଆଜିଠାରୁ ତୁହିଁ ଏ ଶିଶୁଙ୍କର ପିତା ମାତା ଉଭୟ - ତାପରେ ସେ କିଛି କହି ନପାରି କାନ୍ଦି ଉଠିଥିଲେ ।' ମୁଁ ପ୍ରସଂଗ ପରିବର୍ତ୍ତନ କରିବାକୁ ଚାହିଁ କହିଲି 'ଆଉ ଜନନୀ କୁନ୍ତୀ ?'

ସୁଭଦ୍ରା ଅଶ୍ରୁ ସମ୍ବରଣ କରି କହିଲା - 'ସେ ବର୍ତ୍ତମାନ ପିତୃବ୍ୟ ବିଦୁରଙ୍କ ଘରେ । ପାଞ୍ଚଟି ବୀରପୁତ୍ରଙ୍କ ଜନନୀ ହୋଇବି ସାରାଜୀବନ ଦୁଃଖହିଁ ପାଇଲେ ସେ । ପିତୃବ୍ୟଙ୍କ ଆଶ୍ରୟ ବିନା କେଉଁଠି ସେ ରହନ୍ତେ ? ଅବଶ୍ୟ 'କୌରବ ଜନନୀ' ଓ କୌରବଗଣ ତାଙ୍କୁ ହସ୍ତିନାର ରାଜଅନ୍ତଃପୁରରେ ଆଶ୍ରୟଦେବାକୁ ଚାହିଁଥିଲେ, କିନ୍ତୁ ମାତା ସେ ଅନୁରୋଧ ପ୍ରତ୍ୟାଖ୍ୟାନ କଲେ । କହିଲେ ଯେଉଁମାନେ ମୋ ଗୃହଲକ୍ଷ୍ମୀର ଚରମ ଲାଂଛନାର ହେତୁ, ଯେଉଁମାନେ ମୋ ପୁତ୍ରଗଣଙ୍କୁ ସର୍ବସ୍ୱାନ୍ତ କରି ଅରଣ୍ୟବାସ ଦେଲେ ସେମାନଙ୍କ ଆଶ୍ରୟ ମୋ ପାଇଁ ଯେମିତି ଦୂଷଣୀୟ, ସେମାନଙ୍କ ଅନ୍ନ ମୋ ପାଇଁ ସେମିତି ବିଷାକ୍ତ !'

ସୁଭଦ୍ରାକୁ ସାନ୍ତ୍ୱନା ଦେବାପାଇଁ ମୋ ପାଖରେ ଆଉ ଭାଷା ନଥିଲା । ରୁକ୍ମିଣୀ, ସତ୍ୟଭାମା, ଜାମ୍ବବତୀ ପ୍ରଭୃତି ଅଷ୍ଟପାଟବଂଶୀ ସେତେବେଳକୁ ସେଠାରେ ନିଃଶବ୍ଦରେ ସାଶ୍ରୁ ଲୋଚନରେ ସୁଭଦ୍ରା ଠାରୁ ସେହି ଜଘନ୍ୟ ନାଟକର ଇତିବୃତ୍ତ ଶୁଣୁଥିଲେ । କକ୍ଷ ବାହାରେ ଘଣ୍ଟାଧ୍ୱନୀ ହେବାରୁ ମୁଁ ଜାଣିଲି ମୋର ଗୁପ୍ତଚର ନିଶାନ୍ତ ମୋ ପ୍ରତୀକ୍ଷାରେ । ମୁଁ ତାକୁ ଭିତରକୁ ଡାକିଲି । ସେ ପରିଶ୍ରାନ୍ତ ଦିଶୁଥିଲା । ବିନା ଭୂମିକାରେ କହିଲା - 'ଦୁର୍ଯ୍ୟୋଧନ ଚଣ୍ଡକତାର ସୀମା ନାହିଁ ପ୍ରଭୁ ! ଇନ୍ଦ୍ରପ୍ରସ୍ଥରୁ ସମସ୍ତ ବସ୍ତୁ ବିତ୍ତ, ରଥ, ଗଜ, ହୟ, ଶସ୍ୟାଦି ହସ୍ତିନା ଆସୁଛି । ଇନ୍ଦ୍ରପ୍ରସ୍ଥରେ ଅରାଜକତାର ସୁଯୋଗ ନେଇ ପ୍ରଜାଙ୍କ ଉପରେ ଯଥେଚ୍ଛା ଅତ୍ୟାଚାର ଆରମ୍ଭ ହୋଇଛି । ବିଶେଷତଃ ଯେଉଁମାନେ ପାଣ୍ଡବଙ୍କ ସହ ଅରଣ୍ୟକୁ ସୁଦ୍ଧା ଯିବାକୁ ପ୍ରସ୍ତୁତ ଥିଲେ ସେମାନଙ୍କ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ।

ନିଶାନ୍ତର ପ୍ରତ୍ୟେକ ଶବ୍ଦକୁ ମୁଁ ଗଭୀର ମନଯୋଗ ସହ ଶୁଣୁଥିଲି । ତା' କଥା ଶେଷ ହେବାପରେ ପଚାରିଲି-'ଇନ୍ଦ୍ରପ୍ରସ୍ଥର ସବୁକିଛି ତେବେ କୁରୁପତିଙ୍କର ଅଧିକୃତ ହୋଇଗଲା । ଅରଣ୍ୟ ବାସୀ ପାଣ୍ଡବ ଗଣ ତେବେ ସାଂଗରେ କ'ଣ ନେଲେ ?'

ମୋ କଥା ଶେଷ ନହେଉଣୁ ସେ କହିଲା - 'ଯାହା କ୍ଷତ୍ରିୟ ସନ୍ତାନର ସମ୍ମାନ,

ଗୌରବ ଓ ଏଶ୍ୱର୍ଯ୍ୟ ତାହାହିଁ ସେମାନେ ସାଂଗରେ ନେଇଛନ୍ତି ମହାଭାଗ ! ଧନଞ୍ଜୟ ଧାରଣ କରିଛନ୍ତି ପରିତୁଷ୍ଟ ଅଗ୍ନିଦେବଙ୍କ ପ୍ରଦତ୍ତ ଗାଣ୍ଡୀବ ଧନୁ ଓ ଅକ୍ଷୟ ତୂଣୀର, ଭୀମସେନ ଧାରଣ କରିଛନ୍ତି ମୟ ପ୍ରଦତ୍ତ ଦାନରାଜ ବୃଷପର୍ବାଙ୍କର ସୁବର୍ଣ୍ଣ ଓ ମଣି ବିନ୍ଦୁ ସମନ୍ୱିତ ସେହି ଅପୂର୍ବ ଗଦା । ଏତଦ୍ ବ୍ୟତୀତ ପଞ୍ଚଭ୍ରାତାଙ୍କ ପାଖରେ ସଞ୍ଚିତ ଅଛି ଶୌର୍ଯ୍ୟ, ଧୈର୍ଯ୍ୟ, ସତ୍ୟ, ନ୍ୟାୟ ଓ ଧର୍ମ ଭଳି ପରମ ସଂପଦ !'

- 'ଆଉ ପାଞ୍ଚାଳ ତନୟା ?'

ଏଇ ଶବ୍ଦ କେତୋଟି ମୁଁ ବହୁ କଷ୍ଟରେ ଉଚ୍ଚାରଣ କରିଥିଲି ।

ନିଶାନ୍ତ ମଧ୍ୟ କି ଉତ୍ତର ଦେବ ବୋଲି ଚିନ୍ତା କରି କିଛି ସମୟ ନୀରବ ରହିଲା । ସବୁ ପ୍ରଶ୍ନୋତ୍ତରର ଊର୍ଦ୍ଧ୍ୱରେ ଥିଲେ ପାଞ୍ଚାଳ ତନୟା । ନିଶାନ୍ତ କହିଲା - 'ପାଞ୍ଚାଳ ତନୟାଙ୍କୁ ସୂର୍ଯ୍ୟଦେବ ଏକ ଅକ୍ଷୟପାତ୍ର ଦାନ କରିଛନ୍ତି ।'

ଗଭୀର ଆଶ୍ୱସ୍ତିରେ ମୋ ଆଖି ଦୁଇଟି ଉଜ୍ଜ୍ୱଳ ହୋଇ ଉଠିଲା ।

ନିଶାନ୍ତ କହିଲା - 'ବର୍ତ୍ତମାନ ସେମାନେ କାମ୍ୟକ ବନରେ ।'

ମୁଁ ଗମ୍ଭୀର ଭାବେ କହିଲି - 'ତୁମେ ଯାଅ ନିଶାନ୍ତ । ଦାରୁକକୁ କହିବ ରଥ ପ୍ରସ୍ତୁତ କରିଥିବ । କାଲି ପ୍ରତ୍ୟୁଷରୁ ମୁଁ ଯାତ୍ରା କରିବି ।'

-'କେଉଁଠିକି ପ୍ରଭୁ ?' ସତ୍ୟଭାମାଙ୍କ କଣ୍ଠରେ ଉତ୍କଣ୍ଠା ।

ମୁଁ ସେଇଭଳି ଅନ୍ୟମନସ୍କଭାବେ ଉତ୍ତର ଦେଲି - 'କାମ୍ୟକ ବନ !'

କାମ୍ୟକ ବନରେ ପହଞ୍ଚିବା ବେଳକୁ ମଧ୍ୟାହ୍ନ ଅତିକ୍ରାନ୍ତ ହୋଇଯାଇଥିଲା । ପଥଧାରରେ ଇତସ୍ତତଃ ବନ୍ୟ ଅଧିବାସୀ ଶବରମାନଙ୍କ କୁଟୀର । ରଥ ଶବ୍ଦ ଶୁଣି କୁଟୀର ଭିତରୁ ସେମାନେ ବାହାରି ଆସିଲେ । ଦାରୁକ ସେମାନଙ୍କୁ ପ୍ରଶ୍ନ କଲା - 'ଏଠି ପାଣ୍ଡବ ପଞ୍ଚଭ୍ରାତ କେଉଁଠାରେ ରହୁଛନ୍ତି ?'

ଏକଶିଶୁ ପୁତ୍ରକୁ କୋଳାଗ୍ରତ କରିଥିବା ଅପରିଣତ ବୟସ୍କା ଶବର ତରୁଣୀଟିଏ ଉତ୍ତେଜିତା ହୋଇ କହିଲା - 'ତମେ ଯଦି ତାଙ୍କର ମିତ୍ରପକ୍ଷ ତେବେ ଆସ ତୁମେ ଆମର ବି ଅତିଥି, ଆମର ବି ଭଗବାନ; କିନ୍ତୁ ଯଦି ତୁମେ ତାଙ୍କର ଶତ୍ରୁପକ୍ଷ ହୋଇଥାଅ ତେବେ ଏଇଠୁ ଫେରିଯାଅ, ତମପାଇଁ ଯଦି ସେମାନଙ୍କର କିଛି କ୍ଷତି ହୁଏ ତେବେ ତମେ ଜୀବନ ନେଇ ଫେରି ପାରିବ ନାହିଁ ।'

ମୁଁ ଅନୁଭବ କଲି ପାଣ୍ଡବଗଣ ଓ ପାଞ୍ଚାଳୀ ସେମାନଙ୍କର ସ୍ୱଭାବସୁଲଭ ସରଳତା ଓ ବ୍ୟକ୍ତିତ୍ୱ ବଳରେ ଏଇ ବନ୍ୟ ଅଧିବାସୀଙ୍କର ଶ୍ରଦ୍ଧାଭାଜନ ହୋଇ ପାରିଛନ୍ତି । ମୁଁ କୌତୁକ ପ୍ରବଣ ଭାବେ କହିଲି - 'ଏଇ ଦେଖ, ମୁଁ ନିରସ୍ତ୍ର । କିନ୍ତୁ ଏଠାରେ ସୁଦ୍ଧା ଶତୃପକ୍ଷର ଆଶଙ୍କା କାହିଁକି ? ତମେ ବି ଏତେ ଉତେଜିତା କାହିଁକି ?'

ସେଇ ତରୁଣୀଟି କହିଲା - 'ସେଇ ନିର୍ବାସିତ ରାଜପୁତ୍ର ଓ ନିର୍ବାସିତା ରାଜରାଣୀଙ୍କୁ ଦେଖିଲାମାତ୍ରେ ତାଙ୍କର ଶତୃପକ୍ଷ କେଡ଼େ ନିର୍ମମ ସେ କଥା ଆମେ ଜାଣିପାରୁଛୁ । କାଲି ମୋର ଏଇ ଶିଶୁପୁତ୍ର ସ୍ତନ୍ୟପାନ କରୁଥିବା ସମୟରେ ସେଇ ନିର୍ବାସିତା ରାଜରାଣୀଙ୍କର ବକ୍ଷବାସ କ୍ଷୀରଧାର ଓ ଅଶ୍ରୁଧାରରେ ସିକ୍ତ ହୋଇ ଯାଇଥିଲା । ମୁଁ ବି ସନ୍ତାନର ଜନନୀଟିଏ । ମୁଁ ସେ ବ୍ୟଥା ଅନୁଭବ କରିପାରିଲି । ଏମିତି ଦୁଗ୍ଧପୋଷ୍ୟ ଶିଶୁକୁ ଯିଏ ମାତୃ କ୍ରୋଡ଼ରୁ ବିଛିନ୍ନ କରିଛି ସେ ଶତୃଯେ କେଡ଼େ ନିର୍ମମ ସେ କଥା ମୁଁ ବୁଝିପାରୁଛି ।'

ମୁଁ କହିଲି ନାହିଁ ଯେ, ତୁମେ ଜାଣ ନାହିଁ ଶବର ତରୁଣୀ, ନିୟତିଠାରୁ ବଳି ନିର୍ମମ ଶତୃ ଆଉ କେହି ନାହିଁ, ନିୟତିଠାରୁ ବଳି ପରମ ମିତ୍ର ବି କେହି ନାହିଁ । ନିୟତିର ସେଇ ଅଲଂଘ୍ୟ ନିର୍ଦ୍ଦେଶକୁ ଆମେ ପ୍ରତ୍ୟେକ କାର୍ଯ୍ୟକାରୀ କରିବାକୁ ବାଧ୍ୟ ।

ମୁଁ କେବଳ କହିଲି, 'ତୁମମାନଙ୍କ ଭଳି ସେମାନେ ବି ମୋର ମିତ୍ରପକ୍ଷ । ମୁଁ ତାଙ୍କର ମାମୁଁ ପୁଅ ଭାଇ ।'

ସେମାନେ ମୋର ଆତିଥେୟତା ପାଇଁ ଉଦ୍‌ଗ୍ରୀବ ହୋଇ ଉଠୁଥିଲେ । ମାତ୍ର ମୁଁ ପ୍ରଥମେ ପାଣ୍ଡବଙ୍କୁ ଦର୍ଶନ କରିବା ଉଦ୍ଦେଶ୍ୟରେ ସେମାନଙ୍କଠାରୁ ବିଦାୟ ନେଇ ରଥ ଆଗକୁ ଚଲେଇ ଆଣିଲି ଏବଂ ଆଶ୍ୱସ୍ତ ହେଲିଯେ, ମିତ୍ରତା ସୂତ୍ରରେ ଆବଦ୍ଧ ହୋଇ ରହିଥିବା ଏଇ ବନ୍ୟ ଅଧିବାସୀଙ୍କ ମେଳରେ ପାଣ୍ଡବ ଓ ପାଣ୍ଡବରାଣୀ ଅନ୍ତଃତ ଶାନ୍ତିରେ ଥିବେ ।

କାମ୍ୟକ ବନ ଯଥାର୍ଥରେ ପ୍ରାକୃତିକ ଶୋଭାର ପରିପୂର୍ଣ୍ଣ ଭଣ୍ଡାର । ସବୁଜ ଅରଣ୍ୟାନି, ଅସୁମାରୀ ଫୁଲର ସମାରୋହ, ଅସଂଖ୍ୟ ମଧୁକଣ୍ଠୀ ପକ୍ଷୀର ସଂଗୀତ, ଫଳଭାରାନତ ବୃକ୍ଷ ରାଜି, ସୁନୀଳ ପର୍ବତ ରାଶିରୁ ଝରି ଆସୁଥିବା ସ୍ୱଚ୍ଛତୋୟା ଗିରି ନିଝର ଓ ତା'ରି ଭିତରେ ଏକ ପରିଷ୍କୃତ କ୍ଷୁଦ୍ର ପର୍ଣ୍ଣକୁଟୀର । ତା'ର ଚତୁଃପାର୍ଶ୍ୱରେ ରମ୍ଭା ବୃକ୍ଷ ଓ ବକୁଳ ମଞ୍ଜରୀ ସମନ୍ୱିତ ସହକାର ଦ୍ରୁମ ଶ୍ରେଣୀ, ଛାୟାଛନ୍ନ ଶାନ୍ତ ଶୀତଳ ପରିବେଶ । ଶୁଖିଲା ପତ୍ର ଉପରେ ରଥ ଚକ ଓ ଘୋଡ଼ା ଟାପୁର ଶବ୍ଦରେ ସେମାନେ କୁଟୀର ବାହାରକୁ ଆସି ଚାହିଁଲେ । ସର୍ବପ୍ରଥମେ ଦୃଷ୍ଟି ପଥାରୁଢ଼ ହେଲେ ଦ୍ରୁପଦ ନନ୍ଦିନୀ । ତାଙ୍କର ସଘନ, ସୁନୀଳ, ସୁଦୀର୍ଘ, କୁଟିଳ କେଶ ରାଶି ମୁକୁଳିତ ଥିଲା । ଅରଣ୍ୟର ସବୁଜ ପତ୍ର ଶୀର୍ଷ ଭେଦ କରି ତିଳତଣ୍ଡୁଳିତ ଭାବେ

ଅପରାହ୍ନର ସୂର୍ଯ୍ୟରଶ୍ମି ସେହି କେଶର ଅରଣ୍ୟରେ ଅପୂର୍ବ ବର୍ଣ୍ଣାଳି ସୃଷ୍ଟି କରୁଥିଲା । ଉଦାସ ବିଷର୍ଣ୍ଣ ମୁଖମଣ୍ଡଳରେ ତାଙ୍କର କଠୋର ତପସ୍ୟାର ପୂଣ୍ୟପ୍ରଭା ଝଲସି ଉଠୁଥିଲା । ସେ ଯେମିତି ଦୁଃଖ ସହନର ତପସ୍ୟା କରୁଥିଲେ, ଏଇ ଯେମିତି ଭସ୍ମଶଯ୍ୟାରୁ ଉଠି ଆସିଛନ୍ତି । ପଲକମାତ୍ରକେ ତାଙ୍କ ପଦଯୁଗଳରେ ମୋ ଦୃଷ୍ଟି ପଡ଼ିଲା । ଲୋହିତ ପଦ୍ମ ସଦୃଶ ସେ ସୁକୋମଳ ପଦ ଦୁଇଟିର ଯାତ୍ରାପଥ ଏତେ ଦୀର୍ଘ ? ଯଜ୍ଞବେଦୀରୁ ଦ୍ରୁପଦରାଜ ଅନ୍ତଃପୁର - ଅନ୍ତଃପୁରରୁ କୁରାଳଶାଳ, କୁରାଳ ଶାଳରୁ ଇନ୍ଦ୍ରପ୍ରସ୍ଥ । ଇନ୍ଦ୍ରପ୍ରସ୍ଥରୁ କୁରୁଦରବାର ଓ କୁରୁଦରବାରରୁ ଦୀର୍ଘ ତ୍ରୟୋଦଶ ବର୍ଷର ଦୁଃସହ ଅରଣ୍ୟବାସ ! ସମସ୍ତ କଷ୍ଟ ସହନରେ ଅନଭ୍ୟସ୍ତ ଏହି ପଦଯୁଗଳ । ଆହାଃ ! ରାଜପଥରୁ ଅରଣ୍ୟପଥ - ସର୍ବତ୍ର ଯେମିତି ଏଇ ରକ୍ତ ପଦ୍ମନିଭ କୋମଳ ପଦଯୁଗଳଙ୍କୁ ରକ୍ତାକ୍ତ କରିବା ପାଇଁ ଲାଂଛନାର କଣ୍ଟକ ଶଯ୍ୟା ରଚନା କରାଯାଇଛି ! ହେ ମହାକାଳ ! ଧର୍ମର ପ୍ରତିଷ୍ଠା ପାଇଁ ଏହି ଶାଣିତ ଆୟୁଧଟି ତେବେ ଲାଂଛନାର ଶରାଘାତରେ ଲହୁଲୁହାଣ ହେବ ? କେତେବାର ? ପଛରେ ଛାଡ଼ିଆସିଥିବା ଜୀବନଟି ତା'ର ଯେମିତି ଅସମ୍ମାନ ଜନକ, ଆଗାମୀ ଦିନର ଜୀବନଟି ସେତିକି ଭୀତିପ୍ରଦ, ଓଃ !'

ମୁଁ କିଛି ଭାବି ପାରିଲି ନାହିଁ । ଚାହିଁ ଦେଖିଲି ଧର୍ମରାଜ ଯୁଧିଷ୍ଠିର କ'ଣ ଏକ ଗ୍ରନ୍ଥାଧ୍ୟୟନରେ ବ୍ୟସ୍ତ ଥିଲେ ହୁଏତ । ତାଳପତ୍ରର ପୋଥିବିଡ଼ାଟି ସହ ସେ ଆଗ୍ରହାତିଶଯ୍ୟରେ ମୋ ରଥ ଆଡ଼କୁ ସହାସ୍ୟ ବଦନରେ ଆସିଲେ । ଯେମିତି ସେ କୌଣସି ଝଡ଼ ଝଞ୍ଜାର ସମ୍ମୁଖୀନ ହୋଇନାହାନ୍ତି ସେମିତି ନିର୍ବିକାର, ନିର୍ଲିପ୍ତ ସେ ଦିଶୁଥିଲେ । ତାଙ୍କୁ ଅନୁସରଣ କରୁଥିଲେ ନକୁଳ ଓ ସହଦେବ - ବାତ୍ୟାବିକ୍ଷୁବ୍ଧ ଅର୍ଦ୍ଧଭଗ୍ନ ତରୁସମ କରୁଣ ଦିଶୁଥିଲେ ସେ ଦୁହେଁ । କ'ଣ ଏକ ପତ୍ର ରସରେ ତୂଣୀରକୁ ମାର୍ଜନା କରି ପରିଷ୍କାର କରୁଥିଲେ ଧନଞ୍ଜୟ ଓ ତାଙ୍କ ନିକଟରେ ପାଞ୍ଚାଳ ତନୟାଙ୍କୁ ଗୃହ କର୍ମରେ ସହଯୋଗ କରିବାପାଇଁ ଦ୍ୱିତୀୟ ପାଣ୍ଡବ ଫଳମୂଳ ଓ ପଶୁମାଂସକୁ ସଜାଡ଼ି ରଖୁଥିଲେ । ଧନଞ୍ଜୟଙ୍କର ବଦ୍ଧ ଓଷ୍ଠାଧରରେ, ଦ୍ୱିତୀୟ ପାଣ୍ଡବଙ୍କ ସ୍ଫୀତ ବକ୍ଷ ଓ ବଳିଷ୍ଠ ବାହୁରେ ସତେକି ସେଦିନ କୁରୁଦରବାରର ଭୀଷଣ ପ୍ରତିଜ୍ଞା ଲିପିବଦ୍ଧ ହୋଇଥିଲା । ପାଞ୍ଚାଳୀ ଦ୍ୱାରଦେଶରେ ନିଷ୍ପ୍ରାଣ ପ୍ରତିମାବତ୍ ଦଣ୍ଡାୟମାନ ହୋଇ ରହିଥିଲେ । ତାଙ୍କର ଗୋଟିଏ ନୟନରେ ଝଡ଼ ବିକ୍ଷୁବ୍ଧ ସାଗରର ଉତ୍ତାଳ ଲହରୀ ସମୂହ ଲୁହ ହୋଇ ଝରିନପାରି ନୟନ ତଟରେ ଟଳମଳ ହେଉଥିଲା । ସେହି ଜଳ ଛଳ ଛଳ ନୀଳ ପଦ୍ମର ପାଖୁଡ଼ା ଦୁଇଟି ସହ ମୋ ଆଖି ମିଶିଯିବା ମାତ୍ରେ ଅସହ୍ୟ ମର୍ମବେଦନାରେ ମୁଁ ବିମୂଢ଼ ହୋଇଗଲି । ମାତ୍ର ଦୁଃଖ ବେଦନାକୁ କାହା ସମ୍ମୁଖରେ ପ୍ରଚାର କରିବା ମୋ ସ୍ୱଭାବ ବିରୁଦ୍ଧ ଯେ !

ମୁଁ ପାଞ୍ଚାଳ ତନୟାଙ୍କ ସମ୍ମୁଖରେ ଠିଆ ହୋଇ ଧିରେ ଡାକିଲି - 'ପ୍ରିୟ ସଖି କୃଷ୍ଣା !'

ବାସ୍ ! ଏତିକି ! ମାତ୍ର ଏତିକିରେ ଯେମିତି ତୁଷାରାବୃତ ହିମାଳୟର କଠିନ ବରଫ ଶଯ୍ୟା ତରଳି ଗଂଗୋତ୍ରିରେ ପରିଣତ ହୋଇଗଲା । ହୃଦୟର ସମସ୍ତ ଅଶ୍ରୁଭାର, ସମସ୍ତ ଲୁହ ସମସ୍ତ ଲହୁରେ ଯେମିତି ସେ ମୋ ପାଦ ଦୁଇଟିକୁ ଧୋଇଦେଇ ଭାରମୁକ୍ତ ହେବାକୁ ଚାହୁଁଥିଲେ । ଏକ ସୁଚିକ୍କଣ କୃଷ୍ଣ ଶିଳା ଉପରେ ମୁଁ ବସି ପଡ଼ିଥିଲି ଓ ସେ ଅଦୂରରେ ମୋ ପଦ ପ୍ରାନ୍ତରେ । ସମସ୍ତେ ନିର୍ବାକ ଦ୍ରଷ୍ଟା । ପାଞ୍ଚାଳୀଙ୍କର ଏହି ଅସହାୟ ଭାବେ ରୋଦନ କରିବା ଦେଖି ଦ୍ୱିତୀୟ ପାଣ୍ଡବଙ୍କ ଆଖି ଦୁଇଟି ଅଶ୍ରୁ ଛଳ ଛଳ ହୋଇ ଉଠିଥିଲା । ଭ୍ରାତା ଭୀମ ତ ସର୍ବଦା ଶିଶୁଭଳି ସରଳ । ନିଜର କୌଣସି ଭାବାବେଗକୁ ସେ ଗୋପନ ରଖି ପାରନ୍ତି ନାହିଁ । ଛଳ କପଟରେ ସଂପୂର୍ଣ୍ଣ ଅନଭ୍ୟସ୍ତ ସେ । କନିଷ୍ଠ ପାଣ୍ଡବ ସହଦେବ ଭ୍ରାତାଭୀମଙ୍କୁ କହିଲେ - 'ପାଞ୍ଚାଳୀ ଅଶ୍ରୁ ଢାଳିବାର ସୁଯୋଗ ଆଜିହିଁ ପାଇଛନ୍ତି । ହୃଦୟରୁ ସବୁ ଅଶ୍ରୁକଣା ସେ ନିଗାଡ଼ି ଦିଅନ୍ତୁ ଆଜି । ସେଦିନର ସେଇ କୁରୁ ଦରବାରରେ ଦୁଃଶାସନ କର୍ତ୍ତୃକ ଘର୍ଷିତା ହୋଇ ଯିବାବେଳେ ସେ ଉଚ୍ଚକଣ୍ଠରେ ଆପଣାର ସୁରକ୍ଷା ନିମିତ୍ତ ଏକାକିନୀ ପ୍ରତିରୋଧ କରୁଥିଲେ, ବିଳାପ କରୁଥିଲେ । ଆମ ପାଞ୍ଚଭାଇଙ୍କର ଶକ୍ତି ସାମର୍ଥ୍ୟକୁ ଧିକ୍କାର କରି ବିଳାପ କରୁଥିଲେ । ପରିପୂର୍ଣ୍ଣ ଦରବାର କକ୍ଷରେ ପିତାମହ ଭୀଷ୍ମ, ଆଚାର୍ଯ୍ୟ, ହସ୍ତିନା ନରେଶ ଧୃତରାଷ୍ଟ୍ର ସମସ୍ତଙ୍କୁ ପ୍ରଶ୍ନ କରିଥିଲେ ପାଞ୍ଚାଳୀ । କେହି ତାଙ୍କର ଚରମ ଲାଂଛନାର ହେତୁ ସଂପର୍କରେ ସଦୁତ୍ତର ଦେଇ ପାରିନଥିଲେ । କେହି ତାଙ୍କୁ ସାହାଯ୍ୟ କରିବାକୁ ଆଗେଇ ଯାଉନଥିଲେ, ଶେଷକୁ ଯେତେବେଳେ ସେହି ଲଜ୍ଜାଜନକ ବୀଭତ୍ସ ଦୃଶ୍ୟ ଅଭିନୀତ ହେବାକୁ ଗଲା, ଦୁଃଶାସନର ଅଶୁଚି ହସ୍ତ ସତୀସାଧ୍ୱୀ ପାଞ୍ଚାଳୀଙ୍କର ବସ୍ତ୍ର ଅପସାରଣ କରିବାକୁ ଉଦ୍ୟତ ହେଲା ସେତେବେଳକୁ ଆଉ ପାଞ୍ଚାଳୀଙ୍କ ଆଖିରେ ଲୁହ ନଥିଲା । ସେତେବେଳେ ଯୁକ୍ତ କରରେ ଗୋବିନ୍ଦଙ୍କୁ ଭଜନ କରିବା ଆରମ୍ଭ କରି ଦେଇଥିଲେ - 'ହେ ମଧୁସୂଦନ ରକ୍ଷା କର ଅରକ୍ଷ ଅବଳାକୁ । ହେ କୃଷ୍ଣ ଗୋବିନ୍ଦ ହରେ ମୁରାରେ, ହେ ନାଥ ନାରାୟଣ ବାସୁଦେବ !' ତାପରେ କେଉଁଠୁ ଆସିଲା ସେ ଦୀର୍ଘସୂକ୍ଷ୍ମ କର୍ପାସ୍ ବସ୍ତ୍ରଟି, ଯଦିଓ ସେଦିନ ତାଙ୍କର ପରିଧେୟ ଥିଲା, ତଥାପି ଦୁଃଶାସନ ସ୍ତୂପାକୃତି ବସ୍ତ୍ର ଉପରେ ଅବଶ ହୋଇ ପଡ଼ିଯାଇନଥିଲା କି ? ସତୀଧର୍ମ ହିଁ ପାଞ୍ଚାଳ ତନୟାଙ୍କୁ ସେଦିନ ସୁରକ୍ଷିତ ରଖିଥିଲା । କିନ୍ତୁ ସେଇ ମୁହୂର୍ତ୍ତରୁ ପାଞ୍ଚାଳୀ ଆଉ ଲୁହ ଢାଳି ନଥିଲେ । ନିଜ ହାତରେ ଅଶ୍ରୁକଣା ପୋଛି ଦେଇଥିଲେ । ଆଜି ଏତେଦିନ ପରେ ପୁଣି ଯଦି ସେ କାନ୍ଦୁଛନ୍ତି, ତାଙ୍କୁ କାନ୍ଦିବାକୁ ଦିଅ ଭ୍ରାତା !'

କନିଷ୍ଠ ପାଣ୍ଡବଙ୍କ ଠାରୁ ଏହା ଶୁଣିବା ପରେ ମୁଁ ପାଞ୍ଚାଳୀଙ୍କ ହାତ ଦୁଇଟି ଧରି କହିଲି - 'ଦୁଃଖଭାରକୁ ସହିଯିବାହିଁ ଗୌରବ ସଖି !'

ଏତେବେଳେକେ କଥା କହିଲେ ପାଞ୍ଚାଳୀ । ଅଶ୍ରୁଳିପ୍ତ ଗଣ୍ଡକୁ ପଣତରେ ପୋଛୁ

ପୋଛୁ କହିଲେ - 'ସହିଯିବି ? କେଉଁ ଦୁଃଖଭାର ସହିଯିବି କେଶବ ? ସହିଯିବି ସ୍ୱୟଂ ଧର୍ମରାଜ ନୀତିବେତ୍ତା ହୋଇ ରକ୍ତମାଂସର ଗୋଟିଏ ନାରୀକୁ ଜଡ଼ ବସ୍ତୁ ଭଳି ଶେଷକୁ ଅକ୍ଷକ୍ରୀଡ଼ାରେ ପଣସ୍ୱରୂପ ରଖିଲେ ? ମହାବଳୀ ବୃକୋଦର, ଗାଣ୍ଡିବଧାରୀ ଆର୍ଯ୍ୟାବର୍ତ୍ତର ଅପ୍ରତିଦ୍ୱନ୍ଦୀ ଅଦ୍ୱିତୀୟ ଧନୁର୍ଦ୍ଧାରୀ ଧନଞ୍ଜୟ ଯାହାର ପତି, ଯଜ୍ଞସେନ ଭଳି ପ୍ରବଳପରାକ୍ରମୀ ଯାହାର ପିତା, ଧୃଷ୍ଟଦ୍ୟୁମ୍ନ ଭଳି ବୀର ବାହୁ ଯାହାର ଭ୍ରାତା ସେହି ଦ୍ରୁପଦ ତନୟାକୁ ରାଜଦାଣ୍ଡରେ ପାପାତ୍ମା ଦୁଃଶାସନ ଘୋଷାରି ଘୋଷାରି କେଶାକର୍ଷଣ କରି ନେଲା - ସେ କଥାବି ସହିଯିବି ? ମହାତ୍ମା ପଣ୍ଡୁଙ୍କର କୂଳବଧୂ ମୁଁ ମୋତେ ପରିପୂର୍ଣ୍ଣ ଦରବାର କକ୍ଷରେ ସୂତପୁତ୍ର 'ବେଶ୍ୟା', 'ଦାସୀ' ଏଇଭଳି ଅସମ୍ମାନଜନକ ସମ୍ବୋଧନ କଲା, ସେ କଥାବି ସହିଯିବି ? ଗୁରୁ ଗୁରୁଜନ ନିର୍ବାକ ଦ୍ରଷ୍ଟା ହୋଇ ରହିଲେ, ଶତ ଶତ ପୁରୁଷଙ୍କ ଲୁବ୍ଧ ଦୃଷ୍ଟି ସମ୍ମୁଖରେ ମୋତେ ବିବସ୍ତ୍ରା କରିବାର ଘୃଣ୍ୟ ଚକ୍ରାନ୍ତ ହେଲା, ସେ କଥା ବି ସହିଯିବି ? ହେ ମାଧବ ! ତୁମେ କୁହ ବିଶ୍ୱର କୌଣସି ନାରୀ ଏଭଳି ଅପମାନିତା ଲାଂଛିତା ହୋଇଛି କି ? ପାଞ୍ଚାଳ ରାଜଦୁହିତା ହୋଇ, ବୀର୍ଯ୍ୟାଶାଳୀ ଧୃଷ୍ଟଦ୍ୟୁମ୍ନଙ୍କ ଭଗ୍ନି ହୋଇ, ପଞ୍ଚପତିଙ୍କର ପତ୍ନୀ ହୋଇ, ପଞ୍ଚପୁତ୍ରଙ୍କର ଜନନୀ ହୋଇ ଏପରିକି ତୁମର ପ୍ରିୟସଖୀ ହୋଇବି ଏଭଳି ଦୁର୍ଦ୍ଦଶା ଯଦି ମୋର ଲଲାଟ ଲିପି, ତେବେ ମୁଁ କହିବି ମୋର କେହି ନାହାନ୍ତି - ନା ମାଧବ ତୁମେ ବି ନାହଁ ।'

ତାପରେ ପୁଣି ସେ ତାଙ୍କର କରତଳରେ ମୁହଁ ଲୁଚାଇ ଉଚ୍ଚ ସ୍ୱରରେ ବ୍ୟାକୁଳ ଭାବେ ବିଳାପ କରିବାକୁ ଲାଗିଲେ । ମୁଁ ତାଙ୍କର ସେଇ ଅଶ୍ରୁଲିପ୍ତ ମୁହଁ ଟିକୁ ଦୁଇ ହାତରେ ଟୋଳି ଧରିଲି ଓ ମନେ ମନେ ମନ୍ତ୍ରୋଚ୍ଚାରଣବତ୍ କହିଲି -'ହେ ଅନଳ ସମ୍ଭୁତା ଯାଜ୍ଞସେନୀ, ତୁମେହିଁତ ବିଧାତାର ଏକ ଶାଣିତ ଆୟୁଧ । ତୁମର କ୍ଷୁରଧାର ବୁଦ୍ଧି ସହ ତେଜସ୍ୱିତା, କୋମଳତା ସହ ପ୍ରଚଣ୍ଡତା, ବିଦ୍ୱତ୍ତା ସହ ହୃଦୟବତ୍ତାର ଅପୂର୍ବ ସମନ୍ୱୟ ସମଗ୍ର ଆର୍ଯ୍ୟାବର୍ତ୍ତର ପରମ ବିସ୍ମୟ । ଚିର ଇର୍ଷ୍ୟାକାତର କୌରବ ମାନଙ୍କ ପାଇଁ ତୁମେ ଇର୍ଷ୍ୟାଣୀୟା ନହେବ କିପରି ? ତୁମେ ଏତିକିରେ ଭାଂଗି ପଡୁଛ ? ତୁମ ଯାତ୍ରା ପଥର ଇଏତ ଅୟମାରମ୍ଭ ମାତ୍ର । ଏକ ଉତ୍ସର୍ଗୀକୃତ ଆରୋହଣର ପଥ । ସେ ପଥରେ ଅନେକ ଲାଂଛନା ବାକୀ ଅଛି ଆହୁରି । କାହାକୁ ତୁମେ ଏଡ଼େଇ ପାରିବ କୃଷ୍ଣା ? ଦ୍ୱୈତବନରେ ଏଡ଼େଇପାରିବ ତୁମେ ସିନ୍ଧୁନରେଶ ଜୟଦ୍ରଥର ଲୁବ୍ଧତା ? ମତ୍ସରାଜ ବିରାଟ ଅନ୍ତଃପୁରରେ ଏଡ଼େଇ ପାରିବ ତୁମେ କୀଚକର ଲୁବ୍ଧତା ? ପୁରୁଷର ରୂପଲୁବ୍ଧତା, କାମାସକ୍ତି ଯେ ନାରୀପାଇଁ ଚରମ ବିପର୍ଯ୍ୟୟର କାରଣ ହୁଏ । ତୁମେ ବା କ'ଣ କରିପାରିବ ? ମୁଁ ବା କ'ଣ କରିପାରିବି ? କାର୍ଯ୍ୟ କାରଣ ଭିତରେ ସଂଯୋଗ ରକ୍ଷା କରୁଥିବା ସେତୁଟିଏ ମାତ୍ର ମୁଁ । ବିଶ୍ୱାସ କର କୃଷ୍ଣା ! ତମର ଏ ଅନ୍ତର୍ଦାହ ମୋପାଇଁ ମଧ୍ୟ ଅସହ୍ୟ ମର୍ମଦାହୀ ପୀଡ଼ା ସଦୃଶ । ତଥାପି.... ତଥାପି..... ମୁଁ ନାଚାର । ପାପର

ଶୀର୍ଷାରୋହଣ ନହେଲେ ପାପୀର ପତନ ଯେ ଅସମ୍ଭବ ! ଆଉ ଅଂଗାଧିପତି କର୍ଣ୍ଣ ! ଚିର ଭାଗ୍ୟ ଲାଂଛିତ, କୁରୁ ପତିର କରୁଣାଶ୍ରିତ ପୁରୁଷକାରର ପ୍ରତୀକ କର୍ଣ୍ଣ । ତୁମେ ସ୍ମରଣ କର କୃଷ୍ଣା ! ତୁମେ କ'ଣ ତାଙ୍କୁ ତୁମର ସ୍ୱୟଂବର ସଭାରେ ସହସ୍ର ସଂଖ୍ୟକ ରାଜପୁରୁଷଙ୍କ ସମ୍ମୁଖରେ 'ସୂତପୁତ୍ର' ବୋଲି ଅସମ୍ମାନଜନକ ସମ୍ବୋଧନ କରିନାହଁ ? କ୍ଷତ୍ରିୟ ନିମିତ୍ତ ଦେହର କ୍ଷତ ନିତାନ୍ତ ତୁଚ୍ଛ, ହେଲେ ତା' ମନରୁ ଯଦି ରକ୍ତକ୍ଷରଣ ହୁଏ ତେବେ ସେଥିରେ କେବଳ ପ୍ରତିଶୋଧ.....ପ୍ରତିଶୋଧର ସ୍ୱାକ୍ଷର ଲିପିବଦ୍ଧ ହୁଏ ।

ମୁଁ କିନ୍ତୁ ଏଥିରୁ ଗୋଟିଏ ଶବ୍ଦବି ଉଚ୍ଚାରଣ କଲିନାହିଁ । ବରଂ କହିଲି - 'କୃଷ୍ଣା ! ତୁମେ କାନ୍ଦ ନାହିଁ । ତୁମର ଲାଂଛନା ସମଗ୍ର ବିଶ୍ୱରେ ମଣିଷ ସମାଜର ଇତିହାସରେ ଏକ କଳଙ୍କିତ ଅଧ୍ୟାୟ । ତୁମର ଅପମାନ ଏକା ତୁମର ନୁହେଁ କଲ୍ୟାଣୀ ! ଏହା ଯେପରି ସମଗ୍ର ବସୁଧାର ଅପମାନ, ଯାହା ସେଦିନ ଅନ୍ତରୀକ୍ଷଯାଏ ପରିବ୍ୟାପ୍ତ ହୋଇ ମାତୃଜାତିର ମର୍ଯ୍ୟାଦା ଓ ସ୍ୱାଭିମାନକୁ କ୍ଷତ ବିକ୍ଷତ କରି ଦେଇଛି । ତମେ ନୁହଁ କୃଷ୍ଣା, ଯେମିତି ମୋର କମନୀୟ ପୃଥିବୀ ମାତା ଧର୍ଷିତା ହୋଇଛି । ନାରୀ ନିର୍ଯ୍ୟାତନାର ଏକକ ଦୂଷିତ ପରଂପରା ଆଗାମୀ ଯୁଗ ପାଇଁ ସୃଷ୍ଟି ହୋଇ ପୃଥିବୀର ମାନ ସମ୍ଭ୍ରମକୁ ସୁଦ୍ଧା ଛାରଖାର କରିଦେଇଛି । ତୁମେ ଧୈର୍ଯ୍ୟ ଧର କୃଷ୍ଣା ! ତୁମର ଏ ବିନ୍ଦୁ ବିନ୍ଦୁ ଅଶ୍ରୁ କଣା ଦିନେ ରୁଧିରର ବନ୍ୟା ସୃଷ୍ଟି କରିବ । ହଁ, ମୁଁ ତୁମକୁ କଥା ଦେଇଛି ସଖି । ପାଣ୍ଡବ ପଞ୍ଚଭ୍ରାତ ହୁଏତ ପାପାଚାରକୁ କ୍ଷମା କରିପାରନ୍ତି । ମାତ୍ର ମୁଁ ସେମାନଙ୍କୁ କ୍ଷମା କରିବି ନାହିଁ । କାଳର ଲଲାଟରେ ଚିହ୍ନିତ ଏହି ମସୀଲିପ୍ତ ଅଧ୍ୟାୟଟିକୁ ଧୋଇ ନିଶ୍ଚିହ୍ନ କରିଦେବାପାଇଁ ମୋର ଯେ ଅନେକ ରକ୍ତ ଦରକାର - ଅନେକ ରକ୍ତ । ସେ ରକ୍ତ ତର୍ପଣ ସେମାନଙ୍କୁ କରିବାକୁ ପଡ଼ିବ, ଯେଉଁମାନେ ନୀରବ ଶ୍ରୋତା ହୋଇଥିଲେ, ଯେଉଁମାନେ ନିର୍ବାକ୍ ଦ୍ରଷ୍ଟା ହୋଇଥିଲେ - ସମସ୍ତଙ୍କୁ.... ସମସ୍ତଙ୍କୁ.....ନିଜ ନିଜର ଦେୟ ଦେବାକୁ ପଡ଼ିବ । ଆଜି ତମ ଆଖିରୁ ଲୋତକ ବିନ୍ଦୁ ପୋଛିଦେବାପାଇଁ ତମର ପଞ୍ଚପତି ଅଛନ୍ତି, ସଖା ଗୋବିନ୍ଦ ଅଛି, ମାତ୍ର ସେଦିନ କୌରବ ରମଣୀଙ୍କ ପାଖରେ କେହି ନଥିବେ ।'

ମୋର ସ୍ୱଭାବ ବିରୁଦ୍ଧ ଭାବେ ଉତ୍ତେଜନାରେ ଏତେ ଗୁଡ଼ାଏ କଥା କହିସାରିବା ପରେ ମୁଁ ହଠାତ୍ ଚୁପ୍ ହୋଇଗଲି । ମୋର ଏସବୁ ଯେ ମିଥ୍ୟା ପ୍ରତିଶ୍ରୁତି ମାତ୍ର ନୁହେଁ ବା ମିଥ୍ୟା ସାନ୍ତ୍ୱନା ନୁହେଁ ସେ କଥା ଉପଲବ୍ଧି କରି ପାଞ୍ଚାଳ ତନୟାଙ୍କ ସହ ପଞ୍ଚଭ୍ରାତା ପରମ ବିସ୍ମୟରେ ମୋତେ ଚାହିଁ ରହିଥିଲେ । ମୁଁ ପ୍ରକୃତିସ୍ଥ ଭାବେ ଧର୍ମରାଜଙ୍କୁ ପ୍ରଶ୍ନ କଲି ।

- 'ଧର୍ମରାଜ କେଉଁ ଗ୍ରନ୍ଥ ଅଧ୍ୟୟନ କରୁଥିଲେ ?'

ସେ ତାଙ୍କ ହାତ଼ରେ ଧରିଥିବା ତାଳପତ୍ର ପୋଥିବିଡ଼ାଟି ମସ୍ତକରେ ଲଗେଇ କହିଲେ - 'ମୁଁ ତୁମକୁ ଅଧ୍ୟୟନ କରୁଛି ମାଧବ ! ସେ ଅଧ୍ୟୟନ ମୋର ଶେଷ ହେବାର ନୁହେଁ ।'

କୁରୁଦରବାରରେ ସେଦିନର ସେ ଦୁର୍ଘଟଣା ଏକ ବହୁ ଚର୍ଚ୍ଚିତ ବିଷୟ । କିନ୍ତୁ ପାଞ୍ଚାଳୀଙ୍କ ମୁହଁରୁ ଶୁଣିବା ପରେ ମୋର ମନେ ହେଲା, ପୂଣ୍ୟର ପ୍ରତିଷ୍ଠା ପାଇଁ ଯେଉଁ କ୍ଷେତ୍ର ପ୍ରସ୍ତୁତ କରିବାର ଥିଲା,ଏହାହିଁ ଉପଯୁକ୍ତ କ୍ଷେତ୍ର । ସଂଧ୍ୟା ଉପଗତ ହୋଇସାରିଥିଲା । ପାଞ୍ଚାଳୀ ତୁଳସୀ ମଞ୍ଚ ନିକଟରେ ସଂଧ୍ୟା ପ୍ରଦୀପ ଜାଳି ଦେଇଥିଲେ । ପ୍ରଦୀପର କୋମଳ ଆଲୋକରେ ଲକ୍ଷ୍ୟ କଲି ଅାଲୋକ ସାମାନ୍ୟା ରୂପସୀ ପାଞ୍ଚାଳୀ ପ୍ରାୟ ଆଭରଣ ଶୂନ୍ୟା, କେବଳ ତାଙ୍କ ନାସାରେ ଗଜମୁକ୍ତାର ବସଣୀରେ ପ୍ରଦୀପ ଆଲୋକ ପ୍ରତିବିମ୍ବିତ ହୋଇ କାବ୍ୟତାରାଭଳି ଝଲସି ଉଠୁଥିଲା ଏକ ସୁନ୍ଦର ଆଲୋକୋଜ୍ଜ୍ୱଳ ସକାଳର ପ୍ରତିଶ୍ରୁତି ବହନ କରି ।

ଦ୍ୱାରକା ଫେରିବା ସମୟରେ ମୁଁ ଚିନ୍ତା କରୁଥିଲି, କୃଷ୍ଣା ଗୋ ! ବହୁବାର ଉପଲବ୍ଧି କରିଛି ତୁମେ ମୋ ଜୀବନର ଏକ ସ୍ୱତନ୍ତ୍ର ଅଧ୍ୟାୟ । ସମଗ୍ର ଆର୍ଯ୍ୟାବର୍ତ୍ତ ଖୋଜି ଖୋଜି ମୁଁ ତୁମ ଭଳି ଶାଣିତ ଅସ୍ତ୍ରଟିଏ ଆବିଷ୍କାର କରିଛି ପାପର ସମୂଳ ବିନାଶ ପାଇଁ । ତୁମେ ମୋ ଭାବରେ ଯେମିତି ନିମଗ୍ନ ମୁଁ ବି ତୁମ ଆତ୍ମ ସମର୍ପଣରେ ସେମିତି ତନ୍ମୟ । ତୁମେ ଯେମିତି ମୋ ନିକଟରେ ସଂପୂର୍ଣ୍ଣ ଆତ୍ମସମର୍ପଣ ପାଇଁ ପ୍ରତିଜ୍ଞାବଦ୍ଧ, ମୁଁ ବି ସେମିତି ତମ ଆର୍ତ୍ତ ଶୁଣି ତୁମକୁ ରକ୍ଷା କରିବା ପାଇଁ ଅଂଗୀକାରବଦ୍ଧ ।

ଦ୍ୱୈତବନର ସେ ଘଟଣା ଆଜିବି ମନେ ଅଛି । ପାଣ୍ଡବଙ୍କ ପ୍ରତି ଦୁର୍ଯ୍ୟୋଧନର ଈର୍ଷ୍ୟା ତୁଷାନଳ ଆଜନ୍ମ ପୋଷିତ, ସେଥିରେ କୃଷ୍ଣା ତୁମେ ଘୃତାହୁତି ମାତ୍ର । ତୁମେ ଯେ ସୂର୍ଯ୍ୟ ଦେବଙ୍କ ଠାରୁ ଅକ୍ଷୟ ପାତ୍ର ପ୍ରାପ୍ତ ହୋଇଥିଲ, କ୍ଷୁଧା ଭଳି ଏକ ଚିରନ୍ତନ ଓ ଚରମ ସମସ୍ୟା ସମାଧାନ ହୋଇପାରୁଥିଲା ଏ ଖବର କେବେବି ଦୁର୍ଯ୍ୟୋଧନପାଇଁ ଶ୍ରୁତି ସୁଖକର ହୋଇନଥିବ । ପାଣ୍ଡବଗଣ ଚିରକାଳ ଅତିଥି ବତ୍ସଳ, ଆଶ୍ରିତ ବତ୍ସଳ । ଅରଣ୍ୟବାସ ସମୟରେ ସୁଦ୍ଧା ହସ୍ତିନା ଓ ଇନ୍ଦ୍ରପ୍ରସ୍ଥର ବହୁ ପ୍ରଜା, ବହୁ ବ୍ରାହ୍ମଣ, ସାଧୁସନ୍ଥ ସେମାନଙ୍କ ସହ ଅରଣ୍ୟକୁ ଯିବା ପାଇଁ ଅନୁମତି ଚାହିଁଥିଲେ । ଅକ୍ଷୟପାତ୍ରହିଁ ଅତିଥି ଆପ୍ୟାୟନର ସର୍ବୋତ୍ତମ ବ୍ୟବସ୍ଥା । ସେହି ନିର୍ବିରୋଧୀ ବ୍ରାହ୍ମଣ ଅତିଥିଙ୍କ ଭିତରୁ କେହି ହୁଏତ ଉଦ୍ଦେଶ୍ୟହୀନ ଭାବେ କୁରୁପତିକୁ କହିଥିବ ଅକ୍ଷୟପାତ୍ରର ଅଦ୍‌ଭୁତ କ୍ଷମତା ସଂପର୍କରେ । ଅର୍ଥାତ୍ ପାଣ୍ଡବ ପ୍ରେୟସୀ କୃଷ୍ଣା ଖାଦ୍ୟଗ୍ରହଣ କରି ପାତ୍ରଟିକୁ ସମାର୍ଜ୍ଜନ ନକଲାଯାଏ ସେ ପାତ୍ରରୁ ଚର୍ବ ଚୋଷ୍ୟ ଲେହ୍ୟ ପେୟର ଭୋଜ୍ୟ ସାମଗ୍ରୀ ଅଫୁରନ୍ତ ହୋଇଥିବ । ଯେଉଁ ମୁହୂର୍ତ୍ତରେ କୃଷ୍ଣା ଖାଦ୍ୟଗ୍ରହଣ କରିବେ ଓ ପାତ୍ରଟିକୁ ପରିଷ୍କାର କରିବେ ତାପରଠାରୁ ସେହି ଦିବସଟି ପାଇଁ ପାତ୍ରର ଗୁଣାତ୍ମକମାନ ସଂପୂର୍ଣ୍ଣ ମୂଲ୍ୟହୀନ । ପୁନର୍ବାର ପରଦିନର ସୂର୍ଯ୍ୟୋଦୟଠାରୁ ଅକ୍ଷୟପାତ୍ର ହେବ ପରିପୂର୍ଣ୍ଣ ଭୋଜ୍ୟବସ୍ତୁରେ । ଦୁର୍ଯ୍ୟୋଧନଙ୍କର ପତ୍ନୀ ଭାନୁମତୀଙ୍କ ହାତରେ ଜନ୍ମରୁ ଶଙ୍ଖନିଧି ଓ ପଦ୍ମନିଧି ଚିହ୍ନିତ ହୋଇଥିଲା । ତାଙ୍କ ସ୍ପର୍ଶରେ ଭୋଜ୍ୟ ସାମଗ୍ରୀ ସହସ୍ର ଗୁଣ ହେଉଥିଲା । କିନ୍ତୁ ସେଇଭଳି ଏକ ସମପର୍ଯ୍ୟାୟଭୁକ୍ତ

ଚମତ୍କାରଜନକ ଯୋଗ୍ୟତାର ଅଧିକାରିଣୀ କୃଷ୍ଣା ହେବେ ଏବଂ ଯାହାବି ପାଣ୍ଡବମାନଙ୍କ ପାଇଁ ବରଦାନ ସଦୃଶ ହେବ, ସେକଥା ଚିର ଅସହିଷ୍ଣୁ କୁରୁପତି ସହନ୍ତା କିପରି ?

ପାଣ୍ଡବଗଣ ଅରଣ୍ୟବାସୀ ହେବା ଦିନଠାରୁ କୁରୁପତି ନିଷ୍କଣ୍ଟକ ରାଜ୍ୟଭୋଗ କରୁଥିଲେ ଓ ସେହି ଭୋଗେଚ୍ଛାରେ ପରିତୃପ୍ତ ହୋଇଥିଲେ ସୁଦ୍ଧା ସଦା ଆଶଙ୍କିତ ଅବସ୍ଥାରେ ଥିଲେ । ଶତ୍ରୁ ଓ ଅଗ୍ନି ଏହାର ସମୂଳ ବିନାଶ ଯେ ଶାସ୍ତ୍ର ସମ୍ମତ । ପାଣ୍ଡବମାନେ ଅରଣ୍ୟବାସର ଅବଧି ପରେ ଫେରିଆସନ୍ତୁ ଏହା ତାଙ୍କର ଆନ୍ତରିକ ଇଚ୍ଛା ନଥିଲା । ତାଙ୍କର ଏହି ସ୍ୱାର୍ଥ କଳୁଷିତ ଚିନ୍ତାକୁ କାର୍ଯ୍ୟକାରୀ କରିବାପାଇଁ ସେ କେବଳ ସୁଯୋଗ ଅପେକ୍ଷାରେ ଥିଲେ । ସେ ସୁଯୋଗ ଯେତେବେଳେ ଆପଣା ଛାଏଁ ଉପସ୍ଥିତ ହେଲା ସେ କେମିତି ହାତଛଡ଼ା କରିଥା'ନ୍ତେ ? ଦୁର୍ଯ୍ୟୋଧନ ହସ୍ତିନାରେ ଏକ ଆଡ଼ମ୍ବରପୂର୍ଣ୍ଣ ଯଜ୍ଞାନୁଷ୍ଠାନ କରିଥିଲେ । ଇନ୍ଦ୍ରପ୍ରସ୍ଥରେ ଅନୁଷ୍ଠିତ ହୋଇଥିବା ଧର୍ମରାଜ ଯୁଧିଷ୍ଠିରଙ୍କର ରାଜସୂୟ ଯଜ୍ଞଭଳି ତାହା ଧର୍ମ ଭିତ୍ତିକ ନହେଲେ ସୁଦ୍ଧା ହସ୍ତିନାର ଆଡ଼ମ୍ବର ଓ ଐଶ୍ୱର୍ଯ୍ୟ ପ୍ରଦର୍ଶନ ତାହାର ମୁଖ୍ୟ ଲକ୍ଷ୍ୟ ଥିଲା । ଦୁର୍ଯ୍ୟୋଧନର ଚକ୍ରାନ୍ତଠାରୁ ମହାକାଳଯେ ଆହୁରି କୂଟ ଚକ୍ରାନ୍ତ କାରୀ ସେ ଧାରଣା ତାଙ୍କର ନଥିଲା । ସେହି ଯଜ୍ଞରେ ଯୋଗଦେବାପାଇଁ ବହୁ ମୁନଋଷିଙ୍କ ଭଳି ମୁନି ଦୁର୍ବାସା ମଧ୍ୟ ତାଙ୍କର ଦଶହଜାର ଶିଷ୍ୟଙ୍କ ସହ ହସ୍ତିନା ଆସିଥିଲେ । ସେବା ପରିଚର୍ଯ୍ୟା ମାଧ୍ୟମରେ ମୁନି ଦୁର୍ବାସାଙ୍କୁ ପରିତୁଷ୍ଟ କରିଥିଲେ ଦୁର୍ଯ୍ୟୋଧନ ।

ସଂସାର ଉଦାସୀ ମୁନିଗଣ ଦୁଇଟି ବସ୍ତୁ ଦାନରେ ନିତାନ୍ତ ଅକୃପଣ ଥିଲେ । ତା' ହେଉଛି କାହା ଉପରେ ଅସନ୍ତୁଷ୍ଟ ହେଲେ ଅଭିଶାପ ପ୍ରଦାନ ଓ ସନ୍ତୁଷ୍ଟ ହେଲେ ବରଦାନ । ମହର୍ଷି ଦୁର୍ବାସା ଯଦିଓ ଉଗ୍ରତେଜା, ଉର୍ଦ୍ଧ୍ୱରେତା ମହର୍ଷି ଥିଲେ, ତଥାପି ତ୍ରିଭୁବନରେ ସେ ଏକ ଆତଙ୍କ ସ୍ୱରୂପ ଥିଲେ । ତାଙ୍କର କ୍ରୋଧହିଁ ଥିଲା ଏହାର ଏକମାତ୍ର କାରଣ । ସେଥିପାଇଁ ତାଙ୍କର ଅହଂକାରର ସୀମା ନଥିଲା । କେହି ତାଙ୍କୁ ଦେଖିବାମାତ୍ରେ ଭୟଭୀତ ହେଉଛି ଏହା ତାଙ୍କ ପାଇଁ ଚିନ୍ତାର ବିଷୟ ନହୋଇ ଗର୍ବର ବିଷୟ ଥିଲା । ମୁଁ ଯେ ତାଙ୍କୁ ଭୟ କରୁନଥିଲି ସେମିତି ମଧ୍ୟ ନୁହେଁ । କ୍ରୋଧ ଭଳି ପରମଶତ୍ରୁ ତାଙ୍କୁ ବହୁବାର କୋପାବିଷ୍ଟ କରି ବାରମ୍ବାର ତାଙ୍କ ତପଃଫଳ ନଷ୍ଟ କରିଦେଉଛି ଏହି ସତ୍ୟ ଟିକକ ସୁଦ୍ଧା ସେ ଉପଲବ୍ଧି କରି ପାରୁନଥିଲେ ।

ରୁକ୍ମିଣୀ ଓ ମୁଁ ଉଭୟେ ଆମର ନବବିବାହିତ ଜୀବନ ଯାତ୍ରା ଆରମ୍ଭ କରିବା ସମୟରେ ମୁନି ଦୁର୍ବାସା ଆମକୁବି କମ୍ କଷ୍ଟ ଦେଇନାହାନ୍ତି ? ବିଦର୍ଭ ରାଜ ନନ୍ଦିନୀତ ରାତ୍ରିର ଅନ୍ଧକାରରେ ମୋ ବକ୍ଷରେ ମୁହଁ ଲୁଚାଇ ନିଃଶବ୍ଦରେ ଅଶ୍ରୁ ବିସର୍ଜନ କରନ୍ତି । ତାଙ୍କର ଅଭିଯୋଗ ଥାଏ - ଏହା କିପରି ଜୀବନ ? ମୁନି ଦୁର୍ବାସା ଆମ ବିବାହ ଉତ୍ସବରେ ଯୋଗ ଦେବାକୁ ଆସି ରହିଗଲେ । ସେବା ପରିଚର୍ଯ୍ୟା କରିବାରେ ମୋର ବି ଆପତ୍ତି ନାହିଁ । ବିଦର୍ଭଙ୍କୁ

ଯେତେ ମୁନିଋଷି ଆସୁଥିଲେ ମୋ' ଉପରେ ହିଁ ତ ସେମାନଙ୍କ ସେବା ପରିଚର୍ଯ୍ୟାର ଭାର ନ୍ୟସ୍ତ ଥାଏ ! ଅଥଚ ଏଠି ମୁନି ଦୁର୍ବାସାଙ୍କ ପାଇଁ ସ୍ୱହସ୍ତରେ ଅନ୍ନବ୍ୟଞ୍ଜନ ପ୍ରସ୍ତୁତ କରି ଚାହିଁ ରହୁଛି । ସେ ଖାଦ୍ୟଗ୍ରହଣ ନ କରିବା ପର୍ଯ୍ୟନ୍ତ ଆମେ ବି ଜଳଗ୍ରହଣ କରୁନାହୁଁ ! କିନ୍ତୁ ସଂଧ୍ୟାପରେ ଫେରି ଆସି ସେ ଖାଦ୍ୟ ଗ୍ରହଣ କରୁ ନାହାନ୍ତି । ପୁଣି ଦିନେ ଦିନେ ବ୍ରାହ୍ମ ମୁହୂର୍ତ୍ତରୁ ଯିବା ସମୟରେ କହୁଛନ୍ତି ଆଜି ଏଠାରେ ନଖାଇ ଅନ୍ୟତ୍ର ଖାଇବେ, ମାତ୍ର ହଠାତ୍ ଶିଷ୍ୟ ପରିବେଷ୍ଟିତ ହୋଇ ଆସି କହୁଛନ୍ତି, ଯଥାଶୀଘ୍ର ଖାଦ୍ୟ ପରିବେଷଣ କର ।

ରୁକ୍ମିଣୀଙ୍କୁ ବେଶୀ ଆଘାତ ଦେଇଥିଲା ଦିନକର ଘଟଣା । ଯେଉଁଦିନ ମୁନି ଦୁର୍ବାସା ଏକ ରଥରେ ବସି ନଗର ପରିକ୍ରମା କଲେ । ସେ ରଥକୁ ଅଶ୍ୱ ପରିବର୍ତ୍ତେ ମୋତେ ଓ ରୁକ୍ମିଣୀଙ୍କୁ ବାହିନେବାକୁ ପଡ଼ିଥିଲା । ରୁକ୍ମିଣୀ ସେତେବେଳକୁ ନବୀନା ତରୁଣୀଟିଏ ମାତ୍ର, କଷ୍ଟ ସହନରେ ଅନଭ୍ୟସ୍ତା । ସେତିକିରେ ସୁଦ୍ଧା ଦୁର୍ବାସାଙ୍କ ପରୀକ୍ଷା ଶେଷ ହେଲାନାହିଁ । ଏକଦା ପାୟସାନ୍ନ ଭୋଜନ କରିବା ସମୟରେ ଉଚ୍ଛିଷ୍ଟ ପାୟସାନ୍ନ ମୋର ସର୍ବାଙ୍ଗରେ ପ୍ରଲେପ ଦେବାକୁ କହିଲେ । ମୁଁ ମଧ୍ୟ ଅମ୍ଳାନ ବଦନରେ ସେ ଆଦେଶ ପାଳନ କରିଥିଲି । ରୁକ୍ମିଣୀଙ୍କ ଚକ୍ଷୁ ଅଶ୍ରୁପୂରିତ ହୋଇଉଠିଥିଲା । ସର୍ବାଙ୍ଗରେ ଉଚ୍ଛିଷ୍ଟ ପାୟସାନ୍ନ ପ୍ରଲିପ୍ତ ହେଲା କେବଳ ଭୂମିକୁ ସ୍ପର୍ଶ କରିଥିବା ମୋର ପଦଯୁଗଳ ବ୍ୟତୀତ ।

ସେ କଥା ବି ଦୁର୍ବାସା ଲକ୍ଷ୍ୟ କରି ପ୍ରଶ୍ନ କଲେ - 'ପଦ ତଳ ତେବେ ଇଚ୍ଛାକୃତ ଭାବେ ଅସୁରକ୍ଷିତ ରହିଲା ? ଦେଖ୍ କେଶବ, ମୋତେ ପରେ ଆଉ ଦୋଷ ଦବନି ।'

ଏତିକି କହି ସେ ଅଟ୍ଟହାସ୍ୟ କରିଉଠିଲେ । ରୁକ୍ମିଣୀଙ୍କ ଅବସ୍ଥା ଏବେବି ମନେ ପଡ଼ିଲେ ମୁଁ ହାସ୍ୟ ସମ୍ୱରଣ କରିପାରୁନି । ଏବେବି ସ୍ମରଣ ଅଛି ମୁଁ କହିଥିଲି - 'ମହାକାଳପାଇଁ ସବୁରାସ୍ତା ତ ରୁଦ୍ଧ କରାଯାଇ ପାରେନା ମହର୍ଷି !'

ସେ ମୋ କଥା ଶୁଣି ପ୍ରାଣ ଖୋଲି ହସି ହସି ଆଶୀର୍ବାଦ କରି ରାଜଭବନରୁ ବିଦାୟ ନେଇ ଚାଲିଯାଇଥିଲେ । ରୁକ୍ମିଣୀ ଶାନ୍ତିର ନିଃଶ୍ୱାସଟିଏ ତ୍ୟାଗ କରି କହିଲେ - 'ଓଃ ! କି ବିଚିତ୍ର ବ୍ୟକ୍ତି ମହର୍ଷି ! ଶେଷକୁ ଉଚ୍ଛିଷ୍ଟ.... ! ତାଙ୍କ କଥା ଅସମାପ୍ତ ରଖି ମୁଁ କହିଥିଲି - 'ହୁଁ ହୁଁ ! ପ୍ରିୟେ ! ବ୍ରାହ୍ମଣ ପୁଣି ମହର୍ଷିଙ୍କ ଉଚ୍ଛିଷ୍ଟ ଆମପାଇଁ ରକ୍ଷା କବଚ ଯେ !'

ମୋର ଏହି ଉକ୍ତିର ସତ୍ୟତା ବହୁପରେ ରୁକ୍ମିଣୀ ଉପଲବ୍ଧି କରିଥିଲେ ।

ଯଥାର୍ଥରେ ଜଣେ ବିଚିତ୍ର ବ୍ୟକ୍ତି ମହର୍ଷି ଦୁର୍ବାସା । ସଂସାର ଅନଭିଜ୍ଞ ବ୍ୟକ୍ତିଟିଏ । ଆଶୀର୍ବାଦ ବା ଅଭିଶାପ ଦେବା ସମୟରେ ପରିଣତି ପ୍ରତି ସେ ଆଦୌ ସଚେତନ ରହିପାରନ୍ତି ନାହିଁ । ତାଙ୍କ ଅଭିଶାପ ଯେମିତି ବହୁ ବିପର୍ଯ୍ୟୟକୁ ଡାକି ଆଣେ, ତାଙ୍କର ଆଶୀର୍ବାଦ ମଧ୍ୟ

ସେହିପରି ଅନେକ ସମୟରେ ବହୁ ବିଡ଼ମ୍ବନାର କାରଣ ହୁଏ । ମୋର ପିଉସୀ କୁନ୍ତୀଙ୍କୁ ସେ କ'ଣ ଆଶୀର୍ବାଦ ଦେଇନଥିଲେ; କିନ୍ତୁ ତାହାହିଁ ତ ତାଙ୍କ ଜୀବନର ଏକ ସଂଗୁପ୍ତ କ୍ଷତ ହୋଇ ସମଗ୍ର ଜୀବନ ତାଙ୍କୁ ଦୁଃସହ ମର୍ମଦାହରେ ଦଗ୍ଧୀଭୂତ କଲା । ଜନନୀ ହୋଇ ମମତାର କଣ୍ଠରୋଧ କରିବା ଯେ କି କଷ୍ଟ ! ଥାଉ ସେ କଥା ପରେ । ଏଇ ନିର୍ଭୀକ ଋଷି ଦେବରାଜ ଇନ୍ଦ୍ରଙ୍କୁ ସୁଦ୍ଧା ଭ୍ରୂକ୍ଷେପ କରିନାହାନ୍ତି ଅଭିଶାପ ଦେବା ସମୟରେ । ଆଉ ଭରତ ଜନନୀ ଶକୁନ୍ତଳା ? ତାଙ୍କର ସ୍ୱପ୍ନ କଢ଼ସବୁ ଫୁଲହୋଇ ଫୁଟିବା ଆଗରୁ ଏଇ ମହର୍ଷି ହିଁ ତ ସ୍ୱପ୍ନର ଫୁଲବନକୁ ବିଧ୍ୱସ୍ତ କରିଦେଇଥିଲେ । ସଂସାର ଅନଭିଜ୍ଞ, ସମ୍ବେଦନଶୂନ୍ୟ ମହର୍ଷି କ'ଣ ବା ଜାଣନ୍ତି ମିଳନ ଆଉ ବିରହର କଥା ? ପ୍ରଣୟ ଆଉ ହୃଦୟ ବିନିମୟର କଥା ? ବିଚାରୀ ଶକୁନ୍ତଳା ଯେ ପ୍ରଣୟର ସ୍ୱପ୍ନ ରାଇଜର ଗୋପନ ଗଳିରେ ବିଚରଣ କରୁଥିଲେ ସେ ସଂବାଦ ମହର୍ଷି ରଖିଥା'ନ୍ତେ କିପରି ? ମହର୍ଷି ଅଭିଶାପ ଦେଇ ଦେଲେ ।

ଦୁର୍ଯ୍ୟୋଧନ ଯେଉଁ ଯଜ୍ଞାନୁଷ୍ଠାନ କରିଥିଲେ ସେଥିରେ ଯୋଗ ଦେବାପାଇଁ ଆମ୍ଭମାନଙ୍କୁ ନିମନ୍ତ୍ରଣ ଜଣାଇଥିଲେ । କିନ୍ତୁ କାମ୍ୟକ ବନରୁ ଫେରିବା ପରେ ମୋ ମନ ଏତେ ଅଶାନ୍ତ ଥିଲାଯେ ମୁଁ କୌଣସି ଭାବେ ଯୋଗଦେବାକୁ ଚାହିଁଲି ନାହିଁ । ତେବେ ଦ୍ୱାରକାରୁ କେତେଜଣ ପଣ୍ୟଜୀବୀ ହସ୍ତିନା ଯାଇଥିଲେ । ସେମାନେ ଫେରିବାମାତ୍ରେ ମୁଁ ତାଙ୍କୁ ନିଜେ ଯାଇ ସାକ୍ଷାତ କରି ହସ୍ତିନାର ଯଜ୍ଞ ସଂପର୍କରେ ସମସ୍ତ ବିବରଣୀ ସଂଗ୍ରହ କଲି । ସେମାନଙ୍କ ଠାରୁ ଶୁଣିଲି ଅଭିସନ୍ଧି ମୂଳକଭାବେ ଦୁର୍ଯ୍ୟୋଧନ ମହର୍ଷି ଦୁର୍ବାସାଙ୍କୁ ସେବାରେ ପରିତୁଷ୍ଟ କରି ବରଦାନ ସ୍ୱରୂପ ମାଗିନେଇଛି ଯେ ମୁନି ତାଙ୍କର ଦଶହଜାର ଶିଷ୍ୟଙ୍କ ସହ ଦ୍ୱୈତବନ ଯାତ୍ରା କରି ପାଣ୍ଡବଙ୍କ ଆତିଥେୟତା ସ୍ୱୀକାର କରିବା ପାଇଁ ।

ଅର୍ଥାତ୍ ?

ସମସ୍ତ ଅଭିସନ୍ଧି ମୋ ନିକଟରେ ସ୍ପଷ୍ଟ ହୋଇଗଲା । ଅସମୟରେ ଶିଷ୍ୟ ପରିବେଷ୍ଟିତ କ୍ଷୁଧାର୍ତ୍ତ ମହର୍ଷି ପାଣ୍ଡବ କୁଟୀରରେ ପହଞ୍ଚିବେ ଓ ଉପଯୁକ୍ତ ଭାବେ ସତ୍କୃତ ହୋଇନପାରି ଅଭିଶାପର ଅଗ୍ନିରେ ସେମାନଙ୍କୁ ଭସ୍ମୀଭୂତ କରିଦେବେ ତଥା ସସାଗରା ଧରା ଭୋଗ କରିବା ପାଇଁ ଦୁର୍ଯ୍ୟୋଧନର ପଥ ପରିଷ୍କାର କରିଦେବେ । ମୁଁ ଆଉ ସୁସ୍ଥିର ରହି ପାରିଲି ନାହିଁ । ସାରଥିଙ୍କୁ ସୁଦ୍ଧା ଖବର ଦେବାକୁ ସମୟ ପାଇଲି ନାହିଁ । ମଧ୍ୟାହ୍ନ ଭୋଜନର ସମୟ ହୋଇଥିଲେ ସୁଦ୍ଧା ଭବନକୁ ଯାଇ ଖାଦ୍ୟଗ୍ରହଣର ଅବସର ପାଇଲି ନାହିଁ । ଏକା ଏକା ରଥ ଚଳେଇ ଦ୍ରୁତରୁ ଦ୍ରୁତତର ଗତିରେ ଦ୍ୱାରକା ଅତିକ୍ରମ କରି ଦ୍ୱୈତବନ ଉଦ୍ଦେଶ୍ୟରେ ଯାତ୍ରାକଲି । ନଗର ଅତିକ୍ରମ କରିବା ସମୟରେ ଜ୍ୟେଷ୍ଠଭ୍ରାତା ଓ ଦାରୁକଙ୍କ ସହ ସାକ୍ଷାତ ହୋଇଥିଲା । ଦାରୁକ ବ୍ୟସ୍ତ ହୋଇ କହିଲେ - 'କୁଆଡ଼େ ଯାଉଛନ୍ତି ପ୍ରଭୁ ? ମୁଁ ତ ରଥ ବାହିନେବାକୁ ପ୍ରସ୍ତୁତ, ମୋତେ ଖବର ନଦେଇ..... ଏମିତି ଏକା ଏକା ।'

ଜ୍ୟେଷ୍ଠଭ୍ରାତା କହିଲେ - 'ଯେମିତି ଦୃଷ୍ଟି ତା'ର ଉଦ୍‌ଭ୍ରାନ୍ତ ଦିଶୁଛି ମନେ ହେଉଛି କୁମ୍ଭୀର କବଳରୁ ଗଜ ବା ବ୍ୟାଧ କବଳରୁ ମୃଗୁଣୀର ଉଦ୍ଧାର ଭଳି ଆଜି କେଉଁ ବିପନ୍ନ ଭକ୍ତକୁ ଉଦ୍ଧାର କରିବା ପାଇଁ କାହ୍ନୁର ଏ ଯାତ୍ରା । ଏ ଯାତ୍ରା ତା'ର ସଫଳ ହେଉ ।'

ମୁଁ କୌଣସି ଉତ୍ତର ଦେଇନଥିଲି । ପବନର ଗତି ଅନୁକୂଳ ଥିଲା ଓ ମୋର ଶୁକ୍ଳାଶ୍ୱବାହିତ ରଥର ଗତି ମଧ୍ୟ ଅତ୍ୟନ୍ତ କ୍ଷୀପ୍ର ଥିଲା । ଦ୍ୱୈତବନରେ ପହଞ୍ଚିବା ବେଳକୁ ଅପରାହ୍ନ ଆଗତ ପ୍ରାୟ । ସେହି ଦିବସ ପାଇଁ ସଂଗୃହୀତ ହୋଇଥିବା ଭୁକ୍ତାବଶେଷ କେତୋଟି ଫଳମୂଳକୁ ଚାହିଁ ପାଣ୍ଡବ ପଞ୍ଚଭ୍ରାତ ନୀରବରେ ବିଷର୍ଣ୍ଣଭାବେ ବସିରହିଥିଲେ, ଯେମିତି ସର୍ବସ୍ୱାନ୍ତ ହୋଇଯାଇଛନ୍ତି । ରଥର ଘର୍ଘର ନାଦରେ ସମସ୍ତେ ମୋତେ ଲେଉଟି ଚାହିଁଲେ । ପ୍ରତ୍ୟେକଙ୍କ ଆଖିରେ ଆସନ୍ନ ବିପଦର ସଂକେତ । ମୁଁ ଦ୍ରୁତ ପଦରେ କୁଟୀର ଭିତରେ ପ୍ରବେଶ କଲି ଓ କାହାରିକୁ ଦୃକ୍‌ପାତ ସୁଦ୍ଧା ନକରି ପାଞ୍ଚାଳୀଙ୍କ ପାଖରେ ପହଞ୍ଚିଲି । ଜଳମଗ୍ନ ଦୁଇଟି ନୀଳକଇଁର ପାଖୁଡ଼ା ଭଳି ତାଙ୍କର ନୟନ ଦୁଇଟି ଲୋତକର ବନ୍ୟାରେ ଭାସୁଥିଲା । ତାଙ୍କର ସ୍ଫୁରିତ ଅଧର ଅସ୍ଫୁଟ କଣ୍ଠରେ ଜପି ଚାଲିଥିଲା -

'ଜୟ ମଧୁସୂଦନ ଶ୍ରୀ ମଧୁସୂଦନ
ବିପତ୍ତିନାଶନ ଜୟ ମଧୁସୂଦନ'

ମୁଁ ଭାବ ବିହ୍ୱଳ ହୋଇଗଲି; କିନ୍ତୁ ବିଳମ୍ବ ନକରି କହିଲି - 'ଅଭୁକ୍ତ ଅତିଥି ଦ୍ୱାରଦେଶରେ ପାଞ୍ଚାଳୀ !'

ପାଞ୍ଚାଳୀଙ୍କ ସହ ତାଙ୍କର ପଞ୍ଚପତି ଭୟଙ୍କର ଭାବେ ଚମକି ଉଠିଲେ । ମୁଁ କହିଲି - 'ଆଉ ବିଳମ୍ବ ସହ୍ୟ ହେଉ ନାହିଁ ସଖି ! ଦ୍ୱାରକାରୁ ଏକା ଏକା ରଥ ବାହି ଚାଲି ଆସିଛି ମୁଁ । ସାଂଗରେ ସାରଥି ବା ସେବକ କେହି ନାହାନ୍ତି । ପାଣ୍ଡବ କୁଟୀରରେ ପାଣ୍ଡବ ପଟ୍ଟମହିଷୀଙ୍କ ହାତରୁ ଅକ୍ଷୟପାତ୍ରରୁ ଖାଦ୍ୟ ଗ୍ରହଣ କରିବା ଲୋଭରେ ଆଜି ମୁଁ ଦ୍ୱାରକା ଜଳ ସୁଦ୍ଧା ସ୍ପର୍ଶ ନକରି ଚାଲିଆସିଛି । ମୁଁ ବଡ଼ କ୍ଷୁଧାର୍ତ୍ତ । ଯାହା କିଛି ଅଛି ମୋତେ ଦିଅ ।'

ମୋର ବାକ୍ୟ ଶେଷ ନହେଉଣୁ ପାଞ୍ଚାଳୀ ଲୁହ ଆଉ କୋହରେ ଭାଂଗି ପଡ଼ିଲେ । ଅନ୍ୟ ଭ୍ରାତାମାନେ ନିର୍ବାକ୍ ଦ୍ରଷ୍ଟାଭାବେ ଚାହିଁ ରହିଲେ ମୋତେ । କେବଳ ଦ୍ୱିତୀୟ ପାଣ୍ଡବ ଅଶ୍ରୁରୁଦ୍ଧ କଣ୍ଠରେ କହିଲେ - 'ଦିଅ ! ଦିଅ କେଶବ । ତୁମେବି ଅଭିଶାପ ଦେଇଦିଅ । କୁନ୍ତୀ ପୁତ୍ରଗଣ ଅତିଥି ଭଗବାନଙ୍କୁ ଅଭୁକ୍ତ ରଖିବାର ଅପରାଧରେ ଅଭିଶପ୍ତ ହୋଇ ମୃତକଳ୍ପ ଜୀବନ ବଞ୍ଚନ୍ତୁ କିମ୍ବା ମୃତ୍ୟୁ ବରଣ କରନ୍ତୁ ।'

ଦ୍ୱିତୀୟ ପାଣ୍ଡବ ସର୍ବଦା ଏହିଭଳି । ତାଙ୍କର କୌଣସି ଭାବାବେଗକୁ ଗୋପନ ରଖି

ପାରିବାର କଳା ସେ ଜାଣନ୍ତି ନାହିଁ । ଅପରନ୍ତୁ ପାଞ୍ଚାଳୀଙ୍କ ଦୁଃଖାବେଗରେ ସେ ଯେତେ ବେଶୀ କାତର ହୋଇପଡ଼ନ୍ତି ସେତେ ବେଶୀ ଅନ୍ୟ ଭ୍ରାତାମାନେ ହୁଅନ୍ତି ନାହିଁ । କୁରୁସଭାରେ ପାଞ୍ଚାଳୀ ଲାଂଛନାର ପ୍ରତିଶୋଧ ଭୀମସେନ ହିଁ ତ ନେଇଥିଲେ ! ଦୁଃଶାସନ ପାଞ୍ଚାଳୀଙ୍କ କେଶାକର୍ଷଣ କରିଥିଲା ବୋଲି ତା' ଭୁଜ ଉତ୍ପାଟନ କରି ସେ ରକ୍ତରେ ପାଞ୍ଚାଳୀଙ୍କ ବେଣୀ ବନ୍ଧନ କରିଥିଲେ ! ବିରାଟ ରାଜଅନ୍ତଃପୁରରେ କୀଚକର ଲୋଲୁପତା ଓ ଆସକ୍ତି ଜାଣିବା ପରେ ଭୀମସେନ ହିଁ ତ କୀଚକକୁ ଉପଯୁକ୍ତ ଶାସ୍ତି ଦେଇଥିଲେ ! କୁରୁପତି ଦୁର୍ଯ୍ୟୋଧନ ଭଗ୍ନ ଜାନୁ ହୋଇନଥା'ନ୍ତା ଯଦି ସେ ପରିପୂର୍ଣ୍ଣ ଦରବାରରେ ପାଞ୍ଚାଳୀଙ୍କୁ ଅଶ୍ଳୀଳ କଟାକ୍ଷ କରିନଥାନ୍ତା । ପାଞ୍ଚାଳୀଙ୍କ ପ୍ରତି ଦ୍ୱିତୀୟପାଣ୍ଡବଙ୍କ ପ୍ରେମାକର୍ଷଣ ସର୍ବାଧିକ ଅଥଚ ଭାଗ୍ୟ ବିଡ଼ମ୍ବନା ଏପରି ଯେ ତୃତୀୟପାଣ୍ଡବ ଧନଞ୍ଜୟ ହିଁ ପାଞ୍ଚାଳୀଙ୍କର ସର୍ବାଧିକ ପ୍ରୀତିଭାଜନ ।

ସେ ସମୟରେ ପରିହାସ କରିବାକୁ ଯଥେଷ୍ଟ ଲୋଭ ହେଉଥିଲେ ବି ନିଜକୁ ସମ୍ବରଣ କରି କହିଲି - 'ଆଉ କ୍ଷୁଧା ସହି ପାରୁନି ସଖି । ଯାହା ଅଛି ଦିଅ ।'

ପାଞ୍ଚାଳୀ ଶୂନ୍ୟ ଅକ୍ଷୟପାତ୍ରକୁ ମୋ ହାତକୁ ବଢ଼େଇ ଦେଇ କହିଲେ - 'ଦେଖ ମାଧବ ! ଆଜିପାଇଁ ଏହାର ସମସ୍ତ ଅଲୌକିକ ପ୍ରଭାବ ଶେଷ ହୋଇଛି । ମୁଁ ଖାଦ୍ୟ ଗ୍ରହଣ କରିସାରି ଅକ୍ଷୟପାତ୍ରକୁ ଧୋଇ ପରିଷ୍କାର କରି ସାରିଛି ।'

ହଠାତ୍ କ'ଣ ଗୋଟାଏ ଆବିଷ୍କାର କରିବାର ଆନନ୍ଦରେ ମୋ ଆଖି ଉଜ୍ଜ୍ୱଳ ହୋଇ ଉଠିଲା । ପାତ୍ରର ଗୋଟିଏ କଣରେ ଶାକନ୍ନ କଣିକାଏ । ମୁଁ ତାହା ସାଗ୍ରହରେ ଉଦରସ୍ଥ କଲି ପରମ ସନ୍ତୋଷରେ । ପାଞ୍ଚାଳୀ ଲଜ୍ଜିତା ଭାବେ କହିଲେ - 'ମାଧବ ! ଅସାବଧାନତା ବଶତଃ ଶାକାନ୍ନ ରହିଯାଇଥିଲା; କିନ୍ତୁ ମୋ ଉଚ୍ଛିଷ୍ଟ ଯେ !' ମୁଁ ତାଙ୍କ କଥାକୁ କର୍ଣ୍ଣପାତ ନକରି କହିଲି - 'ଭ୍ରାତା ଭୀମସେନ କ'ଣ ଗୋଟାଏ ଅଭିଶାପର ସୂଚନା ଦେଲେ ?'

ଦ୍ୱିତୀୟ ପାଣ୍ଡବ କହିଲେ - 'ଭଲ ହେଲା କେଶବ ! ତୁମ ସହ ଅନ୍ତିମ ସାକ୍ଷାତ ହୋଇଗଲା । ପାଞ୍ଚାଳୀ ଖାଦ୍ୟଗ୍ରହଣ କରିବା ପରେ ଆଜି ମହର୍ଷି ଦୁର୍ବାସା ତାଙ୍କର ଶତାଧିକ ଶିଷ୍ୟଙ୍କ ସହ ଏଠାରେ ପହଞ୍ଚି ଆମର ଅବସ୍ଥା ପ୍ରତି ଦୃକ୍‌ପାତ ସୁଦ୍ଧା ନକରି କହିଲେ, ନଦୀସ୍ନାନ କରିବାକୁ ଯାଉଛୁ, ଫେରିଲେ ସମସ୍ତେ ଏଠାରେ ଦ୍ରୁପଦ ତନୟାଙ୍କ ହାତରୁ ଭୋଜନ କରିବୁ । ଏହାର ଅର୍ଥ କେତେ ସାଂଘାତିକ ସେ କଥା ତ ବୁଝିପାରୁଥିବ କେଶବ । କ୍ଷୁଧାର୍ତ୍ତ ଅତିଥିଗଣ ଆସିବେ ଅଥଚ କୌଣସି ଖାଦ୍ୟ ସାମଗ୍ରୀର ଆୟୋଜନ ସୁଦ୍ଧା ନାହିଁ । ଏତେ ଅଳ୍ପ ସମୟ ଭିତରେ କ'ଣ ବା କରାଯାଇପାରିବ ? ସିଏ ପୁଣି ମହର୍ଷି ଦୁର୍ବାସା । କ୍ରୋଧାବିଷ୍ଟ ମୁନିଙ୍କ ଅଭିଶାପ ଗ୍ରହଣ ନିମିତ୍ତ ଆମ୍ଭେମାନେ ପ୍ରସ୍ତୁତ ହୋଇରହିଛୁ ।'

ମୁଁ ପରିହାସ ଚପଳ କଣ୍ଠରେ କହି ଉଠିଲେ - 'ବେଶ୍ ତ । ନକୁଳ ଯାଆନ୍ତୁ ମୁନି ଓ ତାଙ୍କ ଶିଷ୍ୟଗଣଙ୍କୁ ସସମ୍ମାନେ ନିମନ୍ତ୍ରଣ କରି ନେଇଆସନ୍ତୁ ।'

ସମସ୍ତେ ମୋତେ ପରମ ବିସ୍ମୟରେ ଚାହିଁଲେ । ଯେମିତି ମୋତେ ପ୍ରଥମ କରି ଦେଖୁଛନ୍ତି । ମୋ କଥାର ଦୃଢ଼ତାକୁ ଲକ୍ଷ୍ୟ କରି ଧର୍ମରାଜ ନକୁଳଙ୍କୁ ନଦୀତୀରକୁ ପଠେଇଲେ । ନକୁଳ ଯଥାଶୀଘ୍ର ଫେରିଆସି କହିଲେ - 'ମୋତେ ଦେଖିବା ମାତ୍ରେ ମୁନି ଓ ତାଙ୍କ ଶିଷ୍ୟଗଣ ଦ୍ରୁତଗତିରେ ଅରଣ୍ୟ ପଥରେ ଅଦୃଶ୍ୟ ହୋଇଗଲେ । ଏପରିକି ନିଜ ନିଜର କଷା କୌପୀନ କମଣ୍ଡଳୁ ମଧ୍ୟ ନେବାକୁ ଭୁଲିଯାଇଛନ୍ତି । ଗୁରୁଭୋଜନରେ ପରିତୃପ୍ତ ହେବାଭଳି ପରସ୍ପରକୁ ସେମାନେ କହୁଥିଲେ - 'ଗୁରୁପାକ ଭୋଜନ ଭଳି ମନେ ହେଉଛି । ପୁଣି ଦ୍ରୁପଦ ତନୟା ଅକ୍ଷୟପାତ୍ରରୁ ସ୍ୱାଦିଷ୍ଟ, ସୁପାଚ୍ୟ ଖାଦ୍ୟ ପରିବେଷଣରେ ଆଦୌ କାର୍ପଣ୍ୟ କରିବେ ନାହିଁ ଏବଂ ଅତିଥି ବତ୍ସଳ ପଣ୍ଡୁସୁତ ଗଣ ସ୍ନେହାତିଶଯ୍ୟରେ ବାରମ୍ବାର ଭୋଜ୍ୟ ସାମଗ୍ରୀ ଗ୍ରହଣ ପାଇଁ ଅନୁରୋଧ ଜଣାଇବେ । ଖାଦ୍ୟପରେ ଖାଦ୍ୟଗ୍ରହଣ କରି ଆମ୍ଭେମାନେ ଅତିଭୋଜନ ଦୋଷରେ ଅଜୀର୍ଣ୍ଣରୋଗ ଭୋଗ କରିବା । ସୁତରାଂ ଚାଲ ଏ ସ୍ଥାନ ତ୍ୟାଗ କରି ଚାଲିଯିବା । ଆମର ବିଳମ୍ବ ଦେଖି ଧର୍ମରାଜ ତାଙ୍କ କନିଷ୍ଠ ଭ୍ରାତାଙ୍କୁ ପଠେଇଛନ୍ତି ।'

ନକୁଳ କହିଲେ -'ମୁଁ ପଛରୁ ଡାକିବା ସତ୍ତ୍ୱେ ସେମାନେ ଦ୍ରୁତ ଗତିରେ ପଳାୟନ କଲେ ।'

ମୁଁ କଟାକ୍ଷରେ ପାଞ୍ଚାଳୀଙ୍କୁ ଚାହିଁଲି । ମୋ ପାଦ ପାଖରେ ସେ ବସି ପଡ଼ିଲେ । ହୃଦୟର ରୁଦ୍ଧ ଦ୍ୱାର ଉନ୍ମୁକ୍ତ ହୋଇ ସମସ୍ତ ଭାବରାଶି ଅଲିଖିତ ଭାଷା ହୋଇ, ଅଶ୍ରୁ ହୋଇ ତରଳ ନୟନରେ ତାଙ୍କର ଟଳମଳ ହେଲା । ସେ କିଛି କହି ପାରିଲେ ନାହିଁ । ପଞ୍ଚପାଣ୍ଡବ ଯୋଡ଼ହସ୍ତରେ ମୋ ସମ୍ମୁଖରେ ଠିଆହୋଇଥିଲେ ଧର୍ମରାଜ କହିଲେ - 'ଏଇଭଳି କୃପା କଟାକ୍ଷରେ ଆମ୍ଭମାନଙ୍କୁ ଚାହିଁଥାଅ ମଧୁସୂଦନ । ଆମର ଆଉ କିଛି ଲୋଡ଼ା ନାହିଁ । ସବୁ ବିପଦରୁ ଆମ୍ଭେମାନେ ଅନାୟାସରେ ଉତ୍ତୀର୍ଣ୍ଣ ହୋଇଯିବୁ ।'

ଭୀମସେନ ଉଲ୍ଲସିତ ହୋଇ କହିଉଠିଲେ - 'ଏଥର କ'ଣ ଖାଇବ କୁହ କେଶବ । ତୁମେ ପରା କ୍ଷୁଧାର୍ତ୍ତ ହୋଇ ଆସିଥିଲ ?'

ମୁଁ କହିଲି - 'ଆଉ ତା'ର ପ୍ରୟୋଜନ ନାହିଁ । ଅକ୍ଷୟ ପାତ୍ରର ଅଧିକାରିଣୀଙ୍କ ଉଚ୍ଛିଷ୍ଟ ଶାକାନ୍ନର ଶକ୍ତି ମଧ୍ୟ ଅଦ୍‌ଭୁତ । ତା' ଛଡ଼ା ମୋତେ ଫେରିବାକୁ ପଡ଼ିବ ଦ୍ୱାରକା ଏଇ ମୁହୂର୍ତ୍ତରେ ।'

ଦ୍ୱାରକାରେ ପହଞ୍ଚି ଦେଖିଲି ଅଭିମନ୍ୟୁ ବଡ଼ ବିମର୍ଷ ଭାବେ ମୋତେହିଁ ଅପେକ୍ଷା କରି

ରହିଛି । ସାତ୍ୟକୀ ନନ୍ଦନ, ଜାମ୍ବବତୀ ନନ୍ଦନ ପ୍ରମୁଖ ଯଦୁବଂଶୀ ସନ୍ତାନ ଗଣ ତା ନିକଟରେ କ୍ରୀଡ଼ା ସାମଗ୍ରୀର ସ୍ତୁପ ରଖିଲେ ମଧ୍ୟ ସେ ଅନ୍ୟମନସ୍କ ରହିଛି । ମୋତେ ଦେଖିବା ମାତ୍ରେ କହିଲା - 'ଜାଣନ୍ତି ମାତୁଳ ! ଆଜି ମାତାମହ ଦ୍ରୁପଦଙ୍କ ନିର୍ଦ୍ଦେଶ କ୍ରମେ ପ୍ରତିବିନ୍ଧ୍ୟ, .ଶତାନୀକ, ଶ୍ରୁତସୋମାଦି ମୋର ଭ୍ରାତାଗଣ ପାଞ୍ଚାଳ ଚାଲିଯାଇଛନ୍ତି । ସେମାନେ ପାଞ୍ଚାଳ ରାଜାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଶସ୍ତ୍ର ଓ ଶାସ୍ତ୍ର ଅଧ୍ୟୟନ କରିବେ ।'

ମୁଁ ତାକୁ କୋଳାଗ୍ରତ କରି ପକେଇଲି ।

ସତ୍ୟଭାମା ମୋତେ ପ୍ରାୟ ପରିହାସ କରି କହନ୍ତି ମୁଁ କୁଆଡ଼େ ଭକ୍ତର ଭାବଗ୍ରାହୀ । ପ୍ରକୃତରେ ମୋ ଦେହ ଦ୍ୱାରକାରେ ଥିଲେ ବି ମୋ ମନ ପଣ୍ଡୁସୁତଙ୍କ ପାଖରେ ବନ୍ଧକ ସ୍ୱରୂପ ରହିଥିଲା । ଚାରଠାରୁ ପ୍ରାୟତଃ ସେମାନଙ୍କ ସଂପର୍କରେ ମୁଁ ସମ୍ବାଦ ସଂଗ୍ରହ କରୁଥିଲି । ସେମିତି ଦିନେ ଏକ ଲଜ୍ଜାଜନକ ସମ୍ବାଦ ମିଳିଲାଯେ ଦ୍ୱୈତବନରେ ସିନ୍ଧୁ ନରେଶ ଜୟଦ୍ରଥ ଦ୍ରୌପଦୀଙ୍କୁ ହରଣ କରିବାର ପ୍ରୟାସ କରି ବିଫଳ ହୋଇଛି ଓ ପାଣ୍ଡବଙ୍କ ଦ୍ୱାରା ଯଦିଓ କ୍ଷମାର ଯୋଗ୍ୟ ହୋଇଛି ମାତ୍ର ନାରୀ ଲାଂଛନର ଶାସ୍ତି ସ୍ୱରୂପ ସିନ୍ଧୁ ନରେଶଙ୍କୁ ଭ୍ରାତା ଭୀମସେନ ମୁଣ୍ଡିତ ମସ୍ତକ କରିଦେଇଛନ୍ତି । ମୁଁ ଏହା ଶୁଣୁ ଶୁଣୁ ଚମକି ପଡ଼ିଲି - ଅର୍ଥାତ୍ ? ପୁଣି ଏକ ଶତୃ ଆପଣାଛାଏଁ ସୃଷ୍ଟି ହୋଇଗଲା ପାଣ୍ଡବଙ୍କର ? ସିନ୍ଧୁ ନରେଶ ଭଳି ଏକ ଶକ୍ତିଶାଳୀ ଶତୃ ? ଆହୁରି ଏକ ଦୁଃସମ୍ବାଦବି ମୋ ପାଖରେ ପହଞ୍ଚିଛି । ଅଳମ୍ବୁଷ ଦୈତ୍ୟ; ଅଶ୍ୱସେନ ନାଗ ଦୁର୍ଯ୍ୟୋଧନର ପକ୍ଷଭୁକ୍ତ ହୋଇଛନ୍ତି । ଅଳମ୍ବୁଷ ଦୈତ୍ୟ ବକରାକ୍ଷସର ଭ୍ରାତା । ଅତୀତରେ ଭୀମ ବକ ରାକ୍ଷସଙ୍କର ଓ ଖାଣ୍ଡବବନ ଦହନ ସମୟର ଅଶ୍ୱସେନର ନାଗମାତାର ଅର୍ଜ୍ଜୁନ ମୃତ୍ୟୁର କାରଣ ହୋଇଥିଲେ ବୋଲି ଏମାନେ ପାଣ୍ଡବଙ୍କ ସହ ଶତୃତା କରିବା ପାଇଁ କୃତସଂକଳ୍ପ ହୋଇ ପାଣ୍ଡବ ବିଦ୍ୱେଷୀଙ୍କ ସହ ସମ୍ମିଳିତ ହୋଇଛନ୍ତି ।

ଏ ସମ୍ବାଦ ରଖିଥିଲି ଯେ ପାଣ୍ଡବ ଗଣ ଅରଣ୍ୟରେ କେବଳ ସଂସାର ବିରାଗୀ ସନ୍ୟାସୀର ଜୀବନ ବଞ୍ଚୁନାହାନ୍ତି । ବିଶେଷତଃ ସଖାଫାଲ୍‌ଗୁନୀ ଦେବ ଦେବ ମହାଦେବଙ୍କୁ ସନ୍ତୁଷ୍ଟ କରି ବହୁ ଦିବ୍ୟାସ୍ତ୍ର ଓ ଦୁର୍ଲଭ ପାଶୁପତ ଅସ୍ତ୍ର ଲାଭ କରିଛନ୍ତି । ଦେବ ସଂସ୍କୃତିକୁ ବିଧ୍ୱଂସ କରିବାକୁ ଚାହୁଁଥିବା ନିର୍ବାତକପଚ ଦୈତ୍ୟକୁ ଭୟଂକର ସଂଗ୍ରାମରେ ପରାସ୍ତ ଓ ନିହତ କରି ଅର୍ଜ୍ଜୁନ ଦେବତାଙ୍କର ପ୍ରିୟଭାଜନ ହୋଇଛନ୍ତି । ଦେବରାଜ ଇନ୍ଦ୍ରଙ୍କର ସ୍ୱତନ୍ତ୍ର ନିମନ୍ତ୍ରଣ କ୍ରମେ ସେ ସ୍ୱର୍ଗ ଭୁବନ ଯାତ୍ରା କରିଛନ୍ତ ।

ତାପରର ସଂବାଦ ମୋ ପାଇଁ ଯେତିକି ହସ୍ୟକର ସେତିକି କୌତୁକାବହ । ମୋର ସଖା ପାର୍ଥ, ପ୍ରଚଣ୍ଡ ପୁରୁଷ ପାର୍ଥ କୁଆଡ଼େ ସ୍ୱର୍ଗ ରାଜ୍ୟରେ ମହାସମାରୋହରେ ଅଭ୍ୟର୍ଥିତ

ହେବା ସହ ସ୍ୱର୍ଲୋକ ବାସିନୀ,ଇନ୍ଦ୍ର ସଭାର ଶ୍ରେଷ୍ଠ ନର୍ତ୍ତକୀ ଓ ଶ୍ରେଷ୍ଠ ଅପ୍‌ସରା ଉର୍ମଶୀଙ୍କର ଚିତ୍ତହରଣ କରିଛନ୍ତି । ଖାଲି ସେତିକି ନୁହେଁ ଅନନ୍ତ ଯୌବନା ଉର୍ବଶୀଙ୍କର ପ୍ରଣୟ ନିବେଦନକୁ ପ୍ରତ୍ୟାଖ୍ୟାନ କରିଛନ୍ତି ଓ ତାଙ୍କୁ ମାତୃଜ୍ଞାନରେ ସମ୍ମାନ ଦେଇଛନ୍ତି । ପାରିଜାତ କାନନର ଲୀଳା ବିହାରିଣୀ, ଲାବଣ୍ୟମୟୀ ସ୍ୱର୍ଗ ନର୍ତ୍ତକୀ ଉର୍ବଶୀ ଯୌବନର ପୂଜାରିଣୀ, ସୌନ୍ଦର୍ଯ୍ୟର ପୂଜାରିଣୀ, ବୀରତ୍ୱର ପୂଜାରିଣୀ । ତାଙ୍କପାଇଁ ପ୍ରଣୟ ଏକ ରୂପୋଚ୍ଛଳ ଲାବଣ୍ୟର ନଇ, ଯାହାର କୌଣସି ନିର୍ଦ୍ଦିଷ୍ଟ ବୟସ ସୀମା ନାହିଁ । ଉର୍ବଶୀତ ଆଉ ମର୍ତ୍ତ୍ୟଲୋକ ବାସିନୀ ନାରୀଟିଏ ନୁହେଁଯେ କ୍ଷୟଶୀଳ ଦେହର ଅବସ୍ଥାନ୍ତର ଉପରେ ବିଶ୍ୱାସ ରଖି କନ୍ୟା, ଭଗିନୀ ବା ଜାୟାରୁ ଜନନୀ ହେବାର ସୌଭାଗ୍ୟକୁ ସ୍ୱାଗତ ଜଣାଇବେ ! ତାଙ୍କୁ ମାତୃଜ୍ଞାନ କରିବା ଅର୍ଥ ତାଙ୍କର ବାର୍ଦ୍ଧକ୍ୟ ପ୍ରତି ଅଂଗୁଳି ନିର୍ଦ୍ଦେଶ କରିବା; ଅଥଚ ସିଏତ ଅନନ୍ତ ଯୌବନା ! ସିଏ ତ ଲକ୍ଷ୍ମୀ, ପାର୍ବତୀ ବା ସରସ୍ୱତୀଙ୍କ ଭଳି ଦେବୀ ନୁହନ୍ତି କିମ୍ବା ମର୍ତ୍ତ୍ୟର ମାନବୀ ନୁହନ୍ତି ଯେ 'ମା' ସମ୍ବୋଧନରେ ତାଙ୍କ ହୃଦୟରେ ବାତ୍ସଲ୍ୟର ଉତ୍ସରଣ ସୃଷ୍ଟି ହୋଇଯିବ ! ସୁତରାଂ ଅର୍ଜ୍ଜୁନ କର୍ତ୍ତୃକ ଉପେକ୍ଷିତା ଉର୍ବଶୀ ଅର୍ଜ୍ଜୁନଙ୍କୁ ଶାପଗ୍ରସ୍ତ କରିଛନ୍ତି । ତାଙ୍କ ପୌରୁଷପ୍ରତି ଏକ ଲଜ୍ଜାଜନକ ଅଭିଶାପର ଅସ୍ତ୍ରାଘାତ କରିଛନ୍ତି । ପ୍ରଚଣ୍ଡ ପୁରୁଷ ଧନଞ୍ଜୟ ନପୁଂସକ ହୁଅନ୍ତୁ ବୋଲି ଅଭିଶାପ ଦେଇଛନ୍ତି ।

ଚାରମୁଖରୁ ଏକଥା ଶୁଣି ଶୁଣି ମୁଁ ହାସ୍ୟ ସମ୍ବରଣ କରିପାରିଲି ନାହିଁ । ମୋର ଅଟ୍ଟହାସ ଅନ୍ୟମାନଙ୍କ ଅଧରକୁ ସଂକ୍ରମିତ ହେବା ପରିବର୍ତ୍ତେ ସମସ୍ତଙ୍କୁ ତଟସ୍ଥ କରିଦେଲା । ଜ୍ୟେଷ୍ଠଭ୍ରାତା ମନ୍ଦ୍ର ଗମ୍ଭୀର ସ୍ୱରରେ କହିଲେ - 'କୃଷ୍ଣ ! ତୁମେ ଭୁଲିଯାଉଛ ତୃତୀୟପାଣ୍ଡବ ଆମ୍ଭମାନଙ୍କର ନିକଟ ସଂପର୍କୀୟ, ତୁମର ଅନ୍ତରଙ୍ଗ ବନ୍ଧୁ ଏବଂ ବର୍ତ୍ତମାନ ସେ ବିପନ୍ନ, ଅସହାୟ ।'

ମୁଁ ହସି ହସି କହିଲି -' ପାଞ୍ଚାଳରାଜ ଦ୍ରୁପଦଙ୍କ ଭାଗ୍ୟକୁ ଦେଖ ! ପୁତ୍ରଜ୍ଞାନରେ ରାଜକନ୍ୟା ଶିଖଣ୍ଡିନୀକୁ ଲାଳନ କଲେ, ମାତ୍ର ସେ ଯକ୍ଷ ସ୍ଥୂଣାକର୍ଣ୍ଣଙ୍କ ପ୍ରସାଦରୁ ନପୁଂସକ ଶିଖଣ୍ଡୀ ଭାବେ ପରିଚିତ ହେଲା । ଆର୍ଯ୍ୟାବର୍ତ୍ତର ସର୍ବଶ୍ରେଷ୍ଠ ଧନୁର୍ଦ୍ଧରକୁ ଜାମାତା ଭାବେ ବରଣ କଲେ, ଶେଷକୁ ସିଏ ବି ଉର୍ବଶୀଙ୍କ ପ୍ରସାଦରୁ କ୍ଲୀବତ୍ୱ ଗ୍ରହଣ କଲେ ?'

ମୋ ପ୍ରଶ୍ନର ଉତ୍ତରରେ ଚାର କହି ଉଠିଲା - 'ନା ମହାଭାଗ ! ସମଗ୍ର ଜୀବନ ପାଇଁ କ୍ଲୀବତ୍ୱ ଗ୍ରହଣ କରିନାହାନ୍ତି ପାର୍ଥ । ଇନ୍ଦ୍ରଙ୍କଅନୁରୋଧ କ୍ରମେ ଉର୍ବଶୀ ପାର୍ଥଙ୍କୁ ତାଙ୍କ ଇଚ୍ଛାମତେ ମାତ୍ର ଏକବର୍ଷ ପାଇଁ କ୍ଲୀବତ୍ୱ ଗ୍ରହଣ କରିବା ପାଇଁ ଅଭିଶାପ ଦେଇଛନ୍ତି ଏବଂ ପାର୍ଥଙ୍କୁ ନିଜେ ଉର୍ବଶୀ ନୃତ୍ୟ, ସଂଗୀତ ଓ ବାଦ୍ୟଯନ୍ତ୍ରର ଶିକ୍ଷା ଦେଇ ତାଙ୍କର ସଂଗ ସୋହଚର୍ଯ୍ୟ ଲାଭ କରି ଧନ୍ୟା ହୋଇଛନ୍ତି ।'

ମୁଁ କେବଳ ଏତିକି କହିଲି - 'ତେବେ ଏହା ଆଉ ଅଭିଶାପ କ'ଣ ? ଏହାତ ପାର୍ଥଙ୍କ ପାଇଁ ବରଦାନ ସ୍ୱରୂପ !' ଜ୍ୟେଷ୍ଠଭ୍ରାତା କହିଲେ - ହୁଁ ତୁମେ ଅଂଶୀଧାରୀ, ତୁମର ସଖା ପାର୍ଥ ହେବେ ମୃଦଙ୍ଗ ଧାରୀ !'

ତାଙ୍କ କଥାରେ ସମସ୍ତେ ହସିଉଠିଲେ ।

ଦ୍ୱୈତବନରେ ଆଉ ଏକ ଦୁର୍ଘଟଣାର ସମ୍ବାଦ ମୋତେ ଭୀଷଣ ଭାବେ ଆଲୋଡ଼ିତ କରିଥିଲା ।  ତା' ହେଉଛି ଜୟଦ୍ରଥ ଦ୍ୱାରା ନା ପାଞ୍ଚାଳୀ ହରଣର ଅପଚେଷ୍ଟା ଏବଂ ଭୀମଙ୍କ ଦ୍ୱାରା ତାରମସ୍ତକ ମୁଣ୍ଡନ । ସିନ୍ଧୁନରେଶ ବୀର୍ଯ୍ୟାଶାଳୀ । ତାଙ୍କ ପିତା ବୃଦ୍ଧକ୍ଷତ୍ର ପୁତ୍ର ଚରାୟୁ କରିବା ଉଦ୍ଦେଶ୍ୟରେ ତପଃନିରତ । କୌଣସି ଏକ ଦିଗ୍‌ବିଜୟୀ ବୀର ହସ୍ତରେ ସିନ୍ଧୁ ନରେଶଙ୍କ ମୃତ୍ୟୁ ସୁନିଶ୍ଚିତ । ସେ ବୀର ହୁଏତ ସଖା ଅର୍ଜ୍ଜୁନ ହୋଇପାରନ୍ତି । କିନ୍ତୁ ବୃଦ୍ଧ କ୍ଷତ୍ରଙ୍କ ତପଃଫଳ ପ୍ରଭାବରୁ ଜୟଦ୍ରଥଙ୍କ ଛିନ୍ନ ଶିର ଯେଉଁ ମୁହୂର୍ତ୍ତରେ ଭୂମି ସ୍ପର୍ଶ କରିବ ସେଇ ମୁହୂର୍ତ୍ତରେ ଏକ ପ୍ରଚଣ୍ଡ ବିସ୍ଫୋରଣ ପ୍ରଭାବରେ ସନ୍ନିକଟରେ ଥିବା ଜନ ପ୍ରାଣୀର ମୃତ୍ୟୁ ହେବ । ଏହି ସବୁ ସଂଯୋଗର ସୂତ୍ରକୁ ମିଶ୍ରଣ କରି ଚିନ୍ତା କଲେ ପରିଣତି ଯେ ବଡ଼ ଭୟାବହ ଏଥିରେ ସନ୍ଦେହ ନାହିଁ । ତା'ଛଡ଼ା ସିନ୍ଧୁ ନରେଶଙ୍କ ଭଳି ଜଣେ ଦୁର୍ଦ୍ଧର୍ଷ କ୍ଷତ୍ରିୟ ମସ୍ତକ ମୁଣ୍ଡନ ରୂପ ଅପମାନର ପ୍ରତିଶୋଧ ମଧ୍ୟ ଭୀଷଣ ଭାବରେ ନେବାକୁ ଚାହିଁବେ । ହଁ ସମୟଭଳି ଏକ ବଳବାନ୍ ସତ୍ତା ନିକଟରେ ମୁଣ୍ଡନୁଆଁଇବା ବ୍ୟତୀତ ମୋର ବି ଅନ୍ୟ କିଛି ଉପାୟ ନାହିଁ ।

ଋତୁ ବଦଳୁଥିଲା । ଦିନ, ମାସ, ବର୍ଷ ବି ଗଡ଼ି ଚାଲିଥିଲା । ବନବାସ ଆରମ୍ଭରେ ତ୍ରୟୋଦଶବର୍ଷ ଅସହ୍ୟ ମନେ ହେଉଥିଲା । ଚାହୁଁ ଚାହୁଁ ଦ୍ୱାଦଶବର୍ଷ ସଂପୂର୍ଣ୍ଣ ହେବା ଉପରେ । ଯା ପରେ ଆରମ୍ଭ ହେବ ଅଜ୍ଞାତବାସ । ତା'ର ସର୍ତ୍ତ ମଧ୍ୟ ପ୍ରଚଣ୍ଡ । ପୁରୋହିତ ଧୌମ୍ୟ ତ ପାଣ୍ଡବଙ୍କ ସହ ଦ୍ୱାଦଶବର୍ଷ ଥିଲେ । ଏ ଅଜ୍ଞାତବାସ ସମୟରେ ଧୌମ୍ୟ ମଧ୍ୟ ସେମାନଙ୍କ ସହ ରହିବେ ନାହିଁ । ଅସ୍କନ୍ଦ ବନରେ ପାଣ୍ଡବ ଗଣ ଯେଉଁଠି କୁଟୀର ନିର୍ମାଣ କରିଥିଲେ ତା' ଚତୁଃପାର୍ଶ୍ୱରେ ଆମ୍ର, ପନସ,ଖର୍ଜ୍ଜୁର, ଜମ୍ବୁ, ରମ୍ଭାତରୁ, ଦ୍ରାକ୍ଷା  ଓ ଡାଳିମ୍ବର ଅସଂଖ୍ୟ ବୃକ୍ଷରାଜି । ବିଭିନ୍ନ ଋତୁରେ ବିଭିନ୍ନ ପକ୍ୱ ଫଳ । ଖାଦ୍ୟର ଅଭାବ ନାହିଁ । ଦ୍ୱାଦଶ ବର୍ଷର ବନବାସ ସଂପୂର୍ଣ୍ଣ ହେବାକୁ ଯାଉଥିବା ସମୟରେ ଏବଂ ଆଗାମୀ ଏକବର୍ଷର କଣ୍ଟକିତ ପଥକୁ ସୁଗମ କରିବା ପାଇଁ ଧର୍ମରାଜ ବହୁ ମୁନ ଋଷି ଓ ଦରିଦ୍ର ବ୍ରାହ୍ମଣଙ୍କୁ ଅସ୍କନ୍ଦବନକୁ ନିମନ୍ତ୍ରଣ କରି ଆଣି ପ୍ରଚୁର ଫଳମୂଳ ଓ ବିବିଧ ଭୋଜ୍ୟ ସାମଗ୍ରୀରେ ସେମାନଙ୍କୁ ପରିତୃପ୍ତ ଭୋଜନ ଦେଇ ପରିତୁଷ୍ଟ କରାଇ ସେମାନଙ୍କର ହୃଦୟଭରା ଆଶୀର୍ବାଦ ପ୍ରାପ୍ତ ହୋଇଥିଲେ । ମହର୍ଷି ବ୍ୟାସ, ଦୁର୍ବାସା, ଶୁକ,ସନକ ଆଦି ବହୁ ମୁନି ଯାଇଥିଲେ ! ବ୍ରାହ୍ମ ମୁହୂର୍ତ୍ତରେ ସମୁଦ୍ର ସ୍ନାନ ମୋର ଏକ ପ୍ରାଚୀନ ଅଭ୍ୟାସ । ମୁଁ ସେଦିନ ସମୁଦ୍ରସ୍ନାନ କରୁଥିବା ସମୟରେ ଅସ୍କନ୍ଦରୁ ପ୍ରତ୍ୟାଗତ

କେତେଜଣ ଦରିଦ୍ର ବ୍ରାହ୍ମଣ ମଧ୍ୟ ସମୁଦ୍ର ସ୍ନାନ କଲେ ଓ ପରସ୍ପର ଭିତରେ କଥୋପକଥନରେ ବ୍ୟସ୍ତ ଥିଲେ । ଜଣେ କହୁଥିଲେ - ପାଣ୍ଡବ ପଟ୍ଟମହିଷୀଙ୍କ ସ୍ୱହସ୍ତ ପ୍ରସ୍ତୁତ ସୁପାଚ୍ୟ ଖାଦ୍ୟ ଆଉ ଏ ଜୀବନରେ ମିଳିବକି ନାହିଁ ସନ୍ଦେହ ।' ଆଉଜଣେ ବ୍ରାହ୍ମଣ ତତ୍‌କ୍ଷଣାତ କହିଲେ - 'ଅଶୁଭ ଚିନ୍ତା କାହିଁକି ଆମକୁ ଏତେ ଦାନ ଦକ୍ଷିଣା ଦେଇଛନ୍ତି । ଗଣ୍ଡାଚର୍ମ, ମୃଗଚର୍ମ ଉପହାର ଦେଇଛନ୍ତି । ଦୁର୍ମୂଲ୍ୟ ହାତୀ ଦାନ୍ତ ତ ଦେଇଛନ୍ତି । ତାଙ୍କର ଅଜ୍ଞାତବାସ ସଫଳ ହେଉ । କାରଣ ଅଜ୍ଞାତବାସର ଅବଧି ଶେଷ ହେଲେ ସେମାନେ ପୁନର୍ବାର ଇନ୍ଦ୍ରପ୍ରସ୍ଥ ଫେରିଆସି ରାଜତ୍ୱ କରିବେ । ପୁନର୍ବାର ଦାନ ଦକ୍ଷିଣା ଓ ଭୂରିଭୋଜନରେ ଆମ୍ଭମାନଙ୍କୁ ପରିତୃଷ୍ଟ କରିବେ ।'

ଆଉଜଣେ ଈଷତ୍ ହସି ଉଠି କହିଲେ - 'ଆହାଃ ! ବିଚରା ଗୌରମୋକ୍ଷ ବ୍ରାହ୍ମଣ ଯାହା ଖବର ପାଇ ପାରିଲାନି । ଗତକାଲି ପହଞ୍ଚିଥିଲେ କି ପ୍ରକାର ଖାଦ୍ୟ ଖାଇଥା'ନ୍ତା । ଆଜି ଯାଉଛି ଯେ, ଭୋଜନ କରିବ ସତ ହେଲେ ଆମଭଳି ଭୋଜ୍ୟ ସାମଗ୍ରୀ ପାଇବନି ।'

ଏତିକି ଶୁଣିବା ମାତ୍ରେ ମୁଁ ଚମକି ପଡ଼ିଲି । ଗୌରମୋକ୍ଷ ବ୍ରାହ୍ମଣ ସିଧାସଳଖ ହସ୍ତିନାରୁ ଅସ୍କନ୍ଦ ବନ ଯିବାର ଉଦ୍ଦେଶ୍ୟ ଯେ ଗୂଢ଼ ଅଭିସନ୍ଧିମୂଳକ ଏହା ସ୍ପଷ୍ଟ ହୋଇଗଲା । ମୁଁ ଦ୍ୱାରକା ରାଜନବରକୁ ସମ୍ବାଦ ଦେବାର ଅବକାଶ ସୁଦ୍ଧା ପାଇଲି ନାହିଁ । ଏକାକୀ ରଥ ବାହି ନେଇ ଅସ୍କନ୍ଦ ବନକୁ ଯାତ୍ରା କଲି ।

ଏତେ କ୍ଷିପ୍ର ଭାବେ ରଥ ଚାଳନା କରି ପହଞ୍ଚିଥିଲି ଯେ ପଥ ମଧ୍ୟରେ ଗୌରମୋକ୍ଷକୁ ଅତିକ୍ରମ ସୁଦ୍ଧା କରିଗଲି । ହଁ, ମୋର ଗୌରମୋକ୍ଷ ପହଞ୍ଚିବା ପୂର୍ବରୁ ସେଠାରେ ଉପସ୍ଥିତ ରହିବାର ଥିଲା । କିଏ ଜାଣେ ? ଏ କପଟୀ ବ୍ରାହ୍ମଣ ସେମାନଙ୍କୁ କିପ୍ରକାର ସତ୍ୟବଦ୍ଧ କରାଇବ ? ଆଉ କୁନ୍ତୀ ନନ୍ଦନଗଣ ସତ୍ୟରକ୍ଷା ପାଇଁ ପ୍ରାଣପାତ ସୁଦ୍ଧା କରିବାକୁ କାତର ନୁହନ୍ତି । ମୋର ସ୍ୱେଦଜର୍ଜର ତନୁକୁ ଦେଖି ଧର୍ମରାଜ ଆଶ୍ଚର୍ଯ୍ୟ ହୋଇଗଲେ - 'ଆରେ ଗୋବିନ୍ଦ ଯେ ? ସାଂଗରେ ସାରଥୀ, ସେବକ କେହିନାହିଁ । ଏକାକୀ, କଥା କ'ଣ ? ଦ୍ୱାରକାରେ ସବୁ କୁଶଳତ ?

ମୋଠାରୁ କୁଶଳ ବାର୍ତ୍ତା ଶ୍ରବଣ କରି ଆନନ୍ଦାବେଗରେ ପଞ୍ଚଭ୍ରାତା ଓ ପାଞ୍ଚାଳୀ ମୋ ପାଖରେ ବସି ମୋର କ୍ଳାନ୍ତି ଅପନୋଦନର ଚେଷ୍ଟା କଲେ । ମହର୍ଷି ବ୍ୟାସ ଓ କୁଳପୁରୋହିତ ଧୌମ୍ୟ ସେଇମାତ୍ର ବିଦାୟ ନେଇଯାଇଥା'ନ୍ତି । ପାଞ୍ଚାଳୀ ମୋ ପାଇଁ ଷଡ଼ରସରେ ଅନ୍ନ ବ୍ୟଞ୍ଜନ ପରମ ଉତ୍ସାହରେ ପ୍ରସ୍ତୁତ କରୁଥା'ନ୍ତି । ବାରମ୍ବାର ମୁଁ କୁଟୀର ବାହାରକୁ ଚାହୁଁଥାଏ ସଖା ଅର୍ଜୁନ କହିଲେ - 'କାହାକୁ ଅପେକ୍ଷା କରିଛ କି ସଖା ?'

ମୁଁ ହସିଲି, କହିଲି - 'ମୁଁ ନୁହେଁ, ତୁମେ । ଦ୍ୱାଦଶ ବର୍ଷର ବନବାସ ପୂର୍ଣ୍ଣ ହେଉଛି ଜାଣି

ବହୁ ଋଷି ବ୍ରାହ୍ମଣ ଏଠାକୁ ଆସି ପରିତୃପ୍ତ ଭୋଜନ ଗ୍ରହଣ କରିଯାଉଛନ୍ତି । ହୁଏତ ଆଜିବି କେହି ଆସିପାରନ୍ତି ।'

ମୋର କଥା ଶେଷ ହେବା ପୂର୍ବରୁ ଗୌରମୋକ୍ଷ ବ୍ରାହ୍ମଣ ପାଣ୍ଡବଙ୍କ ଉଦ୍ଦେଶ୍ୟରେ ଆଶୀର୍ବାଦସୂଚକ ଶ୍ଳୋକଗାନ କରି କୁଟୀର ଦ୍ୱାରରେ ପ୍ରବେଶ କଲା । ପାଣ୍ଡବ ପଞ୍ଚଭ୍ରାତା ଓ ପାଞ୍ଚାଳୀ ତାକୁ ଯଥାବିଧି ସମ୍ମାନ ପ୍ରଦର୍ଶନ ପୂର୍ବକ କୁଟୀର ଭିତରକୁ ଆମନ୍ତ୍ରଣ କରି ଆଣିଲେ । ଯୁଧିଷ୍ଠିର ସ୍ୱହସ୍ତରେ ତା'ର ପଦ ପ୍ରକ୍ଷାଳନ କରି ଆସନରେ ବସାଇ ଦେବା ପରେ କନିଷ୍ଠ ପାଣ୍ଡବ ତାକୁ ବ୍ୟଜନ କରିବାକୁ ଲାଗିଲେ । ପାଞ୍ଚାଳୀ ସୁଶୀତଳ, ସୁନିର୍ମଳ ଜଳ ତାକୁ ସୁମିଷ୍ଟ ପାନୀୟ ପାନ କରିବାକୁ ଅନୁରୋଧ ଜଣାଇଲେ । ସେ କୁଟୀରର ଚତୁର୍ଦ୍ଦିଗକୁ ଥରେ ଦୃଷ୍ଟି ନିକ୍ଷେପ କରି ଧର୍ମରାଜଙ୍କୁ ପ୍ରଶ୍ନ କଲା - 'ଶୁଣିଲି ଦ୍ୱାଦଶ ବର୍ଷର ବନବାସର ଅବଧି ପୂର୍ଣ୍ଣ ହେବା ପରିପ୍ରେକ୍ଷୀରେ ଧର୍ମରାଜ ବହୁ ମୁନି ଓ ବ୍ରାହ୍ମଣଙ୍କୁ ଉତ୍ତମ ଭୋଜନ, ଦାନ, ଦକ୍ଷିଣା ଆଦି ଦେଇଛନ୍ତି । ଅଜ୍ଞାତ ବାସର ପର୍ବ ତ ଆରମ୍ଭ ହେବ । କେଉଁ ଦିଗକୁ ଯାତ୍ରା କରିବେ ?

ଧର୍ମରାଜ ଉତ୍ତର ଦେବା ପୂର୍ବରୁ ମୁଁ କହିଲି- 'କୃଷ୍ଣା ! ଅତିଥି ବ୍ରାହ୍ମଣ କ୍ଷୁଧାର୍ତ୍ତ । ପ୍ରଥମେ ତାଙ୍କ ଭୋଜନର ବ୍ୟବସ୍ଥା କର ।'

ଗୌରମୋକ୍ଷ କହିଲା - 'ମୁଁ ତ ସେହି ଉଦ୍ଦେଶ୍ୟରେ ଆସିଛି କିନ୍ତୁ ମୋର ଆଜି ବ୍ରତ । ଆଜି ମୁଁ କେବଳ ଫଳାହାର କରେ । ଅନ୍ୟ କୌଣସି ଫଳରେ ମୋର ରୁଚି ନଥାଏ । ମୁଁ ଗୋଟିଏ ମାତ୍ର ପକ୍ୱ ରସାଳ ଆମ୍ର ଫଳ ଭୋଜନ କରିବା ଇଚ୍ଛାରେ ଏଠାକୁ ଆସିଛି ।'

ଦ୍ରୌପଦୀଙ୍କର କୃଷ୍ଣଭ୍ରମର ସଦୃଶ ବିଲୋଳ ଚକ୍ଷୁ ଦୁଇଟି ବ୍ରାହ୍ମଣର ମୁଖ ଉପରେ ସ୍ଥିର ହୋଇଗଲା । ସେ କାତର କଣ୍ଠରେ କହିଲେ - 'ଅସ୍କନ୍ଧ ବନରେ ବହୁବିଧ ଫଳ ସହଜଲଭ୍ୟ । ମୋର ପତିଗଣମଧ୍ୟ ସେହି ସୁମିଷ୍ଟ ଫଳ ସବୁ ସଂଗ୍ରହ କରି ପଲକମାତ୍ରକେ ନେଇ ଆସିବେ । କିନ୍ତୁ ଏହି ଅସମୟରେ ଶୀତ ଋତୁରେ ପକ୍ୱ ଆମ୍ର ଫଳଟିଏ ମିଳିବା ତ ଆଦୌ ସହଜ ନୁହେଁ !'

ଗୌରମୋକ୍ଷ ହତାଶ ହୋଇ କହିଲା - 'ତେବେ ଥାଉ । ଦୂରାଗତ କ୍ଳାନ୍ତ ବ୍ରାହ୍ମଣ ବହୁ ଆଶା ନେଇ ଆସିଥିଲା, ଅଭୁକ୍ତଭାବେ ଫେରିଯାଉ ।'

- 'ନା - ନା ଅତିଥି ବ୍ରାହ୍ମଣ ଅଭୁକ୍ତଭାବେ ଫେରିଗଲେ ମୋର ସ୍ୱାମୀ ମାନଙ୍କର ଅକଲ୍ୟାଣ ହେବ ଯେ ! ହେ କେଶବ ! ତୁମେ କିଛି ଉପାୟ କର । ଆମ୍ଭେମାନେ ନିରୁପାୟ !'

ପାଞ୍ଚାଳୀଙ୍କ କଣ୍ଠର ଏ କାତରତା ମୋର ମର୍ମତଟରେ ଏକ ବିଚିତ୍ର ଆଲୋଡ଼ନ ସୃଷ୍ଟି

କଲା । ଟିକିଏ ସମୟ ଚିନ୍ତା କରି ମୁଁ କହିଲି - 'ହଁ ! ଏକମାତ୍ର ଉପାୟ ଅଛି । ବଡ଼ ଦୁଃସାଧ୍ୟ ସେ ଉପାୟ । ତେବେ ବ୍ରାହ୍ମଣ କ'ଣ ଆଜି ହସ୍ତିନା ଫେରିଯିବେ ?'

ଗୌରମୋକ୍ଷ କହିଲା - 'ନା ମହାଭାଗ ! ଆଜି ଏ କ୍ଳାନ୍ତ ଶରୀରକୁ ନେଇ ଅନ୍ୟତ୍ର ଯିବା ସମ୍ଭବ ନୁହେଁ । ଆଜି ଏହିଠାରେ ବିଶ୍ରାମ କରି ଆଗାମୀ କାଲି ବ୍ରାହ୍ମ ମୁହୂର୍ତ୍ତରେ ଫେରିଯିବି ହସ୍ତିନା ।'

'-ହସ୍ତିନା? ' ମୁଁ ଚମକି ଉଠିଲି । ତାପରେ ଆତ୍ମସମ୍ବରଣ କରି କହିଲି - ମୋ ସହିତ ଦ୍ୱାରକା ଚାଲ ଅତିଥି । କିଛିଦିନ ସେଠାରେ ଅବସ୍ଥାନ କରି ତା'ପରେ ହସ୍ତିନା ଫେରିଯିବ ।'

ସେ ଗୋପନୀୟ ତଥ୍ୟ ପରିବେଷଣ କଲାଭଳି କହିଲା - 'ନା ମହାଭାଗ ! ପ୍ରଥମେ ହସ୍ତିନା ଯିବି, ତାପରେ ଆଉ ଯୁଆଡ଼େ । ଦରିଦ୍ର ବ୍ରାହଣ ମୁଁ । ଏକଶତ ସ୍ୱର୍ଣ୍ଣମୁଦ୍ରା ମୋ ପାଇଁ ବହୁତ ବେଶୀ । କୁରୁପତି ଏକମାତ୍ର ସମ୍ବାଦ ବିନିମୟରେ ଏକଶତ ସ୍ୱର୍ଣ୍ଣମୁଦ୍ରା ଦେବେ ବୋଲି ପ୍ରତିଶ୍ରୁତିବଦ୍ଧ !'

ମୁଁ ତାକୁ ସମ୍ମୋହିତ ଦୃଷ୍ଟିରେ କିଛି ସମୟ ଚାହିଁ ରହିଲି ଓ ଧିରେ ପ୍ରଶ୍ନ କଲି - 'କେଉଁ ସମ୍ବାଦ ଦ୍ୱିଜବର ?'

କେଜାଣି କାହିଁକି ଯିଏ ମୋ ସଂସ୍ପର୍ଶରେ ଆସେ ଅଳ୍ପ ସମୟ ଭିତରେ ମୁଁ ତା'ର ବିଶ୍ୱାସର ପାତ୍ର ହୋଇଯାଏ । ମୋ ବାଙ୍କ ଚାହାଣୀର ବିଲୋଳତାରେ ସେ ବିହ୍ୱଳ ହୋଇଯାଏ । ଗୌରମୋକ୍ଷର ମଧ୍ୟ ଠିକ୍ ସେଇ ଦଶା । ସେ ମୁଗ୍ଧ ଦୃଷ୍ଟିରେ ମୋତେ ଚାହିଁ ଅଭିଭୂତ ହେବାଭଳି କହିଲା - 'ଏଇ...ଆଜିତ ପାଣ୍ଡବ ପଞ୍ଚଭ୍ରାତା ଯାତ୍ରା କରିବେ ନାହିଁ । ଏଇଠାରେ ହିଁ ନିଶିଯାପନ କରିବେ । ଆସନ୍ତା କାଲି ସେମାନେ କେଉଁ ଦିଗକୁ, କେଉଁ ରାଜ୍ୟକୁ, କେଉଁ ଛଦ୍ମବେଶରେ ଅଜ୍ଞାତ ବାସ ନିମିତ୍ତ ଯାତ୍ରା କରିବେ ସେଇ ସମ୍ବାଦ ଯଦି ମୁଁ ହସ୍ତିନାରେ ପରିବେଷଣ କରେ ତେବେ ଏକଶତ ସ୍ୱର୍ଣ୍ଣମୁଦ୍ରା ପାଇବି ।'

ମୁଁ ନିସ୍ପୃହ କଣ୍ଠରେ କହିଲି - 'ଓ !'

ଆମର ଏ ଗୋପନ ମନ୍ତ୍ରଣା ପାଣ୍ଡବଙ୍କ କର୍ଣ୍ଣଗୋଚର ହେଉନଥିଲା । ଧର୍ମରାଜ ପ୍ରଶ୍ନ କଲେ - 'କି ଉପାୟ କୁହ କେଶବ । ଯେତେ ଅସାଧ୍ୟ ହେଲେ ବି ଆମ୍ଭେମାନେ ତାହା ଅବଲମ୍ବନ କରିବୁ ଓ ଦୂରାଗତ ବ୍ରାହ୍ମଣଙ୍କ କ୍ଷୁଧା ନିବାରଣ କରିବୁ ।'

ମୁଁ ସମସ୍ତଙ୍କୁ ନିରୀକ୍ଷଣ କରି ରହସ୍ୟମୟ ଭାବେ ହସିଲି ଓ କୁଟୀର ବାହାରୁ ଏକ ଶୁଷ୍କ

ଆମ୍ର ବୀଜ (ଆମ୍ବ ଟାକୁଆ) ଆଣି ମାଟିରେ ପୋତି ଦେଇ ସେଥିରେ ଜଳ ଢ଼ାଳି ଦେଇ କହିଲି- 'ଏହା ସାଧାରଣ ଆମ୍ର ଫଳ ନୁହେଁ । ଏହା 'ସତ୍ୟ ଆମ୍ବ' । ସତ୍ୟ ଦ୍ୱାରା ଏହା ପଲ୍ଲବିତ ହୁଏ, ପୁଷ୍ପିତ ହୁଏ, ଫଳଭାରରେ ଆନତ ମଧ୍ୟ ହୁଏ । ଏହା ଉପରେ ହସ୍ତ ସ୍ଥାପନ କରି ତୁମ୍ଭେ ପଞ୍ଚଭ୍ରାତା ଓ ପାଞ୍ଚାଳୀ ଯଦି ନିଜ ମନ ଅଭ୍ୟନ୍ତରର ଗୋପନ ଦୁର୍ବଳତା ପ୍ରକାଶ କରିବ ଜଣକ ପରେ ଜଣେ । ତେବେ ତୁମ୍ଭେମାନେ ପରସ୍ପର ପାଖରେ ଦୁର୍ବୋଧ୍ୟ ରହିବ ନାହିଁ ଏବଂ ଏହି ସତ୍ୟ ଆମ୍ବ ମଧ୍ୟ ନିଶ୍ଚିତ ଭାବରେ ବ୍ରାହ୍ମଣର କ୍ଷୁଧା ନିବାରଣରେ ସମର୍ଥ ହେବ ।'

ଧର୍ମରାଜ ସର୍ବପ୍ରଥମେ ଆଗେଇ ଆସି ସତ୍ୟ ଆମ୍ବ ବୀଜ ପ୍ରୋଦ୍ଥିତ ଥିବା ସିକ୍ତ ଭୂମିକୁ ସ୍ପର୍ଶ କରି କହିଲେ - 'ଯଦିଓ ମୁଁ କହି ଆସିଛି ଯେ ଦ୍ୟୁତ କ୍ରୀଡ଼ା ନିମିତ୍ତ ମୋତେ ଅତୀତରେ ବହୁ ମୂଲ୍ୟ ଦେବାକୁ ପଡ଼ିଛି, ତେବେ ସୁଦ୍ଧା, ଏବେବି ଯଦି କେହି ନିମନ୍ତ୍ରଣ କରେ ମୁଁ ନିଜକୁ ନିବୃତ୍ତ କରି ପାରିବି ନାହିଁ ।'

ତାଙ୍କର ଏ ସତ୍ୟ କଥନରେ ଚାହୁଁ ଚାହୁଁ ନବ କିଶଳୟଯୁକ୍ତ ଆମ୍ର ବୃକ୍ଷଟିଏ ଦୃଷ୍ଟିଗୋଚର ହେଲା । ସମସ୍ତଙ୍କ ଚକ୍ଷୁ ବିସ୍ମୟରେ ବିସ୍ଫାରିତ ହୋଇଗଲା ।

ଦ୍ୱିତୀୟ ପାଣ୍ଡବ ବୃକ୍ଷଟିକୁ ସ୍ପର୍ଶ କରି କହିଲେ - 'ଆହାର ଓ ମୈଥୁନରେ ମୁଁ ସଦା ଅତୃପ୍ତ । ମୋ ଭଳି ମୋର ଅନ୍ୟ ଭ୍ରାତା ଚତୁଷ୍ଟୟ ଦ୍ରୁପଦ ତନୟାଙ୍କ ପତି ଏହାକୁ ମୁଁ ଆନ୍ତରିକ ସମର୍ଥନ କରେ ନାହିଁ ।'

ଆମ୍ରବୃକ୍ଷଟି ଶାଖା ପ୍ରଶାଖା ସମନ୍ୱିତ ହୋଇଉଠିଲା । ସବୁଜଶ୍ରୀରେ ବିମଣ୍ଡିତ ହୋଇ ଉଠିଲା ।

ସଖା ପାର୍ଥ ଧିର ପଦକ୍ଷେପରେ ବୃକ୍ଷଟି ନିକଟରେ ଠିଆ ହୋଇ ମୋତେ ନିରୀକ୍ଷଣ କଲେ ଓ ବୃକ୍ଷଟିକୁ ସ୍ପର୍ଶ କରି କହିଲେ - 'ଆର୍ଯ୍ୟାବର୍ତ୍ତରେ ମୁଁ ସର୍ବଶ୍ରେଷ୍ଠ ଧନୁର୍ବୀଦ୍, ଏହାହିଁ ମୋର ଅହଂକାର । ମୋର ବାହୁବଳ ଓ ଶସ୍ତ୍ର କୌଶଳ ବିନା ମୋର ଅନ୍ୟ ଭ୍ରାତା ଗଣ ଦୁର୍ବଳ ଏହାହିଁ ମୋର ସ୍ପର୍ଦ୍ଧା !'

ଆମ୍ରବୃକ୍ଷଟି ବକୁଳ ମଞ୍ଜରିତ ହୋଇ ଉଠିଲା । ଚତୁର୍ଥ ପାଣ୍ଡବ ସଲଜ୍ଜ ଭାବେ ସେହି ମଞ୍ଜରିତ ଶାଖାକୁ ସ୍ପର୍ଶକରି କହିଲେ - 'ମୋ ନିଜର ସୁନ୍ଦର ରୂପହିଁ ମୋର ଅଭିମାନ, ମୋର ଆସକ୍ତି, ମୋର ଦୁର୍ବଳତା ।'

ମଞ୍ଜରିତ ଶାଖାରେ ଚାହୁଁ ଚାହୁଁ ଫଳର ଉଦ୍‌ଗମ ହେଲା । ତା'ପରେ ସହଦେବ ସେହି କ୍ଷୁଦ୍ର ଫଳଟିକୁ ସ୍ପର୍ଶ କରି କହିଉଠିଲେ - 'ମୋ ଶାସ୍ତ୍ରଜ୍ଞାନ ପାଇଁ ମୁଁ ନିଜେ ଗର୍ବିତ । ଆଗତ

ଭବିଷ୍ୟ ସଂପର୍କରେ ସମସ୍ତେ ଅଜ୍ଞାତ ଥିବା ସମୟରେ ମୁଁ ଯେ ଦୂରଦୃଷ୍ଟି ବଳରେ ସେହି ଅଜ୍ଞାତ ରହସ୍ୟକୁ ଭେଦ କରି ପାରୁଛି ଏହାହିଁ ମୋର ଗର୍ବର ବିଷୟ ।'

ସେହି କ୍ଷୁଦ୍ର ଫଳଟି ଚାହୁଁ ଚାହୁଁ ଘନ ସବୁଜ ବର୍ଣ୍ଣର ଏକ ଆମ୍ବରେ ପରିଣତ ହୋଇଗଲା ।

ମୁଁ ପାଞ୍ଚାଳୀଙ୍କୁ ଲକ୍ଷ୍ୟକରି କହିଲି - 'ଆସ ସଖି ! ଏ ଆମ୍ବଟି ସୁପକ୍ୱ ହେବାକୁ ତଥାପି ବିଳମ୍ବ ଅଛି । ବ୍ରାହ୍ମଣ କ୍ଷୁଧାର୍ତ୍ତ । ନାରୀ ଚରିତ୍ର ଯେ ଚିରକାଳ ରହସ୍ୟମୟ । ତୁମେ ତୁମ ମନର ଗୋପନ କଥା କୁହ ନିଃସଙ୍କୋଚରେ । ଦେଖିବ ଏହି ଅପକ୍ୱ ଫଳଟି ସୁପକ୍ୱ ସୁମିଷ୍ଟ ହୋଇ ଭୋଜନ ଯୋଗ୍ୟ ହୋଇଯିବ ।'

ପାଞ୍ଚାଳୀଙ୍କ ସମଗ୍ର ମୁଖମଣ୍ଡଳ ଶିଶିରସ୍ନାତ ନୀଳପଦ୍ମ ଭଳି ମଳିନ ଦିଶିଲା । ସେ ମୋ ପାଦ ପାଖେ ବସି ପଡ଼ି କହିଲେ - 'ହେ ଅନ୍ତର୍ଯ୍ୟାମୀ ! କେଉଁ କଥା ତୁମକୁ ଅଜଣା ? ଖୋଲାପୃଷ୍ଠା ଭଳି ମୋ ହୃଦୟ ତୁମ ନିକଟରେ ଉନ୍ମୁକ୍ତ ରହିଥିବା ବେଳେ ପୁଣି ମୋ ପତିଗଣଙ୍କ ସମ୍ମୁଖରେ ମୋତେ ଲଜ୍ଜିତା କରିବାକୁ ଚାହୁଁଛ ?'

ମୁଁ ଈଷତ୍ ହସି କହିଲି - 'ତୁମର ଏହା ଭୁଲ ଧାରଣା ସଖି ! ଯାହା ତୁମ ହୃଦୟରେ ସଂଗୁପ୍ତ ତାହାହିଁ ତୁମର ଅଗୌରବର କାରଣ । ଭୁଜଙ୍ଗ ତା'ର ନିର୍ମୋକ ତ୍ୟାଗ କଲାଭଳି ତୁମେବି ସେଇ ଆକର୍ଷଣର ମୋହକୁ ତ୍ୟାଗ କରି ଫିଙ୍ଗିଦିଅ । ତୁମେ ଭାରମୁକ୍ତ ହୁଅ । ଯାହା ତୁମ ହୃଦୟରେ ସଞ୍ଚିତ ଅଛି ତାହା ତୁମର ବ୍ୟଥା, ବେଦନା, ଲଜ୍ଜା, ଅଗୌରବର କାରଣ ହୋଇ ରହିଛି । ତମେ ସେଥିରୁ ମୁକ୍ତ ହେବାକୁ ଚାହୁଁନ କି ?'

ସେ ବୃକ୍ଷ ନିକଟକୁ କୁଣ୍ଠିତ ପଦରେ ଆଗେଇ ଆସିଲେ । ସମଗ୍ର ମୁଖମଣ୍ଡଳ ଲୋହିତାଭ ହୋଇଉଠିଲା । ଭୂମି ଉପରେ ଚକ୍ଷୁ ନିବଦ୍ଧ କରି ସେ ମୁକ୍ତ କଣ୍ଠରେ ଘୋଷଣା କଲେ- 'ପାଞ୍ଚ ପାଞ୍ଚଜଣ ଶୂରବୀର ପତି ମୋର ଥିବା ସତ୍ତ୍ୱେ ସୂତପୁତ୍ର କର୍ଣ୍ଣଙ୍କର ଶୌର୍ଯ୍ୟ, ବୀର୍ଯ୍ୟ, ସୌନ୍ଦର୍ଯ୍ୟ ଓ ଦାନପରାୟଣତାରେ ମୁଁ ଲୋଭାକୃଷ୍ଟା ହୋଇଯାଏ !'

ଏତିକି କହି ସାରି ବାତାହତ ରମ୍ଭାପତ୍ର ଭଳି କଂପିତ ଭାବେ ସେ ମୋ ପଦତଳେ ଲୋଟି ପଡ଼ିଲେ ଏବଂ ବଜ୍ରାହତ ଭଳି ପାଣ୍ଡବ ପଞ୍ଚଭ୍ରାତା ଚମକି ଉଠିଲେ । ମୁଁ ତରଳ କଣ୍ଠରେ ହସି ଉଠି କହିଲି - 'ସଂସାରଟା ମିଛ ମାୟା ! ଦେଖିଲତ ! ଛାଡ଼ !'

ସେତେବେଳକୁ ପୀତ ଲୋହିତ ବର୍ଣ୍ଣରେ ରସାଳ ଫଳଟି ରଂଜିତ ହୋଇ, ରସ ପରିପୂର୍ଣ୍ଣ ହୋଇ, ମଧୁର ସୁବାସରେ ପରିପୂରିତ ହୋଇ ବ୍ରାହ୍ମଣର କ୍ଷୁଧା ନିବାରଣ ନିମିତ୍ତ

ଆପଣାକୁ ପ୍ରସ୍ତୁତ କରି ସାରିଥିଲା । ସେ ଫଳଟିକୁ ତୋଳି ଆଣି ପାଞ୍ଚାଳୀଙ୍କ ହାତରେ ଦେଇ ମୁଁ କହିଲି - 'ନିଅ କୃଷ୍ଣା ! ଏହାକୁ ଖଣ୍ଡ ଖଣ୍ଡ କରି ଉତ୍ତମ ପାତ୍ରରେ ପରିବେଷଣ କର ।'

କୃଷ୍ଣା ଭିତରକୁ ଯିବା ମାତ୍ରେ ମୁଁ କ୍ଷିପ୍ର ଗତିରେ ସମସ୍ତଙ୍କ ଅଲକ୍ଷ୍ୟରେ କିଛି ଧୂତୁରା ବୀଜର ରସ ସହ ଏକ ଔଷଧିଗୁଣ ଯୁକ୍ତ ପତ୍ରର ରସ ସମ୍ମିଶ୍ରଣ କରି କଟା ଆମ୍ବରେ ପ୍ରଲେପ ଦେଇ ଦେଲି । ସେହି ରସ ଯେକୌଣସି ସୁମିଷ୍ଟ ଦ୍ରବ୍ୟର ସଂସ୍ପର୍ଶରେ ଆସିଲେ ତାକୁ ଉଦରସ୍ଥ କରିବା ବ୍ୟକ୍ତି ଗଭୀର ନିଦ୍ରାରେ ଅଚେତନ ହୁଏ ଏବଂ ବହୁ ବିଳମ୍ବରେ ନିଦ୍ରାଭଂଗ ହେବାପରେ ସେ ତା' ଅତୀତର ଅନେକ ଘଟଣା ଦୁର୍ଘଟଣା ବିସ୍ମୃତ ହୋଇଯାଏ । ବସ୍ତୁତଃ ତା'ର ଏକ ପ୍ରକାର ମସ୍ତିଷ୍କ ବିକୃତି ଘଟେ । ତଥାପି ମୁଁ ସୁସ୍ଥିର ରହି ପାରିଲି ନାହିଁ । ସମସ୍ତଙ୍କ ସମ୍ମୁଖରେ ଗୌରମୋକ୍ଷକୁ କହିଲି - 'ତୁମର ଇପ୍‌ସିତ ବସ୍ତୁ ତୁମକୁ ମିଳିଲା । ମୋତେ ବି ତୁମେ କଥାଦିଅ ବ୍ରାହ୍ମଣ, ତୁମେ ଏଠାରେ ଯାହା ଦେଖିଲ, ଯାହା ଶୁଣିଲ ସେ କଥା ମରଣ ଅବଧି ଗୋପନ ରଖିବ ।'

ସେ କେବଳ ରହସ୍ୟମୟ ଭାବେ ହସିଲା ଓ ଖାଦ୍ୟ ଗ୍ରହଣ କଲା ପରିତୃପ୍ତିର ସହ । ଅଳ୍ପ ସମୟ ଭିତରେ ନିଦ୍ରାରେ ଅଚେତନ ହୋଇ ପଡ଼ିଲା । କ୍ରମଶଃ ସଂଧ୍ୟା ଉତ୍ତୀର୍ଣ୍ଣ ହୋଇଗଲା । କୃଷ୍ଣା ତ୍ରୟୋଦଶୀ ରାତ୍ରିର ବୟସ କ୍ରମେ ବଢ଼ିବାକୁ ଲାଗିଲା । ଅନ୍ଧକାର କ୍ରମେ ଘନୀଭୂତ ହେବାକୁ ଲାଗିଲା । ମୁଁ ପାଣ୍ଡବ ପଞ୍ଚଭ୍ରାତା ଓ ପାଞ୍ଚାଳୀଙ୍କୁ ପାଖରେ ବସାଇ କହିଲି - 'ଆଜି ମଧ୍ୟ ରାତ୍ରି ସୁଦ୍ଧା ଏହି ଅସ୍କନ୍ଦ ବନ ଅତିକ୍ରମ କରିଯାଅ । ଏ ବ୍ରାହ୍ମଣ କୁରୁପତି ଦୁର୍ଯ୍ୟୋଧନର ଗୁପ୍ତଚର । ସେ ଏଇଠି ଶୟନ କରିଥାଉ । ତାର ନିଦ୍ରାଭଂଗ ହେବା ପୂର୍ବରୁ ତୁମ୍ଭେମାନେ ଗନ୍ତବ୍ୟ ସ୍ଥିର କରିନିଅ ଓ ଏ ସ୍ଥାନ ପରିହାର କରି ଯଥାଶୀଘ୍ର ଦୂରକୁ ଚାଲିଯାଅ । ଯେମିତି ତୁମର ଛଦ୍ମ ରୂପ ଓ ଗନ୍ତବ୍ୟର ସନ୍ଧାନ ସେ ପାଇବ ନାହିଁ ।'

ନିଦ୍ରାଳୁ ଦ୍ୱିତୀୟ ପାଣ୍ଡବ କୁଣ୍ଠିତ ହୋଇ କହିଲେ - 'କୃଷ୍ଣା ତ୍ରୟୋଦଶୀର ଅନ୍ଧକାରାଚ୍ଛନ୍ନ ମଧ୍ୟରାତ୍ରିରେ ? ଏଇ ଅରଣ୍ୟ ପଥରେ ?'

ମୁଁ ଆଦେଶ ଦେବା ଭଳି କଣ୍ଠରେ କହିଲି - 'ହଁ ! ଏଭଳି ସୁଯୋଗକୁ ହାତଛଡ଼ା କର ନାହିଁ । ଯଦି କୌଣସି ଆପତ୍ତି ନଥାଏ ତେବେ କେଉଁ ରାଜ୍ୟକୁ କେଉଁ ଛଦ୍ମ ରୂପ ଧାରଣ କରି ଯିବ ସେତିକି ମୋତେ ଜଣାଇ ଦେଲେ ମୁଁ ନିଶ୍ଚିନ୍ତ ରହନ୍ତି ।'

ଧର୍ମରାଜ ମୋର ହାତଦୁଇଟି ଧରି ପକାଇ କହିଲେ - 'ତୁମରି ଆଦେଶ ହିଁ ଆମର ଶିରୋଧାର୍ଯ୍ୟ ମାଧବ ! ମୁଁ ସ୍ଥିର କରିଛି ଆମ୍ଭେମାନେ ମତ୍ସ୍ୟ ରାଜ୍ୟରେ ବିରାଟ ରାଜାଙ୍କ ନଗରରେ ଅଜ୍ଞାତବାସରେ ରହିବୁ । ଶରୀର ପୃଥକ ହେଲେ ହେଁ ଆମ ପାଞ୍ଚଭାଇଙ୍କର ଆତ୍ମା

ଏକ । ଆମେ କେହି କାହାଠାରୁ ପୃଥକ ରହିପାରିବୁ ନାହିଁ । ତେଣୁ ମୋର ଭ୍ରାତାଗଣ ମୋତେ ହିଁ ଅନୁସରଣ କରିବେ । ପାଞ୍ଚାଳତନୟାଙ୍କୁ ଜୀବନ ବିନିମୟରେ ସୁଦ୍ଧା ଆମ୍ଭେମାନେ ଦୃଷ୍ଟିରୁ ଅନ୍ତର୍ହିତ କରିପାରିବୁ ନାହିଁ । ସେ ମଧ୍ୟ ଆମ୍ଭମାନଙ୍କର ଅନୁଗାମିନୀ ହେବେ । କେବଳ ଏକକାଳୀନ ଆମ୍ଭେମାନେ ନଗର ପ୍ରବେଶ କରିବୁ ନାହିଁ । ଏକବର୍ଷପାଇଁ ନାମ ଓ ରୂପ, ବୃତ୍ତି ଓ ପ୍ରବୃତ୍ତି ସବୁକିଛି ପରିବର୍ତ୍ତନ କରିବାକୁ ପଡ଼ିବ । ମୁଁ ବିରାଟ ରାଜ ଦରବାରରେ ଦ୍ୟୁତ ବିଶାରଦ 'କଙ୍କ' ଭାବେ ଯୋଗ ଦେବି ।

ଲକ୍ଷ୍ୟ କଲି 'ଦ୍ୟୁତ' ଶବ୍ଦ ଉଚ୍ଚାରିତ ହେବାମାତ୍ରେ ପାଞ୍ଚାଳୀ ଶିହରି ଉଠିଲେ । ମୁଁ କହିଲି - 'ଏହା ଅତ୍ୟନ୍ତ ସାଧୁ ପ୍ରସ୍ତାବ ।'

ଦ୍ୱିତୀୟ ପାଣ୍ଡବ କହିଲେ - 'ବେଶ୍ ! ମୋ ପାଇଁ ମଧ୍ୟ କ୍ଷେତ୍ର ପ୍ରସ୍ତୁତ । ମୁଁ ଗଉରୀ, ଶଉରି ଓ ନଳବିଧି ରାନ୍ଧଣାରେ ସିଦ୍ଧହସ୍ତ । ମୁଁ ବିରାଟଙ୍କ ରନ୍ଧନଶାଳାରେ ସୂପକାର ବ୍ରାହ୍ମଣ 'ବଲ୍ଲବ' ଭାବରେ ରହିବି । ଦ୍ୱାଦଶ ବର୍ଷ ଧରି ରାଜଭୋଗ୍ୟ ଖାଦ୍ୟରୁ ବଞ୍ଚିତ ହୋଇଛି । ଏଣିକି ଅନ୍ତତଃ ସେ ଅବଶୋଷ ରହିବ ନାହିଁ ।'

ପାଞ୍ଚାଳୀ ପୁଣି ଏକ ଦୀର୍ଘଶ୍ୱାସ ମୋଚନ କଲେ ନୀରବରେ ! ଦିଗ୍‌ବିଜୟୀ ବୀର ଫାଲଗୁନୀ କିଛି ସମୟ ପରେ କହିଲେ, 'ମୋର ଛଦ୍ମରୂପ ନିର୍ଦ୍ଧାରିତ ହୋଇସାରିଛି । ମୋର ଏକମାତ୍ର ସମସ୍ୟା ଏ ଅସ୍ତ୍ର ଶସ୍ତ୍ର ସମୂହ । ତୁମେ କୁହ ସଖା ! ଏ ଶସ୍ତ୍ର ସମୂହକୁ କେଉଁଠି ଲୁଚାଇ ରଖିବି ? ବନଭୂମିରେ ଲୁଚାଇ ରଖିଲେ ପୃଥିବୀ ଏହାର ଭାରା ସହ୍ୟ କରିପାରିବ ନାହିଁ । ପାତାଳରେ ଲୁଚାଇଲେ ବାସୁକୀ ହରଣ କରିନେବ, ଜଳରେ ଲୁଚାଇଲେ ଜଳଚର ଜୀବ ହରଣ କରିନେବେ । ସ୍ୱର୍ଗରେ ଲୁଚାଇ ରଖିଲେ ଦେବଗଣ ହରଣ କରିନେବେ । ଏଇ ଶସ୍ତ୍ର ସମୂହ ହିଁ ଆମର ସଂପଦ, ଆମର ମର୍ଯ୍ୟାଦା, ଆମର ଭବିଷ୍ୟତ । ମୁଁ କ'ଣ କରିବି ସଖା ? ମୋତେ ଦିଗ୍‌ଦର୍ଶନ ଦିଅ ।'

ମୁଁ ତାଙ୍କ କାନ୍ଧରେ ହାତରଖି ଆଶ୍ୱାସନା ଦେଇ କହିଲି - 'ଶସ୍ତ୍ର ହିଁ ତୁମର ପରିଚୟ ଗାଣ୍ଡିବୀ ! ଏଭଳି ସ୍ଥାନରେ ରଖିବ ଯେମିତି ଚାହିଁବା ମାତ୍ରେ ପାଇବ । ବିରାଟ ନଗର ଉପକଣ୍ଠରେ ଯେଉଁ ଶ୍ମଶାନ, ସେଇଠି ଘନସଂଲଗ୍ନ ଭାବେ ଦୁଇଟି ବୃକ୍ଷ ଅଛି ଗୋଟିଏ ଶମୀ ଅନ୍ୟଟି ଶିଂଶପା । ତା'ର ମଧ୍ୟଭାଗରେ ସୁବୃହତ୍ କୋଟର । ତୁମ ଶସ୍ତ୍ର ସମୂହ ସେହି କୋଟରରେ ସୁରକ୍ଷିତ ରହି ପାରିବ । ମାତ୍ର ଯେମିତି ଶସ୍ତ୍ର ଅଛି ବୋଲି କେହି ନଜାଣେ । ଏମିତି ଏକ ଉଦ୍‌ଭଟ କଥା ପ୍ରଚାର କରିବ ଯେମିତି ସେ ବୃକ୍ଷ ମୂଳକୁ କେହି ଯିବାକୁ ସାହସ କରିବେ ନାହିଁ । ଏଥର କୁହ, କେଉଁ ରୂପ ତୁମେ ଧାରଣ କରିବ ?'

ସେ ଅଧୋବଦନ ଭାବେ କହିଲେ - 'ସ୍ୱର୍ଗ ରାଜ୍ୟରେ ଜନନୀ ଉର୍ବଶୀଙ୍କ ଦ୍ୱାରା ଅଭିଶପ୍ତ ହୋଇଥିଲି । ତାହାହିଁ ହେବ ବରଦାନ ସଦୃଶ । ତାଙ୍କୁ ସ୍ମରଣ କରିବା ମାତ୍ରେ ଦିଗ୍‌ବିଜୟୀ ବୀର ପାର୍ଥ ପରିଣତ ହେବ ଅଷ୍ଟାଳଙ୍କାର ମଣ୍ଡିତା, ସୁଶୋଭନା କ୍ଳୀବ ଭାବରେ । ମୋର ନାମ ରହିବ 'ବୃହନ୍ନଳା' । ଅପ୍‌ସରା ଓ ଗନ୍ଧର୍ବଙ୍କ ଠାରୁ ଶିକ୍ଷା କରିଥିବା ନୃତ୍ୟ, ସଂଗୀତ ଓ ବାଦ୍ୟ ହିଁ ହେବ ରାଜ ଅନ୍ତଃପୁରରେ ମୋର ଜୀବିକାର୍ଜନର ଏକମାତ୍ର ପନ୍ଥା ।'

ଏଥର ଲକ୍ଷ୍ୟକଲି ପାଞ୍ଚାଳୀଙ୍କ ଆଖିରେ ଯେଉଁ ଅଶ୍ରୁବିନ୍ଦୁ ଟଳମଳ ହେଉଥିଲା ତାହା ନିର୍ବାଧରେ ଝରିଆସିଲା । ମୁଁ ପରିବେଶକୁ ଭାରମୁକ୍ତ କରିବା ପାଇଁ କହିଲି- ' ବାଃ ! ଆର୍ଯ୍ୟାବର୍ତ୍ତର ସର୍ବଶ୍ରେଷ୍ଠ ଧନୁର୍ବୀତ୍ ଧନଞ୍ଜୟଙ୍କ ହସ୍ତରେ ଧନୁତୀର ପରିବର୍ତ୍ତେ ରହିବ ମୃଦଙ୍ଗ, ବୀଣା, ଶିରରେ ଶିରସ୍ତ୍ରାଣ ପରିବର୍ତ୍ତେ ସୁଶୋଭିତ ହେବ ପୁଷ୍ପ ସମନ୍ୱିତ ଦୀର୍ଘ ବେଣୀ ବା ଖୋସା, ଅଧର ହେବ ତାମ୍ବୁଳ ରଞ୍ଜିତ, ନୟନ ହେବ କଜ୍ଜ୍ୱଳ ରଞ୍ଜିତ, ଲଲାଟରେ ବିଜୟ ତିଳକ ପରିବର୍ତ୍ତେ ଶୋଭିତ ହେବ ସିନ୍ଦୂର ବିନ୍ଦୁ, ବକ୍ଷରେ କବଚ ପରିବର୍ତ୍ତେ କାଞ୍ଚଲା, କଟୀରେ ତରବାରୀ ପରିବର୍ତ୍ତେ କିଙ୍କିଣୀ, କରରେ କେୟୂର କଙ୍କଣ, ପଦଯୁଗଳରେ ନୁପୁର । ଶତ୍ରୁର ଶଙ୍କା ଉତ୍ପାଦନକାରୀ ବଳିଷ୍ଠ ଭୁଜ ଓ ଅଂଗୁଳିରେ ନୃତ୍ୟର ବିଭିନ୍ନ ମୁଦ୍ରା, ସର୍ବୋପରି କଣ୍ଠରୁ ନିଃସୃତ ହେବ ଲଳିତ ମଧୁର ସଂଗୀତ ।'

ପ୍ରକାଶ କରିବା ବାହୁଲ୍ୟ ମୋର ଏ ପରିହାସ ଚୂଡ଼ାନ୍ତ । ପାଞ୍ଚାଳ ତନୟା ଦୁଇହାତରେ ମୁହଁ ଲୁଚାଇ ରୁଦ୍ଧ ସ୍ୱରରେ ରୋଦନ କରିବାକୁ ଲାଗିଲେ । ନକୁଳ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ - 'ଏହାହିଁ ସର୍ବୋତ୍ତମ ବ୍ୟବସ୍ଥା ! ଭ୍ରାତା ଅର୍ଜ୍ଜୁନଙ୍କର ବୀରତ୍ୱ ଭୁବନବିଦିତା ଯେ ! ଏଭଳି ବେଶ ଧାରଣ ନକଲେ ତାଙ୍କ ପରିଚୟ ପ୍ରକଟ ହେବାର ସମ୍ଭାବନା ଅଧିକ ଯେ ! ଚାହୁଁ ଚାହୁଁ ଗୋଟାଏ ବର୍ଷ ବିତିଯିବ । ମୁଁ ହେବି ବିରାଟ ରାଜାଙ୍କ ଅଶ୍ୱରକ୍ଷକ ଓ ଅଶ୍ୱଚିକିତ୍ସକ 'ଗ୍ରନ୍ଥିକ' ।

ସହଦେବଙ୍କ ଉପରେ ଦୃଷ୍ଟି ପଡ଼ିବାମାତ୍ରେ ସେ କହିଲେ 'ମୋର ବୃତ୍ତି କ୍ଷତ୍ରିୟର ମୌଳିକ ବୃତ୍ତି ଆଦୌ ନୁହେଁ; ବରଂ ଗୋପାଳ କୃଷ୍ଣଙ୍କର ବୃତ୍ତି ହିଁ ମୋ ପାଇଁ ସର୍ବୋତ୍ତମ ବ୍ୟବସ୍ଥା । ଅର୍ଥାତ୍ ମୁଁ ହେବି ଗୋପାଳକ 'ତନ୍ତ୍ରୀପାଳ' । ଶୁଣିଛି ମତ୍ସ୍ୟ ରାଜ୍ୟର ଗୋଧନ ସଂପଦ ସର୍ବୋତ୍କୃଷ୍ଟ । ଏହି ଗୋ ସଂପଦ - ଦୁଗ୍ଧ, ଦଧି, ଘୃତ ଓ ଦୁଗ୍ଧଜାତ ମିଷ୍ଟାନ୍ନ ନିମିତ୍ତ ଏହି ରାଷ୍ଟ୍ର ଅଧିକ ଧନଶାଳୀ । ଏହାର ଘୃତପକ୍ୱ ମିଷ୍ଟାନ୍ନ ଆର୍ଯ୍ୟାବର୍ତ୍ତରେ ପ୍ରସିଦ୍ଧ । ସୁତରାଂ ସେହି ଗୋ, ବତ୍ସାଗଣଙ୍କୁ ହୃଷ୍ଟ ପୁଷ୍ଟ କରିରଖିବାର ଦାୟିତ୍ୱ ମୋର ।'

ମୁଁ ଚିନ୍ତା କଲି ଏ ପଞ୍ଚଭ୍ରାତା ଅବା ନିଜକୁ ଏଇଭଳି ଗୋପନ ରଖିବାରେ ସମର୍ଥ

ହେବେ । କିନ୍ତୁ ଆଲୋକ ସାମାନ୍ୟା ରୂପସୀ ପାଞ୍ଚାଳୀ ? ତାଙ୍କ ନଖରୁ ନାସିକା ଯାଏ ଅଭିଜାତ ଲକ୍ଷଣ ସ୍ପଷ୍ଟ । ଅନଳ କଣାକୁ ଭସ୍ମ ଆଚ୍ଛାଦନ କଲେ ସୁଦ୍ଧା ତା'କ'ଣ ଲୁଚିବା ସମ୍ଭବ ? ଶୁଦ୍ଧ ସୁବର୍ଣ୍ଣରେ ମୃତ୍ତିକା ଲେପନ କଲେ ବି ସେ କ'ଣ ତା'ର ଔଜଲ୍ୟ ହରାଇ ବସେ ? ତଥାପି ପ୍ରଶ୍ନ କଲି 'କୃଷ୍ଣା ! ତୁମର ଭବିଷ୍ୟତ କର୍ମ ପନ୍ଥା କ'ଣ ?'

ସେ ମୋ ମୁହଁକୁ ଚାହିଁ ବଡ଼ ମର୍ମାନ୍ତିକ ଭାବେ ହସିଲେ । ତାପରେ କହିଲେ -'ପାଣ୍ଡବ ପଞ୍ଚଭ୍ରାତା ଯେତେବେଳେ ଇନ୍ଦ୍ରପ୍ରସ୍ଥର ସାମ୍ରାଜ୍ୟ ଭୋଗ କରୁଥିଲେ ସେତେବେଳେ ମୁଁ ଥିଲି ସାମ୍ରାଜ୍ଞୀ । ସେମାନେ ଯେତେବେଳେ ବିରାଟରାଜାଙ୍କର ସେବକ ହେବାପାଇଁ ସ୍ଥିର ନିଶ୍ଚିତ ସେତେବେଳେ ସେବିକା ବ୍ୟତୀତ ମୋର ଆଉ ଅନ୍ୟ ପରିଚୟ କାହିଁ କେଶବ ? ମୁଁ ତେଣୁ କେଶ ବିନ୍ୟାସ କାରିଣୀ 'ସୈରିନ୍ଧ୍ରୀ' ଭାବରେ ପ୍ରବେଶ କରିବି ବିରାଟ ଅନ୍ତଃପୁରରେ ।'

ଧନଞ୍ଜୟ ତୀର୍ଯ୍ୟକ୍ ଦୃଷ୍ଟିରେ ଥରେ ପାଞ୍ଚାଳୀଙ୍କୁ ଚାହିଁ ତଳକୁ ମୁହଁ ପୋତିଦେଲେ । ତାଙ୍କ ଆଖିରେ ଲିପିବଦ୍ଧ ହୋଇଥିଲା ଅନୁଶୋଚନା । ସତେଯେମିତି ସେ ଦୀର୍ଘ ଆୟତ ନେତ୍ର ଦୁଇଟି କହୁଥିଲା - 'ମୁଁ ଭୁଲ୍ କରିଛି ପାଞ୍ଚାଳୀ ! ମୁଁ ଭୁଲ୍ କରିଛି । ପାଞ୍ଚାଳ ରାଜ ଦ୍ରୁପଦଙ୍କର ସ୍ୱୟଂବର ସର୍ତ୍ତ ଜିଣି ମୁଁ ଭୁଲ୍ କରିଛି । ନାରୀର ଏଇ ଆଲୋକ ସାମାନ୍ୟ ରୂପହିଁ ତା' ସହ ଶତ୍ରୁତା କରେ, ବିପଦର ଗହ୍ୱର ଭିତରକୁ ଠେଲିଦିଏ । ସ୍ୱୟଂବର ସର୍ତ୍ତ ଜିଣି, ମୋ ବୀରତ୍ୱର ପ୍ରଦର୍ଶନ କରି ମୁଁ ତମକୁ ପୁଷ୍ପର ସୁକୋମଳ ଶଯ୍ୟାରୁ ଉଠେଇ ଆଣି କଣ୍ଟକିତ ମାର୍ଗରେ ଠିଆ କରେଇ ଲହୁ ଲୁହାଣ କରିଦେଇଛି । ମୋତେ ତୁମେ କ୍ଷମା କରିଦିଅ ।'

ସେତିକିବେଳକୁ ଦ୍ରୌପଦୀଙ୍କ ଆଖିର ଅଶ୍ରୁ ଭୀମସେନଙ୍କ ଆଖିକୁ ସଂକ୍ରମିତ ହୋଇଯାଇଥିଲା । ଦ୍ୱିତୀୟ ପାଣ୍ଡବ ନିଷ୍କପଟ । ସେ ତାଙ୍କର କୌଣସି ଭାବାବେଗକୁ କେବେବି ଗୋପନ ରଖିପାରନ୍ତି ନାହିଁ । ଅଶ୍ରୁରୁଦ୍ଧ କଣ୍ଠରେ ସେ କହିଲେ - 'ମୋ ନିଜପାଇଁ ମୋର ଟିକିଏ ବି ଦୁଃଖ ନାହିଁ ଗୋବିନ୍ଦ । ମୁଁ ବେଶୀ ମର୍ମାହତ ସୁକୁମାରୀ ଦ୍ରୁପଦ ନନ୍ଦିନୀ ଏବଂ ମୋର କନିଷ୍ଠ ଭ୍ରାତା ମାନଙ୍କ ପାଇଁ । ଏମାନେ ଦାସଦାସୀ ଭାବରେ ଗୋଟାଏ ବର୍ଷ ବଞ୍ଚିବେ ମୋ ଚକ୍ଷୁ ସମ୍ମୁଖରେ ଏହାହିଁ ମୋ ପାଇଁ ଅସହ୍ୟ ।'

ମୁଁ କୌଣସି ଉତ୍ତର ଦେଲି ନାହିଁ । ମନେ ମନେ କହିଲି ରୂପ ! ନାରୀର ରୂପ ହିଁ ତ ତାକୁ ଲାଂଛନାର ଗହ୍ୱର ଭିତରକୁ ଠେଲିଦିଏ । ସୁକୁମାରୀ, ବରନାରୀ କୃଷ୍ଣାଙ୍କର ଆହୁରି ଅଶେଷ ଲାଂଛନା ବାକୀ ଅଛି ଯେ ! କୀଚକ କର୍ତ୍ତୃକ ଲାଂଛନା - ତୁମ୍ଭେମାନେ ବା କ'ଣ କରିପାରିବ ? ବିଧାତାର ନିର୍ଦ୍ଦେଶ ମହାକାଳର ଅଲଂଘ୍ୟ ଆଦେଶ - ବିରୁଦ୍ଧାଚରଣ କରିବ କେମିତି ? ତେବେ ଏତିକି ମନେରଖ - ଧର୍ମ ତୁମର ମାର୍ଗ ଦର୍ଶନ କରୁ । ତୁମ୍ଭମାନଙ୍କର ପୃଷ୍ଠରକ୍ଷଣ ପାଇଁ ମୁଁ ନିଜେ ରହିଛି ।

ମସୀ କୃଷ୍ଣ ରାତ୍ରିର ବିଳମ୍ବିତ ପ୍ରହରରେ ସେମାନେ ମୋର ଦୃଷ୍ଟିପଥରୁ ଅଦୃଶ୍ୟ ହୋଇଗଲେ । ରାତିପାହି ସକାଳ ହେବା ପୂର୍ବରୁ ମୁଁ ରଥବାହି ଦ୍ୱାରକା ଫେରି ଆସିଲି ।

ହସ୍ତିନାରେ କୁରୁପତି ଦୁର୍ଯ୍ୟୋଧନ ତଥା ତାଙ୍କର ସମର୍ଥକ ମାନଙ୍କର ଧାରଣା ବଦ୍ଧମୂଳ ଥିଲା ଯେ ସୁକୁମାରୀ ଦ୍ରୁପଦନନ୍ଦିନୀ ଏହି ଦ୍ୱାଦଶବର୍ଷ ବନବାସ ଜୀବନରେ ଯେତେବେଶୀ କଷ୍ଟ ସହନରେ ଅଭ୍ୟସ୍ତା ହୁଅନ୍ତୁନା କାହିଁକି ଅଜ୍ଞାତ ବାସ ଆଦୌ ବରଣ କରିବେ ନାହିଁ କିମ୍ବା ନିଶ୍ଚିତ ଭାବରେ ଏହି ସମୟରେ ସେ ଦ୍ୱାରକାରେ ନିରାପଦରେ ଆତ୍ମଗୋପନ କରିବେ । ମୋର ପିଉସୀ କୁନ୍ତୀଙ୍କ ସହ ପଣ୍ଡୁରାଜାଙ୍କ ବିବାହ ପରଠାରୁ ହସ୍ତିନା ସହ ବୈବାହିକ ସଂପର୍କ ହେତୁ ବନ୍ଧୁତ୍ୱ, ପାରିବାରିକ ସଂପର୍କ ଘନିଷ୍ଠ ତଥା ସୁଦୃଢ଼ ହୋଇଥିଲା । ପରେ ପରେ ଆମ ଭଗିନୀ ସୁଭଦ୍ରା ସହ ଅର୍ଜୁନଙ୍କ ବିବାହ ଏହାକୁ ଆହୁରି ଘନିଷ୍ଠ କରିଥିଲା । ଏବେ ପୁଣି ଦୁର୍ଯ୍ୟୋଧନଙ୍କ କନ୍ୟା ଚନ୍ଦ୍ରାବତୀ ମୋର ଜ୍ୟେଷ୍ଠ ଭ୍ରାତା ବଳରାମଙ୍କ ପୁତ୍ର ଆନନ୍ଦକୁ ବିବାହ କରିବା ପରଠାରୁ ଏହି ସଂପର୍କ ଅଧିକ ଆତ୍ମୀୟ ତଥା ଅନ୍ତରଙ୍ଗ ହୋଇଥିଲା । ଏହି ଆଳରେ କୁରୁପତି ଦୁର୍ଯ୍ୟୋଧନ ଘନ ଘନ ଦ୍ୱାରକା ଆସୁଥିଲେ; ଯଦିଓ କନ୍ୟା ଚନ୍ଦ୍ରାବତୀକୁ ଦେଖିବା ତାଙ୍କର ଉଦ୍ଦେଶ୍ୟ ବୋଲି କହୁଥିଲେ, ତା' କିନ୍ତୁ ଗୌଣ ଥିଲା । ମୁଖ୍ୟ ଉଦ୍ଦେଶ୍ୟ ଥିଲା ପାଞ୍ଚାଳୀଙ୍କୁ ଆବିଷ୍କାର କରିବା । ତାଙ୍କର ଘନ ଘନ ଆଗମନରେ ଚନ୍ଦ୍ରାବତୀ ନିଜେ ମଧ୍ୟ ଆଶ୍ଚର୍ଯ୍ୟ ହୋଇଯାଉଥିଲେ । ଏପରିକି ଦ୍ୱାରକାର ଅନ୍ତଃପୁରରେ ଦୈବାତ୍ କୌଣସି ନାରୀକୁ ଯଦି ମୁକୁଳିତ କେଶା ଭାବରେ ସେ ଦେଖୁଥିଲେ ତେବେ ତା'ପ୍ରତି ସେ ବଡ଼ ସନ୍ଦିଗ୍ଧ ହୋଇ ଉଠୁଥିଲେ । ତାଙ୍କ ଦୃଷ୍ଟି ସତର୍କ ହୋଇଉଠୁଥିଲା । ସେ ନାରୀର ସଂପୂର୍ଣ୍ଣ ପରିଚୟ ପାଇବା ପରେ ଆଶ୍ୱସ୍ତ ହେଉଥିଲେ । ମୁଁ ତାଙ୍କୁ ଥରେ ପରିହାସ ଛଳରେ ପ୍ରଶ୍ନ କଲି - 'ନାରୀର ମୁକୁଳିତ କେଶ ସହ କୁରୁପତିଙ୍କର କୌଣସି ଦୁଃଖଦ ସ୍ମୃତି ଜଡ଼ିତ କି ?'

ତାଙ୍କର ଅଭିସନ୍ଧି ଧରାପଡ଼ିଯିବା ଆଶଙ୍କାରେ ସେ କହିଲେ ' ନା-ନା-ସେମିତି କିଛି ନାହିଁ ।'

ତା'ପରେ କିନ୍ତୁ ଦ୍ୱାରକା ଆସିବା ବନ୍ଦ କରିଦେଲେ ।

●

## ।। ଊନବିଂଶ ଗ୍ରନ୍ଥି ମୋଚନ ।।

ପ୍ରାୟତଃ ବନ୍ଦୀ ବା ଚାରଣଙ୍କ ମୁଖରୁ, ଦୂତମୁଖରୁ ବା କୌଣସି ତୀର୍ଥାଟନରେ ଯାତ୍ରା କରୁଥିବା ପର୍ଯ୍ୟଟକଙ୍କ ମୁଖରୁ, ଗୁପ୍ତଚର ମୁଖରୁ ବିଭିନ୍ନ ରାଜ୍ୟର ସମ୍ବାଦ ମୁଁ ହିଁ ସଂଗ୍ରହ କରେ । ମୋର ଭବିଷ୍ୟତ କର୍ମ ପନ୍ଥା ନିର୍ଦ୍ଧାରଣ କରିବା ନିମିତ୍ତ ତାହା ସାହାଯ୍ୟ କରେ, ମୋତେ ସତର୍କ

କରିଦିଏ । ଜ୍ୟେଷ୍ଠଭ୍ରାତା ବଳରାମଙ୍କର ଏ ପ୍ରକାର ସମ୍ବାଦ ସଂଗ୍ରହରେ କୌଣସି ଅଭିରୁଚି ବା ଆଗ୍ରହ ନଥାଏ । ସେଦିନ ସଭାକକ୍ଷରେ ମୁଁ ବିଳମ୍ବରେ ପହଞ୍ଚିଲି । ପହଞ୍ଚିବା ବେଳକୁ ସଭାଗୃହରେ କୌଣସି ଏକ ବିଷୟ ଉପରେ ଆଲୋଚନା ସମାଲୋଚନା ହୋଇସାରି ପ୍ରବଳ ହାସ୍ୟ ରୋଳ ଆରମ୍ଭ ହୋଇ ଯାଇଥିଲା । ମୋତେ ଦେଖିବା ମାତ୍ରେ ଜ୍ୟେଷ୍ଠଭ୍ରାତା କହିଲେ - 'କୁଆଡ଼େ ଥିଲୁ ଗୋବିନ୍ଦ ? ଜନପଦରୁ ଜନପଦ, ଜନପଥରୁ ଜନପଥ ଏକ ଚାଞ୍ଚଲ୍ୟକର ହାସ୍ୟ ରସାତ୍ମକ ସମ୍ବାଦ ପ୍ରଚାରିତ ହେଉଛି ଯେ ମତ୍ସ୍ୟ ଦେଶ ଆଜି ଶାନ୍ତିର ନିଃଶ୍ୱାସ ନେଉଛି । ଯେଉଁ କୀଚକର ବାହୁବଳରେ ମତ୍ସ୍ୟ ଅଧିପତି ବିରାଟ ଅଜେୟ ରାଜରାଜେଶ୍ୱର ହୋଇ ବସିଥିଲେ ସେହି କୀଚକକୁ କୁଆଡ଼େ ରଙ୍ଗଶାଳାରେ ଏକ ବଳିଷ୍ଠ ବପୁ ବିଶିଷ୍ଟା ନାରୀ ହିଁ ନିଧନ କରିଛି !'

ମୁଁ ସନ୍ଦିଗ୍ଧ କଣ୍ଠରେ ପ୍ରଶ୍ନ କଲି - 'ନାରୀ ? ଆପଣ ନିଶ୍ଚିତ ଯେ ନାରୀ ?' ଜ୍ୟେଷ୍ଠଭ୍ରାତା ହାସ୍ୟ ସମ୍ବରଣ କରୁ କରୁ କହିଲେ- 'ଆମର ଦୂତ ନିଶାନ୍ତ ଜଣେ ପ୍ରତ୍ୟକ୍ଷଦର୍ଶୀଠାରୁ ଶୁଣି ଆସିଛି । ସେ ନାରୀ ପୁଣି ମଲ୍ଲଯୁଦ୍ଧରେ ବିଚକ୍ଷଣ ପାରଦର୍ଶିତା ପ୍ରଦର୍ଶନ କରିଛି କୀଚକ ଭଳି ମଲ୍ଲଯୋଦ୍ଧା ସହ । ନିଶାନ୍ତ, ତୁମେ କ'ଣ ଶୁଣି ଆସିଛ କୁହ !'

ନିଶାନ୍ତକୁ ମୁଁ ହିଁ ପଠାଇଥିଲି । ପ୍ରିୟଜନର ସମ୍ବାଦ ପାଇବା ପାଇଁ ମୁଁ ଉତ୍‌କଣ୍ଠିତ ହୋଇ ରହିଥିଲି । କିନ୍ତୁ ନିଶାନ୍ତକୁ କିପରି ପଚାରିବି ସେ କଥା ଭାବି ପାରୁନଥିଲି । ଯଦି ନିଶାନ୍ତର ଅସତର୍କତା ବଶତଃ ପ୍ରିୟଜନର ପ୍ରକୃତ ପରିଚୟ ପ୍ରକାଶ ପାଏ ? ନିଶାନ୍ତ କିନ୍ତୁ ଚତୁରତାର ସହ କହିଲା - 'ପ୍ରଭୁ ! ମୋର ପତ୍ନୀର ମାମୁଁ ଝିଅ ଭଉଣୀର ନଣନ୍ଦ ଘର ମତ୍ସ୍ୟଦେଶରେ । ଏବେ କୁଆଡ଼େ ସେଠାରେ ଭୂତଭୟ ବ୍ୟାପିଛି । ବିରାଟ ନଗରୀର ଉପକଣ୍ଠରେ ଯେଉଁଠି ଗୁଳ୍ମାଚ୍ଛାଦିତ ଅଯତ୍ନ ବର୍ଦ୍ଧିତ ବୃକ୍ଷରାଜି ସେଠାରେ ଏକ ଶ୍ମଶାନ । ସେହି ଶ୍ମଶାନର ଉତ୍ତର ପାର୍ଶ୍ୱରେ ବହୁ ଦିନରୁ ଏକ ଶମୀ ଓ ଶିଂଶପା ତରୁ ପରସ୍ପର ସଂଲଗ୍ନଭାବେ ବର୍ଦ୍ଧିତ ହୋଇଆସିଛନ୍ତି । ସେହି ବୃକ୍ଷ ଶୀର୍ଷରେ ଏକ ଶବ ଝୁଲନ୍ତି ଅବସ୍ଥାରେ ରହିଛି । ଦିନ ପରେ ଦିନ ଅତିକ୍ରାନ୍ତ ହେଉଛି ଅଥଚ ସେହି ଶବର ମୃତ କଳେବର ଗଳିତ ହେଉନାହିଁ ବା ଦୁର୍ଗନ୍ଧ ଯୁକ୍ତ ହେଉନାହିଁ । ଲୋକେ ଭୟରେ ସେ ଦିଗକୁ ଯାଉନାହାନ୍ତି । ପ୍ରତ୍ୟହ ମଧ୍ୟରାତ୍ରିରେ ହୁଏତ କୌଣସି ତାନ୍ତ୍ରିକ ସେଠାକୁ ଶବ ସାଧନା ନିମିତ୍ତ ଆସୁଛି । କାରଣ ସକାଳୁ ସଦ୍ୟ ରକ୍ତ ଗଛ ମୂଳେ ପଡ଼ିଥିବାର ଦେଖାଯାଉଛି । ସେହି ତାନ୍ତ୍ରିକକୁ କେହି ଦେଖି ନାହାନ୍ତି; କିନ୍ତୁ ସେ ରାସ୍ତାରେ ଲୋକ ଚଳାଚଳ ବନ୍ଦ ହୋଇଯାଇଛି । ମୋର ସେହି ସଂପର୍କୀୟ ବନ୍ଧୁ କହୁଥିଲେ, ମତ୍ସ୍ୟ ଦେଶର ଏହା ଦୁର୍ଭାଗ୍ୟ କି ସୌଭାଗ୍ୟ ଜାଣି ହେଉନାହିଁ । ଯଦିଓ ଏହି ଶବ ସାଧନା ହେତୁ ସାଧାରଣ ପ୍ରଜାଙ୍କର କୌଣସି କ୍ଷତି ହୋଇନାହିଁ, ମାତ୍ର କୀଚକ ଓ ତାର ଭ୍ରାତାଗଣଙ୍କର ମୃତ୍ୟୁ ହୋଇଛି । ଅବଶ୍ୟ ରାଜ୍ୟବାସୀ ଆଶ୍ୱସ୍ତ ହୋଇଛନ୍ତି । ଅତ୍ୟାଚାରୀ କୀଚକର କବଳରୁ ସେମାନଙ୍କୁ ମୁକ୍ତି ମିଳିଛି ।'

ମୁଁ ପ୍ରଶ୍ନ କଲି 'ଏହି ଶବସାଧନା ସହ କୀଚକ ମୃତ୍ୟୁର କିଛି ସଂଯୋଗ ଅଛି ?'

- 'ନା - ନା - ତା' ମଧ୍ୟ ନୁହେଁ । ଘଟଣା ଯେତିକି ଆକସ୍ମିକ ସେତିକି ରହସ୍ୟମୟ । ଏଇ କିଛି ଦିନ ତଳେ ବିରାଟରାଣୀ ସୁଦେଷ୍ଣାଙ୍କ ଅନ୍ତଃପୁରରେ କେଶବିନ୍ୟାସ କାରିଣୀ ସୈରିନ୍ଧ୍ରୀ ଭାବେ୍ ଜଣେ ଅସାମାନ୍ୟା ସୁନ୍ଦରୀ ଘନକୁନ୍ତଳା ନାରୀ ନିଯୁକ୍ତି ପାଇଥିଲେ । ତାଙ୍କ ନିଯୁକ୍ତି ସହ ବହୁ ସର୍ତ୍ତ ମଧ୍ୟ ସେ ରଖିଥିଲେ । ତାଙ୍କର ପାଞ୍ଚୋଟି ଗନ୍ଧର୍ବପତି ଅଦୃଶ୍ୟ ଭାବେ ରହି ତାଙ୍କୁ ସୁରକ୍ଷା ବି ଦିଅନ୍ତି । ବିରାଟ ନଗରରେ ବସନ୍ତ ଉତ୍ସବ ଅନୁଷ୍ଠିତ ହେବା ଅବସରରେ କୀଚକ ସେହି ସୁନ୍ଦରୀ ଶିରୋମଣିଙ୍କୁ ଦେଖି ପ୍ରଲୁବ୍ଧ ହୋଇପଡ଼ିଲା । ଏମିତିକି ଶୁଣାଯାଏ ପ୍ରାଣ ପର୍ଯ୍ୟନ୍ତ ପଣ ରଖିବାକୁ ଅକାତର ହୋଇପଡ଼ିଲା । ତା'ର ଅନୁରୋଧକ୍ରମେ ରାଣୀ ସୁଦେଷ୍ଣା ସୁରାପୂର୍ଣ୍ଣ କଳସଟିଏ ତା ହାତରେ କୀଚକର ଅନ୍ତଃପୁରକୁ ପଠେଇଥିଲେ । ସୈରିନ୍ଧ୍ରୀ ସୁରା କଳସ ରଖି ଆସିବା ସମୟରେ କୀଚକ ତାଙ୍କ ପ୍ରତି ଅସଦାଚରଣ ପ୍ରଦର୍ଶନ କରିଥିଲା । ସୈରିନ୍ଧ୍ରୀ ଅଗତ୍ୟା ରୁଦ୍ଧଶ୍ୱାସରେ ଧାଇଁ ଧାଇଁ ଦରବାର କକ୍ଷରେ ପହଞ୍ଚିଗଲେ ଆତ୍ମରକ୍ଷା ପାଇଁ । ବିରାଟ ରାଜା ବି ଏଭଳି ହୀନବଳଯେ ଗୋଟିଏ ଆର୍ତ୍ତନାରୀକୁ ସୁରକ୍ଷା ଦେଇ ପାରିଲେ ନାହିଁ; ବରଂ ତାଙ୍କ ଦରବାରରେ ଆସୀନ ଜଣେ ଦ୍ୟୁତ ବିଶାରଦ ନିର୍ଲଜ ଭାବେ  ପରାମର୍ଶ ଦେଲେ ବଳଶାଳୀ କୀଚକ କବଳରୁ ଯେତେବେଳେ ଏ ନାରୀକୁ କେହି ସୁରକ୍ଷା ଦେଇ ପାରିବେ ନାହିଁ ସେତେବେଳେ ଏ ସୈରିନ୍ଧ୍ରୀ ଦ୍ୱିତୀୟ ସ୍ୱାମୀକୁ ଭଜନ କରୁ ।'

ଏତିକି ଶୁଣିବା ମାତ୍ରେ ମୁଁ ସ୍ଥାନ କାଳପାତ୍ର ଭୁଲି ଅଟ୍ଟହାସ୍ୟ କରି ଉଠିଥିଲି । ମୋର ଏ ଇତରତାରେ କ୍ଷୁବ୍ଧହୋଇ ଜ୍ୟେଷ୍ଠଭ୍ରାତା କୋପାବିଷ୍ଟ ହୋଇ ରୁଦ୍ଧ ସ୍ୱରରେ କହିଲେ - 'ଗୋବିନ୍ଦ ! ତୋର ସବୁ ଏମିତି ବିପରୀତ କାହିଁକି ? ଗୋଟିଏ ଅସହାୟା ନାରୀକୁ ସୁରକ୍ଷା ଦେବା ପରିବର୍ତ୍ତେ ରାଜ କର୍ମଚାରୀଗଣ ଏ ପ୍ରକାର ଅଶାଳୀନ ପରାମର୍ଶ ଦେଇଛନ୍ତି, ତଥାପି ତୁ ହସୁଚୁ ?'

ନିଶାନ୍ତ ଅଧରର ହସକୁ ଢୋକି ଦେଉ ଦେଉ କହିଲା - 'ତାହାହିଁ ତ ଆଶ୍ଚର୍ଯ୍ୟ ! ନିଜେ ସୈରିନ୍ଧ୍ରୀ କୁଆଡ଼େ କହିଥିଲେ ସେଦିନ କୀଚକର ରଙ୍ଗମହଲରେ ଉପସ୍ଥିତ ହେବେ; ଷୋଡ଼ଶ ଶୃଙ୍ଗାର ସହ । କିନ୍ତୁ ରଙ୍ଗମହଲରେ ଗୋଟିଏ ପ୍ରଦୀପ ସୁଦ୍ଧା ପ୍ରଜ୍ୱଳିତ ହେବ ନାହିଁ । ଲଂପଟ କୀଚକ ଆସବମତ୍ତ ଅବସ୍ଥାରେ ଅପେକ୍ଷା କରିଥିଲା, ସୈରିନ୍ଧ୍ରୀ ସେ ରଂଗମହଲ ଉଦ୍ଦେଶ୍ୟରେ ଯିବା ମଧ୍ୟ କୀଚକର ଦାସୀ ଚଞ୍ଚଳାକ୍ଷୀ ଦେଖିଛି । ରଂଗମହଲର ଅପର ପାର୍ଶ୍ୱରେ ରାଜକନ୍ୟା ଉତ୍ତରାଙ୍କ ନୃତ୍ୟଗୁରୁ ସାରାରାତି ମୃଦଙ୍ଗ ବାଦନ କରୁଥିଲେ, କ'ଣ ଏକ ନୂଆ ତାଳର ଅଭ୍ୟାସ କରୁଥିଲେ । ସକାଳୁ ଦେଖାଗଲା ବଳବୀର୍ଯ୍ୟଶାଳୀ କୀଚକର ଶବପିଣ୍ଡ ଗୋଟିଏ କର୍ଦ୍ଦମର ପିଣ୍ଡ ଭଳି ରଂଗମହଲର ଭୂମିଶଯ୍ୟାରେ ରକ୍ତଲିପ୍ତ ଭାବେ ପଡ଼ିରହିଛି । କେହି କେହି କହୁଛନ୍ତି ରଂଗମହଲରୁ ଗଭୀର ନିଶାର୍ଦ୍ଧରେ ମଲ୍ଲଯୁଦ୍ଧର ଶବ୍ଦ ବି ଶୁଭୁଥିଲା !'

ମୁଁ କୌତୁକ ପ୍ରବଣ ଭାବେ କହି ଉଠିଲି - 'ମାନେ ? ସୈରିନ୍ଧ୍ରୀଙ୍କ ଭଳି ରୂପସୀ ନାରୀଟିଏ କ'ଣ କୀଚକ ସହ ମଲ୍ଲଯୁଦ୍ଧରେ ବ୍ୟାପୃତ ଥିଲେ ନା କ'ଣ ?'

ନିଶାନ୍ତ କହିଲା - 'ନା ମହାଭାଗ ! ରାଜକନ୍ୟାଙ୍କ ନୃତ୍ୟଗୁରୁ କହୁଥିଲେ ସୈରିନ୍ଧ୍ରୀଙ୍କ ଗନ୍ଧର୍ବ ପତି ସ୍ତ୍ରୀ ଲାଂଛନା ସହ୍ୟ କରନ୍ତି ନାହିଁ । ସେଇ ଅଦୃଶ୍ୟ ଗନ୍ଧର୍ବ ପତିଙ୍କ ହସ୍ତରେ ନିଶ୍ଚିତ ଭାବେ କୀଚକର ମୃତ୍ୟୁ ହୋଇଛି । ସେ ଯାହାବି ହେଉ ବିରାଟ ନଗରୀ ଆଶ୍ୱସ୍ତ ହୋଇଛି । ପ୍ରଜାକୁଳ ନିଶ୍ଚିନ୍ତ ହୋଇଛନ୍ତି ।'

ମୁଁ ଗମ୍ଭୀର ଭାବେ ପ୍ରଶ୍ନ କଲି - 'ତାପରେ ?'

ଜ୍ୟେଷ୍ଠଭ୍ରାତା ଉତ୍ସାହିତ ହୋଇ କହିଲେ - 'ତାପରେ ଆଉ କ'ଣ ? ପ୍ରିୟ ଭ୍ରାତାର ମୃତ୍ୟୁର ହେତୁ ସୈରିନ୍ଧ୍ରୀଙ୍କୁ ରାଣୀ ସୁଦେଷ୍ଣା ବହିଷ୍କାର କରିବାକୁ ଚିନ୍ତା କରିଥିଲେ; କିନ୍ତୁ ସେଇ ଗନ୍ଧର୍ବ ପତିଙ୍କ ଭୟରେ ସେ ଯୋଜନାରୁ ନିବୃତ ହେଲେ । ସୈରିନ୍ଧ୍ରୀ କହୁଛନ୍ତି ଆଉ ଅଳ୍ପ କେତୋଟି ମାସପରେ ତାଙ୍କର ଗନ୍ଧର୍ବ ପତିଗଣ ଶାପମୁକ୍ତ ହେବେ ! ତାପରେ ସେ ତାଙ୍କ ସ୍ୱାମୀଙ୍କ ସହ ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ କରିବେ ।'

ମୁଁ କେବଳ ଅନ୍ୟମନସ୍କ ଭାବେ 'ହୁଁ' ଟାଏ କହି ମନେ ମନେ ଉଚ୍ଚାରଣ କଲି - 'ତମେ କେମିତି ଜାଣିବ ଗୋ କୃଷ୍ଣା, ଏଇ ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ କରିବାପାଇଁ ତୁମ୍ଭମାନଙ୍କୁ ରକ୍ତର ଦରିଆଟାଏ ପାରିହୋଇ ଯିବାକୁ ପଡ଼ିବ ?'

●

## ।। ବିଂଶତି ଗ୍ରନ୍ଥି ମୋଚନ ।।

ଭାବକୁ ନିକଟ - ଅଭାବରେ ବହୁ ଦୂର । ଏଇ ଗୋଟିଏ କଥାରେ ମୁଁ ସର୍ବଦା ବିଶ୍ୱାସ କରିଆସିଛି । କୁନ୍ତୀ ନନ୍ଦନଙ୍କ ସହ ଦ୍ରୁପଦ ତନୟା ଭାବରେ ହିଁ ମୋତେ ବଶୀଭୂତ କରିଆସିଛନ୍ତି । କେତେ କେତେ ପରୀକ୍ଷାର ସମ୍ମୁଖୀନ ସେମାନେ ନ ହୋଇଛନ୍ତି ? କୌରବ ପକ୍ଷର ସେହି ଜଘନ୍ୟ ଷଡ଼ଯନ୍ତ୍ର, ଯାହାର ତିକ୍ତ ସ୍ମୃତି ଏବେବି ମୋ ପ୍ରାଣକୁ ମନ୍ଥନ କରେ । କୌରବ ପକ୍ଷରୁ ଦ୍ୟୁତ କ୍ରୀଡ଼ାର ଆମନ୍ତ୍ରଣ, ଯୁଧିଷ୍ଠିରଙ୍କ ସହ ଦୁର୍ଯୋଧନର ପ୍ରତିନିଧି ରୂପେ ଶକୁନୀର କ୍ରୀଡ଼ା ଓ ପ୍ରତାରଣା, ଯୁଧିଷ୍ଠିରଙ୍କ ପରାଜୟ ସର୍ବୋପରି କୁରୁଦରବାରରେ ଅଗଣିତ ପୁରୁଷଙ୍କ ସମ୍ମୁଖରେ ପାଞ୍ଚାଳୀ ଲାଂଛନ ଚିରଦିନ ମହାକାଳର ଲଲାଟରେ କଳଙ୍କ ଟୀକା ସଦୃଶ ଲାଂଛିତ ହୋଇ ରହିଥିବ । ବହୁବାର କୃଷ୍ଣା ମୋତେ ପ୍ରଶ୍ନ କରିଛନ୍ତି ତାଙ୍କ ଭାଗ୍ୟ ଏପରି ବିପରୀତ କାହିଁକି ? ମୋତେ ଆଶ୍ରୟ କରିଥିବା କିଏ ବା ମରିନାହିଁ ? କିଏ ବା ତରିନାହିଁ ? କିଏ ବା ବୁଡ଼ି ନାହିଁ ? କିଏ ବା ଉଦ୍ଧାର ପାଇନାହିଁ ?

କୁରୁଦରବାରରେ ଯେତେବେଳେ ଏ ଜଘନ୍ୟ ନାଟକ ଅଭିନୀତ ହେଉଥିଲା, ମୁଁ ସେତେବେଳେ ଦ୍ୱାରକାରେ ଥିଲି, ସତ୍ୟଭାମାଙ୍କ ଅନ୍ତଃପୁରରେ । ହଠାତ୍ ଅନ୍ୟମନସ୍କ ହୋଇଯାଇଥିଲି । ମୋର ସ୍ପଷ୍ଟ ମନେ ଅଛି । ମୋର ମନେ ହୋଇଥିଲା କେହି ଯେମିତି ମୋର ଆତ୍ମୀୟ ସଂପୂର୍ଣ୍ଣ ଆତ୍ମସମର୍ପଣ କରି ପ୍ରାଣାନ୍ତ ଉଦ୍ୟମରେ ମୋତେ ହିଁ ଡାକୁଛି, ଠିକ୍ ପଦ୍ମବନରେ ନକ୍ର କବଳିତ ବିପନ୍ନ ଗଜଭଳି, ଠିକ ବ୍ୟାଧ ଭୟଭୀତା ବିପନ୍ନା ହରିଣୀ ଭଳି, ମୋର ଅନ୍ତରାତ୍ମାକୁ ପ୍ରବଳ ଆଲୋଡ଼ନରେ ଏହା ଆଲୋଡ଼ିତ କଲା । କିଏ ? କିଏ ହୋଇପାରେ ? ସହସ୍ର ଯୋଜନ ଦୂରରୁ ଯାହାର ଆକୁଳତା ମୋତେ ଏଭଳି ଅସ୍ଥିର କରୁଛି ? ସେଦିନ ମୋର କ୍ଷତାକ୍ତ ଅଂଗୁଳିରେ ବନ୍ଧାହୋଇଥିବା ପାଟ ପଣତର ଛିନ୍ନାଂଶ ଭକ୍ତି, ପ୍ରୀତି, ଶ୍ରଦ୍ଧା ଓ ଆତ୍ମସର୍ମପଣର ଅର୍ଘ୍ୟ ହୋଇ ସାଇତା ଥିଲା ମୋ ହୃଦୟରେ । ତାହାହିଁ ସେଦିନ ଅସହାୟା ନାରୀର ଲଜ୍ୟା ଓ ମାନ ସମ୍ଭ୍ରମକୁ ଆବୃତ କରିପକାଇଥିଲା । ବହୁବାର ନିଜକୁ ମୁଁ ପ୍ରଶ୍ନ କରିଛି ଏ ନିର୍ଲଜ୍ଜ ନାଟକ ଅଭିନୟର ଆବଶ୍ୟକତା ଥିଲାକି ? ହୁଏତ ଥିଲା । ପାପର ମାତ୍ରା ନ ବଢ଼ିଲେ ପାପର ବିନାଶ ଯେ ଅସମ୍ଭବ ! ନିର୍ବିରୋଧି ଚିରଶାନ୍ତ ପାଣ୍ଡବଙ୍କ ଅନ୍ତରରେ କୌରବଙ୍କ ପ୍ରତି ବିଷବାଷ୍ପ ଭରିବା ପାଇଁ ଏହାହିଁ ଥିଲା ଏକମାତ୍ର ଉପାୟ । ଧର୍ମର ପ୍ରତିଷ୍ଠା ପାଇଁ ପଞ୍ଚୁପାଣ୍ଡବଙ୍କ ସହ ପାଞ୍ଚାଳୀ ମଧ୍ୟ ଥିଲେ ମୋର ଏକ ଶାଣିତ ଆୟୁଧ ମାତ୍ର ! ନହେଲେ ସେ ଦୃଶ୍ୟର କଳ୍ପନାରେ ସୁଦ୍ଧା ମୁଁ କ'ଣ ମର୍ମାହତ ହୋଇନାହିଁ ? ମୁଁ ବହୁଦିନୁ ସମ୍ବାଦ ସଂଗ୍ରହ କରି ସାରିଥିଲି ଯେ ଦ୍ରୁପଦ ପରିବାରର ପ୍ରତ୍ୟେକ ସଦସ୍ୟଙ୍କ ଅନ୍ତରରେ ପ୍ରତିଶୋଧର ତୃଷାଗ୍ନି ପ୍ରଜ୍ଜ୍ୱଳିତ ହେଉଥିଲା । ପାଞ୍ଚାଳୀଙ୍କ ଜୀବନରେ କୁରୁସଭାରେ ଲାଂଛନା ଜନିତ ଦୁର୍ଘଟଣା ତ ବହୁପରେ ସଂଘଟିତ ହୋଇଥିଲା । ତା'ର ବହୁ ପୂର୍ବରୁ ଆରମ୍ଭ ହୋଇଥିଲା ପ୍ରତିଶୋଧର ଏକ ଅଗ୍ନିପଥ । ଦ୍ରୁପଦ ପରିବାରର ଶିଖଣ୍ଡୀ ପୂର୍ବଜନ୍ମାର୍ଜିତ ବିଦ୍ୱେଷକୁ ହୃଦୟରେ ପୋଷଣ କରି ଜନ୍ମରୁ ଜନ୍ମାନ୍ତର ଅପେକ୍ଷା କରି ରହିଥିଲେ । ତାଙ୍କର ପ୍ରତିପକ୍ଷ ମଧ୍ୟ ଆଶାତୀତ ପ୍ରଚଣ୍ଡ, ଅଟଳ ହିମାଚଳ ସଦୃଶ ଶୁକ୍ଳଶ୍ମଶ୍ରୁ, ଶୁକ୍ଳକେଶ ସମନ୍ୱିତ ପିତାମହ ଭୀଷ୍ମ । କାଶି ରାଜନନ୍ଦିନୀ ଅମ୍ବା ଜୀବନର ଏକ ଅଶାନ୍ତ ଗ୍ରହ । କାହିଁକି କେଜାଣି ବାରମ୍ବାର ଏଇ ଗୋଟିଏ କଥା ମୋର ମନେ ହୋଇଛି ଯେ, କୁରୁପିତାମହ ଭୀଷ୍ମଙ୍କ ଜୀବନରେ ଅମ୍ବାହିଁ ଏକ ଅବାଂଛିତ ଅପରାଧ । ଏଇ ଅପରାଧର ଭାର ପୁରୁବଂଶର ପ୍ରତ୍ୟେକ ନାରୀଙ୍କୁ ବହନ କରିବାକୁ ପଡ଼ିଛି । ନାଃ - କେହି ରକ୍ଷା ପାଇନାହାନ୍ତି । ସତ୍ୟବତୀ, ଅମ୍ବିକା, ଅମ୍ବାଳିକା, ଗାନ୍ଧାରୀ, କୁନ୍ତୀ, ଦ୍ରୌପଦୀ - ଏପରିକି ଉତ୍ତରା ପର୍ଯ୍ୟନ୍ତ ! ସତ୍ୟସନ୍ଧ ଭୀଷ୍ମ ନିଜର ସତ୍ୟରକ୍ଷା ନିମିତ୍ତ ଅମ୍ବାଭଳି ଗୋଟିଏ ନାରୀର ଭାଗ୍ୟକୁ ବିଡ଼ମ୍ବିତ, ବିପର୍ଯ୍ୟସ୍ତ କରିଦେଇଥିଲେ ବୋଲି ପୀଢ଼ି ପରେ ପୀଢ଼ି ପୁରୁବଂଶର ପ୍ରତ୍ୟେକ ନାରୀଙ୍କୁ ଏଥିପାଇଁ ବହୁ ମୂଲ୍ୟ ଦେବାକୁ ପଡ଼ିଛି । ଅମ୍ବାଙ୍କ ଆଖି ଲୁହରେ ସମଗ୍ର ପୁରୁବଂଶ ଧ୍ୱଂସ ହୋଇଯାଇଛି । ସତ୍ୟବତୀଙ୍କୁ ପୁତ୍ର ବିୟୋଗର ଯନ୍ତ୍ରଣା ସହ୍ୟ କରିବାକୁ ପଡ଼ିଲା । ଅମ୍ବିକା ଅମ୍ବାଳିକାଙ୍କ ଜୀବନ

ଯୌବନର ମଧୁମାସରେହିଁ ବିଧ୍ୱସ୍ତ ହୋଇଗଲା । କୁରୁପିତାମହ ଭୀଷ୍ମଙ୍କ ଦ୍ୱାରା ବୀର୍ଯ୍ୟଶୁଳ୍କା ଏହି କନ୍ୟା ଦ୍ୱୟଙ୍କର ବିଚିତ୍ରବୀର୍ଯ୍ୟଙ୍କ ସହ ବିବାହ ସଂପନ୍ନ ହୋଇଥିଲା । ସତ୍ୟବତୀ କୈବର୍ତ୍ତ ପଲ୍ଲୀରୁ ହସ୍ତିନାକୁ ରାଜରାଣୀ ହୋଇ ଆସିବା ପରେ ଭୋଗହିଁ ହୋଇଥିଲା ତାଙ୍କର ଏକମାତ୍ର ଧେୟ ବସ୍ତୁ । ତାଙ୍କର ପୁତ୍ର ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟଙ୍କୁ ସେ କେବଳ ଭୋଗର ଶିକ୍ଷାହିଁ ଦେଉଥିଲେ । ଯୁଦ୍ଧପ୍ରିୟ ଚିତ୍ରାଙ୍ଗଦଙ୍କର ଅହେତୁକ ଯୁଦ୍ଧ ଲାଳସା ହିଁ ତାଙ୍କ ମୃତ୍ୟୁର କାରଣ ହୋଇଥିଲା । ଏହାପରେ ବିଚିତ୍ରବୀର୍ଯ୍ୟଙ୍କ ପାଇଁ ଅନୁଶାସନ ଆହୁରି କୋହଳ ହୋଇଯାଇଥିଲା । ପ୍ରତିପତ୍ତି ଓ କ୍ଷମତାର ଲାଳସା ସହ ଭୋଗେଚ୍ଛା ବଚିତ୍ରବୀର୍ଯ୍ୟଙ୍କ ଅନ୍ତରରେ ପରିପୂର୍ଣ୍ଣ ହୋଇରହିଥିଲା । ତ୍ୟାଗପାଇଁ ସାମାନ୍ୟ ସଂକୀର୍ଣ୍ଣ ପଥସୁଦ୍ଧା ଉନ୍ମୁକ୍ତ ନଥିଲା । ସତ୍ୟବତୀଙ୍କର କେଜାଣି କେମିତି ଧାରଣା ହୋଇଥିଲା ତ୍ୟାଗର ସଂକୀର୍ଣ୍ଣ ଗଳିପଥକୁ ରୁଦ୍ଧ କରାନଗଲେ ସେଇ ପଥ ଦେଇ ହୁଏତ ଯୋଗ୍ୟତମ ବ୍ୟକ୍ତି ଭୀଷ୍ମହିଁ ହସ୍ତିନା ସିଂହାସନରେ ଅଧିରୂଢ଼ ହୋଇପାରନ୍ତି । ମାତ୍ର ତ୍ୟାଗୀ ତପସ୍ୱୀ ଭୀଷ୍ମଙ୍କ ପରିଚୟ ସେ ବା କେତେ ପାଇଥିଲେ ? ଏଇ ଭୋଗେଚ୍ଛାହିଁ ବିଚିତ୍ରବୀର୍ଯ୍ୟଙ୍କର ଅକାଳ ମୃତ୍ୟୁର କାରଣ ହୋଇଥିଲା ।

ପରବର୍ତ୍ତୀ ପୀଢ଼ିରେ ଗାନ୍ଧାରୀ ଓ କୁନ୍ତୀ । ଭାଗ୍ୟର ବିଡ଼ମ୍ବନା ହିଁ ଏମାନଙ୍କର ଜୀବନର ବିପର୍ଯ୍ୟୟ । ଶିଶୁପୁତ୍ରର ଜନନୀ ଗାନ୍ଧାରୀ, ଦିବ୍ୟଦର୍ଶିନୀ ଗାନ୍ଧାରୀ, ଯିଏକି ନିଜର ଅନ୍ଧସ୍ୱାମୀଙ୍କ ଯଥାର୍ଥ ସହଧର୍ମିଣୀ ହେବାର ସଂକଳ୍ପରେ ସାରାଜୀବନ ଆଲୋକଠାରୁ ନିଜକୁ ଦୂରେଇ ରଖିଥିଲେ ଚକ୍ଷୁ ଦୁଇଟିକୁ ଅନ୍ଧପଟିରେ ଆବୃତ କରି, ସେଭଳି ସତୀସାଧ୍ୱୀ ନାରୀକୁ ବାର୍ଦ୍ଧକ୍ୟରେ ଜଣେ ନୁହେଁ ଶତପୁତ୍ର ହରାଇବାକୁ ପଡ଼ିଛି ! ଆଉ କୁନ୍ତୀ ? ତାଙ୍କ ଅନ୍ତର୍ଦାହର ସୀମା ନାହିଁ । କୁମାରୀ ଜୀବନର ଏକ ଅଜ୍ଞାତ ଅପରାଧର ଦୁର୍ବହ ଭାରକୁ ବହନ କରି ସାରାଜୀବନ ଯିଏ ସନ୍ତୁଳି ହୋଇଛନ୍ତି । ଜନନୀ ହୋଇ ଜନ୍ମିତ ସନ୍ତାନର ପରିଚୟ ଗୋପନ ରଖିବାର ଯନ୍ତ୍ରଣା କେବଳ ସଂସାରରେ ଜଣେ କୁନ୍ତୀ ପାଖେ ସମ୍ଭବ ।

ତା' ପରବର୍ତ୍ତୀ ପୀଢ଼ିରେ ପାଞ୍ଚାଳ ତନୟାଙ୍କ ଦୁର୍ଦ୍ଦଶା ସୀମା ନାହିଁ ! ଯଜ୍ଞବେଦୀରୁ ସମ୍ଭୁତା ଏକ ସମ୍ମାନନୀୟା ବିଦୂଷୀ ନାରୀ, ତାଙ୍କୁ ଯେଉଁଭଳି ପରିପୂର୍ଣ୍ଣ ସଭାଗୃହରେ, ଗୁରୁ, ଗୁରୁଜନ, ଶଶୁର, ଶତସଂଖ୍ୟକ ପୁରୁଷଙ୍କ ସମ୍ମୁଖରେ ତାଙ୍କ ବସ୍ତ୍ରହରଣର ଯେଉଁ ଜଘନ୍ୟ ପରିକଳ୍ପନା ତାହା କୌଣସି ନାରୀ ଜୀବନରେ ନ ଆସୁ । ଖାଲି ସେତିକି ନୁହେଁ ସେହି ଚରମ ଲାଞ୍ଛନା ସମୟରେ ଅଂଗରାଜ ଯେଉଁଭଳି ଇତର ଜନୋଚିତ ବିଶେଷଣରେ ଦ୍ରୌପଦୀଙ୍କୁ ଭୂଷିତା କରି ତାଙ୍କ ଅନ୍ତରାତ୍ମାକୁ କ୍ଷତ ବିକ୍ଷତ କରିଦେଇଥିଲେ ସେଭଳି ଯନ୍ତ୍ରଣା କେବେ କୌଣସି ନାରୀ ସହ୍ୟ କରିବା ସମ୍ଭବ କି ? କର୍ଣ୍ଣ ତାଙ୍କୁ 'ବହୁ ବଲ୍ଲଭା ବେଶ୍ୟା', 'ଦାସୀ' ବୋଲି ସମ୍ବୋଧନ କରିଥିଲେ । ହୋମାଗ୍ନି ସମ୍ଭୂତା ଯାଜ୍ଞସେନୀ ସାରାଜୀବନ ଲେଲିହାନ ଅଗ୍ନି

ନ୍ୟାୟରେ ପ୍ରଜ୍ଜ୍ୱଳିତା ହୋଇଛନ୍ତି ପ୍ରତିଶୋଧର ବହ୍ନି କୁଣ୍ଡରେ ଅହରହ ଅବଗାହନ କରିଛନ୍ତି । ଶେଷ ପର୍ଯ୍ୟନ୍ତ ଶାନ୍ତିର ଶୀତଳତା ବିନ୍ଦୁଏ ପାଇଛନ୍ତି କି ? ସର୍ବଗୁଣ ସଂପନ୍ନା, ସର୍ବଶାସ୍ତ୍ର ବିଶାରଦା, ସର୍ବଶ୍ରେଷ୍ଠ ସୁନ୍ଦରୀ ହୋଇ ମଧ୍ୟ ନାରୀର ସମସ୍ତ ପରିଚୟ ତାଙ୍କର ଅପୂର୍ଣ୍ଣ ରହିଯାଇଛି । ସେ ଯଜ୍ଞସେନଙ୍କର କନ୍ୟା ସତ; ମାତ୍ର ଦ୍ରୁପଦରାଣୀଙ୍କ ଜଠରରେ ପ୍ରତିପାଳିତା ହୋଇନାହାନ୍ତି, ଶୈଶବ ଭଳି ଏକ ସୁମଧୁର ଅଧ୍ୟାୟ ତାଙ୍କ ଜୀବନରେ ଆଦୌ ନାହିଁ, ଜନ୍ମ ଲଗ୍ନରୁ ସେ ଯୁବତୀ, ସେ ଜାୟା ସତ; ମାତ୍ର ଅଭିଳଷିତ କୌଣସି ଗୋଟିଏ ପୁରୁଷ ପାଖରେ ସେ ତାଙ୍କର ସର୍ବସ୍ୱ ଅର୍ଘ୍ୟ ରୂପେ ଢାଳି ଦେବାର ସୌଭାଗ୍ୟ ପାଇନାହାନ୍ତି । ପଞ୍ଚପୁରୁଷ ତାଙ୍କ ଉପରେ ଅଧିକାର ସାବ୍ୟସ୍ତ କରିଛନ୍ତି । ସେ ଜନନୀ ସତ; ମାତ୍ର ତାଙ୍କର ପାଞ୍ଚଟି ପୁତ୍ରଙ୍କୁ ଲାଳନ ପାଳନ କରିବାର ସୁଖରୁ ବି ସେ ବଂଚିତା ହୋଇଛନ୍ତି । ଯେଉଁ ଶିଶୁପୁତ୍ରଙ୍କୁ ପରାଶ୍ରୟରେ ଛାଡ଼ି ସେ ପତିଗଣଙ୍କ ସହ ବନବାସିନୀ ହୋଇଥିଲେ, ତ୍ରୟୋଦଶ ବର୍ଷର ଅରଣ୍ୟବାସ ଅବଧି ପୂର୍ଣ୍ଣ ହେବାପରେ ସେ ଶିଶୁ ପୁତ୍ର ଗୁଡ଼ିକ ଯୁବକ ପାଲଟିଯାଇଛନ୍ତି ! ଦ୍ରୌପଦୀ, ସୁଭଦ୍ରା, ଉଲୁପୀ, ହିଡ଼ିମ୍ବା ପ୍ରଭୃତି ପାଣ୍ଡବ ପତ୍ନୀଗଣ ଧର୍ମଯୁଦ୍ଧରେ ବୀରପୁତ୍ରଗଣଙ୍କୁ ହରାଇବାର ଶୋକ ବି ସହ୍ୟ କରିଛନ୍ତି ! ଆଉ କୌରବ ପତ୍ନୀଗଣ ଦାରୁଣ ବୈଧବ୍ୟ ଯନ୍ତ୍ରଣା ସହ ପୁତ୍ର ବିୟୋଗର ଯନ୍ତ୍ରଣା ସହ୍ୟ କରିଛନ୍ତି ! ଏପରିକି ଉତ୍ତରା ପର୍ଯ୍ୟନ୍ତ ସେଥିରୁ ମୁକ୍ତି ପାଇନାହାନ୍ତି !

ଏଇଭଳି କେତେକ'ଣ ଚିନ୍ତାରେ ମୁଁ ବୁଡ଼ି ରହିଥିଲି । ଜ୍ୟେଷ୍ଠଭ୍ରାତା ମୋର କକ୍ଷକୁ ଆସି ମୋ ପାଖରେ ବସି ପଡ଼ିଲେ । ମୋର ଚିନ୍ତାମଗ୍ନ ମୁହଁକୁ କିଛି ସମୟ ନିବିଷ୍ଟଭାବେ ଚାହିଁ ରହିଲେ ଓ ତାପରେ କହିଲେ - 'ନୀଳମଣି ! ପାଣ୍ଡବଙ୍କର କିଛି ସନ୍ଧାନ ମିଳିଲା କି ? ସେମାନଙ୍କ ବିଷୟରେ କୌଣସି ଖବର ସଂଗ୍ରହ ନକରି ତୁ କେମିତି ସ୍ଥିର ରହିପାରିଛୁ ?'

ମୁଁ ଚମକି ପଡ଼ିଲି ମୋ ଅଜ୍ଞାତରେ । ତାପରେ କହିଲି - 'ସନ୍ଧାନ ମିଳିବା ହିଁ ତ ସେମାନଙ୍କ ବିପଦର କାରଣ ହେବ । ବରଂ ଏକବର୍ଷ ସେମାନେ ନିଜର ପରିଚୟ ବିସ୍ମୃତ ହେବାଭଳି ଆମ୍ଭେମାନେବି ସେମାନଙ୍କୁ ବିସ୍ମୃତ ହେବା ଉଚିତ ।'

ବଡ଼ଭାଇ କହିଲେ - 'ପରିଚୟ କିଭଳି ବିସ୍ମୃତ ହେବେ ? ବିଶେଷତଃ ତୋର ସଖା ତୃତୀୟ ପାଣ୍ଡବଙ୍କର ଗାଣ୍ଡିବ ଧନୁ ହିଁ ତ ତାଙ୍କର ପରିଚୟ ପତ୍ର ହୋଇ ତାଙ୍କ ଅଜ୍ଞାତବାସକୁ ବ୍ୟର୍ଥ କରିଦେବ ! ଦେବଦେବ ମହାଦେବଙ୍କର 'ପିନାକୀ' ଧନୁ, ନାରାୟଣଙ୍କର 'ସାରଙ୍ଗ' ଧନୁ, ପର୍ଶୁରାମଙ୍କର 'ଅଜଗବ' ଧନୁ, ଶ୍ରୀରାମଙ୍କ 'କୋଦଣ୍ଡ' ସଦୃଶ ଗାଣ୍ଡିବ ଧନୁ ବି ତ୍ରିଭୁବନ ବିଦିତ ଯେ !'

ମୁଁ କଥାର ଗତିପଥ ପରିବର୍ତ୍ତନ କରିବାକୁ ଚାହିଁଲି । 'ଯେମିତି ଦ୍ୱାଦଶ ବର୍ଷ ଅତିକ୍ରାନ୍ତ ହୋଇଗଲା ଠିକ ସେଇଭଳି ଏକବର୍ଷ ବି ବିତିଯିବ । ତାପରେ କ'ଣ ?'

ବଡ଼ଭାଇ ବେଶ୍ ସହଜଗଳାରେ କହିଲେ - 'ସର୍ତ୍ତ ଅନୁଯାୟୀ ପାଣ୍ଡବଗଣ ପୁନର୍ବାର ଇନ୍ଦ୍ରପ୍ରସ୍ଥରେ ରାଜତ୍ୱ କରିବେ ।'

ଜ୍ୟେଷ୍ଠଭ୍ରାତାଙ୍କ କଥାଶୁଣି ମୁଁ ହସିଲି - 'ଏକଥା ଯେତେ ସହଜ ମନେ ହେଉଛି ପ୍ରକୃତରେ ତା' ନୁହେଁ । ଅଧେ ରାଜ୍ୟତ ପାଣ୍ଡବଙ୍କୁ ପ୍ରାପ୍ତ ହୋଇଥିଲା ! ପୁଣି କୌଶଳରେ ତାଙ୍କ ଠାରୁ ସେସବୁ ନିଆଯାଇ ନାହିଁକି ? ଦେବାର ଇଚ୍ଛା ଥିଲେ ଏତେ ପ୍ରତାରଣା, ପ୍ରବଞ୍ଚନା, ଶଠତାର ଅବତାରଣା ହୋଇଥା'ନ୍ତା କି ?'

ମୋ କଥା ଶୁଣି ସାତ୍ୟକୀ ଓ ଜ୍ୟେଷ୍ଠଭ୍ରାତା ବିମୂଢ଼ ଦୃଷ୍ଟିରେ ମୋତେ ଚାହିଁ ରହିଲେ ।

ମୁଁ କହିଲି - 'ନିଶାନ୍ତଠାରୁ ଏ ସମ୍ବାଦବି ମୁଁ ସଂଗ୍ରହ କରିଛି ଯେ, ଖାଣ୍ଡବ ବନ ଦହନ ସମୟରେ ଯେଉଁ ନାଗବଂଶୀ ଅଶ୍ୱସେନ ଅର୍ଜ୍ଜୁନଙ୍କ ପ୍ରତି ବିଦ୍ୱେଷଭାବ ପୋଷଣ କରିଆସିଛି, ନାଗକନ୍ୟା ଉଲୁପୀ ଓ ତାଙ୍କ ପୁତ୍ର ଇରାବାନ୍ ଅଶ୍ୱସେନର ଆତ୍ମୀୟ ହେଲେ ସୁଦ୍ଧା ସେ ସେମାନଙ୍କ ସହ ସବୁ ସଂପର୍କ ଛିନ୍ନ କରିଥିଲା କେବଳ ଉଲୁପୀ ଅର୍ଜ୍ଜୁନଙ୍କ ପତ୍ନୀ ଓ ଇରାବାନ୍ ଅର୍ଜ୍ଜୁନଙ୍କ ପୁତ୍ର ବୋଲି । ନାଗବଂଶୀଗଣ ପ୍ରତିଶୋଧ ପରାୟଣ । ସେଇ ଅଶ୍ୱସେନ ଏବେ କୌରବଙ୍କ ଆଶ୍ରିତ ଅର୍ଥାତ ଅଂଗାଧିପତିଙ୍କର ସ୍ୱତନ୍ତ୍ର ଅତିଥି । ତା'ଛଡ଼ା ଦୈତ୍ୟ ଅଳମ୍ବୁଷ ଯିଏ ବୃକୋଦରଙ୍କ ପ୍ରତି ବିଦ୍ୱେଷ ପରାୟଣ ସିଏ ମଧ୍ୟ ଏବେ କୌରବଙ୍କ ଅତିଥିଭବନରେ ବିଶେଷ ଅତିଥିର ମର୍ଯ୍ୟାଦାରେ ଅଛି । ଏମିତି ଆହୁରି ଅନେକ ବି ଥିବେ । ପାଣ୍ଡବଙ୍କ ଶତୃପକ୍ଷକୁ ଏଭଳି ସଂଗଠିତ କରିବାର ଉଦ୍ଦେଶ୍ୟ କେତେ ସ୍ପଷ୍ଟ ତା' ଚିନ୍ତା କର ଭ୍ରାତା !'

ଜ୍ୟେଷ୍ଠଭ୍ରାତା ଚିନ୍ତାମଗ୍ନଭାବେ କହିଉଠିଲେ - 'ନା - ନା ନୀଳମଣି ! ଏହା ତୋର ଅତିଶୟ ପକ୍ଷପାତିତା । କୌରବଗଣଙ୍କୁ ତୁ ଯେତେ ନୀଚମନା ଭାବୁଛୁ, ସେତେ ବେଶୀ ସେମାନେ ନୁହନ୍ତି । ଏଇ ଦ୍ୟୁତକ୍ରୀଡ଼ାରୁ ଦେଖିପାରୁନାହୁଁ ? ଅବଶ୍ୟ ଭୀମ, ଅର୍ଜ୍ଜୁନ, ନକୁଳ ସହଦେବ ନିର୍ଦ୍ଦୋଷ; କିନ୍ତୁ ଧର୍ମରାଜ ଯୁଧିଷ୍ଠିରଙ୍କ ଦ୍ୟୁତପ୍ରତି ଆସକ୍ତି କ'ଣ ସେମାନଙ୍କୁ ବିପଦର ଆବର୍ତ୍ତ ଭିତରକୁ ଠେଲି ଦେଇନାହିଁ ? ଯଦି କୌରବଙ୍କ ସର୍ତ୍ତ ଅଶୋଭନୀୟ, ଅଶାଳୀନ ଥିଲା, ତେବେ ଧର୍ମରାଜ ସେଥିରେ ସହମତ ହେଉଥିଲେ କିପରି ? ସୁକଲ୍ୟାଣୀ ପାଞ୍ଚାଳ ତନୟାଙ୍କୁ ଯେଉଁଭଳି ପଣରଖି ହାରିଲେ ସେଥିପାଇଁ କୌଣସି ଦିନ କେହି ତାଙ୍କୁ କ୍ଷମା କରିପାରିବ କି ? ବିଶେଷତଃ ମୁଁ ଆଦୌ କ୍ଷମା କରିପାରିବି ନାହିଁ ।'

ଉତ୍ତେଜନାରେ ଜ୍ୟେଷ୍ଠଭ୍ରାତାଙ୍କ ମୁଖ ରକ୍ତ ବର୍ଣ୍ଣ ହୋଇଗଲା ।

ମୁଁ ପ୍ରସଙ୍ଗ ପରିବର୍ତ୍ତନ କରିବାକୁ ଯାଇ କହିଲି - 'ଆମ୍ଭେମାନେ ଗୋପରେ ପ୍ରତିପାଳିତ ହୋଇଥିଲେ । ଶୈଶବ ଅତିକ୍ରାନ୍ତ ହେବା ପରେ କୈଶୋରରେ ଜନ୍ମଭୂମି ମଥୁରାରେ

ପଦାର୍ପଣର ସୁଯୋଗ ପାଇଲେ । ଜନନୀ ଦେବକୀଙ୍କ ମନରେ ଏକ ଅବଶୋଷ ରହିଗଲା ଆମର ଶୈଶବ ତାଙ୍କ ସ୍ନେହାଞ୍ଚଳରେ ସଞ୍ଚିତ ହୋଇପାରିଲା ନାହିଁ ଠିକ୍ ସେଇଭଳି ପାଞ୍ଚାଳ ତନୟା ମଧ୍ୟ ତାଙ୍କ ସନ୍ତାନଗଣଙ୍କର ଶୈଶବକୁ ଝୁରି ହେଉଥିବେ । ଆହାଃ !'

ସମଗ୍ର ଆର୍ଯ୍ୟାବର୍ତ୍ତର ସମସ୍ତ ସମ୍ବାଦ ମୋ ପାଖରେ ଯଥା ସମୟରେ ପହଞ୍ଚୁଥିଲା । ସତ୍ୟଭାମା ଓ ସୁଭଦ୍ରା ଉଦ୍ୟାନରେ ଥିଲେ । ମୁଁ ଅଭିମନ୍ୟୁ ସହ ଉଦ୍ୟାନରେ ପହଞ୍ଚିଲି । କାରଣ ଉଦ୍ୟାନପଥ ଦେଇ ନିଶାନ୍ତର ଆସିବାର ଥିଲା । ମୁଁ ତାରି ଅପେକ୍ଷାରେ ଥିଲି । ଗତ କିଛି ଦିନ ହେବ ଏକ ଶ୍ରୁତି ରୋଚକ ସମ୍ବାଦ ଦ୍ୱାରକାରେ ପ୍ରଚାରିତ ହେଉଥିଲା ଯେ ବିରାଟ ରାଜାଙ୍କର ପ୍ରବଳ ପ୍ରତାପୀ ଶ୍ୟାଳକ କୀଚକର ମୃତ୍ୟୁ ହୋଇଛି । ଏହାର ସତ୍ୟତା ଜାଣିବା ପାଇଁ ନିଶାନ୍ତ ଯାଇଥିଲା । ମୁଁ ଅଭିମନ୍ୟୁ ସହ ଉଦ୍ୟାନରେ ପ୍ରବେଶ କରିବା ମାତ୍ରେ ଏକ ହରିଣୀ ଅର୍ଦ୍ଧଭୁକ୍ତ ଦୂର୍ବା ମଂଜରୀକୁ ମୁଖରେ ଧରି ଦ୍ରୁତ ପଦରେ ଧାଇଁବାକୁ ଲାଗିଲା । ଅଭିମନ୍ୟୁ ମଧ୍ୟ କିଛି ସମୟ ତା'ର ପଶ୍ଚାଦ୍‌ଧାବନ କରି ତାକୁ ଧରି ପକେଇ କୋଳାଗ୍ରତ କଲା । ମୁଁ ଜାଣିଛି କୌଣସି ପଶୁପକ୍ଷୀ ମୋତେ ଦେଖି କେବେ ଦୂରକୁ ଯା'ନ୍ତି ନାହିଁ; ବରଂ ମୋ ସହ ଘନିଷ୍ଠ ହେବାକୁ ଚେଷ୍ଟା କରନ୍ତି । ଶୌର୍ଯ୍ୟଯୁକ୍ତ ଅଭିମନ୍ୟୁ ଦେହରେ ରାଜଲକ୍ଷଣ ସୁସ୍ପଷ୍ଟ ।. ପଶୁପକ୍ଷୀ ତାକୁ ଦେଖି ଭୟଭୀତ ହେବା ସ୍ୱାଭାବିକ । ହେଲେ ଅଭିମନ୍ୟୁ ସେ ହରିଣୀଟିକୁ କୋଳାଗ୍ରତ କରି ଅଭୟ ଦେଇ ଯେଉଁଭଳି ଆଦର କରୁଥିଲା ତା'ଲକ୍ଷ୍ୟ କରି ଚିର କୌତୁକିନୀ ସତ୍ୟଭାମା ହସି ପକେଇଲେ ଓ ସୁଭଦ୍ରାକୁ କହିଲେ - 'ଦେଖ ଭଦ୍ରା ! ଆମ ଅଭିମନ୍ୟୁପାଇଁ ଖୋଜି ଖୋଜି ଏମିତି ରାଜକନ୍ୟାଟିଏ ବୋହୂକରି ଆଣିବ, ଯାହାର ଗତିରେ ଏଇ ହରିଣୀ ଭଳି ନୃତ୍ୟର ଛନ୍ଦ ଭରି ରହିଥିବ ।'

ଅଭିମନ୍ୟୁ ଲଜ୍ଜିତ ହୋଇ ସେ ସ୍ଥାନ ତ୍ୟାଗ କରି ଚାଲିଗଲା । ମୁଁ କହିଲି 'ହଁ ଭଦ୍ରା ! କ୍ରମଶଃ ତୁମ ପୁତ୍ର ନବ ଯୁବକରେ ପରିଣତ ହେଲାଣି !'

ଭଦ୍ରା ଗୋଟିଏ ଛୋଟ ଦୀର୍ଘଶ୍ୱାସ ମୋଚନ କଲା । ତା'ର ଉଦାସ ଦୃଷ୍ଟି ଦୂର ଦିଗନ୍ତରେ ହଜିଗଲା । ସେ କିଛି ସମୟ ପରେ କହିଲା - 'ମୁଁ କିଛି ଆଶା ରଖୁ ନାହିଁ । ମନେ ହେଉଛି ଆମ୍ଭମାନଙ୍କ ଜୀବନରେ ସବୁକିଛି ଅନିଶ୍ଚିତ । ଅଭିମନ୍ୟୁ ନବଯୁବକ ହେଲାଣି । ପାଞ୍ଚାଳ ନଗରୀରେ ପ୍ରତିପାଳିତ ଦେବୀ ଦ୍ରୌପଦୀଙ୍କ ପଞ୍ଚପୁତ୍ର ବି ନବଯୌବନରେ ପାଦ ଦେଲେଣି । ତ୍ରୟୋଦଶବର୍ଷ ଅତୀତ ହେବାକୁ ବସିଲାଣି । ଆମେବି କ୍ରମଶଃ ଜରାଗ୍ରସ୍ତ ହେଲୁଣି । ଇନ୍ଦ୍ରପ୍ରସ୍ଥ ଆମ୍ଭମାନଙ୍କପାଇଁ ହୁଏତ ଏକ ଅପହଞ୍ଚ ସୀମା, ଇନ୍ଦ୍ରପ୍ରସ୍ଥରେ ଆମ ସନ୍ତାନଗଣ ପରିବର୍ଦ୍ଧିତ, ପ୍ରତିପାଳିତ ହେବା ପରିବର୍ତ୍ତେ ଦ୍ୱାରକା ଓ ପାଞ୍ଚାଳରେ ଆଶ୍ରିତଭାବେ ରହିଲେ । ପୁଣି ତ୍ରୟୋଦଶ ବର୍ଷପରେ ଆମ୍ଭମାନଙ୍କ ପାଇଁ ଷଡ଼ଯନ୍ତ୍ରର କେଉଁ ନୂତନ ଜାଲ ବୁଣାହୋଇଥିବ କିଏ ଜାଣେ ? ସେମାନଙ୍କ ବିବାହର ସ୍ୱପ୍ନ ଦେଖିବା ମୋ ପାଇଁ ନିତାନ୍ତ ଅବାନ୍ତର ?'

ସତ୍ୟଭାମା ତା' ପିଠିରେ ହାତରଖି ସସ୍ନେହରେ କହିଲେ - 'ଛିଃ ଭଉଣୀ, ଏମିତି ଭାଂଗି ପଡ଼ିଲେ ଚଳିବ ? ଦୁଃଖର ରାତି ପାହିବାକୁ ଆଉତ ବିଳମ୍ବ ନାହିଁ ! ଇନ୍ଦ୍ରପ୍ରସ୍ଥ ତୁମ୍ଭମାନଙ୍କର ନ୍ୟାଯ୍ୟ ଦାବୀ; ବରଂ ଏ ଦାବୀ ପାଇବା ପାଇଁ ଏଥର ପଞ୍ଚୁପାଣ୍ଡବଙ୍କ ପଛକୁ ତାଙ୍କର ବୀର ପୁତ୍ରଗଣ ବି ଠିଆ ହୋଇଯିବେ ।'

ସୁଭଦ୍ରାର ଏଇ ମର୍ମବେଦନା ମୋ ପାଇଁ ଅସହ୍ୟ ପୀଡ଼ାଦାୟକ ଥିଲା । ପ୍ରକୃତରେ କେତେଦିନ ବା ଭୋଗଭାଗ୍ୟରେ ରହିପାରିଛି ସୁଭଦ୍ରା ? ଏ ତ୍ରୟୋଦଶ ବର୍ଷ ପରେ ହୁଏତ ସେ ଆଉ ସେଇ ଧନଞ୍ଜୟଙ୍କୁ ପାଇବ ନାହିଁ ଯାହାଙ୍କୁ ରୈବତକ ପର୍ବତରେ ଦିନେ ଭେଟିଥିଲା । ନିଶାନ୍ତର ଘଣ୍ଟା ଧ୍ୱନୀ ଶୁଣି ମୁଁ ତାକୁ ପାଖକୁ ଡାକିଲି । ସୁଶୀତଳ ଜଳ ପାନ କଲାପରେ ଛାୟାଛନ୍ନ ବୃକ୍ଷ ମୂଳରେ ଶ୍ୱେତ ପ୍ରସ୍ତର ବେଦୀରେ ପରିଶ୍ରାନ୍ତ ନିଶାନ୍ତ କିଛି ସମୟ ବସିବା ପରେ କହିଲା, 'ମହାଭାଗ ! ପ୍ରକୃତରେ କୀଚକର ମୃତ୍ୟୁ ହୋଇଛି । ମୃତ୍ୟୁର କାରଣ ଏକ ନାରୀ !'

ମୋର ଭବିଷ୍ୟତବାଣୀ ତଥା ଦୂରଦୃଷ୍ଟି ସଂପନ୍ନ ଅନ୍ତର୍ବାଣୀ ଯେ ସାର୍ଥକ ହୋଇଛି ସେତିକି ଶୁଣି ମୁଁ ଆଶ୍ୱସ୍ତ ହୋଇଗଲି । ଉତ୍‌ଫୁଲ୍ଲିତ ଭାବେ କହିଲି - 'ନିଶାନ୍ତ ! ନାରୀ ହିଁ ତ ପୁରୁଷର ମୃତ୍ୟୁର ହେତୁ । ତୁମେ କ'ଣ ଦେଖିପାରୁନ ତୁମ ସ୍ୱାମିନୀ ସତ୍ୟଭାମାଙ୍କ କଟାକ୍ଷ ବାଣରେ ଏଇ ବିଚରା କୃଷ୍ଣ ବାସୁଦେବ କିଭଳି ଅହରହ ମୃତ୍ୟୁଯନ୍ତ୍ରଣା ଭୋଗ କରୁଛି !'

ସତ୍ୟଭାମା କପଟ କ୍ରୋଧରେ କହିଲେ - 'କଥାର ଗତିପଥକୁ ପରିବର୍ତ୍ତନ କରିବା କୃଷ୍ଣବାସୁଦେବଙ୍କର ଏକମାତ୍ର ଉଦ୍ଦେଶ୍ୟ ଯଦି ହୋଇଥାଏ ତେବେ ଆମେ ଏ ସ୍ଥାନ ତ୍ୟାଗକରି ଚାଲିଯାଉଛୁ ।'

ମୁଁ ତାଙ୍କ ହାତ ଧରି ଅଟକାଇ ଦେଲି । ନିଶାନ୍ତ କହିଲା - 'କିଛିଦିନ ହେବ ବିରାଟ ରାଣୀଙ୍କ ଅନ୍ତଃପୁରରେ ଏକ ସୈରିନ୍ଧ୍ରୀ ନିଯୁକ୍ତି ପାଇଥିଲା । ଲୋକେତ କହନ୍ତି ସେ ଅତ୍ୟଧିକ ସୁନ୍ଦରୀ । ଦାସୀ ହେବାପାଇଁ ସେ ଜନ୍ମ ନୁହେଁ । ଭାଗ୍ୟଦୋଷରୁ ବିରାଟ ରାଣୀଙ୍କ ଅନ୍ତଃପୁରରେ ସେ କେଶବିନ୍ୟାସ କାରିଣୀ ଭାବେ ଥିଲେ ବି ତା'ର କେତେକ ସର୍ତ୍ତ ଥିଲା । ବିରାଟ ରାଣୀ ସୁଦେଷ୍ଣା ସେ ସର୍ତ୍ତ ଭଙ୍ଗକରି ତାକୁ କୀଚକ ନିକଟକୁ କୀଚକର ଅନୁରୋଧ ରକ୍ଷାକରି ସୁରାକଳସ ସହ ପଠାଇଥିଲେ । କୀଚକର ଅସଦାଚରଣରେ ଉତ୍‌କ୍ଷିପ୍ତା ହୋଇ ସେ ନାରୀ ବିରାଟ ଦରବାରରେ କୀଚକ ବିରୁଦ୍ଧରେ ଅଭିଯୋଗ କରି ବିଫଳ ମନୋରଥ ହୋଇ ଅବଶେଷରେ କୀଚକ ପ୍ରସ୍ତାବରେ ସମ୍ମତି ପ୍ରଦାନ କରି ତା'ର ରଂଗମହଲକୁ ଯାଇଥିଲା ।'

ନିଶାନ୍ତ ମୁହଁରୁ ଏଇ ଶେଷ ବାକ୍ୟଟି ଶୁଣିବା ପରେ ମୋର କୌତୁହଳର ସୀମା ରହିଲା ନାହିଁ । ମୁଁ ପ୍ରଶ୍ନ କଲି - 'ତାପରେ ? ନିଶାନ୍ତ କହିଲା - 'ତାପରେ ଆଉ କ'ଣ ? କେହି

କେହି କହନ୍ତି ସେ ନାରୀ ହୁଏତ ମଲ୍ଲଯୁଦ୍ଧରେ ପାରଙ୍ଗମା କିମ୍ବା ତା'ର ସ୍ୱାମୀ ହୁଏତ ତାକୁ ସୁରକ୍ଷା ଦେବାପାଇଁ ସେ ରାତ୍ରିରେ ସେଠାରେ ଉପସ୍ଥିତ ଥିଲା । ଅନ୍ଧକାର ରାତ୍ରିରେ ରଂଗମହଲର ପ୍ରହରୀ ଗଣ କେବଳ ମୁଷ୍ଟିଯୁଦ୍ଧର ଶବ୍ଦହିଁ ଶୁଣିଛନ୍ତି ଓ ପ୍ରଭାତରେ ରଂଗମହଲରେ କୀଚକର ପ୍ରାଣହୀନ ଶରୀର ପଡ଼ିରହିଥିବା ଦେଖିଛନ୍ତି ଆଉ ସୈରିନ୍ଧ୍ରୀର ବ୍ୟବହୃତ ଖଣ୍ଡେ ଶାଢ଼ୀ ପଡ଼ିଥିବା ମଧ୍ୟ ଦେଖିଛନ୍ତି ।'

ମୁଁ ଉଚ୍ଚ କଣ୍ଠରେ ହସି ଉଠିଲି । ସେ ହସ ସତ୍ୟଭାମା ଓ ନିଶାନ୍ତ ଓଠକୁ ମଧ୍ୟ ସଂକ୍ରମିତ ହୋଇଗଲା । ମୁଁ ହାସ୍ୟ ସମ୍ବରଣ କରି ସତ୍ୟଭାମାଙ୍କୁ କହିଲି - 'ପାରିବ ? ଆତ୍ମମର୍ଯ୍ୟାଦା ରକ୍ଷା ପାଇଁ ଜଣେ ନାରୀ କୀଚକ ଭଳି ବଳଶାଳୀର ଜୀବନ ନାଶ କରିପାରିଛି । ଏହା ଯେତିକି ପ୍ରଶଂସା ଯୋଗ୍ୟ ସେତିକି ବିସ୍ମୟକର ଘଟଣା ।'

ସତ୍ୟଭାମା ଦୁଇ କରଯୁକ୍ତ କରି ମସ୍ତକରେ ଲଗାଇ କହିଲେ - 'ସେ ନାରୀକୁ ମୁଁ ସହସ୍ରବାର ପ୍ରଣାମ କରୁଛି ।' ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ମୁଁ ପ୍ରାୟ ଅତନ୍ଦ୍ର ଭାବେ ବସି ରହିଥିଲି । ହାୟ କୃଷ୍ଣା ! ତୁମର ସୌନ୍ଦର୍ଯ୍ୟହିଁ ଅଶୁଭ ଲଂଜା ତାରାର ପୁଚ୍ଛ ପାଶଭଳି ତୁମ ଜୀବନର ସମସ୍ତ ବିପର୍ଯ୍ୟୟର ହେତୁ ହୋଇ ରହିଛି । ତଥାପି ସେ ବିଷ ବଳୟରୁ ତୁମର ଯେ ନିଷ୍କୃତି ନାହିଁ - ଏ କଥା ଆଦୌ ଭାବିବ ନାହିଁ । ତୁମେ ଓ ମୁଁ - ଦିକ୍‌ବଳୟରେ ପରିଦୃଷ୍ଟ ହେଉଥିବା ମାଟି ଓ ଆକାଶ ଭଳି । ତୁମେ ମୋର ବ୍ୟାପ୍ତିକୁ ଉପଲବ୍‌ଧି କରିଛ, ମୁଁ ବି ତୁମର ମର୍ମ ତଟରେ ପହଞ୍ଚି ସାରିଛି । ତମର ଓ ମୋର ମିଳନ ଅସମ୍ଭବ ହେଲେ ବି ତମେ ଓ ମୁଁ ପରସ୍ପରଠାରୁ ବିଛିନ୍ନ ହେବା ବି ସମ୍ଭବ ନୁହେଁ । ଦୂର ଗଗନର ତାରକାଟିଏ ଭଳି ତମେ ମୋ ଦୃଷ୍ଟିପଥରେ ଅହରହ ଜଳୁଛ ସଖୀ, ବାନ୍ଧି ଦେଇଛ ମୋତେ ଭାବର ଡୋରିରେ । ଏଇ ତମର ପୂର୍ଣ୍ଣତା - ଏଇ ମୋର ପ୍ରାପ୍ତି ।

ଦିନ ନୁହେଁ, ମୁଁ ମୁହୂର୍ତ୍ତ ଗଣୁଥିଲି ପାଣ୍ଡବଙ୍କ ଆତ୍ମପ୍ରକାଶର ।

ଦିନେ ହଠାତ୍ ଜ୍ୟେଷ୍ଠଭ୍ରାତା ବଳରାମ ମୋରି ଭବନ ଆଡ଼କୁ ଆସୁଥିଲେ । ମୋତେ ଦେଖିବା ମାତ୍ରେ ଆନନ୍ଦାତିଶଯ୍ୟରେ ଆଲିଙ୍ଗନ କରି କହିଲେ - 'ଶୁଣିଛ ବୋଧହୁଏ ?'

-'କେଉଁ କଥା ?' ମୁଁ ପ୍ରଶ୍ନ କଲି ।

ଭ୍ରାତା ବଳରାମ କହିଲେ - 'ପାଣ୍ଡବଗଣ ଆତ୍ମପ୍ରକାଶ କରିଛନ୍ତି । ଏକବର୍ଷ କାଳ ମତ୍ସ୍ୟଦେଶରେ ବିରାଟଙ୍କ ରାଜଭବନରେହିଁ ସେମାନେ ଅବସ୍ଥାନ କରୁଥିଲେ ଛଦ୍ମରୂପରେ । କୀଚକର ମୃତ୍ୟୁର କାରଣ ଏଥର ସ୍ପଷ୍ଟ ହୋଇଗଲା । ପାଞ୍ଚଭାଇ ବିରାଟ ରାଜାଙ୍କର ସେବା କରୁଥିଲେ ! ଶେଷକୁ ପାଞ୍ଚାଳ ତନୟା ବି ସୈରିନ୍ଧ୍ରୀ ଭାବରେ ଜୀବିକା ନିର୍ବାହ କରୁଥିଲେ ।'

ମୁଁ ଯଦିଓ ନିଶାନ୍ତଠାରୁ ସମସ୍ତ ସମ୍ବାଦ ସଂଗ୍ରହ କରିସାରିଥିଲି କିନ୍ତୁ ଜ୍ୟେଷ୍ଠଭ୍ରାତାଙ୍କ ଆନନ୍ଦ ଦେଖି ସେ କଥା ନକହି ନଜାଣିବାର ଅଭିନୟ କରି କହିଲି - 'ଏତେ ସବୁ କଥା କିଏ ଆସି କହୁଛି ?' ଭ୍ରାତା ବଳରାମ ଅତ୍ୟନ୍ତ ଆନନ୍ଦରେ କହିଲେ - 'ଅସ୍ତ୍ର କୌଶଳ ପ୍ରଦର୍ଶନ ହିଁ ବୀରର ପରିଚୟ ପତ୍ର ନୀଳମଣି ! କୀଚକର ମୃତ୍ୟୁ ପରେ ବିରାଟଙ୍କ ବାହୁ ବଳ ହ୍ରାସ ପ୍ରାପ୍ତହୋଇଛି ଜାଣି ହସ୍ତିନାର ରାଜକୁମାର ଗଣ ପିତାମହ ଭୀଷ୍ମ, ଆଚାର୍ଯ୍ୟ ଦ୍ରୋଣ, ତ୍ରିଗର୍ତ୍ତ ରାଜ ସୁଶର୍ମା ଓ ଅଂଗାଧିପତି କର୍ଣ୍ଣଙ୍କ ସହ ମତ୍ସ୍ୟ ଦେଶ ଆକ୍ରମଣ କଲେ ବିରାଟଙ୍କ ଗୋ ସଂପଦ ଅପହରଣ କରିବା ନିମିତ୍ତ । ମାତ୍ର ଶୋଚନୀୟ ଭାବେ ପରାଜୟ ଲାଭ କରିଛନ୍ତି । ସବୁଠାରୁ ଯାହା ଅବିଶ୍ୱାସ୍ୟ ତା' ହେଉଛି ତୁମର ସଖା ତୃତୀୟ ପାଣ୍ଡବ କ୍ଲୀବ ବୃହନ୍ନଳା ବେଶରେ ଆତ୍ମଗୋପନ କରିଥିଲେ । ତାଙ୍କରି ସାରଥିତ୍ୱରେ ବିରାଟ କୁମାର ଉତ୍ତର ଯୁଦ୍ଧ ଜୟ କରିଛନ୍ତି ଓ ପାଣ୍ଡବଙ୍କ ଅଜ୍ଞାତବାସ ମଧ୍ୟ ଶେଷ ହୋଇଛି । ଯା' ହେଉ ଗୋଟାଏ ଲଜ୍ଜ୍ୟାକର ଅଧ୍ୟାୟ ଶେଷ ହେଲା । ଏଣିକି ଆମେ ବି ନିଶ୍ଚିନ୍ତ !'

ମୁଁ ରହସ୍ୟମୟ ଭାବେ କହିଲି - 'କିଛି ଶେଷ ହୋଇନାହିଁ ଜ୍ୟେଷ୍ଠଭ୍ରାତ ! ବରଂ ଇଏତ ଅୟମାରମ୍ଭ । ତୁମେ କ'ଣ ଭାବୁଛ ପଣ୍ଡୁସୁତଗଣ ଓ ପାଞ୍ଚାଳତନୟା ସେମାନଙ୍କର ଅପମାନ ଭୁଲିଯାଇଥିବେ ? ଦୁର୍ଯ୍ୟୋଧନ କ'ଣ ଏତେ ସହଜରେ ପାଣ୍ଡବଙ୍କ ନ୍ୟାଯ୍ୟଦାବୀ ମାନିନେବ ?'

ମୋର ଏ ପ୍ରଶ୍ନ କକ୍ଷର ଚାରିକାନ୍ଥରେ ଧକ୍କାଖାଇ ସମସ୍ତଙ୍କୁ ନିର୍ବାକ୍ କରିଦେଲା, ଆତଙ୍କିତ କରିଦେଲା । ଏହି ଅପ୍ରିୟ ପ୍ରସଙ୍ଗର ପୁନରାଲୋଚନା ପାଇଁ ଯେମିତି ଆଉ କେହି ପ୍ରସ୍ତୁତ ନଥିଲେ । ଏହି ଅନୁତ୍ତରିତ ପ୍ରଶ୍ନଟି ସମଗ୍ର ବାୟୁମଣ୍ଡଳକୁ ଭାରୀ କରିଦେଲା ।

କାହିଁକି କେଜାଣି ଅତୀତର ବହୁ ତିକ୍ତ ମଧୁର ସ୍ମୃତି ମୋତେ ଆଚ୍ଛନ୍ନ କରି ରଖିଥିଲା । ଯେତେବେଳେ ମୋ ମନଟା ଅବସାଦରେ ଭାରୀ ହୋଇଉଠେ ସେତେବେଳେ ନିରୋଳା ପରିବେଶରେ କିଛି ସମୟ ବଂଶୀ ବଜେଇଲେ ମୋର ସବୁ ଅବସନ୍ନତା ଦୂର ହୋଇଯାଏ । ଭବିଷ୍ୟତ କର୍ମ ପନ୍ଥା ନିର୍ଦ୍ଧାରଣ କରିବା ପାଇଁ ଶକ୍ତି ମିଳିଯାଏ । ଉଦ୍ୟାନର ଏକ କୋଣରେ କିଛି ସମୟ ବଂଶୀ ବାଦନ ପରେ ମୁଁ ଯେତେବେଳେ ସଂଧ୍ୟା ଉତ୍ତୀର୍ଣ୍ଣ ହେବା ପରେ ରାଜଭବନ ଭିତରକୁ ଆସିଲି, ଲକ୍ଷ୍ୟକଲି କ'ଣ ଏକ ଉତ୍ସବର ତତ୍ପରତା ପରିଲକ୍ଷିତ ହେଉଛି । ମୁଁ ରୁକ୍ମିଣୀଙ୍କ ପାଖରେ ପହଞ୍ଚି ଦେଖିଲି ସେଠାରେ ଭାତୃଜାୟା ଦେବୀ ରେବତୀ, ମୋର ପ୍ରିୟ ବଲ୍ଲରୀ ସତ୍ୟଭାମା, ଜାମ୍ବବତୀ, ରୁକ୍ମିଣୀ, ଭଗିନୀ ସୁଭଦ୍ରା ସମସ୍ତେ ସେଠାରେ ଉପସ୍ଥିତ ଥିଲେ । ଆଉ . ଉପସ୍ଥିତ ଥିଲା ମୋର ପ୍ରିୟ ଭାଗୀନେୟ ଅଭିମନ୍ୟୁ । ମୋତେ ଦେଖିବାମାତ୍ରେ ତା' ମୁହଁସାରା ଆନନ୍ଦ ଓ ଲଜ୍ଜ୍ୟାର ରକ୍ତରାଗ ରଂଜିତ ହୋଇଗଲା । ମୋତେ ଦେଖିପାରି ସମସ୍ତେ କୋଳାହଳ

କରି ଉଠିଲେ - 'କେଉଁଠି ଥିଲେ ଆପଣ ? ଜ୍ୟେଷ୍ଠଭ୍ରାତା ଆପଣଙ୍କୁ କେତେ ଖୋଜିସାରିଲେଣି ? ଉପପ୍ଲବ୍ୟ ନଗରୀରୁ ସ୍ୱତନ୍ତ୍ର ଦୂତ ଆସିଛି ଯେ !'

- 'ଉପପ୍ଲବ୍ୟ ନଗରୀରୁ ? ସ୍ୱତନ୍ତ୍ର ଦୂତ ??'

- 'ହୁଁ ! ଉପପ୍ଲବ୍ୟ ନଗରୀରେ ପାଞ୍ଚାଳୀଙ୍କ ସହ ପାଣ୍ଡବଗଣ ଅବସ୍ଥାନ କରୁଛନ୍ତି ପ୍ରଭୁ ! ଆମ ଅଭିମନ୍ୟୁର ବିବାହ ଉତ୍ସବ ସେଠାରେ ଅନୁଷ୍ଠିତ ହେବ ବିରାଟ ନନ୍ଦିନୀ ଉତ୍ତରାଙ୍କ ସହ । ଆମ ସୁଭଦ୍ରାଙ୍କର, ପ୍ରିୟପାଣ୍ଡବଙ୍କର ପୁତ୍ରବଧୂ ବରଣ ଉତ୍ସବ ଅନୁଷ୍ଠିତ ହେବ ।'

ରୁକ୍ମିଣୀ ଏକା ନିଃଶ୍ୱାସରେ ଏତକ କହିଗଲେ । ଅନ୍ୟନାରୀଗଣ ଅଳଙ୍କାର ପେଟିକାରୁ ଗୋଟିଏ ଅଳଙ୍କାର କାଢ଼ି ଅଭିମନ୍ୟୁକୁ ପିନ୍ଧେଇ ଘଡ଼ିଏ ମୁଗ୍ଧ ହୋଇ ଚାହୁଁଥା'ନ୍ତି, ପରେ ପରେ ତାହା କାଢ଼ି ପୁଣି ଆଉ ଏକ ଅଳଙ୍କାର । ଅଭିମନ୍ୟୁର ମଧ୍ୟ ସେଠାରେ ଆଉ ବସି ରହିବାକୁ ଧୈର୍ଯ୍ୟ ନଥାଏ । ମୁଁ ମୁଗ୍ଧ ଦୃଷ୍ଟିରେ ଅଭିମନ୍ୟୁକୁ ଚାହିଁଲି । ଏଇ ତ୍ରୟୋଦଶ ବର୍ଷ ଭିତରେ ଅନେକ କିଛି ପରିବର୍ତ୍ତନ ହୋଇଗଲାଣି । ନବଯୁବକ ଅଭିମନ୍ୟୁ ବିବାହ ଯୋଗ୍ୟ ବୟସରେ ଉପନୀତ ହେଲାଣି । ଦ୍ରୌପଦୀଙ୍କର ସର୍ବକନିଷ୍ଠ ସନ୍ତାନ ସହଦେବ ତନୟ ମଧ୍ୟ କୈଶୋରର ଶେଷ ପାହାଚରେ ଅବତୀର୍ଣ୍ଣ ହେବଣି ।

ସଛିଦ୍ର କଳସୀର ଜଳ ଭଳି ଆୟୁ । ଭଗ୍ନ ଘଟରୁ ନିଃଶେଷିତ ହେବାକୁ ଆଉ ବା କେତେକ୍ଷଣ ? ସମସ୍ତ ପ୍ରସ୍ତୁତି ତ ମହାକାଳ ଶେଷ କରିସାରିଛି । କେବଳ ରଣଭୂମିର ଅପେକ୍ଷା ! ସେଠାରେ ବି ତ ନିର୍ଦ୍ଦିଷ୍ଟ ଭୂମିକାରେ ଅବତୀର୍ଣ୍ଣ ହେବାକୁ ହେବ ଏମାନଙ୍କୁ ! ତା'ପରେ ନାଟକର ଶେଷ ଯବନିକା ପତନ !

ମୋର ଅନ୍ୟମନସ୍କତା ରୁକ୍ମିଣୀ ଲକ୍ଷ୍ୟ କରି ମୋ ନିକଟକୁ ଆସି ପଚାରିଲେ - 'କ'ଣ ହୋଇଛି ପ୍ରଭୁ ? ଆପଣ ଯେପରି ଏ ଆନନ୍ଦରେ ପୂର୍ଣ୍ଣପ୍ରାଣରେ ଅଂଶଗ୍ରହଣ କରୁନାହାନ୍ତି !'

ମୁଁ ତତ୍‌କ୍ଷଣାତ୍ ତାଙ୍କ କଥାକୁ ହସରେ ଉଡ଼େଇ ଦେଇ କହିଲି - 'ତୁମକୁ ହରଣ କରି ଆଣିବାର ସ୍ମୃତି ମନ୍ଥନ କରୁଥିଲି ତ !'

ଯଦିଓ ମୁଁ ଖୁବ୍ ଧିରେ ତାଙ୍କ କାନ ପାଖରେ ଏକଥା କହିଥିଲି ତଥାପି ସତ୍ୟଭାମା ଓ ଜାମ୍ବବତୀ ଶୁଣିପାରି ହସି ଉଠିଲେ । 'ଅଭିମନ୍ୟୁ ବୀର । ଏତେ ଅଳଙ୍କାରର ପ୍ରୟୋଜନ ନାହିଁ । ତାଙ୍କୁ ବୀର ସାଜରେ ସଜେଇ ଦିଅ । ବିରାଟ ରାଜନନ୍ଦିନୀ ଜାଣନ୍ତୁ ସେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ, ଯଶସ୍ୱୀ ବୀରକୁ ବରଣ କରିବାକୁ ଯାଉଛନ୍ତି !'

ଏତିକି କହି ଅଭିମନ୍ୟୁକୁ ଆଲିଙ୍ଗନ କରି ତା' ମସ୍ତକ ଆଘ୍ରାଣକଲି ଓ ଯାତ୍ରାର

ଆୟୋଜନ ପାଇଁ ସେ କକ୍ଷରୁ ନିଷ୍କ୍ରାନ୍ତ ହେଲି । କାରଣ ମୁଁ ଜାଣିଥିଲି ସୁଭଦ୍ରା ଓ ଅଭିମନ୍ୟୁ ସହ ଉପପ୍ଲବ୍ୟ ନଗରୀକୁ ମୋତେ ନିଶ୍ଚୟ ଯିବାକୁ ପଡ଼ିବ ।

ଆମ୍ଭେମାନେ ଉପପ୍ଲବ୍ୟ ନଗରୀରେ ପହଞ୍ଚିବା ବେଳକୁ ପାଞ୍ଚାଳରୁ ଧୃଷ୍ଟଦ୍ୟୁମ୍ନଙ୍କ ସହ ଦ୍ରୌପଦୀଙ୍କ ପଞ୍ଚପୁତ୍ର ଉପସ୍ଥିତ ହୋଇସାରିଥିଲେ । ବିରାଟଙ୍କର ବହୁ ଆତ୍ମୀୟ ତଥା ବହୁ ରାଷ୍ଟ୍ରର ମୁଖ୍ୟ ଗଣ ରାଜଭବନରେ ପଦାର୍ପଣ କରିସାରିଥିଲେ ଓ ମତ୍ସ୍ୟାଧିପତି ବିରାଟ ପ୍ରତ୍ୟେକଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଜ୍ଞାପନ କରୁଥିଲେ । ଅଭିମନ୍ୟୁକୁ ଦେଖି ତାଙ୍କର ତ ତନ୍ମୟ ହେବାର କଥା । କିନ୍ତୁ ମୋତେ ଦେଖି ସେ ଏଭଳି ତନ୍ମୟ ହୋଇଗଲେ ଯେ, ମୋ କଣ୍ଠରେ ପୁଷ୍ପମାଲ୍ୟ ଦେବା ପରିବର୍ତ୍ତେ ମୋ ପଦ ଯୁଗଳରେ ଅର୍ପଣ କଲେ । ତାଙ୍କର ସତ୍ତ୍ୱ ବିକାର ଲକ୍ଷ୍ୟକରି ମୁଁ ଅଭିଭୂତ ହୋଇ ପଡ଼ିଲି । ବିରାଟ ରାଜାଙ୍କର ମୁଖ୍ୟ ତୋରଣ ଦ୍ୱାର ନିକଟରେ ବିରାଟ, ସୁଦେଷ୍ଣା, ଶ୍ୱେତ, ଶଙ୍ଖ, ଉତ୍ତରଙ୍କ ସହ ପଞ୍ଚପାଣ୍ଡବ, ପାଞ୍ଚାଳୀ ଓ ତାଙ୍କ ସନ୍ତାନଗଣ ଉପସ୍ଥିତ ଥିଲେ । ଦୀର୍ଘ ବର୍ଷ ପରେ ମୋ ସହ ସେମାନଙ୍କର ସାକ୍ଷାତ । ସେଇ ଯେ କାମ୍ୟକ ବନରେ ଦେଖା ହୋଇଥିଲା, ତାପରେ ଅନେକ ଦିନ ବିତିଯାଇଛି । ଜୀବନ ସହ ସଂଘର୍ଷ କରି କରି, ଦୁଃଖର ସାଧନା କରି କରି ପଣ୍ଡୁପୁତ୍ର ଗଣ ତଥା ପାଞ୍ଚାଳ ନନ୍ଦିନୀ ଆହୁରି ଅଧିକ ଧୈର୍ଯ୍ୟ ଓ ସ୍ଥୈର୍ଯ୍ୟର ବଶବର୍ତ୍ତୀ ହୋଇଛନ୍ତି, ପରିଣତ ବୟସ ସେମାନଙ୍କ ମୁଖମଣ୍ଡଳରେ ଅସମ୍ଭବ ଗାମ୍ଭୀର୍ଯ୍ୟର ପ୍ରଲେପ ଦେଇଛି । ମୁକୁଳିତ କେଶା ପାଞ୍ଚାଳୀଙ୍କର ସେହି ରକ୍ଷ କେଶଗୁଚ୍ଛରେ ମୋର ଦୃଷ୍ଟି ପଡ଼ିବାମାତ୍ରେ ପାଞ୍ଚାଳୀଙ୍କ ଚକ୍ଷୁ ଦୁଇଟି ଅଶ୍ରୁପୂରିତ ହୋଇ ଉଠିଲା । ଅଶ୍ରୁରୁଦ୍ଧ କଣ୍ଠରେ ସେ କେବଳ ଉଚ୍ଚାରଣ କଲେ - 'କେଶବ !'

ସେତିକିରେ ମୋର ହୃଦବୋଧ ହେଲାଯେ, ନା - ଏମାନେ କିଛି ବି ଭୁଲି ନାହାନ୍ତି, ଭୁଲିବା ସମ୍ଭବ ନୁହେଁ । ଥାଉ ସେ କଥା ପରେ । ବର୍ତ୍ତମାନତ ଆନନ୍ଦ ଉତ୍ସବ ଅନୁଷ୍ଠାନର ସମୟ । କୁନ୍ତୀ ନନ୍ଦନଗଣଙ୍କର ଆବେଗ ସ୍ପନ୍ଦିତ କଳେବର କଂପିତ ହେଉଥିଲା । ମୁଁ ସେ ବାୟୁମଣ୍ଡଳକୁ ଭାରମୁକ୍ତ କରିବା ପାଇଁ କହିଲି - 'ବିରାଟ ରାଜନନ୍ଦିନୀଙ୍କ ବିବାହ ଉତ୍ସବରେ କିଏ କେଉଁ କାର୍ଯ୍ୟର ଦାୟିତ୍ୱ ନେଇଛନ୍ତି ?'

ଦ୍ୱିତୀୟ ପାଣ୍ଡବ ତତ୍‌କ୍ଷଣାତ କହିଉଠିଲେ - 'ବଲ୍ଲବ ସୂପକାର ଭୋଜ୍ୟ ସାମଗ୍ରୀ ତଥା ପାକଶାଳାର ଦାୟିତ୍ୱ ନେଇଛି ।'

ତାଙ୍କ କଥନ ଭଂଗୀରେ ସମସ୍ତେ ହସି ଉଠିଲେ । ମୁଁ କୌତୁକପୂର୍ଣ୍ଣ କଣ୍ଠରେ କହିଲି - 'ତେବେତ ବୃହନ୍ନଳାଙ୍କର ସୁଲଳିତ ସ୍ୱର ମୂର୍ଚ୍ଛନାବି ଶୁଣିବାକୁ ମିଳିବ ! ଆଉ କୃଷ୍ଣା ?'

କୃଷ୍ଣା କହିଲେ - 'ରାଜନନ୍ଦିନୀଙ୍କର ଉତ୍ତମ କେଶବିନ୍ୟାସର ଦାୟିତ୍ୱ ଯେ ମୋର !'

ରାଣୀ ସୁଦେଷ୍ଣା ଲଜ୍ଜିତା ଭାବେ ପାଞ୍ଚାଳୀଙ୍କ ହାତଦୁଇଟି ଧରି ପକେଇ କହିଲେ - 'ଆଉ ଲଜ୍ୟା ଦିଅନ୍ତୁ ନାହିଁ । ଆମ୍ଭେମାନେ ଜାଣିନପାରି....... ।'

ପାଞ୍ଚାଳୀ ହସି ହସି କହିଲେ - ଓ ! ଜାଣିଥିଲେ ଆଶ୍ରୟ ଦେଇନଥା'ନ୍ତେ ପରା !'

ଦୀର୍ଘ ସାତଦିନ ଧରି ଆନନ୍ଦ ଉତ୍ସବ ଭିତରେ ଅଭିମନ୍ୟୁ ଓ ଉତ୍ତରାଙ୍କର ବିବାହ ଉତ୍ସବ ଅନୁଷ୍ଠିତ ହୋଇଗଲା । ଯୁଧିଷ୍ଠିରଙ୍କ ସନିର୍ବନ୍ଧ ଅନୁରୋଧକ୍ରମେ ମୋତେ କିଛିଦିନ ସେମାନଙ୍କ ନିକଟରେ ଅଟକି ରହିବାକୁ ହେଲା । ଏକଦା ପାଞ୍ଚଭାଇଙ୍କ ସହ ପାଞ୍ଚାଳୀ, ପୁରୋହିତ ଧୌମ୍ୟ ଓ ମୁଁ ବସିଥିଲୁ । ଏ ପର୍ଯ୍ୟନ୍ତ ସେମାନଙ୍କର ଭବିଷ୍ୟତ କାର୍ଯ୍ୟପନ୍ଥା ସଂପର୍କରେ ଆଲୋଚନାର ଅବକାଶ ନଥିଲା । ଯୁଧିଷ୍ଠିରଙ୍କ ବ୍ୟତୀତ ଅନ୍ୟମାନେ ଭିତରେ ଭିତରେ କୁହୁଳିଲେ ସୁଦ୍ଧା କେବଳ ଯୁଧିଷ୍ଠିରଙ୍କ ମୁହଁକୁ ଚାହିଁ କିଛି କହିପାରୁନଥିଲେ ସମସ୍ତଙ୍କୁ କିଛି ସମୟ ଲକ୍ଷ୍ୟ କଲାପରେ ମୁଁ କହିଲି - 'ଦ୍ୱାଦଶ ବର୍ଷ ବନବାସ ସହ ଅଜ୍ଞାତବାସର ଅବଧି ବି ପୂର୍ଣ୍ଣ ହୋଇଗଲା । ବର୍ତ୍ତମାନ କର୍ମପନ୍ଥା କ'ଣ ?' ଦ୍ୱିତୀୟ ପାଣ୍ଡବ ଚିରକାଳ ଅଧୈର୍ଯ୍ୟ । ସେ ତତ୍‌କ୍ଷଣାତ କହି ଉଠିଲେ - 'ଯା ପରେ ହସ୍ତିନା ଯିବୁ । ଆମର ନ୍ୟାଯ୍ୟଦାବୀ ଇନ୍ଦ୍ରପ୍ରସ୍ଥର ରାଜତ୍ୱ ଜ୍ୟେଷ୍ଠତାତଙ୍କୁ ମାଗିବୁ । ଆମର ପୁତ୍ର ବଧୂ ମାନଙ୍କର ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବ । ଆମେ କ'ଣ ଚିରକାଳ ଏଇଭଳି ପରାଶ୍ରିତ ଭାବେ ରହିବୁ ?'

ତାଙ୍କର ଉତ୍ତେଜନା ଯଥାର୍ଥ, ଯୁକ୍ତି ବି ଅକାଟ୍ୟ; କିନ୍ତୁ ସେଥିରେ ଯେଉଁ ପ୍ରମାଦ ରହିଥିଲା ସେ ସଂପର୍କରେ ତାଙ୍କୁ ସଚେତନ କରିବା ଉଦ୍ଦେଶ୍ୟରେ କହିଲି - 'ଏହାତ ଗୋଟିଏ ପକ୍ଷର ନିଷ୍ପତ୍ତି । ପବନରେ ଧୂଳି କଣାଟିଏ ସ୍ଥାନ ଚ୍ୟୁତ ହେଲେ ସେ ଆଉ ଆପଣା ସ୍ଥାନକୁ ପୁନରାଗମନ କରି ପାରୁ ନାହିଁ । ରାଜ୍ୟ ଫେରିପାଇବା ପ୍ରସଂଗ ତ ଆହୁରି ଦୁରୂହ । ଦେବାର ମନୋବୃତ୍ତି ବା ଶାନ୍ତିପୂର୍ଣ୍ଣ ସହାବସ୍ଥାନର ମନୋବୃତ୍ତି ଥିଲେ ଏଭଳି ଭାବେ କୌରବଗଣ ତୁମ୍ଭମାନଙ୍କୁ ବଞ୍ଚିତ କରିଥା'ନ୍ତେ କାହିଁକି ?'

ଦ୍ୱିତୀୟ ପାଣ୍ଡବ ପୁଣି ଉତ୍ତେଜିତ ଭାବେ କହିଲେ - 'କିନ୍ତୁ ଆମ୍ଭେମାନେ ତ ଆମର ସର୍ତ୍ତ ପୂରଣ କରିଛୁ ।' ମୁଁ ତାଙ୍କର ବଳିଷ୍ଠ ସ୍କନ୍ଧରେ ହାତ ରଖି ତାଙ୍କୁ ଗଭୀର ଦୃଷ୍ଟିରେ କିଛି ସମୟ ଚାହିଁ କହିଲି - 'ସର୍ତ୍ତ ପୂରଣ ! ଏହାତ ପୁରୁବଂଶର ଏକ ଅହଂକାର ସ୍ଫୀତ ପରଂପରା ! ସର୍ତ୍ତ ପୂରଣ କରିବାକୁ ଯାଇ ଅତୀତରେ ତୁମ୍ଭର ପ୍ରପିତାମହ ଶାନ୍ତନୁ ଦେବୀ ଗଙ୍ଗାଙ୍କୁ ଛଅଟି ନବଜାତ ପୁତ୍ର ସନ୍ତାନଙ୍କୁ ଜଳରେ ବିସର୍ଜନ ଦେବାର ଅଧିକାର ଦେଇଥିଲେ, ସର୍ତ୍ତ ପୂରଣ କରିବାକୁ ଯାଇ ସତ୍ୟବତୀଙ୍କର ସନ୍ତାନଙ୍କୁ ହସ୍ତିନା ସିଂହାସନ ଆରୋହଣ କରିବାର ଅଧିକାର ଦେଇଥିଲେ ତୁମର ପିତାମହ ଚିରକୁମାର ଭୀଷ୍ମ ! ତୁମ୍ଭେମାନେ ସେହି ସ୍ୱର୍ଦ୍ଧିତ ପରଂପରାର ମର୍ଯ୍ୟାଦା ରକ୍ଷା

କରିଛ ମାତ୍ର । ଏହାର ଅର୍ଥ ନୁହେଁ ତୁମ୍ଭେମାନେ ଚାହିଁବା ମାତ୍ରେ ରାଜ୍ୟ ଫେରିପାଇବ । ବିଶେଷତଃ ଧୃତରାଷ୍ଟ୍ରଙ୍କର ନିଜର ମତ ବୋଲି କିଛି ନଥାଏ । ଦୁର୍ଯ୍ୟୋଧନ, ଦୁଃଶାସନ, କର୍ଣ୍ଣ ଓ ଶକୁନୀ ଏମାନଙ୍କ ମତ ଯେତେ ହାନିକାରକ ହେଲେ ମଧ୍ୟ ତାହାହିଁ ଧୃତରାଷ୍ଟ୍ରଙ୍କର ଗ୍ରହଣୀୟ ହୁଏ; ତୁମ୍ଭେମାନେ ବହୁବାର ଏହାର ପ୍ରମାଣ ପାଇଛ ।'

ଭୀମ ଏଥର ସିଧାସଳଖ ଯୁଧିଷ୍ଠିରଙ୍କୁ ଚାହିଁ ପ୍ରଶ୍ନ କଲେ - 'ତେବେ ଉପାୟ ?'

ଯୁଧିଷ୍ଠିର ଅତ୍ୟନ୍ତ ନମ୍ର ଭାବେ କହିଲେ - 'କେଶବ ! ତୁମ କଥାରୁ ଯାହା ଜଣା ପଡୁଛି, ଆମ୍ଭେମାନେ ସର୍ତ୍ତ ପାଳନ କରିଛୁ ସତ୍ୟ; ମାତ୍ର କୌରବଙ୍କ ପାଇଁ ଆମ୍ଭେମାନେ ଯେହେତୁ କୌଣସି ସର୍ତ୍ତ ରଖି ନଥିଲୁ ସେମାନେ ଆମ ପ୍ରସ୍ତାବରେ ଏକମତ ହେବାପାଇଁ ବାଧ୍ୟ ନୁହନ୍ତି ଅର୍ଥାତ୍ ହୁଏତ ଏହା ପଶ୍ଚାତରେ ଯୁଦ୍ଧର ଆଶଙ୍କା ରହିଛି ।'

କିଛି ସମୟ ଚୁପ୍ ରହି ସେ କହିଲେ - 'କେଶବ ମୁଁ କିନ୍ତୁ ଶାନ୍ତି ଚାହେଁ । ଶାନ୍ତି ପୂର୍ଣ୍ଣ ସହାବସ୍ଥାନ । ଆମ୍ଭମାନଙ୍କର ପିତା ପଣ୍ଡୁ ଜୀବିତ ଥିବା ପର୍ଯ୍ୟନ୍ତ ଅରଣ୍ୟରେ ଆମର ଶୈଶବ ଅତିକ୍ରାନ୍ତ ହୋଇଛି । ବାରୁଣାବତରେ ଜତୁଗୃହଦାହର ସେହି ନିଷ୍ଠୁର ଦୁର୍ଘଟଣା ପରେ ଗ୍ରାମରୁ ଗ୍ରାମାନ୍ତର ବୁଲିଛୁ । ଏବେ ତ ପୁଣି ତ୍ରୟୋଦଶ ବର୍ଷ କାଳ ଅରଣ୍ୟରେ ଘୁରି ବୁଲିଛୁ । ତଥାପି ଶାନ୍ତିରେ ରହିଛୁ । ରାଜ୍ୟପାଇଁ, ସିଂହାସନପାଇଁ ଭାତୃ ବିରୋଧ ବା ରକ୍ତପାତ ମୁଁ ଚାହେଁନା କେଶବ ।'

ମୁଁ ଗମ୍ଭୀର ଭାବେ କହିଲି - 'ଏହାତ ଆପଣଙ୍କର ବ୍ୟକ୍ତିଗତ ମତ । ଏଥିରେ ଆପଣଙ୍କ ଅନ୍ୟଭ୍ରାତା, ବିଶେଷତଃ ପାଞ୍ଚାଳୀ ଏକମତ କି ?'

ପ୍ରଶ୍ନଟି ଯେତେ ପରୋକ୍ଷ ହେଲେ ମଧ୍ୟ ତାହା ପ୍ରକୃତରେ ପାଞ୍ଚାଳୀଙ୍କ ପ୍ରତିହିଁ ଉଦ୍ଦିଷ୍ଟ ଥିଲା । ପାଞ୍ଚାଳୀଙ୍କର ମୁଖ ମଣ୍ଡଳ ସେତେବେଳକୁ ଅତ୍ୟନ୍ତ ଗମ୍ଭୀର କିନ୍ତୁ ଭୂମିକଂପ ପୂର୍ବର ଆକାଶ ଭଳି ଅଗ୍ନିବର୍ଣ୍ଣ ଧାରଣ କରିଥାଏ, ମୁକୁଳିତ ଦୀର୍ଘ କୁଞ୍ଚିତ କେଶଗୁଛ ବର୍ଷଣୋନ୍ମୁଖ ଘନକୃଷ୍ଣ ମେଘ ଖଣ୍ଡେ ଭଳି ପରିଦୃଷ୍ଟ ହେଉଥାଏ । ତାଙ୍କୁ ଚାହିଁ ରହିଲି । ବେଦାନାର୍ତ୍ତ ତାସଲ୍ୟର ତିକ୍ତ ହସ ଧାରେ ତାଙ୍କ ଅଧର ପ୍ରାନ୍ତରେ ମୁହୂର୍ତ୍ତକ ପାଇଁ ଝଲସି ଉଠି ମିଳେଇ ଗଲା । ଜଣ ଜଣ କରି ପଞ୍ଚସ୍ୱାମୀଙ୍କ ମୁଖକୁ ଚାହିଁଲେ ଓ ତାପରେ ମୋ'ଆଡ଼େ ଚାହିଁ କହିଲେ - 'ସଖା କେଶବ ! ମୁଁ ବର୍ଷ ବର୍ଷ ଧରି ସୁଖ ଦୁଃଖରେ କୁନ୍ତୀ ନନ୍ଦନଙ୍କ ପାଦରେ ପାଦ ମିଳେଇ ଚାଲୁ ଚାଲୁ କେମିତି ଭୁଲି ଯାଇଥିଲି ଯେ ଆର୍ଯ୍ୟାବର୍ତ୍ତରେ ମୁଁ ଗୋଟାଏ ତୁଚ୍ଛ ନାରୀ ହୋଇ ଜନ୍ମଗ୍ରହଣ କରିଛି ? ଗୋଟାଏ ନାରୀର ମାନସମ୍ମାନ, ଆତ୍ମ ମର୍ଯ୍ୟାଦା ଭୂଲୁଣ୍ଠିତ ହେଲା ବୋଲି ମୋର ପଞ୍ଚବୀର ସ୍ୱାମୀ ତାର ମୂଲ୍ୟ ଦେବାକୁ ବାଧ୍ୟ ହେବେ କାହିଁକି ?'

ତାପରେ ସେ କିଛି ସମୟ ନୀରବରେ ଅଧୋବଦନା ଭାବେ ବସି ରହିଲେ । ହୁଏତ ନିଜକୁ ସଂବରଣ କଲେ, ହୁଏତ ନିଜକୁ ପ୍ରସ୍ତୁତ କଲେ । ତାପରେ ଅଶ୍ରୁରୁଦ୍ଧ କଣ୍ଠରେ କହିଲେ 'କେଉଁଠୁ ଆରମ୍ଭ କରିବି କେଶବ ?ଧୂଳିରେ ସୁଦ୍ଧା ଅନ୍ୟ ଝିଅଙ୍କ ଭଳି ମୁଁ କୌଣସି ଦିନ ଖେଳି ନାହିଁ । କାରଣ ମୋ ଜୀବନରେ ଶୈଶବ ଇ ନଥିଲା । ଜନ୍ମରୁ ଯୁବତୀ ମୁଁ । ମୁଁ ଯଜ୍ଞ କୁଣ୍ଡରୁ ଜନ୍ମ ନେବା ପରେ ପାଞ୍ଚାଳର ଐଶ୍ୱର୍ଯ୍ୟ ପ୍ରାଚୁର୍ଯ୍ୟ ଭରା ଫୁଲ ପାଖୁଡ଼ାରେ ପାଦ ପକେଇ ଚାଲିଛି । ଅଥଚ ବିବାହ ପରେ ପ୍ରଥମ ମଧୁଯାମିନୀ ମୋର ଉଦ୍‌ଯାପିତ ହୋଇଛି କୁରାଳ ଶାଳର ଭସ୍ମଶଯ୍ୟା ଉପରେ । ମୋର ଭାଗ୍ୟ ଭବିତବ୍ୟକୁ ପାଞ୍ଚୋଟି ପୁରୁଷଙ୍କର ରୁଚି ଅଭିରୁଚି ସହ ଛନ୍ଦି ଦିଆ ହୋଇଛି । ଅନ୍ତର ଭିତରେ ଯେତେ ରକ୍ତ କ୍ଷରଣ ହେଲେ ସୁଦ୍ଧା କୌଣସି ଦିନ ପ୍ରତିବାଦ କରିଛି କି ? କୁରୁପାଣ୍ଡବଙ୍କ ଭିତରେ ବୈରଭାବ ଭାତୃବିରୋଧ ଆଶୈଶବ । ହେଲେ ମୋତେ କାହିଁକି ଯୂପ ପଶୁସମ ବଳି ଦିଆଯାଉଛି ? ଧର୍ମରାଜ କହୁଛନ୍ତି ଭାତୃବିରୋଧ ଚାହାନ୍ତି ନାହିଁ ?? ମୋ ବିବାହ ପୂର୍ବରୁ ଏ ସଦିଚ୍ଛା କାହିଁକି ପୂରଣ ନ କଲେ ? ଜଟା କୌପୀନ ଧାରଣ କରି ସନ୍ୟାସ ଗ୍ରହଣ କରିପାରିଥା'ନ୍ତେ ! ମୋତେ ଗୋଟାଏ ନିର୍ଜୀବ ବସ୍ତୁବିତ୍ତ ଭଳି ଅକ୍ଷକ୍ରୀଡ଼ାରେ ବାଜି ରଖି ବାଜି ହାରିବାକୁ ତ ଆଉ ହୋଇ ନଥା'ନ୍ତା ! ମୋର ଏ ମୁକୁଳିତ କେଶ ଭାରର ପ୍ରତିଲୋମ କୂପରେ ସଂଚିତ ହୋଇ ରହିଛି ଯେଉଁ ଲାଂଛନା, ନିର୍ଯ୍ୟାତନାର ଅଗ୍ନିଦାହ ତା' କିପରି ନିର୍ବାପିତ ହେବ ? ମୋର ଏ କେଶ ଭାରକୁ ଗ୍ରୀଷ୍ମ ତାପ ସୁଦ୍ଧା ସ୍ପର୍ଶ କରୁନଥିଲା । ତେଣୁ ମୋର ସିକ୍ତ କେଶ ରାଶିକୁ ଶୁଷ୍କ କରିବା ନିମିତ୍ତ ଝୁଣା, ଅଗୁରୁ, ଚନ୍ଦନ, ଗୁଗ୍‌ଗୁଳର ଧୂମ ତାପ ବ୍ୟବହୃତ ହୁଏ ରାଜଭବନରେ । ସ୍ୱୟଂବର ପର୍ଯ୍ୟନ୍ତ କୌଣସି ଅନାତ୍ମୀୟ ପୁରୁଷଙ୍କ ମୁଖସୁଦ୍ଧା ମୁଁ ଦର୍ଶନ କରିନଥିଲି । ମୋର ଏ ସୁକୁମାର ଅଂଗକୁ କୌଣସି ଦିନ ସୂର୍ଯ୍ୟ କିରଣ ସୁଦ୍ଧା ସ୍ପର୍ଶ କରିନଥିଲା । ଅଥଚ ଥରେ ମାତ୍ର ଥରଟିଏ ସ୍ମରଣ କରନ୍ତୁ ମୋର ସୁଯୋଗ୍ୟ ପତିଗଣ । ସେଦିନ କୁରୁ ଦରବାର କକ୍ଷକୁ, ବହୁ ଆତ୍ମୀୟ ଅନାତ୍ମୀୟଙ୍କ ଚକ୍ଷୁ ସମ୍ମୁଖକୁ ଦୁଃଶାସନର ଅଶୁଚିହାତ ମୋର ଏହି ଲଳିତ ସୁକୁମାର ଶରୀରକୁ ରାଜଦାଣ୍ଡରେ ଘୋଷାରି ଘୋଷାରି ନେଇଥିଲା, ଆତ୍ମରକ୍ଷା ପାଇଁ ମୁଁ ଯେତେବେଳେ ପଛକୁ ଘୁଞ୍ଚି ଆସୁଥିଲି ସେତେବେଳେ ସେ ମୋର ଏଇ କେଶ ଗୁଚ୍ଛକୁ ଟାଣି ଧରି ମୋତେ ନେଇ ଶହ ଶହ ପୁରୁଷଙ୍କ ସମ୍ମୁଖରେ ଫିଙ୍ଗି ଦେଇଥିଲା, ମୋତେ ବିବସ୍ତ୍ରା କରିବାର ଦୁଃସାହସ ଓ ଦୁରାଶା ମଧ୍ୟ କରିଥିଲା । ମୁଁ ସମଗ୍ର ସଭାଗୃହର ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଉର୍ଦ୍ଧ୍ୱଶ୍ୱାସରେ ଅସହାୟ ଭାବେ ଘୂରି ବୁଲୁଥିଲି ସାହାଯ୍ୟ ଭିକ୍ଷା କରୁଥିଲି ମୋର ବୀର ପତିଗଣଙ୍କ ଉପସ୍ଥିତିରେ । କେଶବ ! ମୋର ବୀର ପତିଗଣ ଅତୀତରେ ନିଜ ନିଜର ବୀରତ୍ୱ ପ୍ରଦର୍ଶନ କରି ଗୋଟାକ ପରେ ଗୋଟାଏ ରାଜକନ୍ୟା ବିବାହ କରିଛନ୍ତି । ଅଥଚ ଇନ୍ଦ୍ରପ୍ରସ୍ଥର ରାଜରାଣୀର ଆତ୍ମସମ୍ମାନ ଯେତେବେଳେ ଭୂଲୁଣ୍ଠିତ ହେଉଥିଲା ସେତେବେଳେ ସେମାନେ ହୀନବୀର୍ଯ୍ୟ ଭାବେ ବସି ରହିଥିଲେ । ଦୁର୍ଯ୍ୟୋଧନ ମୋତେ 'ଦାସୀ' ବୋଲି କହିଲା,

ଅଂଗରାଜ, ସୂତପୁତ୍ର କର୍ଣ୍ଣ ମୋତେ 'ବହୁ ବଲ୍ଲଭା', 'ବେଶ୍ୟା' ବୋଲି କହିଲେ, ଯା' ପରେ ସୁଦ୍ଧା ଧର୍ମରାଜ ଶାନ୍ତି ଚାହାନ୍ତି ? ସେଦିନ ସଭାଗୃହରେ ଦ୍ୱିତୀୟ ପାଣ୍ଡବ ଓ ତୃତୀୟ ପାଣ୍ଡବଙ୍କର ଯେଉଁ ପ୍ରତିଜ୍ଞା ସେ ସବୁ ତେବେ କେବଳ ବୃଥା ଆସ୍‌ଫାଳନ ଥିଲା ? ପିତାମହ ଭୀଷ୍ମ ନିଜର ପ୍ରତିଜ୍ଞା ପାଳନ ପାଇଁ ସର୍ବସ୍ୱ ତ୍ୟାଗ କରିଦେଲେ ଅଥଚ ସେଇ ବଂଶରେ ଜାତ ହୋଇ ଭୀମସେନ କୁରୁପତି ଦୁର୍ଯ୍ୟୋଧନର ଉରୁଭଂଗ ପାଇଁ, ଦୁଃଶାସନର ଭୁଜ ଉତ୍ପାଟନ ପାଇଁ ତଥା ତୃତୀୟ ପାଣ୍ଡବ ସୂତପୁତ୍ରର ଶିରଛେଦ ପାଇଁ ଯେଉଁ ପ୍ରତିଜ୍ଞା କରିଥିଲେ ସେଦିନ ସେସବୁ ତେବେ କେବଳ କଥାର କଥା ଥିଲା ?ଦ୍ୱୈତ ବନରର ସେ ଦୁର୍ଘଟଣା ମୁଁ କେମିତି ଭୁଲିବି କେଶବ ? ସିନ୍ଧୁ ନରେଶ ଜୟଦ୍ରଥ ସଂପର୍କରେ ମୋର ନଣନ୍ଦେଇ । ମୁଁ ତାର ବଡ଼ ଭାଉଜ । ଅଥଚ ମୋ ସହିତ ସେ ଯେଉଁ ଅଶ୍ଳୀଳ ଆଚରଣ କଲା ସେଥିପାଇଁ ଦାୟୀ କିଏ ? ଏଇତ ! ନିକଟ ଅତୀତରେ ଯାହା ଘଟି ଯାଇଛି ଏଇ ବିରାଟଙ୍କ ଭବନରେ ସେଥିରେ କ'ଣ ମୁଁ ନିରନ୍ତର ପୀଡ଼ିତା ହୋଇନାହିଁ ? ଦ୍ରୁପଦଙ୍କର ନନ୍ଦିନୀ ହୋଇ, ଇନ୍ଦ୍ରପ୍ରସ୍ଥର ରାଜରାଣୀ ହୋଇ ମୋତେ ପରାଶ୍ରିତା ଭାବେ ପରାନ୍ନ ଭୋଜନ କରିବାକୁ ହେଲା, ଅନ୍ୟ ଗୃହରେ ଦାସୀ ବୃତ୍ତି କରିବାକୁ ହେଲା । ତ୍ରୟୋଦଶ ବର୍ଷ ପୂର୍ବେ ମୋର ସୁଯୋଗ୍ୟ ସ୍ୱାମୀ ଧର୍ମରାଜତ ଅକ୍ଷକ୍ରୀଡ଼ାରେ ମୋତେ ବାଜିରଖି ହାରି କୌରବଙ୍କର ଦାସୀ କରିସାରିଥିଲେ । ଯଦିବା ସେଥିରୁ ମୁକ୍ତି ପାଇଲି, ସ୍ୱେଚ୍ଛାରେ ବିରାଟ ରାଜଭବନରେ ଦାସୀବୃତ୍ତି କରି ବଞ୍ଚିରହିଲି । ତେବେ ଏ ବଞ୍ଚିବା ପଶ୍ଚାତରେ ମୋର କ'ଣ କୌଣସି ପ୍ରତ୍ୟାଶା ନାହିଁ କେଶବ ? କି ଗ୍ଲାନିକର ଏ ଜୀବନ ଯାତ୍ରା ତା' ତୁମେ ନଜାଣିଲେ ବି ମୋର ପତିଗଣ ତ ଜାଣନ୍ତି । ମୋର ଅପମାନ ସେମାନଙ୍କୁ ସ୍ପର୍ଶ କରେ ନାହିଁ । ଅଥଚ କି ବିଡ଼ମ୍ବନା ସେମାନଙ୍କର ଅପମାନ ମୋର ସହ୍ୟ ହୁଏ ନାହିଁ କାହିଁକି ? ହୁଏତ ଏହାହିଁ ସ୍ତ୍ରୀ ଧର୍ମ । ଆର୍ଯ୍ୟ ନାରୀର ଧର୍ମ ! ତେବେ ସବୁ ଧର୍ମ, ସମସ୍ତ ଆଚାର ଓ ନିଷ୍ଠା ପାଇଁ କୌଣସି ନିଷ୍ଠା, ନିୟମ ପାଳନର ଅବକାଶ ନାହିଁ ? ଯେଉଁ ଭୀମସେନଙ୍କ ସୁଗୌର ବଳିଷ୍ଠ ତନୁରେ ସହସ୍ର ପରିଚାରକ ଦୈନିକ ଚନ୍ଦନ ରସର ପ୍ରଲେପ ଦେଉଥିଲେ, ସେଇ ଭୀମସେନ ବିରାଟଙ୍କ ରନ୍ଧନଶାଳାରେ ସହସ୍ର ଚୂଲୀର ଅଗ୍ନିତାପ ମଧ୍ୟରେ ପାଚକ 'ବଲ୍ଲବ' ଭାବେ ପରିଚିତ ହେଲେ, ମୋ' ପାଇଁ ଏହା ଯେ କିଭଳି ଅସହ୍ୟ ମର୍ମ ଦାହୀ ତା' ମୁଁ ହିଁ ଜାଣେ । ଗାଣ୍ଡିବଧାରୀ, ପ୍ରଚଣ୍ଡ ପୁରୁଷ ତୃତୀୟ ପାଣ୍ଡବ, ଯାହାର ଧନୁ ଟଂକାରରେ ତ୍ରିଭୁବନ ପ୍ରକଂପିତ ହୁଏ ମୋର ସେହି ସ୍ୱାମୀ ନପୁଂସକ 'ବୃହନ୍ନଳା' ଭାବେ ସଂଗୀତ ନୃତ୍ୟକୁ ଆଶ୍ରୟ କରି ବଞ୍ଚିରହିଲେ । ଯେଉଁ ଦୀର୍ଘ ଉନ୍ନତ ଲଲାଟରେ ଦିନେ ବିଜୟ ତିଳକ ଅଂକିତ ହେଉଥିଲା, ସେହି ଲଲାଟରେ ସିନ୍ଦୁର ବିନ୍ଦୁ ଚିହ୍ନିତ ହେଲା । ଯେଉଁ ବଳିଷ୍ଠ ଭୁଜ ଅସ୍ତ୍ର ଶସ୍ତ୍ରରେ ସୁସଜ୍ଜିତ ଥିଲା, ସେଠାରେ କେୟୂର କଙ୍କଣ ଶୋଭା ପାଇଲା, ଯେଉଁ ମସ୍ତକରେ ଉଷ୍ଣୀଷ, କିରୀଟ ଶୋଭିତ ହେଉଥିଲା, ସେହି ମସ୍ତକରେ ସୁଲଭ ବେଣୀ ଲମ୍ବିତ ହେଲା, ଯେଉଁ ପଦପାତରେ ମେଦିନୀ କଂପି ଯାଉଥିଲା, ସେ ପଦଯୁଗଳରେ

ଲଘୁଛନ୍ଦ ପ୍ରଚାରୋପଯୋଗୀ ନୂପୁର ଶୋଭା ପାଇଲା । ପ୍ରଶସ୍ତ ବକ୍ଷରେ କବଚ ପରିବର୍ତ୍ତେ କାଞ୍ଚୁଲା ଶୋଭାପାଇଲା । ଯେତେବେଳେ ପୁରନାରୀଗଣ କ୍ଳୀବ ବୃହନ୍ନଳାଙ୍କ ସହ ହାସ ପରିହାସରେ ମତ୍ତ ହୁଅନ୍ତି ସେତେବେଳେ ମୋର ବକ୍ଷ ଶତଧା ବିଦୀର୍ଣ୍ଣ ହୋଇ ନାହିଁ ? କେଉଁ ନାରୀ ଚାହେଁ ତା'ର ସ୍ୱାମୀ ନପୁଂସକ ହେଉ ବୋଲି ? ନକୁଳ ସହଦେବଙ୍କ ଭଳି ସୁକୁମାର ପୁରୁଷ ସାଧାରଣ ଭୃତ୍ୟ ଭଳି ଅଶ୍ୱ ଓ ଧେନୁଙ୍କ ଯତ୍ନ ନେଲେ । ୟା' ପରେ ବି ଧର୍ମରାଜ ଭାତୃବିବାଦ ଚାହାନ୍ତି ନାହିଁ ? ଆଉ ମୁଁ ? ମୁଁ ନାରୀଟିଏ ବୋଲି ଯେତେବେଳେ ଯିଏ ଚାହିଁବ ମୋପ୍ରତି ଭୋଗେଚ୍ଛା ପ୍ରକଟ କରିପାରିବ ? ଅଜ୍ଞାତବାସରେ ସୈରିନ୍ଧ୍ରୀ ଭାବେ ଜୀବନ ବଞ୍ଚୁଥିଲି ବୋଲି ରାଣୀ ସୁଦେଷ୍ଣାଙ୍କ ନିର୍ଦ୍ଦେଶରେ ଲୁବ୍ଧ,ଦୁରାଚାରୀ କୀଚକର ଅନ୍ତଃପୁରକୁ ମୋତେ ସୁରା କଳସ ସହ ଯିବାକୁ ହେଲା । ସେଠାରେ ମଧ୍ୟ ମୋ ପାଇଁ ଅପମାନହିଁ ପ୍ରତୀକ୍ଷା କରିଥିଲା ? ଅପମାନ - ଲାଂଛନା ଏହା ବ୍ୟତୀତ ବିବାହ ପରେ ମୋର ସଞ୍ଚୟ ବୋଲି କିଛି ନାହିଁ, ସମ୍ବଳ ବୋଲି କିଛି ନାହିଁ, ସ୍ମୃତି ବୋଲି ବି କିଛି ନାହିଁ । ଭାଗ୍ୟର ଉଷର ପ୍ରାନ୍ତରରେ ପେଣ୍ଡୁଭଳି ଗୋଟିଏ ପାଦ ପାଖରୁ ଆଉ ଗୋଟିଏ ପାଦ ପାଖକୁ ଗଡ଼ି ଗଡ଼ି ମୁଁ କେବଳ ମୋ ସତୀତ୍ୱର ଅଗ୍ନି ପରୀକ୍ଷା ଦେଉଥିବି ଚିରକାଳ ? ମୋର ଏ ଜୀବନର ଆୟୁଷ୍କାଳ କେତେ କେଶବ; କେତେ ? ସେଥିରେ ସୁଖର ଆୟୁଷ୍କାଳ ବି କେତେ ? ତଥାପି ଧର୍ମରାଜ ଶାନ୍ତି ପ୍ରତିଷ୍ଠାରେ ଆଗ୍ରହୀ ? ବେଶ୍ ! ମୋର ଏ ଅଜସ୍ର ଅପମାନକୁ ପୁଞ୍ଜିକରି ମୁଁ ଏକାକୀ ମୋ ଯୁଦ୍ଧ ଲଢ଼ିବି କେଶବ ! ଅଜସ୍ର ଲହୁ କ୍ଷରିତ ମୋ ହୃଦୟର ବିଧ୍ୱସ୍ତ ରଣ କ୍ଷେତ୍ରର ଏକାକୀ ନୀରବଦ୍ରଷ୍ଟା ହୋଇ କେତେ କାଳ ଆଉ ଅପେକ୍ଷା କରିବି ? ନାଃ - ଧର୍ମରାଜ ଶାନ୍ତିର ସନ୍ଧାନୀ ହୁଅନ୍ତୁ, ତାଙ୍କର ଅନୁଜ ଗଣ ତାଙ୍କୁହିଁ ଅନୁସରଣ କରନ୍ତୁ, ମୋର ଆପତ୍ତି ନାହିଁ । ମୁଁ କିନ୍ତୁ ଯୁଦ୍ଧ ଚାହେଁ - ଯୁଦ୍ଧ ! ରକ୍ତପାତ ଚାହେଁ - ରକ୍ତପାତ !! ମୋତେ ସମର୍ଥନ କରିବେ ମୋର ବୃଦ୍ଧ ପିତା ଦ୍ରୁପଦ । ମୋର ଯୁଦ୍ଧ ଯାତ୍ରାର ସହଯାତ୍ରୀ ହେବେ ପାଞ୍ଚାଳ ରାଜ ଓ ମୋର ଭ୍ରାତା ଧୃଷ୍ଟଦ୍ୟୁମ୍ନ । ମୁଁ ନିଜକୁ 'ଏକାକିନୀ' ବୋଲି କାହିଁକି ଭାବୁଛି କେଶବ ? ମୋର ଏ ଯୁଦ୍ଧ ଯାତ୍ରାକୁ ସାର୍ଥକ କରିବା ପାଇଁ ମୋର ବୀର ପୁତ୍ରଗଣ ଅଛନ୍ତି ଯେ ! ବୀରପୁତ୍ର ଘଟୋତ୍କଚ, ବୀର ବେଲାଳ ସେନ, ଇରାବାନ୍, ମୋ ଅଭିମନ୍ୟୁ, ପ୍ରତିବିନ୍ଧ୍ୟ, ଶ୍ରୁତସୋମ, ଶତାନୀକ ଆଦି ପଞ୍ଚଭ୍ରାତ । (ଇଚ୍ଛାକରି ପାଞ୍ଚାଳୀ ପ୍ରଥମେ ଭୀମ ତନୟ ତଥା ଅର୍ଜୁନ ତନୟଙ୍କ ନାମୋଚ୍ଚାରଣ କରିଥିଲେ !) ଏହି ବୀରପୁତ୍ରଗଣ ମୋର ଜନନୀ ପାଞ୍ଚାଳୀ ପାଇଁ ଜୀବନ ଦେବାକୁ ଓ ଜୀବନ ନେବାକୁ କେବେହେଲେ କାତର ନୁହନ୍ତି !'

ପାଞ୍ଚାଳ ତନୟା ତାଙ୍କ ପତିଗଣଙ୍କର ନାମ ସୁଦ୍ଧା ଉଚ୍ଚାରଣ କଲେ ନାହିଁ । ତା'ପରେ ସେ ଆଉ କିଛି କହି ପାରିଲେ ନାହିଁ । ମୁଁ ତାଙ୍କୁ ସାନ୍ତ୍ୱନା ଦେବାପାଇଁ ତାଙ୍କର ଉତପ୍ତ, ସିକ୍ତ କୋମଳ ହାତଟିକୁ ମୁଠେଇ ଧରିବା ମାତ୍ରେ ମୋ ହାତ ଉପରେ ତାଙ୍କ ନୟନ ପ୍ରାନ୍ତରୁ କେଇଟୋପା ଲୋତକ ବିନ୍ଦୁ ଝରିପଡ଼ିଲା । ଲୋତକ ନୁହେଁ ତ ଯେମିତି କୌଣସି ଉଷ୍ଣ

ପ୍ରସ୍ରବଣର ଅଗ୍ନିଦଗ୍ଧ ଜଳକଣା ! ଲୁହ ଆଉ କୋହ, କ୍ଷୋଭ ଆଉ ଦୁଃଖରେ ଫେଣ୍ଟି ହୋଇଯାଉଥାଏ ତାଙ୍କର ବକ୍ତବ୍ୟ । କିଛି ସମୟ ନୀରବ ରହି ପୁଣି ସେ କହିଲେ-

'ଇଏତ ମାତ୍ର ସେଦିନର କଥା । କୀଚକର ମୃତ୍ୟୁ ପରେ ମତ୍ସ୍ୟାଧିପତି ଅରକ୍ଷଣୀୟ ହୋଇଛନ୍ତି ଭାବି କୁରୁପତି, ଅଂଗରାଜ ଦ୍ରୋଣାଚାର୍ଯ୍ୟ, ତ୍ରିଗର୍ତ୍ତରାଜ ସୁଶର୍ମା ପ୍ରଭୃତି ଏକତ୍ରିତ ହୋଇ ଚତୁର୍ଦ୍ଦିଗରୁ ବିରାଟଙ୍କ ରାଜ୍ୟକୁ ଆକ୍ରମଣ କଲେ । ଗୋ ସଂପଦ ଅପହରଣ କରିବାକୁ ଚେଷ୍ଟା କଲେ । ବୃହନ୍ନଳାଙ୍କ ସାରଥିତ୍ୱରେ ଅନଭିଜ୍ଞ ଉତ୍ତର ଯୁଦ୍ଧଯାତ୍ରା କଲେ । ମୁଁ ତ ଜାଣିଥିଲି ବିଜୟ ସୁନିଶ୍ଚିତ । ମୋର ବିଜୟୀ ପତି ବୀର ଫାଲ୍‌ଗୁନୀ ଯୁଦ୍ଧ ଜୟ କରି ଆସିଲେ; ଅଥଚ ତାଙ୍କୁ ଅଭିବନ୍ଦନ କରି ଅଭିନନ୍ଦନ ଜଣାଇବାର ଅଧିକାର ସୁଦ୍ଧା ମୋର ନଥିଲା । ସ୍ୱୟଂ ବିରାଟ ମଧ୍ୟ ଏକଥା ମାନିବାକୁ ପ୍ରସ୍ତୁତ ନଥିଲେ ଯେ ଏହା ବୃହନ୍ନଳାଙ୍କ ବିଜୟ । ନହେଲେ ଉତ୍ତରଙ୍କର ବା ଶକ୍ତି କେତେଯେ ସେ ବିପୁଳ କୁରୁସେନା ବାହିନୀକୁ ପରାସ୍ତ କରିବାକୁ ସମର୍ଥ ହୋଇଥା'ନ୍ତେ ? ଏଇ ଘଟଣାକୁ କେନ୍ଦ୍ରକରି ଧର୍ମରାଜଙ୍କ ସହ ବଚସା ହେଲା ଓ ରାଜା ବିରାଟ ଅକ୍ଷକାଠି ଦ୍ୱାରା ଧର୍ମରାଜଙ୍କୁ ଆଘାତ କରି ରକ୍ତାକ୍ତ କରି ଦେଲେ । ଟୋପାଏ ରକ୍ତ ଭୂମିରେ ପଡ଼ିଥିଲେ ବିରାଟଙ୍କର କି ସର୍ବନାଶ ହୋଇଥା'ନ୍ତା....... ସେ କଥା ଚିନ୍ତା କରି ସେହି କ୍ଷରିତ ରୁଧିର ଧାରକୁ ପାତ୍ରରେ ସଂଗ୍ରହ କଲାବେଳେ ମୋର ବକ୍ଷ ବିଦୀର୍ଣ୍ଣ ହୋଇନଥିଲା ଦୁଃଖରେ ? ଅବଶ୍ୟ ଆଶ୍ରୟଦାତା ବିରାଟଙ୍କ ନିକଟରେ ଆମେ ଚିର କୃତଜ୍ଞ !'

ମୁଁ କହିଲି - 'କୃଷ୍ଣା ! ଯୁଦ୍ଧ ସୁନିଶ୍ଚିତ । ଏବେ ତ ସମସ୍ତ ମାର୍ଗ ଉନ୍ମୁକ୍ତ । ଯେତେବେଳେ ଶାନ୍ତି ଓ ସଦ୍‌ଭାବନାର ସମସ୍ତ ଦ୍ୱାର ରୁଦ୍ଧ ହୋଇଯିବ ସେତେବେଳେ ଯୁଦ୍ଧହିଁ ଅବଶ୍ୟମ୍ଭାବୀ । ତୁମ ପତିଗଣ ତାଙ୍କ ପ୍ରତିଜ୍ଞା ନିଶ୍ଚୟ ପୂରଣ କରିବେ । କିନ୍ତୁ ପ୍ରଥମେ ସନ୍ଧିର ପ୍ରସ୍ତାବ ଦିଆଗଲେ କ୍ଷତି କ'ଣ ?'

ମୋର କଥାରେ ସମସ୍ତେ ଏକମତ ହେଲେ । ଧର୍ମରାଜ ବିନୀତ ଭାବେ କହିଲେ - 'ମଧୁସୂଦନ ଜ୍ୟେଷ୍ଠତାତ ଧୃତରାଷ୍ଟ୍ରଙ୍କୁ କହିବ ଅର୍ଦ୍ଧେକ ରାଜ୍ୟ ଆମର ନ୍ୟାଯ୍ୟ ପ୍ରାପ୍ୟ, ଯଦି ତା' ନ ଦିଅନ୍ତି ତେବେ କୁଶସ୍ଥଳ, ବୃକସ୍ଥଳ, ମାକନ୍ଦୀ, ବାରୁଣାବତ ଓ ଅନ୍ୟ ଯେ କୌଣସି ଗୋଟିଏ ଗ୍ରାମ - ଏଇଭଳି ପାଞ୍ଚଗୋଟି ମାତ୍ର ଗ୍ରାମ ଆମ ପଞ୍ଚଭ୍ରାତାଙ୍କୁ ପ୍ରଦାନ କରନ୍ତୁ ।'

ମୁଁ ମନେ ମନେ ହସିଲି । ଦୁର୍ଯ୍ୟୋଧନ ଭଳି ଦୂରାକାଂକ୍ଷୀ ପାଞ୍ଚଟି ପଡ଼ାର ଦାବୀକୁ ଯେ ସ୍ୱୀକାର କରିବ ସେ ଆଶା ନାହିଁ । ତଥାପି ଯୁଧିଷ୍ଠିରଙ୍କ କଥାରେ ସମ୍ମତ ହେଲି ଓ କହିଲି - 'ଧର୍ମରାଜ ! ଆପଣଙ୍କ ପ୍ରସ୍ତାବ ଅତ୍ୟନ୍ତ ସାଧୁ । କିନ୍ତୁ କୌରବମାନଙ୍କ ଠାରୁ ଅନୁରୂପ ପ୍ରତ୍ୟାଶା ରଖିବେ ନାହିଁ । ଯୋଜନାବଦ୍ଧ ଭାବେ ସେମାନେ ଆପଣମାନଙ୍କୁ ବାରମ୍ବାର ବହିଷ୍କାର ହିଁ କରିଛନ୍ତି । ତା'ଛଡ଼ା ସର୍ତ୍ତ ଅନୁଯାୟୀ ରାଜ୍ୟ ଫେରେଇବା ଯଦି ସେମାନେ ଇଛା କରୁଥା'ନ୍ତେ ତେବେତ ବିରାଟଙ୍କ ଗୋଧନ ଅପହରଣ କରିବାକୁ ଆସିଥିବା ସମୟରେ ସଖା ପାର୍ଥଙ୍କ ସହ

ତାଙ୍କର ଯେଉଁ ଯୁଦ୍ଧ ହେଲା ଓ ଆପଣମାନେ ଅଜ୍ଞାତ ବାସର ଅବଧି ପୂର୍ଣ୍ଣକରି ଆତ୍ମପ୍ରକାଶ କଲେ, ସେ କଥା ଜାଣିବା ପରେ ସେମାନେ ତ ଆପଣ ମାନଙ୍କୁ ସାଦର ନିମନ୍ତ୍ରଣ ସହ ହସ୍ତିନା ନେଇଯିବାର ଥିଲା । ତା' ସେମାନେ କରି ନାହାନ୍ତି । ଆପଣ ଏକଥା ବି ଭଲଭାବେ ହୃଦୟଙ୍ଗମ କରିଥିବେ ଯେ ହସ୍ତିନା ଦରବାରରେ ଆପଣଙ୍କ ଜ୍ୟେଷ୍ଠତାତ, ପିତାମହ ଭୀଷ୍ମ, ବିଦୂର ପ୍ରଭୃତି ଗୁରୁଜନଙ୍କ ମତ ଗ୍ରହଣୀୟ ହୁଏ ନାହିଁ, ଜ୍ୟେଷ୍ଠତାତଙ୍କର ନିଜସ୍ୱ ମତ ବୋଲି କିଛି ନାହିଁ। ଏମାନେ ସମସ୍ତେ କୁରୁପତି ଦୁର୍ଯ୍ୟୋଧନ, କର୍ଣ୍ଣ, ଶକୁନୀ, ଦୁଃଶାସନ ଏଇମାନଙ୍କ ମତ ସହ ଏକମତ ହେବା ବ୍ୟତୀତ ଆଉ କିଛି କରନ୍ତି ନାହିଁ । ଏକମାତ୍ର ପ୍ରାଜ୍ଞ ବିଦୂର ହିଁ ପ୍ରତିରୋଧ କରନ୍ତି; ହେଲେ ରାଜଶକ୍ତିଠାରୁ ସମ୍ମତି ଓ ଉତ୍ସାହ ନପାଇ ତା'ମଧ୍ୟ ନିଷ୍କ୍ରିୟ ହୋଇ ପଡ଼ିବା ସ୍ୱାଭାବିକ । ମୁଁ ପୁଣିଥରେ କହିରଖୁଛି ଧର୍ମରାଜ, ଏଇ ନିକଟରେ ସଖା ପାର୍ଥଙ୍କ ଠାରୁ ଯୁଦ୍ଧରେ ପରାଜୟର ପରାଭବ ସ୍ୱୀକାର କରି ଏକ ନୂତନ କ୍ଷତର ଯନ୍ତ୍ରଣା ହୃଦୟରେ ବହନ କରି ଫେରି ଯାଇଛନ୍ତି କୁରୁପତି । ତେଣୁ ସନ୍ଧିର ପ୍ରସ୍ତାବ ଯେ ସେମାନେ ଗ୍ରହଣ କରିବେ ସେ ଆଶା ଅନ୍ତଃତ ମୋର ନାହିଁ ।'

ଏତକ କହିସାରି ତୀର୍ଯ୍ୟକ୍ ଦୃଷ୍ଟିରେ ପାଞ୍ଚାଳ ତନୟାଙ୍କୁ ଚାହିଁଲି । ମୋର ବକ୍ତବ୍ୟର ଶେଷ ଚ୍ରଣ ଶୁଣିବା ପରେ ସେ ଆଶାନ୍ୱିତା ହୋଇ ଉଠିଥିଲେ ।

ଏହାପୂର୍ବରୁ ମୁଁ ବହୁବାର ହସ୍ତିନା ଯାଇଛି । ମାତ୍ର ଏଥରକ ଯାତ୍ରା ବଡ଼ ମହତ୍ତ୍ୱପୂର୍ଣ୍ଣ । ଏକ ମହତ୍ ଉଦ୍ଦେଶ୍ୟ ନେଇ ମୋର ଏ ଯାତ୍ରା । ଭ୍ରାତୃ ବିବାଦର ଅବସାନ ହୋଇ, ପାରିବାରିକ ବିଦ୍ୱେଷର ସମାପ୍ତି ଘଟି ବନ୍ଧୁଭାବରେ କୁରୁ- ପାଣ୍ଡବ ରାଜତ୍ୱ କରିବେ ଏହାହିଁ ଏକ ଗୌଣ ଲକ୍ଷ୍ୟ; ମୁଖ୍ୟ ଲକ୍ଷ୍ୟ କିନ୍ତୁ ସମଗ୍ର ଆର୍ଯ୍ୟାବର୍ତ୍ତରେ ଶକ୍ତି ଓ ଶାନ୍ତିର ପୁନଃ ପ୍ରତିଷ୍ଠା, ପାପ ଓ ଅନ୍ୟାୟର ଅବସାନ । ମୁଁ ଯେତେବେଳେ ସନ୍ଧିର ଓ ଶାନ୍ତିର ପ୍ରସ୍ତାବ ନେଇ ଦୂତ ଭାବେ ଯାଉଛି, ମୋର ଏକାକୀ ଯିବା କଥା; ମାତ୍ର ମୋ ସହ ଯିବାପାଇଁ ସାତ୍ୟକୀ ଅତ୍ୟନ୍ତ ଆଗ୍ରହୀ ଥିବାରୁ ତାଙ୍କୁ ମଧ୍ୟ ଯିବାପାଇଁ ଅନୁମତି ଦେଲି । ମୁଁ ଜାଣିଥିଲି କୁରୁପତି ଦୁର୍ଯ୍ୟୋଧନ ଭଳି ଉଚ୍ଚାଭିଳାଷୀ, ଈର୍ଷ୍ୟାଳୁ, ବିଦ୍ୱେଷୀ ବ୍ୟକ୍ତି ପାଣ୍ଡବ ପକ୍ଷର ଶାନ୍ତି ଦୂତକୁ କେବେହେଲେ ଆନ୍ତରିକ ସ୍ୱାଗତ ଜଣେଇବ ନାହିଁ । ମୁଁ ତେଣୁ ସାତ୍ୟକୀଙ୍କୁ ନିର୍ଦ୍ଦେଶ ଦେଲି ଆମ ରଥରେ ଗୋପନରେ ସମସ୍ତ ଅସ୍ତ୍ର ଶସ୍ତ୍ର ଓ କେତେକ ଯୋଦ୍ଧା ରହନ୍ତୁ, ତେବେ ଯେକୌଣସି ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ଆମ୍ଭେମାନେ ହୋଇପାରିବୁ । ଆଗାମୀ କାଲିଠାରୁ ପୁଣି ଏକ ବୀରମେଧ ଯଜ୍ଞର ପ୍ରସ୍ତୁତି ପର୍ବ ଯେ ଆରମ୍ଭ ହୋଇଯିବ ଏ ସଂପର୍କରେ ମୁଁ ନିଃସନ୍ଦେହ ଥିଲି ।

●

## ।। ଏକବିଂଶତି ଗ୍ରନ୍ଥି ମୋଚନ ।।

ହସ୍ତିନାର ସୀମାନ୍ତରେ ପହଞ୍ଚିବା ବେଳକୁ ଅଶ୍ୱଗଣ, ସାରଥୀ ଦାରୁକ ତଥା ମୁଁ ଓ ସାତ୍ୟକୀ ପ୍ରତ୍ୟେକ କ୍ଲାନ୍ତ ହୋଇ ପଡ଼ିଥିଲୁ । ପଥ ମଧ୍ୟରେ ବୃକସ୍ଥଳ ଗ୍ରାମ । ସେଇଠାରେ ସେ ରାତ୍ରିଟି ବିଶ୍ରାମ ନେବା ପାଇଁ ସ୍ଥିର କଲୁ । ଛାୟା ସୁଶୀତଳ ବୃକ୍ଷଲତା ସମନ୍ୱିତ, କୂପ, ତଡ଼ାଗ ପରିବେଷ୍ଟିତ ମନୋରମ ଗ୍ରାମଟିଏ ବୃକସ୍ଥଳ । ଗ୍ରାମବାସୀଗଣ ଅତ୍ୟନ୍ତ ସରଳ, ନିରାଡ଼ମ୍ବର । ରଥ ରହିବାମାତ୍ରେ ଗ୍ରାମ୍ୟନାରୀଗଣଙ୍କ ହୁଳହୁଳି ଧ୍ୱନୀ ଓ ଶଙ୍ଖନାଦରେ ନିନାଦିତ ହେଲା ବାୟୁମଣ୍ଡଳ । ସେମାନଙ୍କ ହାର୍ଦ୍ଦିକ ସମ୍ବର୍ଦ୍ଧନାରେ ମୁଁ ମଧ୍ୟ ଅଭିଭୂତ ହୋଇ ପଡ଼ିଲି । ଗ୍ରାମର ମୁଖ୍ୟ ସପରିବାରେ ମୋର ପରିଚର୍ଯ୍ୟା ଓ ଆତିଥେୟତା ନିମିତ୍ତ ତତ୍ପର ହୋଇ ଉଠିଲେ । ପଥମଧ୍ୟରେ ବିତରଣ ନିମିତ୍ତ ପାଞ୍ଚାଳ ତନୟା ସୁପ୍ରଚୁର ଆମ୍ର, ପନସ, ଖର୍ଜ୍ଜୁର, ନାରିକେଳ, ପକ୍ୱ ରମ୍ଭାଦି ଦେଇଥିଲେ । ଗ୍ରାମବାସୀଙ୍କ ଭିତରେ ସେ ସମସ୍ତ ବଣ୍ଟନ କଲା ପରେ ବି ଆହୁରି ଅବଶିଷ୍ଟ ଥିଲା । ସେଥିରେ ଅନ୍ତତଃ ରାତ୍ରି ଭୋଜନ ଉତ୍ତମ ରୁପେ ହୋଇ ପାରିଥା'ନ୍ତା । କିନ୍ତୁ ମୋର ଅବସନ୍ନ ଦେହ ଓ ଉଦବିଗ୍ନ ମନ କୌଣସି ପ୍ରକାର ଖାଦ୍ୟ ଗ୍ରହଣ ପାଇଁ ପ୍ରସ୍ତୁତ ନଥିଲା । ଗ୍ରାମ ମୁଖ୍ୟଙ୍କର ଅଷ୍ଟାଦଶ ବର୍ଷିୟ ପୁତ୍ର ମୋର ପଦସେବା କରୁ କରୁ କୁଣ୍ଠିତ ଭାବେ କହିଲା - 'ମହାଭାଗ ! ଇନ୍ଦ୍ରପ୍ରସ୍ଥର ରାଜରାଣୀଙ୍କର ସର୍ବ କୁଶଳତ ?'

ମୁଁ କହିଲି - 'ତୁମେ କ'ଣ ତାଙ୍କୁ ଜାଣିଛ ? ଦୀର୍ଘ ତ୍ରୟୋଦଶ ବର୍ଷ କାଳ ସେମାନେ ରାଜ୍ୟରୁ ନିର୍ବାସିତ । ତୁମ ବୟସକୁ ବିଚାର କଲେ ମନେ ହେଉଛି ଦୀର୍ଘ ତ୍ରୟୋଦଶ ବର୍ଷ ପୂର୍ବେ ତୁମେ ମାତ୍ର ପାଞ୍ଚବର୍ଷର ଶିଶୁଟିଏ ଥିବ ।'

ସେ ଉତ୍ସାହିତ ଭାବେ କହିଲା - 'ହଁ ମହାଭାଗ ! ସତକଥା । ହେଲେ କେତୋଟି ମୁହୂର୍ତ୍ତର ସ୍ମୃତି ଆଜିବି ମୋ ପାଇଁ ଅମଳିନ । ଇନ୍ଦ୍ରପ୍ରସ୍ଥରେ ଅନୁଷ୍ଠିତ ରାଜସୂୟ ଯଜ୍ଞକୁ ମୁଁ ମୋ ପିତାଙ୍କ ସହ ଯାଇଥିଲି । ରାଜରାଣୀ ତାଙ୍କ ପୁଅମାନଙ୍କ ସହ ମୋତେବି କୋଳାଗ୍ରତ କରି ନିଜ ହାତରେ ଖୁଆଇ ଦେଇଥିଲେ । କୌରବ ବଧୂଙ୍କ ଭିତରୁ କେହି ଜଣେ ପ୍ରତିବାଦ କରିବାରୁ ସେ କହିଥିଲେ 'ଆହାଃ ! ଶିଶୁହିଁତ ଭଗବାନ ! ତା'ଛଡ଼ା ପ୍ରଜାହିଁତ ରାଜରାଣୀର ସନ୍ତାନ ।' ସେ ମୋତେ ଅନେକ ଗୁଡ଼ିଏ କ୍ରୀଡ଼ା ପୁତ୍ତଳିକା ଉପହାରବି ଦେଇଥିଲେ । ମୁଁ ଆଜିବି ସାଇତି ରଖିଛି । ଆଜିବି ଧର୍ମରାଜ ଯୁଧିଷ୍ଠିର, ତାଙ୍କ ଭାଇ ତଥା ରାଜରାଣୀଙ୍କର ଜୟଗାନ କରୁଛି ।'

ପାଞ୍ଚାଳ ତନୟାଙ୍କର ପ୍ରଜାବତ୍ସଳତା ସଂପର୍କରେ ମୁଁ ଯେ କିଛି ଜାଣିଥିଲି, ସେପରି ନୁହେଁ; କିନ୍ତୁ ସେମାନଙ୍କ ସପକ୍ଷରେ ଜନମତ ସଂଗ୍ରହ କରିବା ମୋର ଲକ୍ଷ୍ୟ ଥିଲା । ମୁଁ କହିଲି - 'ନବଯୁବକ ! ତୁମେ ବର୍ତ୍ତମାନ କୁରୁପତିର ପ୍ରଜା । କୁରୁପତିର ଶତୃପକ୍ଷର ଜୟଗାନ କରୁଛ କିପରି ? ଏହାତ ରାଜଦ୍ରୋହ ! ଏହାତ ସାଂଘାତିକ ଅପରାଧ !!'

ସେ ସ୍ତିମିତ ହୋଇ ଆସୁଥିବା ପ୍ରଦୀପର ଶିଖାକୁ ଆହୁରି ଟିକିଏ ତେଜି ପ୍ରଜ୍ୱଳିତ କରି କହିଲା - 'ମୋ ହୃଦୟ ରାଜ୍ୟରେତ ଅଧିଷ୍ଠିତ ହୋଇଛନ୍ତି ପଣ୍ଡୁସୁତଗଣ ତଥା ରାଜରାଣୀ ପାଞ୍ଚାଳୀ ! କେବଳ ମୁଁ କାହିଁକି ବୃକସ୍ଥଳର ପ୍ରତ୍ୟେକଙ୍କର ଏହାହିଁ ଅନ୍ତର୍ବାଣୀ । ଆଉ ରାଜଦ୍ରୋହ କଥା କହିଲେ ଯେ, ସେଥିପାଇଁ ବର୍ଷ ବର୍ଷ ଧରିତ ଶାସ୍ତିଗ୍ରହଣ କରି ଆସୁଛି । ଏଇ ଦେଖନ୍ତୁ !'

ଅଠର ବର୍ଷର କଅଁଳ ହାତ ଦୁଇଟିକୁ ସେ ମୋ ଆଖି ସାମ୍ନାରେ ଖୋଲି ଧରିଲା । କଅଁଳ ହାତ ପାପୁଲି ସାରା ବେତ୍ରାଘାତର ଦାଗ । ମୁଁ ସେ ହାତ ଦୁଇଟିକୁ ମୁଠେଇ ଧରି ମୋ ବକ୍ଷ ପୂଟରେ ଚାପି ଧରିଲି ଓ ପଚାରିଲି - 'ଇଏତ ବେତ୍ରାଘାତ ର ଚିହ୍ନ ଯୁବକ !'

ସେ ଗର୍ବର ସହ କହିଲା - 'ହଁ ମହାଭାଗ ! ଦୈନିକ ଏକଶହ ବେତ୍ରାଘାତ ମୁଁ କୁରୁପତିଙ୍କଠାରୁ ପାଇ ଆସୁଛି । ଯେଉଁ ଦିନୁ କହିଲିଣି ଯେ ଯଦି କୁରୁପାଣ୍ଡବ ଯୁଦ୍ଧ ହୁଏ ତେବେ ମୁଁ ପାଣ୍ଡବ ପକ୍ଷରେ ଯୋଗ ଦେବି । ମୋ ହାତ ଯେମିତି ଅସ୍ତ୍ର ଧାରଣରେ ସକ୍ଷମ ନହେବ ସେଥିପାଇଁ ଶକୁନୀଙ୍କ ପ୍ରରୋଚନାରେ କୁରୁପତି ଏ ବ୍ୟବସ୍ଥା କରିଛନ୍ତି । ସେ ଜାଣନ୍ତି ନାହିଁ ଯେ ଏହାଦ୍ୱାରା ଆଘାତ ସହନର କ୍ଷମତା ମୋର ଆହୁରି ବୃଦ୍ଧି ପାଉଛି, ମନୋବଳ ଆହୁରି ଦୃଢ଼ ହେଉଛି । ଆଘାତ ଦେବା ବ୍ୟକ୍ତିଠାରୁ ଆଘାତ ପାଇବା ବ୍ୟକ୍ତିର ଶକ୍ତି ଯେ ଅଧିକ ତା' କ'ଣ ଲୌହଭୀମ ପ୍ରମାଣିତ କରୁନାହିଁ ?'

ମୁଁ ବିସ୍ମିତ ଭାବେ ପ୍ରଶ୍ନ କଲି - 'ଲୌହଭୀମ ?'

ସେ କହିଲା - 'ହଁ ମହାଭାଗ ! ଲୌହଭୀମ ଦ୍ୱିତୀୟ ପାଣ୍ଡବ ବନବାସୀ ହେବାଦିନଠାରୁ ଏକ ଲୌହନିର୍ମିତ ଭୀମସେନଙ୍କ ମୂର୍ତ୍ତି ହସ୍ତିନା ନଗରର ଏକ ସ୍ଥାନରେ ଶୋଭା ପାଉଛି । ପ୍ରତ୍ୟହ ପ୍ରଭାତରେ କୁରୁପତି ତାଙ୍କର ସମସ୍ତ କ୍ରୋଧାଗ୍ନି ସହ ସେହି ମୂର୍ତ୍ତିକୁ ଗଦା ଦ୍ୱାରା ପ୍ରହାର କରୁଛନ୍ତି !'

ମୁଁ ଚମକି ପଡ଼ିଲି । ମୁଁ ଶାନ୍ତିର ବାର୍ତ୍ତା ବହ ହୋଇ ଆସିଛି । ଅଥଚ ହସ୍ତିନା ନଗରତ ଏକ ବାରୁଦ ସ୍ତୁପ ଉପରେ ଠିଆ ହୋଇଛି ! ଯୁଦ୍ଧପାଇଁ କୁରୁପତି ତେବେ ସମସ୍ତ ପ୍ରସ୍ତୁତି ଶେଷ କରିସାରିଛନ୍ତି !

ମୁଁ ମୋର ସମସ୍ତ ଭାବାବେଗକୁ ସମ୍ବରଣ କରି ଧିର ସ୍ୱରରେ ପଚାରିଲି - 'ଯୁବକ ! ତୁମ ନାମ ?'

ସେ ସ୍ଫୀତ ବକ୍ଷରେ ସ୍ପଷ୍ଟ କଣ୍ଠରେ କହିଲା - 'ସାହସ !'

ରାତି ପାହି ପ୍ରଭାତ ହେବା ବେଳକୁ ଦେଖିଲି ଗ୍ରାମ ମୁଖ୍ୟଙ୍କ ଦ୍ୱାର ଦେଶରେ ହସ୍ତିନାର ପ୍ରମୁଖ ବ୍ୟକ୍ତିଗଣ ଉପସ୍ଥିତ । କୁରୁପିତାମହ ଭୀଷ୍ମ, ବିଦୁର, ଅଂଗରାଜ କର୍ଣ୍ଣ, ଦୁଃଶାସନ, ଶକୁନୀ, ଆଚାର୍ଯ୍ୟ ଦ୍ରୋଣ ଏବଂ ସ୍ୱୟଂ କୁରୁପତି ଦୁର୍ଯ୍ୟୋଧନ । କୁରୁପିତାମହ ଭୀଷ୍ମଙ୍କୁ ପ୍ରଣତହେବା ସମୟରେ ସେ ମୋତେ ପ୍ରଣତ ହେବାକୁ ନଦେଇ ଆଲିଙ୍ଗନାବଦ୍ଧ କରିପକାଇଲେ । ମୁଁ ତାଙ୍କ ବକ୍ଷ ଲଗ୍ନ ହେବା ସମୟରେ ଅତି ଧିରେ ତାଙ୍କୁ ପ୍ରଶ୍ନ କଲି -

'ଆପଣ ବି କ'ଣ ପକ୍ଷଭୁକ୍ତ ?'

ତାଙ୍କ ଦୃଷ୍ଟି ବାଷ୍ପାଛନ୍ନ ହୋଇଉଠିଲା । ସେ ମଧ୍ୟ ଅନୁରୂପ ଧିର ସ୍ୱରରେ କହିଲେ - 'ହେ ଅନ୍ତର୍ଯ୍ୟାମୀ ! ତୁମକୁ କେଉଁ କଥା ଅଛପା ? ମୁଁ ନାଚାର !'

ଶକୁନୀର ଦୃଷ୍ଟି ତୀକ୍ଷ୍ଣ ସଜାଗ ହୋଇ ଉଠିବା ଦେଖି ଆମେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇଗଲୁ । ଦୁର୍ଯ୍ୟୋଧନ ବହୁ ମହାର୍ଘ ଉପଢୌକନ ଆଣିଥିଲେ । ମୁଁ ସେସବୁ କିଛି ଗ୍ରହଣ କଲି ନାହିଁ ।

ସାରା ପଥ ଦୁର୍ଯ୍ୟୋଧନ ବିଳାସପୂର୍ଣ୍ଣ ବ୍ୟବସ୍ଥା କରିଥିଲେ । ଉତ୍ତୋମତ୍ତମ ଭୋଜନ, ପାନୀୟ, ବିଶ୍ରାମ ସମୟରେ ଚିତ୍ତ ବିନୋଦନର ସର୍ବବିଧ ବ୍ୟବସ୍ଥା, ଏ ସବୁଥିରେ ଟିକିଏ ହେଲେ ତ୍ରୁଟି ନଥିଲା । ମାର୍ଗର ଦୁଇ ପାର୍ଶ୍ୱରେ ମଦସ୍ରାବୀ ଶତସଂଖ୍ୟକ ମତ୍ତଗଜ, କ୍ଷିପ୍ରଗାମୀ ଅଶ୍ୱସମୂହ ସୁକଣ୍ଠୀ ଗାୟିକା ଓ ନର୍ତ୍ତକୀ ସମୂହ । ଛତ୍ର, ବୈରଖ, ଘଣ୍ଟ, ଘଣ୍ଟା ମର୍ଦ୍ଦଳାଦି ବାଦ୍ୟ ସମୂହର ସମଭିବ୍ୟାହାରରେ ସମଗ୍ର ଶୋଭାଯାତ୍ରାଟି ଯଦିଓ ଅପୂର୍ବ ଥିଲା; ମୁଁ କିନ୍ତୁ ପ୍ରତି ମୁହୂର୍ତ୍ତରେ ଅଶ୍ୱସ୍ତି ଅନୁଭବ କରୁଥିଲି । କାରଣ ମୋର ଭୂମିକା ତ 'ଦୂତ' ମାତ୍ର । ଯେଉଁ ମାନଙ୍କର ଦୌତ୍ୟଭୂମିକା ଗ୍ରହଣ କରିଥିଲି ସେମାନଙ୍କୁ ଏଇଭଳି ଆପ୍ୟାୟନ କରିଥିଲେ କୁରୁପତି ହୁଏତ ଦୂର ଦୃଷ୍ଟିର ପରିଚୟ ଦେଇଥା'ନ୍ତେ ! ମାତ୍ର ତାଙ୍କର ସବୁ କଥା ଓ କାର୍ଯ୍ୟ ଦୂରଭିସନ୍ଧିଯୁକ୍ତ, ଉଦ୍ଦେଶ୍ୟ ପ୍ରଣୋଦିତ । ମୁଁ କୌଣସି ଖାଦ୍ୟ, ପାନୀୟ ବା ଉପଢୌକନ ଗ୍ରହଣ ନକରିବା ଦେଖି ଚିନ୍ତିତ କୁରୁପତି ମୋତେ ପ୍ରଶ୍ନ କଲେ - 'ବାସୁଦେବ ! କୌରବଙ୍କ ଠାରୁ କିଛି ହେଲେ - ନେବ ନାହିଁ ବୋଲି ତୁମେ କ'ଣ ପ୍ରତିଜ୍ଞାବଦ୍ଧ ?'

ଯେତେସବୁ ଆୟୋଜନ ସବୁ କିଛି କୌରବଙ୍କର ଅହଂକାରର ପ୍ରଦର୍ଶନୀ ମାତ୍ର

ଥିଲା । ମୁଁ ସବୁକିଛି ସହିପାରେ, ଏମିତିକି ଭକ୍ତର ପଦାଘାତ ସୁଦ୍ଧା ! କେବଳ 'ଅହଂ' ମୋର ସହ୍ୟ ହୁଏ ନାହିଁ । କିନ୍ତୁ ମୋର ମନୋଭାବକୁ ଗୋପନ ରଖି ଅତ୍ୟନ୍ତ ବିନୀତ ଭାବେ କହିଲି - 'ଦୂତର ଯାହା କରଣୀୟ ସେ କଥାତ କୁରୁପତିଙ୍କୁ ଅବିଦିତ ନଥିବ ! ମୁଁ ଯେଉଁ ଉଦ୍ଦେଶ୍ୟରେ ଆସିଛି ସେ ଉଦ୍ଦେଶ୍ୟ ଯଦି ସିଦ୍ଧି ନହୁଏ ତେବେତ ମୋତେ ସେଇଭଳି ଜଳଗ୍ରହଣ ବିନା ଫେରିଯିବାକୁ ପଡ଼ିବ !' କୁରୁପତି ତାଚ୍ଛଲ୍ୟରେ କେବଳ କହିଲେ - 'ଓ !' ସଭାସ୍ଥଳରେ ପହଞ୍ଚିବା ପରେ ଧୃତରାଷ୍ଟ୍ରଙ୍କ ପକ୍ଷରୁ ଯଦିଓ ଭବ୍ୟ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା; କିନ୍ତୁ ସେଥିରେ ଆନ୍ତରିକତା କମ୍ ଥିଲା, ବେଶୀ ଥିଲା ଆଡ଼ମ୍ବରର ପ୍ରଦର୍ଶନ ।

ପରିଶେଷରେ ସନ୍ଧି ପ୍ରସ୍ତାବ ଗୃହୀତ ହେଲା ନାହିଁ । ଶାନ୍ତି ଓ ସଦ୍‌ଭାବ ପ୍ରତିଷ୍ଠାର ସ୍ୱପ୍ନ ସ୍ୱପ୍ନରେହିଁ ରହିଗଲା । ବହୁ ତର୍କ ତର୍ଜମା ପରେ ଦୁର୍ବିନୀତ ଦୁର୍ଯ୍ୟୋଧନ ନିଜର ସ୍ୱରୂପ ପ୍ରକାଶ କରିଦେଲେ । କୁରୁପିତାମହ ଭୀଷ୍ମଙ୍କର ଅକାଟ୍ୟ ଯୁକ୍ତି ମଧ୍ୟ ଗ୍ରହଣୀୟ ହେଲାନାହିଁ ଓ ସେ ସଭା ତ୍ୟାଗ କରି ଚାଲିଗଲେ । ସେ ଚାଲିଯିବାପରେ ଶକୁନୀ ଦ୍ୱାରା ପ୍ରରୋଚିତ ଦୁର୍ଯ୍ୟୋଧନର ମନୋବଳ ଆହୁରି ବୃଦ୍ଧି ପାଇଲା । ଏପରିକି ସେ ମୋତେ ବନ୍ଦୀ କରିବା ପାଇଁ ମଧ୍ୟ ପରୋକ୍ଷ ନିର୍ଦ୍ଦେଶ ଦେଲା । ଧୃତରାଷ୍ଟ୍ର ନିତାନ୍ତ ଅସହାୟଭଳି ଚୁପ୍ ହୋଇ ବସିରହିଥିଲେ । ବିଦୂର ଉଦ୍‌କ୍ଷିପ୍ତ ହୋଇ ଉଠି କହିଲେ - 'କୁରୁପତି ! ତୁମ ଯୁକ୍ତିରେ କୌଣସି ଯଥାର୍ଥତା ନାହିଁ । ତୁମେ ଯୁଦ୍ଧ ଚାହଁ । ଯୁଦ୍ଧର ପ୍ରଶ୍ନ ଉଠୁଛି କେଉଁଠୁ ? ତ୍ରୟୋଦଶ ବର୍ଷ ପୂର୍ବେ ତୁମେ ମାତ୍ର ଗୋଟିଏ ସର୍ତ୍ତହିଁ ରଖିଥିଲ । ସେ ସର୍ତ୍ତ ପାଣ୍ଡବଗଣ ପୂରଣ କରିଛନ୍ତି, ସୁତରାଂ ସ୍ୱତଃ ତୁମେ ସେମାନଙ୍କ ନ୍ୟାଯ୍ୟ ପ୍ରାପ୍ୟ ଫେରସ୍ତ ଦେବା କଥା । ତା' ତୁମେ କରୁନାହଁ । ବରଂ ଶାନ୍ତିର ବାର୍ତ୍ତାବହ ମଧୁସୂଦନକୁ ବନ୍ଦୀ କରିବାର ଯୋଜନା କରୁଛ ? ଛିଃ ! ଏତିକି ଜାଣି ପାରୁନାହଁ କଂସର କାରାକକ୍ଷ ଯେଉଁ ଶିଶୁକୁ ସୁଦ୍ଧା ବନ୍ଦୀ ଭାବରେ ରଖିବାକୁ ଦିନେ ଅସମର୍ଥ ହୋଇଥିଲା ତାଙ୍କ ପାଇଁ ତୁମେ କେଉଁ ବନ୍ଦୀଗୃହ ନିର୍ମାଣ କରିବ ?' ତାଙ୍କର ବକ୍ତବ୍ୟ ଶେଷ ହେବା ପୂର୍ବରୁ ଦୁର୍ଯ୍ୟୋଧନ ତାହାର ଈର୍ଷ୍ୟା କଳୁଷିତ ଅନ୍ତର୍ବାଣୀ ପ୍ରକଟ କରିଦେଲା - 'କେଉଁଦିନ ? କେଉଁଦିନ କ୍ଷତ୍ତା ବିଦୂର ଆମ ପକ୍ଷ ସମର୍ଥନ କରିଛନ୍ତି ? ଅଥଚ ଚିରକାଳ ଆମରି ଅନ୍ନରେ ପ୍ରତିପାଳିତ ହୋଇଛନ୍ତି । ପାଣ୍ଡବଙ୍କ ଶକ୍ତିକୁ ଭୟ କରି ତାଙ୍କୁ ଉତ୍କୋଚ ସ୍ୱରୂପ ରାଜ୍ୟ ଦାନ କଲାଭଳି ଆମ୍ଭେମାନେ ଭୀରୁ ବା ଦୁର୍ବଳ ନୋହୁଁ ! କ୍ଷତ୍ରିୟ ଆମେ । ଯୁଦ୍ଧହିଁ ଆମର ପରିଚୟପତ୍ର । ବାସୁଦେବ ପାଣ୍ଡବଙ୍କର ଯେତେ ଉତ୍କର୍ଷତା ପ୍ରଚାର କଲେବି ଆମେ ତାଙ୍କୁ ପାଞ୍ଚଖଣ୍ଡ ପଡ଼ା ଦେବାକୁ ବାଧ୍ୟ ନୁହେଁ । ଆବାଲ୍ୟରୁ ଆମସହ କ'ଣ ଚକ୍ରକତା କରାଯାଇନାହିଁ ? ମୋର ପିତା ଜ୍ୟେଷ୍ଠ । ଅଥଚ ପଣ୍ଡୁଙ୍କୁ କିଭଳି ସିଂହାସନରେ ଅଧିଷ୍ଠିତ କରାଯାଇଥିଲା ? ପିତାଙ୍କର ଜ୍ୟେଷ୍ଠପୁତ୍ର ମୁଁ; ସିଂହାସନରେ ମୋର ଅଧିକାର । ସେମାନଙ୍କ ପ୍ରଶ୍ନ ଉଠୁଛି କେଉଁଠୁ ? ତା' ଛଡ଼ା ସେମାନେ କିଏ ଭଲା ପଣ୍ଡୁଙ୍କ ସନ୍ତାନ ଯେ ଆମେ ତାଙ୍କୁ ରାଜ୍ୟ ଦେବାକୁ ବାଧ୍ୟ ହେବୁ ?'

ଦୁର୍ଯ୍ୟୋଧନର ଏଇ କଥା ପଦକରେ ମୁଁ କୁରୁ ପିତାମହ ଭୀଷ୍ମଙ୍କୁ ଲକ୍ଷ୍ୟ କଲି । ତାଙ୍କ ଚକ୍ଷୁପ୍ରାନ୍ତରେ ବ୍ୟଞ୍ଜିତ ହୋଇରହିଥିଲା ! ସେ ଚକ୍ଷୁ ଯେମିତି କହୁଥିଲା - 'ଦୁର୍ଯ୍ୟୋଧନ ! ତୁମେ ଅବୋଧ ବାଳୁତ । ତୁମ ବଂଶ ଧାରାର ଇତିହାସ ତୁମେ କ'ଣ ଜାଣ ?'

ଆଚାର୍ଯ୍ୟ ଦ୍ରୋଣ, ପିତାମହ ଭୀଷ୍ମ, ବିଦୁର ଓ ଅନ୍ୟାନ୍ୟ ଶୁଭେଚ୍ଛୁଗଣ ଦୁର୍ଯ୍ୟୋଧନଙ୍କୁ ଯେତେ ପ୍ରକାରେ ବୁଝାଇଲେବି ସେ ଆଦୌ ସନ୍ଧି ପ୍ରସ୍ତାବରେ ସମ୍ମତ ହେଲାନାହିଁ । ସମସ୍ତଙ୍କୁ ସ୍ତବ୍ଧ କରିଦେଇ ସେ ତା'ର ଶେଷ ନିଷ୍ପତ୍ତି ଜଣାଇ ଦେଲା ଯେ -'ବିନା ଯୁଦ୍ଧରେ ମୁଁ ସୂଚ୍ୟଗ୍ର ପରିମିତ ମେଦିନୀ ଦେବିନାହିଁ !'

ଯୁଦ୍ଧ ! ଯୁଦ୍ଧ !! ଯୁଦ୍ଧ ହିଁ ତା'ର ଏକମାତ୍ର କାମ୍ୟ !

ଖାଲି ସେତିକି ନୁହେଁ ତା'ର ଏ ରକ୍ତତୃଷା କିପରି ଖୁବ୍ ଶୀଘ୍ର କାର୍ଯ୍ୟକାରୀ ହେବ ସେଥିପାଇଁ ସେ ମୋତେ ବନ୍ଦୀ କରିବାର ଯୋଜନା ଆରମ୍ଭ କରିଦେଲା । ମୋର ସହଯାତ୍ରୀ ସାତ୍ୟକୀ, କୃତବର୍ମା ପ୍ରଭୃତି ସତର୍କ ସଜାଗ ଥିଲେ । ମୁଁ ନିଜେ ମଧ୍ୟ ଏଭଳି ଭୟଙ୍କର ରୂପ ପ୍ରକଟ କଲି ଯେ ସମଗ୍ର ସଭାସ୍ଥଳ ସ୍ତବ୍ଧ ହୋଇଯାଇଥିଲା ସେଦିନ । ରାଜନୀତିରେ ଦୂତ ଜଣେ ସମ୍ମାନିତ ବ୍ୟକ୍ତି । ସେ ନ୍ୟାୟ ନିରପେକ୍ଷ ତଥା ଉଭୟ ପକ୍ଷର ହିତୈଷୀ, ଏଇ ସାଧାରଣ ନିୟମ ସୁଦ୍ଧା କୁରୁପତି ସେଦିନ ବିସ୍ମୃତ ହୋଇଯାଇଥିଲେ ।

ମୁଁ ସଭାସ୍ଥଳ ତ୍ୟାଗକରି ଚାଲି ଆସିଲି । ମାତ୍ର ପାଞ୍ଚଖଣ୍ଡି ପଡ଼ାର ଦାବୀ ମଧ୍ୟ ଗୃହୀତ ହେଲା ନାହିଁ । ଶାନ୍ତି ପ୍ରତିଷ୍ଠାର ସମସ୍ତ ଦ୍ୱାର ଉନ୍ମୁକ୍ତ ଥିବା ସତ୍ତ୍ୱେ ଦୁର୍ଯ୍ୟୋଧନ ପଥଭ୍ରଷ୍ଟ ହୋଇଗଲେ । ନିଜ ହାତରେ ସମସ୍ତ ଦ୍ୱାର ସେ ରୁଦ୍ଧ କରି ଯେଉଁ ରାସ୍ତାରେ ପାଦଦେଲେ ସେ ରାସ୍ତା ମୃତ୍ୟୁର ଗହ୍ୱରରେହିଁ ଶେଷ ହେବା ନିଶ୍ଚିତ ଥିଲା । ହେ ମହାକାଳ ! ତୁମର ଉଦ୍ଦେଶ୍ୟ ସିଦ୍ଧି ହେଉ ।

ଯଦିଓ ଏ ଦୁର୍ଘଟଣାପରେ ଧୃତରାଷ୍ଟ୍ର ଭୟଭୀତ ହୋଇ ଯାଇଥିଲେ ଓ ଭୀଷ୍ମ ବିଦୁର ପ୍ରଭୃତିଙ୍କ ପରାମର୍ଶରେ ମୋତେ ପୁଣିଥରେ ନିମନ୍ତ୍ରଣ ଜଣାଇଥିଲେ ରାଜଭବନକୁ । ମୁଁ କିନ୍ତୁ ବିନୟ ସହକାରେ ଜଣେଇଦେଲି - 'ଶ୍ରଦ୍ଧାରେ ଫୁଲ, ଫଳ, ଜଳ ଯାହା ଦେଲେ ବି ମୁଁ ସାଦରେ ଗ୍ରହଣ କରେ । ଅଶ୍ରଦ୍ଧାରେ ଉତ୍ତମୋତ୍ତମ ଖାଦ୍ୟ ମଧ୍ୟ ମୋର ଜୀର୍ଣ୍ଣ ହୁଏ ନାହିଁ ।'

ସୁତରାଂ ମୁଁ ବିଦୁରଙ୍କ ଆତିଥ୍ୟ ସ୍ୱୀକାର କଲି । ସେଦିନ ବିଦୁରଙ୍କ ଗୃହରେ ଶାକାନ୍ନ ପରିତୃପ୍ତିର ସହ ଭୋଜନ କରିଥିଲି । ତା'ଛଡ଼ା ମୋର ଆଉ ଏକ ଉଦ୍ଦେଶ୍ୟ ଥିଲା ପିଉସୀ କୁନ୍ତୀଙ୍କୁ ଦର୍ଶନ କରିବା । ଯୁଦ୍ଧ ସଂପର୍କରେ ତାଙ୍କ ମତାମତ ସଂଗ୍ରହ କରିବା ।

ଦୀର୍ଘ ତ୍ରୟୋଦଶ ବର୍ଷ ପରେ ପିଉସୀ କୁନ୍ତୀଙ୍କ ସହ ମୋର ସାକ୍ଷାତ । ଅତ୍ୟନ୍ତ ଜୀର୍ଣ୍ଣ ଦିଶୁଥିଲେ ସେ । ଯେମିତି ଖୁବ୍ ଗୁଡ଼ାଏ ବୟସ ବଢ଼ିଯାଇଥିଲା । ମୋତେ ଦେଖିବାମାତ୍ରେ ତାଙ୍କର କରୁଣ ନୟନ ଦୁଇଟି ଲୁହରେ ଅନ୍ଧ ହୋଇଗଲା । ମୋର ସମଗ୍ର ଶରୀରକୁ ଆଉଁଷି ପକେଇଲେ ଆବେଗରେ । ବାଷ୍ପରୁଦ୍ଧ କଣ୍ଠରୁ ଗୋଟିଏ ହେଲେ ଶବ୍ଦ ସ୍ଫୁରିତ ହେଲା ନାହିଁ ଅନେକକ୍ଷଣ । ଆହାଃ ! ସାରାଜୀବନ ଦୁଃଖର ଭାରକୁ ବହନକରିଚାଲୁଥିବା, ପ୍ରତି ମୁହୂର୍ତ୍ତରେ କ୍ଷତ ବିକ୍ଷତ ଲହୁ ଲୁହାଣ ହେଉଥିବା ନାରୀଟିଏ । କୈଶୋରର ଦୁର୍ଘଟଣାଟି ତାଙ୍କ ହୃଦୟର ଗଭୀର ପ୍ରଦେଶରେ ଯେଉଁ ଗୋପନ କ୍ଷତଟିଏ ସୃଷ୍ଟି କରିଦେଲା ସେଥିରୁ ଅହରହ ରକ୍ତ କ୍ଷରଣ ହେଉଥିବ । ଯୌବନରେ ପତି ବିଛେଦ ସାଂଗକୁ ଛୋଟ ଛୋଟ ପୁତ୍ରମାନଙ୍କ ସହ ଇତସ୍ତତଃ ଘୂରି ବୁଲି ଜୀବନ ବଞ୍ଚାଇବାର ଯେଉଁ ସଂଗ୍ରାମ ତା'ର ଧକ୍କା ମଧ୍ୟ ପ୍ରଚଣ୍ଡ । ପୁଣି ବାର୍ଦ୍ଧକ୍ୟରେ ପୁତ୍ରମାନଙ୍କଠାରୁ ବିଛିନ୍ନା ହୋଇ ପରାଶ୍ରିତା ଭାବେ କାଳକାଟିବା ତାଙ୍କ ପାଇଁ ଆହୁରି ମର୍ମନ୍ତୁଦ । ଜଣ ଜଣଙ୍କର ଲଲାଟରେ ଲିପିବଦ୍ଧ ହୋଇଥାଏ ଦୁଃଖ ଓ ଦୁର୍ଭାଗ୍ୟ । କୁନ୍ତୀଙ୍କର ସମଗ୍ର ଜୀବନ ଦୁଃଖର ଏକ ଅସରନ୍ତି ସ୍ରୋତ । କୁନ୍ତୀ ରାଜକନ୍ୟା - ରାଜବଧୂ - ରାଜରାଣୀ - ରାଜମାତା ହୋଇବି ସମଗ୍ର ଜୀବନ ବିନିମୟରେ ସୁଦ୍ଧା ସୁଖ ଟିକିଏ ପାଇ ପାରିଲେ ନାହିଁ । ମୁଁ ତାଙ୍କ ଠାରୁ ବିଦାୟ ନେବା ସମୟରେ ପ୍ରଶ୍ନ କଲି - 'ପୁତ୍ରମାନଙ୍କ ପାଇଁ କିଛି ସନ୍ଦେଶ ?' ସେ ଅଶ୍ରୁପୂରିତ ନୟନରେ ମୋତେ କିଛି ସମୟ ଚାହିଁଲେ ତାପରେ ଧିର ଅଥଚ ଦୃଢ଼ ସ୍ୱରରେ କହିଲେ - 'ଗୋବିନ୍ଦ ! ମୋର ଏ ପରିଣତ ବୟସରେ ମୁଁ ମୋ ପୁତ୍ରଙ୍କଠାରୁ ବିଛିନ୍ନା ହୋଇ ରହିଛି । ବିଦୁର ଓ ତାଙ୍କପତ୍ନୀ ମୋର ଅନେକ ଯତ୍ନ ନେଇଛନ୍ତି, ପରିଚର୍ଯ୍ୟା କରିଛନ୍ତି । କିନ୍ତୁ ପଞ୍ଚପୁତ୍ରର ଜନନୀ କୁନ୍ତୀର କ'ଣ ଏହାହିଁ କାମ୍ୟ ଥିଲା ? ଜଣେ କ୍ଷତ୍ରିୟ ରମଣୀ ଭାବେ ଯେଉଁ ଆଶାରେ ମୁଁ ବୀରପୁତ୍ର ପ୍ରସବ କରିଥିଲି ଆଜି ସେ ଆଶା ଫଳବତୀ ହେବାର ଲଗ୍ନ ଉପସ୍ଥିତ । ଅନ୍ୟର ଦାନରେ ବଞ୍ଚିବା କ୍ଷତ୍ରିୟର ଧର୍ମ ନୁହେଁ । ମୋର ପୁତ୍ରମାନେ କ'ଣ ଜାଣନ୍ତି ନାହିଁକି ପୂର୍ବେ ରାଜର୍ଷି ମୁଚୁକୁନ୍ଦଙ୍କୁ କୁବେର ପରିତୁଷ୍ଟ ହୋଇ ବହୁ ରତ୍ନଭଣ୍ଡାର ସହ ରାଜ୍ୟ ଅର୍ପଣ କରିବାକୁ ଚାହିଁଥିଲେ; କିନ୍ତୁ ମୁଚୁକୁନ୍ଦ ତାହା ପ୍ରତ୍ୟାଖ୍ୟାନ କରି କହିଥିଲେ, କ୍ଷତ୍ରିୟ ଅନ୍ୟର ଦାନଗ୍ରହଣ କରେ ନାହିଁ, ସ୍ୱୀୟ ଭୁଜ ଓ ବୀର୍ଯ୍ୟ ବଳରେ ସେ କାମ୍ୟ ବସ୍ତୁକୁ ଜୟ କରି ଅକ୍ଷୟ ଯଶର ଅଧିକାରୀ ହୁଏ । ଜଣେ କ୍ଷତ୍ରିୟ ଜନନୀ ଭାବେ ମୁଁ ବି ଆଶା କରୁଛି ମୋର ପୁତ୍ରଗଣ ବାହୁବଳରେ ଆପଣାର ପ୍ରାପ୍ୟ ଜୟ କରି ସମ୍ମାନର ସହ ବଞ୍ଚନ୍ତୁ । ମୋର କଲ୍ୟାଣୀ ପୁତ୍ରବଧୂ ଦ୍ରୁପଦ ନନ୍ଦିନୀଙ୍କୁ କହିବ ମଧୁସୂଦନ, ମୋର ବୀରପୁତ୍ରଗଣ ତାଙ୍କ ଅପମାନର ପ୍ରତିଶୋଧ ଅବଶ୍ୟ ଦେବେ ।'

ବାସ୍ ! କୁନ୍ତୀଙ୍କର ମନୋଭାବ ମୋ ନିକଟରେ ସ୍ପଷ୍ଟ ହୋଇଗଲା । ଧର୍ମରାଜ ଯୁଧିଷ୍ଠିରଙ୍କ ପାଇଁ ମଧ୍ୟ କୌଣସି ବାଧା ରହିଲା ନାହିଁ । ରଥାରୋହଣ କରିବା ପରେ ମୋର

ସ୍ମରଣ ହେଲା କୁନ୍ତୀଙ୍କ ପକ୍ଷରୁ ଏ ଯୁଦ୍ଧରେ ଆଉ ଏକ ଅଜ୍ଞାତ ପ୍ରତିବନ୍ଧକ ଅଛି । ସେ ହେଉଛନ୍ତି ଅଂଗାଧିପତି କର୍ଣ୍ଣ ! ଯମୁନା ନଦୀ ତୀରକୁ ରଥ ବାହିନେବାକୁ ମୁଁ ଦାରୁକଙ୍କୁ ନିର୍ଦ୍ଦେଶ ଦେଲି ।

ସ୍ନାନ ଦାନ୍ୟାଦି ଶେଷ କରି ଦାନବୀର କର୍ଣ୍ଣ ଦୃଢ଼ ପଦକ୍ଷେପରେ ଆଗେଇ ଆସୁଥିଲେ ଅନ୍ୟମନସ୍କ ଭାବେ । ଅପରାହ୍ନର ଛାୟାଛନ୍ନ ଅରଣ୍ୟ ପଥରେ ଦ୍ୱିତୀୟ ସୂର୍ଯ୍ୟ ସଦୃଶ ତେଜସ୍ୱୀ କର୍ଣ୍ଣ ଆଗେଇ ଆସୁ ଆସୁ ହଠାତ୍ ଅଟକି ଗଲେ । ଗୁଳ୍ମାଚ୍ଛାଦିତ ପଥମଧ୍ୟରୁ କେହି ଜଣେ ଆଗେଇ ଆସି ତାଙ୍କ ପଥରୋଧ କରି ତାଙ୍କ ପଦତଳେ ବିନୟା ବନତ ପ୍ରଣାମ ଜଣେଇଲା । କିଛି ଦୂରରେ ରଥ ରଖି ମୁଁ ଚାଲି ଚାଲି ଯାଉଥିଲି । ସେମାନଙ୍କ ଆଳାପ ଶୁଣିବାପାଇଁ ମୁଁ ବୃକ୍ଷ ଅନ୍ତରାଳରେ ଆତ୍ମଗୋପନ କଲି । ଆଗନ୍ତୁକ ଆଉ କେହି ନୁହେଁ - ନାଗବଂଶୀ ଅଶ୍ୱସେନ । ଅତୀତର ଘଟଣାବଳୀ ମୋ ଚକ୍ଷୁ ସମ୍ମୁଖରେ ସ୍ପଷ୍ଟ ହୋଇଗଲା । ଶ୍ୱେତକୀ ନରେଶଙ୍କର ଦ୍ୱାଦଶ ବର୍ଷବ୍ୟାପି ମହାଯଜ୍ଞରେ ଅପରିମିତ ଘୃତଭକ୍ଷଣ ହେତୁ ଅଗ୍ନିଦେବ ରୋଗମୁକ୍ତ ହୋଇ ତେଜହୀନ, ବଳ ବୀର୍ଯ୍ୟହୀନ ହୋଇଥିଲେ । ଖାଣ୍ଡବ ବନବାସୀ ପ୍ରାଣୀ ସକଳଙ୍କର ଅଗ୍ନିଦଗ୍ଧ ମେଦ ଭୋଜନରେ ତାଙ୍କର ରୋଗମୁକ୍ତ ହେବା ନିଶ୍ଚିତ ଥିଲା । ଅଗ୍ନି ସାତଥର ଚେଷ୍ଟା କରି ଅସଫଳ ହୋଇଥିଲେ । କାରଣ ତକ୍ଷକ ନାଗ ସପରିବାରେ ସେହି ଅରଣ୍ୟରେ ବସବାସ କରୁଥିଲା, ସେ ଦେବରାଜ ଇନ୍ଦ୍ରଙ୍କର ଘନିଷ୍ଠ ବନ୍ଧୁ । ସୁତରାଂ ଅଗ୍ନି ପ୍ରଜ୍ୱଳିତ ହେବାମାତ୍ରେ ଇନ୍ଦ୍ର ବାରିବର୍ଷଣ କରି ତାହା ନିର୍ବାପିତ କରି ଦିଅନ୍ତି । ଶେଷରେ ଅଗ୍ନିଦେବ ମୋର ଓ ସଖା ପାର୍ଥଙ୍କର ଶରଣାଗତ ହୋଇଥିଲେ । ବରୁଣ ପ୍ରଦତ୍ତ ସୁଦର୍ଶନ ଚକ୍ର ଓ କୌମଦକୀ ଗଦା ମୋତେ ଏବଂ ଗଣ୍ଡାରର ପୃଷ୍ଠଭାଗରେ ନିର୍ମିତ ସୁକଠିନ, ସୁଦୃଢ଼ ଗାଣ୍ଡିବଧନୁ, କପିଧ୍ୱଜ ରଥ, ଅକ୍ଷୟ ତୂଣୀର, ବାୟୁସମ ବେଗବାନ୍ ଶୁକ୍ଳ ବର୍ଣ୍ଣ ଅଶ୍ୱ ଚତୁଷ୍ଟୟ ଅର୍ଜ୍ଜୁନଙ୍କୁ ଦାନ କରିଥିଲେ ଅଗ୍ନିଦେବ । ଖାଣ୍ଡବବନ ଦଗ୍ଧୀଭୂତ ହେଲା । ସେହି ଭୟଙ୍କର ଅଗ୍ନିତାପରୁ ରକ୍ଷା ପାଇଥିଲେ ଛଅଟି ଜୀବ ମାତ୍ର । ଶାର୍ଙ୍ଗିକ ପକ୍ଷୀ ଚତୁଷ୍ଟୟ, ଦାନବ ମୟ ଓ ନାଗବଂଶୀ ଅଶ୍ୱସେନ । ଏହି ଅଶ୍ୱସେନକୁ ବଞ୍ଚେଇବା ପାଇଁ ତା'ର ମା' ପ୍ରାଣବଳି ଦେଇଥିଲା । ମୁଁ ସତର୍କଭାବେ କର୍ଣ୍ଣ ଓ ଅଶ୍ୱସେନଙ୍କର କଥୋପକଥନ ଶୁଣିବାକୁ ଲାଗିଲି ।

ପ୍ରଣତ ଅଶ୍ୱସେନକୁ ତଳୁ ଉଠାଇ କର୍ଣ୍ଣ ପ୍ରଶ୍ନ କଲେ-

-'ତୁମେ କିଏ ତେଜସ୍ୱୀ ଯୁବକ ?'

- 'ମୁଁ ନାଗବଂଶୀ ଅଶ୍ୱସେନ । ଆପଣଙ୍କର ଶତ୍ରୁ ଓ ମୋ ଶତ୍ରୁ ଏକ । ତୃତୀୟ ପାଣ୍ଡବ ଅର୍ଜ୍ଜୁନ ମୋର ମଧ୍ୟ ଶତ୍ରୁ ।'

ଅର୍ଜ୍ଜୁନଙ୍କ ନାମ ଶୁଣୁ ଶୁଣୁ କର୍ଣ୍ଣଙ୍କର ନିଃଶ୍ୱାସରୁ ସତେକି ପ୍ରଳୟ ଝଂଜା ପ୍ରବାହିତ ହେଲା, ଚକ୍ଷୁ ରକ୍ତ ବର୍ଣ୍ଣ ହୋଇଗଲା ଓ ସେ ବଡ଼ ଅଶାନ୍ତ ଅସ୍ଥିର ମନେ ହେଲେ ତଥାପି

ପ୍ରଶ୍ନକଲେ - 'ଅର୍ଜ୍ଜୁନ ସହିତ ତୁମର ଶତୃତା ? ମୋର ସିନା ସେ ଆଜନ୍ମ ବୈରୀ । କାରଣ ସେ ମୋର ସମକକ୍ଷ । ଯୁଦ୍ଧରେ ସେ ହିଁ ଏକମାତ୍ର ମୋର ପ୍ରତିପକ୍ଷ ।'

- 'ମୁଁ ଜାଣେ ଅଂଗ ନରେଶ ! ସବୁ ଜାଣେ । ତା' ସହ ମୋର ଶତୃତାର ଏକମାତ୍ର କାରଣ ସେ ମୋ ମାତାର ହତ୍ୟାକାରୀ !'

କର୍ଣ୍ଣ କିଛି ସମୟ ନୀରବ ରହି କ'ଣ ଚିନ୍ତା କଲେ ଓ ତାପରେ ପ୍ରଶ୍ନ କଲେ - 'କିନ୍ତୁ ତୁମେ ମୋ ଠାରୁ କି ଆଶା ରଖିଛ ?' ସେ କହିଲା - 'ମୁଁ ମାତୃହନ୍ତାର ପ୍ରତିଶୋଧ ଚାହେଁ । ଏଇମାତ୍ର ଶୁଣି ଆସିଲି କୁରୁ ପାଣ୍ଡବ ଯୁଦ୍ଧ ସୁନିଶ୍ଚିତ । ମୁଁ ଏହି ସମରର ଅପେକ୍ଷାରେ ତୀବ୍ର ଅନ୍ତର୍ଦାହରେ ଏତେକାଳ ଅପେକ୍ଷା କରି ରହିଥିଲି । ହେ ଦାନବୀର ଅଂଗ ନରେଶ ! ମୋତେ ଏକ ମାତ୍ର ଅଭୟ ବର ଦିଅନ୍ତୁ - କର୍ଣ୍ଣାର୍ଜ୍ଜୁନ ସମରରେ ଆପଣଙ୍କ ନିକ୍ଷିପ୍ତ ବାଣରେ ପ୍ରବିଷ୍ଟ ହୋଇ ଅର୍ଜ୍ଜୁନର ପ୍ରାଣ ନାଶରେ ମୁଁ ଯେପରି ସମର୍ଥ ହୁଏ । ଅଗ୍ନିଜ୍ୱାଳାରେ ମୋ ଜନନୀର ପ୍ରାଣନାଶ ହେବା ମୁଁ ଦେଖିଛି । ବିଷଜ୍ୱାଳାରେ ତୃତୀୟ ପାଣ୍ଡବର ପ୍ରାଣନାଶ ହେବା ଦେଖିଲେଇ ମୋ ଅନ୍ତର ତଳେ ଅହରହ ପ୍ରଜ୍ୱଳିତ ହେଉଥିବା ପ୍ରତିଶୋଧର ଅଗ୍ନି ନିର୍ବାପିତ ହେବ ।'

ହଁ, ଦାନବୀର କର୍ଣ୍ଣ ତାକୁ ଅଭୟ ଦେଇଥିଲେ । ହେଲେ ତା'ର ଏ ଆଶା କ'ଣ ଫଳବତୀ ହୋଇପାରିଲା ?

ତା' ବୁକୁତଳେ ଅହରହ ଜଳୁଥିବା ପ୍ରତିଶୋଧର ଅଗ୍ନି ନିର୍ବାପିତ ହୋଇପାରିଲା ? ଥାଉ, ସେକଥା ପରେ । ତେବେ ଏକଥା ନିଶ୍ଚିତ ସତ୍ୟ ଯେ, ନାଗବଂଶୀମାନେ ଅତ୍ୟନ୍ତ ପ୍ରତିଶୋଧ ପରାୟଣ। । ପ୍ରତିଶୋଧ ନେବାପାଇଁ ସେମାନେ ଜନ୍ମରୁ ଜନ୍ମାନ୍ତର ଯାଏ ଅପେକ୍ଷା କରନ୍ତି । ଅଶ୍ୱସେନ ଅସମର୍ଥ ହୋଇଥିଲା ସତ; ମାତ୍ର ତୃତୀୟ ପାଣ୍ଡବଙ୍କ ପୌତ୍ର ପରୀକ୍ଷିତଙ୍କୁ କ'ଣ ତକ୍ଷକ ସାମାନ୍ୟ କୀଟଟିଏ ହୋଇ ଦଂଶନ କଲାନାହିଁ ? ତାଙ୍କ ପ୍ରାଣ ନାଶ କଲା ନାହିଁ ? ମାତୃ ଗର୍ଭର ଅନ୍ଧକାର ଭିତରେ ମୃତ୍ୟୁର କରାଳ ଗହ୍ୱରରୁ ଅଶ୍ୱତ୍ଥାମାଙ୍କ ବ୍ରହ୍ମାସ୍ତ୍ରରୁ ହୁଏତ ଭ୍ରୂଣ ପରୀକ୍ଷିତ ବଞ୍ଚିଯାଇଥିଲେ, ହେଲେ ଅମର ହୋଇପାରିଲେ କି ? ଶୃଙ୍ଗୀମୁନିଙ୍କ ଦ୍ୱାରା ଶାପଗ୍ରସ୍ତ ରାଜା ପରୀକ୍ଷିତ ସୁରକ୍ଷାର ବଳୟ ଭିତରେ ଥିଲେ ସୁଦ୍ଧା ତକ୍ଷକର ଦଂଶନରୁ ଆତ୍ମରକ୍ଷା କରିପାରିଲେ ନାହିଁ । ପ୍ରାଣୀ ମାତ୍ରେଇ ଭଂଗୁର । ମୃତ୍ୟୁ ଅବଧାରିତ । କେବଳ କେଉଁ ସମୟରେ କାହାଦ୍ୱାରା କେଉଁପରି ତାହା ଆସେ ସେତିକି ଅଜ୍ଞାତ ରହସ୍ୟ ।

ମୁଁ କିଛି ସମୟ କର୍ଣ୍ଣଙ୍କୁ ଲକ୍ଷ୍ୟକଲି । ଚିରକାଳ ଭାଗ୍ୟ ପ୍ରବଞ୍ଚିତ ହତଭାଗ୍ୟ ବୀର ପୁରୁଷ । ମାତୃ ପିତୃ ପରିଚୟ, ଆଭିଜାତ୍ୟ, ପ୍ରାଚୁର୍ଯ୍ୟ ସବୁ କିଛି ତାଙ୍କର ପ୍ରାପ୍ୟ ଥିଲା, ମାତ୍ର ଭାଗ୍ୟର କୂଟ ଚକ୍ରାନ୍ତରେ ସବୁକିଛି ଆଜନ୍ମରୁ ହାତଛଡ଼ା ହୋଇଯାଇଛି । ପରାଶ୍ରିତ ଭାବେ କୁଳ

ଗୋତ୍ର ହୀନ ଜାରଜ ଜାତକର ପରିଚୟରେ ଅଧିରଥ ସାରଥୀ ଗୃହରେ ପ୍ରତିପାଳିତ ହୋଇଛନ୍ତି । ସ୍ୱୀୟ ପରିଚୟ ଗୋପନ ରଖି ଗୁରୁ ଗୃହରେ ଶସ୍ତ୍ର ଶିକ୍ଷା ପ୍ରାପ୍ତ ହୋଇଛନ୍ତି ଓ ଏହି ସାମାନ୍ୟ ଅପରାଧ ପାଇଁ ଅଭିଶପ୍ତ ବି ହୋଇଛନ୍ତି । ତାଙ୍କର ସମଗ୍ର ଜୀବନ ହିଁ ତ ଏକ ଅଭିଶାପ ।

ମୁଁ ତାଙ୍କ ସମ୍ମୁଖକୁ ଯାଇ ଗଭୀର ଆନ୍ତରିକତାର ସହ କହିଲି - 'ଅଗ୍ରକୌନ୍ତେୟ !'

ସେ ଭୟଙ୍କର ଭାବେ ଚମକି ପଡ଼ିଲେ । ମୁଁ ଓ ମୋର ଏ ସମ୍ବୋଧନ - ଉଭୟେ ଅପ୍ରତ୍ୟାଶିତ ଥିଲୁ ।

ତିକ୍ତ ହସ ଧାରେ ତାଙ୍କ ଅଧର ପ୍ରାନ୍ତରେ ଝଲସି ଉଠିଲା । ବଡ଼ ମର୍ମାନ୍ତିକ ସେ ହସ । ମୋର ଏଇ ଗୋଟିଏ ସମ୍ବୋଧନ ବୋଧହୁଏ ତାଙ୍କ ଅନ୍ତର ଭିତରେ ଏକ ପ୍ରଳୟ ଝଡ଼ ସୃଷ୍ଟି କରିଦେଲା । ସେ ମୋ ହାତ ଦୁଇଟିକୁ ଧରି ବେଶ୍ କିଛି କ୍ଷଣ ନୀରବ ରହିଲେ । ନିଜକୁ ସଂବରଣ କଲାପରେ ସ୍ୱଗତୋକ୍ତି କଲାଭଳି କହିଲେ -'ଅଗ୍ରକୌନ୍ତେୟ ! ସେ ସୌଭାଗ୍ୟ ଏ ହତଭାଗ୍ୟ ରାଧେୟର କାହିଁ ? ଚିରକାଳ କୁନ୍ତୀ ନନ୍ଦନ ହେବାର ସମସ୍ତ ସୌଭାଗ୍ୟରୁ ବଞ୍ଚିତ ହୋଇ ଲାଂଛିତ, ଅପମାନିତ, ହତଭାଗ୍ୟ ଜୀବନ ବଞ୍ଚି ରହିଲି ଏକମାତ୍ର ଗୋଟିଏ ପରିଚୟରେ ସୂତପୁତ୍ର - ରାଧେୟ । ଆଜି ପୁଣି ସେହି ଗୋପନ କ୍ଷତକୁ କାହିଁକି ଆଉ ଲହୁ ଲୁହାଣ କରୁଛ ବାସୁଦେବ ?'

ତାଙ୍କର ତେଜୋଦୀପ୍ତ ଚକ୍ଷୁ ଦୁଇଟି ଅଶ୍ରୁବାଷ୍ପାଛନ୍ନ ହୋଇ ଉଠିଲା । ତାଙ୍କର ଗଦ୍ ଗଦ୍ ସ୍ୱରରୁ ଜଣାପଡ଼ିଲା ସେ ତାଙ୍କ ଜନ୍ମ ପରିଚୟ ସଂପର୍କରେ ଅଜ୍ଞାତ ନୁହନ୍ତି ! ଜଣ ଜଣକ ଭାଗ୍ୟରେ ଏମିତି କାହିଁକି ହୁଏ ? ଦୁଃଖହିଁ ହୁଏ ସେମାନଙ୍କର ଏକମାତ୍ର ଭବିତବ୍ୟ ! ମୁଁ ଜାଣିଥିଲି କୁରୁପତି ଦୁର୍ଯ୍ୟୋଧନର ମସ୍ତିଷ୍କ ଯେଉଁଭଳି ଶକୁନୀ, ସେଇଭଳି ବାହୁ ହେଉଛନ୍ତି ଅଂଗରାଜ ବସୁଷେଣ । ତାଙ୍କୁ ଆଉ ଟିକିଏ ଦୁର୍ବଳ କରିବା ଉଦ୍ଦେଶ୍ୟରେ କହିଲି - 'ଶାନ୍ତି ପ୍ରତିଷ୍ଠା ଯେତେବେଳେ ସମ୍ଭବ ହେଲା ନାହିଁ, ଏ ଭ୍ରାତୃବିବାଦର ସମାଧାନ ନିମିତ୍ତ ଆଉ ଏକମାତ୍ର ପଥ ଉନ୍ମୁକ୍ତ ରହିଲା, ତା ହେଉଛି ଯୁଦ୍ଧ ! ତେବେ ମହାବଳୀ କର୍ଣ୍ଣ କ'ଣ ସହୋଦର ଭ୍ରାତାଙ୍କ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିବାକୁ ସଂକଳ୍ପବଦ୍ଧ ? ମହାବୀର କର୍ଣ୍ଣଙ୍କର ଅସ୍ତ୍ରସମୂହର ଶୋଣିତ ପିପାସା ତେବେ କନିଷ୍ଠ ଭ୍ରାତାଙ୍କ ଶୋଣିତ ପାନରେହିଁ ପ୍ରଶମିତ ହେବ ?'

ଆବେଗ ସ୍ପନ୍ଦିତ ଭାବେ ସେ ମୋ ହାତ ଦୁଇଟିକୁ ମୁଠେଇ ଧରିଥିଲେ । ହଠାତ୍ ଛାଡ଼ିଦେଲେ । ଟିକିଏ ଦୂରକୁ ଘୁଞ୍ଚିଗଲେ । ତାଙ୍କର ଉଦ୍‌ଭ୍ରାନ୍ତ ଦୃଷ୍ଟି ଦୂର ଆକାଶରେ ହଜିଗଲା । ସେ ବଡ଼ ଅନ୍ୟମନସ୍କ ଓ ଅଧୀର ମନେହେଲେ । ବହୁ କଷ୍ଟରେ ଉତ୍ତେଜିତ ହେବାଭଳି କହିଲେ - 'ବହୁ ଆକୁଳରେ ପ୍ରତୀକ୍ଷା କରି ରହିଥିଲି ସେଦିନର ସେହି ରଂଗସଭା ପର୍ଯ୍ୟନ୍ତ । ବର୍ଷ ବର୍ଷ

ଅପେକ୍ଷା କରିଛି । ସ୍ନେହ ଦେଇ ଲାଳନ ପାଳନ ନକଲେ ନାହିଁ ଅନ୍ତତଃ ମୋର ପିତୃ ମାତୃ ପରିଚୟ ପ୍ରକାଶ କରି ମୋ ଲଲାଟରେ ବିଜୟ ତିଳକ ଆଂକି ଦିଅନ୍ତୁ ଜନନୀ କୁନ୍ତୀ । ନାଃ ! ସେ ଯେ ପଞ୍ଚୁ ପାଣ୍ଡବର ଜନନୀ ! କର୍ଣ୍ଣ ତାଙ୍କ ପାଇଁ ଅବାଂଛିତ । ପିତୃ ପ୍ରଦତ୍ତ ସହଜାତ କବଚ କୁଣ୍ଡଳ ମୋତେ ଅପରାଜେୟ କରିଛି ସତ; ମାତ୍ର ତଥାପି ମୋର ପରାଜୟର ସୀମା ନାହିଁ ! ସେଦିନ ରଂଗସଭାତ ଏକ ପ୍ରହସନ ଥିଲା । ଅସ୍ତ୍ର ପରୀକ୍ଷା ବିନା, ପାର୍ଥ କେବଳ ଏକକ ଅସ୍ତ୍ର କୌଶଳ ପ୍ରଦର୍ଶନ କରି ଆର୍ଯ୍ୟାବର୍ତ୍ତର ଶ୍ରେଷ୍ଠ ଧନୁର୍ବୀତ୍ ଭାବେ ସ୍ୱୀକୃତି ପାଇଗଲା । ମୁଁ ତ ପରୀକ୍ଷା ଦେବା ପାଇଁ ପ୍ରସ୍ତୁତ ହୋଇ ଯାଇଥିଲି । ମୋର କ'ଣ ଅପରାଧ ଥିଲା ବାସୁଦେବ ? ମୋର ନ୍ୟାୟାଳୟରେ ଅନେକ ଅପରାଧୀ । ମୁଁ କାହାକୁ କାହାକୁ କ୍ଷମା ଦେବି ? କାହିଁକି ମୋତେ ସେଦିନ ପରିପୂର୍ଣ୍ଣ ରଂଗ ସଭାରେ ଏଭଳି ଅପମାନିତ ହେବାକୁ ପଡ଼ିଥିଲା ? ସୂତପୁତ୍ରର ଅପମାନିତ ଜୀବନରୁ ମୋତେ ମୁକ୍ତି ଦେଇଥିଲେ ସେଦିନ କୁରୁପତି ଦୁର୍ଯ୍ୟୋଧନ । ମୁଁ ଜାଣେ ବାସୁଦେବ, ଚିରପାଣ୍ଡବ ବିଦ୍ୱେଷୀ ଅସହିଷ୍ଣୁ କୁରୁପତିଙ୍କର ଏହା ଅଭିସନ୍ଧିମୂଳକ ଥିଲା । କିନ୍ତୁ ସେହି ମୁହୂର୍ତ୍ତରେ ମୋର ସମସ୍ତ କଳଙ୍କକୁ ପୋଛି ଦେଇ ଯିଏ ମୋତେ 'ଅଂଗାଧିପତି'ର ସମ୍ମାନ ଓ ଗୌରବ ଦେଇଥିଲେ ମୁଁ ସେଭଳି ବନ୍ଧୁଙ୍କ ସହ ବିଶ୍ୱାସଘାତକତା କରି ପାରିବି ନାହିଁ ! ଜୀବନ ବିନିମୟରେ ସୁଦ୍ଧା ନୁହେଁ । ମୁଁ ଅନ୍ୟାୟ, ଅଧର୍ମର ପକ୍ଷ ସମର୍ଥନ କରୁଛି, ତଥାପି ମୁଁ ନାଚାର । ମୋର ସବୁକିଛି ମୁଁ କୁରୁପତିଙ୍କ ପାଦତଳେ ଉତ୍ସର୍ଗ କରିବାପାଇଁ ଅଲିଖିତ ଭାବେ ଚୁକ୍ତିବଦ୍ଧ ।'

ତାଙ୍କ ନିଜ ଭିତରେ ଇତସ୍ତତଃ ହୋଇ ବିକ୍ଷିପ୍ତ ହୋଇ ପଡୁଥିବା ଦୁଃଖର ଚିନ୍ତାମାଳାକୁ ସୁଗ୍ରଥିତ କରିବାକୁ ଚେଷ୍ଟା କରି ସେ କିଛି ସମୟ ଚୁପ୍ ରହିଲେ । ତାଙ୍କର ବୃଷସ୍କନ୍ଧରେ ମୁଁ ମୃଦୁ ଚାପ ଦେଲି । ସେ ବିଷର୍ଣ୍ଣ କଣ୍ଠରେ ପୁଣି କହିଲେ - 'ସୂତପୁତ୍ର ! ସୂତପୁତ୍ର !! ସୂତପୁତ୍ର !!! ଏହି ଗ୍ଲାନିକର ପରିଚୟର କଳଙ୍କ ରଂଗସଭାରୁ ପାଞ୍ଚାଳୀଙ୍କର ସ୍ୱୟଂବର ସଭା ପର୍ଯ୍ୟନ୍ତ ମୋର ପଶ୍ଚାତଧାବନ କରିଥିଲା ? ସେଦିନ ସେଇ ପରିପୂର୍ଣ୍ଣ ସ୍ୱୟଂବର ସଭାରେ ଏଇ ହତଭାଗ୍ୟ କୁନ୍ତୀ ନନ୍ଦନ କର୍ଣ୍ଣକୁ ପାଞ୍ଚାଳ ତନୟାତ ପୁଣି 'ସୂତପୁତ୍ର କର୍ଣ୍ଣକୁ ବରଣ କରିବି ନାହିଁ' ବୋଲି ଅପମାନ କରିଥିଲେ ? ଧମନୀରେ ମୋର କ୍ଷତ୍ରିୟର ରକ୍ତ ପ୍ରବାହିତ, କେମିତି ଭୁଲିଥା'ନ୍ତି ସେ ଅପମାନ ? ପରିପୂର୍ଣ୍ଣ କୁରୁସଭା ସ୍ଥଳରେ କନିଷ୍ଠା ଭଗ୍ନୀ ସ୍ୱରୂପା, କନ୍ୟା ସ୍ୱରୂପା ମୋର ଭ୍ରାତୃବଧୂ ପାଞ୍ଚାଳ ତନୟାଙ୍କୁ 'ଦାସୀ' 'ବେଶ୍ୟା' ବୋଲି କହିବା ସମୟରେ ଦୁଃଖରେ ମୋ ବକ୍ଷ ବିଦୀର୍ଣ୍ଣ ହୋଇଯାଉଥିଲା, ତଥାପି ସ୍ୱୟଂବର ସଭାର ଅପମାନର ପ୍ରତିଶୋଧତ ନେଇ ପାରିଛି ! ବାସୁଦେବ ! ମୋର ଦୁର୍ଭାଗ୍ୟ ହେଉଛି ସେମାନେ ମୋର ଅନୁଜ ବୋଲି ଜାଣି ସୁଦ୍ଧା ମୁଁ ସେମାନଙ୍କ ପ୍ରତି ଅନ୍ୟାୟ ଆଚରଣ କରୁଛି । ମାତ୍ର ଯେଉଁ ମୁହୂର୍ତ୍ତରେ ଧର୍ମରାଜ ଯୁଧିଷ୍ଠିର ଜାଣିବେ ଯେ, ମୁଁ ତାଙ୍କର ଅଗ୍ରଜ ସେ ସବୁକିଛି ମୋ ପାଦତଳେ ଉତ୍ସର୍ଗ କରିଦେବେ ।'

ମୁଁ ଯେମିତି ଏତିକି କଥାର ଅପେକ୍ଷାରେ ଥିଲି । ତତ୍‌କ୍ଷଣାତ୍ କହିଲି - 'ମୁଁ ତ ସେଇ ପ୍ରସ୍ତାବ ନେଇ ଆସିଛି ଅଂଗରାଜ ! ଯୁଦ୍ଧରେ ପାଣ୍ଡବମାନଙ୍କର ବିଜୟ ସୁନିଶ୍ଚିତ । ଆପଣ ସେମାନଙ୍କ ପକ୍ଷଭୁକ୍ତ ହେଲେ ସେମାନଙ୍କ ଗୌରବ ବୃଦ୍ଧି ହେବ । ଆପଣଙ୍କ ବାହୁଛାୟାତଳେ ସେମାନେ ସୁରକ୍ଷିତ ରହିବେ । ଆପଣଙ୍କ ପ୍ରକୃତ ପରିଚୟ ଜାଣିବା ପରେ ଆପଣହିଁ ହସ୍ତିନା ସିଂହାସନରେ ଅଧିଷ୍ଠିତ ହୋଇ ଅନୁଜ ଗଣଙ୍କ ସହ ନିଷ୍କଣ୍ଟକ ରାଜ୍ୟ ଭୋଗ କରିବେ ।' ସେ ପ୍ରବଳ ବେଗରେ ମୁଣ୍ଡ ହଲେଇ ନାହିଁ କରୁ କରୁ କହିଲେ 'ହସ୍ତିନାର ରାଜସିଂହାସନରେ ଅଧିଷ୍ଠିତ ହେବାର ଆକାଙ୍‌କ୍ଷା ମୋର ନାହିଁ । ମୁଁ ଯଥାର୍ଥ ବୀର । ବୀରର ପରିଚୟରେ ବୀରଭଳି ମୃତ୍ୟୁବରଣ କରି ଅକ୍ଷୟ ଯଶର ଅଧିକାରୀ ହେବାକୁ ଚାହେଁ । ବନ୍ଧୁ ଦ୍ରୋହୀ ହୋଇ ନର୍କଗାମୀ ହେବାକୁ ଚାହେଁନା । ମୁଁ ତ ଅହର୍ନିଶି ପ୍ରାର୍ଥନା କରୁଛି ଜୟ ସତ୍ୟର ହେଉ, ନ୍ୟାୟର ହେଉ ତଥା ପଣ୍ଡୁନନ୍ଦନଙ୍କର ହିଁ ଜୟ ହେଉ । ମୁଁ କେବଳ ରଣଭୂମିରେ ଅର୍ଜୁନର ପ୍ରତିପକ୍ଷଭାବେ ଅବତୀର୍ଣ୍ଣ ହେବାକୁ ଚାହେଁ ।'

ମୁଁ ତାଙ୍କୁ ନୀରବରେ ନିରୀକ୍ଷଣ କରୁଥିଲି କେବଳ । ସେ ସ୍ୱଗତୋକ୍ତି କଲାଭଳି ଆକାଶକୁ ଚାହିଁ କହିଲେ - 'ତା' ବି ଏତେ ଶୀଘ୍ର ସମ୍ଭବ ନୁହେଁ । କୁରୁ ପିତାମହ ଭୀଷ୍ମ ଅସ୍ତ୍ରତ୍ୟାଗ କରି ଯୁଦ୍ଧଭୂମିରୁ ନଯିବା ପର୍ଯ୍ୟନ୍ତ ମୁଁ ତ ଅବତୀର୍ଣ୍ଣ ହୋଇ ପାରିବି ନାହିଁ । ଏହି ଚିର ବିଦ୍ୱେଷ ପରାୟଣ ବୃଦ୍ଧ କେଉଁ ଗୋପନ ତଥ୍ୟ ଉଦ୍‌ଘାଟିତ ହେବା ଭୟରେ କୌଣସି ସମୟରେ ମୋର ଉପସ୍ଥିତି ସୁଦ୍ଧା ସହି ପାରନ୍ତି ନାହିଁ । ତାଙ୍କର ଶାଣିତ ତାଚ୍ଛଲ୍ୟର ତୀର ମୋର ସହଜାତ ଅକ୍ଷୟ କବଚ ଭେଦ କରି ମର୍ମ ଭୂମିକୁ ଲହୁ ଲୁହାଣ କରିଦିଏ ତଥାପି ମୋତେ ହିଁ ନୀରବରେ ସହିବାକୁ ହୁଏ !'

ବଡ଼ ବିଷର୍ଣ୍ଣ କରୁଣ ଦିଶୁଥିଲେ । ତାଙ୍କ ପ୍ରତି ସଂବେଦନରେ ପୂର୍ଣ୍ଣ ହୋଇଗଲା ମୋ ଅନ୍ତର । ମୁଁ କ'ଣ କହିବାକୁ ଯାଉଥିଲି । ସେ ମୋତେ ଆଖିର ଇଙ୍ଗିତରେ ନିଷେଧ କରିଦେଲେ । ଚତୁର୍ଦ୍ଦିଗକୁ ସତର୍କ ଦୃଷ୍ଟିପାତ କରି ଦେଖିଲି ଶକୁନୀ ଓ ଦୁଃଶାସନ ଅଶ୍ୱରୁ ଅବତରଣ କରି ଏଇ ଦିଗକୁ ଆସୁଛନ୍ତି । ଶକୁନୀ ବେଶ୍ ଅନ୍ତର୍ଭେଦୀ ତୀକ୍ଷଣ ଦୃଷ୍ଟିରେ ମୋତେ କିଛି ସମୟ ନିରୀକ୍ଷଣ କରି ମୋ ଭାବାନ୍ତର ଲକ୍ଷ୍ୟ କଲେ, ମୋତେ କହିଲେ - 'ଆଶ୍ଚର୍ଯ୍ୟ ! ଯୁଦ୍ଧ ହେବା ନିଶ୍ଚିତ ଜାଣିବା ପରେ ଦୂତ ବାସୁଦେବ ପାଣ୍ଡବଙ୍କ ନିକଟରେ ଏ ଦୁଃସମ୍ବାଦ ନଦେଇ ଏଠି ଅଂଗରାଜଙ୍କ ସହ କି ମନ୍ତ୍ରଣା କରୁଛନ୍ତି ?'

କର୍ଣ୍ଣ କିନ୍ତୁ ତାଙ୍କର ସ୍ୱର ପରିବର୍ତ୍ତନ କରି ଦର୍ପିତ ସ୍ୱରରେ କହିଲେ - 'ଏ ପର୍ଯ୍ୟନ୍ତ ପାଣ୍ଡବଙ୍କ ବାହୁବଳର ପ୍ରଚାର କରୁଥିଲେ ବାସୁଦେବ । ମୁଁ କିନ୍ତୁ ତାଙ୍କୁ ଜଣେଇ ଦେଇଛି ଯେ,

ବାସୁଦେବଙ୍କର ଏହି ମିଥ୍ୟା ପ୍ରଚାରରେ କୌରବଗଣଙ୍କର ଭୟଭୀତ ହେବାର ନାହିଁ । ପାଣ୍ଡବଙ୍କୁ ପରାସ୍ତ କରିବା ପାଇଁ ଏକା କର୍ଣ୍ଣ ହିଁ ଯଥେଷ୍ଟ !'

କର୍ଣ୍ଣଙ୍କର ଏ ମିଥ୍ୟା ଭାଷଣରେ ଶକୁନୀ ହୁଏତ ପରିତୁଷ୍ଟ ହେଲେ ନାହିଁ । ସନ୍ଦିଗ୍ଧ ଦୃଷ୍ଟିରେ ସେ କେବଳ କର୍ଣ୍ଣଙ୍କ ଆପାଦ ମସ୍ତକ ନିରୀକ୍ଷଣ କଲେ । ମୁଁ ହାସ୍ୟ ସମ୍ବରଣ କରି ପାରିଲି ନାହିଁ । ସଶବ୍ଦରେ ହସି ହସି କହିଲି 'ଅତୀତରେ ସର ଲବଣୀ ଚୋରୀ କରିବାର ଅପରାଧରେ ମୁଁ ଅଭିଯୁକ୍ତ ଗାନ୍ଧାର କୁମାର ଶକୁନୀ; ମାତ୍ର ଏଇ ଦେଖନ୍ତୁ ଅଂଗାଧିପତି ଅକ୍ଷତ ଅବସ୍ଥାରେ ସଶରୀରେ ବିଦ୍ୟମାନ । ତାଙ୍କର ବଳବୀର୍ଯ୍ୟ ଅପହରଣ କରିନେବାର ଦୁଃସାହସ ମୋର ନାହିଁ ।'

ମୋର ଏ ବ୍ୟଙ୍ଗୋକ୍ତିରେ କର୍ଣ୍ଣ ଓ ଦୁଃଶାସନ ପ୍ରାଣ ଖୋଲା ହସ ହସି ଉଠିଲେ । ଶକୁନୀ ଲଜ୍ଜିତ ହୋଇ ହସିଲେ ବି ସଂଶୟ ତାଙ୍କ ମନରୁ ଯାଇ ନଥିଲା । ମୁଁ ମୋ ରଥ ପାଖକୁ ଫେରି ଆସି ରଥ ଚଳେଇବାକୁ ନିର୍ଦ୍ଦେଶ ଦେଲି ।



## ।। ଦ୍ୱାବିଂଶତି ଗ୍ରନ୍ଥି ମୋଚନ ।।

ଉପପ୍ଳବ୍ୟ ନଗରୀରେ ସମସ୍ତେ ମୋତେହିଁ ଆକୁଳରେ ପ୍ରତୀକ୍ଷା କରି ରହିଥିଲେ । କୁନ୍ତୀ ଯେ ଯୁଦ୍ଧ ସପକ୍ଷରେ ମତ ଦେଇଛନ୍ତି ଏତିକି ଶୁଣିବା ପରେ ଧର୍ମରାଜ ଯୁଧିଷ୍ଠିର ମଧ୍ୟ ଉତ୍ସାହିତ ହୋଇ ଉଠିଲେ । ମତ୍ସ୍ୟାଧିପତି, ପାଞ୍ଚାଳ ନରେଶ, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ, ଚେକିତାନ୍, ସାତ୍ୟକୀ ପ୍ରଭୃତି ଯାଦବ ଓ ବୃଷ୍ଣିଗଣ ମଧ୍ୟ ଯୁଦ୍ଧର ଆଶୁ ସମ୍ଭାବନାରେ ଆନନ୍ଦ ଉତ୍ସାହର ବନ୍ୟା ପ୍ରବାହିତ ହେଲା । ସବୁଠାରୁ ବେଶୀ ଆନନ୍ଦିତ ହେଲେ ଦ୍ରୁପଦ ପରିବାର । ମୁଁ ସେମାନଙ୍କ ଉତ୍ସାହ ଦେଖି ମନେ ମନେ ହସିଲି । ଦ୍ରୁପଦ ପରିବାରର ପ୍ରତ୍ୟେକ ସଦସ୍ୟଙ୍କର ମହାନ୍ କୁରୁବଂଶର ତଥା କୁରୁ ଆଶ୍ରିତ କୌଣସି ବ୍ୟକ୍ତି ବିଶେଷଙ୍କ ଉପରେ ଆକ୍ରୋଶମୂଳକ ମନୋଭାବ ରହିଛି । ପ୍ରତ୍ୟେକ ସେମାନେ ପ୍ରତିଶୋଧ ପରାୟଣ । ପଣ୍ଡୁସୁତଗଣ ତାଙ୍କର ଆୟୁଧ ମାତ୍ର । ଏ ଯୁଦ୍ଧ ଯେମିତି କୁରୁ ପାଣ୍ଡବଙ୍କ ଭିତରେ ହେଉନାହିଁ, ହେଉଛି ଦ୍ରୁପଦ ପରିବାର ଓ କୌରବଙ୍କ ମଧ୍ୟରେ । କାହିଁ କେତେ ଦିନରୁ ଆରମ୍ଭ ହୋଇଛି ଏ ବୈରଭାବ । କୁରୁପିତାମହ ଭୀଷ୍ମଙ୍କର ଯୌବନ କାଳରୁ କହିଲେ ଠିକ୍ ହେବ । କାଶୀ ରାଜତନୟା ଅମ୍ବା ଭୀଷ୍ମ କର୍ତ୍ତୃକ ପ୍ରତ୍ୟାଖ୍ୟାତା ହେବା ପରେ, ବହୁ ଦ୍ୱିଧା, ବହୁ ଚିତ୍ତସଂଘର୍ଷର ସମ୍ମୁଖୀନା ହେବାପରେ, ଜନ୍ମାନ୍ତର ପରେ ଦ୍ରୁପଦ ପରିବାରରେହିଁ ଜନ୍ମନେଲେ, ଭୀଷ୍ମଙ୍କ ଜୀବନ ନାଶପାଇଁ ପ୍ରତିହିଂସାର ଅନଳରେ ଦଗ୍ଧହୋଇ ଅହର୍ନିଶି ଭୀଷ୍ମ ପତନର ଲଗ୍ନକୁ ଅପେକ୍ଷା କରି ରହିଲେ -ଶିଖଣ୍ଡୀ ଭାବରେ । ଆଉ ନିଜେ ରାଜା

ଦ୍ରୁପଦ ? ଅତୀତରେ କେବେ ଗୁରୁକୁଳରେ ଦରିଦ୍ର ବ୍ରାହ୍ମଣ ଦ୍ରୋଣ ତାଙ୍କର ସହପାଠୀ ଥିଲେ ସେ କଥା ରାଜସଭାରେ ରାଜସିଂହାସନରେ ଅଧିଷ୍ଠିତ ହେବାପରେ ତାଙ୍କର ଆଉ ସ୍ମରଣ ରହିଲା ନାହିଁ । ଶସ୍ତ୍ରବୀତ୍ ଦ୍ରୋଣାଚାର୍ଯ୍ୟ ଏ ଅପମାନର ପ୍ରତିଶୋଧ ନେବାପାଇଁ ଅର୍ଜୁନ ଭଳି ଶିଷ୍ୟଟିଏ ଗଢ଼ିଲେ । ଅର୍ଜୁନ ଦ୍ୱାରା ଅହଂକାରୀ ଦ୍ରୁପଦଙ୍କୁ ବନ୍ଦୀ ମଧ୍ୟ କଲେ । ଏ ଅପମାନର ଜ୍ୱାଳା ଦ୍ରୁପଦ ବି ବିସ୍ମୃତ ହେଲେ ନାହିଁ । ପୁତ୍ରେଷ୍ଟି ଯଜ୍ଞ ସଂପନ୍ନ କରି ହୋମାଗ୍ନିରୁ କବଚ କୁଣ୍ଡଳଧାରୀ ପୁତ୍ର ଧୃଷ୍ଟଦ୍ୟୁମ୍ନ ଓ ଅସାମାନ୍ୟା ରୂପସୀ କନ୍ୟା ପାଞ୍ଚାଳୀଙ୍କୁ ପ୍ରାପ୍ତ ହେଲେ । ଦ୍ରୋଣଙ୍କ ଅସ୍ତ୍ରରେ ଦ୍ରୋଣଙ୍କୁ ପରାଭୂତ କରିବା ଇଛାରେ ସମଗ୍ର ଆର୍ଯ୍ୟାବର୍ତ୍ତରେ ପାଞ୍ଚାଳୀଙ୍କ ପାଇଁ ସେ ମନେ ମନେ ଅର୍ଜୁନଙ୍କୁ ହିଁ ନିର୍ବାଚନ କରିସାରିଥିଲେ । ଧୃଷ୍ଟଦ୍ୟୁମ୍ନଙ୍କ ଦ୍ୱାରା ସେ ତାଙ୍କ ଅପମାନର ପ୍ରତିଶୋଧ ନେବାପାଇଁ ବଦ୍ଧ ପରିକର ହେଲେ । ଅନ୍ୟ ପକ୍ଷରେ ପାଞ୍ଚାଳୀହିଁ ହେଲେ ସମଗ୍ର କୁରୁକୁଳ ବିନାଶ ପାଇଁ ଏକ ଶକ୍ତିଶାଳୀ ଅସ୍ତ୍ର । ପହିଲି ଆଷାଢ଼ର ନୂଆ ମେଘ ଭଳି ପାଞ୍ଚାଳୀଙ୍କର ସେ ମୁକ୍ତ କୁନ୍ତଳ ମନେ ପଡ଼ିଯିବା ମାତ୍ରେ ରଣଭୂମିର ବିଭୀଷିକା କଳ୍ପନା କରି ମୁଁ ମନେ ମନେ ଶିହରି ଉଠିଲି ।

ଏହା ମୋର ଏକାନ୍ତ ସମୟ । ଦ୍ୱାରକା ଭଳି ପାଣ୍ଡବ ପରିବାରର ମଧ୍ୟ ପ୍ରତ୍ୟେକ ଜାଣନ୍ତି । ଯେତେବେଳେ ମୁଁ ନୀରବରେ ନିଜ ସହ ଆଳାପରତ ଥାଏ ସେତେବେଳେ ମୋ କକ୍ଷକୁ କେହି ହେଲେ ପ୍ରବେଶ କରନ୍ତି ନାହିଁ । ତଥାପି ଏ ସମୟରେ ମୋ କକ୍ଷ ବାହାରେ ଘଣ୍ଟାଧ୍ୱନୀ ଶୁଣି ମୁଁ ଚାହିଁଲି ନିଶାନ୍ତ ଭିତରକୁ ଆସିବାକୁ ଚାହୁଁଥିଲା । ମୁଁ ତ ତା'ରି ଅପେକ୍ଷାରେ ଥିଲି । ତାକୁ ଭିତରକୁ ଆଣି ମୁଁ ଦ୍ୱାର ରୁଦ୍ଧ କରିଦେଲି ।

ନିଶାନ୍ତ କାଳ ବିଳମ୍ବ ନକରି କହିଲା - 'ହସ୍ତିନାରୁ ଶୁଣି ଆସିଲି ଖୁବ୍ ଶୀଘ୍ର ଉଭୟ ପକ୍ଷ ଏକତ୍ର ଭାବେ ବସି ଯୁଦ୍ଧର ନିୟମାବଳୀ ପ୍ରସ୍ତୁତ କରିବେ ।'

ଯୁଦ୍ଧର ନିୟମାବଳୀ ? ମୁଁ ନିଃଶବ୍ଦରେ ହସି ଉଠିଲି, ବରଂ ନିୟମ ଉଲ୍ଲଂଘନ କହିଲେ ଯଥାର୍ଥ ହେବ । ରାଜନୀତିରେ ଯେମିତି କୌଣସି ନୀତି ବା ନିୟମ ନଥାଏ ଠିକ୍ ସେଇଭଳି ଏ ମହାନ୍ ଧର୍ମଯୁଦ୍ଧରେ ନିୟମ ପାଳନ ପ୍ରହସନ ମାତ୍ର ।

ଏଠି ପ୍ରତ୍ୟେକ ପ୍ରତିଜ୍ଞାରେ ବନ୍ଧା । ଯେତେ ବଡ଼ ମୂଲ୍ୟ ଦେବାକୁ ପଡୁ ପଛେ । ଏସବୁ କିଛି ନିଶାନ୍ତକୁ ନକହି କେବଳ ଗମ୍ଭୀର ଭାବେ କହିଲି - 'ଏ ନିୟମାବଳୀ ପ୍ରସଂଗ କିଏ ଉପସ୍ଥାପନ କରିଛନ୍ତି ନିଶାନ୍ତ ?'

ନିଶାନ୍ତ କହିଲା - 'ମହାଭାଗ ! ଯୁଦ୍ଧର ନିୟମାବଳୀ ଆଜନ୍ମ ବ୍ରହ୍ମଚାରୀ ସ୍ୱୟଂ କୁରୁପିତାମହ ଭୀଷ୍ମହିଁ ପ୍ରସ୍ତୁତ କରିବେ । ଏଇମାତ୍ର ଶୁଣି ଆସିଲି ହସ୍ତିନାରୁ ଏ ସଂପର୍କରେ ଧର୍ମରାଜଙ୍କ ପାଖକୁ ନିମନ୍ତ୍ରଣ ଆସି ସାରିଛି ଓ ଆଗାମୀ କାଲି କନିଷ୍ଠ ପାଣ୍ଡବ ଏହି

ନିୟମାବଳୀର ଚୁକ୍ତିନାମାରେ ସ୍ୱାକ୍ଷର କରିବାପାଇଁ ଧର୍ମରାଜଙ୍କ ପକ୍ଷରୁ ହସ୍ତିନା ଯାତ୍ରା କରିବେ ।'

-'ତାପରେ ?' ମୋ ସ୍ୱର ଆହୁରି ଗମ୍ଭୀର ।

ନିଶାନ୍ତ କହିଲା - 'ଆଉ ଏକ ଚିତ୍ତ ଚମତ୍କାରୀ ସଂବାଦ ଅଛି ମହାଭାଗ ! ଜନନୀ କୁନ୍ତୀ କର୍ଣ୍ଣଙ୍କ ନିକଟକୁ ଯାଇଥିଲେ ।'

ମୁଁ ଆଦୌ ବିସ୍ମିତ ହେଲି ନାହିଁ ।

ନିଶାନ୍ତ କହିଲା - 'ଆପଣତ ଜାଣନ୍ତି ମହାଭାଗ, ପ୍ରତ୍ୟହ ଗଂଗାତୀରରେ ଦୀର୍ଘ ସମୟ ପର୍ଯ୍ୟନ୍ତ ମହାବୀର ଅଂଗରାଜ ସ୍ନାନ ତର୍ପଣାଦି କରିଥା'ନ୍ତି । ତର୍ପଣ ଶେଷ ନହେବାଯାଏ ସେ କାହାରିକୁ ମୁହଁ ଉଠେଇ ଚାହାନ୍ତି ନାହିଁ । ବୃକ୍ଷହୀନ, ଛାୟାହୀନ ସୂର୍ଯ୍ୟତାପ ତପ୍ତ ଧରଣୀରେ ଜନନୀ କୁନ୍ତୀଙ୍କୁ ଅସୁସ୍ଥ ଶୀର୍ଣ୍ଣ ଶରୀରରେ ବହୁ ସମୟ ଅପେକ୍ଷା କରିବାକୁ ପଡ଼ିଥା'ନ୍ତା । କର୍ଣ୍ଣଙ୍କର ବିଶାଳ ବପୁର ଛାୟାରେ ସେ ନିଶ୍ଚିନ୍ତରେ ଅପେକ୍ଷା କଲେ ।'

ମୁଁ ଭାବିଲି - 'ହାୟରେ ଜନନୀ ! ଯେଉଁ ହତଭାଗ୍ୟ ପୁତ୍ରଟିକୁ ମୁହୂର୍ତ୍ତେ ନିଜ ପଣତରେ ଆବୃତ କରି ରଖି ପାରିନଥିଲେ ସେହି ପୁତ୍ରର ଛାୟାରେ ଅପେକ୍ଷା କରି ରହିଲେ ଅନ୍ୟ ପୁତ୍ରମାନଙ୍କର ଜୀବନ ଭିକ୍ଷା କରିବା ନିମିତ୍ତ !'

ନିଶାନ୍ତ କହିଲା - 'ପ୍ରଥମେ ତ ଅଂଗରାଜ ମାତା କୁନ୍ତୀଙ୍କୁ ଯଥେଚ୍ଛା କଟୂକ୍ତି କଲେ ତାଙ୍କର ଅନୁଦାରତା ନିମିତ୍ତ । କୁନ୍ତୀଙ୍କର ନିରୁପାୟ ଅସହାୟତାକୁ ସେ କୌଣସି ପ୍ରକାରେ କ୍ଷମା କରି ପାରିଲେ ନାହିଁ । ପରିଶେଷରେ ଆଶ୍ୱାସନା ଦେଇ କହିଲେ ଯେ କୁନ୍ତୀ ଚିରକାଳ ପଞ୍ଚପୁତ୍ରର ଜନନୀ ହୋଇ ରହିବେ ।'

- 'ଅର୍ଥାତ୍ ?' ମୁଁ ପ୍ରଶ୍ନ କଲି ।

ସେ କହିଲା - 'ମହାଭାଗ ! ମୁଁ ଗୋଟିଏ ପ୍ରତିଶୃତି ଦେଉଛି ମୋ ଠାରୁ ଯୁଧିଷ୍ଠିର, ଭୀମ, ନକୁଳ ଓ ସହଦେବଙ୍କର କୌଣସି ଭୟ ନାହିଁ । କିନ୍ତୁ ଧନଞ୍ଜୟ ପ୍ରତି ମୋର ଆଜନ୍ମ ବିଦ୍ୱେଷ, ଏ ଯୁଦ୍ଧରେ ଆମ ଭିତରୁ ଯେ କେହି ଜଣେ ବଞ୍ଚିବ ।'

ମୁଁ ସ୍ୱଗତୋକ୍ତି କଲାଭଳି କହିଲି - 'କର୍ଣ୍ଣତ ଅପରାଜେୟ ଦୁର୍ଦ୍ଧର୍ଷ ବୀର ! ସହଜାତ କବଚ କୁଣ୍ଡଳଧାରୀ କର୍ଣ୍ଣଙ୍କୁ କେଉଁ ଅସ୍ତ୍ର ବା ପରାଭୂତ କରିପାରିବ ନିଶାନ୍ତ ?'

ନିଶାନ୍ତ ଉତ୍‌ଫୁଲ୍ଲିତ ହୋଇ କହି ଉଠିଲା - 'ସେ ସମ୍ଭାବନା ଶେଷ ହୋଇଛି

ମହାଭାଗ ! ମହାବଳୀ କର୍ଣ୍ଣ ଆଉ ଅଜେୟ ହୋଇନାହାନ୍ତି । ମହାବଳ କର୍ଣ୍ଣ ଆଉ ସହଜାତ କବଚ କୁଣ୍ଡଳଧାରୀ ହୋଇ ନାହାନ୍ତି । ଶୁଣି ଆସିଲି ସ୍ୱୟଂ ଦେବେଶ ଇନ୍ଦ୍ର ବ୍ରାହ୍ମଣ ବେଶରେ ଆସି ଦାନବୀର କର୍ଣ୍ଣଙ୍କ ଠାରୁ ତାଙ୍କର କବଚ କୁଣ୍ଡଳ ମାଗି ନେଇଛନ୍ତି । ନିଜ ଶରୀରକୁ ଲହୁ ଲୁହାଣ କରି ଦାନବୀର କର୍ଣ୍ଣ ତାହା ଦାନ କରିଦେଇଛନ୍ତି ।'

ଆହା ! ପୁଣିଥରେ ଭାଗ୍ୟଦ୍ୱାରା ପ୍ରବଞ୍ଚିତ ହେଲେ କର୍ଣ୍ଣ । ଭାଗ୍ୟକୁ ଉପେକ୍ଷା କରି ନିଜର ପୁରୁଷାକାରର ବିଜୟ ଘୋଷଣା କରିବାକୁ ସେ ଯେତେଥର ଚେଷ୍ଟା କରୁଛନ୍ତି ସେତେଥର ଭାଗ୍ୟ ଦ୍ୱାରା ପରାହତ ହେଉଛନ୍ତି । ନହେଲେ ମୁଁ ତ ତାଙ୍କୁ ପୃଥିବୀ ଯାଚି ଥିଲି । ଭୋଗ କରିବା ପାଇଁ ସସାଗରା ପୃଥିବୀ । ସେ କିନ୍ତୁ ଅନାୟାସରେ ତା' ଅପରାଧରେ ଅଭିଯୁକ୍ତ ହେବେ ନାହିଁ ବୋଲି ନିଜର ମୃତ୍ୟୁହିଁ କାମନା କଲେ ! ପୁଣି କି ମର୍ମନ୍ତୁଦ ସେ ମୃତ୍ୟୁ ? ନା - ଥାଉ ସେ କଥା ପରେ ।

ଆଉ ଦିନକର ଘଟଣା ମୋ ସ୍ମୃତିରେ ଏବେବି ଜୀବନ୍ତ । ସୂର୍ଯ୍ୟାସ୍ତ ହେବାକୁ ବିଳମ୍ବ ଥାଏ । ମୁକ୍ତ ଅଂଗନରେ କୃଷ୍ଣା ଉତ୍ତରାଙ୍କର କେଶ ବିନ୍ୟାସ କରୁଥା'ନ୍ତି ଏବଂ ଅଭିମନ୍ୟୁର ଗୁଣଗାନ କରୁଥା'ନ୍ତି । ଏହି ସମୟରେ  ମୁଖ୍ୟ ଦ୍ୱାର ନିକଟରେ ମଦ୍ରପତି ଶଲ୍ୟ ପହଞ୍ଚିଲେ । ତାଙ୍କ ମୁହଁ ଅତ୍ୟନ୍ତ ବିଷର୍ଣ୍ଣ ଦିଶୁଥାଏ । ଯେମିତି କୌଣସି ଯୁଦ୍ଧ ସେ ହାରି ଯାଇଛନ୍ତି । ତାଙ୍କୁ ଦେଖିବାମାତ୍ରେ ପଞ୍ଚଭ୍ରାତା ଅତ୍ୟନ୍ତ ଆନନ୍ଦିତ ହୋଇ ଉଠିଲେ; ମାତ୍ର ସେ କାତର କଣ୍ଠରେ କହିଲେ - 'ମୁଁ ପ୍ରତାରିତ ହୋଇଛି ଧର୍ମରାଜ ! ଅଜ୍ଞାତବାସ ପରେ ତୁମ୍ଭମାନଙ୍କୁ ମୁଁ ସାକ୍ଷାତ କରିବାକୁ ଆସୁଥିଲି । ପଥ ମଧ୍ୟରେ ଶୁଣିଲି ବାସୁଦେବଙ୍କର ସନ୍ଧି ପ୍ରସ୍ତାବକୁ କୁରୁପତି ଅଗ୍ରାହ୍ୟ କରିଛି । ସୁତରାଂ ଯୁଦ୍ଧ ସୁନିଶ୍ଚିତ । ମୋର ଚତୁରଙ୍ଗ ବାହିନୀ ସହ ପାଣ୍ଡବଙ୍କ ପକ୍ଷଭୁକ୍ତ ହେବା ଉଦ୍ଦେଶ୍ୟରେହିଁ ଆସୁଥିଲି । ମଦ୍ରରୁ ହସ୍ତିନା ପର୍ଯ୍ୟନ୍ତ ପଥ ବଡ଼ ଦୁର୍ଗମ ଓ ଅରଣ୍ୟ ସଂକୁଳ, ତାହାତ ସର୍ବଜନ ବିଦିତ । ଆମ୍ଭେମାନେ କ୍ଳାନ୍ତ, ଶ୍ରାନ୍ତ ହୋଇ ଆସିବା ସମୟରେ ଆମ ସହ ଆମ୍ଭମାନଙ୍କର ଗଜ, ଅଶ୍ୱ, ପରିଚାରକ ପ୍ରଭୃତିଙ୍କ ପାଇଁ ମଧ୍ୟ ଉତ୍ତମୋତ୍ତମ ଭୋଜନ ଓ ସୁଶୀତଳ ସୁମିଷ୍ଟ ପାନୀୟ ହସ୍ତିନାର ଉପକଣ୍ଠରେ ନବନିର୍ମିତ ଅତିଥିଶାଳା ମାନଙ୍କର ପ୍ରଚୁର ପରିମାଣରେ ଥିଲା । ଚିତ୍ତ ବିନୋଦନର ସମସ୍ତ ସାମଗ୍ରୀ ଯୋଗାଇ ଦିଆ ହୋଇଥିଲା । ଯାହାକୁ ପ୍ରଶ୍ନ କରୁଥିଲି ଏ ସବୁର ବ୍ୟବସ୍ଥା କିଏ କରିଛି ? ଗୋଟିଏ ଉତ୍ତର ମିଳୁଥିଲା - 'ଆପଣଙ୍କ ଭାଗୀନେୟ' । ମୁଁ ଭ୍ରମବଶତଃ ଏହା ପଣ୍ଡୁନନ୍ଦନ କୃତବୋଲି ଭାବିଥିଲି । ଅତ୍ୟନ୍ତ ପରିତୁଷ୍ଟ ହୋଇ ଜଣେ ଭୃତ୍ୟକୁ କହିଲି 'ମୋର ଭାଗୀନେୟମାନଙ୍କୁ ଡାକିଆଣ । ଆଜି ସେ ମୋ ଠାରୁ ଯାହା ଚାହିଁବେ ତା' ମୁଁ ଦେବି ।' ଏହାତ ମୁଁ ପଣ୍ଡୁସୁତଙ୍କ ଉଦ୍ଦେଶ୍ୟରେ କହିଥିଲି; ମାତ୍ର ମୋ ସମ୍ମୁଖରେ ନତ ମସ୍ତକରେ ଠିଆ ହେଲେ କୁରୁପତି । ଥରେ ବଚନବଦ୍ଧ ହେବା ପରେ ମୁଁ ଆଉ

କ'ଣ କରିଥାନ୍ତି ? ମୋ ସରଳତାର ସୁଯୋଗ ନେଇ କୁରୁପତି ମୋ ସହ ଚଞ୍ଚକତା କରିଛନ୍ତି । ବରଂ ମୋତେ କହିଲେ - ମାତୁଳ ! ଆପଣ ଅଂଗୀକାର ବଦ୍ଧ । ଆମର ପ୍ରାର୍ଥନା ସ୍ୱୀକାର କରନ୍ତୁ- ଆପଣ ଆପଣଙ୍କର ଚତୁରଙ୍ଗ ବାହିନୀ ସହ କୌରବ ପକ୍ଷଭୁକ୍ତ ହୁଅନ୍ତୁ ।'

ଅନେକ ସମୟ ନିସ୍ତବ୍ଧ ନୀରବତା ପରେ ସର୍ବ ପ୍ରଥମେ କନିଷ୍ଠ ପାଣ୍ଡବ ମୁହଁ ଖୋଲିଲେ । ସାଧାରଣତଃ ସେ ଉତ୍ତେଜିତ ହୁଅନ୍ତି ନାହିଁ । ସେ ଧିର ସ୍ୱଭାବର । ସେ କିନ୍ତୁ ଉତ୍ତପ୍ତ କଣ୍ଠରେ କହିଲେ - 'ଏତେଦିନ ପରେ ଆପଣ ଆମ୍ଭମାନଙ୍କୁ ସ୍ମରଣ କରାଇ ଦେଲେ ଯେ ମୁଁ ଓ ଭ୍ରାତା ନକୁଳ କୁନ୍ତୀ ନନ୍ଦନଙ୍କର ବୈମାତ୍ରେୟ ଭ୍ରାତା । ଏକଥା ଆମ ସହ ଜଗତବି ଭୁଲି ଯାଇଥିଲା । ମୋତେ ଓ ଭ୍ରାତା ନକୁଳଙ୍କୁ ଜନ୍ମ ଦେଇ ଆମ ମାତା ମାଦ୍ରୀଙ୍କର ଦେହାନ୍ତ ହୋଇଥିଲା । ଜନନୀ କୁନ୍ତୀଙ୍କର ଦୁଗ୍ଧ ଧାର ଆମ ଧମନୀରେ ରକ୍ତ ହୋଇ ପ୍ରବାହିତ ହେଉଛି । କେଉଁ କେଉଁ ଋଣ ତାଙ୍କର ଆମେ ପରିଶୋଧ କରିପାରିବୁ ? ଶୈଶବରୁ ଆଜିଯାଏ ଆମ ଦୁଇଭାଇଙ୍କୁ ଅଗ୍ରଜ ଯୁଧିଷ୍ଠିର, ଭ୍ରାତା ଭୀମ ଓ ଭ୍ରାତା ଅର୍ଜୁନ ବକ୍ଷଲଗ୍ନ କରି ରଖି ଆସିଛନ୍ତି । ବାରୁଣାବତର ଜତୁଗୃହରେ ଲେଲିହାନ ଅଗ୍ନିଶିଖା ଭିତରେ ଭ୍ରାତା ଭୀମ ସର୍ବ ପ୍ରଥମେ ଭ୍ରାତା ନକୁଳଙ୍କୁ ଓ ମୋତେ କୋଳାଗ୍ରତ କରି ଆଣିଥିଲେ । ଧର୍ମବକ ଠାରୁ ସର୍ବ ପ୍ରଥମେ ଅଗ୍ରଜ ଯୁଧିଷ୍ଠିର ନକୁଳଙ୍କର ପ୍ରାଣଭିକ୍ଷା କରିଥିଲେ । ବନବାସ ସମୟରେ ଜନନୀ କୁନ୍ତୀ ମୋର ବିଶେଷ ଯତ୍ନ ନେବା ପାଇଁ ପାଞ୍ଚାଳୀଙ୍କୁ ଉପଦେଶ ଦେଇଥିଲେ । ଏତେସବୁ ସତ୍ତ୍ୱେ ଅଗ୍ରଜ ଯୁଧିଷ୍ଠିରଙ୍କର ବିଶ୍ୱାସ ଭଂଗ କଲେ କିପରି ମାତୁଳ ? ଛିଃ ! ମଦ୍ରପତିଙ୍କର ଆମ୍ଭେ ଭାଗୀନେୟ ବୋଲି କହିବାକୁ ଲଜ୍ଜ୍ୟା ଲାଗୁଛି । ଆମେତ ଏବେ ଆପଣଙ୍କର ଶତୃପକ୍ଷ ? ଗୋଟି ଗୋଟି କରି ସମସ୍ତେ ଆମ ପକ୍ଷ ତ୍ୟାଗ କଲେବି ଆମେ ପଞ୍ଚ ପଣ୍ଡୁସୁତ ଏକତ୍ର ହିଁ ରହିବୁ ଏବଂ ବାସୁଦେବଙ୍କ ଦ୍ୱାରା ଆଗତ ସନ୍ଧି ପ୍ରସ୍ତାବ ଯେତେବେଳେ ପ୍ରତ୍ୟାଖ୍ୟାତ ହୋଇଛି ସେତେବେଳେ ଯୁଦ୍ଧହିଁ କରିବୁ ।'

ଏତିକି କହି ସେ କକ୍ଷତ୍ୟାଗ କରି ଚାଲିଗଲେ । ମଦ୍ରପତି ସେଇଭଳି ଅଧୋବଦନରେ ବସି ରହିଲେ । ଅନେକ ସମୟ ନିରବତା ପରେ ଧର୍ମରାଜ କହିଲେ - 'ଗତକଥାକୁ ନେଇ ଅନୁଶୋଚନା କରିବା ବିଜ୍ଞତାର ଲକ୍ଷଣ ନୁହେଁ । ତ୍ରିକାଳଜ୍ଞ ସହଦେବକୁ ପଚାରି ବୁଝିଛି ଏଯୁଦ୍ଧର ପ୍ରାରମ୍ଭରେ ପିତାମହ ସେନାପତି ରହିଲେବି ଶେଷପର୍ଯ୍ୟନ୍ତ ରହି ପାରିବେ ନାହିଁ । ପିତାମହ ଯୁଦ୍ଧ ଭୂମିରେ ନରହିବା ବେଳେ ଅଂଗରାଜ କର୍ଣ୍ଣଙ୍କ ଉପରେ କୁରୁପତି ଦୁର୍ଯୋଧନ ନିଶ୍ଚିତ ଭରସା କରିବ । ଅର୍ଜୁନ ଓ କର୍ଣ୍ଣଙ୍କ ମଧ୍ୟରେ ଦ୍ୱୈରଥ ସମର ସୁନିଶ୍ଚିତ । ମାତୁଳ ଶଲ୍ୟଙ୍କୁ ମୋର ଏତିକି ଅନୁରୋଧ ସେହି ଅବସରରେ ମଦ୍ରପତିହିଁ ଯେପରି କର୍ଣ୍ଣଙ୍କର ସାରଥୀ ହୁଅନ୍ତି !'

ମଦ୍ରପତି ଖୁବ୍ ଖୁସି ହୋଇ କହି ଉଠିଲେ - 'ବୁଝିଗଲି । ବୁଝିଗଲି । ଏଥର ମୋର

ଲକ୍ଷ୍ୟ ପଥ ପରିଷ୍କାର ହୋଇଗଲା । କୁରୁପତିର ପ୍ରତାରଣାର ଫଳ କେତେ ବିଷମୟ, ତା' ସେଇଦିନ ମୁଁ ବୁଝାଇ ଦେବି ।'

ମଦ୍ରପତି ଅକ୍ଷରେ ଅକ୍ଷରେ ତାଙ୍କ ପ୍ରତିଶ୍ରୁତି ପାଳନ କରିଥିଲେ ଓ ନିଜ ଅଜ୍ଞାତସାରରେ ଜଣେ କୁନ୍ତୀ ପୁତ୍ରର ଗୁଣଗାନ କରିବା ସମୟରେ ଆଉଜଣେ କୁନ୍ତୀ ପୁତ୍ରକୁ ପଦେ ପଦେ ନିରୁତ୍ସାହିତ କରିଥିଲେ । ମୋର ସ୍ପଷ୍ଟ ମନେ ଅଛି । କର୍ଣ୍ଣା-ର୍ଜୁନ ଦ୍ୱୈରଥ ସମରର ସେହି ଭୀଷଣତା ଓ ପ୍ରଚଣ୍ଡତା ଭୁଲିବାର ନୁହେଁ ।

ଯୁଦ୍ଧର ସମ୍ବାଦ ପାଇବା ପରଠାରୁ ଜ୍ୟେଷ୍ଠଭ୍ରାତା ଏକ ସ୍ୱତନ୍ତ୍ର ଦୂତ ଦ୍ୱାରା ମୋତେ ଦ୍ୱାରକା ଫେରିଯିବାକୁ ନିର୍ଦ୍ଦେଶ ଦେଇଛନ୍ତି । ଏକଥା ମଧ୍ୟ ଜଣାଇ ଦେଇଛନ୍ତି ଯେ ମୁଁ ଦ୍ୱାରକାରେ ପହଞ୍ଚିବା ପରେ ଆମେ ଦୁଇଭାଇ ଆମର କର୍ତ୍ତବ୍ୟ ନିର୍ଦ୍ଧାରଣ କରିବୁ । ଯୁଦ୍ଧର ନିୟମାବଳୀ ଚୁକ୍ତିରେ ସ୍ୱାକ୍ଷର କରି ସହଦେବ ହସ୍ତିନାରୁ ଫେରି ଆସିଥିଲେ । ଚିରାଚରିତ ନିୟମ ବ୍ୟତୀତ ଆଉ କେଉଁ ନୂତନ ନିୟମ ପ୍ରଣୟନ କରା ହୋଇଛି ତା' ଜାଣିବା ପାଇଁ ଉତ୍ସୁକ ହୋଇ ଥିଲି । ଦୌତ୍ୟ ଭୂମିକାରେ ଅବତୀର୍ଣ୍ଣ ହୋଇ ଫେରିଆସିବା ପରଠାରୁ ମୁଁ ମୋର ସ୍ୱଭାବ ସୁଲଭ କୌତୁକ ପ୍ରିୟତାକୁ ପରିହାର କରି ପ୍ରାୟତଃ ଗମ୍ଭୀର ହୋଇ ଯାଇଥିଲି । ମୋ କକ୍ଷରେ ପ୍ରବେଶ କଲେ ଆଗେ ଆଗେ ପାଞ୍ଚାଳୀ, ତାଙ୍କ ହସ୍ତରେ ଗୋଟିଏ ସୁବୃହତ୍ ପାତ୍ର । ସେଥିରେ ଥାଏ ବିରାଟ ନଗରୀରୁ ଆସିଥିବା ଉତ୍କୃଷ୍ଟ ଦୁଗ୍ଧଦ୍ୱାରା ପାଞ୍ଚାଳୀଙ୍କ ସ୍ୱହସ୍ତ ପ୍ରସ୍ତୁତ ସୁସ୍ୱାଦୁ, ସୁମିଷ୍ଟ ଓ ମୋର ଅତିପ୍ରିୟ କ୍ଷୀର ପିଣ୍ଡକ । ମୋ ସମ୍ମୁଖରେ ସେ ପାତ୍ରଟିକୁ ଥୋଇ ଦେଇ ପାଞ୍ଚାଳୀ କହିଲେ- 'ହେ ଯୋଗେଶ୍ୱର ! ଆପଣତ ଆଉ ପୂର୍ବର ସେଇ ଆମର ସଖା କେଶବଙ୍କ ଭଳି ଦିଶୁ ନାହାନ୍ତି । ସତେ ଯେମିତି ଅବିରତ ଯୋଗସାଧନାରେ ମଗ୍ନ କେଉଁ ମହାନ୍ ଯୋଗୀ ଭଳି ଦିଶୁଛନ୍ତି । ଆପଣଙ୍କ ଅଧରରେ ସେଇ ଭୁବନ ମୋହନ ହସଧାରେ ଦେଖିବା ପାଇଁ ମୋର ପତିଗଣ ପ୍ରାଣାନ୍ତକ ଉଦ୍ୟମ କରୁଛନ୍ତି ।'

-'ଆଉ ସେଇଥିପାଇଁ ତୁମେ ସାରାଦିନ ପରିଶ୍ରମ କରି ମୋ ପାଇଁ ମୋର ପ୍ରିୟ ଖାଦ୍ୟ ପ୍ରସ୍ତୁତ କରି ଆଣିଚ ! କିନ୍ତୁ ମୁଁ ତ ତୁମର ପତି ବୃକୋଦର ନୁହେଁ ଯେ ସୁଖାଦ୍ୟ ଦେଇ ମୋତେ ବଶୀଭୂତ କରିବ !'

ରସିକତା କରିବାର ଲୋଭ ସମ୍ବରଣ କରିପାରିଲି ନାହିଁ । ମୋର କଥା ଶେଷ ହେବା ମାତ୍ରେ ପାଞ୍ଚାଳୀ କହିଲେ - 'କିଏ ଏକଥା ନଜାଣେ ଯେ ? ମୋର ପତି ବୃକୋଦର ଶିଶୁଭଳି ସରଳ, ନହେଲେ ଶତ୍ରୁହାତରୁ ଅତୀତରେ ପ୍ରମାଣକୋଟୀ ଉଦ୍ୟାନରେ ବିଷ ଲଡୁ ଖାଇଥା'ନ୍ତେ ?'

ଭ୍ରାତା ଭୀମ ସେତେବେଳକୁ ପହଞ୍ଚି ସାରିଥିଲେ ଓ ଏସବୁ ଶୁଣି ସେ ମଧ୍ୟ ପରିହାସ ଚପଳ କଣ୍ଠରେ କହି ଉଠିଲେ - 'କେବେ ଅତୀତରେ ବକ ରାକ୍ଷସକୁ ନିଧନ କରିବା ସମୟରେ ଏକ ଶକଟ ଖାଦ୍ୟ ଖାଇଥିଲି ଯେ, ଏ ପରିଣତ ବୟସରେ ବି ସେ କଳଙ୍କ ନିଶ୍ଚିହ୍ନ ହେଲା ନାହିଁ ।'

ମୁଁ ସହଦେବଙ୍କୁ ପ୍ରଶ୍ନ କଲି- 'ଯୁଦ୍ଧରେ କେଉଁ କେଉଁ ନିୟମାବଳୀ ରହିଲା ସହଦେବ ? ପାରଂପରିକ ନିୟମକୁ ବାଦ୍ ଦେଇ କିଛି ନୂତନ ନିୟମ ରହିଲା କି ?'

ସେ କହିଲେ - 'ନିଶ୍ଚୟ ! ପିତାମହ ସର୍ତ୍ତ ରଖିଲେ - 'ମୁଁ କୌଣସି ସ୍ତ୍ରୀ ବେଶଧାରୀ, କ୍ଳୀବ, ସ୍ତ୍ରୀ ଧ୍ୱଜାଧାରୀ ସହ ଯୁଦ୍ଧରେ ପ୍ରବୃତ୍ତ ହେବିନାହିଁ, ଜୀବନ ବିନିମୟରେ ସୁଦ୍ଧା ନୁହେଁ ।'

ସହଦେବଙ୍କର ଏ କଥା ଶୁଣି ମୁଁ ଉଚ୍ଚ କଣ୍ଠରେ ହସି ଉଠି କହିଲି - 'ତୁମ ପିତାମହ ରଣଭୂମିକୁ ଆସିବେ ନା ରଂଗଭୂମିକୁ ? ରଣ କ୍ଷେତ୍ରରେ ଏ ପ୍ରକାର କୌତୁକ ତାଙ୍କ ସହ କିଏ ବା କାହିଁକି କରିବ ? ବେଶ୍ ! ପାଞ୍ଚାଳୀ ! ଏଥର ତମେ ବିଜୟୀ ପତିଙ୍କର ଅଭିବନ୍ଦନା ନିମିତ୍ତ ଅର୍ଘ୍ୟ ଥାଳୀ ସଜାଡ଼ !'

ପାଞ୍ଚାଳୀ କହିଲେ - 'ଆପଣଙ୍କର ସବୁଥିରେ ପରିହାସ । ତଥାପି ମୁଖରୁ ବିଷର୍ଣ୍ଣ ଭାବ କଟିନାହିଁ ଯେ !'

- 'ଆସନ୍ନ ବିରହ ଚିନ୍ତାରେ', ମୁଁ କହିଲି ।

- 'ଅର୍ଥାତ୍ ?' ସେମାନେ ଉତ୍‌କଣ୍ଠା ପ୍ରକାଶ କଲେ ।

- 'ହଁ, ମୋତେ ଆଜିହିଁ ଦ୍ୱାରକା ଫେରିଯିବାକୁ ହେବ ସଖୀ !'

-'ତେବେ ଯୁଦ୍ଧ ? ତମେହିଁ ତ ଆମ ବିପଦରେ ବନ୍ଧୁ । କାହା ଭରସାରେ ପାଣ୍ଡବଗଣ ଯୁଦ୍ଧ ଯାତ୍ରା କରିବେ ? ପାଞ୍ଚାଳୀଙ୍କ କଣ୍ଠସ୍ୱର ଅସହାୟ ହୋଇ ଉଠିଲା । ମୁଁ ତାଙ୍କୁ ସାନ୍ତ୍ୱନା ଦେଇ କହିଲି - 'ଯୁଦ୍ଧତ ଯୋଦ୍ଧା ଲଢ଼ିବେ ଶସ୍ତ୍ରକୁ ଆଶ୍ରୟ କରି । ମୁଁ ଶସ୍ତ୍ରରେ ଯୁଦ୍ଧ ଲଢ଼େ ନାହିଁ - ବୁଦ୍ଧିରେ ଲଢ଼େ, ବୁଦ୍ଧିରେ ଜିଣେ ।'

ମୋର ଏ କଥାର ତାତ୍ପର୍ଯ୍ୟ ଧନଞ୍ଜୟ ହୁଏତ ବୁଝିଗଲେ । ସେ କୃତାଞ୍ଜଳି ପୁଟରେ କହିଲେ - 'ବେଶ୍ ସଖା ! ତାହାହିଁ ହେଉ !'

ମୁଁ ପୁଣି ପାଞ୍ଚାଳୀଙ୍କୁ କହିଲି - 'ଯେଉଁ ସ୍ଥାନ ତ୍ୟାଗ କରେ ଆଉ କେବେ କାହିଁ ସେ ସ୍ଥାନକୁ ମୁଁ ଫେରିଛି ? ଏବେବିତ ଯଶୋମତୀ ମା'ଙ୍କ ଆଖିରେ ଅନନ୍ତ ପ୍ରତୀକ୍ଷା । ଦାଣ୍ଡ ଦୁଆରେ ବସି ରହି ଗୋଷ୍ଠ ବାହୁଡ଼ା ପଥରେ ଦୃଷ୍ଟି ହଜେଇ ଦେଇଛନ୍ତି କେବେ ତାଙ୍କ କାହ୍ନୁ

ଫେରିବ । ଆଜି ଉପପ୍ଲବ୍ୟରୁ ବିଦାୟ ନେଉଛି, ପୁଣି ଦେଖା ହେବ କୁରୁକ୍ଷେତ୍ରରେ ପାଣ୍ଡବଙ୍କ ରଣ ଶିବିରରେ । ମୋର ଦୃଷ୍ଟି ସର୍ବଦା ଆଗକୁ - ଆଗକୁ ।'

ମୋ ସ୍ୱରର ଅପରିଚିତ ଗାମ୍ଭୀର୍ଯ୍ୟରେ ସମସ୍ତେ ହତବାକ୍ ହୋଇ ମୋତେ ଚାହିଁ ରହିଥିଲେ ।

•

## ।। ତ୍ରୟୋବିଂଶତି ଗ୍ରନ୍ଥିମୋଚନ।।

ବ୍ରାହ୍ମ ମୁହୂର୍ତ୍ତ । ଘଣ୍ଟ, ଘଣ୍ଟା, ଘୃତଦୀପର ଆଳତୀ କର୍ପୂର, ଚନ୍ଦନ, କସ୍ତୁରୀ , ଝୁଣା, ଧୂପ, ଅଗୁରୁ, ପୁଷ୍ପ, ଦୟଣା, ତୁଳସୀର ମିଶ୍ରିତ ସୁଗନ୍ଧର ଏକ ପବିତ୍ର ପରିବେଶରେ ପ୍ରତ୍ୟହ ଦ୍ୱାରକାରେ ମୋର ନିଦ୍ରାଭଂଗ ହୁଏ । ମୋ ନିଦ୍ରାଭଂଗ ହେବାର ବହୁ ପୂର୍ବରୁ ରୁକ୍ମିଣୀ ଶଯ୍ୟା ତ୍ୟାଗ କରି ସ୍ନାନାଦି କାର୍ଯ୍ୟ ସମାପ୍ତ କରି ସାରିଥାନ୍ତି, ଯେମିତି କି ମୋ ରାତି ପାହିବ ପରମଲକ୍ଷ୍ମୀ ରୁକ୍ମଣୀଙ୍କ ମୁଖ ଦର୍ଶନ କରି । ଖାଲି ସେତିକି ନୁହେଁ ମୋର ଶୟନ ପଲ୍ୟଙ୍କ ନିକଟରେ ରୁକ୍ମିଣୀ ଏକ ଅଦ୍‌ଭୁତ ବ୍ୟବସ୍ଥା କରିଥିଲେ । ପଲ୍ୟଙ୍କରେ ମୋର ମସ୍ତକ ଭାଗରେ ଏକ ମଣିମୟ ସିଂହାସନ ଓ ପଦ ପ୍ରାନ୍ତରେ ସଂପୂର୍ଣ୍ଣ ନିରାଡ଼ମ୍ବର ଏକ କାଷ୍ଠାସନର ବ୍ୟବସ୍ଥା କରିଥିଲେ । ଏ ସଂପର୍କରେ ଥରେ ମୃଦୁଭାଷିଣୀ ରୁକ୍ମିଣୀଙ୍କୁ ପ୍ରଶ୍ନ କରିଥିଲି । ସେ କହିଥିଲେ - 'ପ୍ରଭୁ ! ଯେତେବେଳେ ମୁଁ ଆପଣଙ୍କ ମସ୍ତକ ଭାଗରେ ଉପବିଷ୍ଟା ହୁଏ ସେତେବେଳେ ମୁଁ ଆପଣଙ୍କର ମନ୍ତ୍ରଣା ଦାତ୍ରୀ, ସଖୀ, ଆଉ ଯେତେବେଳେ ଆପଣଙ୍କ ପଦପ୍ରାନ୍ତରେ ଉପବେଶନ କରେ ସେତେବେଳେ କେବଳ ସେବାଦାସୀଟିଏ । ଭୂମିକା ଅନୁରୂପ ଯୋଗ୍ୟ ଆସନର ବ୍ୟବସ୍ଥା କରିଛି ।'

ଏ କଥାଟା ସେଦିନ ସେ ଏମିତି କହି ଦେଇଥିଲେ । ଏହା କିନ୍ତୁ ତାତ୍ପର୍ଯ୍ୟ ପୂର୍ଣ୍ଣ ହୋଇଉଠିଲା ସେଇଦିନ, ଯେଉଁଦିନ ଏକକାଳୀନ ଗାନ୍ଧାରୀ ନନ୍ଦନ ଓ କୁନ୍ତୀ ନନ୍ଦନ ଦ୍ୱାରକାରେ ପହଞ୍ଚି ଥିଲେ ଯୁଦ୍ଧରେ ଯୋଗଦାନ ପାଇଁ ନିମନ୍ତ୍ରଣ ସହ । କୁରୁପତି ଦୁର୍ଯ୍ୟୋଧନ ଏବଂ ପାର୍ଥ ।

ଚିରାଚରିତ ରୀତିରେ ଘଣ୍ଟ ଘଣ୍ଟା ଶଙ୍ଖ ଧ୍ୱନୀରେ ମୋ ନିଦ୍ରା ଭଂଗ ହେଲା । ଭଂଗ ହେବା ମାତ୍ରେ ପଦ ପ୍ରାନ୍ତକୁ ଦୃଷ୍ଟିଗଲା । ପଦପ୍ରାନ୍ତରେ ନିରାଭରଣ କାଷ୍ଠାସନରେ, ଭାବବିହ୍ୱଳ ନେତ୍ରରେ ମୋତେ ଚାହିଁ ବସି ରହିଥିଲେ କୁନ୍ତୀ ନନ୍ଦନ ପାର୍ଥ, ଅଧରରେ ତାଙ୍କର ବିଷ୍ଣୁ ସହସ୍ର ନାମ ଉଚ୍ଚାରିତ ହେଉଥାଏ ମନ୍ଦ୍ରଭାବରେ । କୌଣସି ରାଜକୀୟ ପରିଛଦ ବା ଅଂଗାଭରଣରେ ସଜ୍ଜିତ ହୋଇ ନଥା'ନ୍ତି ସେ । ଶ୍ୱେତ ଶୁଭ୍ର କ୍ଷୀରୋଦ୍ରୀ ପଟ୍ଟବସ୍ତ୍ର, ଗଳାରେ ରୁଦ୍ରାକ୍ଷ ଓ ତୁଳସୀ ମାଳ, ଲଲାଟରେ ଶ୍ୱେତ ଚନ୍ଦନର ରାମାନନ୍ଦୀ ଚିତା, ନଗ୍ନ ପଦ, ହସ୍ତରେ ଧାରଣ କରିଥା'ନ୍ତି

ଦୟଣା, ତୁଳସୀ ମଂଜରୀ, ମାଳତୀ ଓ କଦମ୍ବର ମାଳ । ମୁଁ ତନ୍ମୟ ହୋଇଗଲି । ମନେ ମନେ ଅର୍ଜୁନଙ୍କର ତୀକ୍ଷ୍ଣ ବୁଦ୍ଧି ମତ୍ତା ଓ ଚତୁରତାକୁ ପ୍ରଶଂସା କଲି । ଏଇତ ସୂକ୍ଷ୍ମ ପ୍ରଭେଦ କୁନ୍ତୀ ପୁତ୍ର ଓ ଗାନ୍ଧାରୀ ପୁତ୍ରଙ୍କ ଭିତରେ । କୁରୁପତିଙ୍କର ସବୁକିଛି ଅଭିସନ୍ଧି ମୂଳକ, ଉଦ୍ଦେଶ୍ୟପ୍ରଣୋଦିତ କିନ୍ତୁ ଦୂର ଦୃଷ୍ଟି ବିହୀନ । ଅଥଚ କୁନ୍ତୀ ନନ୍ଦନଙ୍କର ସବୁକିଛି ଧର୍ମାନୁମୋଦିତ ଓ ଦୂରଦୃଷ୍ଟି ସଂପନ୍ନ । ମୁଁ ଅଭିଭୂତ ଭାବେ ପାର୍ଥଙ୍କୁ କଣ୍ଠଲଗ୍ନ କଲି । ପାର୍ଥ ମୁହଁରେ ଆତ୍ମସମର୍ପଣର ମୁଦ୍ରାଙ୍କ ସ୍ପଷ୍ଟ ହୋଇଉଠିଲା । ସେ ଯୋଡ଼ ହସ୍ତରେ ନିବେଦନ କଲେ - 'ହେ ରାଜରାଜେଶ୍ୱର ! ହେ ଅନ୍ତର୍ଯ୍ୟାମୀ ! ହେ ଭାବଗ୍ରାହୀ ! ପାଣ୍ଡବ ପଞ୍ଚଭ୍ରାତା ଓ ପାଞ୍ଚାଳୀ ଆପଣଙ୍କ ପଦତଳେ କେବଳ ଏଇ ପତ୍ର ପୁଷ୍ପହିଁ ନିବେଦନ କରିଛନ୍ତି ଶ୍ରଦ୍ଧା ସହ, ଏତିକି ମାତ୍ର ଗ୍ରହଣ କରନ୍ତୁ ।'

କଦମ୍ବ ମୋର ସ୍ମୃତିରେ ସାଇତା ହୋଇଥିବା ଏକ ସୁରଭି ମାତ୍ର । ଏଇ ଦୁର୍ଲଭ ସୁବାସ ଯୁକ୍ତ ଫୁଲଟି ସହ ଅତୀତର ବହୁ ସ୍ମୃତି ଜଡ଼ିତ । କଦମ୍ବର ମାଳଟିକୁ ଧରୁ ଧରୁ ମୋ ଆଖି ଆଗରେ ଭାସି ଉଠିଲା ବୃନ୍ଦାରଣ୍ୟ, ଯମୁନାର ନୀଳ ନୀରବେଣୀ, ଜନନୀ ଯଶୋମତୀଙ୍କର ପ୍ରଶ୍ରୟଯୁକ୍ତ ଅନୁଶାସନ ଭରା ମମତାସିକ୍ତ ସ୍ନେହାଞ୍ଚଳ ଓ ଶ୍ରୀରାଧାଙ୍କ ନୀଳପଣତ...... ମୁଁ କହିଲି - 'ପଣ୍ଡୁନନ୍ଦନ ଓ ପାଞ୍ଚାଳତନୟା କ'ଣ ଚତୁର୍ବର୍ଗ ଫଳ - ଧର୍ମ, ଅର୍ଥ, କାମ,ମୋକ୍ଷରେ ଲାଳସୀ ନା କ'ଣ ? କୃଷ୍ଣାଙ୍କୁ କହିବ, ବହୁ ଦିନୁ କୃଷ୍ଣ ତାଙ୍କ ଭାବରେ କିଣି ହୋଇଯାଇଛି । ପାର୍ଥ କହିଲେ - 'ଆପଣ ଅନ୍ତର୍ଯ୍ୟାମୀ ସଖା ! ମୁଁ ଛାର ଧୂଳି ଧରାର ମଣିଷ , ଆପଣଙ୍କୁ କ'ଣ ବା ଦେଇ ପାରିବି, କ'ଣ ବା ଆପଣଙ୍କୁ ମାଗି ପାରିବି ?'

ମୁଁ ପାର୍ଥଙ୍କୁ ପୁଣି ଅଭିଭୂତ ଭଳି ଚାହିଁଲି କିଛିକ୍ଷଣ । ପାର୍ଥ ଦିଶୁଥିଲେ ଠିକ୍ ଯେମିତି ଜଣେ ଭକ୍ତ ସହସ୍ର ଯୋଜନ ଦୂରରୁ ତା' ଭଗବାନଙ୍କ ଦର୍ଶନ ନିମିତ୍ତ ଆସିଛି । ଅନ୍ୟ କୌଣସି ଯାଚଞ୍ଚା ତା'ର ନାହିଁ । ମୁଁ ଇଷତ୍ ଗମ୍ଭୀର ଅଥଚ ସ୍ପଷ୍ଟ ସ୍ୱରରେ କହିଲି - 'ଏହା ସାମାନ୍ୟ ନୁହେଁ ପାର୍ଥ ! ଶୁଦ୍ଧ ଚିତ୍ତ ନିଷ୍କାମ ଭକ୍ତର ଭକ୍ତି ଉପହାର ମୁଁ ପ୍ରୀତି ପୂର୍ବକ ଗ୍ରହଣ କରେ ସଖା !

''ପତ୍ରଂ, ପୁଷ୍ପଂ, ଫଳଂ, ତୋୟଂ
ଯୋମେ ଭକ୍ତ୍ୟା ପ୍ରଯଚ୍ଛତି
ତଦହଂ ଭକ୍ତ୍ୟପହୃତ ମଶ୍ନାମି ପ୍ରୟତାତ୍ମନଃ''

ଭକ୍ତି ପୂର୍ବକ ପତ୍ର, ପୁଷ୍ପ, ଫଳ, ଜଳ ଯାହା ଅର୍ପଣ କରିଛ ସେ ସବୁ ମୁଁ ଆନନ୍ଦରେ ଗ୍ରହଣ କଲି । ତୁମେତ ଜାଣ ସଖା, ମହାତ୍ମା ବିଦୁରଙ୍କ ଗୃହର ଶାଗ ଭଜା, ସଖା ସୁଦାମାଙ୍କ ଖୁଦଭଜା ମୋପାଇଁ ଅମୃତ ମଣୋହି ତୁଲ୍ୟ । ଆଜି ତୁମର ଏଇ ତୁଳସୀ ମଂଜରୀ ଓ ପୁଷ୍ପ ମୋର ଶିରୋଭୂଷା । ସଖା ପାର୍ଥ !

''ବିଧିହୀନ ମସୃଷ୍ଟାନଂ ମନ୍ତ୍ରହୀନ ମଦକ୍ଷିଣମ୍
ଶ୍ରଦ୍ଧା ବିରହିତ ଯଜ୍ଞଂ ତାମସଂ ପରିଚକ୍ଷତେ''

ଶାସ୍ତ୍ରୀୟ ବିଧି ବର୍ଜିତ, ଅନ୍ନଦାନଶୂନ୍ୟ, ମନ୍ତ୍ରହୀନ, ଦକ୍ଷିଣା ବିହୀନ, ଶ୍ରଦ୍ଧା ବିରହିତ ଯଜ୍ଞାନୁଷ୍ଠାନ ତାମସିକ - ତା' ମୋର କଦାପି ଗ୍ରହଣୀୟ ନୁହେଁ । ଏଥର କୁହ ସଖା ! ଆଗମନର ହେତୁ ?'

ଅର୍ଜୁନ ସେହିଭଳି ବିନମ୍ର ଭଂଗୀରେ କହିଲେ- 'ସଖା ! ମୁଁ ଯୁଗ ଯୁଗ ପର୍ଯ୍ୟନ୍ତ ଆପଣଙ୍କୁ ଅପେକ୍ଷା କରି ରହିପାରିବି; ମାତ୍ର ଆପଣଙ୍କ ମସ୍ତକ ନିକଟରେ ଜ୍ୟେଷ୍ଠଭ୍ରାତା କୁରୁପତି ଦୁର୍ଯ୍ୟୋଧନ ମଧ୍ୟ ପ୍ରତିକ୍ଷମାଣ ଅନେକ ବେଳୁ । ମନେ ହେଉଛି ତାଙ୍କର ଧୈର୍ଯ୍ୟଚ୍ୟୁତି ଘଟିଲାଣି ।'

ବିନାବାକ୍ୟ ବ୍ୟୟରେ ମୁଁ ମୁହଁ ବୁଲେଇ ଚାହିଁଲି । ପ୍ରକୃତରେ କୁରୁପତି ମଣିମୟ-ସିଂହାସନରେ ରାଜରାଜେଶ୍ୱର ଠାଣିରେ ବସି ରହିଥଲେ ଅଧୈର୍ଯ୍ୟ ହୋଇ । ଅପାଦ ମସ୍ତକ ରାଜକୀୟ ବସନ ଭୂଷଣରେ ସୁସଜ୍ଜିତ । ସମଗ୍ର ଅବୟବରେ ଅଜସ୍ର ମଣିରତ୍ନର ସମାହାର । ମସ୍ତକରେ ଅନର୍ଘ ମଣିମୁକୁଟ, ପାଦରେ ଉପାନହ, ବକ୍ଷରେ ସ୍ପର୍ଦ୍ଧା, ମୁଖରେ ଅହଂକାରର ଦର୍ପିତ ଭଂଗୀ, ନୟନ ତଟରେ ଇର୍ଷ୍ୟା ଓ ବିଦ୍ୱେଷ, ସର୍ବୋପରି ସେ ମୋ ଶୟନକକ୍ଷକୁ ସ୍ୱୀୟ ଗଦାଟିକୁ ଆଣିବାକୁ ସୁଦ୍ଧା ଭୁଲିନଥିଲେ ।

ପରସ୍ପର କୁଶଳ ଜିଜ୍ଞାସା ପରେ ତାଙ୍କ ଅଭିପ୍ରାୟ ଜାଣିବାପରେ କହିଲି - 'କୁରୁପତି ଓ ସଖା ପାର୍ଥ ! ତୁମେ ଉଭୟେ ଆମର ବନ୍ଧୁ । ହସ୍ତିନା ଆମର ବନ୍ଧୁ ରାଷ୍ଟ୍ର । ପିଉସୀ କୁନ୍ତୀଙ୍କର ହସ୍ତିନା ରାଜବଂଶରେ ବିବାହ, ପରେ ଅର୍ଜୁନ ସହ ସୁଭଦ୍ରାର ବିବାହ, ତାପରେ ପୁଣି କୁରୁପତିଙ୍କ କନ୍ୟା ଚନ୍ଦ୍ରାବତୀଙ୍କ ସହ ମୋର ଭ୍ରାତୃଷ୍ପୁତ୍ର ଆନନ୍ଦର ବିବାହ ଦ୍ୱାରକା ଓ ହସ୍ତିନା ମଧ୍ୟରେ ବନ୍ଧୁତ୍ୱର ସଂପର୍କ ରଜ୍ଜୁକୁ ଯଥେଷ୍ଟ ସୁଦୃଢ଼ କରିଛି । ଆମପାଇଁ କୌରବ ପକ୍ଷ ଓ ପାଣ୍ଡବପକ୍ଷ ଉଭୟେ ସମାନ । ଯୁଦ୍ଧରେ କୌଣସି ପକ୍ଷରେ ଯୋଗ ଦେବେ ନାହିଁ ବୋଲି ଜ୍ୟେଷ୍ଠଭ୍ରାତା ଗତକାଲି ଠାରୁ ପ୍ରଭାସ ତୀର୍ଥ ଯାତ୍ରା କରିଛନ୍ତି, ଯୁଦ୍ଧ ଶେଷରେ ଫେରିବେ । ମୁଁ ଏ ଯୁଦ୍ଧରେ ଅସ୍ତ୍ର ଧରିବି ନାହିଁ ବୋଲି ପ୍ରତିଶ୍ରୁତିବଦ୍ଧ । ମାତ୍ର ଦ୍ୱାରକାରେ ଅର୍ବୁଦସଂଖ୍ୟକ ଏକାଦଶ ଅକ୍ଷୌହିଣୀ ଉତ୍ତମରୂପେ ଶିକ୍ଷିତ ଓ ଦୀକ୍ଷିତ ନାରାୟଣୀ ସେନା ଅଛନ୍ତି । ମାତ୍ର ତୁମ୍ଭମାନଙ୍କର ଗୃହବିବାଦ ଭ୍ରାତୃବିବାଦ ନିମିତ୍ତ ମୋର ନାରାୟଣୀ ସେନାଙ୍କୁ ମୁଁ ଦୁଇଭାଗରେ ବିଭକ୍ତ କରିପାରିବି ନାହିଁ । ଅର୍ଥାତ୍ ମୁଁ ଚାହେଁ ନାହିଁ ସେମାନେ ପରସ୍ପର ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରନ୍ତୁ । ସୁତରାଂ ସମାଧାନର ପଥ ଗୋଟିଏ । ମୋ ମତରେ ଗୋଟିଏ ପକ୍ଷରେ ମୋର ଏକାଦଶ ଅକ୍ଷୌହିଣୀ

ନାରାୟଣୀ ସେନା ରହିବେ ଓ ଅନ୍ୟ ପକ୍ଷରେ ନିରସ୍ତ୍ର ଭାବେ ମୁଁ ରହିବି । ତୁମ ଭିତରୁ କିଏ କାହାକୁ ନେବ ସ୍ଥିର କର । ତେବେ ପାର୍ଥଙ୍କୁ ଯେତେବେଳେ ମୁଁ ପ୍ରଥମେ ଦେଖିଛି, ଅଗ୍ରାଧିକାର ତାଙ୍କୁ ହିଁ ଦିଆଯାଉ । ସେ କାହାକୁ ନେବେ ପ୍ରଥମେ କୁହନ୍ତୁ ।'

କୁରୁପତି ଏଥିରେ ସମ୍ମତ ହେବା ପରେ ଅର୍ଜୁନ କହିଲେ- 'ଆପଣଙ୍କ ସଦୟ ଉପସ୍ଥିତି ହିଁ ଆମପାଇଁ ପରମ ପ୍ରାପ୍ତି ମାଧବ ! ପାଣ୍ଡବ ପକ୍ଷରେ ନିରସ୍ତ୍ରଭାବେ ଆପଣ ହିଁ ରହନ୍ତୁ ସଖା ! ମୋର ଏକାଦଶ ଅକ୍ଷୌହିଣୀ ନାରାୟଣୀ ସେନାର ଆବଶ୍ୟକତା ନାହିଁ ।'

ମୁଁ ମନେ ମନେ ଉଚ୍ଚାରଣ କଲି - 'ଏଥର ମଧ୍ୟ ତୁମେ ବାଜି ଜିଣିଗଲ ପାର୍ଥ !'

କୁରୁପତି କିନ୍ତୁ ମନେ ମନେ କହୁଥିଲେ - 'ଏଥର ମଧ୍ୟ ତୁମେ ବାଜି ହାରିଗଲ ପାର୍ଥ !'

ସମଗ୍ର ଆଲୋଚନାରେ କୁରୁପତି ବଡ଼ ଅପ୍ରସନ୍ନ ଦିଶୁଥିଲେ । ଅର୍ଜୁନ ନିରସ୍ତ୍ର ବାସୁଦେବଙ୍କୁ ଆପଣାର ପକ୍ଷଭୁକ୍ତ କରିବାପରେ ଏକାଦଶ ଅକ୍ଷୌହିଣୀ ନାରାୟଣୀ ସେନା ଅନାୟାସରେ ଦୁର୍ଯ୍ୟୋଧନଙ୍କର ହସ୍ତଗତ ହେବାପରେ ସେ ଉତ୍‌ଫୁଲ୍ଲିତ ଭାବେ କହି ଉଠିଲେ - 'ମୁଁ ଆସୁଛି ବାସୁଦେବ । ନାରାୟଣୀ ସେନା ଯଥାଶୀଘ୍ର କୁରୁକ୍ଷେତ୍ରର ରଣ ଶିବିରରେ ପହଞ୍ଚିବେ ବୋଲି ଦୃଢ଼ ବିଶ୍ୱାସ ।'

ମୁଁ ସମ୍ମତ ହେଲି । କୁରୁପତି ଉଠି ଠିଆ ହେଲେ ଯିବାପାଇଁ । ଅର୍ଜୁନ ତାଙ୍କୁ ବିଦାୟ ସମ୍ଭାଷଣ ଜଣେଇବା ସମୟରେ ସେ ଅସ୍ପଷ୍ଟ ସ୍ୱରରେ କହିଲେ - 'ତମର ମତିଭ୍ରମ ହୋଇଯାଇ ନାହିଁତ ଅର୍ଜୁନ ? ରଣଭୂମି ଯୋଦ୍ଧାର ସ୍ୱାଗତ କରେ ଏବଂ ଯୋଦ୍ଧା ଅସ୍ତ୍ରର ସ୍ୱାଗତ କରେ । ତମର ସୁଯୋଗ ଥିଲା । ତମେ ପ୍ରଥମେ ନାରାୟଣୀ ସେନାଙ୍କୁ ମାଗିନେଇ ପାରିଥା'ନ୍ତ । ତା' ନକରି ନିରସ୍ତ୍ର ରଣଭୀରୁ କୃଷ୍ଣଙ୍କୁ...... । ବିଜୟ କୌରବ ପକ୍ଷର ସୁନିଶ୍ଚିତ । ଯଦି ଦୈବାତ୍ ରଣ କ୍ଷେତ୍ରରୁ ଜୀବନ ବଞ୍ଚାଇ ପାର ତେବେ ପ୍ରବଜ୍ୟା ଗ୍ରହଣ କରିବାକୁ ପ୍ରସ୍ତୁତ ହୋଇଯାଅ । ହୁଁଃ !'

ଏତିକି କହି ବିଦ୍ରୁପର ହସ ଧାରେ ପାର୍ଥ ଉପରକୁ ଫିଙ୍ଗି ଦେଇ ଦର୍ପିତ ଭାବେ ସେ କକ୍ଷ ତ୍ୟାଗ କରି ଚାଲିଗଲେ । ଅର୍ଜୁନ ତାଙ୍କ ଯିବା ବାଟକୁ ଚାହିଁ କହିଲେ 'ମୁଁ ଅଭ୍ରାନ୍ତ ନିଷ୍ପତ୍ତି ନେଇଛି କୁରୁପତି !'

ମୁଁ ତାଙ୍କ କାନ୍ଧରେ ହାତ ରଖି ସସ୍ନେହରେ କହିଲି - 'ଆସ ସଖା ! ମୁଁ ଜାଣେ ମୋ ଦର୍ଶନ ଅଭିଳାଷରେ ଆସିଛ ମାନେ , ତୁମେ ତୁଳସୀ ପତ୍ର ଓ ଜଳ ବିନା କୌଣସି ଖାଦ୍ୟ ଗ୍ରହଣ କରିନଥିବ । ଏଥର ଅଭୀଷ୍ଟ ସିଦ୍ଧି ହେଲା । ଆସ, ଖାଦ୍ୟ ଗ୍ରହଣରେ ଆଉତ କୌଣସି ବାଧା ନାହିଁ !'

ଅର୍ଜ୍ଜୁନ ମୋତେ ଚାହିଁ ମନ୍ତ୍ର ମୁଗ୍ଧ ଭଳି ହସି ଦେଲେ ।

ଅଗ୍ରହାୟଣ ମାସର ଅମାବାସ୍ୟା ତିଥିରେ ଯୁଦ୍ଧାରମ୍ଭ ହେବା ନିଶ୍ଚିତ ହୋଇଥିଲା । ଏହି ମାସରେ ପାନୀୟ ଜଳ ନିର୍ମଳ ଓ ସୁ ପ୍ରତୁଳ, ପବନ ସୁଶୀତଳ, ବୃକ୍ଷ ସମୂହ ଔଷଧିଯୁକ୍ତ, ଖାଦ୍ୟ ପାନୀୟ ପ୍ରଚୁର ପରିମାଣରେ ମିଳେ । କ୍ଷତସ୍ଥାନ ଆଶୁ ଆରୋଗ୍ୟ ଲାଭ କରେ । ଅଙ୍ଗ, ବଙ୍ଗ, କଳିଙ୍ଗ, ମାଳବ, ସୌରାଷ୍ଟ୍ର, ଗାନ୍ଧାର, ମତ୍ସ୍ୟ, ପାଞ୍ଚାଳ, ବିଦର୍ଭ, ଚେଦି, ମଦ୍ର, ମଣିପୁର, ନାଗଲୋକ, ମଗଧ ପ୍ରଭୃତି ବିଭିନ୍ନ ରାଷ୍ଟ୍ରରୁ ରାଜାଙ୍କ ସହ ସେନା ବାହିନୀଗଣ ଉପସ୍ଥିତ ହୋଇଥିଲେ ଏହି ଧର୍ମଯୁଦ୍ଧରେ ଯୋଗଦେବା ପାଇଁ । ଉଭୟ ପକ୍ଷର ଶିବିର ସ୍ଥାପନରେ ତତ୍ପରତା ପରିଲକ୍ଷିତ ହେଲା । ବହୁ ସଂଖ୍ୟକ ରଥୀ, ଅଶ୍ୱାରୋହୀ, ଗଜାରୋହୀ ଓ ପଦାତିକ ବାହିନୀ ଏକତ୍ର ହେଲେ । ସହସ୍ର ଶିବିର, ପ୍ରଚୁର ଇନ୍ଧନ, ଜଳ, ଖାଦ୍ୟ, ଅସ୍ତ୍ର ଶସ୍ତ୍ର, ଧ୍ୱଜ, ପତାକା ଇତ୍ୟାଦିର ସୁନିୟନ୍ତ୍ରିତ ବ୍ୟବସ୍ଥାସହ ଭୋଜନ ସାମଗ୍ରୀ ବାହିତ ଶକଟଯାନ ଗୁଡ଼ିକୁ ଯେପରି ଶତ୍ରୁ ପ୍ରତିରୋଧ ନକରେ ସେଥିପ୍ରତି ଉଭୟ ପକ୍ଷ ସତର୍କ ରହିଲେ । ସର୍ବୋପରି ଏହି ଲୋମ ହର୍ଷଣକାରୀ ଯୁଦ୍ଧର ପ୍ରସ୍ତୁତି ଓ ଯୋଜନା ଦେଖି ମୁଁ ମଧ୍ୟ ଆତ୍ମପ୍ରସାଦ ଅନୁଭବ କଲି । ସେଦିନ ହିରଣ୍ୱତୀ ନଦୀ ତୀରେ ତୀରେ ଅନେକ ଦୂର ପର୍ଯ୍ୟନ୍ତ ଗଲି । ଦେଖିଲି ନିର୍ଜନ ନଦୀତୀରରେ ଏକ ନବୀନ କିଶୋର ହିରଣ୍ୱତୀ ନଦୀ ଜଳରେ ତାର ଧନୁ ଓ ତୀର ସମୂହ ଓ ଖଡ୍‌ଗ, କୁନ୍ତାଦି ଅସ୍ତ୍ର ଶସ୍ତ୍ରକୁ ପ୍ରକ୍ଷାଳନ କରି ପରିଷ୍କାର କରୁଛି । ଏହି ବଳିଷ୍ଠ ବପୁବିଶିଷ୍ଟ ତେଜସ୍ୱୀ କିଶୋର ଚିର ପରାକ୍ରମ ପଟାନ୍ତର ବିହୀନ ମନେ ହେଉଛି । ତା'ର ରକ୍ତ ଚନ୍ଦନ ଲିପ୍ତ ସୁଗୌର ତନୁ, ନିଷ୍ପାପ ମୁଖ, ନିଷ୍କପଟ ଦୃଷ୍ଟି ମୋର ବହୁ ପରିଚିତ ମନେ ହେଲା । ମୁଁ ତା' ନିକଟକୁ ଗଲି । ପ୍ରଶ୍ନ କଲି - 'କିଏ ତୁମେ ବାଳକ ? ଏହା ରଣଭୂମିର ନିକଟବର୍ତ୍ତୀ ଅଞ୍ଚଳ । ଏହି ଶତ ଯୋଜନ ବ୍ୟାପି କୁରୁକ୍ଷେତ୍ରରେ ଖୁବ୍ ଶୀଘ୍ର ଏକ ମହାଯୁଦ୍ଧ ଅନୁଷ୍ଠିତ ହେବାକୁ ଯାଉଛି । ଅସ୍ତ୍ର ସଂଘର୍ଷର ବିକଟ ଶବ୍ଦରେ ତୁମେ ଭୟଭୀତ ହୋଇଯିବ । ତୁମେ ବାଳକ ହୋଇ ଏତେ ଅସ୍ତ୍ର ଶସ୍ତ୍ର ସହ ଖେଳୁଛ କାହିଁକି ? କିଏ ତୁମର ପିତା ମାତା ? ଏ ସ୍ଥାନକୁ ତୁମକୁ ଏକାକୀ ଛାଡ଼ିଲେ କିପରି ? ଏଠାରେ ତୁମର ଉପସ୍ଥିତି ଅବାଂଛନୀୟ ନୁହେଁ କି ?'

ମୋର ଏତେଗୁଡ଼ିଏ ପ୍ରଶ୍ନର ଉତ୍ତରରେ ସେ କେବଳ ହସିଲା । ତାପରେ ମୋ ପଦତଳେ ପ୍ରଣତ ହୋଇ କହିଲା - 'ମା'ଙ୍କ ଠାରୁ ବହୁବାର ଆପଣଙ୍କ ବିଷୟରେ ଶୁଣିଛି । ଆପଣଙ୍କ ସାଜପୋଷାକରୁ ଜାଣିପାରୁଛି ଆପଣହିଁ ମୋର ପିତୃଗଣଙ୍କର ଆରାଧ୍ୟ, ବିପଦ ବାନ୍ଧବ ଯଶୋଦାନନ୍ଦନ । ମୁଁ ଦ୍ୱିତୀୟ ପାଣ୍ଡବ ବୀର ଭୀମସେନଙ୍କର ନାଗପତ୍ନୀ ବେଲାବଳୀ ତନୟ ବେଲାଳସେନ । ଜନନୀଙ୍କ ନିକଟରେ ପ୍ରତିଜ୍ଞାବଦ୍ଧ ହୋଇ ଆସିଛି ଯୁଦ୍ଧ ଜୟ କରି ଜ୍ୟେଷ୍ଠତାତ ଧର୍ମରାଜ ହସ୍ତିନାର ଅଧୀଶ୍ୱର ହେବାପରେ ସେ ସୁ ସମ୍ବାଦ ବହନ କରି ମାତାଙ୍କ ନିକଟରେ ପହଞ୍ଚିବି । ନାହିଁତ ପାଣ୍ଡବମାନଙ୍କ ପାଇଁ ପ୍ରାଣ ବିସର୍ଜନ କରିବି ।'

ଯଦିଓ ମୁଁ ଜାଣିଥିଲି ଇଏ ବଳିଷ୍ଠ ଭୀମସେନର ତନୟ । ନାଗବଂଶୀ ବେଲାବଳୀର ଦୁଗ୍ଧ ଧାର ଏହାର ଧମନୀରେ ରକ୍ତ ହୋଇ ପ୍ରବାହିତ ହେଉଛି । ଇଏ ବୃଥା ଆସ୍ଫାଳନ କରି ଜାଣେନା । ତଥାପି ମୁଁ ପ୍ରଶ୍ନ କଲି - 'ଏ ଯୁଦ୍ଧ କେତେ ଦିନ ବା କେତେ ମାସ ବା କେତେ ବର୍ଷ ହେବ ବୋଲି ଭାବୁଛ ବୀର ବେଲାଳ ? ମୋର ଯୋଜନା ଅନୁଯାୟୀ ଏ ଯୁଦ୍ଧ ଅଷ୍ଟାଦଶଦିବସ ବ୍ୟାପି ଅନୁଷ୍ଠିତ ହେବ ।' ସେ କହିଲା - 'ଅଷ୍ଟାଦଶ ଦିବସ ପର୍ଯ୍ୟନ୍ତ ଅପେକ୍ଷାର ଆବଶ୍ୟକତା ନାହିଁ ପ୍ରଭୁ ! ମୁଁ ତ ମୁହୂର୍ତ୍ତକରେ କୌରବପକ୍ଷକୁ ନିପାତ କରି ପାରିବି !'

ମୁଁ ଟିକିଏ ଚିନ୍ତା କଲି । ବଡ଼ ଧର୍ମ ସଂକଟର ସମ୍ମୁଖୀନ ହେଲି ମୁଁ । ଅର୍ଥାତ ଏ ବାଳକ ମୋତେ ଆଉ ଯୁଦ୍ଧର କୌତୁକ ଉପଭୋଗ କରିବାର ଅବକାଶ ସୁଦ୍ଧା ଦେବନାହିଁ ? ତାପରେ ମୁଁ ଖୁବ୍ ଜୋର୍‌ରେ ଅଟ୍ଟହାସ କରି ଉଠିଲି ତାକୁ ବିସ୍ମିତ କରି । ବିଦ୍ରୂପରେ କହିଲି - 'ତୁମେ ? ତୁମେ ?? ତୁମେ ବାଳକ; ମୁହୂର୍ତ୍ତକରେ କୌରବ ପକ୍ଷ ନିପାତ କରିବ ??? କିପରି ?'

ସେ ମୋତେ ନିବିଷ୍ଟଭାବେ ଲକ୍ଷ୍ୟ କରି ନିର୍ଭୟରେ କହିଲା - 'କାହିଁକି ? ଏଇ ଧନୁ ଓ ତୀର ସାହାଯ୍ୟରେ । ଯଦିଓ ମୋର ପିତାଙ୍କର ପ୍ରିୟ ଅସ୍ତ୍ର ଗଦା । ମୁଁ କିନ୍ତୁ ପିତୃବ୍ୟ ଧନଞ୍ଜୟଙ୍କୁ ଆଦର୍ଶ କରି ଧନୁର୍ବିଦ୍ୟାରେ ପାରଦର୍ଶିତା ଲାଭ କରିଛି ।'

ମୁଁ ହାସ୍ୟ ସମ୍ବରଣ କରି କହିଲି - 'ଏହାର ପ୍ରମାଣ ମୋତେ ଦେଇପାରିବ ବାଳକ ?'

- 'ନିଶ୍ଚୟ !!' ସେ ଉତ୍ସାହିତ ହୋଇ କହି ଉଠିଲା । ମୁଁ ବହୁ ଭାବିଚିନ୍ତି କହିଲି - 'ବେଶ୍ ! ଏଇ ନିଅ ତୁମର ଦୁଇଟି ତୀର ମୁନରେ ମୁଁ ଗୋଟିକରେ ଶ୍ୱେତ ଚନ୍ଦନ ଓ ଅନ୍ୟଟିରେ ରକ୍ତ ଚନ୍ଦନ ବିନ୍ଦୁ ଲଗାଇ ଦେଉଛି । ଶ୍ୱେତ ଚନ୍ଦନ ଯୁକ୍ତ ତୀର ମିତ୍ର ପକ୍ଷର ଲଲାଟରେ ଓ ରକ୍ତ ଚନ୍ଦନ ଯୁକ୍ତ ତୀର ଶତ୍ରୁ ପକ୍ଷର ଲଲାଟରେ ତିଳକ ଆଂକି ଦେଉ ସେମାନଙ୍କ ଅଜ୍ଞାତରେ ।'

ମୋର ବାକ୍ୟ ଶେଷ ନହେଉଣୁ କ୍ଷିପ୍ରବେଗରେ ତୀର ଦୁଇଟି ଅଦୃଶ୍ୟ ହୋଇ ମୁହୂର୍ତ୍ତକରେ ବାଂଛିତ କାର୍ଯ୍ୟ ଶେଷ କରି ବେଲାଳର ତୂଣୀରକୁ ପୁନଃ ଫେରି ଆସିଲା । ମୁଁ ଅଭିଭୂତ ହୋଇଗଲି । ଗଦ୍‌ଗଦ କଣ୍ଠରେ କହିଲି - 'କେଉଁ ଭାଷାରେ ତୁମକୁ ଅଭିନନ୍ଦନ ଜଣାଇବି ପୁତ୍ର ? ଧନ୍ୟ ତୁମର ମାତା, ଧନ୍ୟ ଭୀମସେନ । ତୁମ ଭଳି ପୁତ୍ରପାଇ ସତରେ ପାଣ୍ଡବଗଣ ଭାଗ୍ୟଶାଳୀ !'

କିଛି ସମୟ ନିଜ ସହ ଅନ୍ତର୍ଦ୍ୱନ୍ଦର ସମ୍ମୁଖୀନ ହେବାପରେ ନିର୍ଲିପ୍ତ ଉଦାସୀନ ଭାବେ କହିଲି - 'ହେ ବୀର ବାଳକ ! ମୁଁ ଯାହା ମାଗିବି ଦେବ ?'

ସେ ଭାବ ବିହ୍ୱଳ ଭାବେ କହିଲା - 'ହେ ମହାଭାଗ ! ଶୁଣିଛି ଆପଣ ମୋ ପିତୃବ୍ୟ ପାର୍ଥଙ୍କର ସଖା । ପଣ୍ଡୁନନ୍ଦନଗଣ ଆପଣଙ୍କର ପ୍ରିୟଭାଜନ । ମୋତେ ପ୍ରଶ୍ନ କରନ୍ତୁ ନାହିଁ । ଅନୁମତି ଭିକ୍ଷା କରନ୍ତୁ ନାହିଁ । ଦାବୀ କରି ନିଅନ୍ତୁ । ଆପଣଙ୍କୁ ଦେଖିବା ବେଳୁ ମୋ ଭିତରେ ଏକ

ଅପୂର୍ବ ଆଲୋଡ଼ନ, ଭାବାବେଶ ମୁଁ ଅନୁଭବ କରିପାରୁଛି । ମନେ ହେଉଛି ଆପଣଙ୍କ ପାଇଁ ମୋର ଅଦେୟ କିଛି ନାହିଁ । ମାଗନ୍ତୁ !'

ସେ ମୋ ପଦପ୍ରାନ୍ତରେ ନତ ମସ୍ତକରେ ବସି ରହିଲା । ମୋ ଭିତରେ ଯେ ଭାବାନ୍ତର ସୃଷ୍ଟି ହୋଇ ନାହିଁ, ସେପରି ନୁହେଁ । କିନ୍ତୁ ଏଯେ ଧର୍ମଯୁଦ୍ଧ ! ଏହାର ଲକ୍ଷ୍ୟ ଭିନ୍ନ । ଏଠି ଶତ୍ରୁ ନାହିଁ, ମିତ୍ର ନାହିଁ, ଆତ୍ମ ନାହିଁ କି ପର ବି ନାହିଁ । ମୁଁ ଗମ୍ଭୀରଭାବେ କହିଲି - 'ପୁତ୍ର ବେଲାଳ ! ତୁମେ ଯେତେବେଳେ କୃତସଂକଳ୍ପ ହୋଇ ଆସିଛ ଯେ ଯୁଦ୍ଧ ଜୟ କରି ଯିବ ନତୁବା ଯୁଦ୍ଧ ଭୂମିରେ ପ୍ରାଣ ବିସର୍ଜନ କରିବ । ତେବେ ବୀରଗତି ତୁମର ପରମ ବାଂଛିତ, ନୁହେଁ ପୁତ୍ର ? ବୀରଗତି ଠାରୁ ଆହୁରି ଏକ ମହାନ୍ ଗତି ଅଛି ମୋକ୍ଷ - ମୋକ୍ଷ ! ଅଯାଚିତ ଭାବେ ମୁଁ ତୁମକୁ ତା' ଦେବାକୁ ଚାହେଁ ବେଲାଳ । ପ୍ରତିବଦଳରେ ତୁମର ଛିନ୍ନ ମସ୍ତକ ହିଁ ମୋର କାମ୍ୟ !'

ସେ ଆଦୌ ବିସ୍ମିତ ହେଲା ନାହିଁ, ମର୍ମାହତ ହେଲା ନାହିଁ । ଭୀମସେନଙ୍କର ପୁତ୍ରଯେ ! କେବଳ ନିବିଡ଼ ମମତାସିକ୍ତ ଦୃଷ୍ଟିରେ ମୋତେ ଚାହିଁ କହିଲା - 'ତାହାହିଁ ହେଉ ପ୍ରଭୋ ! ମା' କହୁଥିଲେ ଆପଣଙ୍କର ସହସ୍ରନାମ ଭିତରେ ଗୋଟିଏ ନାମ 'ମାୟାଧର', ନୁହେଁକି ? ମୁଁ ମୋର ପିତା, ପିତୃବ୍ୟ, ଜ୍ୟେଷ୍ଠତାତ ପ୍ରଭୃତି ଆତ୍ମୀୟ ଗଣଙ୍କୁ ଦେଖି ପାରିଲି ନାହିଁ ମୋର ଅବଶୋଷ ନାହିଁ । ଆପଣଙ୍କୁ ଦେଖି ସବୁ ଆଶା ପୂର୍ଣ୍ଣ ହୋଇଗଲା । ମୋ ମସ୍ତକ ନିଅନ୍ତୁ, କିନ୍ତୁ ଗୋଟିଏ ଛୋଟିଆ ଅନୁରୋଧ..... ।'

ମୁଁ ତତ୍‌କ୍ଷଣାତ୍ କହି ଉଠିଲି - 'ଶିର କମଳ ବ୍ୟତୀତ ଯାହା ମାଗିବ ମାଗ ବତ୍ସ !'

ସେ ଉଦାତ୍ତ କଣ୍ଠରେ ହସିଲା ଓ କହିଲା - 'ମୁଁ କ୍ଷତ୍ରିୟ ସନ୍ତାନ । ଦେବା ଜିନିଷକୁ ଫେରାଇ ନିଏ ନାହିଁ । ମୋର କେବଳ ଏତିକି ମାଗୁଣି ଯୁଦ୍ଧର ଆଦ୍ୟ - ପ୍ରାନ୍ତ ଦେଖିବାରେ ମୁଁ ସମର୍ଥ ହୁଏ ।'

ମୁଁ ବି ତ ତାହାହିଁ ଚାହୁଁଥିଲି । ରଣଭୂମିର ମଧ୍ୟଭାଗରେ ସ୍ଥାପିତ ଶୁଭସ୍ତମ୍ଭର ଶୀର୍ଷଭାଗରେ ରକ୍ତାମ୍ବର ପରିବେଷ୍ଟିତ ଭାବେ ବେଲାଳର ଛିନ୍ନ ମସ୍ତକ ସ୍ଥାପନ କଲି ସବୁରି ଅଲକ୍ଷ୍ୟରେ, ତା'ର ମସ୍ତକହୀନ ଦେହ ଓ ଅସ୍ତ୍ର ଶସ୍ତ୍ର ସମୂହକୁ ହିରଣ୍ୱତୀ ନଦୀଜଳରେ ବିସର୍ଜନ ଦେଇ ମୁଁ ନିର୍ଲିପ୍ତ ଭାବେ ଫେରି ଆସିଲି ପାଣ୍ଡବ ଶିବିରକୁ ।

ହଁ, ଏଇଭଳି ବଳୀ ଦେବା ମଧ୍ୟ ଏକ ଅପରିହାର୍ଯ୍ୟ ଆବଶ୍ୟକତା । ଭୀମଙ୍କର ପତ୍ନୀ ବଳନ୍ଧରା ତନୟ 'ସର୍ବର୍ଗ,' ଭୀମଙ୍କର ପତ୍ନୀ, ମଦ୍ରପତି ଶଲ୍ୟଙ୍କ ଭଗିନୀ କାଳୀଙ୍କ ତନୟ 'ସର୍ବଗତ', ଯୁଧିଷ୍ଠିରଙ୍କ ପତ୍ନୀ ଦେବୀକା ତନୟ 'ଯୌଧେୟ', ନକୁଳଙ୍କ ପତ୍ନୀ, ଚେଦିରାଜ ଶିଶୁପାଳ ଦୁହିତା ବରେଣୁମତୀ ତନୟ 'ନିରମିତ୍ର', ଦ୍ରୌପଦୀଙ୍କର 'ପ୍ରତିବିନ୍ଧ୍ୟ', 'ଶ୍ରୁତସୋମ',

'ଶତାନୀକ', ପ୍ରଭୃତି ପଞ୍ଚପୁତ୍ର, ଅର୍ଜୁନ - ଉଲୁପୀଙ୍କ ତନୟ 'ଇରାବାନ୍' ପ୍ରଭୃତିଙ୍କୁ ଏଇ ମହାଯୁଦ୍ଧରେ ବଳି ଦେବାକୁ ପଡ଼ିଛି । ଭୀମସେନ ତନୟ, ହିଡ଼ିମ୍ବା ପୁତ୍ର ଘଟୋତ୍କଚ ! ତାର ଆତ୍ମବଳୀ ଏବେବି ମୋର ନୟନ ପ୍ରାନ୍ତକୁ ଅଶ୍ରୁସିକ୍ତ କରେ । ଓଃ ! କି ଭୀଷଣ ମର୍ମନ୍ତୁଦ ତା'ର ମୃତ୍ୟୁ ? ସିଏ ବି ବେଲାଳ ଭଳି ପାଣ୍ଡବପକ୍ଷରୁ ଧର୍ମଯୁଦ୍ଧରେ ଅଂଶଗ୍ରହଣ କରିଥିଲା । ମତ୍ତହସ୍ତୀ ପଦ୍ମବନକୁ ବିଧ୍ୱଂସ କରିବା ନ୍ୟାୟରେ ସେ କୁରୁ ବାହିନୀକୁ ଧ୍ୱଂସ କରୁଥିଲା । ଠିକ୍ ସେହି ଅବସରରେ କର୍ଣ୍ଣଙ୍କଦ୍ୱାରା ନିକ୍ଷିପ୍ତ ବ୍ରହ୍ମାସ୍ତ୍ର ଅର୍ଜୁନଙ୍କ ଆଡ଼କୁ କ୍ଷିପ୍ର ବେଗରେ ମାଡ଼ି ଆସୁଥିଲା । ଆଉ ମୁଁ ? ମୁହୂର୍ତ୍ତକରେ ସେହି ଦିଗରୁ ରଥକୁ ଅପସାରଣ କରିନେବା ସମୟରେ ଘଟୋତ୍କଚର କାନ ପାଖରେ କହି ଯାଇଥିଲି -'ଏଇ ସୁବର୍ଣ୍ଣ ସୁଯୋଗ ବୀର ! ଯୁଦ୍ଧ ଯେତେବେଳେ ଅମୀମାଂସିତ, ବିଜୟ ଯେତେବେଳେ ଅନିଶ୍ଚିତ, ସେତେବେଳେ ପଣ୍ଡୁନନ୍ଦନଙ୍କ ନିମିତ୍ତ ବୀରଗତି ପ୍ରାପ୍ତିର ସୌଭାଗ୍ୟ ଅର୍ଜନ କର । ବ୍ରହ୍ମାସ୍ତ୍ରକୁ ସମ୍ମାନ ଦିଅ !'

ବାସ୍ ! କର୍ଣ୍ଣଙ୍କର ଅନ୍ତିମ ଅମୋଘ ଅସ୍ତ୍ର ହାତଛଡ଼ା ହୋଇଯିବାସହ ଘଟୋତ୍କଚ ମଧ୍ୟ ବଳି ପଡ଼ିଥିଲା । ସମଗ୍ର ରଣଭୂମିକୁ ସ୍ତବ୍ଧ ଚକିତ କରି ବିକଳ ବିକଟ ଚିତ୍କାରରେ ସେ ପ୍ରାଣ ବିସର୍ଜନ କରୁଥିବା ସମୟରେ ମୁଁ ଅର୍ଜୁନକୁ ବଞ୍ଚାଇ ପାରିଛି ବୋଲି ଆନନ୍ଦୋନ୍ମତ୍ତ ଭାବେ ଉଚ୍ଚ କଣ୍ଠରେ ହସି ଉଠିଥିଲି । ଅର୍ଜୁନ ମୋତେ ଧିକ୍କାର କରିଥିଲେ ଆଉ ମୁଁ ତାଙ୍କୁ ବୁଝାଇବାକୁ ଚେଷ୍ଟା କରୁଥିଲି, ଭଂଗୁର ଜୀବନରେ ଏହାହିଁ ସତ୍ୟ । ମୋର ଅତିପ୍ରିୟ ଭାଗୀନେୟ ଅଭିମନ୍ୟୁକୁ ମୁଁ କ'ଣ ବଳି ଦେଇ ନାହିଁ ? ଥାଉ - ସେ କଥା ପରେ ।

ହଁ, ମୁଁ ପାଣ୍ଡବ ଶିବିରକୁ ଅନ୍ୟ ମନସ୍କ ଭାବେ ଫେରି ଆସିଲି । ହିରଣ୍ୱତୀ ନଦୀ ତୀରରେ ଏମିତ ଏକ ଜଘନ୍ୟ ନାଟକ ଅଭିନୀତ ହୋଇଯାଇଛି, ତାର ବିନ୍ଦୁ ବିସର୍ଗ ସୁଦ୍ଧା କେହି ଜାଣିନଥିଲେ । ଏପରିକି ଭୀମସେନଙ୍କ ଲଲାଟରେ ସୁଦ୍ଧା ସେ ପର୍ଯ୍ୟନ୍ତ ବେଲାଳ ପ୍ରଦତ୍ତ ଶ୍ୱେତ ଚନ୍ଦନ ତିଳକ ଅଙ୍କିତ ହୋଇ ରହିଥିଲା । ସେ କେବଳ ପାଞ୍ଚାଳ ତନୟାଙ୍କୁ କହୁଥିଲେ - 'ନାଗଲୋକରୁ ବେଲାବଳୀଙ୍କର ସ୍ୱତନ୍ତ୍ର ଦୂତ ସଂବାଦ ଦେଇ ଯାଇଛି ବେଲାଳସେନ ମହାଯୁଦ୍ଧରେ ଯୋଗଦେବାପାଇଁ ଆସୁଛି ।'

ପାଞ୍ଚାଳ ତନୟା ଅତ୍ୟନ୍ତ ଆନନ୍ଦରେ କହିଲେ - 'ଶତ ସମ୍ବତ୍ସର ବଞ୍ଚିରହୁ । ମୁଁ ମନେ ମନେ କହିଲି - 'ଶତ ସମ୍ବତ୍ସର ଆୟୂର ଆବଶ୍ୟକତା କ'ଣ ? ସେ' ଯେ ପରମଗତି ପାଇ ସାରିଛି ।'

ମୁଁ ଇଚ୍ଛାକୃତ ଭାବେ ଅନ୍ୟମନସ୍କ ହେବାର ଛଳନା କଲି ।

●

## ।। ଚତୁର୍ବିଂଶତି ଗ୍ରନ୍ଥିମୋଚନ ।।

ମୋ ଜୀବନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ହେଉଛି ଅଷ୍ଟାଦଶ ଦିବସ ବ୍ୟାପି କୁରୁକ୍ଷେତ୍ରରେ ଅନୁଷ୍ଠିତ ହୋଇଥିବା ମହାଯୁଦ୍ଧ । ସେଇ ଅଠରଦିନ ଭିତରେ ଗୀତାର ପ୍ରବକ୍ତା ଭାବେ ମୋ ଚରିତ୍ରର ଭିନ୍ନ ଏକ ବୈଶିଷ୍ଟ୍ୟ ପ୍ରକଟିତ ହୋଇଛି - ମହାଯୋଗେଶ୍ୱର କୃଷ୍ଣ ! ଅର୍ଜୁନଙ୍କର ରଥ ଚାଳନା କରିବା ଭିତରେ ମୋ ଚରିତ୍ରରେ ମିଶି ରହିଥିବା ତୀକ୍ଷ୍ଣ ମେଧା ସହ କ୍ଷୁରଧାର ବୁଦ୍ଧିମତ୍ତା, ପ୍ରବୀଣ ରାଜନୀତି ସହ କୌଶଳପୂର୍ଣ୍ଣ କୂଟନୀତି, ସତ୍ୟ - ଅସତ୍ୟର ସମନ୍ୱୟରେ ଶତ୍ରୁ ମିତ୍ର ନିର୍ବିଶେଷରେ ଧର୍ମ ଓ ନ୍ୟାୟ ପ୍ରତିଷ୍ଠାରେ ମୋର ତତ୍ପରତା ଆତ୍ମ ପ୍ରକାଶ କରିଛି । ପ୍ରକୃତରେ ମୋର ଶତ୍ରୁ କିଏ ? ମିତ୍ର ବା କିଏ ? ଧର୍ମ ସଂସ୍ଥାପନା ହିଁ ତ ମୋର ଏକମାତ୍ର ଲକ୍ଷ୍ୟ !

ରାତି ପାହି ପ୍ରଭାତ ହୋଇନଥାଏ । ଉଭୟ ପକ୍ଷ ସ୍ୱୀକୃତ ହୋଇଥିବା ନିୟମ ଯୁଦ୍ଧ - ତାପରେ ଗୋଟିଏ ରାତିପାଇଁ ବିଶ୍ରାମ । ପରେ କିନ୍ତୁ ଏ ନିୟମର ଉଲ୍ଲଂଘନ କରାଯାଇ ନୈଶ୍ୟଯୁଦ୍ଧରେବି ପ୍ରବୃତ୍ତ ହୋଇଛନ୍ତି କୁରୁପକ୍ଷ । ପ୍ରଭାତର ଯୁଦ୍ଧରେ ଯେଉଁ ମାନେ ଅଂଶ ଗ୍ରହଣ କରୁଥିଲେ ସୂର୍ଯ୍ୟାସ୍ତ ପରେ ଆପଣା ଆପଣା ଶିବିରକୁ ଫେରିବାରେ ସେମାନଙ୍କ ପକ୍ଷେ ନିଶ୍ଚିତ ନଥିଲା । ଉଭୟ ଶିବିରରେ ଉଷ୍ଣୀଶ, କବଚ ଧାରଣ, ଅଶ୍ୱର ହ୍ରେଷା, ଗଜର ବୃଂହତା ସହ ବିବିଧ ରଣ ବାଦ୍ୟ ତଥା ଅସ୍ତ୍ରର ଝନତ୍କାରର ଶବ୍ଦରେ ଉଭୟ ଶିବିର କୋଳାହଳ ମୁଖର । କଥାଥିଲା ଉପପ୍ଲବ୍ୟ ନଗରୀରେ ପାଣ୍ଡବ ରମଣୀଗଣ ଅବସ୍ଥାନ କରିବେ । ପ୍ରତ୍ୟହ ଯୁଦ୍ଧର ଧାରା ବିବରଣୀ ଚରମୁଖରୁ ଶ୍ରବଣ କରି ସଂଧ୍ୟାରେ ବିଜୟୀପତିଙ୍କୁ ଅଭିନନ୍ଦନ କରି ପୁନରାୟ ଉପପ୍ଲବ୍ୟ ନଗରୀକୁ ଫେରିଯିବେ । ରଣ ଶିବିର ସ୍ତ୍ରୀ ବା ଶିଶୁଙ୍କ ପାଇଁ କୌଣସି କାଳରେ ନିରାପଦ ନୁହେଁ । ପାଣ୍ଡବ ପକ୍ଷର ସେନାପତି ଧୃଷ୍ଟଦ୍ୟୁମ୍ନ ଓ କୌରବ ପକ୍ଷର ସେନାପତି କୁରୁପିତାମହ ଭୀଷ୍ମ । ପାଣ୍ଡବ ଶିବିରରେ ରଣ ସାଜରେ ସୁସଜ୍ଜିତ ହେଉଥିଲେ ଯୋଦ୍ଧାଗଣ । ମୁଁ ତ ସାରଥୀ । ମୋର ଆଉ ସାଜସଜ୍ଜା କ'ଣ ? ସେଇ ପ୍ରିୟ ପରିଧେୟ ପିତାମ୍ବର, ମୟୂର ଚନ୍ଦ୍ରିକା, କୌସ୍ତୁଭମଣି, ବନମାଳ, ମକର କୁଣ୍ଡଳ । ବ୍ରାହ୍ମ ମୁହୂର୍ତ୍ତ । ଦେବାଳୟର ପ୍ରବେଶ ପଥରେ ଦେଖିଲି ଶ୍ୱେତ ଉଷ୍ଣୀଶ, ଶ୍ୱେତ ବସ୍ତ୍ରରେ ସୁସଜ୍ଜିତ, ଶୁକ୍ଳକେଶ, ଶୁକ୍ଳ ଶ୍ମଶ୍ରୁରେ ଶୋଭିତ କୁରୁ ପିତାମହ ଭୀଷ୍ମ ଓ ତାଙ୍କ ପଶ୍ଚାତରେ ତେଜୋଦୀପ୍ତ ବ୍ରାହ୍ମଣ ଆଚାର୍ଯ୍ୟ ଦ୍ରୋଣ । ଉଭୟେ ଏକ ସମୟରେ ଦେବତା ନିକଟରେ ନିବେଦନ କଲେ - 'ପାଣ୍ଡୁ ପୁତ୍ରଙ୍କର ଜୟ ହେଉ ।'

ଆଶ୍ଚର୍ଯ୍ୟ ! ଆଶ୍ଚର୍ଯ୍ୟ !! ଏମାନେ ଯୁଦ୍ଧ କରୁଛନ୍ତି କୌରବ ପକ୍ଷରେ ଅଥଚ ବିଜୟ କାମନା କରୁଛନ୍ତି ପାଣ୍ଡୁ ପୁତ୍ରଗଣଙ୍କର ? ସେମାନେ ମୋତେ ଦେଖିବା ପୂର୍ବରୁ ମୁଁ ଲତା ଅନ୍ତରାଳରେ ଆତ୍ମଗୋପନ କଲି । (ଏହାତ ମୋର ପ୍ରାଚୀନ ଅଭ୍ୟାସ !) । ସେମାନେ ପରସ୍ପର ଭିତରେ ଆଳାପ ଆଲୋଚନା କରି ଫେରି ଯାଉଥିଲେ । ଆଚାର୍ଯ୍ୟ ଦ୍ରୋଣଙ୍କୁ କୁରୁପିତାମହ କହୁଥିଲେ -'ଗୁରୁଦେବ ! ଅର୍ଜ୍ଜୁନ ପରା ଆପଣଙ୍କର ସର୍ବ ଶ୍ରେଷ୍ଠ ଶିଷ୍ୟ ? ତା'ର ଶ୍ରେଷ୍ଠତା ପ୍ରତିପାଦନ କରିବାକୁ ଆପଣ ଅତୀତରେ ରଂଗସଭାରେ କର୍ଣ୍ଣଙ୍କୁ ପ୍ରବେଶର ଅଧିକାର ସୁଦ୍ଧା ଦେଇନଥିଲେ । ସମଗ୍ର ଆର୍ଯ୍ୟାବର୍ତ୍ତରେ ଅର୍ଜ୍ଜୁନ ଶ୍ରେଷ୍ଠ ଧନୁର୍ବୀତ୍ ଭାବେ ପରିଚିତ ହେଉ ବୋଲି ନିରପରାଧ ଏକଲବ୍ୟ ଶବରର ଦକ୍ଷିଣ ହସ୍ତର ବୃଦ୍ଧାଙ୍ଗୁଳିକୁ ଗୁରୁଦକ୍ଷିଣା ସ୍ୱରୂପ ମାଗିନେଲେ, ଅଥଚ ଏବେ ଦେଖନ୍ତୁ ସେଇ ଅର୍ଜ୍ଜୁନ ହିଁ ଆପଣଙ୍କ ପ୍ରତିପକ୍ଷଭାବେ ଆପଣଙ୍କ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିବାକୁ ଦୁଃସାହସ କରୁଛି !'

ଅନେକ ସମୟ ଉଭୟେ ନୀରବରେ ଚାଲିବାକୁ ଲାଗିଲେ । ପୁନର୍ବାର କୁରୁପିତାମହ କହିଲେ - 'ତଥାପି ଆଚାର୍ଯ୍ୟ ! ଶିଷ୍ୟଦ୍ୱାରା ତୁମେ ପରାଜିତ ହେଲେବି ତୁମପାଇଁ ତାହା ଗୌରବାବହ ହେବ । ମୁଁ କିନ୍ତୁ ବଡ଼ ଭାବ ସଂକଟ ଓ ଧର୍ମ ସଂକଟର ସମ୍ମୁଖୀନ । ଯେଉଁମାନଙ୍କ ଶୈଶବ ମୋରି କ୍ରୋଡ଼ରେ ଅତିବାହିତ ହୋଇଛି ସେଇ ନିର୍ଦ୍ଦୋଷ ପଣ୍ଡୁସୁତଙ୍କ ବିରୋଧରେ ମୋତେ ଅସ୍ତ୍ର ଉତ୍ତୋଳନ କରିବାକୁ ପଡୁଛି ? ମୁଁ କିନ୍ତୁ କୁରୁପତିକୁ ସ୍ପଷ୍ଟ ଜଣାଇ ଦେଇଛି ଯେ, ପ୍ରତ୍ୟହ ଯୁଦ୍ଧରେ ପାଣ୍ଡବ ପକ୍ଷର ଦଶହଜାର ସୈନ୍ୟଙ୍କୁ ମୁଁ ବିନାଶ କରିବି, ମାତ୍ର ପଣ୍ଡୁ ପୁତ୍ରମାନଙ୍କୁ ନିଧନ କରିପାରିବି ନାହିଁ !'

ଏତିକି ଶୁଣିବା ମାତ୍ରେ ମୁଁ ଆଶ୍ୱସ୍ତ ହୋଇଗଲି ଓ ପରମ୍ ନିଶ୍ଚିନ୍ତରେ ପାଣ୍ଡବ ଶିବିରକୁ ଫେରି ଆସିଲି । ପାଣ୍ଡବ ଶିବିରରେ ସେତେବେଳକୁ ସମସ୍ତେ ଯୁଦ୍ଧ ପାଇଁ ପ୍ରସ୍ତୁତ । କେବଳ ସୂର୍ଯ୍ୟୋଦୟକୁ ଅପେକ୍ଷା । ଯୁଧିଷ୍ଠିର ଅର୍ଜ୍ଜୁନଙ୍କୁ ପ୍ରଶ୍ନ କଲେ -'ପ୍ରିୟ ଅନୁଜ ! ଚରମୁଖରୁ ଯାହା ସଂବାଦ ମିଳିଛି କୁରୁବାହିନୀର ସେନାପତି ପିତାମହ । ଅଶ୍ୱତ୍ଥାମା, ଭୂରିଶ୍ରବା, ପୂଜ୍ୟ ଗୁରୁଦେବ, ସୁଯୋଧନ, ମାତୁଳ ଶଲ୍ୟ, ପୂଜ୍ୟ କୃପାଚାର୍ଯ୍ୟ, ଜୟଦ୍ରଥ, ଭଗଦତ୍ତ ପ୍ରଭୃତି ସସୈନ୍ୟେ ଅଗ୍ରସର ହେଉଛନ୍ତି । ପିତାମହ, ଗୁରୁଦେବ, ପୂଜ୍ୟ କୃପ, ଅଶ୍ୱତ୍ଥାମା, ସୁଯୋଧନ ଓ ବାହ୍ଲୀକରାଜ ଯେଉଁ ବ୍ୟୂହ ରଚନା କରିଛନ୍ତି ତା'ର କେନ୍ଦ୍ର ବିନ୍ଦୁରେ ଗଜାରୋହୀ ସୈନ୍ୟ, ଶୀର୍ଷଭାଗରେ ନୃପତିଗଣ, ପାର୍ଶ୍ୱଦେଶରେ ଅଶ୍ୱାରୋହୀ ସୈନ୍ୟ ସ୍ଥାପିତ ହୋଇଛନ୍ତି । ଏହି ଭୟଙ୍କର ବ୍ୟୂହର ନାମ ସର୍ବତୋମୁଖୀ । ତୁମେ କେଉଁ ବ୍ୟୂହ ରଚନା କରିବାକୁ ମନସ୍ଥ କରୁଛ ଅର୍ଜ୍ଜୁନ ?'

ଅର୍ଜ୍ଜୁନ କହିଲେ - 'ଅଚଳ' ଓ 'ବଜ୍ର' ବ୍ୟୂହ ରଚନା କରିବାକୁ ମୁଁ ମନସ୍ଥ କରିଛି ମହାରାଜ !'

ଧର୍ମରାଜ କହିଲେ - 'କୁରୁବାହିନୀ ସଂଖ୍ୟାଧିକ । ଆମ୍ଭେମାନେ ଅଳ୍ପ ସଂଖ୍ୟକ । ଏପରି ସ୍ଥଳେ ସୂଚୀମୁଖ ବ୍ୟୂହ ରଚନା ଅଧିକ ଫଳପ୍ରଦ ହେବ ।'

ଚାହୁଁ ଚାହୁଁ ଆକାଶକୁ ଲୋହିତ ରାଗ ରଂଜିତ କରି ସୂର୍ଯ୍ୟୋଦୟ ହେଲା । ପୂର୍ଣ୍ଣଗର୍ଭା. ପୂତ ନୀରା ଗଂଗାର ଉଚ୍ଛ୍ୱାସ ଭଳି ପାଣ୍ଡବ ବାହିନୀ ପ୍ରବଳ ଉତ୍ସାହରେ ଆଗେଇ ଆସିଲେ । ବାହିନୀର ସର୍ବାଗ୍ରେ ଗଦାହସ୍ତରେ ଚଳମାନ ପର୍ବତ ସଦୃଶ ବୀର ଭୀମସେନ ରହିଲେ । ଧୃଷ୍ଟଦ୍ୟୁମ୍ନ, ନକୁଳ, ସହଦେବ, ଭ୍ରାତା ଓ ପୁତ୍ରଗଣଙ୍କ ସହିତ ବିରାଟ ରାଜ ଭୀମସେନଙ୍କର ପୃଷ୍ଠଭାଗ ସୁରକ୍ଷା ଦାୟିତ୍ୱରେ ରହିଲେ । ଅଭିମନ୍ୟୁ, ଦ୍ରୌପଦୀଙ୍କର ପଞ୍ଚପୁତ୍ର ଓ ଶିଖଣ୍ଡୀ ପାର୍ଶ୍ୱରକ୍ଷକ ଭାବେ ରହିଲେ । ଧର୍ମରାଜ ଯୁଧିଷ୍ଠିର ସେନାବାହିନୀର ମଧ୍ୟଭାଗରେ ରହିଲେ । ପାଞ୍ଚାଳ ନରେଶ ମତ୍ସ୍ୟାଧିପତିଙ୍କୁ ଅନୁଗମନ କଲେ । ଗାଣ୍ଡିବ ହସ୍ତରେ ଧନଞ୍ଜୟ ଓ ତାଙ୍କ ସାରଥୀ ରୂପରେ ମୁଁ ନିଜେ ଅପର ପାର୍ଶ୍ୱରେ ରହିଲୁ । ଠିକ୍ ଏହି ସମୟରେ ଭୟଙ୍କର ଗର୍ଜନରେ ବିରାଟ ହନୁମାନ ଅର୍ଜ୍ଜୁନଙ୍କ ରଥ ଧ୍ୱଜ ନିକଟରେ ପ୍ରବିଷ୍ଟ ହେଲେ । ଏହି ଆକସ୍ମିକ ଘଟଣା ଯେତିକି ବିସ୍ମୟକର ଥିଲା ସେତିକି ଭୀତିପ୍ରଦ ଥିଲା । କୁରୁବାହିନୀର ସର୍ବାଗ୍ରେ ଅଗ୍ରନେତୃତ୍ୱ ଗ୍ରହଣ କରିଥିଲେ କୁରୁପିତାମହ ଭୀଷ୍ମ । ଶ୍ୱେତ ଉଷ୍ଣୀଶ ଓ ବର୍ମ ଧାରଣ କରି, ଶୁକ୍ଳାଶ୍ୱ ବାହିତ ରଜତମୟ ରଥା ରୋହଣ ପୂର୍ବକ ଏହି ଶୁକ୍ଳ କେଶ ଯୁକ୍ତ ବୃଦ୍ଧ ଚଳମାନ ତୁଷାରାବୃତ ହିମଗିରି ସଦୃଶ ପ୍ରତୀୟମାନ ହେଉଥିଲେ ।

ଯୁଦ୍ଧ ନିମିତ୍ତ ପ୍ରସ୍ତୁତ ବୋଲି ଘୋଷଣା କରି କୁରୁପିତାମହ ଶଙ୍ଖନାଦ କଲେ । ଏହାର ପ୍ରତ୍ୟୁତ୍ତରରେ ଗୁରୁଗମ୍ଭୀର ନିନାଦରେ ଯୁଧିଷ୍ଠିରଙ୍କ 'ଅନନ୍ତବିଜୟ', ବୃକୋଦରଙ୍କର 'ମହାପୌଣ୍ଡ୍ରକ', ଧନଞ୍ଜୟଙ୍କର 'ଦେବଦତ୍ତ', ନକୁଳଙ୍କର 'ସୁଘୋଷ' ସହଦେବଙ୍କର 'ମଣିପୁଷ୍ପକ' ଏବଂ ମୋର 'ପାଞ୍ଚଜନ୍ୟ' ଶଙ୍ଖ ଦୀର୍ଘ ସମୟ ଧରି ନିନାଦିତ ହେଲା । ଧନଞ୍ଜୟ ନିବିଷ୍ଟ ଚିତ୍ତରେ ଶକ୍ତି ସ୍ୱରୂପିଣୀ ଦୁର୍ଗାଙ୍କ ସ୍ତବଗାନ କରୁଥିଲେ । ଏହି ପରିପ୍ରେକ୍ଷୀରେ ଧର୍ମରାଜ ରଥରୁ ଅବତରଣ କରି ନଗ୍ନ ପାଦରେ, ନିରସ୍ତ୍ର ଭାବେ କୁରୁବାହିନୀ ଆଡ଼କୁ ଅଗ୍ରସର ହେଲେ । ସର୍ବ ପ୍ରଥମେ କୁରୁପିତାମହ ଓ ପରେ ପରେ ଆଚାର୍ଯ୍ୟ ଦ୍ରୋଣ, କୃପ, ଭୂରିଶ୍ରବା, ମଦ୍ରପତି ଶଲ୍ୟ ପ୍ରଭୃତି ସମସ୍ତ ଗୁରୁଜନଙ୍କୁ ପ୍ରଣାମ କରି ଆଶୀର୍ବାଦ ଭିକ୍ଷା କଲେ ଏବଂ ସେମାନଙ୍କ ବିରୋଧରେ ସଂଗ୍ରାମ ପାଇଁ ଅନୁଜ୍ଞାମଧ୍ୟ ପ୍ରାପ୍ତ ହେଲେ । ଏହାଦ୍ୱାରା ବିଜୟର ପଥ ଆହୁରି ପରିଷ୍କାର ହୋଇଗଲା ପାଣ୍ଡବଙ୍କର । ଗୁରୁଜନଗଣ ପୂର୍ଣ୍ଣପ୍ରାଣରେ ପଣ୍ଡୁସୁତଙ୍କୁ ଯୁଦ୍ଧରେ ବିଜୟୀ ହେବାପାଇଁ ଆଶୀର୍ବାଦ କଲେ । ପିତାମହ ଭୀଷ୍ମ ବାଷ୍ପ ଗଦ୍ ଗଦ୍ କଣ୍ଠରେ କହିଲେ - 'ତୁମଠାରୁ ଏହାହିଁ ଆଶା କରାଯାଉଥିଲା ପୁତ୍ର, ତୁମେ ଏହା ନ କରିଥିଲେ ତାହାହିଁ ମୋର ଦୁଃଖ ଓ ବିସ୍ମୟର କାରଣ ହୋଇଥା'ନ୍ତା !'

ହଠାତ୍ ଧନଞ୍ଜୟଙ୍କର କ'ଣ ହେଲା ? ତାଙ୍କ ଶରୀର ଘର୍ମାକ୍ତ, ମୁଖ ବିଶୁଷ୍କ, ନୟନ ଦୁଇଟି ଲୋତକାପ୍ଲୁତ, କଣ୍ଠ କଂପିତ, ସେ ବିଷର୍ଣ୍ଣ କଣ୍ଠରେ କହିଲେ - 'ହେ ମାଧବ ! ଉଭୟ ସେନାଙ୍କ ମଧ୍ୟଭାଗକୁ ରଥ ବାହି ନିଅନ୍ତୁ । ମୁଁ ଥରେ ଦେଖିନିଏ କାହା ବିରୁଦ୍ଧରେ ମୁଁ ଯୁଦ୍ଧ କରିବାକୁ ଯାଉଛି ?'

ବିଷାଦଗ୍ରସ୍ତ, ମୋହଗ୍ରସ୍ତ ଅର୍ଜୁନ ଗାଣ୍ଡୀବ ତ୍ୟାଗ କରି ନୀରବରେ ଅଧୋବଦନରେ ବସି ରହିଲେ । ଅଶ୍ୱମାନଙ୍କର ରଜ୍ଜୁ ସମୂହକୁ ଶିଥିଳ କରି ମୁଁ ରଣାଙ୍ଗନର ମଧ୍ୟଭାଗକୁ ରଥ ବାହିନେଲି । ସମସ୍ତଙ୍କ ଉପରେ ଦୃଷ୍ଟିପାତ କରିବା ପରେ ଅର୍ଜୁନ ବିଷାଦ ବିଦୀର୍ଣ୍ଣ ସ୍ୱରରେ କହିଲେ - 'ହେ ସଖା ଅଚ୍ୟୁତ ! ମୁଁ ଯୁଦ୍ଧ କରିବାକୁ ଅସମର୍ଥ । କାହା ବିରୁଦ୍ଧରେ ମୁଁ ଅସ୍ତ୍ର ଉତ୍ତୋଳନ କରିବି ? ଏ ଯେ ପିତାମହ ! ମୁଁ ତାଙ୍କର ଅଧିକ ଶ୍ରଦ୍ଧାଭାଜନ, ଶୈଶବରେ ବହୁବାର ତାଙ୍କ ଶ୍ୱେତ ବସ୍ତ୍ରକୁ ମୁଁ ଧୂଳି ମଳିନକରିଛି, ତଥାପି ସେ ମୋତେ କୋଳାଗ୍ରତ କରି ବକ୍ଷଲଗ୍ନ କରନ୍ତି । ଏଇ ଦେଖ ମାଧବ, ଯାହାଙ୍କ ରଥ ଧ୍ୱଜରେ କମଣ୍ଡଳୁ ଚିହ୍ନିତ ସେହି ପ୍ରାଜ୍ଞ, ବେଦଜ୍ଞ ବ୍ରାହ୍ମଣ ମୋର ଗୁରୁଦେବ ଆଚାର୍ଯ୍ୟ ଦ୍ରୋଣ । ସ୍ୱୀୟ ପୁତ୍ରଠାରୁ ସୁଦ୍ଧା ସେ ମୋତେ ଅଧିକ ସ୍ନେହ କରନ୍ତି । ମୋର କୃତିତ୍ୱ ଓ ସଫଳତାରେ ତାଙ୍କର ଆନନ୍ଦ ସର୍ବାଧିକ । ସେଭଳି ନ୍ୟାୟ ନିରପେକ୍ଷ ଗୁରୁଙ୍କ ବିରୁଦ୍ଧରେ ମୁଁ ଅସ୍ତ୍ର ଉତ୍ତୋଳନ କରିପାରିବି ନାହିଁ । ମଦ୍ରପତି ଶଲ୍ୟ, ଆଚାର୍ଯ୍ୟକୃପ - ଏମାନେ ପ୍ରତ୍ୟେକ ମୋର ଗୁରୁଜନ; ମୁଁ କେଉଁ ନ୍ୟାୟରେ ସେମାନଙ୍କୁ ଶତୃପକ୍ଷ ବୋଲି ବିଚାର କରିବି ? ଦେଖ, ଦେଖ ଅଚ୍ୟୁତ । କୌରବ ଭ୍ରାତାଗଣ । ସେମାନେ ବିଦ୍ୱେଷ ପରାୟଣ ହୋଇପାରନ୍ତି, ତଥାପି ମୋର ସ୍ୱଜନ, ତୁଚ୍ଛ ରାଜ୍ୟ ଲାଭ ଲାଳସାରେ ମୁଁ ଏମାନଙ୍କୁ ବିନାଶ କରିପାରିବି ନାହିଁ । ଏଇ ମୁଁ ଅସ୍ତ୍ରତ୍ୟାଗ କଲି । ନିରସ୍ତ୍ର ଅବସ୍ଥାରେ ମୋତେ ସେମାନେ ନିଧନ କରନ୍ତୁ, ତାହାହିଁ ମୋ ପାଇଁ ଶ୍ରେୟସ୍କର । ମୁଁ କିନ୍ତୁ ସେମାନଙ୍କୁ ବିନାଶ କରି ପାରିବି ନାହିଁ ।'

ଅଧୋବଦନରେ ବସିରହିଥିବା ଅର୍ଜୁନଙ୍କୁ ମୁଁ କିଛି ସମୟ ଚାହିଁ ରହିଲି । ତାପରେ ସ୍ୱଭାବ ସୁଲଭ ଭଂଗୀରେ କହି ଉଠିଲି -'ତୁମେ ? ଅର୍ଜୁନ ! ତୁମେ ବିନାଶ କରିବ ? ଏ ଭ୍ରାନ୍ତ ଧାରଣା ତୁମର ହେଉଛି କିପରି ? ତୁମେ ତ ମହାକାଳ ନୁହଁ ଯେ ଯାହାକୁ ଚାହିଁବ ବିନାଶ କରିପାରିବ ! ତୁମେ ତ ନିମିତ୍ତ ମାତ୍ର । ମାଧ୍ୟମ ମାତ୍ର । ସେମାନେତ ବିନାଶଶୀଳ, ତୁମେ ନିଜେ ମଧ୍ୟ ବିନାଶଶୀଳ । ମୃତ୍ୟୁ ହିଁ ସେମାନଙ୍କର, ତୁମର ଓ ପ୍ରାଣୀ ସକଳଙ୍କର ଅବଧାରିତ ସଖା ! 'ଜାତସ୍ୟ ହି ଧ୍ରୁବୋ ମୃତ୍ୟୁ ଧ୍ରୁବଂ ଜନ୍ମ ମୃତସ୍ୟଚ' ! ଜନ୍ମ ନେଲେ ମୃତ୍ୟୁ ସୁନିଶ୍ଚିତ ।

'ଦେହି ନୋଃସ୍ମିନ୍ ଯଥା ଦେହେ କୌମାରଂ ଯୌବନଂ ଜରା
ତଥା ଦେହାନ୍ତର ପ୍ରାପ୍ତି ଧୀର ସ୍ତତ୍ର ନ ମୁହ୍ୟତି ।'

ଜୀବନ କାଳରେ ବାଲ୍ୟ, ପୌଗଣ୍ଡ, ଯୌବନ ଓ ଜରାଭଳି ଦେହାନ୍ତର ପ୍ରାପ୍ତି ମଧ୍ୟ ଏକ ଅବସ୍ଥା ବିଶେଷ, ଦୁଇଟି ଜନ୍ମର ସନ୍ଧିକ୍ଷଣ - ମଧ୍ୟାନ୍ତର ମାତ୍ର । ଜନ୍ମ, ମୃତ୍ୟୁ, ଉତ୍ପତ୍ତି, ବିନାଶ ସବୁହିଁତ ମାୟା ! ଦେହର ଜନ୍ମ ହୁଏ, ମୃତ୍ୟୁ ବି ହୁଏ, ହେଲେ ଆତ୍ମାତ ଅବିନାଶୀ ! ବାୟୁ ଦ୍ୱାରା ଜଳ ଆଲୋଡ଼ିତ ହୋଇ ତରଙ୍ଗର ରୂପ ନିଏ ଅର୍ଥାତ୍ ତରଙ୍ଗର ତାହାହିଁ କ'ଣ ଜନ୍ମ ଲଗ୍ନ ? ବାୟୁ ଆନ୍ଦୋଳନ ବନ୍ଦ ହେଲେ ତରଙ୍ଗର ଆଲୋଡ଼ନ ମଧ୍ୟ ସ୍ଥିର ଶାନ୍ତ ହୁଏ, ତେବେ କି ତାହା ତରଙ୍ଗର ମୃତ୍ୟୁକ୍ଷଣ ?

'ନଜାୟତେ ମ୍ରିୟତେ ବା କଦାଚିତ୍
ଅଜୋନିତ୍ୟଃ ଶାଶ୍ୱତୋହୟଂ ପୁରାଣୋ
ନ ହନ୍ୟତେ ହନ୍ୟମାନେ ଶରୀରେ
ବାସାଂସି ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହ୍ଣାତି ନରୋପରାଣି
ତଥା ଶରୀରାଣି ବିହାୟ ଜୀର୍ଣ୍ଣା
ନ୍ୟନ୍ୟାନି ସଂଯାତି ନବାନି ଦେହି'

ଯାହା ଦ୍ୱାରା ଏହି ସମସ୍ତ ବିଶ୍ୱ ବ୍ୟାପ୍ତ, ସିଏତ ଅବିନାଶୀ । ତୁମେ ଯାହାଦ୍ୱାରା ଏହି ଅବ୍ୟୟର ବିନାଶ କରିବାରେ ସମର୍ଥ ହେବ ? ଏ ଆତ୍ମା । ଏହାର ଜନ୍ମ ନାହିଁ କି ମୃତ୍ୟୁ ମଧ୍ୟ ନାହିଁ । ଛାୟାକୁ ଆଘାତ କଲେ କାୟା ଯେପରି ଆହତ ହୁଏ ନାହିଁ, ଠିକ୍ ସେହିଭଳି ଦେହକୁ ବିନାଶ କଲେବି ଆତ୍ମାର କ୍ଷତି ବୃଦ୍ଧି ନଥାଏ । ପୂର୍ଣ୍ଣ କୁମ୍ଭରେ ସୂର୍ଯ୍ୟ ପ୍ରତିବିମ୍ବିତ ହୁଏ । ପୂର୍ଣ୍ଣକୁମ୍ଭକୁ ଓଲଟେଇ ଦେଲେ ପ୍ରତିବିମ୍ବ ପରିଦୃଷ୍ଟ ହୁଏ ନାହିଁ ମାତ୍ର ତଦ୍ଵାରା କ'ଣ ସୂର୍ଯ୍ୟ ନଷ୍ଟ ହୋଇଯାଏ ? ଜଳପୂର୍ଣ୍ଣ ଘଟରେ ଆକାଶ ଘଟର ଆକାର ଧାରଣ କରେ, ଘଟ ଭାଂଗିଗଲେ ଆକାଶ ବିନଷ୍ଟ ହୁଏ କି ? ଆକାଶ ଅବିକୃତ ଥାଏ । ଶରୀର ଲୋପ ପାଇଲେ ବି ସ୍ୱରୂପ ଲୋପ ପାଏନା ସଖା ! ବରଂ ପୁରାତନ ଜୀର୍ଣ୍ଣ ବସ୍ତ୍ରକୁ ତ୍ୟାଗ କରି ନୂତନ ବସ୍ତ୍ର ପରିଧାନ ନ୍ୟାୟରେ ଚୈତନ୍ୟ ସ୍ୱରୂପ ଜୀବାତ୍ମା ଏ ଜୀର୍ଣ୍ଣ ଦେହ ତ୍ୟାଗ କରି ଅନ୍ୟଦେହ ଧାରଣ କରେ । ସଖା ଅର୍ଜୁନ ! ତୁମ ଅସ୍ତ୍ରରେ ଏମିତି କେତେ ଶକ୍ତି ନିହିତ ଅଛି ଯେ ସେ ନିରନ୍ତର ଅନାଦି ଆତ୍ମାକୁ ବିନାଶରେ ସମର୍ଥ ହେବ ?

'ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ
ନଚୈନ୍ନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ'

ଏହି ଆତ୍ମାକୁ ଅସ୍ତ୍ର ଛେଦନ କରିପାରେ ନାହିଁ । ଅଗ୍ନି ଦଗ୍ଧ କରି ପାରେ ନାହିଁ । ପ୍ରଳୟକାଳର ଜଳପ୍ଳାବନ ମଧ୍ୟ ଏହାକୁ ସିକ୍ତ କରିପାରେ ନାହିଁ । ପବନର ମହାଶୋଷଣ ଶକ୍ତି ଥିଲେ ସୁଦ୍ଧା ଏହାକୁ ଶୋଷଣ କରି ପାରେ ନାହିଁ । ଶୁଣ ପାର୍ଥ ! ନଦୀର ଧର୍ମ ନିମ୍ନଗାମୀ ହେବା,

ପବନର ଧର୍ମ ଗନ୍ଧବାହୀ ହେବା, ବସୁଧାର ଧର୍ମ ସହନ କରିବା । ଠିକ୍ ସେଇଭଳି କ୍ଷତ୍ରିୟର ଧର୍ମ ଯୁଦ୍ଧ କରିବା । ତୁମେ ବୀର କ୍ଷତ୍ରିୟ ହୋଇ ଯୁଦ୍ଧଭୂମିରେ ସ୍ୱଧର୍ମ ତ୍ୟାଗ କରୁଛ କିପରି ? ସ୍ୱଧର୍ମ ଆଚରଣରେ କୌଣସି ପ୍ରକାର ପ୍ରତିବନ୍ଧକ ନଥାଏ । ହାତରେ ଆଲୁଅ ଧରି ଚାଲିଲେ ଅନ୍ଧାରରେ ପଥଭ୍ରଷ୍ଟ ହେବାର ଭୟ ନଥାଏ । ସ୍ୱଧର୍ମ ହିଁ ତୁମର ଆଲୋକ ବର୍ତ୍ତିକା - ଦିଗ୍‌ଦର୍ଶକ । ହେ ସବ୍ୟସାଚୀ ! ଇଏ ଯୁଦ୍ଧ ନୁହେଁ । ଇଏତ ତୁମର ସୌଭାଗ୍ୟ । ସକଳ ଧର୍ମର ନିଦାନ ଯୁଦ୍ଧରେ ପ୍ରକଟିତ ହୋଇଛି । ତୁମ ସମ୍ମୁଖରେ ସ୍ୱର୍ଗହିଁ ମୂର୍ତ୍ତିମାନ୍ । ତୁମ ଗୁଣରେ ଆକୃଷ୍ଟ ହୋଇ ସ୍ୱୟଂ 'କୀର୍ତ୍ତି' ସ୍ୱୟଂବରା ଭାବେ ତୁମକୁ ଆଜି ବରଣ କରିବା ଅପେକ୍ଷାରେ ରହିଛି । ଯଶ ଆଜି ତୁମ ହାତ ମୁଠାରେ ଧରା ଦେବାପାଇଁ ବ୍ୟାକୁଳ ହୋଇ ରହିଛି । ବହୁ ପୂଣ୍ୟ ଫଳରେ କ୍ଷତ୍ରିୟ ପକ୍ଷରେ ସଂଗ୍ରାମର ଏ ସୁଯୋଗ ଉଦୟ ହୋଇଥାଏ । ହାଇ ମାରୁ ମାରୁ ମୁଖରେ ଅମୃତ ପଡ଼ିବାଭଳି, ବାଟ ଚାଲୁ ଚାଲୁ ହାତରେ ମହାର୍ଘ ମଣି ହସ୍ତଗତ ହେବାଭଳି ଏ ଧର୍ମ ଯୁଦ୍ଧ ତୁମ ପାଇଁ ଏକ ସୁଯୋଗ ।'

ଏତେ କଥା କହିବା ପରେ ସ୍ଥୂଳ-ଲକ୍ଷ୍ୟ କଲି ଧନଞ୍ଜୟ ମୋହର ଢାଲକୁ ଛିନ୍ନ କରି ପାରୁନାହାନ୍ତି । ଅପରପକ୍ଷରେ ଅର୍ଜୁନ ଧନୁତୀର ତ୍ୟାଗ କରିବା ଦେଖି କୌରବ ବାହିନୀର ସମସ୍ତେ ବିସ୍ମିତ । ଏଥର ମୁଁ ଅର୍ଜୁନଙ୍କୁ ଆହୁରି ଅଧିକ ଉତ୍ସାହିତ କରିବା ପାଇଁ ତାଙ୍କ ବୀରତ୍ୱର ପ୍ରଶସ୍ତିଗାନ ଆରମ୍ଭ କଲି । କାରଣ ପ୍ରତିଭାଶାଳୀ ବ୍ୟକ୍ତି ଯଶ ଲାଳସୀ ଓ ଯଶ ପ୍ରଶଂସା ଲାଳସୀ ।

ମୁଁ ପୁଣି କହିବାକୁ ଆରମ୍ଭ କଲି - 'ସଖା ପାର୍ଥ ! ମହା ଆଡ଼ମ୍ବରରେ ଯୁଦ୍ଧ କରିବାକୁ ଆସି ତୁମେ ଯଦି ଏଠାରୁ ଫେରିଯାଅ ତେବେ ତୁମ ଶତୃପକ୍ଷ ତୁମକୁ ଭୀରୁ, କାପୁରୁଷ ବୋଲି ମନେ କରିବେ । ମିତ୍ର ପକ୍ଷ ମଧ୍ୟ ତୁମକୁ ବିଶ୍ୱାସ କରିବେ ନାହିଁ । ତୁମର ଦୟା ଓ ହୃଦୟର କୋମଳତାକୁ ସେମାନେ ଭିନ୍ନ ରୂପ ଦେବେ । ଗଗନ ସଦୃଶ ତୁମର କୀର୍ତ୍ତି ଓ ଯଶ ଅନୁପମ ଓ ଅଦ୍ୱିତୀୟ । ପର୍ବତ ବଜ୍ରକୁ ଭୟକଲା ଭଳି, ସର୍ପ ଗରୁଡ଼କୁ ଭୟ କଲା ଭଳି କୌରବଗଣ ତୁମକୁ ଭୟ କରନ୍ତି । ତୁମେ ଯଦି ଯୁଦ୍ଧରେ ବିମୁଖ ହୁଅ, ତେବେ ତୁମର ମହତ୍ୱ ଓ ଶ୍ରେଷ୍ଠତ୍ୱ ବିନଷ୍ଟ ହେବ । ତୁମେ ଯିବାକୁ ଚାହିଁଲେ ବି ଆଉ ଯାଇ ପାରିବ ନାହିଁ - ଏହାଦ୍ୱାରା ତୁମର ନୀତି ଭ୍ରଷ୍ଟ ହେବ । ଉଭୟ ପକ୍ଷରୁ ତୁମେ ଭର୍ତ୍ସିତ ହେବ ଏବଂ ଅସହ୍ୟ ମର୍ମ ବେଦନା ଅନୁଭବ କରିବ । କିନ୍ତୁ ଯଦି ଯୁଦ୍ଧ କରିବ ତେବେ ଉଭୟ ଦିଗରୁ ପରମ ଲାଭବାନ୍ ହେବ ।

'ହତୋ ବା ପ୍ରାପ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷସେ ମହୀମ୍
ତସ୍ମାଦୁତ୍ତିଷ୍ଠ କୌନ୍ତେୟ ଯୁଦ୍ଧାୟ କୃତନିଶ୍ଚୟ'

ଯୁଦ୍ଧ କରୁ କରୁ ଯୁଦ୍ଧ ଭୂମିରେ ପ୍ରାଣତ୍ୟାଗ କଲେ ବୀରଗତି ପ୍ରାପ୍ତ ହେବ ତାହା କ୍ଷତ୍ରିୟ ପାଇଁ ଅନାୟାସ ସ୍ୱର୍ଗସୁଖ । ଯଦି ଯୁଦ୍ଧ ଜୟ କଲ, ତେବେ ବି ସସାଗରା ପୃଥିବୀ ଭୋଗ କରି ଯଶସ୍ୱୀ ହେବ । ଏହି ଧର୍ମଯୁଦ୍ଧହିଁ ତୁମର ଭେଳା ସ୍ୱରୂପ । ଭେଳାକୁ ଆଶ୍ରୟ କଲେ ମଣିଷର କେବେ ବୁଡ଼ିଯିବାର ସମ୍ଭାବନା ଥାଏ କି ? ସତ୍ୟ ଓ ସରଳ ପଥରେ ଚାଲିଲେ କେହି ପଥଭ୍ରଷ୍ଟ ହୁଏକି ? ଚାଲି ନଜାଣିବା ଲୋକଙ୍କ ପାଇଁ ବାଟ ଅବାଟ ସବୁ ଦୁର୍ଗମ । ସବୁଠାରେ ସେ ଝୁଣ୍ଟିବ । ଅମୃତ ସହ ବୁନ୍ଦାଏ ବିଷ ମିଶ୍ରିତ ହେଲେ ତାହା ବିଷ ପାଲଟିଯାଏ ଓ ପ୍ରାଣୀ ଅମୃତ ଖାଇବି ମୃତ୍ୟୁର କବଳିତ ହୁଏ । ସେଇଭଳି କାମନା ହେଲା ବିଷତୁଲ୍ୟ । ଏହା ସମସ୍ତ କର୍ମ ଓ ସାଧନାର ଅମୃତକୁ ବିଷାକ୍ତ କରିଦିଏ । ସୁତରାଂ ହେ କିରିଟୀ ! ତୁମେ ନିଷ୍କାମ ଭାବେ କେବଳ ତୁମର କର୍ମ ଆଚରଣ କରିଯାଅ । ଫଳଲାଭର ଆଶା ରଖନାହିଁ । କିମ୍ବା କୁକର୍ମ କର ନାହିଁ -

'କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ
ମା କର୍ମଫଳ ହେତୁ ର୍ଭୂମାତେ ସଙ୍ଗସ୍ତ୍ୱ କର୍ମଣି'

କାର୍ଯ୍ୟ ସିଦ୍ଧି ହେଲେ ଆନନ୍ଦରେ ଉତ୍‌ଫୁଲ୍ଲିତ ହୁଅ ନାହିଁ । ଅକୃତକାର୍ଯ୍ୟ ହେଲେ ଅସଫଳ ବୋଲି ମଧ୍ୟ ମନେ କର ନାହିଁ । ସମସ୍ତ କର୍ମ, ସାଧନା, ସିଦ୍ଧି ସବୁ କିଛି ମୋରି ପାଦତଳେ ଉତ୍ସର୍ଗ କରିଦିଅ ଓ ତୁମେ ନିଜେ ସ୍ଥିତପ୍ରଜ୍ଞ ଭାବେ କର୍ମ କରିଯାଅ ।'

ଅର୍ଜ୍ଜୁନଙ୍କର ସ୍ଫୁରିତ ଅଧରରୁ ଏତେବେଳେ ବାକ୍‌ସ୍ଫୁରଣ ହେଲା- 'ସ୍ଥିତପ୍ରଜ୍ଞ ? ଏହାର ଅର୍ଥ କ'ଣ ଗୋବିନ୍ଦ ?'

ମୁଁ ତାଙ୍କର ପରିବର୍ତ୍ତନ କିଛି ସମୟ ଲକ୍ଷ୍ୟ କଲି ଓ ପୁନରାୟ ଗମ୍ଭୀର ସ୍ୱରରେ କହିଲି-

'ଦୁଃଖେ ଷ୍ୱନୁଦ୍ୱିଗ୍ନ ମନାଃ
ସୁଖେଷୁବିଗତ ସ୍ପୃହଃ
ବୀତରାଗଭୟ କ୍ରୋଧଃ
ସ୍ଥିତଧୀର୍ମୁନିରୁଚ୍ୟତେ'

ଦୁଃଖରେ ଯିଏ ବିଚଳିତ ହୁଏନାହିଁ, ସୁଖ ପାଇଁ ଯିଏ ବ୍ୟାକୁଳ ହୁଏ ନାହିଁ, କାମ କ୍ରୋଧାଦି ଷଡ଼ରିପୁ ତାକୁ ସ୍ପର୍ଶ କରିପାରେ ନାହିଁ । ତାର ହୃଦୟ ଶାଶ୍ୱତ ଆନନ୍ଦମୟ, ସେ ନିର୍ଭୀକ । ତାର ମନ ଭେଦଭାବ ଶୂନ୍ୟ ଓ ସ୍ଥିରବୁଦ୍ଧି ସଂପନ୍ନ । ସୁତରାଂ ଜୟ ପରାଜୟ ପ୍ରତି ଧ୍ୟାନ ନଦେଇ ତୁମେ କର୍ମ କରିଯାଅ ।

ଲକ୍ଷ୍ୟକଲି ଅର୍ଜ୍ଜୁନଙ୍କ ହୃଦୟ ପରିବର୍ତ୍ତନ ହେବା ସତ୍ତ୍ୱେ ମନ ଦ୍ୱିଧା ଜଡ଼ିତ । ଅକସ୍ମାତ୍

ମନେ ପଡ଼ିଗଲେ ମା' ଯଶୋମତୀ, ଶୈଶବରେ ମାଟି ଖାଉଥିଲି ବୋଲି ବେତ୍ରହସ୍ତରେ ମୋତେ ଶାସନ କରିବାକୁ ଧାଇଁ ଆସିଥିଲେ । ତାଙ୍କର ଶାସନ ସ୍ନେହଠାରୁ ମଧ୍ୟ ମଧୁର । ମୁଁ ଅନ୍ୟନୋପାୟ ହୋଇ ପାଟି ଖୋଲି 'ଆଁ' କରି ଦେଇଥିଲି । ମୋର ମୁଖ ଗହ୍ୱରରେ ମାଳ ମାଳ ବ୍ରହ୍ମାଣ୍ଡ, ସୂର୍ଯ୍ୟ, ଚନ୍ଦ୍ର, କୋଟି କୋଟି ଗ୍ରହ ନକ୍ଷତ୍ର ଭରା ବିଶ୍ୱ ରୂପ ଦର୍ଶନର ସୌଭାଗ୍ୟ ପ୍ରାପ୍ତ ହୋଇଥିଲେ ଜନନୀ । ସଖା ଅର୍ଜ୍ଜୁନ ମଧ୍ୟ ଆଜି ପରମବେଦ୍ୟ ଅବସ୍ଥାରେ ଉପସ୍ଥିତ । ସେ ବାରମ୍ବାର କହୁଛନ୍ତି -

'ଜାନାମି ଧର୍ମଂ ନଚ ମେ ପ୍ରବୃତ୍ତିଃ
ଜାନାମ୍ୟ ଧର୍ମଂ ନଚ ମେ ନିବୃତ୍ତିଃ
ତ୍ୱୟା ହୃଷିକେଶ ହୃଦି ସ୍ଥିତେନ
ଯଥା ନିଯୁକ୍ତୋସ୍ମି ତଥା କରୋମି'

ସୁତରାଂ ଏଇ ହେଉଛି ପ୍ରକୃଷ୍ଟ ସମୟ । ଅର୍ଜ୍ଜୁନ ଯଦି ଧର୍ମ - ଅଧର୍ମ ଜାଣି ସୁଦ୍ଧା ଧର୍ମରେ ପ୍ରବୃତ୍ତ ରହି ଅଧର୍ମରୁ ନିବୃତ୍ତ ହୋଇ ପାରୁନାହାନ୍ତି ଏବଂ ମୋ ପାଦତଳେ ଆତ୍ମସମର୍ପଣ କରି କହୁଛନ୍ତି ମୋରି ନିର୍ଦ୍ଦେଶର ଅପେକ୍ଷାରେ ସେ, ତେବେ ବ୍ରହ୍ମ ଦର୍ଶନର ସୌଭାଗ୍ୟ ଅର୍ଜ୍ଜନ ସେ କରନ୍ତୁ । ଅର୍ଜ୍ଜୁନ କିନ୍ତୁ ତୀକ୍ଷ୍ଣ ମେଧା ସଂପନ୍ନ । ପ୍ରଥମେ ମୁଁ ଯେତିକି ବିଶ୍ୱ ରୂପର ବିରାଟତା ପ୍ରଦର୍ଶନ କଲି ତା' ସେ ଦେଖି ମଧ୍ୟ ସନ୍ତୁଷ୍ଟ ହେଲେ ନାହିଁ । ତାଙ୍କ ମୁହଁର ରେଖାରେ ତା' ଲିପିବଦ୍ଧ ଥିଲା । ସେ ଯୋଡ଼ହସ୍ତରେ କହିଲେ - 'ପ୍ରଭୋ ! ମୋତେ ଯାହା ଦେଖାଇଲେ ତା'ର ବାହ୍ୟ ରୂପ ମାତ୍ର ମୁଁ ଦେଖିବାରେ ସମର୍ଥ ହୋଇଛି । ଇନ୍ଦ୍ରିୟାତୀତ ବସ୍ତୁକୁ କ'ଣ ଚର୍ମଚକ୍ଷୁ ଦର୍ଶନ କରିପାରେ ? ବଧୀର କ'ଣ ପଞ୍ଚମ ତାନ ଶୁଣିବାରେ ସମର୍ଥ ହୁଏ ? ଅନ୍ଧ କ'ଣ ଦର୍ପଣରେ ତା'ର ପ୍ରତିବିମ୍ବ ଦେଖିପାରେ ? ଚକୋର ହିଁ ଯେଉଁଳି ଚନ୍ଦ୍ରସୁଧା ପାନରେ ସମର୍ଥ ସେଇଭଳି ଏହି 'ବିଶ୍ୱରୂପ ଦର୍ଶନ'ର ଯୋଗ୍ୟତା ମୋର ଯେ ନାହିଁ ସେ କଥାତ ଆପଣ ଜାଣନ୍ତି । କେଉଁ ଉପାୟରେ ମୁଁ ତା'ର ଯୋଗ୍ୟ ହୋଇ ପାରିବି ତାହାହିଁ କରନ୍ତୁ ।'

ଅର୍ଜ୍ଜୁନଙ୍କୁ ଦିବ୍ୟଦୃଷ୍ଟି ପ୍ରଦାନ କଲି ଓ ମୋର ସମସ୍ତ ଐଶ୍ୱର୍ଯ୍ୟ ଦର୍ଶନରେ, ବିଶ୍ୱରୂପ ଦର୍ଶନର ମହାନ୍ ବିଭୂତି ପ୍ରାପ୍ତିର ପରମ ସୁଯୋଗ ସେ ପ୍ରାପ୍ତହୋଇ ସାକ୍ଷାତ୍ ପରଂବ୍ରହ୍ମ ଦର୍ଶନରେ ନିଜକୁ ଧନ୍ୟ ମନେ କଲେ । ବିଶ୍ୱରୂପର ବିଟାଟ ବ୍ୟାପକତା ଦେଖି ସେ ଅଭିଭୂତ ହେଲେ । କରାଳତା ଦେଖି ସେ ଭୟଭୀତ ହେଲେ ଏବଂ ଅତ୍ୟନ୍ତ ବିନୟରେ କହିଲେ - 'ମୁଁ ଆଉ ମୋ ସଖାକୁ ପାଇବି ନାହିଁ, ପୂର୍ବ ଭଳି ଆଲିଙ୍ଗନ କରିପାରିବି ନାହିଁ । ଯେଉଁ ବିଶ୍ୱରୂପ ଦର୍ଶନର ଇଚ୍ଛାପ୍ରକାଶ କଲି ତାହା ସମଗ୍ର ବିଶ୍ୱକୁ ଗ୍ରାସ କରିବାକୁ ବସିଲାଣି । ତୁମେ କିଏ ପ୍ରଭୋ ? ମୁଁ ତ ଦେଖି ପାରୁଛି ଆମ ଉଭୟ ପକ୍ଷର ସକଳ ସେନାନୀ, ରଥ, ଗଜ, ହୟ, ଧ୍ୱଜ, ଛତ୍ର, କବଚ

ମଣ୍ଡ କିଛି ତୁମେ ଗ୍ରାସ କରିଯାଉଛ । ତୁମ ମସ୍ତକ ନଭ ସ୍ପର୍ଶ କରିଛି । ପାଦ ପାତାଳ ସ୍ପର୍ଶ କରିଛି । ମୁଖ ଗହ୍ୱରର ସୁଦ୍ଧା ସୀମା ନାହିଁ । ତୁମର ସମଗ୍ର ଶରୀର ଏକ ବିରାଟ କଳ୍ପବୃକ୍ଷ ସଦୃଶ ପ୍ରତୀୟମାନ ହେଉଛି ଏବଂ ତା'ରି ତଳେ ସ୍ୱୟଂ ଜଗନ୍ଜନନୀ ଲକ୍ଷ୍ମୀ ସୁଦ୍ଧା କ୍ଳାନ୍ତ ହୋଇ ବସିପଡ଼ି ପରମଗତି ନିମିତ୍ତ ତୁମକୁ ହିଁ ଭଜନ କରୁଛନ୍ତି । ଏ କେଉଁ ଅପରିଚୟର ସଂଜ୍ଞାଭିତରେ ମୋତେ ଆଣି ଠିଆ କରେଇଲ ପ୍ରଭୁ ?'

ଜଳଦ୍ ଗମ୍ଭୀର ସ୍ୱରରେ ମୁଁ କହିଲି -

'କାଲୋଽସ୍ମି ଲୋକକ୍ଷୟ କୃତ୍ ପ୍ରବୃଦ୍ଧୋଃ
ଲୋକାନ୍ ସମାହର୍ତ୍ତୁମିହ ପ୍ରବୃତ୍ତଃ
ଋତେଽବସ୍ଥିତ୍ୱାଂ ନ ଭବିଷ୍ୟନ୍ତି ସର୍ବେ
ଯେଽବସ୍ଥିତାଃ ପ୍ରତ୍ୟନୀକେଷୁ ଯୋଧାଃ'

ସବ୍ୟସାଚୀ ! ମୁଁ ହିଁ ମହାକାଳ - ସ୍ୱୟଂ ମୃତ୍ୟୁ ସ୍ୱରୂପ । ଲୋକ ସଂହାର ନିମିତ୍ତ ମୋର ଏ ବିରାଟ ରୂପ ଧାରଣ । ଏହାର କାରଣ ହେଉଛି -

'ଯଦା ଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
ଅଭ୍ୟୁତ୍‌ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍
ପରିତ୍ରାଣାୟ ସାଧୂନାଂ ବିନାଶାୟଚ ଦୁଷ୍କୃତାମ୍
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ'

ଯୁଗ ଯୁଗ ଜନ୍ମ ଜନ୍ମ ମୁଁ ଧରାବତରଣ କରୁଛି । ପାପର ବିନାଶ କରି ପୂଣ୍ୟର ପ୍ରତିଷ୍ଠା ପାଇଁ, ସାଧୁ ସଜ୍ଜନର ପରିତ୍ରାଣ ପାଇଁ, ଧର୍ମର ପ୍ରତିଷ୍ଠାପାଇଁ ବାରମ୍ବାର ଜନ୍ମ ଗ୍ରହଣ କରି ପୃଥିବୀକୁ ପାପ ଭାରମୁକ୍ତ କରୁଛି । ମୁର, ହିରଣ୍ୟ କଶିପୁ, ହିରଣ୍ୟାକ୍ଷ, ରାବଣ ପ୍ରଭୃତିଙ୍କୁ ବାରମ୍ବାର ଜନ୍ମ ଦେଇ ବିନାଶ କରିଛି । ଆଜି ବି ମୋ ଜନ୍ମର ସେଇ ଗୋଟିଏ ଉଦ୍ଦେଶ୍ୟ । କଂସ, ଜରାସନ୍ଧ, ଶିଶୁପାଳ ପ୍ରଭୃତିଙ୍କ ବିନାଶ କେବଳ ପୂଣ୍ୟର ପ୍ରତିଷ୍ଠା ପାଇଁ । ଏଥର ମଧ୍ୟ ଏହି ମହାନ୍ ଧର୍ମଯୁଦ୍ଧରେ କୌରବଭ୍ରାତାଙ୍କ ନିଧନ ସୁନିଶ୍ଚିତ । ମୁଁ କାର୍ଯ୍ୟ ମୁଁ ହିଁ କାରଣ । ତୁମେତ ନିମିତ୍ତ ମାତ୍ର । ତୁମେ ଯୁଦ୍ଧଭୂମିରୁ ପଞ୍ଚଘୁଞ୍ଚା ଦେଲେ ମୁଁ ସେମାନଙ୍କୁ କ୍ଷମା କରିଦେବି ? ସେମାନଙ୍କର ଦମ୍ଭ, ଅଭିମାନ, ଈର୍ଷ୍ୟା, ଦ୍ୱେଷ, ପରଶ୍ରୀକାତରତା, ସ୍ୱାର୍ଥପରତା, ଲୁବ୍ଧତା ପ୍ରଭୃତି ଆସୁରୀ ପ୍ରବୃତ୍ତି ମୋର ଏ ସୁନ୍ଦର ପୃଥିବୀକୁ ଛାର ଖାର କରିଦେଇଛି । କେମିତି କ୍ଷମା କରିପାରିବି ? ସେମାନେ ଅତୀତରେ ଗୋଟିଏ ନିରୀହ, ନିରପରାଧ ଶିଶୁର ଖାଦ୍ୟରେ ବିଷ ପ୍ରୟୋଗ କରିନଥିଲେ କି ? କେତୋଟି ନିରୀହ ପ୍ରାଣୀଙ୍କୁ ବାରୁଣାବତର ଜତୁଗୃହରେ ଜୀବନ୍ତ

ଦଗ୍ଧ କରିବାର ଜଘନ୍ୟ ଷଡ଼ଯନ୍ତ୍ର କରିନଥିଲେ କି ? ଅନ୍ତଃ ପୁରଚାରିଣୀ ଏକ ମାତୃଶକ୍ତିକୁ ପରିପୂର୍ଣ୍ଣ ସଭାଗୃହରେ ଅପରିମିତ ଲାଂଛନା ସହ ବିବସନା କରିବାର ସାଂଘାତିକ ପାପ ସେମାନେ କରିନଥିଲେ କି ? ମୋ ସୃଷ୍ଟିର ସମସ୍ତ ନିୟମ ଉଲ୍ଲଂଘନ କରି ବିଶୃଙ୍ଖଳା, ଅନାଚାରର ଏକ କଳୁଷିତ ପରଂପରା ସୃଷ୍ଟି କରିନାହାନ୍ତି କି ? ତେବେ ? ତେବେ ? ମୋତେ ତ ମୋ ସୃଷ୍ଟିକୁ ରକ୍ଷା କରିବାକୁ ପଡ଼ିବ ! ସେଥିପାଇଁ ଯେତେ ରକ୍ତର ତର୍ପଣ ହେଉ ପଛେ !'

ଅର୍ଜ୍ଜୁନଙ୍କ ଶରୀରରେ ସତ୍ତ୍ୱ ବିକାରର ସ୍ୱଷ୍ଟ ଲକ୍ଷଣ ପରିଦୃଷ୍ଟ ହେଉଥିଲା । ମୋ ପଦ ପ୍ରାନ୍ତରେ ପଦଯୁଗଳକୁ ଧରି ସେ ନତ ମସ୍ତକରେ ବସି ରହିଥିଲେ । ତାଙ୍କୁ ଦେଖି ମୁଁ ଜାଣି ପାରୁଥିଲି ଯେ ତାଙ୍କର ମୋହ ବିନଷ୍ଟ ହୋଇଛି । ମୁଁ ତାଙ୍କ କାନପାଖେ କହିଲି -

'ସର୍ବ ଧର୍ମାନ୍ ପରିତେଜ୍ୟ
ମାମେକଂ ଶରଣଂ ବ୍ରଜ ।'

ଉଠ ! ଉଠ ! ସଖା ! ରଣଭୂମି ତୁମରି ଅପେକ୍ଷାରେ, କୀର୍ତ୍ତି ଲକ୍ଷ୍ମୀ ତୁମରି ଅପେକ୍ଷାରେ, ବିଜୟ ତୁମରି ଅପେକ୍ଷାରେ ।

ସାଧାରଣ ମଣିଷଟିଏ ଭଳି ତାଙ୍କୁ ବକ୍ଷଲଗ୍ନ କଲି । ସେ ବୀର ଦର୍ପରେ ଗାଣ୍ଡୀବ ଉଠେଇ ଆଣି ସହାସ୍ୟ ବଦନରେ କହିଲେ -

'ଏଥର ସଖା ! ତୁମରି ନିର୍ଦ୍ଦେଶ ଶିରୋଧାର୍ଯ୍ୟ !'

ଗଗନ ପବନ ପ୍ରକଂପିତ କରି ରଣଭେରୀ ବାଜିଉଠିଲା ।

## ।। ପଞ୍ଚବିଂଶତି ଗ୍ରନ୍ଥିମୋଚନ ।।

ଯୁଦ୍ଧର ବିସ୍ତାରିତ ବିବରଣୀ ମୁଁ ଦେବି ନାହିଁ । ଜନ୍ମରୁ ଜନ୍ମାନ୍ତର ଯାଏ ବହୁ ଯୁଦ୍ଧର ମହାନାୟକ ମୁଁ । ଅଥଚ ଯୁଦ୍ଧ ମୋର ଲକ୍ଷ୍ୟ ନୁହେଁ । ମୁଁ ଚିର ଶାନ୍ତି କାମୀ । ଏଇ ଟିକିଏ ଶାନ୍ତି ପାଇବା ପାଇଁ ବହୁ ରକ୍ତ କ୍ଷୟୀ ସଂଗ୍ରାମ ସର୍ଜନା କରିବାକୁ ହୁଏ । ଶାନ୍ତିର ସବୁ ଦ୍ୱାର ରୁଦ୍ଧ ହୋଇଯିବା ପରେ ହିଁ ଯୁଦ୍ଧ ପାଇଁ ମୁଁ ପଥ ପ୍ରସ୍ତୁତ କରେ । ଏ କ୍ଷେତ୍ରରେ ମଧ୍ୟ ତା'ର ବ୍ୟତିକ୍ରମ ହୋଇନାହିଁ । ଶାନ୍ତିଦୂତ ଭାବେ ସଦ୍‌ଭାବ ପ୍ରତିଷ୍ଠାର ସନ୍ଦେଶ ବହନ କରି ମାତ୍ର ପାଞ୍ଚଖଣ୍ଡି ପଡ଼ାର ଦାବୀ ନେଇ ମୁଁ ତ ନିଜେ ଯାଇଥିଲି କୁରୁ ରାଜସଭାକୁ ! ଏ ମହାପ୍ରଳୟକୁ ଆଖି ଆଗରେ ରଖି ମୁଁ ବହୁବାର ସତର୍କ ବି କରିଥିଲି । ଶୁଣିଲେ ନାହିଁ କୁରୁପତି ଦୁର୍ଯ୍ୟୋଧନ । ମୁଁ ତେବେ ନିରୁପାୟ ! ଆରମ୍ଭ ହୋଇଗଲା କ୍ଷତ୍ରିୟ ସଂହାର ଲୀଳା । ପ୍ରଥମ ଦିନରୁ ହିଁ ଯୁଦ୍ଧର

ସମସ୍ତ ନିୟମ ଓ ଶୃଙ୍ଖଳା କ୍ରମଶଃ ନଷ୍ଟ ହେବାକୁ ଲାଗିଲା । ଅତୀତର ସବୁ ଆତ୍ମୀୟତା ଓ ଘନିଷ୍ଠ ସଂପର୍କକୁ ବିସ୍ମୃତ ହୋଇ ଉନ୍ମତ୍ତ ସଦୃଶ ପରସ୍ପର ବିରୁଦ୍ଧରେ ଯୁଦ୍ଧ କରିବାକୁ ଲାଗିଲେ । ପ୍ରଥମ ଦିନରେ ହିଁ ବିରାଟ ପୁତ୍ର ଉତ୍ତର ଓ ଶ୍ୱେତ ବୀରଗତି ପ୍ରାପ୍ତ ହେଲେ । ତା' ପୁଣି କୁରୁପିତାମହ ଭୀଷ୍ମଙ୍କଦ୍ୱାରା । ଏହି ସୁକୁମାର ନବଯୁବକ ଦ୍ୱୟଙ୍କୁ ଜ୍ୱଳନ୍ତ ଅଶନି ସଦୃଶ ମନ୍ତ୍ରସିଦ୍ଧ ବାଣରେ ବଧ କରିବା ସମୟରେ କୁରୁପିତାମହ କିପରି ବିସ୍ମୃତ ହୋଇଗଲେ ଯେ ବିରାଟ ରାଜା ହିଁ ତ ଅଜ୍ଞାତବାସ ସମୟରେ ତାଙ୍କର ପ୍ରିୟ ପଣ୍ଡୁପୁତ୍ରଙ୍କୁ ଆଶ୍ରୟ ଦେଇଥିଲେ ? ଯଥାର୍ଥରେ ବିରାଟ ପାଣ୍ଡବଙ୍କର ବନ୍ଧୁ । ପାଣ୍ଡବଙ୍କ ନିମିତ୍ତ ସର୍ବ ପ୍ରଥମେ ବିରାଟ ପୁତ୍ରହିଁତ ଆତ୍ମବଳିଦେଇ ବନ୍ଧୁତାର ପ୍ରମାଣ ରଖିଗଲେ ! ବିରାଟ ନନ୍ଦିନୀ ଉତ୍ତରାହିଁ ତ ପରୀକ୍ଷିତଙ୍କୁ ଜନ୍ମଦେଇ ପାଣ୍ଡବଙ୍କ ବଂଶଧାରାକୁ ବଞ୍ଚାଇ ରଖିଥିଲେ !

ନିର୍ଜନ ନିଶୀଥରେ ଏକ ବଂଶୀ ସ୍ୱନ ଶୁଭୁଥିଲା । ବଂଶୀବାଦକକୁ କେହି ଦେଖି ପାରୁନଥିଲେ । କେଉଁ ନିର୍ଦ୍ଦିଷ୍ଟ ଦିଗରୁ ଦ୍ରୁତ ଲୟରେ ସେ ମଧୁର ମୂର୍ଚ୍ଛନା ଭାସି ଆସି ରଣକ୍ଳାନ୍ତ ବୀରମାନଙ୍କୁ ଉଭୟ ଶିବିରରେ ସେମାନଙ୍କ କ୍ଳାନ୍ତି ଅପନୋଦନ କରି ରାତିଟିଏ ପାଇଁ ଗଭୀର ନିଦ୍ରାରେ ଅଚେତନ କରୁଥିଲା ଓ ନବୋଦିତ ସୂର୍ଯ୍ୟ ସହ ନବୀନ ଉତ୍ସାହରେ ସେମାନଙ୍କୁ ରଣଭୂମିକୁ ପ୍ରେରଣ କରୁଥିଲା । ଏଥିପ୍ରତି କାହାରି ଲକ୍ଷ୍ୟ ନଥିଲା; କିନ୍ତୁ ସେ ବଂଶୀ ବାଜୁଥିଲା ଅହରହ । ଦିନେ ଅର୍ଜୁନହିଁ ମୋତେ ପ୍ରଶ୍ନ କରିଥିଲେ ଏ ସଂପର୍କରେ - 'ସଖା ! ତୁମ ଅଧର ପ୍ରାନ୍ତରେ ତ ବଂଶୀ ନାହିଁ, ତେବେ କିଏ କେଉଁଠି ଏ ଯୁଦ୍ଧର ଘନଘଟା ଭିତରେ ଏଭଳି ହୃଦୟ ସ୍ପର୍ଶୀ ଭାବେ ବଂଶୀବାଦନ କରୁଛି ?'

ମୁଁ ମନେ ମନେ କହିଲି - 'ମହାକାଳ ! ମହାକାଳ ହିଁ ଏ ବଂଶୀ ଅହରହ ବାଦନ କରୁଛି ସଖା ସବ୍ୟସାଚୀ ! ସୃଷ୍ଟି ଆରମ୍ଭରୁହିଁ ତ ସେ ଏ ବଂଶୀ ବଜେଇ ଆସୁଛି, ଖାଲି ଶୁଣିବାରେ ଯାହା ପାର୍ଥକ୍ୟ ! ଏ ବଂଶୀ ଧ୍ୱନୀ ଅପ୍ରତିହତ, ଅବିରାମ, ଅନନ୍ତ !'

କିନ୍ତୁ ଏସବୁ କିଛି ତାଙ୍କୁ ନ କହି ହସି ହସି କହିଲି 'ଆଶ୍ଚର୍ଯ୍ୟ ! ଏକା ନନ୍ଦ ଗଉଡ଼ର ପୁଅ ବଂଶୀ ବଜେଇ ଜାଣେ ବୋଲି ତୁମେ ଭାବୁଛ କାହିଁକି ?'

ତୃତୀୟ ଦିବସର ଯୁଦ୍ଧ ବଡ଼ ଭୟଙ୍କର ଭାବେ ଅନୁଷ୍ଠିତ ହୋଇଥିଲା । ଅର୍ଜୁନଙ୍କର ମୋହ ବିନଷ୍ଟ ହୋଇସାରିଥିଲା । ତଥାପି କାହିଁକି କେଜାଣି କୁରୁପିତାମହ ଭୀଷ୍ମଙ୍କ ସମ୍ମୁଖରେ ଅର୍ଜୁନଙ୍କୁ ବେଷ୍ଟନ କରି ରହିଥିବା ପାଣ୍ଡବ ସୈନ୍ୟଙ୍କୁ ବୀର ବିକ୍ରମରେ ପିତାମହ ନିପାତ କରୁଥିଲେ, ଭୟଭୀତ ପାଣ୍ଡବ ସୈନ୍ୟ ଇତସ୍ତତଃ ପଳାୟନ ବି କରୁଥିଲେ । ତଥାପି ଅର୍ଜୁନ ପିତାମହଙ୍କୁ ଚାହିଁ ଅଭିଭୂତ ହେଉଥିଲେ, ତାଙ୍କର ପ୍ରତିପକ୍ଷବୋଲି ହୁଏତ ବିସ୍ମୃତ ହୋଇ ଯାଉଥିଲେ । ଯଦିଓ ମୁଁ ଅସ୍ତ୍ର ଧରିବି ନାହିଁ ବୋଲି ପ୍ରତିଜ୍ଞାବଦ୍ଧ ହୋଇଥିଲି ତଥାପି ସୁଦର୍ଶନ ଚକ୍ର

ଧାରଣ କଲି । ଭୟଙ୍କର କ୍ରୋଧରେ ମୁଁ ପ୍ରଚଣ୍ଡ ହୋଇ ଉଠିଲି ଓ ରଥରୁ ଅବତରଣ କରି କହିଲି - 'ପାର୍ଥ ! ତୁମେ ତୁମ ପିତାମହଙ୍କ ଗୌରବରେ ଗୌରବାନ୍ୱିତ ହୋଇ ବସି ରହ । ମୁଁ କିନ୍ତୁ ଆଜି ଏ ଯୁଦ୍ଧ ସମାପ୍ତ କରିବି । ମୋର ପ୍ରତିଜ୍ଞା ଭଂଗ ହେଲେ ହେଉ, ମୁଁ କିନ୍ତୁ ଆଜି ଏଇ ଚକ୍ରରେ ଭୀଷ୍ମ, ଦ୍ରୋଣ, କୃପ , ଶଲ୍ୟ ଆଦି ସମସ୍ତଙ୍କୁ ନିପାତ କରି ଧର୍ମରାଜଙ୍କ ହାତରେ ହସ୍ତିନାର ରାଜ୍ୟ ଅର୍ପଣ କରିବି ।'

ମୁଁ ଭୀଷ୍ମଙ୍କ ଆଡ଼କୁ ଦ୍ରୁତଗତିରେ ପ୍ରଧାବିତ ହେବାକୁ ଲାଗିଲି । ଆଶ୍ଚର୍ଯ୍ୟ ! ଭୀଷ୍ମ ଚୁପ୍‌ଚାପ୍ ଠିଆ ହୋଇ ମୁଗ୍ଧ ନେତ୍ରରେ ମୋତେ ଦେଖୁ ଦେଖୁ କହିଲେ - 'ଆସ ! ଆସ କେଶବ ! ବହୁପାପ ଓ ଅନ୍ୟାୟର ସାକ୍ଷୀ ଏଇ କୁରୁପିତାମହ ଭୀଷ୍ମ ତୁମରି ହାତରେ ମୃତ୍ୟୁ ଲାଭ କରି ଶ୍ରେଷ୍ଠ ଗତି ପ୍ରାପ୍ତ ହେଉ । ନିକ୍ଷେପ କର ତୁମର ଅସ୍ତ୍ର କେଶବ ! ମୁଁ ପ୍ରତିରୋଧ କରିବି ନାହିଁ । ଏହା ମୋର ଯେ ପରମ ସୌଭାଗ୍ୟ ! ମୁଁ ବକ୍ଷପାତି ଦେବି ।'

ମାତ୍ର ସେ କଥା ବି ହେବାର ନୁହେଁ । ରଥରୁ ଅବତରଣ କରି ଅର୍ଜ୍ଜୁନ ଧାଇଁ ଆସି ମୋର ପଦ ଯୁଗଳକୁ ପ୍ରବଳଭାବେ ବାହୁ ବନ୍ଧନରେ ବାନ୍ଧିରଖି କହିଲେ - 'ନା -ନା -ସଖା ! ସାମାନ୍ୟ ଅର୍ଜ୍ଜୁନର ନିଷ୍କ୍ରିୟତା ପାଇଁ ତୁମେ ପ୍ରତିଜ୍ଞାଭ୍ରଷ୍ଟ ହୋଇପାରିବ ନାହିଁ ବା ତ୍ରିଲୋକରେ ମୁଁ ବି ନିନ୍ଦିତ ହୋଇ  ପାରିବି ନାହିଁ । ଏଥର ମୁଁ ଶପଥ କରୁଛି ବୀର ବିକ୍ରମରେ ଯୁଦ୍ଧ ହିଁ କରିବି । ଫେରି ଆସ ସଖା !'

ହଁ, ଅର୍ଜ୍ଜୁନ ତାଙ୍କର ପ୍ରତିଶ୍ରୁତି ପାଳନ କରିଥିଲେ । ଦିନ ଦିନ ହୋଇ ନବମ ଦିବସର ଯୁଦ୍ଧ ବି ଶେଷ ହୋଇଗଲା; କିନ୍ତୁ ଜୟ ପରାଜୟ ସେଇଭଳି ଅସମାହିତ । କୁରୁ ପିତାମହ ଭୀଷ୍ମହିଁ ତାର ଏକମାତ୍ର ହେତୁ । ଅର୍ଜ୍ଜୁନ ତନୟ ଇରାବାନ୍‌ର ମୃତ୍ୟୁ ପଣ୍ଡୁସୁତଙ୍କୁ ଶୋକମଗ୍ନ, ହତୋତ୍ସାହ କରିଦେଇଥିଲା । ଧର୍ମରାଜଙ୍କୁ ମୁଁ ନିଜେ କହିଲି - 'ମୋତେ ହିଁ ଆଦେଶ କରନ୍ତୁ ଧର୍ମରାଜ । ଆଉ କାହାରି ଉପରେ ନିର୍ଭର କରି କାଳକ୍ଷେପଣ କରନ୍ତୁ ନାହିଁ । ମୁଁ ହିଁ ଆପଣଙ୍କ ପିତାମହ ଭୀଷ୍ମଙ୍କୁ ବଧକରି କୁରୁପକ୍ଷକୁ ନିର୍ବଳ କରିବି ।'

ମୋ ସ୍ୱରର ଦୃଢ଼ତାରେ ପଣ୍ଡୁସୁତଗଣ ଚମକି ଉଠିଥିଲେ । ଧର୍ମରାଜ କହିଲେ - 'ନା - ନା ମଧୁସୂଦନ ! ଆମ ପାଇଁ ଆପଣ ପ୍ରତିଜ୍ଞା ଭଂଗ କରିବେ ? ବରଂ ପିତାମହ କୁରୁପକ୍ଷରେ ଯୁଦ୍ଧ କଲେ ବି ଆମକୁ ସତ୍ ପରାମର୍ଶ ନିଶ୍ଚୟ ଦେବେ । ଶୈଶବରେ ପିତାଙ୍କ ଦେହାନ୍ତ ହେବାପରେ ସେହିଁତ ଆମକୁ ସୁରକ୍ଷା ଦେଇ ଆସିଛନ୍ତି । ଆମ୍ଭ ମାନଙ୍କର ହିତସାଧିନୀ ପରାମର୍ଶ ସେହିଁତ ଆମକୁ ସୁରକ୍ଷା ଦେଇ ପାରିବେ । ଗୋବିନ୍ଦ ! ଆସନ୍ତୁ ଆମେ ସମସ୍ତେ ତାଙ୍କରି ପାଖକୁ ଯିବା !'

ସେଇଦିନ ପାଇଁ ଯୁଦ୍ଧବିରତି ଘୋଷିତ ହୋଇ ସାରିଥାଏ । ସୂର୍ଯ୍ୟାସ୍ତ ସମୟ । ଅସ୍ତ ସୂର୍ଯ୍ୟର ଲୋହିତ ଆଭାରେ ରଣ ଭୂମିରେ ନିର୍ଯ୍ୟାତିତ ସହସ୍ର ସହସ୍ର ବୀରଗତିପ୍ରାପ୍ତ କ୍ଷତ୍ରିୟଙ୍କ ରକ୍ତ ଲିପ୍ତ ମୃତ ପିଣ୍ଡ ଅଧିକ ରକ୍ତ ବର୍ଣ୍ଣ ଦିଶୁଥାଏ । ଆମ୍ଭେମାନେ ପିତାମହଙ୍କ ଶିବିର ଉଦ୍ଦେଶ୍ୟରେ ଯାତ୍ରା କରୁଛୁ । ଏଇ ସମୟରେ ଗୁପ୍ତଚର ଆସି ସମ୍ବାଦ ଦେଲା ଯେ, ପିତାମହ ସେନାପତି ଥିବା ସତ୍ତ୍ୱେ ଯୁଦ୍ଧର ନବମ ଦିବସରେ ସୁଦ୍ଧା ପାଣ୍ଡବ ଗଣ ଜୀବିତ ଥିବା ଦେଖି କୁରୁପତି ଉଦ୍‌କ୍ଷିପ୍ତ ହୋଇଯାଇଛନ୍ତି ଓ ପିତାମହଙ୍କ ନିରପେକ୍ଷତା ଉପରେ ସନ୍ଦେହ ପୋଷଣ କରିଛନ୍ତି । ଏହି ଗ୍ଲାନିକର ଦୋଷାରୋପ ହେତୁ ପିତାମହ କ୍ରୋଧାନ୍ୱିତ ହୋଇ ପାଣ୍ଡବନାଶୀ ପାଞ୍ଚଗୋଟି ଅଭିମନ୍ତ୍ରିତ ତୀର ସଯତ୍ନରେ ରଖିଛନ୍ତି । ଆସନ୍ତା କାଲି ପ୍ରତ୍ୟୁଷରେ ପଣ୍ଡୁସୁତଙ୍କୁ ବିନାଶକରି ସେ ହସ୍ତିନା ରାଜ ସିଂହାସନ ପ୍ରତି ରହି ଆସିଥିବା ନିଷ୍ଠାର ପରିଚୟ ଦେବେ ବୋଲି କୁରୁପତିଙ୍କୁ ଆଶ୍ୱାସନା ମଧ୍ୟ ଦେଇଛନ୍ତି ।

ପଣ୍ଡୁନନ୍ଦନଙ୍କ ମୁହଁ ବିବର୍ଣ୍ଣ ହୋଇଗଲା । ମୁଁ କିନ୍ତୁ କହିଲି - 'ଏ କ୍ଷେତ୍ରରେ ଧର୍ମରାଜ ଯାହା କହିଛନ୍ତି ତାହାହିଁ ବିଚାରଯୋଗ୍ୟ । ପିତାମହଙ୍କ ଶିବିରରେ ପହଞ୍ଚି ଦେଖିଲୁ ରଣଭୂମିରୁ ଫେରି ସେ ପର୍ଯ୍ୟନ୍ତ ସେ କୌଣସି ଖାଦ୍ୟ ଗ୍ରହଣ କରିନାହାନ୍ତି । ବଳବର୍ଦ୍ଧକ, ଶକ୍ତି ବର୍ଦ୍ଧକ ଔଷଧି ମିଶ୍ରିତ ଉଷ୍ଣ ଗୋକ୍ଷୀର ସେ ପର୍ଯ୍ୟନ୍ତ ଥୁଆ ହୋଇଛି । ତାଙ୍କର ସେବକ ସେ ପର୍ଯ୍ୟନ୍ତ କ୍ଷତସ୍ଥାନରେ ପ୍ରଲେପ ଦେବାପାଇଁ ଅପେକ୍ଷା କରି ରହିଛି; ଅଥଚ ସେ କ୍ଷତର ଉପଶମ ନିମିତ୍ତ କୌଣସି ଉପଚାର ପ୍ରୟୋଗ ନକରି ଚୁପ୍‌ଚାପ ଅନ୍ୟମନସ୍କ ଭବେ ଅସ୍ତସୂର୍ଯ୍ୟଙ୍କୁ ଲକ୍ଷ୍ୟ କରୁଥିଲେ । କ୍ଷତସ୍ଥାନରୁ ଅଜସ୍ର ଧାରାରେ ରୁଧିର ପ୍ରବାହିତ ହେଉଥିଲା ସେଥିପ୍ରତି ତାଙ୍କର ଭ୍ରୁକ୍ଷେପବି ନଥିଲା । ତାଙ୍କର ସେ ଗଭୀର ଚିନ୍ତାମଗ୍ନ ଦୃଷ୍ଟି ଭିତରେ ଯେମିତି ସେ କାହାକୁ ଅନ୍ୱେଷଣ କରୁଥିଲେ, କାହାକୁ ଅପେକ୍ଷା କରି ରହିଥିଲେ । ଶିବିର ଦ୍ୱାରରେ ପଣ୍ଡୁସୁତଗଣ ତାଙ୍କର ଦର୍ଶନାଭିଳାଶୀ ବୋଲି ସେବକଠାରୁ ଶୁଣିବାମାତ୍ରେ ସେ ନିଜେ ବାହାରକୁ ଆସି ଅଭ୍ୟର୍ଥନା କରି ଆମ୍ଭମାନଙ୍କୁ ଶିବିରକୁ ନେଲେ । ମୋତେ ଦେଖି ସେ ଏଭଳି ସ୍ମିତ ହସଟିଏ ହସିଲେ, ଦେଖିଲେ ମନେ ହେଲା ଯେମିତି ମୁଁ ନୁହେଁ, ସେ ହିଁ ମୋର ଅନ୍ତର୍ଯ୍ୟାମୀ । ସେ ଯୁଗପଦ୍ ଆନନ୍ଦାବେଗରେ ଅଧୀର ଓ ଶୋକାବେଗରେ ବିଚଳିତ ହୋଇପଡ଼ିଲେ । ଏଭଳି ଆନନ୍ଦ ବ୍ରହ୍ମଚାରୀ ଭୀଷ୍ମଙ୍କର କେବେହେଲେ ପରିଲକ୍ଷିତ ହୋଇନାହିଁ, ଏଭଳି ଶୋକାବେଗରେ ଭାଂଗି ପଡ଼ିବା ମଧ୍ୟ ତାଙ୍କ ପାଇଁ ସଂପୂର୍ଣ୍ଣ ଅଭିନବ । ସେ ଚିରାଚରିତ ରୀତିରେ ଯୁଧିଷ୍ଠିରଙ୍କର ମସ୍ତକ ଆଘ୍ରାଣ କଲେ, ଭୀମସେନଙ୍କର ସୁପୁଷ୍ଟ ବାହୁରେ ଚାପଦେଇ ବଳିଷ୍ଠତା ପରୀକ୍ଷା କଲେ, ଅର୍ଜ୍ଜୁନଙ୍କୁ କିଛି ସମୟ ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଲେ । ଅର୍ଜ୍ଜୁନ ଅସ୍ଫୁଟ କଣ୍ଠରେ କହିଲେ - 'ପିତାମହ !'

ସେ ପ୍ରବଳ ବେଗରେ ମୁଣ୍ଡହଲାଇ କହିଲେ- 'ନା - ନା - ପୁତ୍ର ! ମୋତେ ଆଗଭଳି ଥରେ 'ପିତା' ବୋଲି ସମ୍ବୋଧନ କର !'

-'ପିତା !!' ଅର୍ଜୁନ ଉଚ୍ଚାରଣ କଲେ ।

ଏହା ଶୁଣିବା ମାତ୍ରେ ପିତାମହ ତାଙ୍କୁ ଅଶ୍ରୁପୂରିତ ନୟନରେ ଚାହିଁ ବକ୍ଷ ଲଗ୍ନ କରି ଆଲିଙ୍ଗନବଦ୍ଧ କରି ପକାଇଲେ । ନକୁଳ ଓ ସହଦେବଙ୍କ ଲଲାଟରେ ସସ୍ନେହରେ ଚୁମ୍ବନ ପ୍ରଦାନ କଲେ । ମୁଁ ତାଙ୍କୁ ପ୍ରଣାମ ଜଣାଇବା ପୂର୍ବରୁ ସେ ମୋ ହାତ ଦୁଇଟିକୁ ତାଙ୍କ ବକ୍ଷରେ ଚାପିଧରି ସ୍ୱୟଂ ଯୋଡ଼ ହସ୍ତରେ କହିଲେ - 'ଆଜି ମୋର ପରମ ସୌଭାଗ୍ୟ !' ତାପରେ ସେବକଙ୍କୁ ଆଦେଶ ଦେଲେ ଛଅଟି ପୂର୍ଣ୍ଣପାତ୍ର ବାଦାମ ମିଶ୍ରିତ ଉଷ୍ମ ଗୋକ୍ଷୀର; ପୁଣି ମୋତେ ଟିକିଏ ଚାହିଁ ଅଳ୍ପ ହସି ଦେଇ କହିଲେ, ନାଇଁ ଗୋଟିଏ ପୂର୍ଣ୍ଣପାତ୍ର ନବନୀତ ବି ଆଣିବ । ଏଇତ ସୁଯୋଗ । ଆଜିପରେ ଆଉ ଏ ସୁଯୋଗ ଆସିବ ନାହିଁ । ତାପରେ ଧର୍ମରାଜଙ୍କୁ ପ୍ରଶ୍ନ କଲେ - 'କୁହ ! କେଉଁଥିପାଇଁ ଆସିଲ ? କି ପରାମର୍ଶ ଚାହଁ ?'

ଧର୍ମରାଜ କୃତାଞ୍ଜଳି ପୁଟରେ ସ୍ୱଭାବ ସୁଲଭ ନମ୍ର ଭାବରେ କହିଲେ - 'ଆପଣହିଁ ତ ପ୍ରତିପାଳନ କରି ଆସିଛନ୍ତି ଆମ୍ଭମାନଙ୍କୁ ଆପଣଙ୍କ ସ୍ନେହର ଶୀତଳ ଛାୟାରେ । ଏ ଯୁଦ୍ଧ କିପରି ଶେଷ ହେବ ? ଆପଣଙ୍କ ପରାକ୍ରମ ହେତୁ ଆମର ବିପୁଳ ସୈନ୍ୟ କ୍ଷୟ ହୋଇ ସାରିଲେଣି । ଆପଣଙ୍କର ଏମିତି କୌଣସି ଛିଦ୍ର ପଥ ନାହିଁ, ଯେଉଁ ପଥରେ ଆମର ବାଣ ପ୍ରବେଶ କରିବ । ଆମ ପକ୍ଷର ସୈନ୍ୟ ମାନେ ଭୀତ ଓ ହୀନବଳ ହୋଇ ସାରିଲେଣି । ଆମ୍ଭମାନଙ୍କୁ କେବଳ ଜୟଲାଭର ଉପାୟ କହିଦିଅନ୍ତୁ !'

ସେ କିଛି ସମୟ ମୋତେ ନିବିଡ଼ ଦୃଷ୍ଟିରେ ଚାହିଁ ଧର୍ମରାଜଙ୍କୁ ସସ୍ନେହରେ କହିଲେ - 'ଜୟତ ତୁମର ହିଁ ହେବ ପୁତ୍ର ! ଗୋବିନ୍ଦ ଯାହାର ସହାୟ, ତା'ର ପରାଜୟ ଅସମ୍ଭବ - ଏହା ତୁମରି ମାନଙ୍କ ଜୀବନରେ ବହୁବାର ପ୍ରମାଣିତ ହେଇଛି । ତେବେ ମୁଁ ଜୀବିତ ଥିବା ପର୍ଯ୍ୟନ୍ତ ହସ୍ତିନାର ପରାଜୟ ସମ୍ଭବ ନୁହେଁ । ମୁଁ ଅନୁମତି ଦେଉଛି ତୁମ୍ଭେମାନେ ବିନା ଦ୍ୱିଧାରେ ମୋ ପ୍ରତି ଅସ୍ତ୍ର ପ୍ରହାର କର । ତେବେ ଛିଦ୍ରପଥ ଖୋଜୁଥିଲ ନା ? ମୋ ହାତରେ ଅସ୍ତ୍ର ଥିବା ପର୍ଯ୍ୟନ୍ତ । ସୁରାସୁର କେହି ମୋର ସମକକ୍ଷ ନୁହନ୍ତି । ମୋ ହାତରେ ଯେପରି ଅସ୍ତ୍ର ନରହେ ସେହି ବ୍ୟବସ୍ଥା କର । ନିରସ୍ତ୍ର, ଭୂପତିତ, ବର୍ମ ଓ ଧ୍ୱଜ ବିହୀନ, ପଳାୟମାନ, ଭୀତ, ଶରଣାପନ୍ନ, ସ୍ତ୍ରୀ, ସ୍ତ୍ରୀ ନାମଧାରୀ, ବିକଳେନ୍ଦ୍ରିୟ, ଏକ ପୁତ୍ରର ପିତା, ନୀଚଜାତି ସଂଗେ ଯୁଦ୍ଧ କରିବାକୁ ମୋର ପ୍ରବୃତ୍ତି ହୁଏ ନାହିଁ । ଯାହା ଧ୍ୱଜ ଅମଙ୍ଗଳ ସୂଚକ ତା' ସହ ମୁଁ ଯୁଦ୍ଧରେ ପ୍ରବୃତ୍ତ ହୁଏ ନାହିଁ । ତୁମ୍ଭମାନଙ୍କ ପକ୍ଷରେ ସେମିତି କିଏ ଅଛି ତାକୁ ମୋ ସମ୍ମୁଖରେ ରଖିପାର ।'

ଆମ୍ଭେମାନେ ଚାଲି ଆସିଲୁ । ସଂଧ୍ୟା ଉତୀର୍ଣ୍ଣ ହୋଇସାରିନଥିଲା । ପଣ୍ଡୁସୁତ ତଥାପି ଚିନ୍ତାକୁଳ ଦିଶୁଥିଲେ । ଶିବିରରେ ପହଞ୍ଚିବା ବେଳକୁ ପାଞ୍ଚାଳ ତନୟା ଅପେକ୍ଷା କରିଥିଲେ । ବଡ଼ ଉଦ୍‌ବିଗ୍ନମନା ଦିଶୁଥିଲେ ସେ । ମୋତେ ଦେଖିବାମାତ୍ରେ କହିଲେ - 'ଗୁପ୍ତଚର ମୁଖରୁ ଶୁଣିଲି ଆଗାମୀ କାଲି ଯୁଦ୍ଧରେ ସ୍ୱୟଂ ପିତାମହ ଧରଣୀକୁ ପାଣ୍ଡବବିହୀନ କରିବେ ବୋଲି ଦୁର୍ଯ୍ୟୋଧନ ନିକଟରେ ପ୍ରତିଶ୍ରୁତିବଦ୍ଧ ?'

ମୁଁ ତାଙ୍କ କଥାରେ ଆଦୌ ଗୁରୁତ୍ୱ ନଦେଇ କହିଲି - 'କାହିଁକି ? ତୁମ ପିତାମହ କ'ଣ ମହାକାଳ ? ତାଙ୍କରି ନିର୍ଦ୍ଦେଶରେ, ଇଛାରେ ପଣ୍ଡୁସୁତ ମୃତ୍ୟୁବରଣ କରିବେ ବୋଲି ଭାବୁଚ କାହିଁକି ? ତେବେ ଆସ ସଖୀ, ଯଦି ଆସିଚ ତେବେ ବୟୋବୃଦ୍ଧ ପିତାମହଙ୍କୁ ଦର୍ଶନ କରି ତାଙ୍କଠାରୁ ଆଶୀର୍ବାଦ ମାଗିନିଅ । କହିବ ଯଦି ତାଙ୍କ ଶିବିର ପର୍ଯ୍ୟନ୍ତ ମୁଁ ତୁମକୁ ନେଇଯିବି । ଅବଶ୍ୟ ଏକାକୀ ନୁହେଁ । ସଖା ପାର୍ଥ ଆମ ସହ ଚାଲନ୍ତୁ ।'

ପାଞ୍ଚାଳୀ ସାମାନ୍ୟ ବିରକ୍ତି ପ୍ରକାଶ କରି ଉତପ୍ତ କଣ୍ଠରେ କହିଲେ - 'ଆମର ଏ ଭଳି ଦୁଃସମୟରେ ସଖା ଏପରି କଥା ଚିନ୍ତା କରିପାରୁଛନ୍ତି କିପରି ?'

ଅର୍ଜ୍ଜୁନ କହିଲେ - 'ପିତାମହ ଯେଉଁ ସବୁ ସୂଚନା ଦେଲେ, ଯାହା କଲେ ସେ ଅସ୍ତ୍ରତ୍ୟାଗ କରିବେ ସେଭଳି ବ୍ୟକ୍ତି ଆମ ନିକଟରେ କାହାନ୍ତି ? ମୁଁ ତାର୍ଯ୍ୟକ୍ ଦୃଷ୍ଟିରେ ଶିଖଣ୍ଡୀକୁ ଚାହିଁଲି । ସେ ତାଙ୍କ କଟୀରେ ଝୁଲୁଥିବା ତରବାରୀକୁ କୋଷମୁକ୍ତ କରି ତାର ଧାର ପରୀକ୍ଷା କରୁଥିଲେ । ଦୃଷ୍ଟି ତାଙ୍କର ଦିଗନ୍ତରେ ହଜିଯାଇଥାଏ । ଆଖି ଦୁଇଟିରେ ପୂର୍ବ ଜନ୍ମାର୍ଜିତ ପ୍ରତିହିଂସା ଓ ପ୍ରତିଶୋଧର ଅଗ୍ନି ପ୍ରଜ୍ଜ୍ୱଳିତ ହୋଇଥାଏ ପିତାମହଙ୍କ ନାମ ଶୁଣୁ ଶୁଣୁ । ମୁଁ ସ୍ମିତ ହସି କହିଲି - 'ସଖା ! ତୁମ ପିତାମହଙ୍କ ପ୍ରତିପକ୍ଷ ଭାବେ ତାଙ୍କ ସମ୍ମୁଖରେ ଠିଆ ହେବାପାଇଁ ଶିଖଣ୍ଡୀଙ୍କ ସଦୃଶ ଜଣେ ଯୋଗ୍ୟତମ ବ୍ୟକ୍ତି ଥାଉ ଥାଉ ତୁମେ ଏତେ ବିଚଳିତ ହୋଇପଡୁଛ କାହିଁକି ? କାଲି ପ୍ରତ୍ୟୁଷରେ ତୁମର ସମ୍ମୁଖ ଭାଗରେ ପାଞ୍ଚାଳ କୁମାର ଶିଖଣ୍ଡୀ ହିଁ ରହିବେ । ତାଙ୍କର ପୂର୍ବଜନ୍ମ ପ୍ରସଂଗତ କାହାରିକୁ ଅଛପା ନାହିଁ । ଥରେ ସ୍ମରଣ କର ଭାଗ୍ୟ ବିଡ଼ମ୍ବିତା କାଶୀରାଜ ତନୟା ଅମ୍ବାଙ୍କ ଜୀବନ ଯୌବନ ତୁମରି ପିତାମହଙ୍କ ପାଇଁ ବିଧ୍ୱସ୍ତ ହୋଇ ଯାଇଥିଲା । ସେଇ ଧ୍ୱଂସ ସ୍ତୁପରୁ ପରଜନ୍ମରେ ଜନ୍ମ ନେଇଥିଲେ ପାଞ୍ଚାଳ ରାଜକନ୍ୟା ଶିଖଣ୍ଡିନୀ । ପାଞ୍ଚାଳ ମହିଷୀ ଯାହାଙ୍କୁ ରାଜକୁମାର ଭାବେ ପ୍ରଚାର ଚଳାଇ ଥିଲେ ତାଙ୍କର ପ୍ରକୃତ ପରିଚୟ ଗୋପନ ରଖି । ଦଶାର୍ଣ୍ଣ ରାଜଦୁହିତାଙ୍କ ସହ ତାଙ୍କର ବିବାହ ହେବାପରେ ଶିଖଣ୍ଡୀଙ୍କ ପ୍ରକୃତ ପରିଚୟ ଜଣାପଡ଼ିଥିଲା । ଦଶାର୍ଣ୍ଣ ରାଜ ଦୁହିତା ଫେରି ଯାଇଥିଲେ, ପୁଣି ଥରେ ତାଙ୍କୁ ଅପମାନର ଗହ୍ୱରକୁ ଠେଲି ଦିଆଯାଇଥିଲା । ଯକ୍ଷ ସ୍ଥୂଣାକର୍ଣ୍ଣଙ୍କ ପ୍ରସାଦରୁ ସେ ପୁରୁଷତ୍ୱ ପ୍ରାପ୍ତ ହୋଇଥିଲେ । ତାଙ୍କ ଜୀବନର ଏତେଗୁଡ଼ିଏ ବିପର୍ଯ୍ୟୟ ପଶ୍ଚାତରେ ତୁମ ପିତାମହଙ୍କ ଭୂମିକା

କିଛି କମ୍ ଗୁରୁତ୍ୱପୂର୍ଣ୍ଣ ନଥିଲାତ ? ସେ ଯାହାବି ହେଉ ଆଗାମୀ କାଲି ଯୁଦ୍ଧରେ ତୁମ ପିତାମହଙ୍କ ସହ ସମ୍ମୁଖ ସମରରେ ପାଞ୍ଚାଳ କୁମାର ଶିଖଣ୍ଡୀହିଁ ଅବତୀର୍ଣ୍ଣ ହେବେ ଏବଂ ସଖା ପାର୍ଥ ! ତୁମେ ତାଙ୍କ ପୃଷ୍ଠଭାଗରେ ରହି ତାଙ୍କ ସୁରକ୍ଷାର ଦାୟିତ୍ୱ ନେବ । ତୁମ ପିତାମହଙ୍କ ଦୃଷ୍ଟିରେ ଏବେବି ଶିଖଣ୍ଡୀ ଜଣେ ସ୍ତ୍ରୀ ମାତ୍ର - ଶିଖଣ୍ଡିନୀ !'

ଏ ପ୍ରକାର ସୁଚିନ୍ତିତ ଯୋଜନାରେ ପାଣ୍ଡବ ଶିବିରର ପ୍ରତ୍ୟେକ ଆନନ୍ଦିତ ହେଲେ । ଏପରିକି ଦ୍ୱିତୀୟ ପାଣ୍ଡବ ଏପର୍ଯ୍ୟନ୍ତ ଅପ୍ରସନ୍ନ ଦିଶୁଥିଲେ ସୁଦ୍ଧା; ବିଶେଷତଃ ମୋର କୌତୁକ ପ୍ରବଣତା ହେତୁ ଅସନ୍ତୁଷ୍ଟ ଥିଲେ ସୁଦ୍ଧା ଆଗାମୀ ଦିବସର ଯୁଦ୍ଧ ଯୋଜନାରେ ପରମ ଆନନ୍ଦିତ ହୋଇ ପାର୍ଥଙ୍କୁ ଜ୍ୟେଷ୍ଠଭ୍ରାତା ସୁଲଭ ଭଂଗୀରେ ଆଦେଶ ଦେଇ କହିଲେ - 'ଯାଅ ! ଯାଅ ! ଅନୁଜ ଅର୍ଜୁନ ! ଆଜି ସତରେ ତୁମେ ବଡ଼ କ୍ଳାନ୍ତ । କିଛି ସମୟ କୃଷ୍ଣଙ୍କ ସହ ବାହାରକୁ ଯାଇ ଶୀତଳ ବାୟୁ ସେବନ କରି ଆସ । ମୁଁ ଆଜି ମୋର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ତୁମ ପାଇଁ ମୃଗ ମାଂସ ଓ ବାସୁଦେବଙ୍କ ପାଇଁ ରାବିଡ଼ି ପ୍ରସ୍ତୁତ କରୁଛି ।'

ବେଶ୍ କିଛି ସମୟ ଓଘବତୀ ନଦୀତୀରରେ ଶୀତଳ ବାୟୁସେବନ କଲାପରେ ନିଶି ଯେତେବେଳେ ନିର୍ଜନ ହୋଇ ଆସିଲା ମୁଁ କିରୀଟୀଙ୍କୁ କହିଲି - 'ସଖା ! ତୁମର ସ୍ମରଣ ଅଛି କି ନାହିଁ ଦ୍ୱୈତ ବନରେ ଦୁର୍ଯ୍ୟୋଧନର ସେହି ପରାଭବ କଥା । ଗନ୍ଧର୍ବ ରାଜଙ୍କ ଦ୍ୱାରା ପରାସ୍ତ ହୋଇ ଦୁର୍ଯ୍ୟୋଧନ ଯେତେବେଳେ ବନ୍ଦୀ ହୋଇ ଥିଲା ! ତୁମେ ହିଁ ତ ତାଙ୍କୁ ମୁକ୍ତି ଦେଇଥିଲ ? ପ୍ରତି ବଦଳରେ ସେ ତୁମକୁ କିଛି ଦେବାକୁ ଚାହିଁଥିଲା ନା ? ତୁମେ ଉପଯୁକ୍ତ ସମୟରେ ମାଗିନେବ ବୋଲି କହିଥିଲ ନା ? ଆଜି ସେ ସମୟ ଉପସ୍ଥିତ । ଯାଅ ସଖା ! ଆଜି ରାତ୍ରିର ଗୋଟିଏ ପ୍ରହର ନିମିତ୍ତ ଦୁର୍ଯ୍ୟୋଧନର ଅଙ୍ଗବସ୍ତ୍ର, ଅନର୍ଘ ମଣିମୁକୁଟ ଓ ଭୂଷଣ ରାଶି ତଥା ଗଦା ମାଗି ଆଣ । ଅଭିନୟ ! ଅଭିନୟ ସଖା ! ମନେରଖ ତୁମେ ଅଭିନୟ ହିଁ କରୁଛ ! ଜୀବନ ହିଁ ତ ଅଭିନୟ । ତୁମେ ସେଇ ସାଜ ପୋଷାକରେ ଯାଅ ଓ ପିତାମହ ଭୀଷ୍ମଙ୍କ ଠାରୁ ପାଣ୍ଡବ ନାଶୀ ପଞ୍ଚବାଣ ହରଣ କରିଆଣ ପ୍ରତାରଣା ବଳରେ !'

-'ପ୍ରତାରଣା ବଳରେ ? ପିତାମହଙ୍କ ଠାରୁ ?'

ଅର୍ଜୁନ ଚମକି ଉଠିଲେ ଯେମିତି । ମୁଁ ତାଙ୍କୁ ଆଦୌ ସମୟ ନଦେଇ କହିଲି - 'ଯାଅ ! ବିଳମ୍ବ କରନା ! ଏବେବି ପିତାମହ ଅତନ୍ଦ୍ର । ରାତ୍ରିର ଦ୍ୱିତୀୟ ପ୍ରହର ଶେଷ ହୋଇଗଲାଣି । ତୁମେ କାହାକୁ ପ୍ରତାରଣା କରୁନ ପାର୍ଥ । ଏହା ମହାକାଳର ପ୍ରତାରଣା ! ତା'ରି ନିର୍ଦ୍ଦେଶ । ସେ ନିର୍ଦ୍ଦେଶ ଯେ ଅଲଂଘ୍ୟ ! ତୁମେତ ନିମିତ୍ତ ମାତ୍ର !'

ପାର୍ଥ ଅଦୃଶ୍ୟ ହୋଇଗଲେ । ମୋ ସ୍ୱରରେ ଦୃଢ଼ତା ଓ ରହସ୍ୟମୟତାରେ କୃଷ୍ଣା

ଅଭିଭୂତା ହୋଇଯାଇଥିଲେବି ସେ ବୁଝିପାରୁଥିଲେ ଯେ ତାଙ୍କୁ ଧରି ଏଭଳି ନିର୍ଜନ ନିଶୀଥରେ ଶତ୍ରୁ ଶିବିର ନିକଟକୁ ଆସିବା ପଛରେ ମୋର ଏକ ମହାନ୍ ଉଦ୍ଦେଶ୍ୟ ରହିଛି । ସେ ଯୋଡ଼ ହସ୍ତରେ କହିଲେ - 'ଏଥର ମୋତେ ଆଜ୍ଞା ହେଉ ସଖା ! ମୁଁ କ'ଣ କରିବି ?

ମୁଁ ପରିସ୍ଥିତିକୁ ଭାରମୁକ୍ତ କରିବା ଉଦ୍ଦେଶ୍ୟରେ କହିଲି - 'କିଛି ନାହିଁ । ଦୀର୍ଘ ନଅଦିନ ଯୁଦ୍ଧକରି କୁରୁପିତାମହ କ୍ଲାନ୍ତ । ତାଙ୍କୁ ସୌଜନ୍ୟମୂଳକ ସାକ୍ଷାତଟିଏ କରିଆସ । ବାସ୍ ହୁଏତ ଏ ସୁଯୋଗ ବି ଆଉ ଆସି ନପାରେ । ସବୁ ଯେତେବେଳେ ଅନିଶ୍ଚିତ !'

ଯନ୍ତ୍ରଚାଳିତା ଭଳି, ସମ୍ମୋହିତା ଭାବେ କୃଷ୍ଣା ଆଗେଇ ଯାଉଥିଲେ । ହଠାତ୍ ତାଙ୍କ ପଦ ଯୁଗଳରେ ମୋ ଦୃଷ୍ଟି ପଡ଼ିବା ମାତ୍ରେ ମୁଁ କହିଲି - 'ଆହାଃ ! କୃଷ୍ଣା ! ତୁମେ ତୁମର ବୟୋବୃଦ୍ଧ ଗୁରୁଜନଙ୍କ ନିକଟକୁ ଯାଉଛ, ତୁମ ପାଦରେ ପାଣ୍ଡୋଇ କାହିଁକି ? କୃଷ୍ଣା ଲଜ୍ଜିତା ଭାବେ କହିଲେ - ନା - ନା - ମୁଁ ପିତାମହଙ୍କ ଶିବିର ବାହାରେ.....'

ତାଙ୍କୁ କଥା ଶେଷ କରିବାକୁ ନଦେଇ ମୁଁ କହିଲି - 'ରଖିଦେଇ ଭିତରକୁ ଯିବତ ? ତା'ମଧ୍ୟ ବିପଦମୁକ୍ତ ନୁହେଁ । ଯାହା ହେଲେ ବି ଶତ୍ରୁ ଶିବିର । ମଧ୍ୟରାତ୍ରି ଅତିକ୍ରାନ୍ତ ହୋଇଗଲାଣି । ପାଣ୍ଡବ ପଟ୍ଟମହିଷୀଙ୍କର କନକ, ରଜତ, ପ୍ରବାଳ ଖଚିତ ପାଣ୍ଡୋଇକୁ ଚିହ୍ନିବାରେ ସେବକ ବା ଗୁପ୍ତଚରଙ୍କର କେବେବି ଭୁଲ୍ ହେବନାହିଁ । ତେବେ ଏତେ ରାତିରେ ପିତାମହଙ୍କ ଶିବିର ଦ୍ୱାରରେ ତୁମ ପାଣ୍ଡୋଇ ଉଭୟ ପକ୍ଷ ପାଇଁ ଏକ ପ୍ରଶ୍ନବାଚୀ ହୋଇଯିବ । ତା'ଅପେକ୍ଷା ବରଂ ମୋତେ ଦିଅ ।'

କୃଷ୍ଣା ପାଣ୍ଡୋଇ ଖୋଲିବା ମାତ୍ରେ ମୁଁ ତାହା ସାଉଁଟି ଆଣି ବକ୍ଷପୁଟରେ, ମୋର ଉତ୍ତରୀୟ ପ୍ରାନ୍ତରେ ଲୁଚାଇ ରଖିଲି । ଯେମିତି କାହାରି ଦୃଷ୍ଟି ନପଡ଼େ । କୃଷ୍ଣା ସେ ଦିଗକୁ ଦୃଷ୍ଟି ନଦେଇ ଆଗେଇ ଗଲେ ।

କିଛି ସମୟ ପରେ କୃଷ୍ଣା ଓ କୁରୁପିତାମହ ଶିବିର ବାହାରକୁ ଆସିଲେ । ବାହାରେ ନିଶ୍ଛିଦ୍ର ଅନ୍ଧକାର । ପିତାମହ କହିଲେ - 'ଆଶ୍ଚର୍ଯ୍ୟ ! ମୋ ପଦତଳେ ପ୍ରଣାମ କରି କେବଳ ଆଶୀର୍ବାଦ ଟିକିଏ ପାଇବା ଲୋଭରେ ଏତେ ରାତିରେ ତୁମେ ଏକାକିନୀ ଆସିଛ ମା ? ରୁହ ମୁଁ ସେବକକୁ କହେ, ସେ ତୁମକୁ ନିରାପଦରେ ପହଞ୍ଚାଇଦେଇ ଆସିବ ! ପାଞ୍ଚାଳ ତନୟା ସଲଜ୍ଜା ଭାବେ କହିଲେ- 'ମୁଁ ଏକାକୀ ଆସିନାହିଁ ପିତାମହ !'

ତାଙ୍କ କଥା ଶୁଣିବା ମାତ୍ରେ କୁରୁପିତାମହ ଜ୍ୱଳନ୍ତ ମଶାଲଟିଏ ଟେକି ଧରିଲେ । ସେ ଆଲୋକ ମୋର ମୁଖ ମଣ୍ଡଳ ତଥା ମୋର ବକ୍ଷ ଦେଶରେ ଧାରଣ କରିଥିବା ସୁନା ଜରିଦିଆ ରଜତ ଓ ପ୍ରବାଳ ଖଚିତ ପାଞ୍ଚାଳ ତନୟାଙ୍କ ଦୁର୍ଲଭ ପାଣ୍ଡୋଇ ଉପରେ ପଡ଼ି ଚକ୍‌ଚକ୍ କରି

ଉଠିଲା । କୁରୁ ପିତାମହ ଯୋଡ଼ ହସ୍ତରେ ପ୍ରଣାମ କଲେ । ବେଶ୍ ବିଜ୍ଞଭାବେ ହସି ଦେଇ କହିଲେ- 'ଯାଅ ମା ପାଞ୍ଚାଳୀ ! ସତ୍ୟସନ୍ଧ ଭୀଷ୍ମର ଆଶୀର୍ବାଦ ମିଥ୍ୟା ହେବ ନାହିଁ । ତୁମ ସୀମନ୍ତର ସିନ୍ଦୂର ବିନ୍ଦୁ ଚିର ଜାଜ୍ଜ୍ୱଲ୍ୟମାନ ରହିବ । ତୁମ ପତିଗଣ ଚିରଂଜୀବୀ ହେବେ । ଗୋବିନ୍ଦ ଯାହାର ସହାୟ, ବିଜୟଲକ୍ଷ୍ମୀ ସେମାନଙ୍କ ହାତ ପାହାନ୍ତାରେ ମା' । ପାଣ୍ଡବ ପ୍ରେୟସୀଙ୍କର ପାଣ୍ଡୋଇକୁ ଯିଏ ବକ୍ଷପୁଟରେ ଧାରଣ କରିପାରନ୍ତି, ତୁମ୍ଭମାନଙ୍କ ପାଇଁ ତାଙ୍କର ଅଦେୟ କିଛି ନାହିଁ ! ନିଶ୍ଚିନ୍ତରେ ଯାଅ ମା - ।'

ନିଶ୍ଛିଦ୍ର ଅନ୍ଧକାରର ପୃଷ୍ଠଭୂମିରେ କୁରୁପିତାମହଙ୍କ ହାତର ଜ୍ୱଳନ୍ତ ମଶାଲ ହିଁ ଏ ଘଟଣାର ସାକ୍ଷୀ ରହିଗଲା ସେଦିନ । ହଁ, ସତ୍ୟସନ୍ଧ, ବ୍ରହ୍ମଚାରୀ ଭୀଷ୍ମଙ୍କ ଆଶୀର୍ବାଦ ମିଥ୍ୟା ହେବାର ନୁହେଁ । (ମୁଁ ଦୂର ଦୃଷ୍ଟି ବଳରେ ଦେଖିପାରୁଥିଲି ସବୁ ଶେଷ ହୋଇଗଲା ପରେ ହିମଗିରିର ତୁଷାରାବୃତ ଶୀତଳ ଶଯ୍ୟାରେ ପଞ୍ଚସ୍ୱାମୀଙ୍କ ସମ୍ମୁଖରେ ସତୀ ଦ୍ରୌପଦୀଙ୍କର ପତନ ହେଉଛି ସର୍ବାଗ୍ରେ !)

ଶିବିରକୁ ଫେରିଆସି ଦେଖିଲି ଅର୍ଜୁନ କୃତକାର୍ଯ୍ୟ ହୋଇ ଫେରି ଆସିଛନ୍ତି । ଦୁର୍ଯ୍ୟୋଧନର ସାଜପୋଷାକରେ ସଜ୍ଜିତ ହୋଇ ବୟୋବୃଦ୍ଧ ପିତାମହଙ୍କ ଦୃଷ୍ଟି ବିଭ୍ରମର ସୁଯୋଗ ନେଇ ତାଙ୍କୁ ପ୍ରତାରଣା କରି ପାଣ୍ଡବନାଶୀ ପଞ୍ଚବାଣ ସହ ଅର୍ଜୁନ ଫେରି ଆସିଛନ୍ତି ।

ତା'ପରଦିନ ସୂର୍ଯ୍ୟୋଦୟ ହେବାମାତ୍ରେ ପାଣ୍ଡବପକ୍ଷ ପ୍ରବଳ ଉତ୍ସାହରେ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇଗଲେ । ଛଳ ବଳରେ ପାଣ୍ଡବନାଶୀ ପଞ୍ଚବାଣ ଅପହୃତ ହୋଇଛି ଜାଣି କୁରୁବାହିନୀ ମଧ୍ୟ ଉତ୍ତେଜିତ ହୋଇ ଉଠିଥିଲେ । ପାଣ୍ଡବ ପକ୍ଷରୁ ସେଦିନ ସର୍ବ ଶତ୍ରୁଜୟୀ ବ୍ୟୂହ ରଚିତ ହୋଇଥିଲା । ଶିଖଣ୍ଡୀହିଁ ରହିଥିଲେ ସମ୍ମୁଖ ଭାଗରେ । ଭୀମ, ଅର୍ଜୁନ, ଦ୍ରୌପଦୀଙ୍କ ପଞ୍ଚପୁତ୍ର, ଅଭିମନ୍ୟୁ, ସାତ୍ୟକୀ, ଚେକିତାନ୍ ଓ ଧୃଷ୍ଟଦ୍ୟୁମ୍ନ ପ୍ରଭୃତି ବ୍ୟୂହର ଚତୁର୍ଦ୍ଦିଗରେ ରହିଲେ । ଯୁଧିଷ୍ଠିର, ନକୁଳ, ସହଦେବ, ବିରାଟ ରାଜ, କୈକେୟ ପଞ୍ଚଭ୍ରାତା, ଧୃଷ୍ଟକେତୁ ପୃଷ୍ଠଭାଗରେ ରହିଲେ । ଅପର ପକ୍ଷରେ କୁରୁବାହିନୀର ସର୍ବାଗ୍ରେ କୁରୁପିତାମହ, ହସ୍ତିନା ସିଂହାସନର ରକ୍ଷକ ଭୀଷ୍ମ - ଦୁର୍ଯ୍ୟୋଧନ, ଦ୍ରୋଣ, ଅଶ୍ୱତ୍ଥାମା, କୃପ, ଭଗଦତ୍ତ, କୃତବର୍ମା, ଶକୁନୀ ଓ ବୃହଦ୍‌ବଳ ପ୍ରଭୃତି ତାଙ୍କର ପୃଷ୍ଠଭାଗରେ ରହିଲେ । ଓଃ ! ସେ କି ଭୀଷଣ ସଂଗ୍ରାମ । ଧରଣୀଠାରୁ ଅନ୍ତରୀକ୍ଷଯାଏ ସବୁ ଯେମିତି ପ୍ରକଂପିତ ହେଉଥିଲା । ହଠାତ୍ ଶିଖଣ୍ଡୀ ସୁତୀକ୍ଷଣ ନଅଗୋଟି ତୀର ସଂଯୋଜନା କରି ଗଗନ ପବନ ପ୍ରକଂପିତ କରି ଚିତ୍କାର କରିଉଠିଲେ ଉନ୍ମତ୍ତ ସଦୃଶ । ଆଶ୍ଚର୍ଯ୍ୟ କୁରୁ ପିତାମହ କୌଣସି ଅସ୍ତ୍ର ନିକ୍ଷେପ କଲେ ନାହିଁ କିମ୍ବା ଆତ୍ମରକ୍ଷାର ଚେଷ୍ଟା ମଧ୍ୟ କଲେ ନାହିଁ । କେବଳ ଏତିକି କହିଲେ - 'ଶିଖଣ୍ଡିନୀ ! ତୁମେ ନାରୀ ! ନାରୀ ମୋର ଅବଧ୍ୟ !'

ମାତ୍ର ଶିଖଣ୍ଡୀ ସେତେବେଳକୁ ପ୍ରଳୟ ଅନଳ ନ୍ୟାୟର କ୍ରୋଧାଗ୍ନିରେ ପ୍ରଜ୍ୱଳିତ ହୋଇ ଚିତ୍କାର କରି କହୁଥିଲେ - 'ଏହି ନଅଗୋଟି ତୀରରୁ ଗୋଟିଏ କାଶୀରାଜତନୟା ଅନ୍ୟପୂର୍ବା ଅମ୍ବାକୁ ବୀର୍ଯ୍ୟ ଶୁଳ୍କା ଭାବେ ଅପହରଣ କରିବାଯୋଗୁ, ଆଉ ଗୋଟିଏ ସୌଭପତି ଶାଲ୍ୱଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତା ହେବା ହେତୁ, ଆଉ ଗୋଟିଏ ଅମ୍ବାର ବରମାଲ୍ୟକୁ ତୁମେ ଫେରାଇ ଅପମାନ କରିଥିବା ହେତୁ, ଆଉ ତିନୋଟି ତୀର ପଠାଇ ଶିଖଣ୍ଡୀର କ୍ରିୟା କଳାପ ଉପରେ ସତର୍କ ଦୃଷ୍ଟି ରଖିଥିବା ହେତୁ, ଆଉ ଗୋଟିଏ ଦଶାର୍ଣ୍ଣ ରାଜାଙ୍କ ଦ୍ୱାରା ଶିଖଣ୍ଡୀ ଅପମାନିତ ହୋଇଥିବା ହେତୁ, ଆଉ ଗୋଟିଏ ମୋର ଭଉଣୀ ପାଞ୍ଚାଳୀ ଅପମାନର ନୀରବଦ୍ରଷ୍ଟା ରହିଥିବା ହେତୁ ଏବଂ ଶେଷରେ ଅମ୍ବାର ଜୀବନ, ଯୌବନ, ଦୁଇ ଦୁଇଟା ଜନ୍ମକୁ ବ୍ୟର୍ଥ, ବିପର୍ଯ୍ୟସ୍ତ କରିଥିବା ହେତୁ ଏହି ନଅଟି ତୀରରୁ ଆଜି ତୁମକୁ କେହି ରକ୍ଷା କରି ପାରିବେ ନାହିଁ । ଜନ୍ମରୁ ଜନ୍ମାନ୍ତରଯାଏ ମୁଁ ପ୍ରତୀକ୍ଷା କରୁଥିଲି ଆଜିର ଏଇ ଚରମ ଲଗ୍ନଟିକୁ ।'

ତଥାପି କୁରୁପିତାମହ କୌଣସି ଅସ୍ତ୍ର ପ୍ରୟୋଗ କଲେ ନାହିଁ । ଅନ୍ୟପକ୍ଷରେ ଶିଖଣ୍ଡୀଙ୍କ ପୃଷ୍ଠଭାଗରେ ରହି ଅର୍ଜ୍ଜୁନ ଅସଂଖ୍ୟ ତୀକ୍ଷ୍ଣ ନାରାଚ ନିକ୍ଷେପ କରୁଥିଲେ ପିତାମହଙ୍କ ପ୍ରତି । ତାଙ୍କ ଶରୀରର ଆଉ କୌଣସି ଅଂଶ ଖାଲି ନଥିଲା ।

ତଥାପି କୁରୁପିତାମହ କୌଣସି ଅସ୍ତ୍ର ପ୍ରୟୋଗ କଲେ ନାହିଁ । ଉଭୟ ପକ୍ଷ ଅସ୍ତ୍ର ତ୍ୟାଗକରି ଅଭିଭୂତ ଭଳି ଦେଖୁଥିଲେ କେବଳ, ଶିଖଣ୍ଡୀକୁ ସମ୍ମୁଖରେ ରଖି ଯେକୌଣସି ଦୁର୍ବଳ ଭୀରୁ ମଧ୍ୟ ଯଦି ଅସ୍ତ୍ରାଘାତ କରିଥା'ନ୍ତା ତେବେ ବି ସତ୍ୟସନ୍ଧ ଭୀଷ୍ମ ପ୍ରତିରୋଧ କରିନଥା'ନ୍ତେ ନିଶ୍ଚୟ ।

ଅବଶେଷରେ ଅବିଶ୍ୱାସ୍ୟ ହେଲେ ସୁଦ୍ଧା ଶୁଭ୍ର ହିମାଦ୍ରି ସଦୃଶ ଶୁକ୍ଳ କେଶ ଯୁକ୍ତ ବୃଦ୍ଧ ସତ୍ୟସନ୍ଧ ଭୀଷ୍ମଙ୍କର ପତନ ହେଲା । ପୂର୍ବ ଦିଗକୁ ମଥା ଢଳି ପଡ଼ିଲା, ଶରୀରର କୌଣସି ଅଂଶ ଭୂମିସ୍ପର୍ଶ କଲାନାହିଁ । ଶରଶଯ୍ୟାରେ ଶୟନ କରିବା ଅବସ୍ଥାରେ କୁରୁପିତାମହ ରୋରୁଦ୍ୟମାନ ଅର୍ଜ୍ଜୁନଙ୍କୁ ଚାହିଁ ସସ୍ନେହରେ କହିଲେ - 'ଉପଯୁକ୍ତ ଶଯ୍ୟା ମୋ ପାଇଁ ପ୍ରସ୍ତୁତ କରିଛ ବତ୍ସ ! ଏହାହିଁ ମୋର ଚିରବାଂଛିତ ଶଯ୍ୟା । କିନ୍ତୁ ମସ୍ତକ ନିମ୍ନଭାଗକୁ ଝୁଲି ପଡୁଛି । ଉପାଧାନ ଆବଶ୍ୟକ । ଶର ନିପୀଡ଼ିତ ଏହି ରୁଧିରାକ୍ତ ବୃଦ୍ଧ ଶରୀରର ଶ୍ରାନ୍ତି ଅପନୋଦନ ନିମିତ୍ତ ଶୀତଳ ଜଳ ପାନ କରିବା ଆବଶ୍ୟକ ବତ୍ସ । କିନ୍ତୁ ମନେ ରଖ । ମୋର ପତନ ହୋଇସାରିଛି । କୌଣସି ମାନବୀୟ ରୀତି ଅନୁସାରି ଜଳରେ ମୋର ଆବଶ୍ୟକ ନାହିଁ । ସୂର୍ଯ୍ୟଙ୍କର ଦକ୍ଷିଣାୟନ ଗତିରେ ମୁଁ ଦେହତ୍ୟାଗ କରିବି ନାହିଁ । ସୂର୍ଯ୍ୟଙ୍କର ଉତ୍ତରାୟଣ ଗତିପର୍ଯ୍ୟନ୍ତ ମୋତେ ପ୍ରାଣ ଧାରଣ କରିବାକୁ ପଡ଼ିବ ଧନଞ୍ଜୟ । ତୃଷାରେ କଣ୍ଠ ମୋର ବିଶୁଷ୍କ ପାନୀୟ ଜଳର କେବଳ ବ୍ୟବସ୍ଥା କର ।'

ଉଭୟ ପକ୍ଷରେ ବହୁ ତତ୍ପରତା ପ୍ରକାଶ ପାଇଲା । ମାତ୍ର ଅର୍ଜ୍ଜୁନ ତିନିଗୋଟି ତୀକ୍ଷ୍ଣ ତୀର କୁରୁପିତାମହଙ୍କ ମସ୍ତକତଳେ ଏଭଳି ଭାବେ ସଂଯୋଜନା କରି ରଖିଲେ ଯାହାକି ଯେତେ ରକ୍ତକ୍ଷୟକାରୀ ହେଲେ ସୁଦ୍ଧା ଉପାଧାନର କାର୍ଯ୍ୟ କଲା ଏବଂ ପର୍ଜ୍ଜନ୍ୟାସ୍ତ୍ର ପ୍ରୟୋଗ ଦ୍ୱାରା ପୃଥିବୀର ବକ୍ଷବିଦ୍ଧ କରି ପତିତପାବନୀ ଗଂଗାଙ୍କର ଯେଉଁ ସ୍ରୋତ ପାତାଳକୁ 'ଭୋଗବତୀ' ଭାବେ ପ୍ରବାହିତ ହୋଇଯାଇଥିଲା ସେଥିରୁ ଧାରେ ପିତାମହ ଭୀଷ୍ମଙ୍କ ଅଧର ପ୍ରାନ୍ତରେ ବିନ୍ଦୁ ବିନ୍ଦୁ ଭାବେ ବର୍ଷିତ ହେବାକୁ ଲାଗିଲା । ତା'ର ସୁଗନ୍ଧ ଓ ଶୀତଳତାରେ କୁରୁପିତାମହ ଶାନ୍ତି ଲାଭ କଲେ ।

ସୂର୍ଯ୍ୟାସ୍ତ ହେବାକୁ ବିଳମ୍ବ ଥିଲେ ସୁଦ୍ଧା ଉଭୟ ପକ୍ଷରେ ଏଭଳି ଅକଳ୍ପନୀୟ ଆକସ୍ମିକ ଘଟଣାରେ ଯୁଦ୍ଧରେ ରୁଚି ଓ ପ୍ରବୃତ୍ତି ନଥିଲା । ପ୍ରତ୍ୟେକ ଅସ୍ତ୍ର ତ୍ୟାଗ କରିଥିଲେ । ଦୁର୍ଯ୍ୟୋଧନ ଦିଗଭ୍ରଷ୍ଟ ଭଳି ପିତାମହଙ୍କ ପଦପ୍ରାନ୍ତରେ ଅଶ୍ରୁପୂରିତ ଲୋଚନରେ ଠିଆ ହୋଇ ରହିଥିଲେ । ପାଣ୍ଡବ ପଞ୍ଚଭ୍ରାତାଙ୍କ ନୟନରୁ ଅବିରଳ ଧାରାରେ ଅଶ୍ରୁ ବର୍ଷିତ ହେଉଥିଲା । ଆହୁରି ଅଭାବନୀୟ ଘଟଣା ସେଦିନ ଆକସ୍ମିକ ଭାବେ ଘଟି ଯାଇଥିଲା । ଶରଶଯ୍ୟାରେ ଶାୟିତ କୁରୁପିତାମହ ଭୀଷ୍ମଙ୍କ ନିକଟକୁ ସେଦିନ ନିର୍ଜନ ନିଶିଚେ ଅଂଗରାଜ କର୍ଣ୍ଣ ଆସିଥିଲେ ନଗ୍ନପାଦରେ । ଏମାନେ ପରସ୍ପର ପ୍ରତି ଚିର ବିଦ୍ୱେଷ ପରାୟଣ; ଅଥଚ କାହାରି ମନରେ ସେଦିନ ବିନ୍ଦୁଏ ବି ବିଦ୍ୱେଷର ବିଷବାଷ୍ପ ନଥିଲା । କୁରୁପିତାମହ ଭୀଷ୍ମ ପ୍ରଥମଥରପାଇଁ କର୍ଣ୍ଣଙ୍କୁ 'କୁନ୍ତୀନନ୍ଦନ' ବୋଲି ସମ୍ବୋଧନ କରିଥିଲେ ଏବଂ କର୍ଣ୍ଣ କୁରୁଶ୍ରେଷ୍ଠଙ୍କୁ 'ଗଂଗାପୁତ୍ର' ପରିବର୍ତ୍ତେ ପ୍ରଥମ ଥରପାଇଁ 'ପିତାମହ' ବୋଲି ସମ୍ବୋଧନ କରିଥିଲେ ।

ତାପରଦିନ ପ୍ରତ୍ୟୁଷରେ କୌରବ ବାହିନୀର ସେନାପତି ଭାବେ ଗୁରୁ ଦ୍ରୋଣାଚାର୍ଯ୍ୟ ହିଁ ଅବତୀର୍ଣ୍ଣ ହେଲେ । କୃଷ୍ଣ ସାର ମୃଗ ଚର୍ମରେ ଆବୃତ ତାଙ୍କର ରଥ, ସେଥିରେ ରଜତ ଶୁଭ୍ର କମଣ୍ଡଳୁ ଚିହ୍ନ ଚିହ୍ନିତ । ପତଙ୍ଗ ଯେଉଁଭଳି ସ୍ୱତଃ ଅଗ୍ନିରେ ଝାସ ଦିଏ ଏହି ପରାକ୍ରମୀ ବୀରଗଣ ଠିକ୍ ସେଇଭଳି ଆପଣାକୁ ବଳି ଦେଉଥିଲେ । ଯୁଦ୍ଧର ଏକାଦଶ ଦିବସରୁ ପଞ୍ଚଦଶ ଦିବସ ପର୍ଯ୍ୟନ୍ତ ଦ୍ରୋଣାଚାର୍ଯ୍ୟଙ୍କ ସେନାପତିତ୍ୱ ଯେ କେତେ ଦୁର୍ଭାଗ୍ୟଜନକ । ମର୍ମନ୍ତୁଦ ଦୁର୍ଘଟଣା ଘଟିଯାଇଥିଲା । ତେବେ ଅର୍ଜ୍ଜୁନଙ୍କୁ ମୁଁ ଯୁଦ୍ଧାରମ୍ଭ ପୂର୍ବରୁ କହିଥିଲି -

'ସର୍ବ ଧର୍ମାନ୍ ପରିତେଜ୍ୟ
ମାମେକଂ ଶରଣଂ ବ୍ରଜ !'

ଏହାହିଁ ସତ୍ୟ । ପ୍ରାଗ୍ ଜ୍ୟୋତିଷପୁରର ଅଧିପତି ଭଗଦତ୍ତ ବୀର ବିକ୍ରମରେ ଅର୍ଜ୍ଜୁନଙ୍କ ସହ ଯୁଦ୍ଧ କରୁ କରୁ ହଠାତ୍ ପରାଭବ ଆଶଙ୍କାରେ ଅଭିମନ୍ତ୍ରିତ ବୈଷ୍ଣବାସ୍ତ୍ର ନିକ୍ଷେପ କଲେ । କର୍ଣ୍ଣ

ନିକ୍ଷିପ୍ତ ବ୍ରହ୍ମାସ୍ତ୍ରକୁ ଘଟୋତ୍କଚ ସମ୍ମାନ ଦେଇଥିଲେ । ଭଗଦତ୍ତ ନିକ୍ଷିପ୍ତ ବୈଷ୍ଣବାସ୍ତ୍ରକୁ ମୁଁ ନିଜେ ମୋ ଗଳାରେ ବୈଜୟନ୍ତୀମାଳ କରି ପରିଧାନ କରିଥିଲି । ଅସ୍ତ୍ର ସମ୍ମୁଖରେ ମୋର ନତମସ୍ତକ ହେବା ହୁଏତ ଧନଞ୍ଜୟଙ୍କୁ ଅସନ୍ତୁଷ୍ଟ କରିଥିଲା । ମୁଁ ଜାଣିଥିଲି ସାରଥୀର ଧର୍ମ କେବଳ ରଥ ଚାଳନା କରିବା; କିନ୍ତୁ ମୁଁ ତ ଅସ୍ତ୍ରାଘାତକୁ ଆପଣାଛାଏଁ ଆଦରି.ନେଇଥିଲି ! ଏହାଦ୍ୱାରା ମୋର ସତ୍ୟଭଂଗ ହେବା ଆଶଙ୍କାରେ ଅର୍ଜ୍ଜୁନ କ୍ଷୁନ୍ନ ହୋଇ ଉଠିଥିଲେ । ମୁଁ ତାଙ୍କୁ ପ୍ରବୋଧନା ଦେବାଛଳରେ କହିଥିଲି - 'ସଖା ! ମୁଁ ନିଜେ ଚାରି ରୂପରେ ବିଭକ୍ତ । ଗୋଟିଏ ରୂପରେ ମୁଁ ତପସ୍ୱୀ, ଦ୍ୱିତୀୟ ରୂପରେ ସତ୍-ଅସତ୍ କର୍ମର ମୁଁ ନୀରବ ଦ୍ରଷ୍ଟା ମାତ୍ର, ତୃତୀୟ ରୂପରେ ମନୁଷ୍ୟ ଲୋକରେ ସମସ୍ତ ମାନବୀୟ କର୍ମ, ମାନବିକ ଆବେଦନରେ ମୁଁ ଜଡ଼ିତ । ଚତୁର୍ଥ ରୂପରେ ସହସ୍ର ବର୍ଷ ପର୍ଯ୍ୟନ୍ତ ମୁଁ ଯୋଗନିଦ୍ରାରେ ନିଦ୍ରିତ । ସେ ନିଦ୍ରା ସହସ୍ର ବର୍ଷ ପରେ ଭଂଗ ହେଲେ ଯୋଗ୍ୟତମ ବ୍ୟକ୍ତି ବାଂଛିତ ଅଭିଳାଷ ପୂରଣ ନିମିତ୍ତ ମୋତେ ପ୍ରାର୍ଥନା କରିଥା'ନ୍ତି । ସେଇଭଳି ଏକ ଅବସରରେ ପୃଥିବୀ ମାତାର ପ୍ରାର୍ଥନାରେ ତା'ର ପୁତ୍ର ନରକକୁ ଏହି ବୈଷ୍ଣବାସ୍ତ୍ର ମୁଁ ଅର୍ପଣ କରିଥିଲି । ଏ ଅସ୍ତ୍ର ନରକାସୁର ଠାରୁ ପ୍ରାଗ୍ ଜ୍ୟୋତିଷପୁରର ଅଧିପତି ଭଗଦତ୍ତ ପ୍ରାପ୍ତ ହୋଇଥିଲେ । ଏହି ଶକ୍ତିଶାଳୀ ଅସ୍ତ୍ର ଅମୋଘ । ତ୍ରିଭୁବନରେ କୌଣସି ବୀର ବା ରଣ କୌଶଳ ଏହାର ସମକକ୍ଷ ନୁହେଁ । ଏହି ପରମାସ୍ତ୍ରକୁ ମୁଁ ଯଦି ମାଲ୍ୟଭାବେ ଗ୍ରହଣ କରିନଥା'ନ୍ତି ତେବେ ପାଣ୍ଡବଙ୍କ ବିଜୟ ଆଶା ଆଜିହିଁ ସମାପ୍ତ ହୋଇଥା'ନ୍ତା । ସେତେବେଳକୁ ଇନ୍ଦ୍ରପ୍ରସ୍ଥର ଗିରିମାଳା ଅନ୍ତରାଳରେ ସୂର୍ଯ୍ୟ ଦେବ ଅସ୍ତାଚଳକୁ ଯାତ୍ରା କରୁଥିଲେ । ଅର୍ଜ୍ଜୁନଙ୍କର ବିସ୍ମୟ ବିସ୍ଫାରିତ ଲୋଚନରେ ଜଳ ଛଳ ଛଳ ହେଉଥିଲା ।

ରାତି ପାହି ପ୍ରଭାତ ହୋଇନାହିଁ । ଅତି ପ୍ରତ୍ୟୁଷରୁ ମୁଁ ପ୍ରସ୍ତୁତ ହୋଇ କପିଧ୍ୱଜ ରଥର ଚକ ଗୁଡ଼ିକୁ ପରୀକ୍ଷା କରୁଥିଲି । ହଠାତ୍ ଲକ୍ଷ୍ୟ କଲି ଅତି ସାବଧାନତାର ସହ ଶିବିର ବାହାରକୁ ଅଭିମନ୍ୟୁ ଆସିଲା । ମୋ ନିକଟକୁ ଆସି ବିନମ୍ର ଭାବେ କହିଲା - 'ମାତୁଳ ! ମୁଁ ସବୁଠାରୁ କ୍ଷିପ୍ରଗାମୀ ଅଶ୍ୱ 'ଅନୀଳ'କୁ ନେଇ ଉପପ୍ଳବ୍ୟ ନଗରୀ ଯାଆନ୍ତି । ସେଠାରୁ ଫେରିବା ପରେ ଯୁଦ୍ଧ ଯାତ୍ରା କଲେ ହୁଅନ୍ତାନି ?'

ମୁଁ ତା'ର ମସ୍ତକକୁ ସସ୍ନେହରେ ଚୁମ୍ବନ କଲି ଓ ପ୍ରଶ୍ନ କଲି - 'ହଠାତ୍ ଉପପ୍ଳବ୍ୟ ନଗରୀ ?'

ସେ କହିଲା - ଆଜିଭାରୀ ଇଚ୍ଛା ହେଉଛି ଜନନୀ ଦ୍ରୌପଦୀ ଓ ଜନନୀ ସୁଭଦ୍ରାଙ୍କୁ ନିଜେ ଯାଇ ଦେଖା କରି ଆସନ୍ତି ।'

ତାକୁ ଚାହିଁ ମୁଁ ରହସ୍ୟପୂର୍ଣ୍ଣ ଭାବେ ହସିଲି । ମୁଁ ଜାଣେ ଅଭିମନ୍ୟୁର ପତ୍ନୀ ବିରାଟନନ୍ଦିନୀ ଉତ୍ତରା ଆସନ୍ନ ପ୍ରସବା । ଏହି ନବୋଢ଼ା କିଶୋରୀ ବଧୂଟିର ସ୍ମୃତି ନିଶ୍ଚିତ

ଭାବରେ ଅଭିମନ୍ୟୁ ମନରେ ପ୍ରବଳ ଆଲୋଡ଼ନ ସୃଷ୍ଟି କରିଛି । ତା'ର ସଳଜ୍ଜ ଦୃଷ୍ଟି ପ୍ରାନ୍ତରେ ତାହାହିଁ ଲିପିବଦ୍ଧ; କିନ୍ତୁ ତା'ର ଲଲାଟରେ ଯେମିତି ଭିନ୍ନ ଏକ ଭାଷା, ଭିନ୍ନ ଏକ ସିଦ୍ଧାନ୍ତ ଲିପିବଦ୍ଧ ଯେ ! ମୁଁ ମୃଦୁହସି ତାକୁ କହିଲି - 'ଆଜିହିଁ ତ ତୁମେ ଅକ୍ଷୟ ଯଶର ଅଧିକାରୀ ହେବ ପୁତ୍ର ! ଯଶସ୍ୱୀ ପୁତ୍ରକୁ ଦେଖିବା ପାଇଁ ତୁମ ଜନନୀ ଗଣତ ନିଶ୍ଚୟ ଆସିବେ !'

ପରେ ବହୁବାର ଭାବିଛି, କାହିଁକି ତାକୁ ସେଦିନ ନିଷେଧ କଲି ମୁଁ ? ଉତ୍ତରା ସହ ଅନ୍ତିମ ସାକ୍ଷାତ ହୋଇଥିଲେ କ'ଣ ବା କ୍ଷତି ହୋଇଥା'ନ୍ତା ?

ଅଭିମନ୍ୟୁ କିଛି ସମୟ ଚିନ୍ତା କରି ତା'ର ସ୍ୱତନ୍ତ୍ର ସେବକ ହାତରେ ଏକ ଗୁଚ୍ଛ ବ୍ରଜ ମଲ୍ଲିକା ଦେଇ କହିଲା - 'ତୁମ ଯୁବରାଣୀ ଉତ୍ତରାଙ୍କୁ ଦେଇ ଆସିବ ।'

କିଏ ଜାଣେ ? ଏଇ ଶ୍ୱେତ ବ୍ରଜ ମଲ୍ଲିକା ଗୁଚ୍ଛ ଅଭିମନ୍ୟୁ ଓ ଉତ୍ତରାଙ୍କର ଦାଂପତ୍ୟ ପ୍ରୀତିର କେଉଁ ପୁଲକଭରା ପ୍ରତୀକ ବହନ କରିଛି ? ହୁଏତ ତା'ର ଅର୍ଥ କେବଳ ଉତ୍ତରା ହିଁ ଜାଣନ୍ତି । ମୁଁ ସେଦିନ ସଂପୂର୍ଣ୍ଣ ନୀରବ ଓ ଉଦାସ ଥିଲି । ସଖା ଅର୍ଜ୍ଜୁନ କବଚ ପିନ୍ଧାଇବା ବେଳେ କହୁଥିଲେ - 'ଜାଣ ଅଭିମନ୍ୟୁ ! କବଚ ପରିଧାନର ଏଇ ସ୍ୱତନ୍ତ୍ର ଶୈଳୀ ମୋତେ ଗୁରୁ ଦ୍ରୋଣାଚାର୍ଯ୍ୟହିଁ ଶିକ୍ଷା ଦେଇଛନ୍ତି । ଏହା ଶତ୍ରୁର ଅଭେଦ୍ୟ । ସେଇଥି ପାଇଁତ ମୁଁ ନିଜେ ସ୍ୱହସ୍ତରେ ତୁମକୁ ବର୍ମ କବଚ ଧାରଣ କରାଏ ।'

ମୁଁ ନିର୍ବିଷ୍ଟ ଭାବେ ପିତାପୁତ୍ରଙ୍କୁ ଚାହିଁ ରହିଥିଲି କେବଳ । ମୋ ଦୃଷ୍ଟି ଉଦାସ ବିଷର୍ଣ୍ଣ ହୋଇ ଯାଇଥିଲା । ରଣ ବାଦ୍ୟ ମୋର ଅନ୍ୟମନସ୍କତା ଭାଂଗି ଦେଇଥିଲା ଓ ମୁଁ କପିଧ୍ୱଜ ରଥ ନିକଟକୁ ଚାଲି ଆସିଥିଲି ।

ସେଦିନ ସଂଗ୍ରାମର ଭୀଷଣତା ଓ ଅମାନୁଷିକତା ଏଭଳି ସ୍ମରଣୀୟ ଯେ ଏହାକୁ କାଳର କୌଣସି କୂଟ ଚକ୍ରାନ୍ତ ଲିଭାଇ ପାରିବ ନାହିଁ । ଯୁଦ୍ଧ ଆରମ୍ଭ ହେଉ ହେଉ ତ୍ରିଗର୍ତ୍ତରାଜ ସୁଶର୍ମା ଓ ସଂଶପ୍ତକ ବାହିନୀ ଅର୍ଜ୍ଜୁନଙ୍କ ଭଳି ତ୍ରିଭୁବନଜୟୀ ବୀରଙ୍କୁ ଏଭଳି କଟୂବାକ୍ୟରେ ଯୁଦ୍ଧର ଆହ୍ୱାନ ଦେଲେ ତାହା ଶୁଣି କୌଣସି ବୀର ଯୁଦ୍ଧ ବିମୁଖ ହୋଇପାରିବ ନାହିଁ । ହଁ, ଜଗତ ମୋତେ ଦୋଷାରୋପ କରୁ ପଛେ ମୁଁ ଜାଣିଥିଲି ଏ ଆହ୍ୱାନ ସଂଶପ୍ତକଗଣଙ୍କର ବୃଥା ଆସ୍ଫାଳନ ମାତ୍ର; ବରଂ ଏହାପଛରେ ପାଣ୍ଡବଙ୍କ ମନୋବଳକୁ ଭାଙ୍ଗି ଦେବାପାଇଁ ଏକ ସୁଚିନ୍ତିତ ଷଡ଼ଯନ୍ତ୍ର ପ୍ରସ୍ତୁତ ହୋଇରହିଥିଲା । ଯାହା ମହାକାଳର ନିର୍ଦ୍ଦେଶ - ତା' ଅଲଂଘ୍ୟ ! ମୁଁ କ'ଣ କରି ପାରିଥା'ନ୍ତି ? ଫୁଲ ଫୁଟେ ଝରିବା ପାଇଁ, ଦିନ ଆରମ୍ଭ ହୁଏ ଶେଷ ହେବା ପାଇଁ । ଭଂଗୁର ଜୀବନରେ ଏହାହିଁ ତ ସତ୍ୟ । କୌରବଙ୍କର ପ୍ରକୃତ ଉଦ୍ଦେଶ୍ୟ ଥିଲା ରଣଭୂମିଠାରୁ ବହୁ ଦୂରକୁ ଅର୍ଜ୍ଜୁନଙ୍କୁ ନେଇଯିବା - ଏତେ ଦୂରକୁ ଯେ ଯେମିତି ସୂର୍ଯ୍ୟାସ୍ତ ପୂର୍ବରୁ ସେ ପହଞ୍ଚିପାରିବେ

ନାହିଁ ଏବଂ ସେଇ ସମୟ ଭିତରେ ସେନାପତି ଦ୍ରୋଣାଚାର୍ଯ୍ୟ ଏଭଳି ଏକ ଦୁର୍ଭେଦ୍ୟ ବ୍ୟୁହ ରଚନା କରିବେ, ଯାହା ଭେଦ କରିବା ପାଣ୍ଡବଙ୍କ ସହଜସାଧ୍ୟ ନୁହେଁ । ଗୁରୁହିଁ ତ ଜାଣେ ଶିଷ୍ୟର ଦୁର୍ବଳତା ।

ଆଚାର୍ଯ୍ୟ ଦ୍ରୋଣ ! ଜୀବନରେ ତୁମେ ଦୁଇଗୋଟି ଚରମ ଅପରାଧ କରିଛ । ଗୋଟିଏ ଶିଷ୍ୟ ଅର୍ଜ୍ଜୁନଙ୍କୁ ସମଗ୍ର ଆର୍ଯ୍ୟାବର୍ତ୍ତରେ ଶ୍ରେଷ୍ଠ ଧନୁର୍ବୀଦ୍ ଭାବେ ପ୍ରତିଷ୍ଠା କରିବା ପାଇଁ ଏକନିଷ୍ଠ ସାଧକ ଏକଲବ୍ୟର ଦକ୍ଷିଣ ହସ୍ତର ବୃଦ୍ଧାଙ୍ଗୁଷ୍ଠି କାଟିନେଇଛ । ସୁମହାନ୍ ଗୁରୁ ପରଂପରାରେ ଏକ କଳଙ୍କ ସୃଷ୍ଟି କରିଛ ! ଆଉ ଏକ ଅପରାଧ ହେଉଛି ଶିଷ୍ୟ ଅର୍ଜ୍ଜୁନଙ୍କ ଅବର୍ତ୍ତମାନରେ ଚକ୍ରବ୍ୟୁହ ରଚନାର ହୀନ ଚକ୍ରାନ୍ତ । ସେଇ ଚକ୍ରବ୍ୟୁହରେ ଗୋଟିଏ ସୁକୁମାର ନବଯୁବକକୁ ବର୍ବରୋଚିତ ଆକ୍ରମଣ କଲାବେଳେ ଶିଷ୍ୟ ଅର୍ଜ୍ଜୁନର କାତର ମୁହଁଟି ତୁମର ମନେ ପଡ଼ିଲାନାହିଁ କେମିତି ? ଯୁଧିଷ୍ଠିରଙ୍କ ସମ ନ୍ୟାୟବନ୍ତ ଓ ଧୈର୍ଯ୍ୟଶାଳୀ, ଭୀମଙ୍କ ସମ ଭୀମକର୍ମା, ଅର୍ଜ୍ଜୁନଙ୍କ ସମ ତେଜସ୍ୱୀ ଓ ଶାସ୍ତ୍ରଜ୍ଞ ତଥା ଅସ୍ତ୍ର ଚାଳନାରେ କ୍ଷିପ୍ରହସ୍ତତା, ନକୁଳଙ୍କ ସମ ରୂପବାନ୍, ସହଦେବଙ୍କ ସମ ବିନୟୀ ତଥା ମୋ ଭଳି ଚାରିତ୍ରିକ ଦୃଢ଼ତା ସଂପନ୍ନ ଏହି ଅଲୌକିକ ପରାକ୍ରମ ଶାଳୀ, ଅପ୍ରତିଦ୍ୱନ୍ଦୀ ବୀର ଅଭିମନ୍ୟୁଙ୍କୁ ମିଳିତ ଭାବେ ପ୍ରବୀଣ, ବୟସ୍କ ସପ୍ତରଥୀଙ୍କ ହୃଦୟରେ କୌଣସି ବିଚଳନ ହେଲାନାହିଁ କିପରି ? ଆଚାର୍ଯ୍ୟ ଦ୍ରୋଣ ! ତୁମେ ନା ବ୍ରାହ୍ମଣ ? ବେଦଜ୍ଞ ଭରଦ୍ୱାଜ ମୁନିଙ୍କ ତନୟ ? ଏତେ ବଡ଼ ଅପକର୍ମ କଲାବେଳେ ତୁମ ହୃଦୟ ବି କଂପିତ ହେଲା ନାହିଁ କିପରି ?

ସୋମ ତନୟ ବର୍ଚ୍ଚ ହିଁ ପରଜନ୍ମରେ ସୁଭଦ୍ରା ନନ୍ଦନ ଅଭିମନ୍ୟୁଭାବେ ଯେତେବେଳେ ଜନ୍ମ ଗ୍ରହଣ କରିଥିଲେ ସେତେବେଳେ ସିଏତ ସଦ୍‌ଗୁଣଶାଳୀ ହେବା ନିଶ୍ଚିତ ଥିଲା । କିନ୍ତୁ ମୁଁ ? କେତେ ବୀର ଏହି ମହାଯଜ୍ଞରେ ଜୀବନାହୂତି ଦେଇଛନ୍ତି । ଏହି ନବଯୁବକର ମୃତ୍ୟୁଟି ମୋତେ ଏମିତି ବିଚଳିତ କରିପକାଇଲା କାହିଁକି ? କାହିଁକି ମୁଁ ଆଜି ପର୍ଯ୍ୟନ୍ତ ନିଜକୁ କ୍ଷମା କରିପାରିଲି ନାହିଁ ?

ହଁ, ତ୍ରିଗର୍ତ୍ତରାଜ ସୁଶର୍ମା ତଥା ସଂଶପ୍ତକ ବାହିନୀର ଆହ୍ୱାନରେ ରଣଭୂମିର ଦକ୍ଷିଣକୁ ବହୁ ଯୋଜନ ଦୂରକୁ ସଖା ପାର୍ଥଙ୍କ ନିର୍ଦ୍ଦେଶରେ ମୁଁ କପିଧ୍ୱଜ ରଥ ବାହି ନେଇଥିଲି । ସଂଶପ୍ତକ ବାହିନୀ ପରାସ୍ତ ହେବା ପରେ ଆମେ ଫେରି ଆସିଥିଲୁ । ସୂର୍ଯ୍ୟାସ୍ତ ଆସନ୍ନପ୍ରାୟ । ମୁଁ ସଂପୂର୍ଣ୍ଣ ନୀରବ ଥିଲି । ପାଣ୍ଡବ ଶିବିର ନିକଟରେ ପହଞ୍ଚି ଦେଖିଲୁ ଚତୁର୍ଦ୍ଦିଗରେ ଅସ୍ୱାଭାବିକ ସ୍ତବ୍ଧତା । ସବୁଦିନ ଭଳି ଅଭିମନ୍ୟୁ ଧାଇଁ ଆସି ଅର୍ଜ୍ଜୁନଙ୍କୁ କହିଲା ନାହିଁ ଯେ - 'ପିତା ମୋର କବଚ ଖୋଲି ଦିଅନ୍ତୁ ! ଆପଣଙ୍କ ଗାଣ୍ଡିବ ଧନୁକୁ ମୋ ହାତକୁ ଦିଅନ୍ତୁ, ମୁଁ ଯଥା ସ୍ଥାନରେ ରଖିଦେବି ।' ଅର୍ଜ୍ଜୁନ ଚତୁର୍ଦ୍ଦିଗକୁ ଥରେ ଉଦ୍‌ଭ୍ରାନ୍ତ ଭଳି ଲକ୍ଷ୍ୟ କରି ଉଚ୍ଚ କଣ୍ଠରେ ଚିତ୍କାର କଲେ - 'ଅଭିମନ୍ୟୁ !!!'

ସମଗ୍ର ପାଣ୍ଡବ ଶିବିର ଲୁହ ଆଉ କୋହରେ ଭାଂଗି ପଡ଼ିଲା । ଭୀମସେନ ଅସହାୟ ଶିଶୁଭଳି କାନ୍ଦି ଉଠିଲେ । ପ୍ରାଜ୍ଞ ଧର୍ମରାଜ ମଧ୍ୟ ଅଶ୍ରୁସମ୍ବରଣ କରି ପାରୁନଥା'ନ୍ତି । ଅର୍ଜ୍ଜୁନ ଅଶ୍ରୁସିକ୍ତ ନୟନରେ ମୋତେ ଚାହିଁ ପ୍ରଶ୍ନ କଲେ - 'ସଖା ମାଧବ ! ତୁମେ ନୀରବ କାହିଁକି ? ଏହାହିଁ ମୋତେ ବିଶ୍ୱାସ କରିବାକୁ ହେବ ? ତ୍ରିଭୁବନରେ ଏମିତି ବୀର କିଏ ଅଛି ଯେ ମୋ ଅଭିମନ୍ୟୁକୁ ବିନାଶ କରିବାରେ ସମର୍ଥ ହେଲା ?

ରୋରୁଦ୍ୟମାନ ଭୀମସେନ କହି ଉଠିଲେ - 'ଜଣେ ନୁହେଁ ଧନଞ୍ଜୟ ! ସପ୍ତରଥୀ ମିଳିତ ଭାବରେ ଆମର ବାଳୁତ ଅଭିମନ୍ୟୁକୁ ସଂହାର କରିଛନ୍ତି, ଗୋଟି ଗୋଟି କରି ତା'ର ଧ୍ୱଜ, ରଥଚକ୍ର, ଅଶ୍ୱ, ଧନୁ, ଖଡ୍‌ଗ ସବୁ କିଛି ତା'ଠାରୁ ଛିନ୍ନ କରି ନେଇଛନ୍ତି, କେବଳ ଢାଲ ଧରି ସୁଦ୍ଧା ସେ ଏକାକୀ ସପ୍ତରଥୀଙ୍କ ସହ ଯୁଦ୍ଧରେ ପ୍ରବୃତ୍ତ ହୋଇଛି ଚକ୍ରବ୍ୟୁହ ଭିତରେ, ତାପରେ ଦୁଃଶାସନ ତନୟ ତା'ର ଶିରଛେଦ କରିଛି ।'

'ଚକ୍ରବ୍ୟୁହ !!!' ଅର୍ଜ୍ଜୁନଙ୍କ ବିସ୍ମୟର ସୀମା ନଥିଲା । ସେ କୋହ ଉଛଳ କଣ୍ଠରେ ପ୍ରଶ୍ନ କଲେ - 'ଗୁରୁ ଦେବ କ'ଣ ଆଜି ଚକ୍ରବ୍ୟୁହ ରଚନା କରିଥିଲେ ? ରଣଭୂମିରେ ଅର୍ଜ୍ଜୁନ ଅନୁପସ୍ଥିତ ଜାଣିବା-ସତ୍ତ୍ୱେ ?? ଗୁରୁଦେବ, ଗୋବିନ୍ଦ, ପ୍ରଦ୍ୟୁମ୍ନ ଓ ମୁଁ ଏହି ଚାରିଜଣଙ୍କ ବ୍ୟତୀତ ଅନ୍ୟକେହି ଯେ ଚକ୍ରବ୍ୟୁହରେ ପ୍ରବେଶ କରି ରଣଜୟ କରି ଫେରିପାରିବେ ନାହିଁ ତାହାତ ଗୁରୁଦେବ ଭଲରୂପେ ଜାଣନ୍ତି ।'

ଧର୍ମରାଜ ଅପରାଧିଭଳି ମୁଣ୍ଡତଳକୁ କରି କହିଲେ - ଠିକ୍ ତୁମ୍ଭେମାନେ ରଣଭୂମିରୁ ଚାଲିଯିବା ପରେ ପରେ ଆମେ ଚର ମୁଖରୁ ସମ୍ବାଦପାଇଲୁ ଗୁରୁଦେବ ଚକ୍ରବ୍ୟୁହ ରଚନା କରିଛନ୍ତି । ଅଭିମନ୍ୟୁ ବ୍ୟୁହଭେଦରେ ସମର୍ଥ ମାତ୍ର ବାହାରିବାର ପଥ ଚିହ୍ନନ୍ତି ନାହିଁ ବୋଲି ଜାଣିବା ପରେ ଭୀମସେନ କହିଲେ ତୁମେ ବ୍ୟୁହ ପ୍ରବେଶ କର, ତୁମ ପଛେ ପଛେ ମୁଁ ଗଦାହସ୍ତରେ ସମସ୍ତଙ୍କୁ ପରାଜିତ କରି ତୁମକୁ ନେଇ ଆସିପାରିବି । ମାତ୍ର ଜୟଦ୍ରଥ ଭୀମସେନଙ୍କୁ ବ୍ୟୁହ ଭିତରକୁ ଯିବାକୁ ଦେଲା ନାହିଁ । ଏକାକୀ, ସଂପୂର୍ଣ୍ଣ ଏକାକୀ ଅଦ୍ଭୁତ ବିକ୍ରମ ପ୍ରଦର୍ଶନ କରି ଶେଷରେ ନିରସ୍ତ୍ର ଅବସ୍ଥାରେ ଭୂତଳରେ ଥିବା ସମୟରେ କର୍ଣ୍ଣ, ଦୁଃଶାସନ, କୃପାଚାର୍ଯ୍ୟ, ସୁଯୋଧନ (ଦୁର୍ଯ୍ୟୋଧନ), ଗୁରୁଦେବ, ଅଶ୍ୱତ୍ଥାମା ଓ ଜୟଦ୍ରଥ ମିଳିତ ଭାବେ ତାହାକୁ ଆକ୍ରମଣ କଲେ, ଶେଷରେ.....'

ରୁଦ୍ଧ କଣ୍ଠରୁ ଆଉ ତାଙ୍କର ବାକ୍‌ସ୍ଫୁରଣ ହେଲା ନାହିଁ । ନା - ଅର୍ଜ୍ଜୁନଙ୍କୁ ସାନ୍ତ୍ୱନା ଦେବାର ବୃଥା ପ୍ରୟାସ କେହି କରିନଥିଲେ । ତାପରଦିନ ଯୁଦ୍ଧରେ ଅର୍ଜ୍ଜୁନ ତାଙ୍କର ପ୍ରଚଣ୍ଡ ପ୍ରତିଜ୍ଞା ରକ୍ଷା କରି ଜୟଦ୍ରଥକୁ ବଧ କରିବାରେ ସମର୍ଥ ହୋଇଥିଲେ । ତଥାପି ଅଭିମନ୍ୟୁର ଶୋକ ତାଙ୍କୁ ମ୍ରିୟମାଣ କରିଦେଇଥିଲା । ଉପପ୍ଳବ୍ୟ ନଗରୀରୁ ପାଞ୍ଚାଳୀ କହିଲେ - 'ଆଜି ପ୍ରଭାତରୁ ମୋର ମନେ ହେଉଥିଲା ଯେମିତି କେଉଁଠି କ'ଣ ମୋର ସବୁ ଭାଂଗି ଯାଉଛି, ହଜି ଯାଉଛି ।'

ସେ ଆଉ କିଛି କହି ପାରିଲେ ନାହିଁ । ନୀଳ କଇଁର ପାଖୁଡ଼ା ଭଳି ତାଙ୍କ ନୟନ ଦୁଇଟିରୁ ବହି ଆସୁଥିବା ଅଜସ୍ର ଅଶ୍ରୁଧାରା ତାଙ୍କ କଣ୍ଠରୋଧ କରିଦେଲା । ସୁଭଦ୍ରା ମୋତେ ଦେଖିବା ମାତ୍ରେ ଉଚ୍ଚସ୍ୱରରେ ରୋଦନ କରି ଉଠିଲେ ଓ କହିଲେ - 'ଭ୍ରାତା ! ତୁମେତ ଅନ୍ତର୍ଯ୍ୟାମୀ । ତୁମେ ତ ତ୍ରିକାଳଜ୍ଞ । ତୁମେ କ'ଣ ଜାଣିନଥିଲ ଏହା ଘଟିବ ବୋଲି ? ତେବେ ମୋର ବାଳୁତ ପୁତ୍ରକୁ ବିପଦର ଭୟଙ୍କର ଆବର୍ତ୍ତରେ ରଖି କେମିତି ତୃତୀୟ ପାଣ୍ଡବଙ୍କୁ ରଣଭୂମିଠାରୁ ଦୂରକୁ ନେଇ ଯାଇଥିଲ ?'

ନା - ଏହାର କୌଣସି ସଦୁତ୍ତର ମୁଁ ଖୋଜି ପାଇନଥିଲି । ଆଉ ବିରାଟ ରାଜନନ୍ଦିନୀ ଉତ୍ତରା ? ଜୀବନର ମଧୁମାସରେ ଯିଏ ପ୍ରଳୟ ଝଡ଼ର ସମ୍ମୁଖୀନା ହୋଇଥିଲେ ? ଜୀବନର ମଧୁମାସରେ ଯାହାଙ୍କର ଫୁଲବନ ଉଜୁଡ଼ି ଯାଇଥିଲା ସବୁ ପ୍ରତିଶୃତି, ସବୁ ସ୍ୱପ୍ନକୁ ମିଥ୍ୟାରେ ପରିଣତ କରି । ଜୀବନର ମଧୁମାସରେ ସହସ୍ର ମଧୁକଣ୍ଠୀ ପକ୍ଷୀତାନ ନିଃଶବ୍ଦ ହୋଇ ଯାଇଥିଲା । ସେଇ ଉତ୍ତରାଙ୍କ ଆଖିରେ ବିନ୍ଦୁଏ ଅଶ୍ରୁ କଣା ନଥିଲା । ହାତରେ ଏକ ଅର୍ଘ୍ୟଥାଳି ସେ ଧରିଥିଲେ, ଯେଉଁଥିରେ ଦୁର୍ବାକ୍ଷତ, ଚନ୍ଦନ, ସିନ୍ଦୂର, ଘୃତଦୀପ ସହ ଶ୍ୱେତଶୁଭ୍ର ବ୍ରଜମଲ୍ଲିକାର ଏକ ଗୁଚ୍ଛ ମଧ୍ୟ ଥିଲା । ସେଥିରେ ଦୃଷ୍ଟି ପଡ଼ିବା ମାତ୍ରେ ମୁଁ ମୋ ନିଜ ଅଜ୍ଞାତ ସାରରେ ଚମକି ଉଠିଥିଲି । ଏଇ ବ୍ରଜମଲ୍ଲିକାଗୁଚ୍ଛ ଅଭିମନ୍ୟୁ ସେଦିନ ପ୍ରତ୍ୟୁଷରେ ଉତ୍ତରାଙ୍କ ନିକଟକୁ ପଠାଇଥିଲେ । ଯେତେଯିଏ କହିଲେ ମଧ୍ୟ ସେ ବିଶ୍ୱାସ କରୁନଥିଲେ ଯେ ଅଭିମନ୍ୟୁ ବୀରଗତିପ୍ରାପ୍ତ ହୋଇଛନ୍ତି; ବରଂ ପହିଲି ଆଷାଢ଼ର ବାଦଲ ରଂଗର ତାଙ୍କ ଚକ୍ଷୁ ଦୁଇଟିରେ ଅବିଶ୍ୱାସର ମେଘ ଯେମିତି ପୁଞ୍ଜିଭୂତ ହୋଇଥିଲା । ସେ କହୁଥିଲେ - ଆଜିହିଁ ତ ବୀର ଅଭିମନ୍ୟୁ ମୋ ନିକଟକୁ ଏଇ ବ୍ରଜମଲ୍ଲିକା ଉପହାର ସ୍ୱରୂପ ପଠାଇଥିଲେ । ଆଜିହିଁ ତ ସେ ଯୁଦ୍ଧ ଜୟକରି ଫେରିବା ପରେ ବିଜୟୀ ପତିଙ୍କୁ ଅଭିନନ୍ଦନ ସହ ଏଇ ପୁଷ୍ପଗୁଚ୍ଛରେ ମୋର ସ୍ୱାଗତ କରିବା କଥା । ଏମିତି କିଏ ଅଛି ଯେ ଆଜିହିଁ ତାଙ୍କୁ ମୋ ଠାରୁ ବିଚ୍ଛିନ୍ନ କରି ନେଇ ଯାଇ ପାରିବ ?'

ମୁଁ ନିଜକୁ ସମ୍ବରଣ କରି ଉତ୍ତରାଙ୍କ ମସ୍ତକରେ ହାତରଖି କହିଲି - 'ମୃତ୍ୟୁ ! ମୃତ୍ୟୁହିଁ ସର୍ବଶକ୍ତିମାନ୍ ଉତ୍ତରା ! ନହେଲେ ତୁମର ବୀରପତିଙ୍କୁ କେହି ନେବା ପାଇଁ ସମର୍ଥ ହୋଇ ନଥା'ନ୍ତେ !'

ମୋ ସ୍ୱରର ଗାମ୍ଭୀର୍ଯ୍ୟ ଓ ଦୃଢ଼ତାରେ ସେ କିଛି ସମୟ ବିମୂଢ଼ ଭାବେ ନିଷ୍ପଲକ ନେତ୍ରରେ ମୋତେ ହିଁ ଚାହିଁ ରହିଲେ । ତାପରେ ଅବୋଧ ଶିଶୁ କନ୍ୟା ସଦୃଶ ପ୍ରଶ୍ନ କଲେ - 'ଏହା ବି କିପରି ସମ୍ଭବ ହେଲା ମାତୁଳ ? ମୃତ୍ୟୁ ? ସେ କ'ଣ ଶୁଣି ପାରିଲେ ନାହିଁ ଜନନୀ ସୁଭଦ୍ରା ଓ ପିତା ଧନଞ୍ଜୟଙ୍କ ବିଳାପ ?'

- 'ପିଙ୍ଗଳ କେଶିନୀ ମୃତ୍ୟୁ ବଧୀରା !'

ମୁଁ ଗମ୍ଭୀର ସ୍ୱରରେ କହିଲି ।

ସେ ପୁଣି କହିଲେ - 'ସେ କ'ଣ ଦେଖି ପାରିଲେ ନାହିଁ ଅଭିମନ୍ୟୁଙ୍କ ପତ୍ନୀ, ମୁଁ ଉତ୍ତରା ଆସନ୍ନ ପ୍ରସବା ?'

- 'ପିଙ୍ଗଳ କେଶିନୀ ମୃତ୍ୟୁ ଚକ୍ଷୁହୀନା !'

ତଥାପି ଉତ୍ତରା କହିଲେ - ଯେତେବେଳେ ମୋର ବୀରପତି ରଥ, ଧ୍ୱଜ, ବର୍ମ ବିହୀନ, ଅସ୍ତ୍ରଶୂନ୍ୟ ହୋଇ ଭୂପତିତ ହେଲେ ଏବଂ ସପ୍ତରଥୀ ମିଳିତ ଭାବରେ ସେହି ନିରସ୍ତ୍ର ନବଯୁବକଙ୍କ ଉପରେ ଅସ୍ତ୍ର ପ୍ରହାର କରୁଥିଲେ, ସେତେବେଳେ ଅଭିମନ୍ୟୁ ନିଶ୍ଚୟ ଆର୍ତ୍ତନାଦ କରିଥିବେ, ତେବେ ମୃତ୍ୟୁଙ୍କ କଣ୍ଠଦେଶରୁ କ'ଣ ସମ୍ବେଦନର ଶବ୍ଦଟିଏ ସ୍ଫୁରିତ ହେଲା ନାହିଁ ?'

ମୁଁ ଦୃଢ଼ ସ୍ୱରରେ କହିଲି - 'ମୃତ୍ୟୁଯେ ବାକ୍‌ଶକ୍ତିହୀନା ! ଯେତେବେଳେ ପ୍ରଜାପତି ବ୍ରହ୍ମା ତାଙ୍କୁ ସୃଷ୍ଟି କରିଥିଲେ, ସେତେବେଳେ ସେ ନିଜେ ଠିକ୍ ଏଇ ପ୍ରଶ୍ନ କରିଥିଲେ; କିନ୍ତୁ ବ୍ରହ୍ମାଙ୍କ ବରଦାନରେ ମୃତ୍ୟୁ ହେଲେ ଅନ୍ଧ, ମୂକ, ବଧୀର ।'

କିଛି ସମୟ ନୀରବ ରହିବା ପରେ ପରମ ସ୍ନେହରେ, ଆବେଗସିକ୍ତ ସ୍ୱରରେ କହିଲି - 'ଉତ୍ତରା ! ତୁମେ କାହିଁକି ପଛକୁ ଫେରି ଚାହୁଁଚ ମା ? ଆଗକୁ ଦୃଷ୍ଟି ରଖ । ତୁମେ ଗର୍ଭରେ ପୁରୁବଂଶର ଭବିଷ୍ୟତକୁ ଧାରଣ କରିଛ, ସମଗ୍ର ଆର୍ଯ୍ୟାବର୍ତ୍ତର ସେ ଭବିଷ୍ୟତ । ସମସ୍ତ ଆପଦ ବିପଦରୁ ତାକୁ ବଞ୍ଚାଇ ରଖିବାକୁ ହେବଯେ ! ସେହିଁତ ଯୁଗ ସନ୍ଧିର ଏକମାତ୍ର ସାକ୍ଷୀ । ବହୁ ସତର୍କତା, ବହୁ ସାବଧାନତା, ବହୁ ଯତ୍ନ ସହକାରେ ତାକୁ ଲାଳନ କରିବାକୁ ହେବ । ଭରତ ଜନନୀ ଶକୁନ୍ତଳା ଯେଉଁଭଳି ଶତ ନିପୀଡ଼ନ, ନିର୍ଯ୍ୟାତନା ସତ୍ତ୍ୱେ ଭରତଙ୍କୁ ଜନ୍ମ ଦେଇ ଚିରସ୍ମରଣୀୟା ହୋଇଛନ୍ତି ଠିକ୍ ସେହିପରି ତୁମେ ମଧ୍ୟ ସୁମହାନ୍ ପୁରୁବଂଶର ଭବିଷ୍ୟତ ବଂଶଧରକୁ ଜନ୍ମଦେଇ ଅର୍ଜୁନ, ସୁଭଦ୍ରା, ଅଭିମନ୍ୟୁ ସମସ୍ତଙ୍କ ଋଣ ପରିଶୋଧ କରିପାରିବ ।

ମୋ କଥାରେ ସମ୍ମୋହିତା ହେବାଭଳି ଧିରେ ଧିରେ ସେ ମୋ ପାଦ ପାଖରେ ବସି ମୋ ପଦ ଯୁଗଳକୁ ଉଷ୍ଣ ଲୋତକ ଧାରାରେ ପ୍ରକ୍ଷାଳନ କରି ସେହି ଶ୍ୱେତ ବ୍ରଜମଲ୍ଲିକା ଗୁଚ୍ଛକୁ ମୋ ପାଦ ଉପରେ ଥୋଇ ଦେଲେ ନୀରବରେ । ଶ୍ରାବଣ ଆକାଶ ସଦୃଶ ତାଙ୍କ ଚକ୍ଷୁ ଦୁଇଟି ଅଶ୍ରୁଭାରାକ୍ରାନ୍ତ ହୋଇ ଯାଇଥିଲା । ଅନେକ ସମୟ ନୀରବରେ ଅଶ୍ରୁ ବିସର୍ଜନ କଲେ ତାପରେ ଆତ୍ମସମ୍ବରଣ କରି କହିଲେ - 'ମାତୁଳ ! ଯାହାଙ୍କର ପିତା ତ୍ରିଭୁବନ ବିଜୟୀ ବୀର ତୃତୀୟ ପାଣ୍ଡବ, ଯାହାଙ୍କର ମାତୁଳ ବିଶ୍ୱବିଜୟୀ ଅନ୍ତର୍ଯ୍ୟାମୀ ସେଇ ଅଭିମନ୍ୟୁଙ୍କୁ ଏଭଳି ଅସହାୟ ଭାବେ କାହିଁକି ମୃତ୍ୟୁବରଣ କରିବାକୁ ପଡ଼ିଲା ?'

ଏ ପ୍ରଶ୍ନ ଯେ ସିଧାସଳଖ ମୋରି ପ୍ରତି ଉଦ୍ଦିଷ୍ଟ ଥିଲା ମୁଁ ଜାଣିଥିଲି । ଏ ପ୍ରଶ୍ନର ଉତ୍ତର ମୁଁ ଦେଇ ପାରିନାହିଁ, କୌଣସି ଦିନ କାହାକୁ ଦେଇ ପାରିନଥା'ନ୍ତି । ଅନ୍ୟମାନେତ ଅଶ୍ରୁ ବିସର୍ଜନ କରି ନିଜକୁ ଭାରମୁକ୍ତ କରି ପାରୁଥିଲେ । ମୁଁ ଟୋପାଏ ଅଶ୍ରୁ ସୁଦ୍ଧା ବିସର୍ଜନ କରିପାରୁନଥିଲି । ସମସ୍ତଙ୍କୁ ମୁଁ ସାନ୍ତ୍ୱନା ଦେଉଥିଲି; ହେଲେ ମୋ ନିଜକୁ ମୁଁ ସାନ୍ତ୍ୱନା ଦେଇ ପାରୁଥିଲିକି ? ମୋର ଅନ୍ତରାତ୍ମା ସାକ୍ଷୀ ! ସେଦିନ ମଧ୍ୟରାତ୍ରି ଅତିକ୍ରାନ୍ତ ହେବା ପରେ ପାଣ୍ଡବ ଶିବିରରୁ ଏକାକୀ ମୁଁ ରଣଭୂମିକୁ ଯାଇଥିଲି । (ରଣଭୂମିତ ନୁହେଁ, ଶ୍ମଶାନଭୂମି !) ସ୍ତୁପ ସ୍ତୁପ ଛିନ୍ନ କବନ୍ଧ ରକ୍ତାପ୍ଲୁତ ଅସ୍ଥି, ପଞ୍ଜର, ଅଶ୍ୱ, ଗଜଙ୍କର ଛିନ୍ନାବୟବ, ପଳିତ ମାଂସ, ଛିନ୍ନ ଶିର, ଶବଭୂକ୍‌ଶ୍ୱାନ, ଶୃଗାଳ, ଗୃଧ୍ର ଏଇମାନଙ୍କ ଭିତରେ ମୁଁ ଖୋଜିବାକୁ ଯାଇଥିଲି ସମସ୍ତଙ୍କ ଅଜ୍ଞାତରେ ସେହି ଅମିତ ତେଜସ୍ୱୀ ଯୁବକ ଅଭିମନ୍ୟୁକୁ, ଯାହାକୁ ମୁଁ ନିଜେ ଶସ୍ତ୍ର ଓ ଶାସ୍ତ୍ରଜ୍ଞାନରେ ଦିନେ ପାରଦର୍ଶୀ କରିଥିଲି । ଦ୍ୱିତୀୟ ପାଣ୍ଡବ ବୃକୋଦରଙ୍କ ଠାରୁ ଶୁଣିଥିଲି ଯେଉଁ ସ୍ଥାନରେ ଆଚାର୍ଯ୍ୟ ଦ୍ରୋଣ ଚକ୍ରବ୍ୟୁହ ରଚନା କରିଥିଲେ । ଚକ୍ରବ୍ୟୁହ ନୁହେଁ - ଚକ୍ରାନ୍ତର ବ୍ୟୁହ, ଷଡ଼ଯନ୍ତ୍ରର ବ୍ୟୁହ ! ସେହି ନିଶ୍ଛିଦ୍ର ଅନ୍ଧକାର ଭିତରେ ପ୍ରଥମେ ଦୃଷ୍ଟିଗୋଚର ହେଲା ଅଭିମନ୍ୟୁଙ୍କର ଭଗ୍ନରଥ, ଭଗ୍ନଧ୍ୱଜ, ଭଗ୍ନବର୍ମ, ଭଗ୍ନ ଧନୁ, ଭଗ୍ନ ଖଡ଼୍‌ଗ । ଏଇ ସେଇ ଶତ୍ରୁର ଶସ୍ତ୍ର ଭେଦନରେ ଅକ୍ଷମ ଅଭେଦ୍ୟ କବଚ ଯାହାକୁ ଆଜି ପ୍ରତ୍ୟୁଷରେ ସଖା ପାର୍ଥ ପିନ୍ଧାଇ ଦେଇଥିଲେ । ତାପରେ ଅଭିମନ୍ୟୁଙ୍କର ଛିନ୍ନ ଶିରଟି ଉପରେ ଦୃଷ୍ଟି ପଡ଼ିବାମାତ୍ରେ ମୁଁ ଚମକି ଉଠିଲି । ଆହାଃ ! କେତେ ରକ୍ତ ଝରି ଯାଇଥିବ ଏଇ ବସୁଧାରେ । ମା ପୃଥିବୀ ! ତୁମର ରକ୍ତତୃଷ୍ଣା କ'ଣ ତଥାପି ପ୍ରଶମିତ ହୋଇନାହିଁ ? ଅଭିମନ୍ୟୁଙ୍କର ଅଗ୍ନିପ୍ରଭ କାଞ୍ଚନନିଭ ବର୍ଣ୍ଣ ବିବର୍ଣ୍ଣ ହୋଇ ଯାଇଥିଲା, ରକ୍ତାଧର ବିଶୁଷ୍କ ହୋଇ କୃଷ୍ଣ ବର୍ଣ୍ଣ ହୋଇ ଯାଇଥିଲା । ମୁଁ ଆଉ ଚାହିଁ ପାରିଲି ନାହିଁ । ଯଦିଓ ମୁଁ ଜାଣିଥିଲି ଏହା ଜଡ଼ ପିଣ୍ଡ ମାତ୍ର ! ତଥାପି ପରମ ଯତ୍ନରେ ଛିନ୍ନ ଶିରଟିକୁ ଉଠାଇ ଆଣି ଉତ୍ତରୀୟ ପ୍ରାନ୍ତରେ ପରିଛନ୍ନ କରି ମୋର ବକ୍ଷରେ ଚାପି ଧରିଲି । ମନେ ହେଲା ଯେମିତି ମୋ ହୃଦୟର ଗଭୀର ପ୍ରଦେଶରୁ ଅଭିମନ୍ୟୁହିଁ ପ୍ରଶ୍ନ କରୁଛନ୍ତି - 'ମାତୁଳ ! ଆପଣ କ'ଣ ସତରେ ଜାଣିନଥିଲେ ଆଜିର ଏ ଯୁଦ୍ଧ ଯାତ୍ରା ମୋର ଅନ୍ତିମ ଯାତ୍ରା ବୋଲି ? ଆପଣ କ'ଣ ପ୍ରକୃତରେ ଜାଣିନଥିଲେ ଆଚାର୍ଯ୍ୟ ଦ୍ରୋଣ ଆଜି ଚକ୍ରବ୍ୟୁହ ରଚନା କରୁଛନ୍ତି ବୋଲି ? ପ୍ରକୃତରେ କ'ଣ ଜାଣିନଥିଲେ ପିତା ଧନଞ୍ଜୟଙ୍କୁ ସଂଶପ୍ତକ ବାହିନୀର ଯୁଦ୍ଧ ଆହ୍ୱାନ ଏକ ପ୍ରହେଳିକା ବୋଲି ? ପ୍ରକୃତରେ କ'ଣ ଜାଣିନଥିଲେ ମୁଁ ଚକ୍ରବ୍ୟୁହର ପ୍ରବେଶର ପଥ ଚିହ୍ନିଥିଲେ ବି ନିଷ୍କ୍ରମଣର ପଥ ଚିହ୍ନେ ନାହିଁ ବୋଲି ?'

ମୁଁ ଆଉ କୌଣସି ପ୍ରଶ୍ନର ସମ୍ମୁଖୀନ ହୋଇ ପାରିଲି ନାହିଁ । ମୁଁ ଯଥାସ୍ଥାନରେ ଛିନ୍ନ ଶିରଟି ଥୋଇ ଦେଇ ଉତ୍ତରୀୟ ପ୍ରାନ୍ତରୁ ସେହି ଶ୍ୱେତ ବ୍ରଜ ମଲ୍ଲିକା ଗୁଚ୍ଛଟି କାଢ଼ିଲି, ଯାହା ମୋ ପଦତଳେ ଉତ୍ତରା ସମର୍ପଣ କରିଥିଲେ । ସେହି ପୁଷ୍ପଗୁଚ୍ଛକୁ ଅଭିମନ୍ୟୁଙ୍କ ଶବପିଣ୍ଡରେ ରଖି

କହିଲି - 'ତୁମେ ଆଜି ବିଜୟ ଲାଭ କରିଛ ବତ୍ସ ! ଏ ପୁଷ୍ପଗୁଚ୍ଛ ଆଜି ତୁମର ପ୍ରାପ୍ୟ । ମୁଁ ନିଜେ ତୁମର ଅଭିନନ୍ଦନ କରୁଛି । ଆଜି ଯୁଦ୍ଧରେ ତୁମେ ପ୍ରଦର୍ଶନ କରିଥିବା ଅଭୂତପୂର୍ବ, ଅଶ୍ରୁତପୂର୍ବ ବୀରତ୍ୱ ଯୁଗାବଧିପରେ ମଧ୍ୟ ଇତିହାସ ପୃଷ୍ଠାରେ ଅମରାକ୍ଷରେ ଲିପିବଦ୍ଧ ହୋଇ ରହିବ । କାଳ ସୁଦ୍ଧା ତାକୁ ଲିଭାଇ ପାରିବ ନାହିଁ ଅଭିମନ୍ୟୁ । ଉତ୍ତରା ପ୍ରଦତ୍ତ ଏ ଜୟମାଲ୍ୟ ମୁଁ ନିଜେ ତୁମକୁ ପିନ୍ଧାଇ ଦେଇ ଯାଉଛି ।' ପଛକୁ ଲେଉଟି ଚାହିଁଲେ ହୁଏତ ମୋ ପାଦ ଅଟକି ଯିବ । ମୁଁ ତେଣୁ ପଛକୁ ନଚାହିଁ ଦ୍ରୁତ ପଦରେ ଶିବିରକୁ ଫେରି ଆସିଥିଲି । ମହାକାଳ ହିଁ ସାକ୍ଷୀ !

ଆଚାର୍ଯ୍ୟ ଦ୍ରୋଣ ! ଧୃତରାଷ୍ଟ୍ରଙ୍କ ଭଳି ତୁମେ ମଧ୍ୟ ପୁତ୍ର ସ୍ନେହରେ ଅଜ୍ଞାନ । ଅନ୍ଧ ଧୃତରାଷ୍ଟ୍ରଙ୍କର ଅନ୍ଧ ବାତ୍ସଲ୍ୟ । ଆଚାର୍ଯ୍ୟ ଦ୍ରୋଣ ! ତୁମେ ବିଜ୍ଞ ହୋଇ ସୁଦ୍ଧା କେବଳ ପୁତ୍ର ସ୍ନେହରେ ଅନ୍ଧ ହୋଇ ଟୋପାଏ କ୍ଷୀର ପାଇଁ, ଏଇ ସାମାନ୍ୟ ସ୍ୱାର୍ଥ ପାଇଁ ବନ୍ଧୁତାର ଦ୍ୱାହି ଦେବାକୁ ଗଲ କାହିଁକି ଦ୍ରୁପଦ ଦରବାର ପର୍ଯ୍ୟନ୍ତ ? ମୋର ପ୍ରିୟ ସୁହୃଦ୍ ସୁଦାମା ଯିଏ ଦାରିଦ୍ର୍ୟର କଷାଘାତରେ ଅହରହ ନିପୀଡ଼ିତ ହେଉଥିବା ସମୟରେ ସୁଦ୍ଧା ସେ ତାଙ୍କର ରାଜରାଜେଶ୍ୱର ବନ୍ଧୁ ଏଇ ଦ୍ୱାରକାଧୀଶ ଠାରୁ କିଛି ଚାହିଁ ନାହାନ୍ତି । ବରଂ ସେ କେଉଁ ଦୂର ଅତୀତରେ ଖୁଦଭଜା ଗଣ୍ଡାକରେ ମୋର ଲୋଭ ଥାଏ ବୋଲି ସେକଥା ସ୍ମରଣ କରି ତା' ଆଣିବାକୁ ବିସ୍ମୃତ ହୋଇ ନାହାନ୍ତି । ସେଭଳି ବନ୍ଧୁଙ୍କୁ ଚତୁର୍ବର୍ଗ ଫଳ ଯାଚି ଦେବାରେ କିଛି ଆପତ୍ତି ଥାଏକି ? ବିଦ୍ୟାର୍ଥୀ ଦ୍ରୁପଦ ପାଞ୍ଚାଳ ନରେଶ ହେବାପରେ ତାଙ୍କର କି' କି' ଚାରିତ୍ରିକ ପରିବର୍ତ୍ତନ ସଂଘଟିତ ହୋଇଛି ତା'ର କୌଣସି ସମ୍ବାଦ ସଂଗ୍ରହ ନକରି ତୁମେ ବା ଅକସ୍ମାତ୍ ତାଙ୍କ ଦରବାରରେ ପହଞ୍ଚି ବନ୍ଧୁତାର ଦ୍ୱାହି ଦେଇ ଗୋଟିଏ ସବତ୍ସା ଧେନୁ ଦାବୀ କରୁଥିଲ କିପରି ? ସେ ସାମନ୍ୟ ଦାବୀଟିକୁ ଅସ୍ୱୀକାର କରି ପାଞ୍ଚାଳ ନୃପତି ଦ୍ରୁପଦ ମଧ୍ୟ ସ୍ୱୀୟ ସଂକୀର୍ଣ୍ଣ ମନର ପରିଚୟ ଦେବାକୁ ସଂକୋଚ କଲେ ନାହିଁ କିପରି ? ଦୁଇଟି ବନ୍ଧୁ ସେଦିନ ଏଇଭଳି ଅପରିଚୟର ସଂଜ୍ଞାରେ ପରସ୍ପରଠାରୁ ମରଣ ଅବଧି ବିମୁଖବି ରହିଛି । ପାଞ୍ଚାଳ ଦରବାରରୁ ଅପମାନିତ ହୋଇ ଫେରିବା ପରଠାରୁ ଶାସ୍ତ୍ର ଜ୍ଞାନ ଅପେକ୍ଷା ତୁମେ ଶସ୍ତ୍ରଜ୍ଞାନ ଉପରେ ଅଧିକ ଗୁରୁତ୍ୱ ଦେଇ ନାହଁ କି ? କେବଳ ଏଇ ପ୍ରତିହିଂସା ଲାଳସାରେ ହସ୍ତିନା ରାଜକୁମାର ମାନଙ୍କ ଶସ୍ତ୍ରଗୁରୁ ହେବାର ଗୋପନ ଇଛାକୁ ତୁମେ ସମ୍ବରଣ କରିପାରିନାହଁ । କାରଣ ତୁମେ ଜାଣିଥିଲ ହସ୍ତିନା ଭଳି ଶକ୍ତିଶାଳୀ ରାଷ୍ଟ୍ରର ରାଜକୁମାରଙ୍କ ଶସ୍ତ୍ରଗୁରୁ ହେଲେ ପାଞ୍ଚାଳକୁ ପରାଜିତ କରିବାର ସମସ୍ତ ପଥ ଉନ୍ମୁକ୍ତ ହୋଇଯିବ । ତାହାହିଁ ହୋଇଛି । ଅର୍ଜ୍ଜୁନ ଭଳି ଶିଷ୍ୟ ଗଢ଼ିବା ପରେ ତୁମ ହୃଦୟରେ ପ୍ରଜ୍ୱଳିତ ହେଉଥିବା ଅପମାନର ଅଗ୍ନି ନିର୍ବାପିତ ହୋଇଛି । ତୁମରି ନିର୍ଦ୍ଦେଶରେ ଅର୍ଜ୍ଜୁନ ଯେତେବେଳେ ପାଞ୍ଚାଳ ନରେଶଙ୍କୁ ପରାସ୍ତ କରି ବନ୍ଦୀ କରି ଆଣିଛନ୍ତି ସେତେବେଳେ ତୁମର କ୍ରୋଧ ପ୍ରଶମିତ ହୋଇଛି । ହେଲେ ଅପର ପକ୍ଷରେ ? ମୁହଁରେ ବନ୍ଧୁ ବୋଲି ସ୍ୱୀକାର କଲେ ସୁଦ୍ଧା

ଅନ୍ତର ତାଙ୍କର ଅପମାନର ବିଷଜ୍ୱାଳାରେ ତିକ୍ତ ହୋଇ ଉଠିଛି । ଯେଉଁଥି ପାଇଁ ଯଜ୍ଞକୁଣ୍ଡରୁ ଜନ୍ମ ନେଇଛନ୍ତି ଧୃଷ୍ଟଦ୍ୟୁମ୍ନ ଓ ଦ୍ରୌପଦୀ । ସବୁ କିଛି ଉଦ୍ଦେଶ୍ୟ ପ୍ରଣୋଦିତ । ଦ୍ରୌପଦୀ ଏକ ଆୟୁଧ ମାତ୍ର । ଅମୋଘ ଶକ୍ତି । ସେହି ଆୟୁଧ ମାଧ୍ୟମରେ ପାଣ୍ଡବଙ୍କୁ ଦ୍ରୁପଦ ନିଜ ପକ୍ଷକୁ ଦ୍ରୌପଦୀ ସ୍ୱୟଂବର ଦିନରୁ ନେଇଯାଇଥିଲେ । ପାଣ୍ଡବ ବିହୀନରେ ତୁମକୁ ହୀନବଳ କରିବାହିଁ ଥିଲା ତାଙ୍କର ଏକମାତ୍ର ଲକ୍ଷ୍ୟ । ଖାଲି ସେତିକି ନୁହେଁ ଯଦି ବାଳୁତ ଅଶ୍ୱତ୍ଥାମାଙ୍କ ନିମିତ୍ତ ତୁମ ଅନୁରୋଧ ରକ୍ଷାକରି ଏକ ସବତ୍ସାଧେନୁ ପ୍ରଦାନ କରିଥା'ନ୍ତେ ତେବେ ତା' ହୋଇଥା'ନ୍ତା ଦାତାର ଦାମ୍ଭିକତା, ପରବର୍ତ୍ତୀ ପର୍ଯ୍ୟାୟରେ ଅର୍ଜୁନଙ୍କ ଦ୍ୱାରା ପରାସ୍ତ ହୋଇ ବନ୍ଦୀ ଦ୍ରୁପଦ ତୁମ୍ଭଙ୍କୁ ଅହିଛତ୍ର ସାମ୍ରାଜ୍ୟ ପ୍ରଦାନ କରିଥିଲେ । ତା' ପଛରେ ଆତ୍ମଗୋପନ କରିଥିଲା ଦ୍ରୁପଦଙ୍କ ବିଦ୍ୱେଷ ପରାୟଣ ହୃଦୟରେ ତୁମ୍ଭମାନଙ୍କର ହସ୍ତକ୍ଷେପ ଜନିତ ବାଧ୍ୟ ବାଧକତା । ବନ୍ଧୁତା ଭଳି ଅନାବିଳ ରାଜ୍ୟରେ ଦାମ୍ଭିକତା ବା ବାଧ୍ୟବାଧକତା କୌଣସି ଗୋଟିଏ ହେଲେ ବି ତ ସ୍ପୃହଣୀୟ ନୁହେଁ ? ଏଭଳି ବନ୍ଧୁତାର ପରିଣତି କ'ଣ ବା ଆଉ ହୋଇଥା'ନ୍ତା ?

ମୋର ମାନସ ଜଗତରେ ମୁଁ ଯେମିତି ଆଚାର୍ଯ୍ୟ ଦ୍ରୋଣଙ୍କ ସହ କଥୋପକଥନ କରୁଥିଲି । ଆଚାର୍ଯ୍ୟ ଦ୍ରୋଣ ଯେଉଁ ଶିଷ୍ୟଟିକୁ ମନପ୍ରାଣ ଦେଇ ଗଢ଼ିଥିଲେ, ସମସ୍ତ ଶସ୍ତ୍ର କୌଶଳ ଶିକ୍ଷା ଦେଇଥିଲେ; ଦ୍ରୁପଦ ତାଙ୍କୁହିଁ ଜାମାତାରୂପରେ ବରଣ କରିନେଲେ । ଏହା ଆଚାର୍ଯ୍ୟଙ୍କୁ କମ୍ ଆହତ କରିନଥିବ । ସେଇଥିପାଇଁ ତ ଅନ୍ତର ଭିତରେ ସେ ପାଞ୍ଚାଳୀଙ୍କ ଉପରେ ଅପ୍ରସନ୍ନ ଥିଲେ । ସେଇଥିପାଇଁତ ତାଙ୍କର ପିତୃସୁଲଭ ସ୍ନେହାକର୍ଷଣ ଦୁର୍ଯ୍ୟୋଧନ ପତ୍ନୀ ଭାନୁମତୀଙ୍କ ପ୍ରତି ଦ୍ୱିଗୁଣିତ ହୋଇ ଯାଇଥିଲା ।

ଆଚାର୍ଯ୍ୟ ଦ୍ରୋଣ ଓ ପାଞ୍ଚାଳ ନରେଶଙ୍କ ଭିତରେ ଆତ୍ମରକ୍ଷା କରିଥିବା ଚିରାଚରିତ ବିଦ୍ୱେଷର ପରିସମାପ୍ତି ଘଟିଥିଲା ଯୁଦ୍ଧର ପଞ୍ଚଦଶ ଦିବସରେ । ଜଣେ ଅଗ୍ନି ହେଲେ ଅନ୍ୟ ଜଣେ ବିସ୍ଫୋରକ ଦ୍ରବ୍ୟ; ଜଳି ନିଃଶେଷ ହେବାରେ ହିଁ ଉଭୟଙ୍କର ପରିସମାପ୍ତି । ଆଚାର୍ଯ୍ୟ ଦ୍ରୋଣଙ୍କର ଯୁଦ୍ଧରେ ପାଞ୍ଚାଳ ଓ ମତ୍ସ୍ୟ ଦେଶର ବହୁ ସୈନ୍ୟକ୍ଷୟ ସଂଘଟିତ ହୋଇଥିଲା । ପାଣ୍ଡବ ସେନାନୀ ଅସ୍ତ୍ରାଘାତରେ କ୍ଷିପ୍ରତା ଓ ଭୀଷଣତାରେ ଭୟଭୀତ ହୋଇ ପଳାୟନ କରିବାକୁ ଆରମ୍ଭ କରିଥିଲେ । ବିଶେଷତଃ କର୍ଣ୍ଣଙ୍କ ନିକ୍ଷିପ୍ତ ବ୍ରହ୍ମାସ୍ତ୍ରରେ ମହା ବଳଶାଳୀ ଘଟୋତ୍କଚର ମୃତ୍ୟୁ ସେମାନଙ୍କ ମନୋବଳକୁ ସଂପୂର୍ଣ୍ଣ ରୂପେ ଭାଂଗି ଦେଇଥିଲା । କୁରୁଶ୍ରେଷ୍ଠ ଭୀଷ୍ମଙ୍କର ଅବା ରକ୍ତ ସଂପର୍କ ଜନିତ ଦୁର୍ବଳତା ପାଣ୍ଡବଙ୍କ ପ୍ରତି ଥିଲା । ମାତ୍ର ଦ୍ରୋଣଙ୍କ ପକ୍ଷେ ସେପରି କୌଣସି ବାଧକତା ନଥିଲା ? ସେ ଅସ୍ତ୍ର ପ୍ରହାର କରିବା ନିମିତ୍ତ କୁଣ୍ଠାବୋଧ କରିବେ କାହିଁକି ?

ଏତଦ୍ ବ୍ୟତୀତ କୁରୁଶ୍ରେଷ୍ଠ ଭୀଷ୍ମଙ୍କର ପତନ ହେବା ଦିନଠାରୁ କୌରବପକ୍ଷ ଯୁଦ୍ଧର ବହୁ ନୀତି ନିୟମ ଉଲ୍ଲଘଂନ କରିସାରିଥିଲେ । ପାପକୁ ଆଉ କେତେ ବେଶୀ ପ୍ରଶ୍ରୟ

ଦିଆଯାଇପାରେ ? ଅନ୍ୟାୟ ଅଧର୍ମକୁ ଆଉ କେତେ ବେଶୀ ସହ୍ୟ କରାଯାଇପାରେ ? କୌରବ ପକ୍ଷରେ ପୁଣି ମନ୍ତ୍ରଣାଦାତା ଭାବରେ ରହିଛନ୍ତି ସୁବଳ ତନୟ ଶକୁନୀ । କେବଳ ଈର୍ଷ୍ୟା ଓ ଅସୂୟା ହେତୁ ଅତୀତରେ ଶକୁନୀଙ୍କ ମନ୍ତ୍ରଣାରେ ପ୍ରରୋଚିତ ଦୁର୍ଯ୍ୟୋଧନ କେତେ କ'ଣ ଅନ୍ୟାୟ ଆଚରଣ କରିଯାଇ ନାହାନ୍ତି ? ନିତି ରାତି ପାହିବା ମାତ୍ରେ ରଣଭୂମିରେ ଅସଂଖ୍ୟ ମୁମୂର୍ଷୁଙ୍କ ଆର୍ତ୍ତ ଚିତ୍କାର, ମଣିଷର ତାଜା, ଉଷ୍ଣ ରକ୍ତର ପ୍ରବାହ - ଏ ସବୁର ସମ୍ମୁଖୀନ ହେବାକୁ ମୋର ଆଉ ରୁଚି ବା ପ୍ରବୃତ୍ତି ନଥିଲା । ଅପର ପକ୍ଷରେ ଦ୍ରୋଣ ଯେଉଁଭଳି ଭାବରେ ପାଣ୍ଡବ ସେନାଙ୍କୁ ସଂହାର କରି ଚାଲିଛନ୍ତି ତା' ମଧ୍ୟ ଅସହ୍ୟ । ପଣ୍ଡୁସୁତ ମାନଙ୍କୁ ଶେଷରେ ମୁଁ ପ୍ରସ୍ତାବ ଦେଲି ଯେକୌଣସି ଉପାୟରେ ଆଚାର୍ଯ୍ୟ ଦ୍ରୋଣଙ୍କୁ ଅସ୍ତ୍ରତ୍ୟାଗ କରିବାକୁ ପଡ଼ିବ ।

ଅର୍ଜ୍ଜୁନ କହିଲେ - 'ତା କିନ୍ତୁ ସମ୍ଭବ କି ?'

ମୁଁ ଦୃଢ଼ ସ୍ୱରରେ କହିଲି, 'ସମ୍ଭବ । ଦୁର୍ବଳତା ! ଦୁର୍ବଳତାର ସନ୍ଧାନ କରିବାକୁ ପଡ଼ିବ । ତୁମେ ଜାଣ ସଖା ! ତାଙ୍କର ଦୁର୍ବଳତା ହେଉଛି ତାଙ୍କର ପୁତ୍ର ଅଶ୍ୱତ୍ଥାମା । କେବଳ ଅଶ୍ୱତ୍ଥାମାଙ୍କୁ ସୁଖ ସୌଭାଗ୍ୟରେ ରଖିବେ ବୋଲି ସେ ବ୍ରାହ୍ମଣ୍ୟଧର୍ମ ପରିତ୍ୟାଗ କରି କ୍ଷତ୍ରିୟ ସଦୃଶ ଅସ୍ତ୍ର ଧାରଣ କରିଛନ୍ତି ନା ? ସେଇ ଅଶ୍ୱତ୍ଥାମାକୁ ଯଦି ମୃତ ବୋଲି ଘୋଷଣା କରାଯାଏ ତେବେ ସେ ନିଶ୍ଚିତ ଅସ୍ତ୍ର ତ୍ୟାଗ କରିବେ । ଏଇଭଳି ମିଥ୍ୟା ପ୍ରଚାର କରିବାକୁ ହେବ ! ନଚେତ୍ ବିଜୟର ଆଶା କ୍ଷୀଣ !' ମୋ ପ୍ରସ୍ତାବ ଶୁଣି ଅର୍ଜ୍ଜୁନ ବଡ଼ କୁଣ୍ଠିତ ଓ ଲଜ୍ଜିତ ଭାବେ କହିଲେ । - 'ଏଭଳି ମିଥ୍ୟାର ଆଶ୍ରୟ ନେବାତ ଅନ୍ୟାୟ । ତା' ଛଡ଼ା ଗୁରୁଦେବ ଏପରି ଏକ ଭିତ୍ତିହୀନ ଅସତ୍ୟ ଭାଷଣରେ ବିଶ୍ୱାସ କରିବେ କାହିଁକି ?'

ମୁଁ ଅର୍ଜ୍ଜୁନଙ୍କ କାନ୍ଧରେ ହାତରଖି ହସି ହସି କହିଲି - 'ତୁମ ଗୁରୁଦେବ ଅସତ୍ୟ ଭାଷଣ ଉପରେ ଗୁରୁତ୍ୱ ଦିଅନ୍ତି ନାହିଁ, ମୁଁ ଜାଣେ । ମାତ୍ର ସତ୍ୟନିଷ୍ଠ ଧର୍ମରାଜ ଯୁଧିଷ୍ଠିରଙ୍କ ସତ୍ୟବାଦିତା ଉପରେ ତାଙ୍କର ପ୍ରଚଣ୍ଡ ଆସ୍ଥା !'

-'କିନ୍ତୁ ଜ୍ୟେଷ୍ଠଭ୍ରାତା କ'ଣ ଅସତ୍ୟ ଭାଷଣ ପାଇଁ ସମ୍ମତ ହେବେ ? ସମସ୍ତେ ବଡ଼ ଆଶାନ୍ୱିତ ଭାବେ ଧର୍ମରାଜଙ୍କୁ ଚାହିଁଲୁ । ଯଦିଓ ପ୍ରଥମେ ଧର୍ମରାଜ ପ୍ରବଳ ଆପତ୍ତି କଲେ, ପରେ କିନ୍ତୁ ସହମତ ହେଲେ । ମାତ୍ର ଆଂଶିକ ଅସତ୍ୟ ଭାଷଣ ନିମିତ୍ତ ସେ ରାଜି ହୋଇଗଲେ । ଏକଥା ଜାଣିବା ମାତ୍ରେ ଦ୍ୱିତୀୟ ପାଣ୍ଡବ ମାଳବର ରାଜା ଇନ୍ଦ୍ରବର୍ମାଙ୍କର ଅଶ୍ୱତ୍ଥାମା ନାମକ ହସ୍ତୀକୁ ଗଦାଘାତରେ ବିନାଶ କରି ରଣଭୂମିରେ ଉଲ୍ଲସିତ ଭାବେ ଚିତ୍କାର କଲେ - 'ଅଶ୍ୱତ୍ଥାମା ନିହତ ହୋଇଛନ୍ତି !'

ଅଶ୍ୱତ୍ଥାମା ସେତେବେଳକୁ ରଣଭୂମିର ବିପରୀତ ପ୍ରାନ୍ତରେ ଥିଲେ । ଭୀମସେନଙ୍କ

ମୁହଁରୁ ଏକଥା ଶୁଣି ଆଚାର୍ଯ୍ୟ ହୁଏତ ପ୍ରକୃତରେ ବିଶ୍ୱାସ କରି ପାରିନଥିଲେ । ଏପରିକି ଏକଥାର ସତ୍ୟାସତ୍ୟ ଜାଣିବା ପାଇଁ କୌରବପକ୍ଷର ଜଣଙ୍କୁ ସୁଦ୍ଧା ସେ ବିଶ୍ୱାସ କରିପାରିଲେ ନାହିଁ । ଯୁଧିଷ୍ଠିରଙ୍କ ନିକଟକୁ ଆସି ତାଙ୍କୁ ହିଁ ପ୍ରଶ୍ନ କଲେ - 'ଆବାଲ୍ୟରୁ ସତ୍ୟକଥନରେ ତୁମେ ଅଭ୍ୟସ୍ତ ତୁମେ କୁହ ବତ୍ସ, ଭୀମସେନ ଯାହା କହୁଛନ୍ତି ସେ କଥାରେ କିଛି ସତ୍ୟତା ଅଛିକି ନାହିଁ ?'

ହଁ, ଯୁଧିଷ୍ଠିରଙ୍କ ସଦୃଶ ଚିର ସତ୍ୟବାକ୍ ବ୍ୟକ୍ତି ସେଦିନ ସମସ୍ତ ପ୍ରକାର ଭାବ ସଂକଟ ଓ ଧର୍ମ ସଂକଟକୁ ପଛରେ ପକାଇ ଅସତ୍ୟହିଁ କହିଥିଲେ -

'ଅଶ୍ୱତ୍ଥାମା ହତ, ଇତି କୁଞ୍ଜରଃ ।'

ବାକ୍ୟର ପ୍ରଥମ ଅଂଶଟି ଶୁଣିବା ପରେ ଆଚାର୍ଯ୍ୟ ଆଉ କୌଣସି କଥା, କାହାର କଥା ଶୁଣିବାକୁ ପ୍ରସ୍ତୁତ ନଥିଲେ । ପୃଥିବୀର ସବୁ ଶବ୍ଦ ଯେମିତି ତାଙ୍କ ପାଇଁ ନିଶବ୍ଦ ହୋଇ ଯାଇଥିଲା, ସମସ୍ତ ବାୟୁଚଳାଚଳ ରୁଦ୍ଧବି ହୋଇ ଯାଇଥିଲା । ସେ କିଛି ସମୟ ଯୁଧିଷ୍ଠିରଙ୍କୁ ହତବୁଦ୍ଧି ଭଳି ଚାହିଁ ରହିଲେ ଓ ତାପରେ ନିଜର ସମସ୍ତ ଅସ୍ତ୍ର - ଶସ୍ତ୍ରକୁ ଏକତ୍ରିତ କରି ରଥରେ ରଖିଦେଇ ରଥରୁ ଅବତରଣ କରି ଯୋଗସ୍ଥଥିବା ଅବସ୍ଥାରେ ଧୃଷ୍ଟଦ୍ୟୁମ୍ନ ତାଙ୍କୁ ବିନାଶ କଲେ ।

ତଥାପି କ'ଣ ଶତୃତାର ଶେଷ ହୋଇଗଲା ? ଦ୍ରୋଣ ପାଞ୍ଚାଳ ନରେଶଙ୍କୁ ବିନାଶ କରିଥିଲେ, ପାଞ୍ଚାଳ କୁମାର ଦ୍ରୋଣଙ୍କ ଉପରେ ତା'ର ପ୍ରତିଶୋଧ ନେଲେ । ଠିକ୍ ସେଇଭଳି ଦ୍ରୋଣ ତନୟ ଅଶ୍ୱତ୍ଥାମା ଭୟଙ୍କର ବୈଶ୍ୟ ଯୁଦ୍ଧରେ ଧୃଷ୍ଟଦ୍ୟୁମ୍ନ ତଥା ଦ୍ରୌପଦୀତନୟଙ୍କର ସଂହାର କଲେ । ପ୍ରତିଶୋଧର ଲାଳସା ବଡ଼ ଭୟଙ୍କର । ପ୍ରତିହିଂସାର ସମାପ୍ତି ନଥାଏ । ଏହାଦ୍ୱାରା ଶତୃତା ମଧ୍ୟ ଶେଷ ହୋଇଯାଏ ନାହିଁ । ଏକମାତ୍ର ଉଦାରତା ଓ କ୍ଷମା ହିଁ ସବୁ ପ୍ରତିହିଂସା ଓ ପ୍ରତିଶୋଧର ଉର୍ଦ୍ଧ୍ୱରେ ରହି ଶତୃତାକୁ ନିଶ୍ଚିହ୍ନ କରିପାରେ । ଦ୍ରୋଣ ନିହତ ହେବାପରେ ମୁଁ ରଥ ଲେଉଟାଇ ଆଣୁଥିଲି । ମାତ୍ର ରୋରୁଦ୍ୟମାନ ଅର୍ଜ୍ଜୁନଙ୍କୁ ଚାହିଁବା ମାତ୍ରେ ମୁଁ ରଥ ଅଟକାଇ ରଖିଲି । ଅର୍ଜ୍ଜୁନ ଦ୍ରୋଣଙ୍କର ପରାଜୟ ଚାହୁଁଥିଲେ, ତାଙ୍କର ବିନାଶ ନୁହେଁ । ଗୁରୁ ଶିଷ୍ୟ ଭିତରେ ପିତା - ପୁତ୍ରର ସମ୍ବନ୍ଧ ଭଳି ଏକ ଅଲିଖିତ ନିବିଡ଼ ସଂପର୍କ ଗଢ଼ି ଉଠିଥିଲା । ଅର୍ଜ୍ଜୁନ ବିଳାପ କରୁ କରୁ ମୋତେ କହୁଥିଲେ, 'ଏଭଳି ଗୁରୁଦେବଙ୍କ ନିକଟରୁ ଶିକ୍ଷା ଗ୍ରହଣ କରିବା ସୌଭାଗ୍ୟ ଜନକ ! ଯେଉଁଦିନ ପ୍ରଥମ ସାକ୍ଷାତ ହୋଇଥିଲା, ଆମେ ପଞ୍ଚଭ୍ରାତା ଓ କୌରବ ଶତଭ୍ରାତ ଏକ କନ୍ଦୁକ ନେଇ କ୍ରୀଡ଼ା କରୁ କରୁ ତାହା ଜଳଶୂନ୍ୟ, କଣ୍ଟକାକୀର୍ଣ୍ଣ ଗଭୀର କୂପରେ ନିପତିତ ହୋଇଥିଲା । ସେହି କନ୍ଦୁକଟିକୁ ଆମେ ଏକଶତ ପଞ୍ଚଭ୍ରାତା ଉଦ୍ଧାର କରିପାରିନଥିଲୁ । ସେହି ସ୍ଥାନରେ ଗୁରୁଦେବ ପହଞ୍ଚି ଏକ ଅଭିମନ୍ତ୍ରିତ କୁଶାଗ୍ର ସାହାଯ୍ୟରେ ତାହା ବାହାରକୁ ଆଣି କହିଥିଲେ - 'ତୁମ୍ଭେମାନେ ରାଜକୁମାର ! ତୁମ୍ଭମାନଙ୍କର ଶସ୍ତ୍ର ଗୁରୁ

କିଏ ? ସେ ଏତିକି ଶିକ୍ଷା ଦେଇ ନାହାନ୍ତି ?' ରୁଦ୍ଧ ଶ୍ୱାସରେ ଧାଇଁ ଆସି ଏକଥା ମୁଁ ପିତାମହଙ୍କୁ ଜଣାଇବାରୁ ସେ ତତ୍‌କ୍ଷଣାତ୍ କହିଥିଲେ ଏହି ଅପ୍ରତିଦ୍ୱନ୍ଦୀ ଶସ୍ତ୍ରବୀତ୍ ନିଶ୍ଚିତ ଭାବେ ଦ୍ରୋଣାଚାର୍ଯ୍ୟ ! ଏହାହିଁ ମୋ ଗୁରୁଦେବଙ୍କର ଶସ୍ତ୍ର କୌଶଳର ଏକ ସ୍ୱତନ୍ତ୍ର ପରିଚୟ । ତାଙ୍କୁ ସୁଦ୍ଧା ଏଇଭଳି ଭାବେ ଜୀବନ ଦେବାକୁ ହେଲା ?'

ଆଚାର୍ଯ୍ୟଙ୍କର ସମସ୍ତ ଶିଷ୍ୟ ଅସ୍ତ୍ରତ୍ୟାଗ କରି ଅଶ୍ରୁ ଲୋଚନରେ ଅଧୋବଦନରେ ଦଣ୍ଡାୟମାନ ହୋଇଥିଲେ । ମୁଁ କୌଣସି ପ୍ରକାରେ ଅର୍ଜୁନଙ୍କୁ ଶାନ୍ତ କରିବାକୁ ଚେଷ୍ଟାକରି ରଥ ଲେଉଟାଇ ଆଣୁଥିଲି । ମୋର ମନେ ହେଲା କେହି ଯେମିତି ଅତି ନିକଟରୁ ମୋତେ ଡାକୁଛି । ମୁଁ ପଛକୁ ଚାହିଁଲି । ସମସ୍ତେ ତ ନୀରବ ଥିଲେ । କେବଳ ଆଚାର୍ଯ୍ୟଙ୍କ ଅନ୍ତରାତ୍ମା ଯେପରି ବିଷ୍ଣୁ ସହସ୍ର ନାମ ଜପ କରୁଥିବାର ମୁଁ ଶୁଣିପାରିଲି । କୌରବଙ୍କ ମନୋବଳ ଆହୁରି ଦୁର୍ବଳ ହୋଇଯାଇଥିଲା । ତଥାପି ଦୁର୍ଯ୍ୟୋଧନଙ୍କର ସ୍ପର୍ଦ୍ଧା ଓ ଅହମିକାର ଶେଷ ନଥିଲା ।

ପାପର ପଥ ପିଚ୍ଛିଳ; କିନ୍ତୁ ଦୁଷ୍କର ନୁହେଁ । ପାପାଚାରର ସହଯୋଗୀ ଅନେକ । ମାତ୍ର ପୂଣ୍ୟର ପଥ ଦୁର୍ଗମ, ପୂଣ୍ୟର ସାଧନା ଦୁଃସାଧ୍ୟ । କୁରୁ ପାଣ୍ଡବଙ୍କ ଜୀବନ ଚର୍ଯ୍ୟାରେ ଏହାହିଁ ତ ପ୍ରମାଣିତ ହୋଇ ଆସିଛି । ପାଣ୍ଡବ ଶିବିରରେ ପ୍ରତ୍ୟେକ ରଣକ୍ଳାନ୍ତ, ନିଦ୍ରିତ । ପ୍ରଭାତ ହେବାକୁ ତଥାପି ଅନେକ ବିଳମ୍ବ । ମୁଁ କିନ୍ତୁ ପ୍ରସ୍ତୁତ ହୋଇ ସାରିଥିଲି । ନିଶାନ୍ତ ମୋତେ ସୁବାସିତ ଚନ୍ଦନ ଓ ପୁଷ୍ପରେ ସୁବେଶ କରିଦେଉଥିଲା । ମଣି ମାଣିକ୍ୟ ବା ସ୍ୱର୍ଣ୍ଣାଳଙ୍କାର ଅପେକ୍ଷା ପୁଷ୍ପାଭରଣ ମୋର ଅଧିକ ପ୍ରିୟ । ନିଶାନ୍ତ ପ୍ରତ୍ୟହ ପୁଷ୍ପ ଚୟନ କରିବା ଉଦ୍ଦେଶ୍ୟରେ ଯାଇ ଶତ୍ରୁପକ୍ଷର ସଂବାଦ ସଂଗ୍ରହ କରି ଆଣେ । ସେଦିନ ମୋ କଣ୍ଠରେ ପୁଷ୍ପହାର ଖଞ୍ଜି ଦେଉ ଦେଉ କହିଲା- 'ଆଜି କୌରବ ପକ୍ଷର ସେନାପତି କର୍ଣ୍ଣ ।' ମୁଁ ନିରୁତ୍ତର ରହିବା ଦେଖି ସେ କହିଲା - 'ଧନଞ୍ଜୟଙ୍କ ସଦୃଶ ସେ ମଧ୍ୟ ମହାବୀର । ଅସ୍ତ୍ର ଚାଳନାରେ ତାଙ୍କର ଲଘୁହସ୍ତତା ଓ କ୍ଷିପ୍ରତା ମଧ୍ୟ ଭୁବନ ବିଦିତ । ଶୁଣାଯାଏ ବହୁ ବର୍ଷରୁ ସେ ଆଜିର ଏ ସୁଯୋଗକୁ ଅପେକ୍ଷା କରି ରହିଥିଲେ । ଅବଶ୍ୟ ଆପଣ ସ୍ୱୟଂ ଧନଞ୍ଜୟଙ୍କର ଦିଗ୍‌ଦର୍ଶକ । ତଥାପି ସାବଧାନତା ଆବଶ୍ୟକ । କାରଣ ସୂର୍ଯ୍ୟ ପ୍ରଦତ୍ତ ସହଜାତ ଅଭେଦ୍ୟ କବଚ କୁଣ୍ଡଳ କର୍ଣ୍ଣଙ୍କର ହାତଛଡ଼ା ହୋଇଯାଇଥିଲେ ବି ଇନ୍ଦ୍ରପ୍ରଦତ୍ତ ଅମୋଘ ବୈଜୟନ୍ତୀ ଶକ୍ତି ହସ୍ତଗତ ହୋଇଛି । ଆଜି ସେ ତାହା ପ୍ରୟୋଗ କରିପାରନ୍ତି । ଏତଦ୍ ବ୍ୟତୀତ ସୂଚୀ ମୁଖ ତୀରରେ ଅଶ୍ୱସେନ ନାଗ ମଧ୍ୟ ପ୍ରବିଷ୍ଟ ହୋଇଛି !'

'ବୈଜୟନ୍ତୀ ଶକ୍ତି ?' ମୁଁ ଚମକି ପଡ଼ିଲି ବଜ୍ରାହତ ଭଳି, ତେବେତ ଯଥେଷ୍ଟ ସାବଧାନତା ଆବଶ୍ୟକ । ଅର୍ଜୁନଙ୍କର ଅକ୍ଷୟ ତୂଣୀରରୁ ତୀର ଶେଷ ହେବାର ନୁହେଁ, ତୀର ସନ୍ଧାନ ମଧ୍ୟ ତାଙ୍କର ଅବ୍ୟର୍ଥ; ମାତ୍ର ତେବେ ଅର୍ଜୁନଙ୍କର ଗୋଟିଏ ମାତ୍ର ବିଜୟ ପଥ ଏବେବି

ଉନ୍ମୁକ୍ତ ଅଛି । ତା' ହେଉଛି ଅଂଗରାଜ ବସୁଷେଣଙ୍କର 'ଦୁର୍ଭାଗ୍ୟ'ର ପଥ । ଭାଗ୍ୟ ଲାଂଛିତ କର୍ଣ୍ଣ, ଚିର ପ୍ରବଞ୍ଚିତ କର୍ଣ୍ଣ, ଜୀବନରେ କୌଣସି ଦିନ ଭାଗ୍ୟ ଯାହା ପ୍ରତି ଅନୁକୂଳ ଆଚରଣ କରି ନାହିଁ । ସେଦିନ ବା କରିଥା'ନ୍ତା କାହିଁକି ? ଅଂଗାଧିପତି କର୍ଣ୍ଣଙ୍କର ରୂପ, ଗୁଣ, ବୀର୍ଯ୍ୟ, ଶୌର୍ଯ୍ୟ, ପ୍ରତିପତ୍ତି, ଚିତ୍ତ ସବୁଥିଲେ ସୁଦ୍ଧା 'ଭାଗ୍ୟପରାହତ' - ଏଇ ଗୋଟିଏ ଶବ୍ଦ ବ୍ୟତୀତ ଆଉ କୌଣସି ଶବ୍ଦ ମୋ ମନକୁ ଆସିଲା ନାହିଁ । ଅଥଚ ଚିର ଦାରିଦ୍ର୍ୟ ଭିତରେ କାଳ କାଟୁଥିଲେ ବି ଅର୍ଜ୍ଜୁନଙ୍କୁ ଭାଗ୍ୟଶାଳୀ ବ୍ୟତୀତ ଆଉ କିଛି କହିହୁଏ ନାହିଁ । ଏଇକଥା ଅସ୍କନ୍ଦ ବନରେ ପାଞ୍ଚାଳ ତନୟା ମୋତେ ପ୍ରଶ୍ନ କରିଥିଲେ । କୃଷ୍ଣା ଏକ କଦମ୍ବ ବୃକ୍ଷର ପୁଷ୍ପିତ ଶାଖା ତଳେ ବସି ଏକ ମୃଗ ଶିଶୁକୁ ବକ୍ଷଲଗ୍ନ କରି ଅପତ୍ୟ ସ୍ନେହରେ ଆଦର କରୁଥିଲେ । ଯାହା ସ୍ୱାଭାବିକ ଥିଲା । କାରଣ ବନବାସ ସମୟରେ କୃଷ୍ଣା ତାଙ୍କର ପଞ୍ଚପୁତ୍ରଙ୍କୁ ସୁଭଦ୍ରାଙ୍କ ଦାୟିତ୍ୱରେ ପାଞ୍ଚାଳ ପଠାଇ ଦେଇଥିଲେ । ଅରଣ୍ୟର ସମସ୍ତ ପକ୍ଷୀ ଶାବକ, ପଶୁ ଶାବକ କିମ୍ବା ଅରଣ୍ୟର ଅଧିବାସୀଙ୍କ ଶିଶୁସନ୍ତାନଗଣ କୃଷ୍ଣାଙ୍କ ଅପତ୍ୟ ସ୍ନେହରେ ଧନ୍ୟ ହେଉଥିଲେ । ମୁଁ ଓ ସଖା ଅର୍ଜ୍ଜୁନ ସେଇ ଦିଗକୁ ମୁଗ୍ଧ ନେତ୍ରରେ ଚାହିଁ ରହିଥିଲୁ । ନିକଟରେ ଧର୍ମରାଜ ବା ନକୁଳ ସହଦେବ ଉପସ୍ଥିତ ନଥିଲେ । ଅଦୂରରେ କେବଳ ଦ୍ୱିତୀୟ ପାଣ୍ଡବ ଗଦାଭ୍ୟାସ କରୁଥିଲେ । ଏହି ସମୟରେ ବୃକ୍ଷ ଶାଖାରୁ ବୃନ୍ତସହ, ନବପତ୍ର ସହ ଦୁଇଟି କଦମ୍ବ ଫୁଲ କୃଷ୍ଣାଙ୍କ ଅଞ୍ଚଳରେ ଖସିପଡ଼ିଲା । ନବ ଆଷାଢ଼ର ସୁବାସିତ କଦମ୍ବ, ମୁଁ ରୋମାଞ୍ଚିତ ହୋଇଗଲି । କୃଷ୍ଣା ସେ ଦୁଇଟି ଫୁଲରୁ ଗୋଟିଏ ମୋତେ ଓ ଅନ୍ୟଟି ସଖାଙ୍କ ହାତକୁ ବଢ଼ାଇଦେଲେ । ମୁଁ ତାଙ୍କୁ ପରିହାସ କରିବା ପାଇଁ କହିଲି - 'ହେଲା ଅବା ଧର୍ମରାଜ କି ନକୁଳ ସହଦେବ ନିକଟରେ ନାହାନ୍ତି; କିନ୍ତୁ ବନବାସ ଯାତ୍ରା ଆରମ୍ଭ ସମୟରେ ପିଉସୀ କୁନ୍ତୀ ତୁମକୁ କହିଥିଲେ, ଯାହାକିଛି ମିଳିବ ସେଥିରେ ଅର୍ଦ୍ଧେକ ଭାଗ ଭୀମସେନଙ୍କର ଓ ବାକୀ ଅର୍ଦ୍ଧେକ ତୁମ ସମସ୍ତଙ୍କର । ତୁମେ ନିର୍ବିଚାରରେ କଦମ୍ବ ଫୁଲଟି ସଖାଙ୍କୁ ଦେଇ ଦେଲ ଯେ ? ଭ୍ରାତା ବୃକୋଦର ପୁଣି ଏତେ ନିକଟରେ..... ।' କୃଷ୍ଣା ମଧୁର କଣ୍ଠରେ ହସି ଦେଇ କହିଲେ - 'ମୋର ସ୍ମରଣ ଅଛି ସଖା ! ଖାଦ୍ୟ ଦ୍ରବ୍ୟ ସଂପର୍କରେ ଜନନୀ ସେ କଥା କହିଥିଲେ । ଏକଥା ବି କହିଥିଲେ କନିଷ୍ଠ ପାଣ୍ଡବଙ୍କର ଅଧିକ ଯତ୍ନ ଆବଶ୍ୟକ, କାରଣ ସେ ସ୍ୱଭାବତଃ ଲଜ୍ଜ୍ୟାଶୀଳ । ନିଜର ଆବଶ୍ୟକୀୟ ବସ୍ତୁ ସେ ଦାବୀ କରି ନେଇ ଜାଣନ୍ତି ନାହିଁ, ଯାଚି ଦେବାକୁ ହୁଏ । ତା' ଛଡ଼ା ମୁଁ ସହଧର୍ମିଣୀ, ମୁଁ ଜାଣେ ନାହିଁକି କାହାର କ'ଣ ଆବଶ୍ୟକ ?'

ତାପରେ ଟିକିଏ ଲଜ୍ଜିତା ଭାବେ ନତମୁଖୀ ହୋଇ ନମ୍ର ସ୍ୱରରେ କହିଲେ - 'ବୃକୋଦର ସୁଗନ୍ଧ ଚନ୍ଦନରେ ଲାଳସୀ । ଆପଣଙ୍କ ସଖା କିନ୍ତୁ ପୁଷ୍ପାଭରଣ ପ୍ରିୟ । ନହେଲେ ଇନ୍ଦ୍ରପ୍ରସ୍ଥରେ ବୃଦ୍ଧା ଧାତ୍ରେୟିକା ତାଙ୍କୁ ଏତେ ନାମ ଥାଉ ଥାଉ 'ଦୂତୀ କୃଷ୍ଣ' ନାମରେ ଡାକନ୍ତା କି !'

ମୁଁ ଅଧିକ ପରିହାସ ପ୍ରବଣ ଭାବେ ଦୀର୍ଘଶ୍ୱାସଟିଏ ମୋଚନ କରି କହି ଉଠିଲି - 'ହାୟ ! ହାୟ ! ଏମିତି ସହଧର୍ମିଣୀ ଭାଗ୍ୟବାନ୍‌କୁହିଁ ପ୍ରାପ୍ତ ହୁଏ । ସ୍ୱାମୀ ନକହିଲେ ବି ଯିଏ ତା'ର ଇଛା ଅନିଛା ରୁଚି ଅଭିରୁଚି ସଂପର୍କରେ ଏତେ ବେଶୀ ସଚେତନ ।'

ଅର୍ଜୁନ କଦମ୍ବର ମୃଦୁ ସୁବାସକୁ ଧିରେ ଧିରେ ଆଘ୍ରାଣ କରୁଥିଲେ । ମୁଁ ତାଙ୍କ କାନ୍ଧରେ ହାତରଖି କହିଲି - 'ସଖା ତୁମେ କେଡ଼େ ଭାଗ୍ୟବାନ୍ ? ପାଞ୍ଚାଳୀ ତତ୍‌କ୍ଷଣାତ୍ ବିରସ କଣ୍ଠରେ କହିଲେ - 'ସେ କଥା କହିବେ ନାହିଁ । ରୂପଗୁଣ, ବଳବୀର୍ଯ୍ୟ, ବିଦ୍ୟାବୁଦ୍ଧି ସବୁଥାଇକି, ସର୍ବୋପରି ଆପଣଙ୍କ ସଖା ହୋଇ ମଧ୍ୟ ଦୁର୍ଭାଗ୍ୟ ତାଙ୍କର ପଶ୍ଚାଦ୍ ଧାବନ କରୁଛି । ଚିରକାଳ ଦାରିଦ୍ର୍ୟରେ ହିଁ ଅତିବାହିତ ହୋଇଛି । ଏଇତ ଦ୍ୱାଦଶ ବର୍ଷର ବନବାସ ଅବଧି ପୂର୍ଣ୍ଣ ହେଲା । ଆହୁରି ଅଜ୍ଞାତ ବାସ ଏକବର୍ଷ । କିଏ ଜାଣେ ? ହୁଏତ କେଉଁଠି ମୋର ପତିଗଣଙ୍କୁ ଅନ୍ୟର ଭୃତ୍ୟ ଭାବେ ଜୀବନ ବିତେଇବାକୁ ପଡ଼ିବ । ସଖା ! ଏପରି କାହିଁକି ହେଲା ?'

ମୁଁ ସେଦିନ କହିଥିଲି - 'କାହିଁକି ହେଲା ତୁମେ ତା' ପ୍ରକୃତରେ ଜାଣିନାହଁ ? ଶୁଣିଛି ତୁମେ ସର୍ବଶାସ୍ତ୍ର ବିଶାରଦା, ସହଦେବଙ୍କ ଠାରୁ ଜ୍ୟୋତିଷ ଶାସ୍ତ୍ର ମଧ୍ୟ ଅଧ୍ୟୟନ କରିଛ ? ମନୁଷ୍ୟ ଶରୀରର ଗଠନରେ ମଧ୍ୟ ତା'ର ଭାଗ୍ୟ ଲିପିବଦ୍ଧ ହୋଇଥାଏ ସଖୀ ! ମୋ ସଖା ଅର୍ଜୁନଙ୍କ ଦୁଇ ଜାନୁର ନିମ୍ନଭାଗ ଅତ୍ୟନ୍ତ ସ୍ଥୂଳ ଓ ଦୀର୍ଘ । ସେଥିପାଇଁ ଦୁଃଖ ଦାରିଦ୍ର୍ୟ ତାଙ୍କ ସହଚର ହୋଇ ରହିଛି ।

ଏଇଭଳି କେତେ କ'ଣ ଚିନ୍ତା କରୁ କରୁ ହଠାତ୍ ଦୃଷ୍ଟି ଗୋଚର ହେଲା ଠିକ୍ ଭୀମସେନଙ୍କ ସଦୃଶ ଏଇ ବ୍ରାହ୍ମ ମୁହୂର୍ତ୍ତରେ ହିଡ଼ିମ୍ବା ତନୟ ଘଟୋତ୍କଚ ମୁକ୍ତ ପ୍ରାଙ୍ଗଣରେ ଅସ୍ତ୍ରାଭ୍ୟାସ ତଥା ଅଂଗଚାଳନା କରୁଛନ୍ତି ଏହାପରେ ସେ ସ୍ନାନାଦି କାର୍ଯ୍ୟ ସମାପନ କରି ଦୁର୍ଗାସ୍ତୋତ୍ର ଜପ କରିବେ, ଶକ୍ତିର ଆରାଧନା କରିବେ । ତାପରେ ସାମାନ୍ୟ ମାଂସହାର କରି ଯୁଦ୍ଧ ଯାତ୍ରା କରିବେ । ମୁଁ ତାଙ୍କ ନିକଟକୁ ଗଲି । ମୋତେ ଦେଖିବା ମାତ୍ରେ ଭକ୍ତିପୂତ ଶୁଦ୍ଧଚିତ୍ତରେ ପ୍ରଣାମ କଲେ ସେ । ମୁଁ ତାଙ୍କ ମୁଣ୍ଡିତ ମସ୍ତକକୁ ସସ୍ନେହରେ ଆଉଁଷିଦେଇ କହିଲି - 'ଯଶସ୍ୱୀ ହୁଅ ବତ୍ସ ! ଆଜି ଭଳି ସୁଯୋଗ ତୁମ ଜୀବନରେ ଆଉ ଆସିବ ନାହିଁ । ପିତୃ ମାତୃ ଋଣ ପରିଶୋଧ କରିବାର ଆଜିହିଁ ତୁମର ଉପଯୁକ୍ତ ସମୟ !'

ସେ ନିଷ୍କପଟ ଭାବେ ମୋତେ ଚାହିଁ ହସି ହସି କହିଲେ - 'ଆଦେଶ କରନ୍ତୁ ମହାଭାଗ !'

ମୁଁ ସେ ବିଶାଳ ବପୁ ବିଶିଷ୍ଟ ଯୁବକଟିକୁ ଆଲିଙ୍ଗନାବଦ୍ଧ କରି କହିଲି 'ସେ ସମୟ ଆସିବା ମାତ୍ରେ ଆଦେଶ ଦେବି ବତ୍ସ ! ତୁମେ ଆଜି ରଣଭୂମିରେ ଅର୍ଜୁନଙ୍କ କପିଧ୍ୱଜ ରଥ ପାଖେ ପାଖେ ରହିବ । '

ସେ ସମ୍ମତି ଜଣାଇଲେ । ତାଙ୍କ ଆଖି ଦୁଇଟିରୁ ଅନାବିଳ ମମତା ଝରିପଡୁଥିଲା । ଏହି ବଳବୀର୍ଯ୍ୟଶାଳୀ ଯୁବକଟି ରଣଭୂମିରେ କୁରୁ ବାହିନୀକୁ ଅସ୍ତ ବ୍ୟସ୍ତ କରିପକାନ୍ତି । ଇଏ ମାୟା ଯୁଦ୍ଧରେ ମଧ୍ୟ ପ୍ରବୀଣ । ଦୁର୍ଯ୍ୟୋଧନଙ୍କର ପକ୍ଷଭୁକ୍ତ ହୋଇଥିବା ଅଳମ୍ବୁଷ ଦୈତ୍ୟକୁ ଘଟୋତ୍କଚହିଁ ତ ମାୟାଯୁଦ୍ଧରେ ସଂହାର କରିବାକୁ ସମର୍ଥ ହୋଇଥିଲେ !

ସଖା ଅର୍ଜ୍ଜୁନ କବଚ ଧାରଣ କରି ହୁଏତ ମୋତେ ଖୋଜି ଖୋଜି ବାହାରକୁ ଆସିଲେ । ମୁଁ ଦ୍ରୁତ ପଦରେ ତାଙ୍କ ନିକଟକୁ ଫେରି ଆସିଲି ।

ଓଃ ! ଦୁଇଦିନ କାଳ ସେ କି ଭୀଷଣ ସଂଗ୍ରାମ ? କର୍ଣ୍ଣାର୍ଜ୍ଜୁନର ସେହି ବହୁ ପ୍ରତୀକ୍ଷିତ ବହୁ ବାଂଛିତ ଭୟଙ୍କର ସଂଗ୍ରାମରେ ତ୍ରିଭୁବନ ଚମକୃତ ହୋଇଯାଇଥିଲା । ମେଦିନୀ ପ୍ରକଂପିତ ହୋଇଯାଇଥିଲା । ଉଭୟ ବୀରଙ୍କ ତୂଣୀରରୁ ଏତେ ତୀର ନିକ୍ଷିପ୍ତ ହୋଇଥିଲା ଯେ, ସତେ ଯେପରି ଏକ ଦ୍ୱିତୀୟ ମେଘପଟଳ ସୃଷ୍ଟି ହୋଇଥିଲା । କର୍ଣ୍ଣ ଯଥାର୍ଥରେ ବୀର । ହେଲେ ତାଙ୍କର ଜନ୍ମଲଗ୍ନରୁ ଅଶୁଭ ଲଂଜାତାରାର ପୁଚ୍ଛପାଶ ସଦୃଶ ଭାଗ୍ୟର ପ୍ରବଞ୍ଚନା ହିଁ ତାଙ୍କୁ ଅନୁସରଣ କରିଆସିଛି । ଭାଗ୍ୟ ଉପରୁ ସମସ୍ତ ଆସ୍ଥା ତାଙ୍କର ତୁଟି ଯାଇଥିଲା ସେଇଥିପାଇଁ । ସେ ପୁରୁଷାର୍ଥରେ ବିଶ୍ୱାସୀ ଥିଲେ । ଏଇ ଦାମ୍ଭିକତା, ଚିର ଅସୂୟାଭାବ, ଅର୍ଜ୍ଜୁନପ୍ରତି ଆଜନ୍ମ ପୋଷିତ ବୈରଭାବ, ଅତୃପ୍ତି, ଅପ୍ରାପ୍ତି ତାଙ୍କୁ ଏକ ଭିନ୍ନ ପରିବେଶରେ ଠିଆ କରାଇଥିଲା । କୁନ୍ତୀ ନନ୍ଦନ ହୋଇ ସୁଦ୍ଧା ପରାଶ୍ରିତ ଭାବେ, ଦୁର୍ଯ୍ୟୋଧନର କରୁଣାର ପାତ୍ରଭାବେ ଚିରକାଳ ତାଙ୍କୁ ଅନ୍ୟାୟ, ଅଧର୍ମର ସହାୟତା କରିବାକୁ ପଡ଼ିଥିଲା । ରଣଭୂମିରେ ସୁଦ୍ଧା ଭାଗ୍ୟ ତାଙ୍କ ସହ ପ୍ରତିକୂଳ ଆଚରଣ କରିଛି । କୁନ୍ତୀ ନନ୍ଦନ ହେବାର ସୌଭାଗ୍ୟ ସେ ମୁହୂର୍ତ୍ତଟିଏ ସୁଦ୍ଧା ଅର୍ଜ୍ଜନ କରିପାରିନାହାନ୍ତି; ଅଥଚ କୁନ୍ତୀଙ୍କୁ ଦେଇଥିବା ପ୍ରତିଶୃତି ପାଳନ କରି ଯଥେଷ୍ଟ ସୁଯୋଗ ଥିଲେ ସୁଦ୍ଧା ସେ ଧର୍ମରାଜ, ଭୀମସେନ, ନକୁଳ, ସହଦେବ କାହାରି ପ୍ରାଣନାଶ କରିନାହାନ୍ତି । ଯେତେବେଳେ ଅର୍ଜ୍ଜୁନଙ୍କ ସହ ସେ ଭୀଷଣ ସମରରେ ବ୍ୟାପୃତ ସେତେବେଳେ ତାଙ୍କୁ ଦିଗ୍‌ଭ୍ରଷ୍ଟ କରିବା ଉଦ୍ଦେଶ୍ୟରେ ଭୀମସେନ, ନକୁଳ, ସହଦେବ ତାଙ୍କୁ ଆକ୍ରମଣ କରିଥିଲେ । ସେ କିନ୍ତୁ କେବଳ ନିକ୍ଷିପ୍ତ ଅସ୍ତ୍ରକୁ ଖଣ୍ଡବିଖଣ୍ଡ କରିଥିଲେ, ଅସ୍ତ୍ରଧାରୀ କୁନ୍ତୀ ନନ୍ଦନଙ୍କ ଶରୀରରେ ସାମାନ୍ୟ କ୍ଷତଟିଏ ସୁଦ୍ଧା ସୃଷ୍ଟି କରିନଥିଲେ । ତାଙ୍କର ଏ ପ୍ରକାର ଆଚରଣରେ କୌରବ ପକ୍ଷତ କ୍ଷୁବ୍ଧ ହେବା ସ୍ୱାଭାବିକ ଥିଲା, ପାଣ୍ଡବ ପକ୍ଷ ମଧ୍ୟ କମ୍ ବିସ୍ମିତ ହୋଇନାହାନ୍ତି । ଏ ଧର୍ମ ଯୁଦ୍ଧର ରଣନୀତି କେବଳ ପ୍ରତିଜ୍ଞା ପୂରଣ ଓ ପ୍ରତିଶୃତି ପାଳନରେ ନିର୍ଭର ଥିଲା । ମଦ୍ର ପତି ଶଲ୍ୟ ଯୁଧିଷ୍ଠିରଙ୍କୁ ଦେଇଥିବା ପ୍ରତିଶୃତି ଅକ୍ଷରେ ଅକ୍ଷରେ ପାଳନ କରିଥିଲେ ।

ରଥୀର ଜୟ ପରାଜୟ ଅନେକ ସମୟରେ ସାରଥୀର ଦିଗ୍‌ଦର୍ଶନ ଉପରେ ନିର୍ଭରଶୀଳ । ଉତ୍ତମ ଦିଗ୍‌ଦର୍ଶନ ଦେବା ସହିତ ରଥୀର ସୁରକ୍ଷା ପ୍ରତି ସଚେତନ ରହିବା

ସାରଥୀର ଯେମିତି ଗୁରୁ ଦାୟିତ୍ୱ ଠିକ୍ ସେହିଭଳି ବିପଦ କାଳରେ ରଥୀର ଉତ୍ସାହ ବୃଦ୍ଧି କରିବା ତା'ର ପରମ କର୍ତ୍ତବ୍ୟ । ମୋହଗ୍ରସ୍ତ ଅର୍ଜୁନଙ୍କ ନିମିତ୍ତ ମୋତେ ଭଗବଦ୍ ଗୀତାର ପ୍ରବକ୍ତା ହେବାକୁ ପଡ଼ିଥିଲା । ଅଥଚ ମଦ୍ରପତି ଶଲ୍ୟ ପ୍ରତି ପଦେ ପଦେ କର୍ଣ୍ଣଙ୍କୁ ନିରୁତ୍ସାହିତ କରୁଥିଲେ ଐକାନ୍ତିକ ନିଷ୍ଠାର ସହ । ରଣ ଭୂମିରେ ତାଙ୍କର ପ୍ରବଳ ପ୍ରତିପକ୍ଷ ଚିର ବାଂଛିତ ଶତ୍ରୁ ଅର୍ଜୁନଙ୍କ ସମ୍ମୁଖୀନ ହେବା ମାତ୍ରେ ଶଙ୍ଖନାଦ କରି ରଣ ହୁଂକାର ଦେବା ମାତ୍ରେ ମଦ୍ରପତି ଶଲ୍ୟ ରଥ ଆଗକୁ ଚଳେଇ ନେବା ପରିବର୍ତ୍ତେ ରଜ୍ଜୁକୁ ଶୀଥିଳ କରି ହଠାତ୍ ଅଟ୍ଟହାସ୍ୟ କରି ଉଠିଲେ ପ୍ରବଳ ତାଚ୍ଛଲ୍ୟରେ । ତାପରେ କହିଲେ - 'କାହାପ୍ରତି ଏ ରଣ ହୁଂକାର ଅଂଗରାଜ ? ତ୍ରିଭୁବନ ବିଜୟୀ ବୀର ଧନଞ୍ଜୟ ପ୍ରତି ? ତା' ଗାଣ୍ଡିବ ଧନୁର ଟଂକାର ଶୁଣିଲେ ତୁମେ ମୂର୍ଚ୍ଛାହତ ହେବ । ମଦମତ୍ତ ହସ୍ତୀ ନିକଟରେ ଶଶକ ଯାହା, ସିଂହ ନିକଟରେ ଶୃଗାଳର ସ୍ଥିତି ଯାହା ଧନଞ୍ଜୟ ନିକଟରେ ତୁମର ସ୍ଥିତି ସେଇଭଳି ଉପେକ୍ଷାର ବସ୍ତୁ । ତୁମେ କ'ଣ ଭାବୁଛ ଦୁର୍ଯ୍ୟୋଧନ ଦୟାପରବଶ ହୋଇ ତୁମ ମସ୍ତକରେ ଶାଢ଼ୀ ବାନ୍ଧି ଅଂଗରାଜ୍ୟ ଦାନ କରିଛନ୍ତି ବୋଲି ତୁମେ ସତକୁ ସତ କୁନ୍ତୀ ନନ୍ଦନ ଧନଞ୍ଜୟର ସମକକ୍ଷ ହୋଇଗଲ ?'

'ଦୟା' ଓ 'ଦାନ' - ଏ ଦୁଇଟି ଶବ୍ଦ ଉପରେ ଇଛାକୃତ ଭାବେ ଶଲ୍ୟ ଆବଶ୍ୟକତାଠାରୁ ଅତିରିକ୍ତ ଗୁରୁତ୍ୱ ଆରୋପ କରିଥିଲେ ।

କର୍ଣ୍ଣ କିନ୍ତୁ ଏହାର କୌଣସି ପ୍ରତ୍ୟୁତ୍ତର କଲେ ନାହିଁ । ସେ ହୁଏତ ଜାଣିଥିଲେ ଚଞ୍ଚକତା ବଳରେ ନକୁଳ ସହଦେବଙ୍କ ମାତୁଳଙ୍କୁ କୁରୁପତି ସ୍ୱୀୟ ପକ୍ଷଭୁକ୍ତ କରିଥିଲେ ବି ଶଲ୍ୟଙ୍କଠାରୁ ଆନ୍ତରିକ ସମର୍ଥନ ପାଇବେ ନାହିଁ । ସୂଚୀମୁଖ ଅଶ୍ୱସେନ ନାଗ କର୍ଣ୍ଣଙ୍କ ଶରରେ ପ୍ରବିଷ୍ଟ ହେବା ମାତ୍ରେ କର୍ଣ୍ଣ ଅଭିମନ୍ତ୍ରିତ ଭାବେ ତାହା ଅର୍ଜୁନଙ୍କୁ ନିକ୍ଷେପ କରିବା ମାତ୍ରେ ସହସା ମୁଁ କପିଧ୍ୱଜର ଗତିପଥ ବଦଳାଇ ନେଇ ନିମ୍ନଭୂମିକୁ ରଥ ଚଳାଇ ନେଲି । ଫଳତଃ ଏତେଦିନର ଆଶା ଧୂଳିସାତ୍ ହୋଇଗଲା । ନିକ୍ଷିପ୍ତ ତୀରରେ ପ୍ରବିଷ୍ଟ ଅଶ୍ୱସେନର ସୁତୀକ୍ଷ୍ଣ ଲୋଳଜିହ୍ୱା କିରୀଟଙ୍କର କିରୀଟକୁ ଖଣ୍ଡ ବିଖଣ୍ଡ କଲା ସତ; ମାତ୍ର ତାଙ୍କର ମସ୍ତକ ବା ବକ୍ଷକୁ ଭେଦକରି ପାରିଲା ନାହିଁ । ଅର୍ଜୁନ ବଞ୍ଚିଗଲେ । ମୁଁ ସ୍ୱସ୍ତିର ନିଃଶ୍ୱାସ ନେଇ ଦେଖିଲି ଅଶ୍ୱସେନ ବୀର କର୍ଣ୍ଣଙ୍କୁ ଅନୁରୋଧ କରି କହୁଛି - 'ଥରେ ଲକ୍ଷ୍ୟ ଭ୍ରଷ୍ଟ ହେଲି ସିନା, ଏଥର ହେବି ନାହିଁ । ମୋତେ ଆଉ ଥରଟିଏ ସୁଯୋଗ ଦିଅନ୍ତୁ ।' କର୍ଣ୍ଣ କିନ୍ତୁ ଥରେ ବ୍ୟବହୃତ ହୋଇଥିବା ତୀରକୁ ପୁନର୍ବାର ବ୍ୟବହାର କରନ୍ତି ନାହିଁ । ଏକଥା ଜାଣିଯିବା ପରେ ମଦ୍ରପତି ଶଲ୍ୟଙ୍କ କଣ୍ଠରେ ଶ୍ଳେଷର ଛୁରୀକା ଆହୁରି ଶାଣିତ ହୋଇଉଠିଲା । ସେ ବିଦ୍ରୁପରେ ହସୁ ହସୁ କହିଲେ - 'ଥରେ ନିକ୍ଷିପ୍ତ ହୋଇଥିବା ତୀର ଆଉଥରେ ବ୍ୟବହାର କରିବ ନାହିଁ । କାହିଁକି ତୁମେ କ'ଣ ଧନଞ୍ଜୟ ଭଳି ଅକ୍ଷୟ ତୂଣୀରର ଅଧିକାରୀ ? ତୁମେ ତୁମ ନିଜ ସଂପର୍କରେ ଏତେ ସ୍ପର୍ଦ୍ଧା କରୁଛ କହିଁକି ? ତୁମେ ରାଜହଂସର

ଛଦ୍ମବେଶରେ କାକପକ୍ଷୀ ମାତ୍ର; ମୁଁ ତୁମକୁ ସେହି ଗଳ୍ପ କହୁଚି ବରଂ ମନ ଦେଇ ଶୁଣ । ତେବେ ନିଜ ସଂପର୍କରେ ପୋଷିତ ହୋଇ ଆସିଥିବା ଭ୍ରମ ଧାରଣା ଦୂରିଭୂତ ହେବ ଏବଂ ତୁମେ ଧନଞ୍ଜୟ ସହ ଯୁଦ୍ଧ ଆଶା ପରିତ୍ୟାଗ କରି ନିଜର ଜୀବନ ବଞ୍ଚାଇବାରେ ସମର୍ଥ ହେବ । ଯଦି ଭାବୁଥାଅ ଧନଞ୍ଜୟ ସହ ଯୁଦ୍ଧ କରି ମୃତ୍ୟୁବରଣ କଲେ ବି ତୁମର ସୌଭାଗ୍ୟ ବା ଯୋଗ୍ୟ ବ୍ୟକ୍ତି ବୋଲି ପରିଚିତ ହୋଇପାରିବ ତେବେ ମୋର କିଛି କହିବାର ନାହିଁ । ଶୁଣ କର୍ଣ୍ଣ, ଜଣେ ଧନୀକ ବ୍ୟକ୍ତିର ବହୁ ପୁତ୍ର ଥିଲେ । ସେମାନେ ଏକ କାକପକ୍ଷୀ ପ୍ରତିପାଳନ କରିଥିଲେ ଓ ନିଜର ଉଚ୍ଛିଷ୍ଟ ଦୁଗ୍ଧ, ଦହି, ଘୃତ, ପାୟସାନ୍ନ, ମିଷ୍ଟାନ୍ନ, ଶାକାନ୍ନ, ମାଂସ ପ୍ରଭୃତି ସେହି କାକପକ୍ଷୀକୁ ଖୁଆଉଥିଲେ । ଏହି ପରାନ୍ନଭୋଜୀ କାକ ନିଜର ହୃଷ୍ଟ ପୁଷ୍ଟ ବପୁରେ ସନ୍ତୁଷ୍ଟ ହୋଇ ନିଜର ଜ୍ଞାତିଙ୍କୁ ଅବଜ୍ଞା କରି ସର୍ବଦା ଶ୍ରେୟ ଜ୍ଞାନରେ ଗର୍ବିତ ହୋଇ ରହିଥିଲା । ଏପରିକି ଏକଦା ମାନସରୋବର ନିବାସୀ ରାଜହଂସମାନଙ୍କ ସହ ପ୍ରତିଯୋଗିତା କରିବା ପାଇଁ ସ୍ପର୍ଦ୍ଧା ପ୍ରକାଶ କଲା । ଅବଶେଷରେ ସମୁଦ୍ରର ଅଥଳ ଜଳରେ ମଗ୍ନ ହୋଇ ରାଜହଂସଙ୍କ ଶରଣାଗତ ହୋଇ ଉଦ୍ଧାର ପାଇଲା ଓ ନିଜର ନିକୃଷ୍ଟତା ପ୍ରମାଣିତ ହେବାପରେ ଲଜ୍ଜିତ ହୋଇ ସ୍ୱୀୟ ଜ୍ଞାତିବର୍ଗଙ୍କ ନିକଟକୁ ଫେରିଗଲା । ତୁମେ ସେଇଭଳି ଦୁର୍ଯ୍ୟୋଧନର ଅନ୍ନରେ ପ୍ରତିପାଳିତ । ପରାନ୍ନଭୋଜୀ, ଉଚ୍ଛିଷ୍ଟ ଭୋଜୀ । ମୁଁ ସଦ୍‌ବଂଶଜାତ କ୍ଷତ୍ରିୟ ହୋଇ ସୁଦ୍ଧା ତୁମର ସାରଥ୍ୟ କରୁଛ ବୋଲି ମନେ କରନାହିଁ ତୁମେ ମୋ ଠାରୁ ବା କୁନ୍ତୀ ନନ୍ଦନଙ୍କ ଠାରୁ ଶ୍ରେଷ୍ଠ । ତୁମେ ସୂତ ପୁତ୍ର । ଦିନେ ନା ଦିନେ ଉଚ୍ଛିଷ୍ଟ ଭୋଜୀ କାକ ସଦୃଶ ଅବସ୍ଥା ତୁମର ହେବ ।'

ଏଇଭଳି ଅହରହ ନାନାବିଧ କଟୂ ବାକ୍ୟରେ ମଦ୍ରପତି ଅଂଗରାଜଙ୍କୁ ନିରୁତ୍ସାହିତ ଓ ଆହତ କରିବାରେ ଲାଗିଲେ । ହୁଏତ ଅଂଗରାଜ ଅଙ୍ଗୀକାରବଦ୍ଧ ଥିଲେ ନିରୁତ୍ତର ରହିବା ନିମିତ୍ତ । ଜନ୍ମହେବା ମାତ୍ରେ ଯେଉଁ ନବଜାତକଟି ମାତୃସ୍ତନ୍ୟ ପାନର ସୁଯୋଗ ପାଇନାହିଁ । ମାତୃକ୍ରୋଡ଼ରେ ପରମ ନିଶ୍ଚିନ୍ତରେ ଶୟନର ସୁଯୋଗ ପାଇନାହିଁ, ଜନନୀ ହସ୍ତର କୋମଳ ସ୍ପର୍ଶ ଯିଏ ପାଇନାହିଁ, ଜନ୍ମ ହେବାମାତ୍ରେ ଏହି ଅବାଂଛିତ ଶିଶୁକୁ କିଭଳି ଦୂରକୁ ଠେଲି ଦିଆଯିବ ସେଇ ବ୍ୟବସ୍ଥାହିଁ ହୋଇଛି, ସେଇ ଶିଶୁତ ଜନ୍ମଲଗ୍ନରୁ ତା'ର ଦୁର୍ଭାଗ୍ୟ ସହ ଜନ୍ମ ହୋଇଛି ! ମା'ର ଆଶୀର୍ବାଦ ଯେ ସନ୍ତାନ ପାଇଁ କେତେବଡ଼ ଶକ୍ତି ତା' ଅଂଗରାଜ ସେଇଦିନ ଉପଲବ୍‌ଧି କରିଥିଲେ, ଯେଉଁଦିନ ଜନନୀ କୁନ୍ତୀ ପଞ୍ଚପୁତ୍ରର ଜୀବନ ଭିକ୍ଷା ନେଇ କର୍ଣ୍ଣଙ୍କ ସମ୍ମୁଖରେ ପଣତ ପତେଇ ଠିଆ ହୋଇଥିଲେ । ସେଇଦିନ କର୍ଣ୍ଣ ଜାଣିଥିଲେ ଯେଉଁ ଶିଶୁମାନଙ୍କୁ ଜନନୀ ଲାଳନ ପାଳନ କରିଥାଏ, ବକ୍ଷର ଅମୃତ ଦାନ କରିଥାଏ, ସେମାନଙ୍କ ସୁଖରେ ଦୁଃଖରେ ତାଙ୍କ ସହ ଏକାତ୍ମ ହୋଇଥାଏ, ଆପଦ ବିପଦରୁ, ଖରା ବର୍ଷାରୁ ନିରାପଦରେ ବଞ୍ଚେଇ ରଖିବା ପାଇଁ ନିଜର ବୁକୁ ଓ ପିଠି ପତେଇ ଦେଇଥାଏ । ସେମାନଙ୍କ ପାଇଁ ମା'ର ଅସ୍ତିତ୍ୱ ହିଁ ଏକ ପ୍ରଚଣ୍ଡ ଶକ୍ତି,

ଯାହା ସମସ୍ତ ବିରୁଦ୍ଧ ଶକ୍ତି ବିରୁଦ୍ଧରେ ସଗର୍ବରେ ମୁଣ୍ଡଟେକି ଠିଆ ହୋଇ ପାରିବ, ଦୁର୍ବାର ହୋଇପାରିବ, ସେମାନଙ୍କୁ ସୁରକ୍ଷା ବି ଦେଇ ପାରିବ । ଆଉ ଯେଉଁ ଅବାଂଛିତ କଳଙ୍କକୁ ଜନ୍ମହେବା ମାତ୍ରେ ନିନ୍ଦା ଅପଯଶ ଭୟରେ ମା' ପୂର୍ଣ୍ଣଗର୍ଭା ନଦୀ ଜଳରେ ମଞ୍ଜୁଷା ଭିତରେ ରଖି ମୃତ୍ୟୁର ଗହ୍ୱର ଭିତରକୁ ଠେଲିଦିଏ ସେ ଶିଶୁତ ଜନନୀ ପାଇଁ ଏକ ଅଭିଶାପ ! ସେଇଦିନ - ସେହି ମୁହୂର୍ତ୍ତରେ ସେହି ଅବାଂଛିତ ଶିଶୁଟିର ମୃତ୍ୟୁ ହୋଇ ସାରିଛି; ଆଉ ଏ ଯେଉଁ କର୍ଣ୍ଣ ବଞ୍ଚି ରହିଛନ୍ତି ତାଙ୍କ ମସ୍ତକ ଉପରେ ମା'ର ବରଦ ହସ୍ତ ନାହିଁ । ତାଙ୍କ ଦୁଃଖର ଅଂଶ ନେବା ପାଇଁ ଜନନୀର ଚକ୍ଷୁ ଅଶ୍ରୁସଜଳ ହୋଇ ଉଠୁନାହିଁ, ତାଙ୍କ ସୁଖ ସୌଭାଗ୍ୟରେ ଜନନୀର ଅଧର ପ୍ରାନ୍ତରେ ତୃପ୍ତିର ହସଧାରେ ପୂର୍ଣ୍ଣତାର ପ୍ରତୀକ ହୋଇ ଝଲସି ଉଠୁନାହିଁ । ତା' ନହୋଇଥିଲେ ଜନନୀ କୁନ୍ତୀ ଯେଉଁଭଳି ପଞ୍ଚପୁତ୍ରର ଜୀବନ ଭିକ୍ଷା ନେଇ କର୍ଣ୍ଣଙ୍କ ନିକଟରେ ଉପସ୍ଥିତ ହୋଇପାରିଲେ ଠିକ୍ ସେଇଭଳି କର୍ଣ୍ଣଙ୍କ ଜୀବନଭିକ୍ଷା ନେଇ ଅର୍ଜ୍ଜୁନଙ୍କ ନିକଟରେ ଠିଆ ହୋଇ ପାରିଲେ କି ? ଜନନୀ ପ୍ରାଣର ଏ ପକ୍ଷପାତିତ୍ୱକୁ ଯେତେବେଳେ କ୍ଷମା କରିପାରିଛନ୍ତି କର୍ଣ୍ଣ, ହୃଦୟରୁ ତ କମ୍ ଲହୁର କ୍ଷରଣ ହୋଇ ନଥିବ । ସେତେବେଳେ ତେବେ ଶଲ୍ୟଙ୍କର ଏ କଟୂକ୍ତି ସେ'ବା କାହିଁକି ସହ୍ୟ କରି ନପାରିବେ ?

ଏହି ଦାମ୍ଭୀକ, ପ୍ରଚଣ୍ଡ ପୁରୁଷଟିର ଲହୁ ଲୁହାଣ ହୋଇଥିବା ହୃଦୟଟିକୁ ମୁଁ ଦେଖି ପାରୁଥିଲି, କର୍ଣ୍ଣଙ୍କର ପ୍ରଶସ୍ତ ବୁକୁତଳେ ଆତ୍ମରକ୍ଷା କରିଥିବା ଅସହାୟ ଶିଶୁଟିର ଆର୍ତ୍ତନାଦ ମୁଁ ଶୁଣି ପାରୁଥିଲି । ତାଙ୍କ ପାଇଁ ହୃଦୟ ମୋର ପ୍ରତି ମୁହୂର୍ତ୍ତରେ କରୁଣାରେ ବିଗଳିତ ହୋଇ ଉଠୁଥିଲା । ତାଙ୍କର ବିଷର୍ଣ୍ଣ ଚକ୍ଷୁ ଦୁଇଟିକୁ ଚାହିଁ ମନେ ହେଉଥିଲା, ସେଥିରେ ମଧ୍ୟ ଅନୁକ୍ତ ବେଦନା ଲିପିବଦ୍ଧ ହୋଇ ରହିଛି; 'ଅନୁଜ ! ତୁମେ ତୁମ ଅଜ୍ଞାତସାରେ ଅଗ୍ରଜ ପ୍ରତି ଅସ୍ତ୍ର ଉତ୍ତୋଳନ କରୁଛ । ପାପ ତୁମର ନୁହେଁ; କିନ୍ତୁ ମୁଁ ଜାଣିଶୁଣି ଅନୁଜପ୍ରତି ଅସ୍ତ୍ରାଘାତ କରୁଛି । ଏ ଅପରାଧ ଅକ୍ଷମଣୀୟ । ତଥାପି ମୁଁ ନାଚାର । ମୁଁ କିନ୍ତୁ ପୂର୍ଣ୍ଣ ପ୍ରାଣରେ ଆଶୀର୍ବାଦ ଦେଉଛି ତୁମ୍ଭେମାନେ ବିଜୟୀ ହୁଅ । କାରଣ ମୋର ବିଜୟ ଅର୍ଥାତ୍ ପାପୀ ଦୁର୍ଯ୍ୟୋଧନର ବିଜୟ । ବହୁ ବର୍ଷରୁ ମୁଁ ଅଂଗୀକାର ବଦ୍ଧ ହୋଇ ସାରିଛି ଯାହା ମୁଁ ଅର୍ଜ୍ଜନ କରିବି ତା' କୁରୁପତିଙ୍କ ପଦତଳେ ସମର୍ପଣ କରିବି ।'

ଏ ସମସ୍ତ ପରିଚୟକୁ ଗୋପନ ରଖି, ସବୁକିଛି ବିସ୍ମୃତହୋଇ ରଣଭୂମିରେ ଯେପରି ମଦମତ୍ତ ଦୁଇଟି ହସ୍ତୀ ପ୍ରଚଣ୍ଡ ବିକ୍ରମରେ ପରସ୍ପର ସହ ଯୁଦ୍ଧରେ ବ୍ୟାପୃତ ଥିଲେ । ମୁଁ କିନ୍ତୁ କେବଳ ସେଇ ଗୋଟିଏ କଥା ଚିନ୍ତା କରୁଥିଲି । ସେଇ ଅମୋଘ ଶକ୍ତି - ବୈଜୟନ୍ତୀ ଶକ୍ତି ! ଅର୍ଜ୍ଜୁନଙ୍କର ପ୍ରଚଣ୍ଡ ବିକ୍ରମ ଦେଖି ଚନ୍ଦନ ଚୂର୍ଣ୍ଣରେ ପ୍ରତ୍ୟହ ପୂଜିତ ଓ ସମ୍ମାନିତ ସର୍ପାସ୍ତ୍ର ନିକ୍ଷେପ କରି ବିଫଳ ହେବାପରେ ବହୁ ଭାବିଚିନ୍ତି ଅବଶେଷରେ ବୈଜୟନ୍ତୀ ଶକ୍ତି ପ୍ରୟୋଗ କରିବାକୁ

ଉଦ୍ୟତ ହେଲେ । ମୁଁ ବ୍ୟତିବ୍ୟସ୍ତ ହୋଇ ପଡ଼ିଲି, କିଭଳି ରକ୍ଷା କରିବି ସଖା ଅର୍ଜୁନଙ୍କୁ ? ସେତେବେଳକୁ କର୍ଣ୍ଣ ଚକ୍ଷୁ ମୁଦ୍ରିତ କରି ଅମୋଘ ଶକ୍ତି ପ୍ରୟୋଗର ସଫଳତା ନିମିତ୍ତ ପ୍ରାର୍ଥନା କରୁଥିଲେ । ସେହି ଅବସରରେ ମୁଁ କେହି ନଦେଖିବା ଭଳି ଘଟୋତ୍କଚଙ୍କୁ ପାଖକୁ ଡାକି କହିଲି - 'ବୀରଗତି - ପରମଗତି ତୁମର କାମ୍ୟ ନା ବସ ? ଏଇତ ସୁବର୍ଣ୍ଣ ସୁଯୋଗ, ବୈଜୟନ୍ତୀ ଶକ୍ତିକୁ ସମ୍ମାନ ଦିଅ !'

ମୋର ବାକ୍ୟ ଶେଷ ହେବା ପୂର୍ବରୁ ଘଟୋତ୍କଚ ସେହି ଅମୋଘ ଶକ୍ତି ସମ୍ମୁଖରେ ଠିଆ ହୋଇ ପ୍ରାଣ ବିସର୍ଜନ ଦେଲେ । ବେଲାଳଙ୍କ ସଦୃଶ ପଦେ କଥାରେ ଆତ୍ମୋତ୍ସର୍ଗ କରିଦେଲେ ଘଟୋତ୍କଚ । ଧନ୍ୟ ଭୀମସେନ; ଏଭଳି ପୁତ୍ରଙ୍କର ପିତା ହେବା କମ୍ ଗୌରବର କଥା ନୁହେଁ । ଅର୍ଜୁନ ବଞ୍ଚିଯିବା ଆନନ୍ଦରେ ମୁଁ ଉନ୍ମତ୍ତ ହୋଇ ଉଚ୍ଚ କଣ୍ଠରେ ହସି ଉଠିବା ଦେଖି ଅର୍ଜୁନ ଅଶ୍ରୁ ବିକଳ କଣ୍ଠରେ କହିଲେ - 'ମୋ ଜୀବନ ଠାରୁ ଯାହାର ଜୀବନ ବେଶୀ ମୂଲ୍ୟବାନ୍ ସେହି ଅସ୍ଫୁଟ କଳିକା ପୁତ୍ର ଘଟୋତ୍କଚ ମୃତ୍ୟୁ ବରଣ କରୁଛି ଯେ !'

କର୍ଣ୍ଣଙ୍କର ବୈଜୟନ୍ତୀ ଶକ୍ତି ହାତଛଡ଼ା ହୋଇଯିବା ପରେ ମୋର ଆନନ୍ଦର ଯେମିତି ଅନ୍ତ ନଥିଲା, କର୍ଣ୍ଣଙ୍କର ଅନୁଶୋଚନାର ସେଇଭଳି ଅନ୍ତ ନଥିଲା । ସେ ପ୍ରକୃତରେ ସର୍ବସ୍ୱାନ୍ତ ହୋଇଯାଇଥିଲେ । ଚିରଶତ୍ରୁ ଅର୍ଜୁନଙ୍କୁ ପରାସ୍ତ କରିବା ପାଇଁ ଆଉ ତାଙ୍କ ପାଖରେ କିଛି ହେଲେ ଅବଶେଷ ନଥିଲା । ହେଲେ ମୋ ପାଖରେ ତାଙ୍କ ବିଦ୍ୟାର୍ଥୀ ଜୀବନରେ ଘଟିଥିବା ମହାକାଳର ଏକ କୂଟଚକ୍ରାନ୍ତର ବାର୍ତ୍ତା ସଞ୍ଚିତ ଥିଲା । କର୍ଣ୍ଣଙ୍କ ମୁହଁକୁ ମୁଁ ଚାହିଁ ପାରୁନଥିଲି । ତାଙ୍କ ବିଷର୍ଣ୍ଣ ଆଖିରେ ବହୁଦୂର ପଥ ଅତିକ୍ରମ କରି ନିଷ୍ଫଳ ହୋଇ ଫେରି ଆସିଥିବା କ୍ଳାନ୍ତ ବିହଙ୍ଗର ପକ୍ଷଛାୟା । ରଣଭୂମିର ଗୋଟିଏ ଦିଗରେ ଯେତେବେଳେ ଏ ବିଷର୍ଣ୍ଣ ଦୃଶ୍ୟ ଅଭିନୀତ ହେଉଥିଲା ଭିନ୍ନ ଏକ ଦିଗରେ ଏକ ଭୀଷଣ ବୀଭତ୍ସ ଦୃଶ୍ୟ ପରିଦୃଷ୍ଟ ହୋଇଥିଲା । ତା' ହେଉଛି ଦୁଃଶାସନ ସହ ବୃକୋଦରଙ୍କର ମହା ସଂଗ୍ରାମ । ହଁ, ମୋର ମନେ ପଡ଼ିଲା, ସେଦିନ ପ୍ରତ୍ୟୁଷରେ ଲକ୍ଷ୍ୟକଲି ଦ୍ୱିତୀୟ ପାଣ୍ଡବ ଅତ୍ୟନ୍ତ ଗମ୍ଭୀର ଥିଲେ, ଯାହା ତାଙ୍କ ସ୍ୱଭାବର ଅନୁକୂଳ ନଥିଲା । ତାଙ୍କର ପ୍ରଶସ୍ତ ଲଲାଟ ଓ ନୟନ ଦୁଇଟିରେ ବିଜୟର ନିଶା ସ୍ପଷ୍ଟ ପ୍ରତିଭାତ ହେଉଥିଲା । ଯୁଦ୍ଧ ଯାତ୍ରା ପୂର୍ବରୁ ପାଞ୍ଚାଳ ତନୟାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରୁଚି ଅନୁଯାୟୀ ସାମାନ୍ୟ ଖାଦ୍ୟ, ପାନୀୟ ଗ୍ରହଣ କରି ପାଣ୍ଡବଗଣ ରଥାରୋହଣ କରନ୍ତି । ସେଦିନ ଭୀମସେନ କୌଣସି ଖାଦ୍ୟ ପାନୀୟ ଗ୍ରହଣ କଲେ ନାହିଁ । କେବଳ ଏକଲୟରେ ପାଞ୍ଚାଳୀଙ୍କର ରକ୍ଷ ଦୀର୍ଘ କୁଞ୍ଚିତ ମୁକ୍ତ କୁନ୍ତଳ ରାଶିକୁ ଚାହିଁ ରହିଥା'ନ୍ତି । ଭୀମସେନଙ୍କର ପୁଣି ଖାଦ୍ୟରେ ଅରୁଚି ? ପାଞ୍ଚାଳୀ ବ୍ୟତିବ୍ୟସ୍ତ ହୋଇ କାରଣ ପ୍ରଶ୍ନ କରିବାରୁ ସେ ଅତ୍ୟନ୍ତ ଗମ୍ଭୀର ସ୍ୱରରେ ଅନ୍ୟମନସ୍କ ଭାବେ କହିଲେ - 'ଦୀର୍ଘ ତ୍ରୟୋଦଶ ବର୍ଷ ଧରି ମୁଁ କୌଣସି ଉତ୍ତମୋତ୍ତମ ଖାଦ୍ୟ ପାନୀୟ

ଗ୍ରହଣ କରିବା ମୋର ମନେ ନାହିଁ । ଆଜିହିଁ ମୋର ରଣଭୂମିରେ ଉତ୍ତମୋତ୍ତମ ପାନୀୟ ପ୍ରାପ୍ତିର ଲଗ୍ନ ଉପସ୍ଥିତ ।'

ଏତିକି କହି ସେ ଦ୍ରୁତ ପଦରେ ବାହାରକୁ ଆସି ଗଜପୃଷ୍ଠ ଆରୋହଣ କଲେ । ତାଙ୍କର ଚକ୍ଷୁ ଦୁଇଟି ଘୂର୍ଣ୍ଣିତ ହେଉଥିଲା, ନାସାରୁ ପ୍ରଳୟ ଝଂଜା ସଦୃଶ ପବନ ନିର୍ଗତ ହେଉଥିଲା । ପାଞ୍ଚାଳ ତନୟା ହାତରେ ଅର୍ଘ୍ୟଥାଳି ଧରି ବିସ୍ମୟରେ ଚାହିଁ ରହିଲେ, ଅନ୍ୟ ଭ୍ରାତା ଚତୁଷ୍ଟୟ ହତବାକ୍ ହୋଇଗଲେ । ଲଲାଟରେ ବିଜୟ ତିଳକ ଅଙ୍କିତ ହେବାକୁ ଅପେକ୍ଷା ନରଖି ସେ ଚାଲିଗଲେ ମହାପୌଣ୍ଡ୍ରକ ଶଙ୍ଖ ବାଦନ କରି ।

କର୍ଣ୍ଣାର୍ଜ୍ଜୁନ ସମର ସେ ପର୍ଯ୍ୟନ୍ତ ସୁଦ୍ଧା ମୀମାଂସିତ ହୋଇପାରୁନଥିଲା । ଶଲ୍ୟଙ୍କ କଟୂକ୍ତିର ଯେମିତି ବିରାମ ନଥିଲା । ଅର୍ଜ୍ଜୁନଙ୍କୁ ପ୍ରୋତ୍ସାହନ ଦେଇ ଉତ୍ତେଜିତ କରିବାରେ ମୋର ମଧ୍ୟ ଶ୍ରାନ୍ତି ନଥିଲା । ହଠାତ୍ ରଣଭୂମିର ଗୋଟିଏ ଦିଗରୁ ପ୍ରବଳ ହଟ୍ଟଗୋଳ ସହ ଉଭୟ ପକ୍ଷର ସୈନ୍ୟ ଗଣଙ୍କର ଭୟାର୍ତ୍ତ ଚିତ୍କାର ଶୁଣି ଅର୍ଜ୍ଜୁନ ଓ କର୍ଣ୍ଣ କିଛି ସମୟ ପାଇଁ ସଂଗ୍ରାମରୁ ବିରତ ହୋଇ ସେହି ଦିଗକୁ ରଥ ବାହି ନେବାକୁ ନିର୍ଦ୍ଦେଶ ଦେଲେ ।

ଓଃ ! ସେ କି ଭୀଷଣ ଦୃଶ୍ୟ ! ପ୍ରଚଣ୍ଡ ପରାକ୍ରମୀ ଭୀମସେନ ଗଦାଘାତରେ ଦୁଃଶାସନର ମସ୍ତକକୁ ଆଘାତ କରି ତାକୁ ଭୂତଳ ଶାୟୀ କରି ଦେଇଥା'ନ୍ତି । ଭୀମସେନ ତାଙ୍କର କୌଣସି ଭାବାବେଗ ହୃଦବୃତ୍ତିକୁ ଗୋପନ ରଖିପାରନ୍ତି ନାହିଁ ଏବଂ ସେ କ୍ଷଣକୋପୀ ଏକଥା ସମସ୍ତେ ଜାଣନ୍ତି । ମାତ୍ର ତାଙ୍କର ସେ କ୍ରୋଧ ଜର୍ଜର ମୂର୍ତ୍ତି ଯେ କେତେ ଭୟଙ୍କର ତା' ନଦେଖିଲେ ବିଶ୍ୱାସ କରିହେବ ନାହିଁ । ମୁଁ ନିଜେ ମଧ୍ୟ ଶିହରି ଉଠିଥିଲି । ଦୁଃଶାସନର ଛାତି ଉପରେ ବସି ଏକ ତୀକ୍ଷଣ ଅସୀ ଦ୍ୱାରା ତା'ର ହୃଦୟ ବିଦାରଣ କଲେ ଭୀମସେନ । ତାଜା, ଲାଲ୍, ଉଷ୍ଣ ରକ୍ତର ଉତ୍ସରଣରେ ତାଙ୍କର ସର୍ବାଙ୍ଗ ରୁଧିରାକ୍ତ ହୋଇଗଲା ଏବଂ ସେଇଥିରୁ ଅଂଜୁଳାଏ ରକ୍ତ ଆଣି ଅବିଶ୍ୱାସ୍ୟ ଭାବେ ପାନ କରିବାକୁ ଲାଗିଲେ ପରିତୃପ୍ତିର ସହ । ଉଭୟ ପକ୍ଷର ସମସ୍ତ ରଥୀ, ମହାରଥୀ ଠାରୁ ଆରମ୍ଭ କରି ସାଧାରଣ ସୈନିକ ପର୍ଯ୍ୟନ୍ତ ଅସ୍ତ୍ରତ୍ୟାଗ କରି ବିସ୍ମୟ ବିସ୍ଫାରିତ ନୟନରେ ଏହି ଭୀଷଣ ଦୃଶ୍ୟ ଅବଲୋକନ କରୁଥା'ନ୍ତି । ରୁଧିର ପାନ କରି ସେ ଥରେ ଘୂର୍ଣ୍ଣିତ ନୟନରେ ସମସ୍ତଙ୍କୁ ଚାହିଁଲେ ଓ କହିଲେ - 'ମୁଁ ମାତୃସ୍ତନ୍ୟ ପାନ କରିଛି, ବାଲ୍ୟ କାଳରେ ପ୍ରମାଣ କୋଟୀ ଉଦ୍ୟାନରେ ଏଇ ପାପୀଗଣ ଯେତେବେଳେ ମୋତେ ବିଷ ମୋଦକ ଖୁଆଇ ଗଙ୍ଗାନଦୀରେ ବିସର୍ଜ୍ଜନ ଦେଇଥିଲେ, ସେତେବେଳେ ନାଗଙ୍କର ଦଂଶନରେ ବିଷଜ୍ୱାଳାରୁ ମୁକ୍ତ ହୋଇ ମୁଁ ନାଗଲୋକରେ ପହଞ୍ଚି ନାଗରାଜ ବାସୁକୀଙ୍କ କୃପାରୁ ମୁଁ ଅମୃତ ମଧ୍ୟ ପାନ କରିଛି । ମୁଁ ଘୃତ, ମଧୁ, ଦଧି, ମଥିତ ଦୁଗ୍ଧ, ପୁଷ୍ପରସ ଯୁକ୍ତ ମାଧ୍ୱୀକ ମଦ୍ୟ, ଦିବ୍ୟ ସୁବାସିତ ଶୀତଳ ଜଳ ମଧ୍ୟ ପାନ କରିଛି; କିନ୍ତୁ ଆଜି ଏ ପାପୀର ଉଷ୍ଣ ରୁଧିର ପାନ କରି ମୁଁ

ଉପଲବ୍ଧି କରୁଛି ସେସବୁ ତୁଳନାରେ ଦୁଃଶାସନର ରକ୍ତ ଅଧିକ ସୁସ୍ୱାଦୁ । ହେ ଦଶଦିଗପାଳ ! ସେଦିନ କୁରୁସଭାରେ ତୁମ୍ଭେମାନେ ସାକ୍ଷୀ ଥିଲ ନା ? ଯେତେବେଳେ ଇନ୍ଦ୍ରପ୍ରସ୍ଥର ପଟ୍ଟମହିଷୀ ଦ୍ରୁପଦ ରାଜତନୟା ରଜସ୍ୱଳା ଓ ଏକବସ୍ତ୍ରା ଥିବା ଅବସ୍ଥାରେ ଏହି ନରାଧମ ତାଙ୍କ କେଶାକର୍ଷଣ କରି କୁରୁ ସଭା ସ୍ଥଳକୁ ନେଇ ଆସିଥିଲା ? ତାଙ୍କୁ ବିବସ୍ତ୍ରା କରିବାର ଜଘନ୍ୟ ଯୋଜନା କରିଥିଲା ? ତାଙ୍କୁ 'ଦାସୀ' ବୋଲି ଉକ୍ତି ମଧ୍ୟ କରିଥିଲା ? ହେ ଦଶଦିଗପାଳ ! ସେହି ସାକ୍ଷୀ ଥିଲ ନା ପଞ୍ଚପତିଙ୍କ ସମ୍ମୁଖରେ ଗୁରୁ, ଗୁରୁଜନ, ଲଘୁଜନ, ସଭାସଦ୍, ସେବକମାନଙ୍କ ସମ୍ମୁଖରେ ଅସହାୟ ଭାବେ ଦ୍ରୁପଦ ନନ୍ଦିନୀ ଆର୍ତ୍ତ ଚିତ୍କାର କରୁଥିଲେ ? ସେଦିନ ସାକ୍ଷୀ ଥିଲ ନା ମୁଁ ଶପଥ କରିଥିଲି ଏହି ନରାଧମର ବକ୍ଷ ବିଦୀର୍ଣ୍ଣ କରି ରୁଧିର ପାନ କରିବି ? ଆଜି ମୁଁ, କୁନ୍ତୀ ନନ୍ଦନ ବୃକୋଦର ସେହି ପ୍ରତିଜ୍ଞା ପୂରଣ କରିଛି !'

ପୁଣି ଆଂଜୁଳା ଏ ରକ୍ତ ଆଣି ସେ କୁଳୁ କୁଚା କରି ଫିଙ୍ଗି ଦେଲେ । ପରେ ପରେ ଭାବ ବିହ୍ୱଳ ଭାବେ କହିଲେ 'ସେଇଦିନୁ ଦୀର୍ଘ ତ୍ରୟୋଦଶ ବର୍ଷ ଧରି ମୋ ଅନ୍ତର ଭିତରେ ଦ୍ରୁପଦ ନନ୍ଦିନୀଙ୍କର ସେ ଆର୍ତ୍ତନାଦ ମୁଁ ଦେଖି ଆସୁଥିଲି ।'

ତାପରେ ହଠାତ୍ କ'ଣ ମନେ ପଡ଼ିବାଭଳି ତାଙ୍କ ସାରଥୀକୁ ଗର୍ଜନ କରି ନିର୍ଦ୍ଦେଶ ଦେଲେ - 'ବିଶୋକ ! ଯାଅ । ଯଥାଶୀଘ୍ର ଦ୍ରୁପଦ ନନ୍ଦିନୀଙ୍କୁ ଏଇ ରଣଭୂମିକୁ ନେଇ ଆସ । ତ୍ରୟୋଦଶ ବର୍ଷ ଧରି ସଘନ କୁନ୍ତଳା ଦ୍ରୌପଦୀ ମୁକ୍ତ କେଶୀ ହୋଇ ରହିଛନ୍ତି । ତୈଳ, କଙ୍କତିକା ସ୍ପର୍ଶ ବିହୀନ ସେହି ମୁକ୍ତ କେଶକୁ ଆଜି ମୁଁ ସ୍ୱହସ୍ତରେ ବନ୍ଧନ କରିବି ଏଇ ପାପିଷ୍ଠର ରକ୍ତରେ । ଯେଉଁ ବାହୁବଳ ଦ୍ୱାରା ଦ୍ରୌପଦୀଙ୍କ କେଶାକର୍ଷଣ କରିଥିଲା ଆଜି ତା'ର ସେ ଭୁଜ ମୁଁ ଉତ୍ପାଟନ କରିବି ।'

ତାଙ୍କର ସେ ପ୍ରଳୟଙ୍କର କାଳାନ୍ତକଯମ ସଦୃଶ ମୂର୍ତ୍ତି ଦେଖି କାହାରି କଣ୍ଠରୁ ବାକ୍ ସ୍ଫୁର୍ତ୍ତି ହେଉନଥିଲା । ଅଳ୍ପ ସମୟ ଭିତରେ ସତକୁ ସତ ଏକ ସୁସଜ୍ଜିତ ରଥରେ ପରିଚାରିକାଙ୍କ ଗହଣରେ ଦ୍ରୁପଦ ନନ୍ଦିନୀ ସେଠାରେ ପହଞ୍ଚିଲେ । ତାଙ୍କୁ ଦେଖିବା ମାତ୍ରେ ଦୁଃଶାସନର ଦକ୍ଷିଣଭୁଜ ଉତ୍ପାଟନ କରି ସେଥିରୁ ବର୍ଷିତ ହେଉଥିବା ଅଜସ୍ର ରୁଧିରଧାର ଦ୍ରୌପଦୀଙ୍କ ମସ୍ତକ ଉପରେ ବୃକୋଦର ଢାଳିବାକୁ ଲାଗିଲେ । ଦାସୀ ହାତରୁ କଙ୍କିତିକା ନେଇ ସେହି ଅବିନ୍ୟସ୍ତ ରୁଧିରାକ୍ତ କେଶ ରାଶିକୁ ସୁବିନ୍ୟସ୍ତ କରି ଜୁଡ଼ା ବାନ୍ଧି ଦେଲେ । ଉତ୍ପାଟିତ ଭୁଜରୁ ବର୍ଷିତ ହେଉଥିବା ରୁଧିର ରାଶି ମସ୍ତକରୁ ଲଲାଟ ନାସା, ଅଧରପ୍ରାନ୍ତ ଦେଇ ଜିହ୍ୱାକୁ ସ୍ପର୍ଶ କରି ପାଞ୍ଚାଳୀଙ୍କର ବକ୍ଷବାସକୁ ରକ୍ତ ଲିପ୍ତ କରି ସର୍ବାଙ୍ଗ ରୁଧିରରେ ସିକ୍ତ କରିଦେଲା । ତ୍ରୟୋଦଶ ବର୍ଷ ଧରି ତୀବ୍ର ଲାଂଛନାର ଯେଉଁ ଅଗ୍ନି ଅହରହ ଦ୍ରୌପଦୀଙ୍କ ଛାତିତଳେ ପ୍ରଜ୍ୱଳିତ ହେଉଥିଲା ତା' ଯେମିତି ଏଇ ଉଷ୍ମ ରୁଧିର ପ୍ରବାହରେ ନିର୍ବାପିତ ହୋଇଗଲା । ଗଭୀର ପ୍ରଶାନ୍ତି ପ୍ରଲିପ୍ତ

ହୋଇଗଲା ତାଙ୍କର୍ ମୁଖ ମଣ୍ଡଳରେ, ପଦଟିଏ କଥା ସେ ଉଚ୍ଚାରଣ କରିପାରିଲେ ନାହିଁ । ଦ୍ୱିତୀୟ ପାଣ୍ଡବଙ୍କ ହାତ ଦୁଇଟିକୁ ସେ ଧରି ପକାଇଲେ । ତାଙ୍କର ଆବେଗ କଂପିତ ତନୁ ବାତବିକ୍ଷୁବ୍ଧ ରମ୍ଭାତରୁ ସଦୃଶ ଭୀମସେନଙ୍କ ବକ୍ଷରେ ଲୋଟି ପଡ଼ିଲା । ତାଙ୍କ ମସ୍ତକକୁ ପରମ ସ୍ନେହରେ ଆଉଁଷି ଦେଉ ଦେଉ ଭୀମସେନ ପରିଚାରିକା ଉଦ୍ଦେଶ୍ୟରେ କହିଲେ - 'ନେଇଯାଅ ଶିବିରକୁ । ଆହାଃ ! ପୁଷ୍ପାନୁରାଗିଣୀ ଆମ ପାଞ୍ଚାଳୀ ତ୍ରୟୋଦଶ ବର୍ଷ ଧରି ପୁଷ୍ପାଭରଣରେ ଗଭା ସଜେଇ ନାହାନ୍ତି । ନିଅ । ସୁବାସିତ ଶୀତଳ ଜଳରେ ତାଙ୍କୁ ସ୍ନାନ କରାଇ ଅଗୁରୁ, ଚନ୍ଦନ ଚୂର୍ଣ୍ଣ ଓ ଧୂମରେ ତାଙ୍କର ସିକ୍ତ କେଶ ରାଶିକୁ ଶୁଷ୍କ କରାଇ ସୁଗନ୍ଧ ତୈଳରେ ଉତ୍ତମ ରୂପେ ତାଙ୍କର କେଶ ବିନ୍ୟାସ କରାଇ ଦିଅ, ମାଳତୀ ଓ ସୁଗନ୍ଧ ରାଜ ପୁଷ୍ପରେ ସେ କେଶ ଭାରକୁ ଆଜି ସଜାଇ ଦିଅ । ହଁ, ଷୋଡ଼ଶ ଶୃଙ୍ଗାରରେ ସଜାଇ ଦିଅ ଆଜି ଦ୍ରୌପଦୀଙ୍କୁ .....ମୁଁ ବି ବିଶ୍ରାମ ଚାହେଁ ।'

ଦୁଃଶାସନର ରକ୍ତ ସ୍ରୋତର ଗୋଟିଏ ପ୍ରାନ୍ତରେ କୁନ୍ତୀ ନନ୍ଦନଗଣ ଓ ମୁଁ, ଅପରପାର୍ଶ୍ୱରେ ଦୁର୍ଯ୍ୟୋଧନ, କର୍ଣ୍ଣ, କୃପ, ଶକୁନୀ, ଅଶ୍ୱତ୍ଥାମା ଓ ଶଲ୍ୟ ପ୍ରଭୃତି ବିସ୍ମୟ ବିମୂଢ଼ ଭାବେ ଠିଆ ହୋଇଥିଲେ । କର୍ଣ୍ଣଙ୍କ ଉପରେ ଦୃଷ୍ଟିପାତ ହେବାକ୍ଷଣି ଭୀମ ଗର୍ଜି ଉଠି କହିଲେ - 'ଆରେ ସୂତ ପୁତ୍ର ! ମୁଁ ଗୁଳ୍ଫ ଶ୍ମଶ୍ରୁବିହୀନ ବୋଲି ମୋତେ 'ମାକୁନ୍ଦ', ପୌରୁଷହୀନ' ବୋଲି କଟୂକ୍ତି କରିଛୁ, ତୁ ମୋର ହୃଦୟ ବଲ୍ଲଭୀଙ୍କୁ ପରିପୂର୍ଣ୍ଣ ସଭାଗୃହରେ 'ବେଶ୍ୟା' ବୋଲି ସମ୍ବୋଧନ କରିଛୁ । ଆଜି ଏଇ ମୁହୂର୍ତ୍ତରେ ତା'ର ଉତ୍ତର ଦେଇ ମୁଁ ତୋତେ ମଧ୍ୟ ସଂହାର କରିପାରନ୍ତି, କିନ୍ତୁ ନାଃ ! ଅର୍ଜ୍ଜୁନର ଶପଥ ତେବେ ଅପୂର୍ଣ୍ଣ ରହିଯିବ ! ମୋର ଅନୁଜ ଅର୍ଜ୍ଜୁନ ତୋର ଛିନ୍ନ ଶିରକୁ ଉପହାର ଦେବ ଦେବୀ ଦ୍ରୌପଦୀଙ୍କ ପଦତଳେ । ମୋର ଆହୁରି ଏକ ପ୍ରତିଜ୍ଞା ବି ଅଛି !' ଏକଥା କହି ସେ ରକ୍ତ ଚକ୍ଷୁରେ ଦୁର୍ଯ୍ୟୋଧନକୁ କିଛି ସମୟ ଚାହିଁ ରହିଲେ ।

ସେ ଆଉ କିଛି ନକହି ସୁବିଶାଳ ଗଦାହସ୍ତରେ ଟଳି ଟଳି ଯାଇ ଗଜ ପୃଷ୍ଠ ଆରୋହଣ କଲେ । ତାଙ୍କର ସ୍ୱେଦ ଜର୍ଜର ରୁଧିରାକ୍ତ କଳେବର ଦୃଷ୍ଟି ପଥରୁ ଅଦୃଶ୍ୟ ହୋଇଯିବା ପରେ ସର୍ବ ପ୍ରଥମେ ଦୁର୍ଯ୍ୟୋଧନର ବାକ୍ ସ୍ଫୁରଣ ସମ୍ଭବ ହେଲା । ଯାହା ଆର୍ତ୍ତନାଦ ଭଳି ଅସ୍ପଷ୍ଟ, ଦୁର୍ବଳ ଓ କରୁଣ ଶୁଭୁଥିଲା । ବିନା ଯୁଦ୍ଧରେ ସୂଚ୍ୟଗ୍ର ପରିମିତ ମେଦିନୀ ନଦେବାର ସଂକଳ୍ପ ଯେଉଁ ଦୁର୍ଯ୍ୟୋଧନର, ଯୁଦ୍ଧର ପରିଣତି ଯେ ଏତେ ଭୟାବହ, ମର୍ମାନ୍ତିକ, ଜଘନ୍ୟ ତା' ସେ ଜାଣି ନଥିଲା । ତା'ର ସେ ଦାମ୍ଭିକତା ସ୍ଫୀତ, ଅହମିକା ସର୍ବସ୍ୱ ପ୍ରଚଣ୍ଡ ସ୍ୱର ଆଉ ନଥିଲା । ସେ ବ୍ୟାକୁଳ ସ୍ୱରରେ କହି ଉଠିଲା - 'ଏ କ'ଣ ହେଲା ? ଏ କ'ଣ ହେଲା ? ଦ୍ୱିତୀୟ ଆତ୍ମା ସଦୃଶ ମୋର କନିଷ୍ଠ ଭ୍ରାତା ଦୁଃଶାସନ ସତରେ ମତେ ଏକା କରି ଚାଲିଗଲା ? ସେ ଯେ ମୋର ବାହୁବଳ ଥିଲା । କାହାକୁ ଆଶ୍ରୟ କରି ମୁଁ ଏ ଯୁଦ୍ଧ ଜିଣିବି ? (ଆଶାବାଦୀ, ଉଚ୍ଚାକାଙ୍କ୍ଷୀ

ଦୁର୍ଯ୍ୟୋଧନ ତଥାପି ଯୁଦ୍ଧ ଜୟର ଆଶା ରଖିଥିଲା ?) ଏମିତି କିଏ ଭାଇ ଅଛି ସଂସାରରେ ? ଦୁଃଶାସନ ଭଳି ଅନ୍ୟାୟ ଅଧର୍ମ ଜାଣିସୁଦ୍ଧା ଅଗ୍ରଜର ଆଦେଶକୁ ପାଳନ କରି ଆସିଛି ? ଦୁଃଶାସନ ବିନା ମୁଁ ମୁହୂର୍ତ୍ତେ ବଞ୍ଚି ପାରିବି ନାହିଁ ।'

ଏତିକି କହି ଦୁର୍ଯ୍ୟୋଧନ ଭଳି ଗର୍ବୋଦ୍ଧତ ଦାମ୍ଭିକ ପୁରୁଷ ଲୁହ ଆଉ କୋହରେ ଭାଂଗି ପଡ଼ିଲା । ଠିକ୍ ସେଇ ସମୟରେ ତା' କାନ୍ଧରେ ହାତ ରଖିଲେ ବୀର କର୍ଣ୍ଣ । ସାନ୍ତ୍ୱନା ଦେଇ କହିଲେ -'ଶୋକ ମଗ୍ନ ହୁଅ ନାହିଁ ସଖା ! ଯେ ପର୍ଯ୍ୟନ୍ତ ମୋର ଶେଷ ରକ୍ତ ବିନ୍ଦୁଟି ତୁମ ପାଇଁ ଉତ୍ସର୍ଗୀକୃତ ହୋଇନାହିଁ, ସେ ପର୍ଯ୍ୟନ୍ତ ତୁମେ ଏକାକୀ ବା ଅସହାୟ ନୁହଁ । ଯୁଦ୍ଧ ଶେଷ ହୋଇନାହିଁ, ତୁମେ ନିଜକୁ ପରାଜିତ ବୋଲି କାହିଁକି ଭାବୁଛ ? ଭୀମ ତା'ର ପ୍ରତିଜ୍ଞା ପୂରଣ କଲା । ମୁଁ ବି ମୋର ପ୍ରତିଜ୍ଞା ପୂରଣ କରିବି । ଦୁଃଶାସନ ଚାଲିଗଲା - ଏହା ଆମ୍ଭମାନଙ୍କ ପାଇଁ ଅପୂରଣୀୟ କ୍ଷତି ନିଶ୍ଚୟ; କିନ୍ତୁ ଆମେ ହୀନବଳ ହୋଇ ଯାଇନାହୁଁ । ଅର୍ଜ୍ଜୁନର 'ଗାଣ୍ଡିବ' ଧନୁ ଥିଲେ ମୋର ମଧ୍ୟ 'ବିଜୟ' ଧନୁ ରହିଛି । ମୋର ଧ୍ୱଜକୁ ଥରଟିଏ ନିରୀକ୍ଷଣ କର ସଖା ! ଶ୍ୱେତ ଧ୍ୱଜରେ ଅଂକିତ ହୋଇଛି ମତ୍ତ ଗଜକୁ ବନ୍ଧନ କରି ପାରୁଥିବା ଲୌହଶୃଙ୍ଖଳର ଚିହ୍ନ । ତାହାହିଁ ତ ମୋ ବୀରତ୍ୱର ବାର୍ତ୍ତାବହ ! ମୁଁ ମଧ୍ୟ ପ୍ରତିଜ୍ଞା କରିଛି ଅର୍ଜ୍ଜୁନର ପ୍ରାଣନାଶ ନକରିବା ପର୍ଯ୍ୟନ୍ତ ମୁଁ ମଦ୍ୟ - ମାଂସ ସ୍ପର୍ଶ କରିବି ନାହିଁ, କାହାରିକୁ ନିରାଶ କରିବି ନାହିଁ । ଯିଏ ଯାହା ମାଗିବ ତା' ଦାନ ଦେବି ଏବଂ କାହାରି ସେବା ଗ୍ରହଣ କରିବି ନାହିଁ । ସାତ୍ତ୍ୱିକ ଆହାର ଗ୍ରହଣ କରି, ଦାନ ଧର୍ମ କରି ତପସ୍ୱୀ ଭଳି ମୁଁ ନିରାଡ଼ମ୍ବର ଭାବେ ବର୍ଷ ବର୍ଷ ଧରି ଅସ୍ତ୍ରାଭ୍ୟାସର ସାଧନା କରି ଆସୁଛି ଗୋଟିଏ ଲକ୍ଷ୍ୟରେ । ସିଦ୍ଧି ଲାଭ ସୁନିଶ୍ଚିତ ସଖା ! ମୁଁ ପୁନରାୟ ଅର୍ଜ୍ଜୁନକୁ ଯୁଦ୍ଧର ଆହ୍ୱାନ ଦେଉଛି ।'

କର୍ଣ୍ଣଙ୍କର ଏହି ଦର୍ପ ହିଁ ତାଙ୍କ ଚରିତ୍ରର ସମସ୍ତ ସଦ୍‌ଗୁଣ ରାଜିକୁ ମଳିନ କରିଦିଏ ।

କର୍ଣ୍ଣଙ୍କ ସାନ୍ତ୍ୱନା ବାଣୀରେ ଦୁର୍ଯ୍ୟୋଧନଙ୍କ ଶୋକ ପ୍ରଶମିତ ହେଲା ଓ କର୍ଣ୍ଣ ଅର୍ଜ୍ଜୁନଙ୍କ ମଧ୍ୟରେ ପୁନରାୟ ଘୋରତର ସଂଗ୍ରାମ ଆରମ୍ଭ ହୋଇଗଲା ।

କର୍ଣ୍ଣଙ୍କର ଏକମାତ୍ର ପୁତ୍ର ବୃଷସେନ ଧନଞ୍ଜୟଙ୍କ ବାଣରେ ନିହତ ହେଲେ । ଶୋକ ମଗ୍ନ ହେବାକୁ ଅବସର ନଥିଲା କର୍ଣ୍ଣଙ୍କର । ସେ କେବଳ ବୃଷସେନର ସାରଥୀକୁ ନିର୍ଦ୍ଦେଶ ଦେଲେ - 'ଯାଅ । ବୃଷସେନର ଜନନୀଙ୍କୁ ଏସବୁ କିଛି କହିବ ନାହିଁ । ମୁଁ ନିଜେ ଆଜି ଅର୍ଜ୍ଜୁନର ପ୍ରାଣନାଶ କଲାପରେ ମାଳିନୀ ନଗରୀ ଯିବି ।'

ସେ ଉଚ୍ଚ ସ୍ୱରରେ ନିର୍ଦ୍ଦେଶ ଦେଉଥିଲେ । ପବନରେ ଶବ୍ଦ ସବୁ ଭାସି ଆସି ମୋର ଶ୍ରୁତିଗୋଚର ହେଉଥିଲା । ମୁଁ ତାଙ୍କୁ ଚାହିଁ ହସିଦେଲି ଏବଂ ସବୁରି ଅଲକ୍ଷ୍ୟରେ ହସୁଥିଲା

ମହାକାଳ ! ଯେତେ ବୀରତ୍ୱ ଥାଉ, ପୁରୁଷାର୍ଥ ଥାଉ । ସବୁକିଛି କିନ୍ତୁ ଦୈବର ଅଧିନ । ଦୈବ ବଳ ସର୍ବଶ୍ରେଷ୍ଠ ବଳ । ଜନନୀ ଯାହାକୁ ଜନ୍ମ ଲଗ୍ନରେ ଆଶୀର୍ବାଦ ଦେଇ ନାହିଁ, ସେ ବା' କାହାଠାରୁ କିପରି ଆଶୀର୍ବାଦ ପାଇଥା'ନ୍ତେ ? ଅଭିଶପ୍ତ - କର୍ଣ୍ଣ । ନହେଲେ କ୍ଷୁଦ୍ର ବିଷାକ୍ତ କୀଟଟିଏ ସେଦିନ ପର୍ଶୁରାମଙ୍କ ଆଶ୍ରମରେ ତାଙ୍କୁ ଅଭିଶାପର ଆବର୍ତ୍ତକୁ ଫିଙ୍ଗି ଦେଇ ପାରିଥା'ନ୍ତା ? ସ୍ୱୀୟ ପରିଚୟ ଗୋପନ କରି ମିଥ୍ୟାଚାରର ଆଶ୍ରୟ ନେଇଥିବା କର୍ଣ୍ଣ, କ୍ଷତ୍ରିୟର ସନ୍ତାନ ହୋଇ ଉଗ୍ରତେଜା ତପସ୍ୱୀ ପର୍ଶୁରାମଙ୍କୁ ମିଥ୍ୟାରେ ବ୍ରାହ୍ମଣର ସନ୍ତାନ ବୋଲି କହି ଅସ୍ତ୍ର ବିଦ୍ୟା ଅର୍ଜନ କରିଥିବା ଅପରାଧରେ ଶାପଗ୍ରସ୍ତ ହେଲେ କର୍ଣ୍ଣ । ସେତିକିରେ ତାଙ୍କର ଦୁର୍ଭୋଗ ଶେଷ ହୋଇ ନାହିଁ । ଅପେକ୍ଷା କରିଥିଲା ପୁଣି ଏକ ବ୍ରହ୍ମ ଶାପ । ତାଙ୍କର ସମସ୍ତ ଦକ୍ଷତା, ବୀରତ୍ୱ, ସାଧନା ସବୁକିଛି ମିଥ୍ୟା ହୋଇଗଲା ଜୀବନର ଅନ୍ତିମ ଲଗ୍ନରେ । କେବଳ ଏହି ଦୁଇଟି ଅଭିଶାପ ହିଁ ସେଦିନ ତାଙ୍କ ଜୀବନରେ ସତ୍ୟ ରୂପେ ଭାସ୍ୱର ହୋଇ ଉଠିଲା !

ହଁ, ପ୍ରକୃତରେ ସେଦିନ ସେ ମହାସମର ଦେଖିବା ପାଇଁ ସୁର- ନର- କିନ୍ନର ତ୍ରିଭୁବନର ପ୍ରତ୍ୟେକ ସ୍ତମ୍ଭୀଭୂତ ହୋଇ ଦେଖୁଥିଲେ ଓ ଚମତ୍କୃତ ହେଉଥିଲେ । ଦିବ୍ୟାସ୍ତ୍ରର ପ୍ରୟୋଗରେ ଉଭୟେ ପ୍ରବୀଣ । ଗୋଟିଏ ଗୋଟିଏ ତୀରରୁ ଅଲୌକିକ ଭାବେ ଶତ ସହସ୍ର ଶୂଳ, ପାଶ, ଖଡ୍ଗ, କୁନ୍ତ ଆଦି ଅସ୍ତ୍ର ସମୂହ ଉତ୍ପନ୍ନ ହୋଇ ଉଭୟ ପକ୍ଷରେ ଗଣସଂହାର ଆରମ୍ଭ କରି ଦେଇଥିଲା । ଅସଂଖ୍ୟ ତୀର ବର୍ଷଣରେ କୁରୁ ରଣାଙ୍ଗନର ଉର୍ଦ୍ଧ୍ୱରେ ଏକ ଦ୍ୱିତୀୟ ମେଘ ମଣ୍ଡଳ ସୃଷ୍ଟି ହୋଇଥିଲା ଯେମିତି । କର୍ଣ୍ଣ ଓ ଅର୍ଜୁନ ମୁଁ ଓ ଶଲ୍ୟ ପ୍ରତ୍ୟେକ ରୁଧିରାକ୍ତ ହୋଇ ଯାଉଥିଲୁ ଅସଂଖ୍ୟ ଶସ୍ତ୍ରାଘାତରେ । ଧନ୍ୟ କୁନ୍ତୀ ! ଧନ୍ୟ ତୁମ୍ଭେ ବୀର ପ୍ରସବିନୀ ଜନନୀ ! ଏଭଳି ଦୁଇଟି ବୀର ପୁତ୍ରଙ୍କ ଜନନୀ ହୋଇ ସୁଦ୍ଧା, ବସୁନ୍ଧରା ବୀରଭୋଗ୍ୟା ହେଲେ ସୁଦ୍ଧା ସମଗ୍ର ଜୀବନ ତୁମ୍ଭଙ୍କୁ ପରାଶ୍ରୟରେ ଅତିବାହିତ କରିବାକୁ ହେଲା ? କେବେ ଏକଚକ୍ରା ନଗରୀର ଦରିଦ୍ର ବ୍ରାହ୍ମଣ ଗୃହରେ ତ କେବେ ଅରଣ୍ୟରେ, କେବେ କୁରାଳଶାଳରେ ତ କେବେ ବିଦୂର ଗୃହରେ !

ଏଇଭଳି ଘୋରତର ସଂଗ୍ରାମରେ ଉଭୟ ବୀର ଯୁଦ୍ଧରତ ଥିବା ବେଳେ ଅପରାହ୍ନ ଅତିକ୍ରାନ୍ତ ହେବାକୁ ବସିଲା । ଆଉ ଠିକ୍ ସେହି ସମୟରେ ଯେମିତି ମହାକାଳର ଇଂଗିତରେ ସେହି ଅଦୃଶ୍ୟ ନଟର ନିର୍ଦ୍ଦେଶରେ ଦୃଶ୍ୟପଟ ସଂପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲା ! କର୍ଣ୍ଣଙ୍କର ବାମରଥ ଚକ ମେଦିନୀ ଗ୍ରାସ କଲା । ପଳିତ ମାଂସ ଓ ରକ୍ତ କର୍ଦ୍ଦମରେ ଲିପ୍ତ ହୋଇ ଯେତେବେଳେ ରଣଭୂମିରେ ଅର୍ଜୁନଙ୍କ ରଥର ଗତି ବ୍ୟାହତ ହୁଏ, ସେତେବେଳେ ସାରଥୀର ଧର୍ମ ପାଳନ କରି ମୁଁ ତାଙ୍କ ରଥଚକକୁ ସେ ରକ୍ତ କର୍ଦ୍ଦମରୁ ସ୍ୱହସ୍ତରେ ଉତ୍ତୋଳନ କରି ସମତଳ ଭୂମିକୁ ରଥ ବାହିନିଏ । ଅଥଚ କର୍ଣ୍ଣଙ୍କ ପରାଜୟର ପଥ ପରିଷ୍କାର କରିବା ପାଇଁ ନିୟତି ଯେମିତି

ମଦ୍ରପତିଙ୍କ ଭଳି ସାରଥୀଙ୍କୁ ନିଯୁକ୍ତ କରିଥିଲା । କର୍ଣ୍ଣଙ୍କ ରଥଚକ ବ୍ରହ୍ମ ଅଭିଶାପ ହେତୁ ମେଦିନୀ ଗ୍ରାସ କଲା ଏବଂ ସେହି ଅନ୍ତିମ ମୁହୂର୍ତ୍ତରେ ଗୁରୁ ଅଭିଶାପ ହେତୁ ଦିବ୍ୟାସ୍ତ୍ର ପ୍ରୟୋଗର ସମସ୍ତ ମନ୍ତ୍ର ସେ ବିସ୍ମୃତ ହୋଇଗଲେ ! ଆଉ ମଦ୍ରପତି ଶଲ୍ୟ ? ରଥଚକକୁ ଉଦ୍ଧାର ନିମିତ୍ତ ସେ କୌଣସି ସାହାଯ୍ୟ କରିନଥିଲେ, ବରଂ ରଜ୍ଜୁକୁ ଶିଥୀଳ କରି ଚୁପ୍ ଚାପ୍ ବସି ରହି ତୀକ୍ଷଣ ବାକ୍ୟ ବାଣରେ କର୍ଣ୍ଣଙ୍କୁ ଜର୍ଜର କରିବାକୁ ଲାଗିଲେ - 'ସୂତପୁତ୍ର ! ପ୍ରଥମେ ରଥଚକକୁ ଉଦ୍ଧାର କର । ପରେ ଧନଞ୍ଜୟ ସହ ଯୁଦ୍ଧ କରିବ । ମୁଁ କ୍ଷତ୍ରିୟ । ମଦ୍ରାଧିପତି । ବିଧିବଦ୍ଧ ଭାବେ କୌଣସି ସୂତ କୂଳରେ ଜନ୍ମ ହୋଇନାହିଁଯେ ଭୂ ଗ୍ରସ୍ତ ଚକକୁ ଉଦ୍ଧାର କରିପାରିବି । ଆସ ରଥରୁ ଅବତରଣ କର !'

ନୀରବରେ, ଅଧୋବଦନରେ କର୍ଣ୍ଣ ରଥରୁ ଅବତରଣ କରି ରଥଚକକୁ ମେଦିନୀ ଗ୍ରାସରୁ ଉଦ୍ଧାର କରିବାରେ ଲାଗିଲେ ନିରସ୍ତ୍ରଭାବେ । ତାଙ୍କ ଲଲାଟକୁ ଚାହିଁଲି । ମହାକାଳର ସ୍ୱାକ୍ଷର ସ୍ପଷ୍ଟ ଲିପିବଦ୍ଧ ହୋଇଛି । ମୁଁ ତାଙ୍କୁ ଚାହିଁ ମନେ ମନେ ଉଚ୍ଚାରଣ କଲି - 'ହେ ତ୍ରିଭୁବନଜୟୀ ବୀର କର୍ଣ୍ଣ ! ହେ ହତଭାଗ୍ୟ କର୍ଣ୍ଣ ! ତୁମ ହାତମୁଠାରୁ ସମସ୍ତ ସମୟ ନିଃଶେଷିତ ହୋଇଯାଇଛି । ପଞ୍ଚମହାଭୂତରେ ଗଠିତ ଏ ଶରୀର ପାଇଁ ପ୍ରଶ୍ୱାସରେ ଟିକିଏ ପବନ ନେବାର ଅଧିକାର ସୁଦ୍ଧା ଶେଷ ହୋଇଯାଇଛି । ଏଥର ପ୍ରସ୍ତୁତ ହୁଅ ବୀର ଶ୍ରେଷ୍ଠ !'

କର୍ଣ୍ଣ ମେଦିନୀରୁ ରଥ ଚକ ଉଦ୍ଧାର କରିବା ଦେଖି ଅର୍ଜୁନ କୌଣସି ଅସ୍ତ୍ର ପ୍ରୟୋଗ ନକରି ରହିଲେ । ହଠାତ୍ ମୁଁ ତାଙ୍କୁ ଲକ୍ଷ୍ୟ କରି କହିଲି - 'ଏ କ'ଣ ସଖା ? ଏଇତ ସୁବର୍ଣ୍ଣ ସୁଯୋଗ । କର୍ଣ୍ଣଙ୍କ ଭଳି ପ୍ରବଳ ପ୍ରତିପକ୍ଷଙ୍କୁ ନିଧନ କରିବାକୁ ହେଲେ ତାଙ୍କ ହାତକୁ ଅସ୍ତ୍ର ଆସିବା ପୂର୍ବରୁ ତାଙ୍କୁ ବଧ କର ।'

ଅର୍ଜୁନ କୁଣ୍ଠିତ କଣ୍ଠରେ କହିଲେ - 'ନା - ନା - ସଖା ! ଏହା ଧର୍ମ ବିରୁଦ୍ଧ, ନୀତି ବିରୁଦ୍ଧ । ଜଣେ ନିରସ୍ତ୍ରକୁ..... ।'

ତାଙ୍କ ବାକ୍ୟ ଶେଷ କରିବାକୁ ନଦେଇ ମୁଁ ତାଚ୍ଛଲ୍ୟରେ ଅଟ୍ଟହାସ କରି ଉଠିଲି - 'ଧର୍ମ ? ନୀତି ? କର୍ଣ୍ଣ ଭଳି ପାପିଷ୍ଠ ନିକଟରେ ଏ ସବୁର ଦ୍ୱାହି ଦେଇ ଲାଭ କ'ଣ ସଖା ?'

ତଥାପି ଅର୍ଜୁନ ଦ୍ୱିଧାଗ୍ରସ୍ତ ହେଲେ । ମୁଁ ତାଙ୍କୁ ଉତ୍ତେଜିତ କରିବା ଉଦ୍ଦେଶ୍ୟରେ କହିଲି- 'କର୍ଣ୍ଣ କେବେ ନ୍ୟାୟ ନିରପେକ୍ଷଭାବେ ଧର୍ମାଚରଣ କରିଛନ୍ତି ? ଜତୁଗୃହ ଦାହ ପଛରେ ତାଙ୍କର ହାତ ନଥିଲା ? ପ୍ରରୋଚନା ନଥିଲା ? ପ୍ରତାରଣା ପୂର୍ଣ୍ଣ ଅକ୍ଷକ୍ରୀଡ଼ାର ସେହି ଜଘନ୍ୟ ଷଡ଼ଯନ୍ତ୍ର କଥା ଥରେ ସ୍ମରଣ କର ସଖା । ସମଗ୍ର ବିଶ୍ୱରେ ସେଭଳି ଚରମ ଲାଂଛନା କୌଣସି ନାରୀ ସହ୍ୟ କରିଛି କି ? ତୁମେ ପୁଣି ତାହା ସ୍ୱଚକ୍ଷୁରେ ଦେଖିବାର ଦୁର୍ଭାଗ୍ୟ ବି ଅର୍ଜନ କରିଥିଲ

ନା ? ଏଇ କର୍ଣ୍ଣ ପରିପୂର୍ଣ୍ଣ କୁରୁ ଦରବାରରେ ଦ୍ରୁପଦ ରାଜକୁମାରୀ, ପଣ୍ଡୁଙ୍କର ପୁତ୍ରବଧୂ ସର୍ବୋପରି ତୁମ୍ଭମାନଙ୍କ ଭଳି ବୀର ପତିଗଣଙ୍କ ପ୍ରିୟ ବଲ୍ଲଭୀଙ୍କୁ 'ଦାସୀ', 'ବେଶ୍ୟା' ବୋଲି ସମ୍ବୋଧନ କରିଥିଲା । ରୋରୁଦ୍ୟମାନା ପାଞ୍ଚାଳୀଙ୍କର କରୁଣ ଆର୍ତ୍ତନାଦକୁ ଭ୍ରୂକ୍ଷେପ ନକରି ତାଙ୍କୁ ଭରା ଦରବାରରେ ବିବସନା କରିବା ପାଇଁ ପ୍ରରୋଚନା ଦେଇଥିଲା ନା ? ସେଇଦିନୁ.... ସେଇଦିନୁ ପାର୍ଥ ! ସେ ଶବ୍ଦ ପୁଞ୍ଜର କାରୁଣ୍ୟ ମୋ ମର୍ମତଟରେ ପୁଞ୍ଜିଭୂତ ହୋଇ ରହିଛି ।'

ଲକ୍ଷ୍ୟ କଲି ପାର୍ଥଙ୍କ ନାସାରୁ ପ୍ରଳୟ ଝଂଝା ସମ ପବନ ନିର୍ଗତ ହେଉଛି । ତାଙ୍କର ସମଗ୍ର ମୁଖ ମଣ୍ଡଳ କ୍ରୋଧରେ ଅଗ୍ନିବର୍ଣ୍ଣ ଧାରଣ କରୁଛି, କଣ୍ଟକିତ ଲୋମରାଜି ସହ ସୁପୁଷ୍ଟ ବାହୁ ଫୁଲି ଉଠୁଛି ।

ମୁଁ ପୁଣି କହିଲି - 'ଧିକ୍ ! କୁନ୍ତୀ ନନ୍ଦନ ଏବେ ପ୍ରତିଜ୍ଞା ପାଳନରେ ସୁଦ୍ଧା ଅସମର୍ଥ ଦେଖୁଚି । ଏହି ସୂତପୁତ୍ରର ଧର୍ମନ୍ୟାୟ ନୀତି କେଉଁଠି ଥିଲା ସଖା ? ଯେତେବେଳେ ମୋର ଭାଗୀନେୟ, ତୁମର ବାଳୁତ ପୁତ୍ର ଅଭିମନ୍ୟୁଙ୍କୁ ନିରସ୍ତ୍ର ଅବସ୍ଥାରେ ସପ୍ତରଥୀ ମିଳିତ ଭାବେ ବର୍ବରୋଚିତ ଆକ୍ରମଣ କରି ହତ୍ୟା କରିଥିଲେ ?'

ଅର୍ଜ୍ଜୁନଙ୍କର ସମସ୍ତ ସହ୍ୟଶକ୍ତି ଯେମିତି ସୀମା ଲଂଘନ କଲା । ସେ ଗାଣ୍ଡିବରେ ଟଂକାର ଦେଇ ଶର ସଂଯୋଜନା କଲେ । କର୍ଣ୍ଣ ବାମ ହସ୍ତରେ ରଥଚକକୁ ଉଦ୍ଧାର କରୁ କରୁ ଦକ୍ଷିଣ ହସ୍ତରେ ତାଙ୍କୁ ନିଷେଧ କଲେ । ମାତ୍ର ସେତେବେଳକୁ ଅର୍ଜ୍ଜୁନଙ୍କ ନିକ୍ଷିପ୍ତ କ୍ଷୁରାସ୍ତ୍ର କର୍ଣ୍ଣଙ୍କର ଶିରଚ୍ଛେଦ କରି ସାରିଥିଲା । କୌରବ ପକ୍ଷରେ ବହୁ ଅନ୍ୟାୟ ଅନୀତି ଆଚରିତ ହୋଇଥିଲା; ମାତ୍ର ଧର୍ମାଶ୍ରୟୀ ପଣ୍ଡୁସୁତଗଣ ଯେ ଶେଷକୁ ବିଜୟର ନିଶାରେ ଏଭଳି ଭାବରେ ରଣନୀତି ଉଲଂଘନ କରିବେ ତା' ହୁଏତ କେହି ବିଶ୍ୱାସ କରି ପାରୁନଥିଲେ । ସେ ଏକ ଅଭାବନୀୟ ଅନୁଭୂତି । ସଂବେଦନରେ ମୋ ହୃଦୟ ପରିପୂର୍ଣ୍ଣ ହୋଇଯାଇଥିଲେ ବି ମୁଁ ସେ କଥା ପରିପ୍ରକାଶ କରି ପାରୁନଥିଲି । ପାଣ୍ଡବ ପକ୍ଷରେ ଆନନ୍ଦର ସୀମା ନଥିଲା । ଅଂଗାଧିପତି ନିହତ ହୋଇଥିବା ଶୁଣି କୁରୁପତି ଦୁର୍ଯ୍ୟୋଧନ ଅସ୍ତ୍ରତ୍ୟାଗ କରି କର୍ଣ୍ଣଙ୍କ ନିକଟରେ ପହଞ୍ଚି ସଂପୂର୍ଣ୍ଣ ଭାଂଗି ପଡ଼ିଲେ । ତାଙ୍କ ଭଳି ଜଣେ ଦାମ୍ଭୀକ ପୁରୁଷ ଅସହାୟ ଶିଶୁ ଭଳି ରୋଦନ କରିବାକୁ ଲାଗିଲା । ଅଶ୍ରୁରୁଦ୍ଧ କଣ୍ଠରେ ସେ କହୁଥିଲା - 'କାହାପାଇଁ ଏ ରକ୍ତର ନଦୀ ବୁହାଇଲି ସଖା ? ଜଣ ଜଣ କରି ସମସ୍ତେ ମୋତେ ଏକା କରି ଚାଲି ଯାଉଛନ୍ତି ! ଜିଣିଲେ ବି କାହାକୁ ନେଇ ରାଜ୍ୟ ଭୋଗ କରିବି ?'

ତଥାପି ବିଜୟର ଆଶା ଦୁର୍ଯ୍ୟୋଧନର ଥିଲା ? ମଦ୍ରପତି ଶଲ୍ୟଙ୍କୁ ଦେଖି ମୁଁ ବିସ୍ମିତ ହେଉଥିଲି । ବୃଶ୍ଚିକର ଦଂଶନ ଭଳି ଅଜସ୍ର କଟୂବାକ୍ୟରେ କର୍ଣ୍ଣଙ୍କୁ ନିରୁତ୍ସାହିତ କରିଥିବା ଶଲ୍ୟ

ନୀରବରେ ଏକ ଲୟରେ କର୍ଣ୍ଣଙ୍କର ମୃତ ପିଣ୍ଡକୁ ଚାହିଁ ରହିଥିଲେ । କେଜାଣି ! ତାଙ୍କ ଦୃଷ୍ଟିରେ ଅନୁଶୋଚନା ଥିଲା କି ଆତ୍ମ ସନ୍ତୋଷ ଥିଲା ଜାଣି ହେଉ ନଥିଲା । କର୍ଣ୍ଣଙ୍କର ମୃତପିଣ୍ଡକୁ ଚାହିଁ ରହିଥିଲେ । କର୍ଣ୍ଣଙ୍କର ଛିନ୍ନ ଶିରରୁ ଅଜସ୍ର ରକ୍ତ ପ୍ରବାହିତ ହେଉଥିଲା, ଯେମିତି ଶେଷ ରକ୍ତ ବିନ୍ଦୁଟି ପର୍ଯ୍ୟନ୍ତ ଦୁର୍ଯ୍ୟୋଧନ ପାଇଁ ଉତ୍ସର୍ଗୀକୃତ ହୋଇ ପାରିଲେ ହିଁ ସେ ଶାନ୍ତି ଲାଭ କରିବେ, ମିତ୍ର ଋଣରୁ ମୁକ୍ତି ଲାଭ କରି ପାରିବେ । କୁନ୍ତୀପୁତ୍ର ନହେଲେ ମିତ୍ରପ୍ରତି ଏତେ ନିଷ୍ଠାବାନ୍ କିଏ ହୋଇପାରିବ ? ଜୀବଦ୍ଦଶାରେ ନହେଉ ପଛେ ମରଣପରେ ସୂର୍ଯ୍ୟଦେବ ପଶ୍ଚିମାଶା ଅଭିମୁଖେ ଯାଉ ଯାଉ ଲୋହିତ କୋମଳ କିରଣ ସ୍ପର୍ଶରେ କର୍ଣ୍ଣଙ୍କର ସମଗ୍ର ଶରୀରକୁ ବିଧୌତ କରୁଥିଲେ ଯେପରି । ଯୁଦ୍ଧ ପ୍ରାୟ ଶେଷ ହୋଇ ଆସୁଥିଲା । ପାଣ୍ଡବ ଶିବିରରେ ଆନନ୍ଦର ସୀମା ନଥିଲା । ଧର୍ମରାଜ ଗମ୍ଭୀର ହୋଇ ବସିଥିବା ସହଦେବଙ୍କୁ ପ୍ରଶ୍ନ କଲେ - 'ଆଗାମୀ କାଲି ଯୁଦ୍ଧରେ କୁରୁ ବାହିନୀର ସେନାପତି କିଏ ସହଦେବ ?'

ସହଦେବ ନିସ୍ପୃହ କଣ୍ଠରେ କହିଲେ - 'ମଦ୍ରପତି ଶଲ୍ୟ !'

ହଁ, 'ମାତୁଳ' ବୋଲି ନକହି ସେ 'ମଦ୍ରପତି' ବୋଲି କହିଲେ । କିଛି ସମୟ ଯୁଧିଷ୍ଠିରଙ୍କର ଶାନ୍ତ ମୁଖ ମଣ୍ଡଳକୁ ଲକ୍ଷ୍ୟ କରି କହିଲେ - 'ଜନନୀ ମାଦ୍ରୀ ପିତାଙ୍କ ଚିତାରୋହଣ କରି ସହମରଣ ବରଣ କରିବାଦିନ ଠାରୁ ମଦ୍ରପତି, ପଣ୍ଡୁଙ୍କ ପରିବାର ସହ ସମସ୍ତ ସଂପର୍କ ହୁଏତ ଛିନ୍ନ କରିଥିଲେ । ମୁହଁରେ ପ୍ରକାଶ ନକରି କାର୍ଯ୍ୟତଃ ତା'ର ପ୍ରମାଣ ଦେଲେ । ତାଙ୍କର ଦୁଇଟି ଅପୋଗଣ୍ଡ ଭାଗୀନେୟଙ୍କୁ ଜନନୀ କୁନ୍ତୀ ଓ କୁନ୍ତୀ ନନ୍ଦନ ତ୍ରୟ କିଭଳି ବକ୍ଷଲଗ୍ନ କରି ଲାଳନ କରି ଆସିଛନ୍ତି ସେ କଥା ତାଙ୍କର ସ୍ମରଣ ନାହିଁ ।'

ସହଦେବ ଉତ୍ତେଜିତ ଓ ନକୁଳ ଲଜ୍ଜିତ ଜଣା ପଡୁଥିଲେ । ମୁଁ ପରିବେଶର ଗାମ୍ଭୀର୍ଯ୍ୟକୁ ଭାରମୁକ୍ତ କରିବା ଉଦ୍ଦେଶ୍ୟରେ କହିଲି - 'ଆଦୌ ନୁହେଁ କନିଷ୍ଠ ପାଣ୍ଡବ ! କର୍ଣ୍ଣଙ୍କ ପରାଜୟ ପଛରେ ମଦ୍ରପତିଙ୍କ ଭୂମିକା କିଭଳି ମହତ୍ତ୍ୱ ପୂର୍ଣ୍ଣ ତାର ଏକମାତ୍ର ସାକ୍ଷୀ ମୁଁ ।'

ଭୀମସେନ ଓ ଅର୍ଜୁନ ପ୍ରକୃତରେ ବଡ଼ କ୍ଳାନ୍ତ ଦିଶୁଥିଲେ । ଧର୍ମରାଜ ସେ ଦୁହିଁଙ୍କୁ ପରମ ସ୍ନେହରେ ଆଉଁଷି ପକାଇ କହିଲେ - 'ଆଜି ଶୀଘ୍ର ବିଶ୍ରାମ ନିଅ । ଆଗାମୀ କାଲି ମାତୁଳ ଶଲ୍ୟଙ୍କ ସହ ସମ୍ମୁଖୀନ ହେବାକୁ ପଡ଼ିବ । ସେ ଶସ୍ତ୍ର ନିପୁଣ ତଥା ଯୁଦ୍ଧ ସମୟରେ ନିର୍ଦ୍ଦୟ ।'

ଭୀମସେନ କୃଷ୍ଣାଙ୍କର ପୁଷ୍ପ ମାଲ୍ୟ ମଣ୍ଡିତ ସୁବିନ୍ୟସ୍ତ ଜୁଡ଼ାକୁ ଚାହିଁ କହିଲେ - 'ତ୍ରୟୋଦଶ ବର୍ଷ କାଳ ପ୍ରକୃତରେ ମୋର ସୁନିଦ୍ରା ହୋଇନାହିଁ । ଆଜି ହିଁ ନିଶ୍ଚିନ୍ତରେ ଶୟନ କରିବି ।'ମୁଁ ତତ୍‌କ୍ଷଣାତ୍ ସଂଶୋଧନ କରି କହିଲି - 'ନା - ନା - ଏବେବି ତୁମେ ନିଶ୍ଚିନ୍ତ ନୁହଁ ଦ୍ୱିତୀୟ ପାଣ୍ଡବ । ତୁମର ଆହୁରି ଏକ ପ୍ରତିଜ୍ଞା ବାକୀ ଅଛି । ସେ କଥା ଯେମିତି ସ୍ମରଣ ରହେ ।'

-'ସେ ପ୍ରତିଜ୍ଞା ମୋର ଭୁଲିବାର ନୁହେଁ ।'

ପାଣ୍ଡବ ଶିବିରରେ ସମସ୍ତେ ସୁଖ ନିଦ୍ରାରେ ଶୟନ କଲାପରେ ହିଁ ମୁଁ ପ୍ରତ୍ୟହ ରଣଭୂମିକୁ ଏକାକୀ ଯାଏ, ରକ୍ତ ସ୍ରୋତକୁ ଲକ୍ଷ୍ୟ କରେ । ମୃତ, ମୁମୂର୍ଷୁଙ୍କୁ ଲକ୍ଷ୍ୟ କରେ, ମହାକାଳର ବଂଶୀଧ୍ୱନୀ ଉପଭୋଗ କରେ ଓ ପୁନରାୟ ଶିବିରକୁ ଫେରିଆସେ । ସେଦିନ ମଧ୍ୟ କୁରୁକ୍ଷେତ୍ରରେ ପହଞ୍ଚିବାର ଅବ୍ୟବହିତ ପୂର୍ବରୁ ଲକ୍ଷ୍ୟକଲି କେହି ଜଣେ ଶ୍ୱେତ ବସନ ପରିହିତା ନାରୀ ରଣଭୂମିରେ କ'ଣ ଏକ ଅମୂଲ୍ୟ ରତ୍ନ ଖୋଜୁଛି । ଯେଉଁଠାରେ ଠିକ୍ କର୍ଣ୍ଣାର୍ଜୁନ ମହାସମର ଅନୁଷ୍ଠିତ ହୋଇଥିଲା ଠିକ ସେହିଠାରେ । ମୁଁ ଏକ ଭଗ୍ନ ରଥର ଅନ୍ତରାଳରେ ରହି ଲକ୍ଷ୍ୟ କଲି । ଅନ୍ଧକାର ରାତ୍ରିରେ ସବୁକିଛି ଅସ୍ପଷ୍ଟ ହେଲେ ବି ଏ ଅଶ୍ରୁମୁଖୀ ନାରୀ ଯେ ଜନନୀ କୁନ୍ତୀ ତାହା ନିଃସନ୍ଦେହ । ଦିବସରେ ରଣଭୂମି ରଥୀ, ମହାରଥୀ, ଅଶ୍ୱର ହ୍ରେଷା, ଗଜର ବୃଂହଣ, ଭେରୀ, ତୂରୀ, ଶଙ୍ଖନାଦ, ଅସ୍ତ୍ରସହ ଅସ୍ତ୍ରର ସଂଘର୍ଷର ଶବ୍ଦ ଓ ବିସ୍ଫୋରଣରେ ଯେଉଁ ଭଳି ଶବ୍ଦାୟମାନ ହୋଇଥାଏ, ନିଶୀଥରେ ସେହିଭଳି ଶ୍ୱାନ, ଶୃଗାଳ, ଗୃଧ୍ର ଭଳି ଶବଭୂକ୍ ମାନଙ୍କର ପରସ୍ପର ଭିତରେ ସଂଘର୍ଷ, ବିକଟ ଚିତ୍କାର, ଚଉଷଠୀ ଯୋଗ୍ନୀ ଗଣଙ୍କର ଅଶରୀରୀ ଛାୟା, କେଉଁଠି ଡମ୍ବରୁର ଶବ୍ଦ କେଉଁ [illegible] ନିନାଦ ସହ ମୁଖରିତ ହୋଇ ସେହି ପରିବେଶକୁ ଅଧିକ ଭୀତିପ୍ରଦ କରୁଥାଏ । ଏଭଳି ଏକ ପରିବେଶରେ ପିଉସୀ ପୃଥାଙ୍କୁ ଦେଖି ମୋର ବିସ୍ମୟର ସୀମା ରହିଲା ନାହିଁ । ତାଙ୍କୁ ଆଉ ଲଜ୍ଜା ଦେବାକୁ ମୋର ଆଦୌ ଇଛା ହେଲା ନାହିଁ । ସେ ତେଣୁ ଜାଣି ପାରିଲେ ନାହିଁ ଯେ ତାଙ୍କର ଏ ଶୋକ ମଗ୍ନ ପରିସ୍ଥିତିର ଆଜଣେ ସାକ୍ଷୀ ରହିଗଲା ! ତାଙ୍କର କରୁଣ ନୟନ ଦୁଇଟି ଅଶ୍ରୁରେ ଭାସି ଯାଉଥିଲା । ତାଙ୍କର ଦେହ, ମନ, ଆତ୍ମା ସବୁ ଯେମିତି ଅଶ୍ରୁରେ ଭିଜି ସିକ୍ତ ହୋଇ ଯାଇଥିଲା । ସେହି ଅଶ୍ରୁସିକ୍ତ ମୁଖ ମଣ୍ଡଳଟିରେ ପାଇ ହରେଇବାର, ହରେଇ ଖୋଜି ନପାଇବାର ଅସରନ୍ତି ବ୍ୟର୍ଥତାର ମୁଦ୍ରାଙ୍କ ସ୍ପଷ୍ଟ ହୋଇ ଉଠୁଥିଲା । ରୁଧିର ସିକ୍ତ ଭୂତଳରେ ଅଜସ୍ର ରକ୍ତ କ୍ଷରିତ ହୋଇ ପଡ଼ିରହିଥିବା ଛିନ୍ନ ଶିରଟି ପାଖରେ ଜନନୀ କୁନ୍ତୀ ବସି ପଡ଼ି ଅଶ୍ରୁରୁଦ୍ଧ ସ୍ୱରରେ କହିଲେ - 'ଅଭିମାନୀ ପୁତ୍ର ମୋର ! ତୋ ଜୀବନ ବିନିମୟରେ ପାଣ୍ଡବଙ୍କ ଏ ବିଜୟ ମୁଁ କାମନା କରି ନଥିଲିରେ । ତୁ ବି'ତ ମହାତ୍ମା ପଣ୍ଡୁଙ୍କ କ୍ଷେତ୍ରଜ ସନ୍ତାନ, କିପରି ତେବେ କୌରବଙ୍କ ପାଇଁ ପ୍ରାଣୋତ୍ସର୍ଗ କରିଦେଲୁ ? ଅର୍ଜୁନ ଅବା ଜାଣି ନଥିଲା ତୁ ତା'ର ଅଗ୍ରଜ, ହେଲେ ତୁ ତ ଜାଣିଥିଲୁ ତୁ ହିଁ ଅଗ୍ରକୌନ୍ତେୟ ? ମୋ ଉପରେ ଅଭିମାନ କରି ତୋର ଯଶମଣ୍ଡିତ ଜୀବନର ଯବନିକା ଟାଣିବା ପାଇଁ ଶେଷକୁ ମୁଣ୍ଡ ପାତି ଦେଲୁ ? ମୋରି ଉପରେ ଅଭିମାନ କରି ଆପଣାକୁ ଏଭଳି ପ୍ରଚଣ୍ଡ ଶାସ୍ତି କାହିଁକି ଦେଲୁ ପୁତ୍ର ? ମୋର ଅସହାୟତା, ନିରୁପାୟତା କଥା ଥରେ ଚିନ୍ତା କଲୁନାହିଁ ? ମୁଁ ସମ୍ଭ୍ରାନ୍ତ ବଂଶର ରାଜକନ୍ୟାଟିଏ ହୋଇ କୁମାରୀ ଅବସ୍ଥାରେ ତୋତେ ଜନ୍ମ ଦେଇ କାହାକୁ କହିପାରିଥା'ନ୍ତି ଯେ ତୁ

ମୋର ପୁଅ ବୋଲି ? ଗୋଟିଏ କୁମାରୀ କନ୍ୟା କେମିତି କହି ପାରିଥା'ନ୍ତା ତା'ର ଗୋପନ ଅଭିସାରର ନିନ୍ଦିତ ଗାଥା ? ଥରଟିଏ ଫେରିଆରେ - ମୁଁ ଲଜ୍ଜ୍ୟା, ଅପମାନ, ନିନ୍ଦା ଅପଯଶକୁ ଭ୍ରୂକ୍ଷେପ ନକରି ସଗର୍ବରେ ଘୋଷଣା କରିବି ମୁଁ ତୋ ଜନନୀ । ଆଉ ଏ ମର୍ମାନ୍ତିକ, ସଂଗୁପ୍ତ ଦୁଃଖର ଯନ୍ତ୍ରଣା ମୁଁ ସହିପାରୁନିରେ । ଶତଖଣ୍ଡରେ ବକ୍ଷ ମୋର ବିଦୀର୍ଣ୍ଣ ହୋଇ ଯାଉଛି ।'

ସେ ଆଉ କିଛି କହିପାରିଲେ ନାହିଁ । ସର୍ବସ୍ୱ ହରାଇ ସର୍ବସ୍ୱାନ୍ତ ହୋଇଥିବା ଗୋଟିଏ ଦୀନା ହୀନା ଭିଖାରୁଣୀ ଭଳି ସେ ବ୍ୟାକୁଳ ହୋଇ ବିଳାପ କରିବାକୁ ଲାଗିଲେ । ହଁ, ଦୁଃଖହିଁ ତାଙ୍କର ଲଲାଟ ଲିପି । ସେଥିରୁ ତାଙ୍କୁ କିଏ ମୁକ୍ତି ଦେବ ? ଚିତାରେ ଆରୋହଣ କରି ଭସ୍ମୀଭୂତା ନହେଲା ଯାଏ ଏଇ ପୁତ୍ର ବିୟୋଗର ଦୁଃଖହିଁ ତାଙ୍କର ଅନ୍ତରାତ୍ମାକୁ ଅହରହ ଲହୁ ଲୁହାଣ କରୁଥିବ । ତାଙ୍କୁ ବୃଥା ସାନ୍ତ୍ୱନା ଦେଇ ତାଙ୍କର ଏ ମାତୃତ୍ୱର ମହିମା ଟିକକକୁ ଛୋଟ କରିବାକୁ ଚାହିଁଲି ନାହିଁ । ସେ ଆଜି କାନ୍ଦନ୍ତୁ , ମନଭରି କାନ୍ଦନ୍ତୁ । ହୃଦୟ ଉଜାଡ଼ିକରି ଲହୁ ଢାଳନ୍ତୁ । କାରଣ ପାଣ୍ଡବ ଶିବିରକୁ ଫେରିଗଲେ ଏଇ ସ୍ୱାଧିନତାର ଅଧିକାର ଟିକକ ସେ ଆଉ ପାଇବେ ନାହିଁ । ପାଣ୍ଡବ ଶିବିରକୁ ଫେରିଗଲେ ଶୀତ ପାହାନ୍ତିର ଶିଶିରସ୍ନାତ ଦୂର୍ବା ମଂଜରୀ ଭଳି ଅଶ୍ରୁ ଟଳମଳ ହେଲେବି ଲୁହ ଝରିବାର ଅଧିକାର ତାଙ୍କର ରହିବ ନାହିଁ । ବଞ୍ଚିରହିବାର ଏ ଯେ' କେତେ ବଡ଼ ବଞ୍ଚନା ତା' କେବଳ ଜନନୀ କୁନ୍ତୀହିଁ ଜାଣନ୍ତି । ବଡ଼ ବିଚିତ୍ର ପରିସ୍ଥିତି ତାଙ୍କର । ବିଜୟୀ ପୁତ୍ରକୁ ଅଭିବନ୍ଦନା କରିବା ପାଇଁ ସେ ଯେମିତି ବାଧ୍ୟ, ମୃତ ପୁତ୍ର ପାଇଁ ଶୋକ ମଗ୍ନ ହେବା ତାଙ୍କ ପକ୍ଷେ ସେମିତି ସ୍ୱାଭାବିକ । କାନୀନ ସନ୍ତାନ ଚିରକାଳ ଅବାଂଛିତ । ଜନ୍ମରେ ତାକୁ ଜନନୀ ସମାଜର କଟାକ୍ଷ ଭୟରେ ନ୍ୟାୟ ଦେଇ ପାରିନାହିଁ, ମରଣ ପରେ ଆଉ କେଉଁ ନ୍ୟାୟର ଦାବୀ ବା ସେ କରିବ କାହା ପାଖରେ ? ମୁଁ ନୀରବରେ ଫେରି ଆସିଲି । ଅବଶିଷ୍ଟ ରାତି ବିଶ୍ରାମ ନେବା ପରେ ପୁନରାୟ ଯୁଦ୍ଧର ପ୍ରସ୍ତୁତି ଆରମ୍ଭ ହୋଇଯିବ ।

ଅଂଗାଧିପତି କର୍ଣ୍ଣଙ୍କ ମୃତ୍ୟୁ ହୁଏତ ମଦ୍ରପତିଙ୍କୁ ଭୀଷଣ ଭାବେ ଆଲୋଡ଼ିତ କରିଥିଲା । କାରଣ ଯେଉଁ ଦୁଇଟି ଦିନ ସେ କୁରୁବାହିନୀର ସେନାପତି ଥିଲେ ବଡ଼ ନିଷ୍ଠାର ସହ ଦୁର୍ଯ୍ୟୋଧନ ସପକ୍ଷରେ ଯୁଦ୍ଧ କରିଥିଲେ । ମଦ୍ର ଦେଶୀୟ ବୀରଗଣ ଅତ୍ୟନ୍ତ ବଳିଷ୍ଠ ଓ ଏକାଧିକ୍ରମେ ବହୁ ସମୟ ପର୍ଯ୍ୟନ୍ତ ଯୁଦ୍ଧରତ ରହି ପାରନ୍ତି । ତଥାପି ସୁଦ୍ଧା ଚିରଶାନ୍ତ ଧର୍ମରାଜଙ୍କ ଦ୍ୱାରାହିଁ ଅଷ୍ଟାଦଶ ଦିବସର ମଧ୍ୟାହ୍ନରେ ମଦ୍ରପତି ନିହତ ହୋଇଥିଲେ । ପରେ ପରେ ଶାଲ୍ୱ, ଶକୁନି ତନୟ ଉଲୁକ ପ୍ରଭୃତି ମଧ୍ୟ ନିହତ ହୋଇଥିଲେ । ଅଷ୍ଟାଦଶ ଦିବସର ଅପରାହ୍ନରେ ଗାନ୍ଧାର କୁମାର ସୁବଳସୁତ ଶକୁନୀଙ୍କୁ ପ୍ରଚଣ୍ଡ ବିକ୍ରମରେ କନିଷ୍ଠ ପାଣ୍ଡବ ସହଦେବ ହିଁ ବିନାଶ କଲେ । ଶକୁନୀ କୁରୁ - ପାଣ୍ଡବ ବୈରଭାବର ମୂଳ ସୂତ୍ରଧର ।

ଶକୁନୀ - କି ଭୀଷଣତା'ର ପ୍ରତିହିଂସାର ପଦ୍ଧତି ! ନିଜ ଆଖିରେ ନଦେଖିଲେ ନିଜ

କାନରେ ନଶୁଣିଲେ କେହି ବିଶ୍ୱାସ କରିପାରିବ ନାହିଁ ଜଣେ ରକ୍ତ ମାଂସର ମଣିଷ ଏତେ ପ୍ରତିଶୋଧ ପରାୟଣ ହୋଇପାରେ ! ଏଭଳି ଏକ ଖଳ ଦୁର୍ଜ୍ଜନ ଯେ କୌଣସି ସମୟରେ ସୃଷ୍ଟିର କମନୀୟତାକୁ ଧ୍ୱଂସ କରିଦେଇ ପାରେ । ବାହୁବଳରେ ସମ୍ଭବ ନହେଲେ ବି ଛଳ କୌଶଳ ବଳରେ, ପ୍ରବଞ୍ଚନା ଓ ଷଡ଼ଯନ୍ତ୍ର ବଳରେ ନିଜର ତୁଚ୍ଛ ଅଭୀଷ୍ଟ ସିଦ୍ଧି ପାଇଁ ସେ ଅନେକ ତଳକୁ ଓହ୍ଲେଇ ଯାଇପାରେ ! ସପ୍ତଦଶ ଦିବସର ଶେଷ ଯାମରେ କୁନ୍ତୀଙ୍କୁ କର୍ଣ୍ଣଙ୍କ ଶବପିଣ୍ଡ ନିକଟରେ ଏକାକିନୀ ରଖି ତାଙ୍କ ଅଲକ୍ଷ୍ୟରେ ମୁଁ ଯେତେବେଳେ ଫେରିଆସୁଥିଲି ଠିକ୍ ସେତିକିବେଳେ ଏକ ବିଚିତ୍ର ଶବ୍ଦରେ ବିସ୍ମିତ ହୋଇ ଚାହିଁ ଦେଖିଲି ଉତ୍ତାଳ ଲହରୀ ମାଳିନୀ ରୁଧିର ନଦୀ ତଟରେ ଶକୁନୀହିଁ ତାଙ୍କର ପଶାକାଠିକୁ ଏପଟ ସେପଟ କରି ଅତ୍ୟନ୍ତ ହୃଷ୍ଟ ଚିତ୍ତରେ କ୍ରୀଡ଼ା କରୁଛନ୍ତି ଏକାକୀ ! ନିଶ୍ଛିଦ୍ର ଅନ୍ଧକାରରେ ତାଙ୍କର ପ୍ରବଞ୍ଚନାପୂର୍ଣ୍ଣ ମୁଖର ରେଖା ସ୍ପଷ୍ଟ ଦିଶୁ ନଥିଲେ ବି ତାଙ୍କ କଣ୍ଠ ସ୍ୱରରୁ ଆନନ୍ଦାବେଗର ସଂକେତ ସ୍ପଷ୍ଟ ହେଉଥିଲା । ଦୀର୍ଘଦିନ ଧରି କ୍ରମାଗତ ଯୁଦ୍ଧ ଫଳରେ ଅସଂଖ୍ୟ କ୍ଷତ୍ରିୟ ବୀର, ଗଜ, ଅଶ୍ୱ ପ୍ରଭୃତି ବଳି ପଡ଼ିଥିଲେ । ମା' ବସୁଧାର ରକ୍ତ ତୃଷ୍ଣା ହୁଏତ ପ୍ରଶମିତ ହୋଇ ଯାଇଥିଲା ଅଜସ୍ର ରକ୍ତ ପାନରେ । ଭୁକ୍ତାବଶିଷ୍ଟ ରକ୍ତ ତେଣୁ ସ୍ରୋତ ମୁଖରା ନଦୀ ଭାବେ ପ୍ରବାହିତ ହେଉଥିଲା ପୂର୍ବରୁ ପଶ୍ଚିମକୁ ଓ ଉତ୍ତରରୁ ଦକ୍ଷିଣକୁ ।

ହଁ, କେବଳ ରକ୍ତର ନଦୀଟିଏ ହିଁ ଅବଶିଷ୍ଟ ରହିଗଲା ସବୁ ଶେଷ ହୋଇଯିବାପରେ ! ଜଘନ୍ୟ ଷଡ଼ଯନ୍ତ୍ର, ପ୍ରତିହିଂସା, ପ୍ରତିଶୋଧ, ନାରୀ ଲାଂଛନାର ଏକ ନିର୍ମମ ପରିଣତି !

ରଣକ୍ଳାନ୍ତ ପାଣ୍ଡବଗଣ ଓ ତାଙ୍କ ସେନାନୀ ଗଭୀର ନିଦ୍ରାରେ ଅଚେତନ ହେବାପରେ ମୁଁ ଶତ୍ରୁପକ୍ଷର ଗତିବିଧି ଉପରେ ସତର୍କ ଦୃଷ୍ଟି ରଖି ସେମାନଙ୍କ ଆଗାମୀ ଯୋଜନା ସଂପର୍କରେ ଜାଣିବା ପାଇଁ ପ୍ରାୟତଃ ଶିବିର ବାହାରକୁ ଏକାକୀ ଆସିଥାଏ । ଦୁର୍ଯ୍ୟୋଧନ, କୃତବର୍ମା, କୃପାଚାର୍ଯ୍ୟ, ଅଶ୍ୱତ୍‌ଥାମା ସେହି ରାତ୍ରିରେ ହିମାଳୟର ସମତଳ ଅଞ୍ଚଳରେ କିଛି ସମୟ ବିଶ୍ରାମ କରି ସରସ୍ୱତୀ ନଦୀରେ ସ୍ନାନକରି, ପୂଣ୍ୟତୋୟା ସରସ୍ୱତୀ ନଦୀର ସୁଶୀତଳ ଜଳ ସୁପ୍ରଚୁର ପାନ କରି ଦେହ ମନର କ୍ଷତକୁ ଉପଶମ କରିବାର ଚେଷ୍ଟାରେ ଫେରି ଆସି ସ୍ୱୀୟ ଶିବିରରେ ବିଶ୍ରାମ କରୁଛନ୍ତି । ଦୂରଭିସନ୍ଧିଯୁକ୍ତ, ଉଦ୍ଦେଶ୍ୟ ପ୍ରଣୋଦିତ, କୁ-ପ୍ରରୋଚନା ଦେବାରେ ହିଁ ଶକୁନୀ ସିଦ୍ଧହସ୍ତ । ଦୁର୍ଯ୍ୟୋଧନକୁ କୁମନ୍ତ୍ରଣା ଦେବା ପରିବର୍ତ୍ତେ ଏଇ ରକ୍ତନଦୀ ତୀରରେ ସେ ଏକାକୀ କାହିଁକି ? ମୁଁ ଅତ୍ୟନ୍ତ ସତର୍କତାର ସହ ଆଉ ଟିକିଏ ପାଖକୁ ଯାଇ ଶୁଣିଲି ଶକୁନୀ ଆନନ୍ଦରେ ଉଲ୍ଲସିତ ହୋଇ କହୁଛି - 'କୁରୁପତି ଦୁର୍ଯ୍ୟୋଧନ ! ହସ୍ତିନା ନରେଶ ଧୃତରାଷ୍ଟ୍ର ! ଦେଖ । ମୁଁ ପ୍ରତିଶୋଧ ନେବାରେ ସଫଳକାମ ହୋଇ ପାରିଛି । ଅନ୍ଧ ନରେଶ ଧୃତରାଷ୍ଟ୍ର ! ମୋର ଏକମାତ୍ର ଭଗିନୀ ଗାନ୍ଧାରୀ । ଗାନ୍ଧାର ଭଳି ସମୃଦ୍ଧିଶାଳୀ ରାଜ୍ୟର ରାଜକନ୍ୟା,

ବିଦୂଷୀ,ତୀକ୍ଷଣଧାର ବୁଦ୍ଧି ସଂପନ୍ନା, ନ୍ୟାୟ ଓ ବିବେକ ଯୁକ୍ତା, ସର୍ବୋପରି ରୂପସୀ । ତୁମର କ'ଣ ବା ଥିଲା ? ମହାମନା ପାଣ୍ଡୁଙ୍କ ଦୟାରେ ତୁମେ କିଛି କାଳ ରାଜ୍ୟ ଭୋଗକଲ ଏବଂ କିଛି କାଳ ମୋର ଦୁର୍ବୁଦ୍ଧି ଓ ଷଡ଼ଯନ୍ତ୍ର ବଳରେ ହସ୍ତିନା ସାମ୍ରାଜ୍ୟ ଭୋଗ କରି ଆସୁଛ । ତୁମେ ଚକ୍ଷୁହୀନ ସତ, ମାତ୍ର ତୁମର ବିବେକ ବି ଅନ୍ଧ ? କେଉଁ ସାହସରେ ତୁମେ ସର୍ବଗୁଣ ସଂପନ୍ନା ଗାନ୍ଧାର କୁମାରୀଙ୍କୁ ବିବାହ କରିଥିଲ ? କ'ଣ ତୁମେ ତାକୁ ଦେଇ ପାରିଥା'ନ୍ତ ଯଦି ଉଚିତ ସମୟରେ ମୁଁ - ଏଇ ଦୁଷ୍ଟବୁଦ୍ଧି ଶକୁନୀ ହସ୍ତିନାରେ ପ୍ରବେଶ କରିନଥା'ନ୍ତା ! ହଁ, ଗାନ୍ଧାରୀ ଶତପୁତ୍ରର ଜନନୀ ହେବାର ଦୁର୍ଭାଗ୍ୟ ଅର୍ଜନ କରିଛନ୍ତି । ଦୁର୍ଭାଗ୍ୟ ନୁହେଁତ ଆଉ କ'ଣ ? ଉତ୍ତମ ସ୍ୱଭାବ ସଂପନ୍ନ ହୋଇଥିଲେ ଏକଶତ ପୁତ୍ର କେବଳ ହସ୍ତିନା କାହିଁକି ସମଗ୍ର ଆର୍ଯ୍ୟାବର୍ତ୍ତରେ ସାମ୍ରାଜ୍ୟ ବିସ୍ତାର କରିପାରିଥା'ନ୍ତେ ସ୍ୱୀୟ ବୀରତ୍ୱ ବଳରେ । ମାତ୍ର ତୁମର ମଦୋଦ୍ଧତ, ଅହଂସର୍ବସ୍ୱ ପୁତ୍ରଗଣ ତୁଚ୍ଛ ଗୃହବିବାଦରେ ମତ୍ତ ରହି, ଭ୍ରାତୃ ବିବାଦରେ, କଳହ, ଈର୍ଷ୍ୟା, ଅସୂୟାରେ ମଗ୍ନରହି ସର୍ବସ୍ୱ ହରାଇଛନ୍ତି । ଆଉ ଯେଉଁ ଗୋଟିକ ପୁତ୍ର ଦୁର୍ଯ୍ୟୋଧନ ବଞ୍ଚିରହିଛି । ଆଗାମୀ କାଲି ଯୁଦ୍ଧରେ ତାକୁ ଭୀମସେନ କ୍ଷମା ଦେବେ ନାହିଁ । କୁରୁପତି ଦୁର୍ଯ୍ୟୋଧନ ! ମୋର ବଂଶ ତୁମେ ନାଶ କରିଥିଲ ନା ? ପାଷାଣ କାରାକକ୍ଷରେ ମୋର ପିତା - ମାତା, ଭ୍ରାତା,ଆତ୍ମୀୟ ସ୍ୱଜନ ସମସ୍ତଙ୍କୁ ଅନ୍ଧକାର ପାଷାଣ କାରାକକ୍ଷରେ କ୍ଷୁଧା ତୃଷାରେ ଆତୁର ହୋଇ ପ୍ରାଣ ବିସର୍ଜ୍ଜନ କରିବାକୁ ପଡ଼ିଥିଲା ନା ? ଆଜି ମୁଁ ମଧ୍ୟ ତୁମ ବଂଶ ନାଶ କରିଦେଇଛି । ମୋ ପ୍ରାଣରେ ଅପୂର୍ବ ଶାନ୍ତି ! ତୁମେ କପଟାଚାର ବଳରେ ସୁବଳଙ୍କ ବଂଶ ନାଶ କରିଥିଲ । ମୁଁ ସେହି କପଟାଚାରକୁ ଆଶ୍ରୟ କରି ପାଦେ ପାଦେ କରି ତୁମ୍ଭଙ୍କୁ ପାପର ପିଛିଳ ପଥରେ ଆଗେଇ ନେଇଛି, ପାପର ଆବର୍ତ୍ତରେ ତୁମ୍ଭମାନଙ୍କୁ ଆକଣ୍ଠ ମଗ୍ନ କରି ଦେଇଛି । ଏଇତ ! ମୋ ହାତରେ ଏବେବି ମୋ ପିତାଙ୍କର ଅସ୍ଥି ନିର୍ମିତ ଅକ୍ଷକାଠି । ଏହାରି ବଳରେ ସମସ୍ତ ଅଭୀଷ୍ଟ ମୋର ସିଦ୍ଧି ହୋଇଛି । ହଁ, ହଁ, କୁରୁପତି ! ମୁଁ ହିତୈଷୀ ମାତୁଳର ମୁଖା ପିନ୍ଧି ତୁମର ସର୍ବନାଶର ପଥ ପରିଷ୍କାର କରୁଥିଲି । ଏତେବର୍ଷ ଧରି ମୋ ହୃଦୟରେ ଅହରହ ପ୍ରଜ୍ୱଳିତ ହେଉଥିବା ପ୍ରତିହିଂସାର ଦାବାନଳ ଆଜି ନିର୍ବାପିତ ହୋଇଛି । ତୁମେ ହୁଏତ କହିବ ଏହାଦ୍ୱାରା ମୋର ଭଗିନୀ ଗାନ୍ଧାରୀ ବା କେଉଁ ସୁଖ ଭୋଗ କଲା ? ତା' ଲଲାଟ ଲିପିର ଅନ୍ୟ ନାମ ଯେ ଦୁର୍ଭାଗ୍ୟ ! ମୁଁ କ'ଣ କରି ପାରିଥା'ନ୍ତି ? ଏଇ ଧ୍ୱଂସ ଦେଖିବାକୁ ଏତେବର୍ଷ ଧରି ମୁଁ ହସ୍ତିନାରେ ଅପେକ୍ଷା କରିଥିଲି । ମୁଁ କିନ୍ତୁ ଠିକ୍ ଜାଣିଥିଲି କୁରୁ ପରିବାରର ବହୁ ବୟୋଜ୍ୟେଷ୍ଠ ସଦସ୍ୟ ଏଥିରେ ସନ୍ତୁଷ୍ଟ ନଥିଲେ । କୁରୁଶ୍ରେଷ୍ଠ ଭୀଷ୍ମଙ୍କ ପାଇଁ ମୋର ଉପସ୍ଥିତିହିଁ ଉତ୍ପୀଡ଼କ ଥିଲା । କେବଳ ସୌଜନ୍ୟ ବଶତଃ ସେ ସହ୍ୟ କରୁଥିଲେ । ମୋର ଭଉଣୀ ଗାନ୍ଧାରୀ ପାଇଁ ସୁଦ୍ଧା ମୁଁ ଏକ ଦୁର୍ବିସହ ଯନ୍ତ୍ରଣା ଥିଲି । ଆଗାମୀ କାଲି ଯୁଦ୍ଧହିଁ ହେବ ମୋର ଅନ୍ତିମ ଯୁଦ୍ଧ । ଯଦି ଦୈବାତ୍ ବଞ୍ଚିଯାଏ ତେବେ ଗାନ୍ଧାର ଫେରିଯିବି ।'

ନା - ଗାନ୍ଧାର ସେ ଫେରି ପାରି ନଥିଲେ । ଅଷ୍ଟାଦଶ ଦିବସର ପୂର୍ବାହ୍ନରେ ହିଁ ସହଦେବଙ୍କ ଦ୍ୱାରା ସେ ନିହତ ହେଲେ । ଏଇ ସଂବାଦ ଯେତେବେଳେ ସଂଜୟ ପରିବେଷଣ କରିଥିଲେ; ଧୃତରାଷ୍ଟ୍ର ସ୍ଥାନ କାଳ ପାତ୍ର ଭୁଲି ଆନନ୍ଦରେ ଅଟ୍ଟହାସ୍ୟ କରି ଉଠିଥିଲେ । ସେଭଳି ଏକ ଶୋକାବହ ପରିସ୍ଥିତିରେ ଧୃତରାଷ୍ଟ୍ରଙ୍କର ଏ ହସ ସମସ୍ତଙ୍କୁ କୁଆଡ଼େ ବିସ୍ମୟରେ ହତବାକ୍ କରି ଦେଇଥିଲା । ଅଷ୍ଟାଦଶ ଦିବସର ପୂର୍ବାହ୍ନ ସୁଦ୍ଧା ସତକୁ ସତ ସବୁ ଶେଷ ପ୍ରାୟ ହୋଇ ଯାଇଥିଲା । କୁରୁ ସେନାନୀ କିଏ କୁଆଡ଼େ ଗଲେ ତା'ର ଜବାବ କେହି ଦେଇ ପାରିଲେ ନାହିଁ । ଭୀମସେନ କିନ୍ତୁ ସେଦିନ ବ୍ରାହ୍ମ ମୁହୂର୍ତ୍ତରୁ ଗଦାଭ୍ୟାସ କରିବା ପରେ ପରେ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଗଲେ । ଗଜବାହିତ ରଥ ମଧ୍ୟ ପ୍ରସ୍ତୁତ ହୋଇ ରହିଥିଲା । ସେ ରଥାରୋହଣ କରିବା ପୂର୍ବରୁ ଅକସ୍ମାତ୍ ପାଞ୍ଚାଳ ନନ୍ଦିନୀଙ୍କୁ ପାଖକୁ ଡାକିଲେ । ଭାବାବେଗ ପୂର୍ଣ୍ଣ କଣ୍ଠରେ କହିଲେ - 'ମନେ ଅଛି ପାଞ୍ଚାଳୀ, ବନବାସ ସମୟରେ କାମ୍ୟକ ବନରେ ବାସୁଦେବଙ୍କୁ ଦିନେ କହିଥିଲି, ମୋର ପଞ୍ଚବୀର ପତିଙ୍କ ସମ୍ମୁଖରେ ଦୁଃଶାସନ ମୋର କେଶାକର୍ଷଣ କରି ଆଣିଲା, କର୍ଣ୍ଣ ମୋତେ ବହୁ ବଲ୍ଲଭା ବୋଲି ଧିକ୍କାର କଲା, ଦୁର୍ଯ୍ୟୋଧନ ମୋତେ ଦାସୀ ବୋଲି କହି କଟୂଭାଷାରେ ଭର୍ତ୍ସନା କଲା, ମୋତେ ତାର ଅଙ୍କ ଶାୟିନୀ ହେବାର ଘୃଣ୍ୟ ଲଜ୍ୟାଜନକ ପ୍ରସ୍ତାବ ବି ଦେଲା । ଏହାପରେ ମୁଁ ନିଜକୁ ଅସହାୟା କହିବି ନାହିଁତ ଆଉ କ'ଣ କହିବି ? ମୋର ପତି ନାହାନ୍ତି, ପୁତ୍ର ନାହାନ୍ତି, ପିତା ନାହାନ୍ତି, ଭ୍ରାତା ନାହାନ୍ତି, ଏପରିକି ଗୋବିନ୍ଦ ତମେବି ନାହଁ !'

ପାଞ୍ଚାଳୀ ଭୀମସେନଙ୍କ ମୁହଁରେ ହାତରଖି କହିଲେ - 'ଥାଉ ! ଆଉ ସେସବୁ ଦୁଃଖଦ ସ୍ମୃତି ରୋମନ୍ଥନର ଆବଶ୍ୟକତା ନାହିଁ ।

ହଠାତ୍ ସେ ରଥାରୋହଣ କରିବା ସମୟରେ ମୁଁ ତାଙ୍କ ବାହୁ ଯୁଗଳରେ ହାତରଖି କହିଲି - 'ଭ୍ରାତା ଭୀମସେନଙ୍କର ଆଜି ଯେମିତି ଏକ ବିଶେଷ ଯୋଜନା କାର୍ଯ୍ୟକାରୀ ହେବ ମନେ ହେଉଛି !'

ସେ ମୋତେ ଗଭୀର, ନିଷ୍ପାପ ଦୃଷ୍ଟିରେ କିଛି ସମୟ ଚାହିଁ ଦୃଢ଼ ସ୍ୱରରେ କହିଲେ - 'ଆଜିବି ଏକ ଦୁଃସହ ପ୍ରତିଜ୍ଞାର ଭାରରେ ମୋର ହୃଦୟ ପୀଡ଼ିତ । ସେ ପ୍ରତିଜ୍ଞା ପୂରଣ ନହେବା ପର୍ଯ୍ୟନ୍ତ ମୁଁ ଋଣମୁକ୍ତ ହୋଇ ପାରୁନାହିଁ ।'

ଠିକ୍ ଏଇ ସମୟରେ ପଶୁମାଂସ ବିକ୍ରେତା ଗଣ ସେଠାରେ ଉପସ୍ଥିତ ହେଲେ ଓ ଭୀମସେନଙ୍କ ରଥ ନିକଟରେ ଯୋଡ଼ ହସ୍ତରେ ନିବେଦନ କଲେ - 'ମହାଭାଗ ! ଆଜି ଉତ୍କୃଷ୍ଟ ମୃଗମାଂସ ଆପଣଙ୍କ ପାଇଁ ଆଣିଛୁ ।'

ମୁଁ ଜାଣିଥିଲି ପଞ୍ଚପାଣ୍ଡବଙ୍କ ଭିତରେ ଦ୍ୱିତୀୟ ପାଣ୍ଡବହିଁ ବିବିଧ ପକ୍ଷୀ ଓ ମୃଗ,

ଗଣ୍ଡାମାଂସ ଭୋଜନରେ ପରିତୃପ୍ତ ହୋଇଥା'ନ୍ତି । ଯୁଦ୍ଧ ଆରମ୍ଭ ଦିନରୁ ମୁଁ ଲକ୍ଷ୍ୟ କରି ଆସୁଛି ଏହି ମାଂସ ବିକ୍ରେତାଗଣ ଉତ୍ତମ ମାଂସ ଭୀମସେନଙ୍କ ପାଇଁ ଆଣନ୍ତି ଓ ସେଥିପାଇଁ ନ୍ୟାୟୋଚିତ ମୂଲ୍ୟ ଠାରୁ ତାଙ୍କୁ ଅଧିକ ମୂଲ୍ୟ ଦେଇ ସନ୍ତୁଷ୍ଟ ମଧ୍ୟ କରାଯାଏ । ହଠାତ୍ ସେମାନଙ୍କ ଭିତରୁ ଜଣେ କହିଲା - 'ମହାଭାଗ ! ଆଜି ଏଭଳି ସମ୍ବାଦ ଆଣିଛୁ ଯାହା ପାଇବା ମାତ୍ରେ ଆପଣଙ୍କର ବିଜୟର ଲଗ୍ନ ଉପସ୍ଥିତ ହେବ ।'

- 'କି ସମ୍ବାଦ ?' ମୋର ଉତ୍‌କଣ୍ଠାର ସୀମା ନଥିଲା । ମାଂସ ବିକ୍ରେତା ଉତ୍ତର ଦେଲା - 'କୁରୁପତି ଦୁର୍ଯ୍ୟୋଧନ ରଣକ୍ଷେତ୍ରରୁ ପଳାୟନ କରୁଛନ୍ତି ଦେଖି ଆସିଲୁ । ଏକାକୀ ସଂପୂର୍ଣ୍ଣ ଏକାକୀ ! ତାଙ୍କର ରଥ ନାହିଁ, ଗଜ ନାହିଁ, ଅଶ୍ୱ ନାହିଁ, ସୈନ୍ୟ ସାମନ୍ତ, ସଖା ସହୋଦର, ସ୍ତାବକ କେହି ନାହାନ୍ତି । ସ୍ୱର୍ଣ୍ଣ ବିଖଚିତ ଦୁଇଟି ସୁବିଶାଳ ଗଦା ଧାରଣ କରି ସେ ଦ୍ରୁତପଦରେ ରଣ ଭୂମିର ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ କ୍ଲାନ୍ତ ପଦରେ ଧାଉଁଥିବା ଦେଖି ଆମ୍ଭେମାନେ ବୃକ୍ଷ ଅନ୍ତରାଳରେ ଆତ୍ମଗୋପନ କଲୁ ତାଙ୍କର ଗତିବିଧି ଲକ୍ଷ୍ୟ କରିବା ପାଇଁ । ଧୃଷ୍ଟତା ମାର୍ଜନା କରନ୍ତୁ ମହାଭାଗ ! ବଡ଼ ଦୟନୀୟ ଓ କରୁଣ ଦିଶୁଥିଲେ କୁରୁପତି ।'

ଭୀମସେନ ପ୍ରଶ୍ନ କଲେ - 'ସେ ନରାଧମ କେଉଁ ଆଡ଼କୁ ଗଲା ?' ମାଂସ ବିକ୍ରେତା କଂପିତ ସ୍ୱରରେ କହିଲା - 'ପ୍ରଥମେ ରୁଧିର ନଦୀ ଆଡ଼କୁ । ମୁଁ ତତ୍‌କ୍ଷଣାତ୍ କହି ଉଠିଲି - 'ହଁ, ବ୍ରାହ୍ମ ମୁହୂର୍ତ୍ତରେ ସେ ସେହି ଦିଗକୁ ଯିବା ମୁଁ ମଧ୍ୟ ଲକ୍ଷ୍ୟ କରିଛି । କ୍ରମାଗତ ଦୀର୍ଘ ଅଷ୍ଟାଦଶ ଦିବସ ବ୍ୟାପି ଅବିରତ ସଂଗ୍ରାମ ଫଳରେ ରକ୍ତର ଏକ ସ୍ରୋତ ମୁଖରା ନଦୀ ପ୍ରବାହିତ ହେଉଥିବା ତୁମେ ସମସ୍ତେ ଲକ୍ଷ୍ୟ କରିଥିବ । ଅଜସ୍ର ସୈନ୍ୟକ୍ଷୟ ଓ ରକ୍ତକ୍ଷୟ ଫଳରେ ଏଭଳି ଏକ ଭୟଙ୍କରୀ ନଦୀ ପ୍ରବାହିତ ହେଉଛି ଏବଂ ଏଥିରେ ଅସଂଖ୍ୟ ଗଜ, ଅଶ୍ୱ, ଉଭୟ ପକ୍ଷର ଅଗଣିତ ବୀରଙ୍କ ଶବପିଣ୍ଡ ଅବିରାମ ଭାସି ଚାଲିଛି । ହୁଏତ ଦୁର୍ଯ୍ୟୋଧନ ଏହି ଅକଳ୍ପନୀୟ ରୁଧିର ନଦୀର ପ୍ରବାହକୁ ଦେଖି କିମ୍ବା ସେଥିରେ ଭାସି ଆସୁଥିବା ନିଜର ଆତ୍ମୀୟ ଗଣଙ୍କୁ ଦେଖି ଅନୁତାପର ଅଶ୍ରୁଜଳ ଢାଳିବା ପାଇଁ ଯାଇଥିବ !'

ମାଂସ ବିକ୍ରେତା କିନ୍ତୁ ଦୃଢ଼ସ୍ୱରରେ ପ୍ରତିବାଦ କରି କହିଲା - 'ନା ମହାଭାଗ ! ପ୍ରଥମେ କୁରୁପତି କୁରୁପିତାମହ ଭୀଷ୍ମଙ୍କ ଶରଶଯ୍ୟା ନିକଟକୁ ଯାଇ କେଉଁଠାରେ ଆତ୍ମଗୋପନ କରିବେ କିଏ ତାଙ୍କୁ ନିରାପଦ ଅଭୟ ଆଶ୍ରୟ ଦେବ ଏ ସଂପର୍କରେ ପରାମର୍ଶ ଚାହିଁଲେ; ମାତ୍ର କୁରୁପିତାମହ ଭୀଷ୍ମ ତାଙ୍କୁ କଟୂଭାଷାରେ ଭର୍ତ୍ସନା କଲେ । ତାପରେ ସେ ରୁଧିର ନଦୀ ତୀରକୁ ଉର୍ଦ୍ଧ୍ୱ ଶ୍ୱାସରେ ଧାଇଁ ଗଲେ । ସେ ବଡ଼ ଅସ୍ଥିର ଓ ଭୟାର୍ତ୍ତ ଥିଲେ । ସେ ଆଶଙ୍କା କରୁଥିଲେ ଯେ କୌଣସି ମୁହୂର୍ତ୍ତରେ ଦ୍ୱିତୀୟ ପାଣ୍ଡବ ତାଙ୍କୁ ଆକ୍ରମଣ କରିପାରନ୍ତି । ତେଣୁ ସେ ରୁଧିର ନଦୀ ପାର ହୋଇ ବ୍ୟାସ ସରୋବରରେ ଆତ୍ମଗୋପନ କରିବାକୁ ଯାଇଛନ୍ତି !'

ଏତିକି ଶୁଣିବା ମାତ୍ରେ ଦ୍ୱିତୀୟ ପାଣ୍ଡବ ଏହି ମାଂସ ବିକ୍ରେତାଙ୍କ ଉପରକୁ ନିଜଗଳାର ମୁକ୍ତାମାଳ ଓ କିଛି ସ୍ୱର୍ଣ୍ଣମୁଦ୍ରା ଫିଙ୍ଗିଦେଇ ପ୍ରଳୟ ଝଂଜା ଭଳି କ୍ଷିପ୍ର ଗତିରେ ରଥ ବାହି ନେବାକୁ ସାରଥୀ ବିଶୋକକୁ ନିର୍ଦ୍ଦେଶ ଦେଲେ ଓ ମୁହୂର୍ତ୍ତକରେ ଦୃଷ୍ଟି ପଥରୁ ଅଦୃଶ୍ୟ ବି ହୋଇଗଲେ, ପଛରେ କେବଳ ଧୂଳିର ପଟ୍ଟଳ । ସେ ଅଦୃଶ୍ୟ ହୋଇଯିବା ପରେ ମୁଁ ମାଂସ ବିକ୍ରେତାଙ୍କୁ ପ୍ରଶ୍ନ କଲି - 'ତାପରେ ?'

ସେମାନେ କହିଲେ - 'ରୁଧିର ପ୍ରବାହରେ ଭାସି ଆସୁଥିବା ପ୍ରତ୍ୟେକ ଶବକୁ ଆରୋହଣ କରୁଥା'ନ୍ତି ରୁଧିର ସ୍ରୋତକୁ ଅତିକ୍ରମ କରିବା ପାଇଁ । କିନ୍ତୁ ସେ ଶବପିଣ୍ଡ ସବୁ ରୁଧିର ସ୍ରୋତ ଗର୍ଭରେ ନିମଜ୍ଜିତ ହୋଇ ଯାଉଥାଏ । କର୍ଣ୍ଣ, ଦୁଃଶାସନ, ଶକୁନୀ, ଶଲ୍ୟ, ଶାଲ୍ୱ, ଭୂରିଶ୍ରବା ଭଳି ଅନେକ ବୀରଙ୍କ ଶବପିଣ୍ଡ କୁରୁପତିଙ୍କୁ କୌଣସି ପ୍ରକାର ସାହାଯ୍ୟ କରିପାରିଲା ନାହିଁ । ସ୍ୱ ଚକ୍ଷୁରେ ଦେଖିଛୁ ଶେଷରେ ମୁହଁ ମାଡ଼ି ଭାସି ଆସୁଥିବା ଗୋଟିଏ ଶବପୃଷ୍ଠ ଆରୋହଣ କରି ସେହି ଭୟଙ୍କର ସ୍ରୋତ ଅତିକ୍ରମ କରିବାକୁ ସେ ସମର୍ଥ ହେଲେ ; ମୃତ୍ୟୁ ପରେ ସୁଦ୍ଧା କିଏ ତାଙ୍କ ଜୀବନ ବଞ୍ଚାଇବାକୁ ଉଦ୍ୟମ କରିଛି ଜାଣିବା ପାଇଁ ସେହି ଶବକୁ ଲେଉଟାଇ ଦେଇ କୁରୁପତି ଦେଖିଲେ ଯେ ସେ ତାଙ୍କର ଏକମାତ୍ର ପୁତ୍ର ଲକ୍ଷ୍ମଣ କୁମାରର ଶବ ! କୁରୁପତି ପୁତ୍ରର ଶବକୁ କୋଳାଗ୍ରତ କରି ବ୍ୟାକୁଳ ଭାବେ ବିଳାପ କରୁଥା'ନ୍ତି ଓ ବ୍ୟାସ ସରୋବରରେ ଆତ୍ମଗୋପନ କରିବାର ବ୍ୟଗ୍ରତା ପ୍ରକାଶ କରୁଥା'ନ୍ତି । ଆମ୍ଭେମାନେ ଏହି ମର୍ମନ୍ତୁଦ ଦୃଶ୍ୟଟି ଦେଖିବା ପରେ ଦ୍ୱିତୀୟ ପାଣ୍ଡବଙ୍କୁ ଜଣାଇବାକୁ ଚାଲି ଆସିଲୁ ।'

ସେମାନେ ଚୁପ୍ ହୋଇଗଲେ । ଆମର କାହାରି ବାକ୍‌ସ୍ଫୁର୍ତ୍ତି ହେଲା ନାହିଁ । ମୁଁ ମନେ ମନେ ଚିନ୍ତା କରୁଥିଲି ଅନ୍ୟର ଅହିତ ସାଧିନୀ ଦୂରାକାଂକ୍ଷା ଏଇଭଳି ମର୍ମାନ୍ତିକ, ଏଇଭଳି ଶୋକାବହ, ଏଇଭଳି ପ୍ରଚଣ୍ଡ ତା'ର ପରିଣତି ! ଦୁର୍ଯ୍ୟୋଧନ ! ତୁମକୁ ମୁଁ ଶେଷ ଚେତାବନୀ ଦେଇଥିଲି ଯେତେବେଳେ ମୁଁ ଦୂତ ହୋଇ ଯାଇଥିଲି କୁରୁସଭାକୁ । ତୁମେ କ'ଣ ସେତେବେଳେ ସୁଦ୍ଧା ତୁମ ହୃଦୟର ପରିବର୍ତ୍ତନ କରିପାରି ନଥା'ନ୍ତ ? କାହିଁକି ? କାହିଁକି ଆଜି ଏକମାତ୍ର ସୁକୁମାର ପୁତ୍ରର ଶବପିଣ୍ଡ ଆରୋହଣ କରି ତମକୁ ଏଇ ରୁଧିର ନଦୀ ପାରି ହେବାକୁ ପଡ଼ିଲା ? ତୁମର ଦୂରକାଂକ୍ଷା ଏଭଳି ଦୂରନ୍ତ ଯେ ଶେଷକୁ କେବଳ ରୁଧିରର ନଦୀଟିଏ ଅବଶେଷ ସ୍ୱରୂପ ରହିଲା ? ମୋର ଏ ସୁନ୍ଦର ସବୁଜ ଶ୍ୟାମଳ ସୃଷ୍ଟି ଏଇଭଳି ଭାବେ ଲହୁଲୁହାଣ ହୋଇଗଲା ?

ମୁଁ ବୋଧହୁଏ ଅଧିକ ଭାବପ୍ରବଣ ହୋଇଯାଇଥିଲି । ମୋର ଚକ୍ଷୁ ମଧ୍ୟ ଅଶ୍ରୁସିକ୍ତ ହୋଇ ଉଠିଲା । ମୁଁ ହଠାତ୍ ସେଇ ପ୍ରସଂଗରୁ ଫେରି ଆସି କହିଲି - 'ଆସ ସଖା ! ଆସନ୍ତୁ ଧର୍ମରାଜ ! ଆସ ନକୁଳ, ସହଦେବ ! ଆମେ ସମସ୍ତେ ଦ୍ୱିତୀୟ ପାଣ୍ଡବଙ୍କୁ ଅନୁସରଣ କରିବା । କାରଣ ମୁଁ ଜାଣେ, ମୋର ଜ୍ୟେଷ୍ଠଭ୍ରାତାଙ୍କ ନିକଟରେ ଯେତେବେଳେ ଦୁର୍ଯ୍ୟୋଧନ ଓ ଦ୍ୱିତୀୟ

ପାଣ୍ଡବ ଗଦାବିଦ୍ୟା ଶିକ୍ଷା କରୁଥିଲେ, ଲକ୍ଷ୍ୟ କରିଛି ଭୀମସେନ ବଳଶାଳୀ ମାତ୍ର ଦୁର୍ଯ୍ୟୋଧନ କୃତୀ ଓ କୁଶଳୀ !'

ସେତେବେଳକୁ ବ୍ୟାସ ସରୋବର ତଟରେ ଭୀମସେନ ପହଞ୍ଚି ସାରିଥିଲେ ଏବଂ ଦୁର୍ଯ୍ୟୋଧନର ମହାକାଳ ସଦୃଶ ଭୟଙ୍କର ଗର୍ଜନରେ ତାକୁ ଯୁଦ୍ଧ ପାଇଁ ଆହ୍ୱାନ ଦେଉଥିଲେ । ଆଉ ଦୁର୍ଯ୍ୟୋଧନ ? ଦିନେ ବିନାଯୁଦ୍ଧରେ ସୂଚ୍ୟଗ୍ର ପରିମିତ ଭୂମି ନଦେବାକୁ ପଣ କରିଥିବା ବଳବୀର୍ଯ୍ୟଶାଳୀ ଦୁର୍ଯ୍ୟୋଧନ ଅସ୍ତ୍ର କୌଶଳରେ ଜଳସ୍ତମ୍ଭ ନିର୍ମାଣ କରି ବ୍ୟାସ ସରୋବର ଗର୍ଭରେ ଚୁପ୍‌ଚାପ୍ ଆତ୍ମଗୋପନ କରି ରହିଥିଲେ । କିନ୍ତୁ କେତେ ସମୟ ? ଗୋଟିଏ ଆହତ ସିଂହ ଆଉ ଏକ ସିଂହନାଦ ଶୁଣି କେତେ ସମୟ ବା କାପୁରୁଷ ଭଳି ଆତ୍ମଗୋପନ କରି ପାରିଥା'ନ୍ତା ?

ପରିଶେଷରେ ଦୁର୍ଯ୍ୟୋଧନ ତାଙ୍କର ସୁବର୍ଣ୍ଣ ବିମଣ୍ଡିତ ଗଦାସହ ପୁନରାୟ ରଣକ୍ଷେତ୍ରକୁ ଲମ୍ଫ ପ୍ରଦାନ କଲେ । ଅଶ୍ରୁତ ପୂର୍ବ କର୍ଣ୍ଣା-ର୍ଜୁନ ସମର ଭଳି ଭୀମ - ଦୁର୍ଯ୍ୟୋଧନ ଗଦାଯୁଦ୍ଧ ମଧ୍ୟ ଅଭୂତପୂର୍ବ । ଜ୍ୟେଷ୍ଠ ଭ୍ରାତା ବଳରାମ ପ୍ରଭାସ ତୀର୍ଥରୁ ଫେରି ଆସିଥିଲେ । ହସ୍ତିନାରେ ଯୁଦ୍ଧ ପ୍ରାୟ ଶେଷ ହୋଇଛି ଶୁଣି ବ୍ୟାସ ସରୋବର ତଟରେ ବି ପହଞ୍ଚିଲେ । ତାଙ୍କରି ଠାରୁ ଗଦାଯୁଦ୍ଧ ଶିକ୍ଷା କରିଥିବା ଦୁଇ ଶିଷ୍ୟଙ୍କର ଗଦାକୌଶଳ ଦେଖି ଚମତ୍କୃତ ହେଲେ । ମୁଁ ଦେଖିଲି ଏ ଯୁଦ୍ଧ ହୁଏତ ଅମୀମାଂସିତ ରହିଯିବ ! ଭୀମସେନ ରଣକୌଶଳ ପ୍ରଦର୍ଶନରେ ଆତ୍ମବିସ୍ମୃତ ହୋଇ ହୁଏତ ପ୍ରତିଜ୍ଞା କଥା ବିସ୍ମୃତ ହୋଇଗଲେଣି । ମୁଁ ଭୀମସେନଙ୍କୁ ଶୁଣେଇ ଅର୍ଜୁନଙ୍କୁ କହିଲି - 'ସଖା ! କୁରୁପତି ଦୁର୍ଯ୍ୟୋଧନ ଏକ ସଂସ୍କାରିତ ପରିବାରରେ ଜନ୍ମ ଦେଇ ସୁଦ୍ଧା ଏପରି କଦର୍ଯ୍ୟ ରୁଚି ସଂପନ୍ନ କାହିଁକି ? ଦ୍ରୁପଦ ନନ୍ଦିନୀଙ୍କୁ ସେଦିନ କୁରୁସଭାରେ ଏ ପ୍ରକାର ଅଶ୍ଳୀଳ ଇଂଗିତ କୁରୁପତି କିପରି କରିପାରିଲେ ? ପରିପୂର୍ଣ୍ଣ କୁରୁସଭାରେ ବାମ ଉରୁରୁ ବସ୍ତ୍ର ଅପସାରଣ କରି ତାଙ୍କୁ ଅଙ୍କଲକ୍ଷ୍ମୀ ହେବାର ଅଶ୍ଳୀଳ ଆମନ୍ତ୍ରଣ ଦେବା ପଛରେ ଦୁର୍ଯ୍ୟୋଧନଙ୍କର କଳୁଷିତ ମନର ପରିଚୟ ହିଁ ମିଳିଛି ।'

ଏତିକି ଶୁଣିବା ମାତ୍ରେ ଭୀମସେନ ଯେପରି ପ୍ରଳୟ ଅନଳ ସଦୃଶ କ୍ରୋଧରେ ଅଗ୍ନିବର୍ଣ୍ଣ ଧାରଣ କଲେ ଓ ଗଦାଯୁଦ୍ଧର ନିୟମ ବିରୁଦ୍ଧ ହେଲେ ସୁଦ୍ଧା ଦୁର୍ଯ୍ୟୋଧନର ନାଭିର ନିମାଂଶକୁ ଗଦାଘାତରେ ରକ୍ତ ଜର୍ଜର କରିଦେଲେ । ଭୂପତିତ ହେଲା ଦୁର୍ଯ୍ୟୋଧନ, ଖଣ୍ଡ ବିଖଣ୍ଡ ହେଲା ଅନର୍ଘ ମଣି ମୁକୁଟ, ବର୍ମ, ଅଜସ୍ର ରକ୍ତ ସ୍ରାବ ପ୍ରବଳ ବେଗରେ ପ୍ରବାହିତ ହୋଇ ରୁଧିର ନଦୀରେ ଏକାକାର ହେବାକୁ ସତେକି କ୍ଷରିତ ହେବାକୁ ଲାଗିଲା ।

ମୁମୂର୍ଷୁ, ଅସହାୟ, ରୁଧିରାକ୍ତ, କ୍ଷତ ବିକ୍ଷତ, ବିକଳାଙ୍ଗ ଦୁର୍ଯ୍ୟୋଧନର ପ୍ରାଣନାଶ

ନକରି ଭୀମସେନ ଗଦାଘାତ ପରେ ପଦାଘାତ କରି ଚାଲିଲେ ଓ ଦୁର୍ଯ୍ୟୋଧନ ବିଷର୍ଣ୍ଣ କରୁଣତାରେ ମୋତେ ଚାହିଁ ରହିଥାଏ ଏକ ଲୟରେ । ଚକ୍ଷୁକୋଣରୁ ଅଶ୍ରୁଜଳ ପ୍ରବାହିତ ହୋଇ ରୁଧିର ଧାର ସହ ମିଶି ଯାଉଥାଏ । ପ୍ରିୟ ଶିଷ୍ୟର ଏଭଳି ଦୁର୍ଦ୍ଦଶାରେ କ୍ରୋଧ ସମ୍ବରଣ କରିନପାରି ଭ୍ରାତା ବଳରାମ ଭୀମସେନଙ୍କୁ ଆକ୍ରମଣ କରିବାକୁ ଉଦ୍ୟତ ହେଲେ ଓ କହିଲେ - 'ଆରେ ମୂର୍ଖ ! ପତିତ, ଅସହାୟ, ମୁମୂର୍ଷୁକୁ କେହି ପଦାଘାତ କରେକି ? ମୋର ଶିଷ୍ୟ ହୋଇ ଗଦାଯୁଦ୍ଧର ସାଧାରଣ ନିୟମ ସୁଦ୍ଧା ପାଳନ କଲୁନାହିଁ ? ନାଭିର ନିମ୍ନାଂଶ - ଜାନୁଭାଗକୁ କେହି ଗଦାରେ ପ୍ରହାର କରେ ?'

ମୁଁ ଜ୍ୟେଷ୍ଠ ଭ୍ରାତାଙ୍କ ହାତ ଧରି ପକାଇ କହିଲି - 'ଜ୍ୟେଷ୍ଠଭ୍ରାତା ! ବହୁ ରଣ ନୀତି କୌରବଗଣ ଉଲ୍ଲଂଘନ କରି ସାରିଛନ୍ତି ଏଇ ଅଷ୍ଟାଦଶ ଦିବସ ଭିତରେ । ସହିବାର ବି ଗୋଟାଏ ସୀମା ଥାଏ । ଆମର ସୁଭଦ୍ରା ନନ୍ଦନ ଅଭିମନ୍ୟୁବି ନିହତ ହୋଇ ସାରିଛି । କିପରି ଜାଣିଛ ? ସେହି କୋମଳମତି ବାଳୁତ ନିରସ୍ତ୍ର ଥିବା ଅବସ୍ଥାରେ ସପ୍ତରଥୀ ମିଳିତ ହୋଇ ତାକୁ ହତ୍ୟା କରିଛନ୍ତି ବର୍ବରୋଚିତ ଭାବେ ।

ଏତିକି ଶୁଣିବାମାତ୍ରେ ଜ୍ୟେଷ୍ଠ ଭ୍ରାତା ଅଶ୍ରୁ ରୁଦ୍ଧ ସ୍ୱରରେ କହିଲେ - 'ଆମରି ଅଭିମନ୍ୟୁ ? ସୁଭଦ୍ରାର ସେହି ତେଜସ୍ୱୀ ପୁତ୍ର ? ଅଳ୍ପ ବୟସରେ ଯିଏ ସମସ୍ତ ଶସ୍ତ୍ର ଓ ଶାସ୍ତ୍ରରେ ପାରଙ୍ଗମ ହୋଇ ପାରିଥିଲା ? ତେବେ ସୁଭଦ୍ରା ? ଉତ୍ତରା ??'

ମୁଁ ତାଙ୍କର କୌଣସି ପ୍ରଶ୍ନର ଉତ୍ତର ନଦେଇ କହିଲି - 'ଭୀମସେନ କୁରୁସଭାରେ ଦ୍ରୌପଦୀ ଲାଂଛନ ସମୟରେ ସଂକଳ୍ପ ବଦ୍ଧ ହୋଇଥିଲେ, ସେତିକି ମାତ୍ର ସେ ପାଳନ କରିଛନ୍ତି । ଚାହିଁଥିଲେ ସେ ଦୁର୍ଯ୍ୟୋଧନର ଜୀବନ ମଧ୍ୟ ନେଇ ପାରିଥା'ନ୍ତେ । ଦୟାର୍ଦ୍ର ଚିତ୍ତରେ ତା'ବି ସେ କରିନାହାନ୍ତି । ପ୍ରତିଜ୍ଞା କରି ପାଳନ ନକଲେ ଭୀମସେନ ନର୍କଗାମୀ ହୋଇ ନଥା'ନ୍ତେ କି ?'

ସବୁଦିନେ ଯାହା ହୁଏ ତାହାହିଁ ହେଲା । ସବୁଦିନ ଜ୍ୟେଷ୍ଠଭ୍ରାତାଙ୍କ କ୍ରୋଧ ମୁଁ ହିଁ ଶାନ୍ତି କରିଥାଏ । ମୋର ଭୁବନଜୟୀ ମୃଦୁ ହାସ୍ୟ ଓ ଶାନ୍ତ ଅଭିବ୍ୟକ୍ତିରେ ସେ ଖୁବ୍ ଶୀଘ୍ର ପ୍ରଭାବିତ ହୋଇଯା'ନ୍ତି । ଅତୀତରେ ସୁଭଦ୍ରାହରଣ ସମୟରେ ସୁଭଦ୍ରାକୁହିଁ ରଥଚାଳନା କରିବାକୁ ମୁଁ ନିର୍ଦ୍ଦେଶ ଦେଇଥିଲି । ସୁଭଦ୍ରା ହରଣ ସଂବାଦ ପହଞ୍ଚିବା ପରେ ଅର୍ଜ୍ଜୁନଙ୍କ ଉପରେ ଜ୍ୟେଷ୍ଠଭ୍ରାତା କ୍ରୋଧାନ୍ୱିତ ହୋଇ ଯାଇଥିଲେ; ମାତ୍ର ମୁଁ କହିଥିଲି - 'ନିଜ ଭଉଣୀର ଦୋଷ ପ୍ରତି ଆଖି ବୁଜିଦେଇ ପରପୁଅ ପ୍ରତି ଏପରି ଆକ୍ରୋଶମୂଳକ ବ୍ୟବହାର ପ୍ରଦର୍ଶନ କରିବା ଅନ୍ୟାୟ ଜ୍ୟେଷ୍ଠ ଭ୍ରାତା ! ଦୂତ ମୁଖରୁ ଶୁଣ, ସୁଭଦ୍ରା ହିଁ ରଥଚାଳନା କରୁଥିଲା । ବିଚରା ଏକାକୀ ଅସହାୟ ଅର୍ଜ୍ଜୁନଙ୍କୁ ଆମର ଭଗିନୀ ସୁଭଦ୍ରାହିଁ ହରଣ କରି ନେଇଯାଇଛି !'

ଏ ପ୍ରକାର ଉକ୍ତି ଯେତେ କୌତୁକାବହ ହେଲେବି ସେଦିନ କିନ୍ତୁ ଜ୍ୟେଷ୍ଠଭ୍ରାତାଙ୍କ କ୍ରୋଧ ଉପଶମ ନିମିତ୍ତ ଯଥେଷ୍ଟ ଥିଲା । ହଁ, ଭୀମଙ୍କ ପ୍ରତିଜ୍ଞା କଥା ଶୁଣିବା ପରେ ଜ୍ୟେଷ୍ଠ ଭ୍ରାତା ନିଶ୍ଚିନ୍ତ ମନରେ ପୁନରାୟ ତୀର୍ଥଭ୍ରମଣ ଉଦ୍ଦେଶ୍ୟରେ ଚାଲିଗଲେ ।

କୃପାଚାର୍ଯ୍ୟ, କୃତବର୍ମା ଓ ଅଶ୍ୱତ୍ଥାମା - ଏହି ତିନିଜଣ ମାତ୍ର କୌରବ ପକ୍ଷରୁ ବଞ୍ଚି ରହିଥିଲେ । ଏ ସମସ୍ତ ଘଟଣାରେ ଅଭିଭୂତ ଭଳି ସେମାନେ ନୀରବରେ ଗୋଟିଏ ବଟ ବୃକ୍ଷତଳେ ବସି ରହିଥିଲେ । ସେହି ଶ୍ୱାସରୋଧକାରୀ ନୀରବ ପରିବେଶର ସ୍ତବ୍ଧତାକୁ ଭଂଗକରି କହିଲି - 'ଧର୍ମରାଜ ! ଯୁଦ୍ଧ ଶେଷ ହୋଇଛି । ଯୁଦ୍ଧର ଫଳାଫଳ ମଧ୍ୟ ନିର୍ଣ୍ଣିତ ହୋଇ ଯାଇଛି । ପଣ୍ଡୁସୁତଗଣ ବିଜୟ ଲାଭ କରିଛନ୍ତି ନ୍ୟାୟତଃ । ଧର୍ମରାଜ ! ଏଥର ହସ୍ତିନା ସାମ୍ରାଜ୍ୟ ଆପଣଙ୍କର ! ଆସନ୍ତୁ । ଆମ୍ଭେମାନେ ଏ ରୁଧିର କର୍ଦ୍ଦମାକ୍ତ ପରିବେଶରୁ ମୁକ୍ତ ହୋଇ ପୂତନୀରା ନଦୀ ସ୍ନାନ ପାଇଁ ଯିବା । ଆଜି ରାତିଟି ଅପେକ୍ଷା କଲାପରେ ଆସନ୍ତାକାଲି ହସ୍ତିନା ରାଜଭବନ ଯିବା ବିଜୟର ବାର୍ତ୍ତା ନେଇ । ଅନ୍ୟାୟ, ଅଧର୍ମର ପତନ ହୋଇଛି ଧର୍ମ ଓ ନ୍ୟାୟର ଜୟ ହୋଇଛି !'

ଏଇ କଥା କହି ମୁଁ ଚାଲି ଆସୁଥିଲି ଓ ମୋ ପଛେ ପଛେ ପଣ୍ଡୁସୁତଗଣ । ମୁମୂର୍ଷୁ ଦୁର୍ଯ୍ୟୋଧନ ସରୀସୃପ ନ୍ୟାୟରେ ସେହି ବଟବୃକ୍ଷର ଛାୟା ଆଡ଼କୁ ଅଗ୍ରସର ହେଉଥିଲା । ହଠାତ୍ କ୍ରୁଦ୍ଧ, ଆବେଗ କଂପିତ ସ୍ୱରରେ ଚିତ୍କାର କଲା - 'ବାସୁଦେବ !!!'

ମୁଁ ଲେଉଟି ଚାହିଁଲି । ଆହତ ସର୍ପ ସଦୃଶ ସେ ଗର୍ଜି ଉଠିଲା । - 'ବାସୁଦେବ ! କାହିଁକି ଆଉ ବୃଥା ଆସ୍ଫାଳନ କରୁଛ ? ଧର୍ମ ଓ ନ୍ୟାୟର ଜୟ ହୋଇଛି ? ପିତାମହ ଭୀଷ୍ମ ଆଜନ୍ମ ବ୍ରହ୍ମଚାରୀ । ଯୁଦ୍ଧ ଆରମ୍ଭରୁ ସେ ସର୍ତ୍ତ ରଖିଥିଲେ କୌଣସି କ୍ଳୀବ ବା ସ୍ତ୍ରୀ ଧ୍ୱଜାଧାରୀ ବ୍ୟକ୍ତି ସହ ସେ ଯୁଦ୍ଧରେ ପ୍ରବୃତ୍ତ ହେବେ ନାହିଁ । ତାଙ୍କ ସମ୍ମୁଖରେ କାହା ଇଙ୍ଗିତରେ କ୍ଳୀବ ଶିଖଣ୍ଡୀ ରହିଥିଲା ? ପିତାମହ ଯେଉଁଭଳି ପରିସ୍ଥିତିରେ ଯେଉଁଭଳି ପରିସ୍ଥିତିରେ ଅସ୍ତ୍ରତ୍ୟାଗ କଲେ, ଯେଉଁଭଳି ତାଙ୍କର ପତନ ହେଲା ତା' କ'ଣ ତୁମ ବିଚାରରେ ଧର୍ମ ସମ୍ମତ ? କାହା ପ୍ରରୋଚନାରେ ପାର୍ଥ ସେଦିନ ମୋର ରାଜ ପରିଚ୍ଛେଦ ଓ ରାଜମୁକୁଟ ମାଗିନେଇ ପିତାମହଙ୍କୁ ପ୍ରବଞ୍ଚନା କରି ପାଣ୍ଡବ ନାଶୀ ପଞ୍ଚବାଣ ହରଣ କରି ଆଣିଥିଲା ? ଏହାବି କ'ଣ ନ୍ୟାୟ ସମ୍ମତ ? କାହା ନିର୍ଦ୍ଦେଶରେ ଦ୍ରୁପଦ ନନ୍ଦିନୀ ସେଦିନ ରାତିରେ ସତ୍ୟସନ୍ଧ ଭୀଷ୍ମଙ୍କ ନିକଟକୁ ଆଶୀର୍ବାଦ ଭିକ୍ଷା ପାଇଁ ଯାଇଥିଲେ ? ଧର୍ମରାଜ ଯୁଧିଷ୍ଠିରଙ୍କୁ ମିଥ୍ୟା କଥନ ନିମିତ୍ତ କିଏ ପ୍ରରୋଚିତ କରିଥିଲା ବାସୁଦେବ ? ମୋର ପରମ ମିତ୍ର କର୍ଣ୍ଣ ନିରସ୍ତ୍ର ଅବସ୍ଥାରେ ରଥ ଚକ ଉଦ୍ଧାର କରୁଥିବା ସମୟରେ କିଏ ପାର୍ଥଙ୍କୁ ନିର୍ଦ୍ଦେଶ ଦେଇଥିଲା ତାଙ୍କ ଶିରଚ୍ଛେଦ ନିମିତ୍ତ ? ଏହାକି କ'ଣ ନ୍ୟାୟ ସମ୍ମତ ? ଆଜି ମଧ୍ୟ କିଏ ଭୀମକୁ ଉତ୍ସାହିତ କରୁଥିଲା ମୋର ଉରୁଭଂଗ ନିମିତ୍ତ ? ସର୍ବୋପରି

ପାର୍ଥ ପ୍ରଥମ ଦିନ ଯୁଦ୍ଧ ପ୍ରତି ବୀତସ୍ପୃହ ହୋଇ ପଡ଼ିଥିବା ବେଳେ କିଏ ତାକୁ ପ୍ରୋତ୍ସାହନ ଦେଇଥିଲା ? ବାରମ୍ବାର ରଣନୀତି କିଏ ଉଲ୍ଲଂଘନ କରିଛି ବାସୁଦେବ ? ତୁମେ ନା କୌରବ ଗଣ ? ଅଧର୍ମୋଚିତ, ଅନ୍ୟାୟୋଚିତ ଭାବେ ଯୁଦ୍ଧ ଜୟକରି ତୁମେ କେଉଁ ଧର୍ମ ପ୍ରତିଷ୍ଠା କଲ ବାସୁଦେବ ? ଏ ଧର୍ମର ଆୟୁଷ୍କାଳ କେତେ ? ମୁଁ ଭଗ୍ନଜାନୁ ଦୁର୍ଯ୍ୟୋଧନ ସ୍ପଷ୍ଟ ଦେଖିପାରୁଛି ତୁମର ଏଇ ପ୍ରତିଷ୍ଠିତ ଧର୍ମ ଚୋରା ବାଲି ଉପରେ ଠିଆ ହୋଇଛି ! କେତେ କାଳ ? କେତେକାଳ ପାପର ବିନାଶ ପାଇଁ ସଂଗ୍ରାମ କରିବ ବାସୁଦେବ ? ପାପର ବୃକ୍ଷ ଯେ ବହୁ ଶାଖା ! ଗୋଟିଏ ପାପୀର ମୃତ୍ୟୁ ହେଲେ ଆଉ ଏକ ପାପୀ ଜନ୍ମନିଏ । ପାପ ଏକ ସଂକ୍ରାମକ ବ୍ୟାଧିଭଳି ପରିବ୍ୟାପ୍ତ ହୋଇଯାଏ । ମାତ୍ର ଗୋଟିଏ ମହାତ୍ମାର ମୃତ୍ୟୁ ହେଲେ ଯୁଗ ଯୁଗ ପର୍ଯ୍ୟନ୍ତ ତାହା ଅପୂରଣୀୟ ଶୂନ୍ୟସ୍ଥାନ ହୋଇ ରହେ । ମୋର ଆହୁରି ଏକ ପ୍ରଶ୍ନର ଉତ୍ତର ଦେଇଯାଅ ବାସୁଦେବ ! କେତେବେଶୀ ପାପ ମୁଁ କରିଥିଲି ଯେ ପ୍ରାୟଶ୍ଚିତ ସ୍ୱରୂପ ମୋର ଏକମାତ୍ର ପୁତ୍ରର ଶବପିଣ୍ଡକୁ ଆରୋହଣ କରି ମୋତେ ରକ୍ତର ନଦୀ ପାରି ହେବାକୁ ପଡ଼ିଲା ? ବେଶ୍ ! ମୁଁ ତ କ୍ଷତ୍ରିୟୋଚିତ  ବୀରଗତି ପ୍ରାପ୍ତ ହୋଇଛି । ତୁମର ପ୍ରିୟ ବାନ୍ଧବ ପଣ୍ଡୁନନ୍ଦନଗଣ ଆତ୍ମୀୟ, ପରିଜନ ବିୟୋଗରେ ଶୋକ ସନ୍ତପ୍ତ ହୋଇ ବୀର କ୍ଷତ୍ରିୟ ବିହୀନ ସାମ୍ରାଜ୍ୟ ଭୋଗ କରନ୍ତୁ, ଅନୁତପ୍ତ ହୁଅନ୍ତୁ - ଏହାହିଁ ସେମାନଙ୍କ ଲଲାଟ ଲିପି !'

ସେ ଆଉ କିଛି କହି ପାରିଲେ ନାହିଁ । ପ୍ରାଣାନ୍ତକ ଯନ୍ତ୍ରଣାରେ କାତର ହୋଇ ଚୁପ୍ ରହିଲେ । ଅଜସ୍ର ରକ୍ତସ୍ରାବ ତାଙ୍କୁ କ୍ରମଶଃ ଦୁର୍ବଳ, ଜୀର୍ଣ୍ଣ କରି ଦେଉଥିଲା । ମୁଁ କୌଣସି ପ୍ରତ୍ୟୁତ୍ତର କଲିନାହିଁ । ପାପାତ୍ମା ଦୁର୍ଯ୍ୟୋଧନର କଥାଗୁଡ଼ିକ ଅନେକାଂଶରେ ସତ୍ୟ ହେଲେବି ଶୁଣିବା ପାଇଁ ମୋର ରୁଚି ନଥିଲା କି ପ୍ରବୃତ୍ତି ବି ନଥିଲା । କପିଧ୍ୱଜ ରଥର ଆବଶ୍ୟକତା ଶେଷ ହୋଇଯାଇଛି । ଦୀର୍ଘ ଅଷ୍ଟାଦଶ ଦିବସ ବ୍ୟାପି ବହୁ ଦିବ୍ୟାସ୍ତ୍ରର ସଂଘର୍ଷ ସେ ସହି ଆସିଛି, ବହୁ ଶସ୍ତ୍ରରେ ରହିଥିବା ବିଷ୍ଫୋରକ ଦ୍ରବ୍ୟର ଦାହିକା ଶକ୍ତି ବି ସେଥିରେ ସଞ୍ଚିତ ହୋଇ ରହିଛି । ଏଇ ପରିପ୍ରେକ୍ଷୀରେ, ମୁହୂର୍ତ୍ତେ ସମୟ ନଷ୍ଟ ନକରିବାକୁ ଇଚ୍ଛା ନକରି ମୁଁ ଦ୍ରୁତ ପଦରେ ସଖା ଅର୍ଜୁନଙ୍କ ସହ ରଥାରୁଢ଼ ହେଲି । ପାଣ୍ଡବ ଶିବିର ସମ୍ମୁଖରେ ପହଞ୍ଚିବାକୁ ଆଉ କିଛି ବାଟ ବାକୀ ଥାଏ ହଠାତ୍ ମୁଁ ଅର୍ଜୁନଙ୍କୁ କହିଲି - 'ସଖା ! ରଥରୁ ଶୀଘ୍ର ଅବତରଣ କର ।' ସେ ଟିକିଏ ବିସ୍ମିତ ହେଲେ । କାରଣ ପ୍ରଥମେ ସାରଥୀ ଅବତରଣ କଲାପରେ ହିଁ ରଥୀ ଅବତରଣ କରିଥାଏ । ତଥାପି ମୋ ଆଦେଶ ସେ ପାଳନ କଲେ । ମୁହୂର୍ତ୍ତକରେ କପିଶ୍ରେଷ୍ଠ ଭୟଙ୍କର ଗର୍ଜ୍ଜନ କରି ଅନ୍ତର୍ହିତ ହୋଇଗଲା । ମୁଁ ରଥରୁ ଅବତରଣ କରିବାମାତ୍ରେ ଭୟଙ୍କର ଶବ୍ଦରେ ରଥଟିରେ ବିଷ୍ଫୋରଣ ଘଟି ପ୍ରଜ୍ଜ୍ୱଳିତ  ହୋଇ ଭସ୍ମସାତ୍ ହୋଇଗଲା । କେବଳ ଶ୍ୱେତ ବାହନଙ୍କର ଶ୍ୱେତ ଅଶ୍ୱ ଚତୁଷ୍ଟୟଙ୍କୁ ମୁଁ ରଜ୍ଜୁମୁକ୍ତ କରି ଦେଇଥିଲି । ସେମାନେ କ୍ଷିପ୍ରଗତିରେ ପାଣ୍ଡବ ଶିବିର

ସମୀପସ୍ଥ ସ୍କନ୍ଧାବାର ଆଡ଼କୁ ଧାଇଁଗଲେ । ଅର୍ଜ୍ଜୁନ ମୋତେ ବିହ୍ୱଳ ଦୃଷ୍ଟିରେ ଚାହିଁ ରହି କହିଲେ - 'ଏକାଦଶ ଅକ୍ଷୌହିଣୀ ନାରାୟଣୀ ସେନା ପରିବର୍ତ୍ତେ ନିରସ୍ତ୍ର କେଶବଙ୍କୁ ପକ୍ଷଭୁକ୍ତ କରି ପ୍ରକୃତରେ ସେଦିନ ମୁଁ ବୁଦ୍ଧିମତ୍ତାର ପରିଚୟ ଦେଇଥିଲି ।'

ଆକାଶ ବ୍ୟାପି ଅନ୍ଧକାର ଘୋଟି ଆସୁଥାଏ । ଏହି ବିଷ୍ଫୋରଣରେ ସମସ୍ତେ ସ୍ତବ୍ଧ ହୋଇଯାଇଥା'ନ୍ତି । ପଣ୍ଡୁ ନନ୍ଦନଗଣଙ୍କୁ ମୁଁ କହିଲି - 'ଆଜି ଆଉ ଏଠାରେ ରାତ୍ରି ଯାପନର ଆବଶ୍ୟକତା ନାହିଁ । ଏଠାରେ ଧୃଷ୍ଟଦ୍ୟୁମ୍ନ, ପାଞ୍ଚାଳ ଓ ବୃଷ୍ଣିବୀରଗଣ ତଥା ଦ୍ରୌପଦୀ ନନ୍ଦନଗଣ ଥା'ନ୍ତୁ । ମୁଁ ପଣ୍ଡୁସୁତଙ୍କ ସହ ଓଘବତୀ ନଦୀତୀରକୁ ଯାଉଛି । ଆମେ ସମସ୍ତେ ରଣକ୍ଲାନ୍ତ । ଓଘବତୀର ସୁଶୀତଳ ଜଳରେ ସ୍ନାନ ସାରି ଆଜି ସେଇଠାରେ ହିଁ ବିଶ୍ରାମ କରିବା ।'

ପାଞ୍ଚାଳ ନନ୍ଦିନୀଙ୍କୁ କହିଲି - 'ଆଗାମୀ କାଲି ପ୍ରଭାତରେ ତୁମ ପତିଗଣ ଫେରିଆସିବେ ।'

ଭଗ୍ନଜାନୁ ଦୁର୍ଯ୍ୟୋଧନର ପରାଜୟ ସଂବାଦ ଶୁଣିବା ପରଠାରୁ ପାଞ୍ଚାଳ ନନ୍ଦିନୀଙ୍କ ହୃଦୟରେ ଅହରହ ପ୍ରଜ୍ୱଳିତ ହେଉଥିବା ପ୍ରତିଶୋଧର ତୁଷାଗ୍ନି ନିର୍ବାପିତ ହୋଇ ସେ ଅତ୍ୟନ୍ତ ଶାନ୍ତ ଦିଶୁଥା'ନ୍ତି । ସେ ତେଣୁ କୌଣସି ପ୍ରତିବାଦ କଲେ ନାହିଁ ।

ଓଘବତୀ ନଦୀ ତୀରରେ ବସି ମୁଁ ଦୁର୍ଯ୍ୟୋଧନର କଥା ସବୁ ଅନୁଶୀଳନ କରୁଥିଲି । ଇଛାଥିଲା ତାକୁ କହିବାପାଇଁ ଯେ ମୋତେ ଦୋଷାରୋପ ନକରି ବରଂ ଆତ୍ମ ସମୀକ୍ଷା କରୁ । ମାତ୍ର କିଛି କହିଲି ନାହିଁ । ତା'ର କଥା ଭିତରେ ସତ୍ୟତାବି ଥିଲା । ତଥାପି ବର୍ତ୍ତମାନ ସମୟରେ ପ୍ରତ୍ୟେକଙ୍କର ଆତ୍ମାନୁଶୀଳନ, ଆତ୍ମସମୀକ୍ଷା ଆବଶ୍ୟକ । ପାଣ୍ଡବ ପଞ୍ଚଭ୍ରାତ ନିଶ୍ଚିନ୍ତ ନିଦ୍ରାରେ ଶୟନ କରିଥିଲେ । ମୁଁ ହିଁ କେବଳ ଅତନ୍ଦ୍ର ରହି ପ୍ରହର ପରେ ପ୍ରହର ଅତିବାହିତ କରୁଥିଲି । ପରେ ପାଣ୍ଡବଙ୍କ ସେବକ ମାନେ ପରସ୍ପର ଭିତରେ କୁହାକୁହି ହେବାର ଶୁଣିଛି ଯେ, ମୁଁ କୁଆଡ଼େ ପାଣ୍ଡବଙ୍କ ଶିଶୁପୁତ୍ରଙ୍କୁ ପଛକେ ବଳି ଦେଇ ଦେଲି ମାତ୍ର ମୃତ୍ୟୁର କରାଳ ଛାୟାରୁ ବଞ୍ଚେଇବା ପାଇଁ ପାଣ୍ଡବ ପଞ୍ଚଭ୍ରାତାଙ୍କୁ ସେଦିନ ଓଘୋବତୀ ନଦୀତୀରକୁ ନେଇଯାଇ ଅତନ୍ଦ୍ର ଭାବେ ସେମାନଙ୍କୁ ପହରା ଦେଉଥିଲି ! କେଜାଣି ! ହୋଇଥିବ ! ଦୁର୍ଯ୍ୟୋଧନର ପ୍ରଶ୍ନହିଁ ମୋ ପାଇଁ ଉତ୍ପୀଡ଼କ ହୋଇ ରହିଥିଲା । ପ୍ରକୃତରେ ତେବେ ପାପର ବୃକ୍ଷ ବହୁଶାଖା ? ଗୋଟିଏ ଶାଖା ଛେଦନ କଲେ ଆଉ ଏକ ଶାଖା ଜନ୍ମ ନିଏ ? ପାପର ମୂଳ ତେବେ ଏତେ ଗହୀରକୁ ପୃଥିବୀର ଅନ୍ତଃସ୍ଥଳକୁ ସୁଦ୍ଧା ସ୍ପର୍ଶ କରିଛି ? ସଂତରେ ତା'ର ମୂଳୋତ୍ପାଟନ ଅସମ୍ଭବ ? ମୁଁ କ'ଣ ତେବେ ବାରମ୍ବାର ଧରାବତରଣ କରୁଥିବି ? ମୋହ ମାୟା ଶୋକ ତାପରେ ଭଂଗୁର ମଣିଷ ଭଳି ସନ୍ତପ୍ତ ହେଉଥିବି ? ସୁନ୍ଦରୀ ରମଣୀ ପାଇଁ ରୂପ ମୁଗ୍ଧ ପୁରୁଷର ଲୁବ୍ଧତା ଭଳି ମୋର ଏ କମନୀୟ

ପୃଥିବୀକୁ ବାରମ୍ବାର ପାପର କୀଟ ଦଂଶନ କରୁଥିବ ? ଏତେ ରକ୍ତର ତର୍ପଣ କରାହେଲା, ତଥାପି ପାପ ଶେଷ ହେଲା ନାହିଁ ? ତେବେ ଉପାୟ ??

ଏଇଭଳି କେତେ କ'ଣ ଚିନ୍ତା କରୁକରୁ ହଠାତ୍ ଦେଖିଲି ପାଣ୍ଡବ ଶିବିରରୁ ଯେମିତି ଆର୍ତ୍ତ ଚିତ୍କାର, କୋଳାହଳ, ନାରୀ କଣ୍ଠର ବିଳାପ ଏଇଭଳି ସବୁ ଶବ୍ଦ ମୋର ଚେତନାରେ ଏକ ଭୟଙ୍କର ଆଲୋଡ଼ନ ସୃଷ୍ଟିକଲା । ଲକ୍ଷ୍ୟ କଲି ପାଣ୍ଡବ ଶିବିରରେ ମଶାଲ ଜଳି ଉଠିଲା । କେହି ଜଣେ ଅଶ୍ୱାରୋହୀ ନିବିଡ଼ ଅନ୍ଧକାର ଭିତରେ ପାଞ୍ଚଗୋଟି ଛିନ୍ନ ମସ୍ତକ ସହ କ୍ଷିପ୍ର ଗତିରେ ଅଶ୍ୱ ଛୁଟାଇ ଦେଇଥିଲା । କିଏ ? କିଏ ଏହି ନରାଧମ ? ଯିଏ ନିଦ୍ରିତକୁ ସୁଦ୍ଧା ହତ୍ୟା କରିବାର ପାପ ଅର୍ଜନ କରିପାରେ ? ଅଶ୍ୱାରୋହୀର ପୃଷ୍ଠଭାଗରୁ ଯେତିକି ଲକ୍ଷ୍ୟ କଲି ସ୍କନ୍ଧରେ ଶୁଭ୍ର ଉପବୀତ, ହଁ ଅଂଗରେ ବର୍ମ କବଚ କିଛି ହେଲେ ନଥିଲା, ତେବେ ତ ଇଏ ଆଚାର୍ଯ୍ୟ ଦ୍ରୋଣଙ୍କ ପୁତ୍ର ଅଶ୍ୱତ୍ଥାମା ? ତାଙ୍କ ପଶ୍ଚାତରେ ଆଚାର୍ଯ୍ୟ କୃପ ଓ କୃତବର୍ମା ନା ?

ନିଦ୍ରାଭୂତ ପାଣ୍ଡବମାନଙ୍କୁ ଉଠାଇ ଗରୁଡ଼ଧ୍ୱଜ ରଥରେ ଖୁବ୍ ଶୀଘ୍ର ପଞ୍ଚଭ୍ରାତାଙ୍କ ସହ ପାଣ୍ଡବ ଶିବିରରେ ପହଞ୍ଚିଲି । ହଁ, ତାହାହିଁ ସତ୍ୟ । କେବଳ ରଣ ନୀତି ନୁହେଁ - ମାନବୀୟ ନୀତିର ଉଲ୍ଲଂଘନ ! ପଶୁଭଳି ମଣିଷ କେବେ ନୈଶ୍ୟ ଯୁଦ୍ଧରେ ପ୍ରବୃତ୍ତ ହୁଏ ? ନିଦ୍ରିତକୁ କେହି ଆକ୍ରମଣ କରେ ? ଏଭଳି ଜଘନ୍ୟ କାର୍ଯ୍ୟ ପାଇଁ କିଏ ତୁମକୁ ପ୍ରରୋଚନା ଦେଲା ଅଶ୍ୱତ୍ଥାମା ? ବ୍ରାହ୍ମଣର ସନ୍ତାନ ହୋଇ, ଗୁରୁପୁତ୍ର ହୋଇ ତୁମେ ମଧ୍ୟ କୁରୁ ପାଣ୍ଡବଙ୍କ ଗୃହବିବାଦରେ ପ୍ରତ୍ୟକ୍ଷ ଓ ସକ୍ରିୟ ଅଂଶ ଗ୍ରହଣ କଲ ? ଆଚାର୍ଯ୍ୟ ଦ୍ରୋଣଙ୍କର ଅର୍ଜୁନଙ୍କ ପ୍ରତି ମାତ୍ରାତିରିକ୍ତ ସ୍ନେହ ପ୍ରବଣତା ତୁମକୁ ଏତେବେଶୀ ବିଦ୍ୱେଷ ପରାୟଣ କରିଥିଲା ଯେ ତୁମେ ପାପର ଅତଳ ଗହ୍ୱରକୁ ଅବତରଣ କରିବାକୁ ସୁଦ୍ଧା କୁଣ୍ଠାବୋଧ କଲ ନାହିଁ ?

ଆମ୍ଭେମାନେ ପାଣ୍ଡବ ଶିବିରରେ ପହଞ୍ଚି ଦେଖିଲୁ ସବୁକିଛି ଧ୍ୱଂସ ହୋଇଯାଇଛି । ଅବଶିଷ୍ଟ ସମସ୍ତ ପାଞ୍ଚାଳ, ବୃଷ୍ଣି, ମତ୍ସ୍ୟଦେଶୀୟ ବୀରଗଣଙ୍କ ସହ ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ ଓ ଦ୍ରୌପଦୀଙ୍କ ପଞ୍ଚ ବାଳୁତ ପୁତ୍ର ନିହତ ହୋଇଛନ୍ତି । ରୋରୁଦ୍ୟମାନା ଦ୍ରୌପଦୀଙ୍କୁ ସାନ୍ତ୍ୱନା ଦେବାପାଇଁ ମଧ୍ୟ ସାହସ ହେଲା ନାହିଁ । ମୁଁ ଅଶ୍ୱତ୍ଥାମାର ପଶ୍ଚାଦ୍‌ଧାବନ କରିବାପାଇଁ ତତ୍ପର ହୋଇ ଉଠିଲି । ଭୀମସେନ ତ ତତ୍‌କ୍ଷଣାତ୍ ତାଙ୍କ ସୁବିଶାଳ ଗଜ ପୃଷ୍ଠରେ ତା'ର ପଶ୍ଚାଦ୍ ଧାବନ କଲେ । ରାତି ପାହି ପାହି ଆସୁଥାଏ । ମୁଁ କେବଳ ଭାବୁଥାଏ ଅଶ୍ୱତ୍ଥାମାକୁ ଦ୍ରୋଣାଚାର୍ଯ୍ୟ ବ୍ରହ୍ମଶିର ଅସ୍ତ୍ରଦାନ କରି ଯାଇଛନ୍ତି । ପାଣ୍ଡବଙ୍କ ବନବାସ କାଳରେ ସେହି ବ୍ରହ୍ମ ଶିର ଅସ୍ତ୍ର ସହ ସେ ଦ୍ୱାରକା ଯାଇଥିଲା ଓ ଏହି ଦିବ୍ୟାସ୍ତ୍ର ପରିବର୍ତ୍ତେ ମୋର ସୁଦର୍ଶନ ଚକ୍ର ଚାହିଁଥିଲା । ମୁଁ ମୋର ସୁଦର୍ଶନଚକ୍ର, ନନ୍ଦକଖଡ଼୍‌ଗ, ସାରଙ୍ଗ ଧନୁ, କାମୋଦକୀ ଗଦା ସମସ୍ତ ତା' ସମ୍ମୁଖରେ ରଖି କହିଥିଲି - 'ମୋର ବ୍ରହ୍ମଶିର ଅସ୍ତ୍ରରେ ଆବଶ୍ୟକତା ନାହିଁ । ତୁମେ ଯେଉଁଟି ଇଚ୍ଛା ସେଇଟି ଉଠେଇ ନେଇଯାଅ ।'

ସେ କୌଣସି ଗୋଟିଏ ଅସ୍ତ୍ର ଉତ୍ତୋଳନ କରି ନପାରି ଫେରି ଯାଇଥିଲେ । ସେହି ବ୍ରହ୍ମଶିର ଅସ୍ତ୍ର ଏବେବି ତାଙ୍କ ନିକଟରେ ଅଛି । ଯଦିଓ ଆଚାର୍ଯ୍ୟ ତାଙ୍କୁ ନିଷେଧ କରିଥିଲେ ମାନବ ଉପରେ ପ୍ରହାର କରିବାପାଇଁ, ତଥାପି ଯିଏ ନିଦ୍ରିତକୁ ନିଶା କାଳରେ ଅସ୍ତ୍ର ପ୍ରହାର କରେ, ସେ ଯେ ଅର୍ଜ୍ଜୁନ ବା ଅର୍ଜ୍ଜୁନର ବଂଶ ନାଶ କରିବାକୁ ଉଦ୍ୟମ ନକରିବ ସେକଥାର କେଉଁ ସ୍ଥିରତା ଅଛି ? ଅଗ୍ରବର୍ତ୍ତୀ ଭୀମସେନଙ୍କୁ ମଧ୍ୟ ସେ ଦିବ୍ୟାସ୍ତ୍ର ପ୍ରହାର କରିପାରେ । ଅଥଚ ଭୀମସେନ ଦିବ୍ୟାସ୍ତ୍ରର ପ୍ରତିରୋଧ ସୁଦ୍ଧା ଜାଣନ୍ତି ନାହିଁ !

ପ୍ରକୃତରେ ଆମ୍ଭେମାନେ ଅଶ୍ୱତ୍ଥାମାଙ୍କୁ ଖୋଜି ଖୋଜି ଗଂଗାତୀରରେ ପହଞ୍ଚି ଦେଖିଲୁ ଅଶ୍ୱତ୍ଥାମା ଘୃତାକ୍ତ ଅଂଗରେ ଧୂଳି ଲେପନ କରି କୁଶ କୌପୀନ ଧାରଣ କରି ବ୍ରହ୍ମଶିର ଅସ୍ତ୍ର ପ୍ରୟୋଗର ଅୟୋଜନ କରୁଛନ୍ତି । ପୁନର୍ବାର ଯୁଦ୍ଧ ! ପୁନର୍ବାର ଦିବ୍ୟାସ୍ତ୍ରର ସଂଘର୍ଷ !! ଅର୍ଜ୍ଜୁନ ଦିବ୍ୟାସ୍ତ୍ରକୁ ପ୍ରତିରୋଧ କରିଥିଲେ । ପରାଜିତ ଅପମାନିତ ଅଶ୍ୱତ୍ଥାମା ମସ୍ତକର ମଣିଟି ପାଣ୍ଡବଙ୍କ ହସ୍ତରେ ଅର୍ପଣ କରିଥିଲେ । କୁଶ ଅଭିମନ୍ତ୍ରିତ ବ୍ରହ୍ମଶିର ଅସ୍ତ୍ରଟି ଅଶ୍ୱତ୍ଥାମା ପ୍ରୟୋଗ କରିସାରିଥିଲେ, ପ୍ରତ୍ୟାହାରର କୌଶଳ ଜାଣିନଥିଲେ । ତାହା ପାଣ୍ଡବଙ୍କୁ ବିନାଶ କଲାନାହିଁ ସତ ମାତ୍ର କ୍ରୂରକର୍ମା ଅଶ୍ୱତ୍ଥାମାର ଅଭିମନ୍ତ୍ରିତ ଶରଟି ଉତ୍ତରାଙ୍କ ଗର୍ଭସ୍ଥ ଭ୍ରୂଣ ଉପରେହିଁ ନିକ୍ଷିପ୍ତ ହେଲା ।

ହେ ପରମାତ୍ମା ! ଏହା କିଭଳି ବିଦ୍ୱେଷ ଯାହା ଅଜାତ, ଅଶ୍ରୁତ, ଅଦୃଶ୍ୟ କୋମଳ ଭ୍ରୂଣକୁ ସୁଦ୍ଧା ବାଦ୍ ଦିଏ ନାହିଁ ?

ବେଶ୍ ! ମୁଁ ମଧ୍ୟ ସଖା ଅର୍ଜ୍ଜୁନଙ୍କ ପୌତ୍ର, ମୋ ଅଭିମନ୍ୟୁର ପୁତ୍ରଟିକୁ ଜୀବନଦାନ କରିବାକୁ ସଂକଳ୍ପ ବଦ୍ଧ ହେଲି ।

ଆମେ ଫେରିବା ବାଟରେ ଦେଖିଲୁ ଏଇ ସେଦିନ ପର୍ଯ୍ୟନ୍ତ ଯାହା ସମରଭୂମି ଥିଲା ଆଜି ତାହା ଶ୍ମଶାନଭୂମି । ସେଦିନ ରଥର ଘର୍ଘର ନାଦ, ଅଶ୍ୱର ହ୍ରେଷା, ଗଜର ବୃଂହଣ, ତୂରୀ, ଭେରୀ, ଟମକ, ମର୍ଦ୍ଦଳ, ଶଙ୍ଖନାଦରେ ଗଦ୍ ଗଦ୍ କଂପୁଥିଲା ଏ ସ୍ଥାନ । ଆଜି ଚତୁର୍ଦ୍ଦିଗରେ ସ୍ତବ୍ଧତା, ଛିନ୍ନବାହୁ, ପଳିତ ମାଂସ, ରୁଧିରକର୍ଦ୍ଦମ, ମେଦ, ରକ୍ତଲିପ୍ତ ଅସ୍ଥି ପଞ୍ଜର ର ସ୍ତୁପ । ଓଃ ! ମୋ ଭଳି ଉଦାସୀନ ମଧ୍ୟ ସେ ଦିଗକୁ ଚାହିଁ ପାରିଲା ନାହିଁ ।

ପାଣ୍ଡବ ଶିବିରରେ ପହଞ୍ଚିବା ବେଳକୁ ଉପପ୍ଲବ୍ୟ ନଗରୀରୁ ପିଉସୀ ପୃଥା ପହଞ୍ଚିଥିଲେ । ପଞ୍ଚଭ୍ରାତଙ୍କୁ ଦେଖିବାମାତ୍ରେ ସେ ରଥ ପର୍ଯ୍ୟନ୍ତ ଆସି ଜଣ ଜଣ କରି ସମସ୍ତଙ୍କୁ ପରମ ସ୍ନେହରେ ଆଉଁଷି ପକାଇଲେ । କରୁଣ ନୟନ ଦୁଇଟି ଅଶ୍ରୁଜଳରେ ଛଳ ଛଳ ହେଉଥାଏ । ସ୍ଫୁରିତ ଅଧରରେ ବାକ୍‌ସ୍ଫୁର୍ତ୍ତି ହେଉନଥାଏ । ଏ ମହାସମରରେ କାହାର

କେତେକ'ଣ ହଜି ଯାଇଛି, ତାଙ୍କର ବି ଅମୂଲ୍ୟ ରତ୍ନଟିଏ ହଜି ଯାଇଛି ! ତଥାପି ତାଙ୍କର ପଞ୍ଚପୁତ୍ର ଯେ ଜୀବିତ ଅଛନ୍ତି ଏ ପ୍ରାପ୍ତି ତାଙ୍କ ପାଇଁ ବହୁତ ବେଶୀ !

ଉତ୍ତରା ଅସୁସ୍ଥ ହୋଇ ପଡ଼ିଥିଲେ । କୁନ୍ତୀ, ଦ୍ରୌପଦୀ, ସୁଭଦ୍ରା ଏମାନେ ପ୍ରତ୍ୟେକ ସଦ୍ୟ ପୁତ୍ର ଶୋକାତୁରା । ପ୍ରତ୍ୟେକଙ୍କର ଆଶାଭରସା ଉତ୍ତରାଙ୍କ ଗର୍ଭରେ ବଢୁଥିବା ଭ୍ରୂଣଟି । ଏମାନେ ପ୍ରତ୍ୟେକ ଉତ୍ତରାଙ୍କ ସୁଶ୍ରୁଷାରେ ତତ୍ପର ଥିଲେ । ରାଜ ବୈଦ୍ୟ ମଧ୍ୟ ଆପ୍ରାଣ ଉଦ୍ୟମ କରୁଥିଲେ । ପ୍ରଚୁର ରକ୍ତସ୍ରାବ ହେତୁ ଉତ୍ତରା ବଡ଼ ଦୁର୍ବଳ ହୋଇପଡ଼ିଥିଲେ । ଉତ୍ତରାଙ୍କ ଗର୍ଭସ୍ଥ ଶିଶୁକୁ ବଞ୍ଚେଇ ରଖିବା ମୋ ପାଇଁ ଏକ ଆହ୍ୱାନ ସ୍ୱରୂପ ଥିଲା । ଅବଶେଷରେ ଗର୍ଭପାତର ନିଶ୍ଚିତ ବିପଦରୁ ବଞ୍ଚିଗଲେ ପୁତ୍ରୀ ଉତ୍ତରା ଓ ମୋର ପ୍ରିୟ ଅଭିମନ୍ୟୁର ମିଳନର ସ୍ମାରକୀ ।

ଦିନେ ଉପପ୍ଲବ୍ୟ ନଗରୀରୁ ପାଞ୍ଚଖଣ୍ଡି ପଡ଼ାର ଦାବୀ ନେଇ ଶାନ୍ତିର ବାର୍ତ୍ତାବହ ହୋଇ ମୁଁ ହସ୍ତିନା ଆସିଥିଲି । ସେଦିନ ପାଣ୍ଡବଙ୍କ ବିଜୟ ବାର୍ତ୍ତା ନେଇ ମୋତେହିଁ ହସ୍ତିନା ରାଜଭବନ ଯିବାକୁ ହେଲା ! ରାଜଭବନର ମୁଖ୍ୟ ଦ୍ୱାରର ଏକ କୋଣରେ ଭୀମସେନଙ୍କର ଏକ ଲୌହ ମୂର୍ତ୍ତି ଥିଲା । ଦୀର୍ଘ ତ୍ରୟୋଦଶ ବର୍ଷ ଧରି ଦୁର୍ଯ୍ୟୋଧନର ଗଦାଘାତ ସହି ସହି ଅକ୍ଷତଭାବେ ଠିଆ ହୋଇଥିଲା । ମନେ ପଡ଼ିଗଲା ସେହି ସୁକୁମାର ଯୁବକଟିର ମୁହଁ, ଯିଏ ପ୍ରଥମେ ମୋତେ ଏ ସଂବାଦ ଦେଇଥିଲା । ଆହାଃ ! ଯୁଦ୍ଧର ପଞ୍ଚମ ଦିବସରେ ତାର ମୃତ୍ୟୁ ହୋଇଛି ! ସେହି ଲୌହ ମୂର୍ତ୍ତିଟିକୁ ଅହର୍ନିଶି ପହରା ଦେଉଥିବା ଦୁଇଜଣ ସେବକଙ୍କୁ ନିର୍ଦ୍ଦେଶ ଦେଲି ସେହି ମୂର୍ତ୍ତିକୁ ଯଥାଶୀଘ୍ର ମହାଶ୍ମଶାନକୁ ନେଇଯିବା ପାଇଁ ।

ଗାନ୍ଧାରୀ ଓ ଧୃତରାଷ୍ଟ୍ର ସମସ୍ତ ଭୋଗୈଶ୍ୱର୍ଯ୍ୟ ବର୍ଜନ କରି କୁଶାସନରେ ବସି ଶୋକ ପାଳନ କରୁଥିଲେ । ଏହି ଅପାପବିଦ୍ଧା, ଦିବ୍ୟଦର୍ଶିନୀ ଗାନ୍ଧାରୀଙ୍କର ଲୋତକସିକ୍ତ ଚକ୍ଷୁଦ୍ୱଇଟି ଅନ୍ଧପଟିକା ଅନ୍ତରାଳରେ ଆତ୍ମଗୋପନ କରିଥିଲେ ସୁଦ୍ଧା ତାଙ୍କର ସମଗ୍ର ଶରୀର ଓ ମନ ଯେପରି ଲୋତକ ଜର୍ଜ୍ଜର ହୋଇ ରହିଥିଲା । ଶତପୁତ୍ରର ଜନନୀ ବାର୍ଦ୍ଧକ୍ୟର ବିବିକ୍ତ ଉପକଣ୍ଠରେ ଅନ୍ଧସ୍ୱାମୀ ସହ ଏକାକିନୀ ଥିଲେ । ତାଙ୍କୁ କି ସାନ୍ତ୍ୱନା ଦିଆଯାଇପାରେ ? ମୁଁ ନିଶବ୍ଦରେ ପ୍ରବେଶ କଲି ।

କଂପିତ କଣ୍ଠରେ ଗାନ୍ଧାରୀ କହିଲେ - 'କିଏ ? କେହି ଜଣେ ଆସିଲା ବୋଧହୁଏ । ଚନ୍ଦନ, କସ୍ତୁରୀ, କର୍ପୂର, ତୁଳସୀର ସୁବାସରେ ଏ କକ୍ଷ ଏମିତି ସୁରଭିତ ହୋଇ ଉଠିଲା କିପରି ?

- 'ମା ! ମୁଁ କୃଷ୍ଣ ବାସୁଦେବ !' ଅତ୍ୟନ୍ତ ନମ୍ର ସ୍ୱରରେ କହିଲି । ବିଷର୍ଣ୍ଣ କଣ୍ଠରେ ଧୃତରାଷ୍ଟ୍ର କହିଲେ - 'ରାଜଭବନ ଅଧିକାର କରିବାକୁ ଆସିଛତ ? ଜଣେ ବି କେହି ନାହିଁ

ପ୍ରତିରୋଧ କରିବାକୁ । ପୁତ୍ର ଦୁର୍ଦ୍ଧଷ କେବଳ ବଞ୍ଚିଛି ବୋଲି ଶୁଣିଛି । ମାତ୍ର ସେତ ପାଣ୍ଡବ ଶିବିରରେ ତୁମରି ବାହୁଛାୟା ତଳେ !'

ମୁଁ ସେ ଦୁହିଁଙ୍କ ହାତ ମୁଠେଇ ଧରି କହିଲି - 'ଆସନ୍ତୁ ! ମୁଁ ନେଇଯିବି ମହାଶ୍ମଶାନ ପର୍ଯ୍ୟନ୍ତ । ସେଇଠି ଅପେକ୍ଷା କରିଛନ୍ତି ପଞ୍ଚଭ୍ରାତ । ଅନୁତପ୍ତ ଓ ଲଜ୍ଜିତ ହୋଇ ସେମାନେ ଆପଣଙ୍କ ନିକଟକୁ ଆସି ପାରିଲେ ନାହିଁ ।'

ଗାନ୍ଧାରୀ ତତ୍‌କ୍ଷଣାତ୍ କହିଲେ - ଗତ ରାତ୍ରିର ନୈଶ୍ୟଯୁଦ୍ଧରେ ଦ୍ରୌପଦୀଙ୍କ ପଞ୍ଚପୁତ୍ର ନିହତ ହୋଇଛନ୍ତି ଏହା ଯେତିକି ଦୁଃଖ ଦାୟକ, କୁନ୍ତୀ ନନ୍ଦନଗଣ ଯେ ବଞ୍ଚିଯାଇଛନ୍ତି ତାହା ସେତିକି ସାନ୍ତ୍ୱନାପ୍ରଦ । ଗୁରୁପୁତ୍ର ଅଶ୍ୱତ୍‌ଥାମାଙ୍କର ଶେଷକୁ ଏକ ହିଂସ୍ର ପେଚକହିଁ ଆଦର୍ଶ ହେଲା ? କେଉଁଠି ଥିଲେ କୁନ୍ତୀ ପୁତ୍ର ଗଣ ?'

ମୁଁ କହିଲି - 'ଓଘବତୀ ତୀରରେ । ଓଘବତୀ ସୁଦର୍ଶନଙ୍କର ପତ୍ନୀ । ଅତ୍ୟନ୍ତ ଧର୍ମପରାୟଣା ଓ ଚାରୁଶୀଳା । ଏକଦା ଧର୍ମ ଦେବତା ତାଙ୍କର ଧର୍ମ ପରାୟଣତାର ପରୀକ୍ଷା ଦେବା ପାଇଁ ଆସିଥିଲେ । ସୁଦର୍ଶନ ଆଶ୍ରମରୁ ବାହାରକୁ ଯିବା ସମୟରେ ପତ୍ନୀଙ୍କୁ ନିର୍ଦ୍ଦେଶ ଦେଇ ଯାଇଥିଲେ ତାଙ୍କ ଅନୁପସ୍ଥିତିରେ ଯଦି କେହି ଅତିଥି ପହଞ୍ଚେ ତେବେ ତା'ର ଯେପରି ଅମର୍ଯ୍ୟାଦା ନହୁଏ । ଆର୍ଯ୍ୟ ପରଂପରାରେ ଅତିଥି ଭଗବାନଙ୍କ ସଦୃଶ । ସୁଦର୍ଶନଙ୍କ ଅନୁପସ୍ଥିତିରେ ଧର୍ମ ଅତିଥିରୁପେ ପହଞ୍ଚି ଓଘବତୀଙ୍କ ସାହଚର୍ଯ୍ୟହିଁ କାମନା କରିଥିଲେ । ଓଘବତୀ ମଧ୍ୟ ପତିଙ୍କ ନିର୍ଦ୍ଦେଶ ପାଳନ କରିଥିଲେ । ସୁଦର୍ଶନ ଏକଥା ଶୁଣି ଆଦୌ ବ୍ୟଥିତ ନହୋଇ ବରଂ ନିଜକୁ ଭାଗ୍ୟବାନ ମନେ କରିଥିଲେ । ଅବଶେଷରେ ଧର୍ମ ତାଙ୍କ ପ୍ରକୃତ ପରିଚୟ ଦେଇ ଓଘବତୀଙ୍କୁ ବରଦାନ ଦେଇଥିଲେ ଯେ ନଦୀ ରୂପରେ ସେ ଜଗତର କଲ୍ୟାଣ ସାଧନ କରି ପାରିବେ ଓ ଆପଦ କାଳରେ ତାଙ୍କ ତୀରରେ ଯଦି କେହି ବିଶ୍ରାମ ନିଏ ତେବେ ସେ ତାକୁ ସମସ୍ତ ପ୍ରକାର ସୁରକ୍ଷା ଦେବେ । ଓଘବତୀ ତାଙ୍କ ଧର୍ମ ହିଁ ପାଳନ କରିଛନ୍ତି ।

ଗାନ୍ଧାରୀ ମୋତେ କହିଲେ - 'ମହାଶ୍ମଶାନକୁ କାହିଁକି ଯିବା ଗୋବିନ୍ଦ ? ଆମର ସମସ୍ତ ସୁଖ, ସୌଭାଗ୍ୟ, ଆଶା, ଆକାଂକ୍ଷା ସବୁ କିଛି ତୁମେହିଁ ତ ଧ୍ୱଂସ କରି ଦେଇଛ ।' ମୁଁ ଈଷତ୍ ଉତ୍ତପ୍ତ କଣ୍ଠରେ କହିଲି - 'ଧ୍ୱଂସର ପ୍ରାରମ୍ଭ ତ ସେଇଦିନ ହୋଇଥିଲା ମା, ସେଇଦିନ ଧ୍ୱଂସର ବୀଜ ବିକ୍ଷେପ ହୋଇଥିଲା, ଯେଉଁଦିନ ଅପୋଗଣ୍ଡ ସରଳ ନିଷ୍ପାପ ଶିଶୁ ଭୀମଙ୍କୁ କୌରବ ଭ୍ରାତାଗଣ ବିଷ ମୋଦକ ଖୁଆଇଥିଲେ । ଧ୍ୱଂସର ଅଙ୍କୁରୋଦ୍‌ଗମ ସେଇଦିନ ହୋଇଥିଲା ଯେଉଁଦିନ ଉଦାରଚେତା ପାଣ୍ଡବ ପଞ୍ଚଭ୍ରାତା ଓ ତାଙ୍କ ମାତା କୁନ୍ତୀଙ୍କୁ ବାରୁଣାବତର ଜତୁଗୃହରେ ଅଗ୍ନି ସଂଯୋଗ କରି ଜୀବନ୍ତ ଦଗ୍‌ଧ କରିବାର ପରିକଳ୍ପନା କରାଯାଇଥିଲା,

ଧ୍ୱଂସର ବୃକ୍ଷ ସେଇଦିନ ଶାଖା ପ୍ରଶାଖା ବିସ୍ତାର କରିଥିଲା ଯେଉଁଦିନ କୁରୁସଭାରେ ଅକ୍ଷକ୍ରୀଡ଼ାରେ କପଟାଚାରର ଆଶ୍ରୟ ନିଆଯାଇ ସୁମହାନ୍ ପୁରୁବଂଶର କୂଳବଧୂଙ୍କ କେଶାକର୍ଷଣ କରି ରାଜସଭାକୁ, ଶତ ଶତ ପୁରୁଷଙ୍କ ସମ୍ମୁଖକୁ ଆଣି ତାଙ୍କୁ ବିବସ୍ତ୍ରା କରିବାର ଜଘନ୍ୟ ଯୋଜନା କରାଯାଇଥିଲା । ସେଦିନ ଦ୍ରୁପଦ ନନ୍ଦିନୀଙ୍କର ସେ ଆର୍ତ୍ତନାଦ କୁରୁସଭା ଗୃହର କାନ୍ଥରେ ଧକ୍କା ଖାଇ ଆଉ କେଉଁଠି ପହଞ୍ଚୁ କି ନ ପହଞ୍ଚୁ ମୋର ମର୍ମସ୍ଥଳରେ ସେଇଦିନୁ ସଞ୍ଚିତ ହୋଇ ରହିଥିଲା, ମୋତେ ନ୍ୟାୟ ହିଁ ମାଗୁଥିଲା । କୌରବଗଣ ନିଜ ହାତରେ ଯେଉଁ ଧ୍ୱଂସର ବୃକ୍ଷ ରୋପଣ କରିଥିଲେ ଆଜି ଯଦି ସେଥିରେ ବିଷାକ୍ତ ଫଳ ମିଳିଥାଏ ତେବେ ତାକୁ ଭୋଗ କରିବାକୁ ହିଁ ପଡ଼ିବ !’

ଗାନ୍ଧାରୀ କିଛି ସମୟ ଚୁପ୍ ରହି କହିଲେ - ‘କିନ୍ତୁ ମୁଁ ? ମୁଁ କ’ଣ ପାଇଲି ? ମୁଁ ତ ଜୀବଦ୍ଦଶାରେ କୌଣସି ପାପ କାର୍ଯ୍ୟ କରିନଥିଲି । ମୋର ପୁତ୍ର ଓ କୁନ୍ତୀ ପୁତ୍ରଙ୍କ ଭିତରେ ମୁଁ ତ କୌଣସି ଦିନ ବିଭେଦ ରଖିନାହିଁ । ବରଂ କୁନ୍ତୀଙ୍କ ଭାଗ୍ୟକୁ ଈର୍ଷ୍ୟା କରିଛି ଚିରକାଳ ଏଇଥିପାଇଁ ଯେ ମୋର ଶତପୁତ୍ରଙ୍କ ଭିତରୁ ଜଣେ ହେଲେ କୁନ୍ତୀ ପୁତ୍ରଭଳି ନହେଲା କାହିଁକି ? ଭୀମକୁ ମୁଁ ମଧ୍ୟ ଶ୍ରଦ୍ଧା କରେ କେଶବ ! ମୋର ଅଜ୍ଞାତସାରରେ ଭୀମକୁ ବିଷ ମୋଦକ ଦିଆଯାଇଥିଲା । ମୋର ଅଜ୍ଞାତ ସାରରେ ବାରୁଣାବତରେ ଜତୁଗୃହ ନିର୍ମିତ ହୋଇଥିଲା । ଆଉ କୁରୁ ସଭାରେ ପାଞ୍ଚାଳୀ ଲାଂଛନା ? ସେ ଲାଂଛନା ଏକୁଟିଆ ତାଙ୍କର ନଥିଲା କେଶବ; ତା’ହା ଥିଲା ସମଗ୍ର ନାରୀ ଜାତିର ଲାଂଛନା, ମାତୃଜାତିର ଅପମାନ । ମୁଁ ବି ଗୋଟିଏ ମା’ - ମୁଁ ବି ଜଣେ ନାରୀ !! କୌରବ ଭ୍ରାତାଙ୍କର ସେ ଅପକର୍ମର ପ୍ରତିରୋଧ ମୁ କ’ଣ କରିନଥିଲି ? ସର୍ବୋପରି ଶକୁନୀକୁ ମନ୍ତ୍ରୀ ପଦରେ ବରଣ କରିବାରେ ମୁଁ ବାଧା ଦେଇନଥିଲି ? ତ୍ରୟୋଦଶ ବର୍ଷ ପରେ ପାଞ୍ଚଖଣ୍ଡ ପଡ଼ା କାହିଁକି ଅର୍ଦ୍ଧେକ ସାମ୍ରାଜ୍ୟ ପାଣ୍ଡବଙ୍କୁ ଦେଇ ଦେବାକୁ ମୁଁ ତ ଅନୁରୋଧ କରିଥିଲି ! କିନ୍ତୁ କୌରବଙ୍କ ରାଜସଭାରେ ନାରୀର ଭୂମିକା ବଡ଼ ଗୌଣ ! ସେ ନାରୀ ମା’ ହେଲେ ମଧ୍ୟ ତା’ର ମତାମତକୁ ପ୍ରାଧାନ୍ୟ ଦିଆଯାଏ ନାହିଁ । ଯୁଦ୍ଧ ଆରମ୍ଭରେ ମୋର ମହାମାନୀ ପୁତ୍ର ଦୁର୍ଯ୍ୟୋଧନ ଆଶୀର୍ବାଦ ଟିକିଏ ପାଇଁ ଆସିଥିଲା । ମୁଁ ତାକୁ ଆଶୀର୍ବାଦ ଟିକିଏ ଦେଇଥିଲି କି ? ନା - ‘ଧର୍ମର ଜୟ ‘ହେଉ’ ବୋଲି କହି ନିଷ୍ଠୁର ଭାବେ ତାକୁ ଦ୍ୱାରଦେଶରୁ ଫେରାଇ ଦେଇଥିଲି । ଆଜି ତୁମ ସହ ମହାଶ୍ମଶାନକୁ ଯାଇ ସେଇ ଅଭିମାନୀ ପୁତ୍ରର ମୁଖ ଦର୍ଶନ କରିବି, ହଁ, କେଶବ ଚକ୍ଷୁରୁ ଅନ୍ଧ ପଟିକା ଖୋଲିଦେବ କେହି ଥରକ ପାଇଁ । ଆଉ ଥରଟିଏ ମାତ୍ର ଧର୍ମରାଜ ଯୁଧିଷ୍ଠିରର ମୁଖ ଦର୍ଶନ କରିବି । ସେଭଳି ପୁତ୍ରଟିକୁ ଜନ୍ମ ଦେଇ କୁନ୍ତୀଙ୍କର ଜନ୍ମ ଜନ୍ମର ତପସ୍ୟା ସଫଳ ହୋଇଛି । ବଳବୀର୍ଯ୍ୟ ସବୁଥିବା ସତ୍ତ୍ୱେ ଯାହାର ପଦେ କଥାରେ ଭୀମ - ଅର୍ଜୁନ - ନକୁଳ - ସହଦେବ ତ୍ରୟୋଦଶ ବର୍ଷ ପର୍ଯ୍ୟନ୍ତ ଅରଣ୍ୟବାସୀ ହୋଇ ରହିଲେ ନିର୍ବିବାଦରେ !’

ଗାନ୍ଧାରୀଙ୍କ ମୁଖରୁ ତାଙ୍କର ଏଇ ଦୂରନ୍ତ କାମନାଟି ଶ୍ରବଣ କରିବାମାତ୍ରେ ସ୍ୱତଃ ମୋ ଆଖି ତାଙ୍କ ଅନ୍ଧ ପଟ୍ଟିକା ପାଖରେ ଅଟକି ରହିଲା ଓ ମୁଁ ମୋ ଅଜ୍ଞାତସାରରେ ଶିହରି ଉଠିଲି । ଗାନ୍ଧାରୀ କିଛି ସମୟ ନୀରବ ରହିଲେ । ହୁଏତ ନିଜକୁ ସମ୍ବରଣ କଲେ । ତାପରେ ତିକ୍ତ ସ୍ୱରରେ କହିଲେ - 'କୁନ୍ତୀ ନନ୍ଦନଗଣ ନିରପରାଧ, ଧର୍ମାଶ୍ରୟୀ - ଏକଥା ମୁଁ ସହସ୍ରବାର ସ୍ୱୀକାର କରିବି । କେଶବ ! ଏଇ ଟିକିଏ ପୂର୍ବରୁ କହିଲ ଧ୍ୱଂସର ପ୍ରାରମ୍ଭ ହୋଇ ଶାଖା ପ୍ରଶାଖା ବିସ୍ତାରିତ ହୋଇଥିଲା ଏଇ କୁରୁ ରାଜଭବନରୁ କୌରବ ଭ୍ରାତା ମାନଙ୍କ ଠାରୁ ! ମୁଁ ମାନୁଛି ଦୁର୍ଯ୍ୟୋଧନ ଦର୍ପୋଦ୍ଧତ, ଅହଂକାରୀ । କୁନ୍ତୀନନ୍ଦନଙ୍କର ପିତୃ ପରିଚୟକୁ ନେଇ ପ୍ରକାଶ୍ୟ ଦରବାରରେ ବିଦ୍ରୂପ କରେ, ଯାହା ଶ୍ଳୀଳତା ବର୍ଜିତ । ମାତ୍ର ନିଷ୍ପାପ, ନିଷ୍କପଟ କିଶୋର ଭୀମ ସେଦିନ କାହା ପ୍ରରୋଚନାରେ କୌରବ ଭ୍ରାତାମାନଙ୍କୁ 'ଗୋଲକସୁତ' ଭଳି ଏକ ଅପମାନଜନକ ସମ୍ବୋଧନ କରିଥିଲା ? ସେଇ ଗୋଟିଏ ଶବ୍ଦ ସେଦିନ କ'ଣ ଧ୍ୱଂସ ନିମିତ୍ତ ମୃତ୍ତିକାକୁ ଉର୍ବର କରିନାହିଁ ? ସେହି ଗୋଟିଏ ଶବ୍ଦ କ'ଣ ଧ୍ୱଂସର ପ୍ରସୂତି କ୍ଷେତ୍ର ନଥିଲା ? ମୋର ଯାହା ମନେ ହୁଏ ଏ ଗୋପନ ରହସ୍ୟ ସଂପର୍କରେ ଭୀମକୁ ତୁମେହିଁ ଅବଗତ କରାଇଥିଲ ? ଯେଉଁଥିପାଇଁ ଉଭୟ କୂଳ ମୁଁ ହରେଇଛି -ପିତୃ କୂଳ ଓ ପତିକୂଳ !'

ସେ ଆହୁରି କ'ଣ କହିବାକୁ ଚେଷ୍ଟା କରୁଥିଲେ । ମୁଁ ଜାଣେ ତାଙ୍କର ସେ ଜଟିଳ ପ୍ରଶ୍ନର ଉତ୍ତର ମୁଁ ଦେଇପାରିବି ନାହିଁ । ସେ ଯେତେବେଳେ ସଦ୍ୟ ପୁତ୍ର ଶୋକାତୁରା ଏଇଭଳି ଅଜସ୍ର ଆକ୍ଷେପ ସେ କରିବେ । ମୁଁ ନିରୁତ୍ତର ଭାବେ ସେମାନଙ୍କ ହାତଧରି ଦୁଇଜଣ ସେବକ ସେବିକାଙ୍କ ସହାୟତାରେ କୁରୁଭବନର ଅଳିନ୍ଦ ପରେ ଅଳିନ୍ଦ ଅତିକ୍ରମ କରିବାକୁ ଲାଗିଲି । ସଦ୍ୟ ବୈଧବ୍ୟର ଦାରୁଣ ଯନ୍ତ୍ରଣାରେ ଜର୍ଜରିତ କୌରବ ବଧୂଙ୍କର କରୁଣ ବିଳାପ ଧ୍ୱନୀକୁ ଭ୍ରୂକ୍ଷେପ ନକରି ମୁଁ ଆଗେଇ ଚାଲିଲି । ଜନନୀ ଗାନ୍ଧାରୀ ଅନ୍ତତଃ ତାଙ୍କ ହୃଦୟକୁ ମୋ ନିକଟରେ ଖୋଲି ପାରୁଥିଲେ । ଏକଥା ବି ସ୍ପଷ୍ଟ ହେଉଥିଲାଯେ, କୁନ୍ତୀ ନନ୍ଦନଙ୍କ ପ୍ରତି ତାଙ୍କ ହୃଦୟରେ ଇର୍ଷ୍ୟା ବିଦ୍ୱେଷ ଲେଶ ମାତ୍ର ଆଭାଷ ନାହିଁ; ମାତ୍ର ଧୃତରାଷ୍ଟ୍ର ସଂପୂର୍ଣ୍ଣ ନୀରବ ଥିଲେ । ତାଙ୍କ ଭଳି ତାଙ୍କର ବାତ୍ସଲ୍ୟ ମଧ୍ୟ ଅନ୍ଧ, ଏକ ଦେଶ ଦର୍ଶୀ । ଇର୍ଷ୍ୟା ବିଦ୍ୱେଷର ବିଷ ବାଷ୍ପରେ ତାଙ୍କର ଅନ୍ତର କଳୁଷିତ । କୁନ୍ତୀ ନନ୍ଦନଙ୍କ ପ୍ରତି ସେ କି' ପ୍ରକାର ଆଚରଣ କରିବେ ତା' ଆଦୌ ଜାଣି ହେଉ ନଥିଲା ।

ଚତୁର୍ଦ୍ଦିଗରେ ଶ୍ମଶାନର ସ୍ତବ୍ଧତା ବ୍ୟତୀତ ଆଉକିଛି ନଥିଲା । ଆମକୁ ଅନୁସରଣ କରୁଥିଲେ ମହର୍ଷି ବ୍ୟାସ ଓ ଉଦାରଚେତା ଧର୍ମଜ୍ଞ ବିଦୂର । ଶ୍ମଶାନରେ ଦୁର୍ଯ୍ୟୋଧନର ଶରୀରକୁ ସ୍ପର୍ଶ କରିବା ମାତ୍ରେ ଧୃତରାଷ୍ଟ୍ର ଶୋକାବେଗକୁ ସମ୍ବରଣ କରିପାରିଲେ ନାହିଁ । ଅନ୍ଧ ଚକ୍ଷୁରୁ ଝରିଯାଉଥିଲା ଅଜସ୍ର ଅଶ୍ରୁ । ଅଶ୍ରୁରୁଦ୍ଧ ସ୍ୱରରେ କହିଲେ - 'ବାସୁଦେବ ! ଏଭଳି ବୀର ପୁତ୍ରକୁ

ମୋର ଯେଉଁ ଭୀମ ଗଦାଘାତରେ ନାଶ କରିପାରିଛି, ପୁତ୍ର ମୋର ବୀରଗତି ପ୍ରାପ୍ତ ହୋଇଛି ସେହି ବଳଶାଳୀ ଭୀମ କାହିଁ । ମୁଁ ଟିକିଏ ତାକୁ ଆଲିଙ୍ଗନ କରିବାକୁ ଚାହେଁ ।'

ଅଶ୍ରୁର ଅନ୍ତରାଳରେ ସେ ଅନ୍ଧଚକ୍ଷୁରେ ଉଦ୍‌ଭାସିତ ହେଉଥିଲା ବିଦ୍ୱେଷର ବିଷାକ୍ତ ଜ୍ୱାଳା । ଭୀମସେନ ସରଳତା ବଶତଃ ଆଗେଇ ଯାଉଥିଲେ । ମୁଁ ତାଙ୍କ ହାତଧରି ଅଟକାଇ ଦେଲି ଓ ନିଃଶବ୍ଦରେ ଧୃତରାଷ୍ଟ୍ରଙ୍କ ହାତଧରି ଲୌହ ଭୀମ ନିକଟରେ ପହଞ୍ଚାଇ ଦେଇ କହିଲି - 'ଏଇ ଆଲିଙ୍ଗନ କରନ୍ତୁ !' ଧୃତରାଷ୍ଟ୍ର ଅତ୍ୟନ୍ତ ବଳଶାଳୀ । ସେ ତାଙ୍କର ସମସ୍ତ ବଳ ପ୍ରୟୋଗ କରି ଲୌହଭୀମକୁ ଆଲିଙ୍ଗନ ପାଶରେ ଆବଦ୍ଧ ଓ ପିଷ୍ଟ କଲେ । ଲୌହ ମୂର୍ତ୍ତିଟି ସଶବ୍ଦରେ ଖଣ୍ଡ ବିଖଣ୍ଡ ହୋଇ ଭାଂଗିଲା । ତାଙ୍କର ସମସ୍ତ ଅବରୁଦ୍ଧ କ୍ରୋଧ ଲୌହମୂର୍ତ୍ତିଟିକୁ ଖଣ୍ଡ ବିଖଣ୍ଡ କରିବାରେ ବିନିଯୋଗ ହୋଇ ସାରିଥିଲା । ତାପରେ ସେ ହଠାତ୍ ଭୀମଙ୍କ ଗୁଣ ଗାନକରି ରୋଦନ କରିବାରେ ଲାଗିଲେ ।

ମୁଁ ତତ୍‌କ୍ଷଣାତ୍ କହିଲି - 'ଆପଣ ଲୌହ ପ୍ରତିକୃତିକୁ ଭାଂଗିଛନ୍ତି ମହାରାଜ । ପ୍ରକୃତ ରକ୍ତମାଂସର ଭୀମ ଜୀବିତ, ଆପଣଙ୍କ ସ୍ନେହ ପାଶରେ ବନ୍ଦୀ ହେବା ପାଇଁ ଉନ୍ମୁଖ । କୌରବଗଣ ନିହତ । ପଣ୍ଡୁପୁତ୍ରଙ୍କୁ ହତ୍ୟା କଲେ ଆପଣଙ୍କ ପୁତ୍ରଗଣ ପୁନର୍ଜୀବନ ପାଇବେ ନାହିଁ । ସୁତରାଂ ଆପଣଙ୍କ ଭାତୃଷ୍ପୁତ୍ରଗଣଙ୍କୁ କ୍ଷମା କରିଦିଅନ୍ତୁ ।'

ଧୃତରାଷ୍ଟ୍ର ପ୍ରକୃତିସ୍ଥ ହୋଇଗଲେ । ଏଥର ଗାନ୍ଧାରୀ କହିଲେ - 'କେଶବ ! ମୁଁ ଟିକିଏ ଯୁଧିଷ୍ଠିରଙ୍କୁ ଦେଖିବି !'

ଗାନ୍ଧାରୀ ନନ୍ଦନ ଦୁର୍ଦ୍ଦକ୍ଷକୁ ଚାହିଁ ମୁଁ ଉଦ୍ଦେଶ୍ୟପୂର୍ଣ୍ଣ ଭାବେ ହସିଲି । ନ୍ୟାୟ ନିରପେକ୍ଷ ଦୁର୍ଦ୍ଦକ୍ଷ ଅନ୍ୟାୟର ପକ୍ଷ ସମର୍ଥନ କରିବ ନାହିଁ ବୋଲି ଯୁଦ୍ଧ ଆରମ୍ଭରେ କୌରବ ପକ୍ଷ ତ୍ୟାଗକରି ପାଣ୍ଡବ ପକ୍ଷରେ ଯୋଗ ଦେଇଥିଲା । ତା'ର ଭ୍ରାତାଗଣ ଯଥେଷ୍ଟ ସୁଯୋଗ ପାଇଥିଲେ ମଧ୍ୟ ଦୟା ଓ ସ୍ନେହ ପରବଶ ହୋଇ ଏହି ମହାସମରରେ ତାକୁ ହତ୍ୟା କରିନାହାନ୍ତି । ତଥାପି ଜୀବନ ନେବା ବା ଦେବା - ଏହାତ ଆଉ ଜଣକ ହାତରେ ! ମୁଁ ଦୁର୍ଦ୍ଦକ୍ଷକୁ ଏକାନ୍ତରେ କହିଲି - ଗାନ୍ଧାରୀଙ୍କର ଶତପୁତ୍ରଙ୍କ ଭିତରୁ ଏକମାତ୍ର ତୁମେହିଁ ଜୀବିତ ଅଛ - ଏହା ଏପର୍ଯ୍ୟନ୍ତ ସେ ଜାଣିନାହାନ୍ତି । ତଥାପି ତାଙ୍କ ବାର୍ଦ୍ଧକ୍ୟର ଅବଲମ୍ବନ ରୂପେ ଗୋଟିଏ ଯଷ୍ଟି ତିଷ୍ଠି ରହିଛି ଏତିକି ଜାଣିଲେ ତାଙ୍କ ଶୋକ ପ୍ରଶମିତ ହେବ । ଯାଅ ବାବୁ ଦୁର୍ଦ୍ଦକ୍ଷ ! ମାତାଙ୍କ ଅନ୍ଧପଟ୍ଟିକା ଉନ୍ମୋଚନ କର !'

ମୋ ଠାରୁ କିଛି ନିର୍ଦ୍ଦେଶ ପାଇଲେଇ ଦୁର୍ଦ୍ଦକ୍ଷ ନିଜକୁ ଧନ୍ୟ ମନେ କରେ । ଗାନ୍ଧାରୀଙ୍କ ସମ୍ମୁଖରେ ଠିଆହୋଇ ଆନନ୍ଦ ମନରେ ସେ ତାଙ୍କର ଚକ୍ଷୁରୁ ଅନ୍ଧ ପଟ୍ଟିକା ଉନ୍ମୋଚନ କଲା ।

ତାପରେ ? ହଁ, ତାପରେ କୁରୁବଂଶର ଶେଷ ରଶ୍ମୀ ଟିକକ ନିର୍ବାପିତ ହୋଇଗଲା ।

ପଲକ ମାତ୍ରକେ ଜଳି  ଭସ୍ମସାତ୍ ହୋଇଗଲା ଦୁର୍ଦ୍ଦକ୍ଷ ! ବର୍ଷ ବର୍ଷ ଧରି ଅନ୍ଧପଟ୍ଟିକାବୃତ ଗାନ୍ଧାରୀଙ୍କ ଚକ୍ଷୁରେ ଅନ୍ଧକାର ସହ ଯେଉଁ ଅନଳକଣାର ଦାହିକା ଶକ୍ତି ସଞ୍ଚିତ ହୋଇ ରହିଥିଲା ତା'ର  ପରିଣତି ସ୍ୱରୂପ ଭସ୍ମୀଭୂତ ହୋଇଗଲା ଦୁର୍ଦ୍ଦକ୍ଷ । ମାଟିର ଶରୀର ତାର ପଡ଼ି ରହିଲା ଯତ; ମାତ୍ର ଜନନୀ ଗାନ୍ଧାରୀଙ୍କ ଚକ୍ଷୁର ତେଜସ୍କ୍ରିୟତାରେ ତା'ର ସମଗ୍ର ଶରୀର ଅଂଗାର ବର୍ଣ୍ଣ ହୋଇ ଯାଇଥିଲା, ଜଡ଼ ନିଷ୍ପନ୍ଦ ହୋଇଯାଇଥିଲା !

ଗାନ୍ଧାରୀ ଅସ୍ଫୁଟ କଣ୍ଠରେ ଆର୍ତ୍ତନାଦ କରିଉଠିଲେ - 'ଏ କିଏ ?' ମୁଁ  ଚିରାଚରିତ ଭାବେ ସ୍ମିତ ହାସ୍ୟ ପ୍ରକାଶ କରି କହିଲି - 'ଦେବୀ ! ପାଣ୍ଡବଙ୍କୁ ଆଶ୍ରୟ କରି ଏହି ମହାସମରରେ ବଞ୍ଚିରହିଥିବା ଆପଣଙ୍କର ଅବଶିଷ୍ଟ ଏକମାତ୍ର ପୁତ୍ର ଦୁର୍ଦ୍ଦକ୍ଷ ! ଅନଳ କଣାରେ ସେ ବି ଭସ୍ମିଭୂତ ହୋଇଗଲା ! ଏଥର ମୁଁ ପୁଣି ଆପଣଙ୍କ ନୟନରେ ଅନ୍ଧପଟ୍ଟିକା ବାନ୍ଧି ଦେଉଛି । ଆଉ ଯୁଧିଷ୍ଠିରଙ୍କୁ ଦେଖିବାର ଆବଶ୍ୟକତା ନାହିଁ  !'

ପୁଣି ତାଙ୍କୁ ଚକ୍ଷୁ ଅନ୍ଧପଟ୍ଟିକା ବୃତ ହେଲା । ନୟନରୁ ଅଶ୍ରୁଜଳ ଝରି ଝରି ସେ ପଟ୍ଟିକା ସିକ୍ତ ହୋଇଯାଉଥାଏ । ଧୃତରାଷ୍ଟ୍ରତ ଅନେକ ବେଳୁ ଭାଂଗି ପଡ଼ିଥା'ନ୍ତି । ଏଥର ଗାନ୍ଧାରୀ ମଧ୍ୟ ଲୁହ ଆଉ କୋହରେ ଭାଂଗି ପଡ଼ିଲେ । କହିଲେ - 'କେଶବ ! ଏ ଦୁଃଖିନୀ ଗାନ୍ଧାରୀର ଜୀବନ ବିନିମୟରେ ତା'ର ଏଇ ଗୋଟିଏ ପୁତ୍ରକୁ ବଞ୍ଚେଇ ପାରିଲ ନାହିଁ ? ଜୀବଦ୍ଦଶାରେ, ଜ୍ଞାତସାରରେ ମୁଁ ତ କୌଣସି ପାପ କରିନାହିଁ କେଶବ  ? ତେବେ ? ଶତପୁତ୍ରର ଜନନୀ ହୋଇ ବାର୍ଦ୍ଧକ୍ୟର ଏଇ ନିର୍ଜନ ଉପକଣ୍ଠରେ ଆଜି ମୁଁ ଏକାକିନୀ  ? ଜଣେବି ପୁତ୍ର ଜୀବିତ ନାହିଁ ମୋର ମୁଖାଗ୍ନି ବା ଦାହ ସଂସ୍କାର କାର୍ଯ୍ୟ କରିବା ନିମିତ୍ତ ?'

ମୁଁ ସଶବ୍ଦରେ ହସି ଉଠିଲି । ଶ୍ମଶାନର ସେଇ ସ୍ତବ୍ଧତାର ବୁକୁ ଚିରି ତା' ବଡ଼ ଶ୍ରୁତି କଟୂ ଶୁଭୁଥିଲା । ମୁଁ କହିଲି - 'ଦେବୀ ! ଇହ ଜୀବନ ହିଁ କ'ଣ ସବୁକିଛି ? ଜନ୍ମ ସହ କର୍ମର ବନ୍ଧନ ଗ୍ରଥିତ ହୋଇ ନାହିଁ କି ? ପ୍ରାକ୍ତନ ସଂସ୍କାର, ପୂର୍ବ ଜନ୍ମାର୍ଜିତ କର୍ମଫଳ ଏସବୁର କ'ଣ କୌଣସି ପ୍ରଭାବ ନାହିଁ ? ସମସ୍ତ ସଦ୍‌ଗୁଣର ଅଧିକାରୀ ହୋଇ ପାଣ୍ଡବ ପଞ୍ଚଭ୍ରାତ ଚିରକାଳ ଦୁଃଖରେ କାଳାତିପାତ କଲେ କିପରି ? କୌରବ୍‌ଗଣ ଭୋଗୈଶ୍ୱର୍ଯ୍ୟ ଭିତରେ ଆକଣ୍ଠ ନିମଜ୍ଜିତ ହୋଇଥିଲେ ବା କିପରି ? ଆପଣ ଗୋଟିଏ ଜନ୍ମର କର୍ମଫଳ ବିଚାର କରୁଛନ୍ତି । ଆପଣଙ୍କ ପୂର୍ବ ଜନ୍ମାର୍ଜିତ ପାପ - ପୂଣ୍ୟଫଳ କିଏ ଭୋଗ କରିବ ଦେବୀ ? ତ୍ରିକାଳଜ୍ଞ ମହର୍ଷି କୃଷ୍ଣ ଦ୍ୱୈପାୟନ ଉପସ୍ଥିତ ଅଛନ୍ତି, ତାଙ୍କୁ ପ୍ରଶ୍ନ କରିପାରନ୍ତି । ଶତପୁତ୍ରଙ୍କ ମୃତ୍ୟୁରେ ଆପଣ ଆଜି ଦୁଃଖରେ ମ୍ରିୟମାଣ ହୋଇ ପଡୁଛନ୍ତି । ଶହେ ଜନ୍ମ ପୂର୍ବେ ଆପଣବି ରାଜକନ୍ୟାଭାବେ ଜନ୍ମ ନେଇଥିଲେ । କୈଶୋରରେ କୌତୁକ ବଶତଃ ନଦୀର ସିକତା ଶଯ୍ୟାରେ ଗୋଟିଏ କୁମ୍ଭୀରର ଏକଶତ ଭ୍ରୂଣ ଭାଂଗି ଦେଇଥିଲେ । ସେ କର୍ମଫଳ ଆପଣଙ୍କୁ ଭୋଗ କରିବାକୁ ହେବ !

ମହର୍ଷି ବ୍ୟାସ ମୋ କଥାରେ ସମ୍ମତି ପ୍ରଦାନ କଲେ । ଗାନ୍ଧାରୀ ବେଶ୍ କିଛି ସମୟ ନୀରବ ରହିଲେ । ହୁଏତ ନିଜକୁ ସମ୍ବରଣ କଲେ । ତାପରେ ହଠାତ୍ ଉତ୍ତେଜିତା ହୋଇ ପଡ଼ିଲେ - 'ହଁ କେଶବ ! ଶହେଜନ୍ମ ପରେ ମୋତେ ଭୋଗ କରିବାକୁ ହେବ କୃତକର୍ମର ଫଳ । କିନ୍ତୁ ଏ କୁରୁକ୍ଷେତ୍ରର ମହାସମରରେ ଅଷ୍ଟାଦଶ ଦିବସ ବ୍ୟାପି ଯେଉଁ ଅଜସ୍ର ରକ୍ତର ତର୍ପଣ କରାହେଲା, ଯେଉଁ ବୀର କ୍ଷତ୍ରିୟ ନିଧନର ମହାଯଜ୍ଞ ଅନୁଷ୍ଠିତ ହେଲା, ତା'ର ଫଳ କିଏ ଭୋଗ କରିବ ? ମୁଁ ଜାଣେ କୁନ୍ତୀ ପୁତ୍ରଗଣ ଶାନ୍ତି କାମୀ, ଯୁଦ୍ଧ ସେମାନେ ଚାହିଁ ନଥିଲେ । କେଶବ ! ଯୁଦ୍ଧ ତୁମେ ଚାହିଁଥିଲ ଆଉ ଚାହିଁଥିଲେ ଦ୍ରୁପଦ ରାଜନନ୍ଦିନୀ ! ଦ୍ରୁପଦ ରାଜନନ୍ଦିନୀଙ୍କୁ ମୁଁ କୌଣସି ଅଭିଶାପ ଦେବିନାହିଁ । କାରଣ ସମଗ୍ର ନାରୀ ଜାତିର ପ୍ରତୀକ ଭାବେ ନାରୀ ଲାଂଛନାର ପ୍ରତିବାଦ ସ୍ୱରୂପ ସେ ଯୁଦ୍ଧ ଚାହିଁଥିଲେ । ଯାହା ଯଥାର୍ଥ । ମାତ୍ର ତୁମେ ? ମୁଁ ମୋ ଦିବ୍ୟଦୃଷ୍ଟି ବଳରେ ଦେଖି ପାରିଛି ପଣ୍ଡୁସୁତଙ୍କର ଯେଉଁ ବୀରତ୍ୱ ପ୍ରକଟିତ ହୋଇଛି ତା' କେବଳ ପ୍ରବଞ୍ଚନା । ସବୁ କାର୍ଯ୍ୟ କାରଣର ହେତୁ ତୁମେ ମାଧବ ! ତୁମରି ଇଙ୍ଗିତରେ, ତୁମରି ଷଡ଼ଯନ୍ତ୍ର, କୂଟ କୌଶଳ ଓ ଚକ୍ରାନ୍ତରେ ଆଜି ମୋର ଶତପୁତ୍ର ନିହତ । ମୋର ବଂଶ ଧ୍ୱଂସ ହୋଇ ଯାଇଛି ! ମୁଁ ଯଦି କାୟ ମନୋବାକ୍ୟରେ ସତୀ ତେବେ ଏଇ ଅସ୍ତଗାମୀ ସୂର୍ଯ୍ୟହିଁ ସାକ୍ଷୀ, ଏଇ ପୃଥିବୀ ସାକ୍ଷୀ,ଏଇ ଆକାଶ ସାକ୍ଷୀ । ହେ ମାଧବ ! ତୁମ ଯଦୁବଂଶବି ଅଚିରେ ଧ୍ୱଂସ ହେବ ! ଅସହାୟା କୌରବ ରମଣୀଙ୍କ ଭଳି ଯାଦବ ରମଣୀ ମଧ୍ୟ ଦିନେ ଏଇଭଳି ବିଳାପ କରିବେ । ମୁଁ ଚକ୍ଷୁରେ ଅନ୍ଧପଟ୍ଟିକା ବାନ୍ଧିଛି ହେଲେ ମୋର ବୋଧଶକ୍ତିକୁ କେଉଁ ପଟ୍ଟିକାରେ ଆବୃତ କରିବି ? ତୁମେ କିନ୍ତୁ ସ୍ୱଚକ୍ଷୁରେ ଦେଖିବ ତୁମ ବଂଶର ଧ୍ୱଂସ !! ପୁତ୍ର - ପୌତ୍ର ନିହତ ହେବାର ଦୁଃଖ ବୋଧ ତୁମକୁ ବି ସନ୍ତପ୍ତ କରିବ !'

ସେତେବେଳକୁ ମୁଁ ଗାନ୍ଧାରୀଙ୍କ ପଦତଳେ ଆଣ୍ଠୁମାଡ଼ି ନତମସ୍ତକରେ ଯୋଡ଼ହସ୍ତରେ ବସି ରହି ଅମ୍ଳାନ ବଦନରେ ତାଙ୍କ ଅଭିଶାପ ଗ୍ରହଣ କରୁଥିଲି !

ବିଦୂର କିନ୍ତୁ ସହି ପାରିଲେ ନାହିଁ । ସେ ବିବ୍ରତ ସ୍ୱରରେ କହିଲେ - 'ଦେବୀ ! ଏ କ'ଣ କଲେ ?

ମୁଁ କିନ୍ତୁ ହସି ହସି କହିଲି - 'ଦେବୀ ଗାନ୍ଧାରୀଙ୍କ ଅଭିଶାପ ଅନ୍ୟଥା ହେବ ନାହିଁ । ପ୍ରତ୍ୟେକ ଆରମ୍ଭର ଶେଷ ମଧ୍ୟ ଅଛି ।'

ମୋତେ ଅଭିଶାପ ଦେବାପରେ ଗାନ୍ଧାରୀ ବେଶ୍ ଶାନ୍ତ ଦିଶୁଥିଲେ । ପଣ୍ଡୁସୁତଙ୍କର ମସ୍ତକ ଆଘ୍ରାଣ ଓ ମୁଖ ଚୁମ୍ବନ କରି ସାନ୍ତ୍ୱନା ଦେବାକୁ କହିଲେ - 'ସଂଜୟଙ୍କ ମୁଖରୁ ନୈଶ୍ୟ ଯୁଦ୍ଧର ବିଭୀଷିକା ପୂର୍ଣ୍ଣ ବର୍ବରତା ସଂପର୍କରେ ମୁଁ ଶୁଣିଛି । ଦ୍ରୁପଦ ରାଜନନ୍ଦିନୀ ଯଥେଷ୍ଟ ଲାଂଛନା

ସହ୍ୟ କରିଛନ୍ତି; ଭାଗ୍ୟ ବି ତାଙ୍କ ଉପରେ ବଡ଼ ଅବିଚାର କରିଛି । ପୁତ୍ର ଶୋକର କଷ୍ଟ ମୁଁ ହି ଠିକ୍ ବୁଝି ପାରୁଛି । ଶତପୁତ୍ର ହରେଇ ମୁଁ ଯେମିତି ସର୍ବସ୍ୱାନ୍ତ, ପଞ୍ଚପୁତ୍ର ହରାଇ ସେ ବି ସେଇଭଳି ନିଃସ୍ୱା । ହସ୍ତିନାର ରାଜମହିଷୀ ହେବାର ପ୍ରଥମ ପର୍ଯ୍ୟାୟରେ ତାଙ୍କୁ ଏ ଦାରୁଣ ଆଘାତ ସହିବାକୁ ପଡ଼ିଛି । ପରିବାରର ବୟୋଜ୍ୟେଷ୍ଠା ଭାବେ ତାଙ୍କୁ ସାନ୍ତ୍ୱନା ଦେବା ମୋର ପ୍ରଥମ କର୍ତ୍ତବ୍ୟ ।'

ଯେ ତାଙ୍କ ପରିଚାରିକା କାନ୍ଧରେ ହାତରଖି ପାଣ୍ଡବ ଶିବିର ଆଡ଼କୁ ଆଗେଇବା ସମୟରେ ମୁଁ ମନ୍ଦ୍ର ଗମ୍ଭୀର ସ୍ୱରରେ କହିଲି -'ଦେବୀ ! ମୋର ପିଉସୀ କୁନ୍ତୀଙ୍କୁ ମଧ୍ୟ ସାନ୍ତ୍ୱନା ଦେବାକୁ ଭୁଲିବେ ନାହିଁ !'

ସେ ଚାଲି ଯାଉ ଯାଉ ଅଟକି ଗଲେ । ଅଧର ପ୍ରାନ୍ତରେ ବିଷର୍ଣ୍ଣତାରେ ଭରା ବିଦ୍ରୂପର ତିକ୍ତହସଧାରେ ଝଲସି ଉଠିଲା । ଦେବୀ ଗାନ୍ଧାରୀ ପ୍ରଶ୍ନ କଲେ - 'ସକଳ ବିଭୂତିରେ ପରିପୂର୍ଣ୍ଣା କୁନ୍ତୀ, ଏ ମହାସମର ତାଙ୍କ ପଞ୍ଚପୁତ୍ରଙ୍କର କେଶାଗ୍ର ସୁଦ୍ଧା ସ୍ପର୍ଶ କରିପାରିନାହିଁ । ତାଙ୍କର ବି ସାନ୍ତ୍ୱନା ଆବଶ୍ୟକ ?'

ମୁଁ ତଳକୁ ମୁହଁ ପୋତି ମୃଦୁ ସ୍ୱରରେ କହିଲି - 'ହଁ, ଦେବୀ ! ଆପଣଙ୍କ ଭଳି, ପାଞ୍ଚାଳୀଙ୍କ ଭଳି ସେ ମଧ୍ୟ ପୁତ୍ରଶୋକାତୁରା ! ଏ ମହାଯୁଦ୍ଧରେ ତାଙ୍କର ଜଣେ ପୁତ୍ର ନିହତ ହୋଇଛନ୍ତି !' ଗାନ୍ଧାରୀ ମୋ ହାତ ଦୁଇଟିକୁ ଧରି ଖୁବ୍ ଜୋର୍‌ରେ ଝୁଙ୍କେଇ ଦେଇ କହିଲେ - 'କିଏ ତାଙ୍କର ସେହି ପୁତ୍ର କେଶବ ?'

ମୁଁ ନିଷ୍କଂପ କଣ୍ଠରେ କହିଲି - 'ଅଂଗାଧିପତି କର୍ଣ୍ଣ !!!'

- 'ଅଂଗରାଜ ?' ଅନେକ ଗୁଡ଼ିଏ କଣ୍ଠର ପ୍ରଶ୍ନ । ପ୍ରଶ୍ନ ନୁହେଁତ ଯେମିତି ଅନ୍ତରାତ୍ମାର ଆର୍ତ୍ତନାଦ ।

ଧିର ମନ୍ଥର ଗତିରେ ପଶ୍ଚିମାକାଶକୁ ଯାତ୍ରା କରୁ କରୁ ସୂର୍ଯ୍ୟ ଦେବ ଯେମିତି ପୁଣିଥରେ ରକ୍ତାକ୍ତ ହୋଇ ଉଠିଲେ, ଲୁହ ନଢ଼ାଳି ଯେମିତି ଲୋତକ ରୁପରେ ଲହୁ ଢାଳି ସମଗ୍ର ପଶ୍ଚିମ ଦିଗନ୍ତକୁ ଲୋହିତ ରଂଜିତ କରିଦେଲେ !

ଅଂଗରାଜଙ୍କୁ ପୁତ୍ରବତ୍ ସ୍ନେହ କରୁଥିଲେ ଗାନ୍ଧାରୀ । ଏ ସଂବାଦ ଶ୍ରବଣରେ ତାଙ୍କ କ୍ଷତସ୍ଥାନ ଯେମିତି ପୁନର୍ବାର ରକ୍ତଝରା ହୋଇ ଉଠିଲା । ସେ ହତାଶ ସ୍ୱରରେ କହିଲେ - 'ହେ ଭଗବାନ୍ ! ଏହା କି ପ୍ରକାର ବିଡ଼ମ୍ବନା ? ମୋ ପୁତ୍ରଙ୍କର ଜୀବନ ନେଲେତ ସେଇ କୁନ୍ତୀପୁତ୍ର - ମୋ ପୁତ୍ରଙ୍କ ପାଇଁ ଜୀବନ ଉତ୍ସର୍ଗ କଲେ ତ ସେଇ କୁନ୍ତୀପୁତ୍ର ?'

ପାଣ୍ଡବ ପଞ୍ଚଭ୍ରାତ ସେତେବେଳକୁ ଶୋକରେ ବିହ୍ୱଳ ହୋଇ ଉଠିଥିଲେ । ପାର୍ଥଙ୍କ ଚକ୍ଷୁରୁ ଅବିରଳ ଅଶ୍ରୁଧାର ବହି ଚାଲିଥିଲା । ଧର୍ମରାଜ ଯୁଧିଷ୍ଠିର ହଠାତ୍ ଉତ୍ତେଜିତ ହୋଇ କହି ଉଠିଲେ - 'ଏଭଳି ଏକ ସତ୍ୟକୁ ମା' ଏତେ ବର୍ଷ ଧରି ଗୋପନ ରଖିଥିଲେ କିପରି ? ଶେଷକୁ ଅଗ୍ରଜଙ୍କ ହତ୍ୟା ଅପରାଧରେ.... ମା'ଙ୍କର ଏ ଗୋପନୀୟତା ଯେ କେତେ ବଡ଼ ବିଭ୍ରାଟ ସୃଷ୍ଟି କଲା ! ମୁଁ ବି ସମଗ୍ର ନାରୀ ଜାତିକୁ ଅଭିଶାପ ଦେଉଛି, ସେମାନେ କୌଣସି କଥା ଗୋପନ ରଖି ପାରିବେ ନାହିଁ !'

ମୁଁ ତାଙ୍କୁ ଏକ ଦୃଷ୍ଟିରେ ଚାହିଁ ଭାବୁଥିଲି, ଗୋଟିଏ ମା'ର ନିରୁପାୟତା ତୁମେ ବୁଝିପାରିବ ନାହିଁ ଧର୍ମରାଜ ! ପୁଣି ସେ ଯଦି କୁମାରୀ ମା' ହୋଇଥା'ନ୍ତି ।'

ଶୁଭ ଅବସରରେ ଯଥାବିଧି ଧର୍ମରାଜଙ୍କର ହସ୍ତିନାର ରାଜସିଂହାସନରେ ଅଭିଷେକ ହୋଇଗଲା । ଧୌମ୍ୟଙ୍କ ପୌରହିତ୍ୟରେ । ମୁଁ ତ ଏଇ ଶୁଭଲଗ୍ନର ପ୍ରତୀକ୍ଷାରେ ଥିଲି । ଧର୍ମର ପ୍ରତିଷ୍ଠା ହୋଇଗଲା । ଦୀର୍ଘ ଏତେବର୍ଷ ପରେ ପାଣ୍ଡବ ପଞ୍ଚଭ୍ରାତ ତାଙ୍କର ମା' ଓ ପତ୍ନୀଙ୍କ ଗହଣରେ ହସ୍ତିନାର ରାଜଭବନରେ ପ୍ରବେଶ କଲେ ଓ ନ୍ୟାଯ୍ୟ ଦାବୀ ପ୍ରାପ୍ତ ହେଲେ । ଏମାନେ ଧୃତରାଷ୍ଟ୍ର, ଗାନ୍ଧାରୀ ଓ କୌରବ ବଧୂମାନଙ୍କର ଯଥେଷ୍ଟ ଯତ୍ନ ନେଉଥିଲେ । ହସ୍ତିନାର ମହାରାଜା ଯୁଧିଷ୍ଠିର ଭୀମସେନଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କଲେ । ବିଦୁର ହେଲେ ମହାମନ୍ତ୍ରୀ, ସନ୍ଧିବିଗ୍ରହର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ହେଲା, ଅର୍ଜ୍ଜୁନ ରାଜ୍ୟର ପ୍ରତିରକ୍ଷା ତଥା ଶତ୍ରୁ ଦମନର ଦାୟିତ୍ୱ ନେଲେ, ନକୁଳଙ୍କ ଉପରେ ଅସ୍ତ୍ରାଗାରର ଭାରନ୍ୟସ୍ତ ହେଲା, ସଂଜୟ ଅନ୍ୟତମ ଅମାତ୍ୟ ତଥା ରାଜକୋଷର ଦାୟିତ୍ୱ ବହନ କଲେ । ରାଜପୁରୋହିତ ଧୌମ୍ୟ ଦେବତା, ବ୍ରାହ୍ମଣ ଓ ଅତିଥି ସେବାର ଦାୟିତ୍ୱ ହୃଷ୍ଟ ଚିତ୍ତରେ ଗ୍ରହଣ କଲେ । ସହଦେବ ଆଭ୍ୟନ୍ତରୀଣ ଶୃଙ୍ଖଳା ସହ ମହାରାଜଙ୍କ ସୁରକ୍ଷା ଦାୟିତ୍ୱ ବହନ କଲେ ।

ଦିନେ ମୁଁ ଯୁଧିଷ୍ଠିରଙ୍କୁ କହିଲି - 'ଧର୍ମରାଜ ! ଆପଣ ରାଜନୀତି ବିଷୟରେ ଅନଭିଜ୍ଞ । ଜୀବନର ବହୁ ମୂଲ୍ୟବାନ୍ ସମୟ ଆପଣଙ୍କୁ ଅରଣ୍ୟରେ କିମ୍ବା ପରାଶ୍ରିତଭାବେ ଅତିବାହିତ କରିବାକୁ ପଡ଼ିଛି । କୁରୁ ଶ୍ରେଷ୍ଠ ଭୀଷ୍ମ ଶରଶଯ୍ୟାରେ ଏପର୍ଯ୍ୟନ୍ତ ଜୀବିତ ଅଛନ୍ତି । ସୂର୍ଯ୍ୟଦେବଙ୍କର ଦକ୍ଷିଣାୟନ ଗତି ଶେଷ ପ୍ରାୟ । ଉତ୍ତରାୟଣ ଆରମ୍ଭ ହେଲେ ସତ୍ୟସନ୍ଧ, ଧର୍ମଜ୍ଞ, ବିଚକ୍ଷଣ ରାଜନୀତିଜ୍ଞ କୁରୁଶ୍ରେଷ୍ଠ ଭୀଷ୍ମ ଦେହତ୍ୟାଗ କରିବା ନିଶ୍ଚିତ ମୋର ମତ ଆପଣ ଏହି ଅବସରରେ ତାଙ୍କଠାରୁ 'ରାଜନୀତି ଶିକ୍ଷା କରନ୍ତୁ ।'

ସେଦିନ ବ୍ରାହ୍ମ ମୁହୂର୍ତ୍ତରେ ମୁଁ ଶଯ୍ୟାତ୍ୟାଗ କରିବା ବେଳକୁ ପଞ୍ଚଭ୍ରାତ ମୋ ଦ୍ୱାର ସମ୍ମୁଖରେ କୃତାଞ୍ଜଳି ପୁଟରେ ଠିଆ ହୋଇଥିଲେ । ଧର୍ମରାଜଙ୍କର ନଗ୍ନପଦ ଦେଖି ମୁଁ ସ୍ମିତ

ହାସ୍ୟ ପ୍ରକାଶ କଲି । ତାଙ୍କର ସମଗ୍ର ଚେହେରାରେ ଏକ ବିଦ୍ୟାର୍ଥୀର ନମ୍ରତା ପରିସ୍ଫୁଟ ହେଉଥିଲା । ହଁ, ପ୍ରକୃତରେ ସେ କୁରୁପିତାମହ ଭୀଷ୍ମଙ୍କ ନିକଟକୁ ରାଜନୀତି ଶିକ୍ଷା କରିବା ପାଇଁ ଯାଉଥିଲେ । ଅନ୍ତଃପୁରର ମୁଖ୍ୟଦ୍ୱାର ପର୍ଯ୍ୟନ୍ତ କୃଷ୍ଣା ଆସିଥିଲେ । ଯୁଦ୍ଧ ପରଠାରୁ ସେ ବଡ଼ ଗମ୍ଭୀର, ଉଦାସ ଓ ବିଷର୍ଣ୍ଣ । ପୂର୍ବରୁ ଯେମିତି ତାଙ୍କ ସହ ହାସ ପରିହାସ କରୁଥିଲି, ସେ ପ୍ରକାର ବାକ୍ୟାଳାପରେ ଉଭୟ ପକ୍ଷରୁ ଆଗ୍ରହ, ସ୍ପୃହା ବା ରୁଚି ନଥିଲା । ବାଂଛିତ ସମସ୍ତ ବସ୍ତୁ ପାଇବା ପୂର୍ବରୁ ଯେମିତି ସେ ସବୁ ହରେଇ ସର୍ବସ୍ୱାନ୍ତ ହୋଇ ଯାଇଥିଲେ । ଅନେକ ସମୟରେ ଲକ୍ଷ୍ୟ କରିଛି ଅଭିମନ୍ୟୁ, ପ୍ରତିବିନ୍ଧ୍ୟ, ଶ୍ରୁତସୋମ, ଶ୍ରୁତକର୍ମା, ଶତାନୀକ, ଶ୍ରୁତସେନଙ୍କର ଶୈଶବ, କୈଶୋରରେ ବ୍ୟବହୃତ ଟିକି ଟିକି ପରିଛଦ, ଟିକି ଟିକି ଅସ୍ତ୍ରର କ୍ରୀଡ଼ନକ, ଅଧିତବ୍ୟ ବିଦ୍ୟା ସମନ୍ୱିତ ଗ୍ରନ୍ଥ ସମୂହରୁ କୃଷ୍ଣା ନିଜେ ଧୂଳି ଝାଡ଼ି ପରିଷ୍କାର କରି ଅନେକ ସମୟ ସେ ସବୁ ଦେଖନ୍ତି । ତାଙ୍କ ଦୃଷ୍ଟି ଦିଗନ୍ତରେ ହଜିଯାଏ । ତାପରେ ପୁଣି ସେ ସବୁକୁ ନିଜେ ସଯତ୍ନରେ ସାଇତି ରଖନ୍ତି । ସେ ସମୟରେ ତାଙ୍କର ଏ ଦୁଃଖଭାରକୁ କେହି ଲାଘବ କରୁ, କେହି ଅଂଶ ଗ୍ରହଣ କରୁ ତା' ସେ ଆଦୌ ଚାହାନ୍ତି ନାହିଁ ।

ଏଇଭଳି ଅନ୍ୟମନସ୍କଭାବେ କେତେ କ'ଣ ଚିନ୍ତା କରି ଚାଲୁ ଚାଲୁ ହଠାତ୍ ମୋ ପାଦତଳରେ ଏକ କଣ୍ଟାଫୁଟି ଗଲା ଓ ପାଦତଳ ରକ୍ତାକ୍ତ ହୋଇଗଲା । ତତ୍‌କ୍ଷଣାତ୍ ଅର୍ଜୁନ କଣ୍ଟାଟିକୁ କାଢ଼ିଦେଇ ନିଜର ଉତ୍ତରୀୟରେ ମୋ ପାଦକୁ ଚିପିଧରି ରକ୍ତଲିପ୍ତ ପଦଟିକୁ ପରିଷ୍କାର କରିଦେଲେ । ମୋର ମନେ ପଡ଼ିଗଲା ଗାନ୍ଧାରୀଙ୍କ ଅଭିଶାପ । ମନେ ପଡ଼ିଗଲା ମହର୍ଷି ଦୁର୍ବାସାଙ୍କ ଆଶୀର୍ବାଦ । ହଁ, ମୋର ପଦତଳ ବ୍ୟତୀତ ଅନ୍ୟ ସମସ୍ତ ସ୍ଥାନ ସୁରକ୍ଷିତ । ସର୍ବତ୍ର ଦୁର୍ବାସା ମୁନିଙ୍କର ଉଚ୍ଛିଷ୍ଟାନ୍ନ ଲିପ୍ତ ହୋଇଛି ଓ ବଜ୍ରଭଳି ତାହା କଠିନ ହୋଇ କାଳର ପ୍ରବେଶ ପଥକୁ ସୁଦ୍ଧା ପ୍ରତିହତ କରିବାକୁ ସମର୍ଥ ହୋଇଛି । ତେବେ ମହାକାଳ ନିମିତ୍ତ କୌଣସି ପଥ ଉନ୍ମୁକ୍ତ ରହିବ ! ମୁଁ ତ ଅବତାରୀ ପୁରୁଷ ନୁହେଁ ! ଅବତାର ବିଶେଷ ମାତ୍ର ! ଯେଉଁ ଲକ୍ଷ୍ୟ ନେଇ ଏ ଅବତାରର ପରିକଳ୍ପନା, ସେ କାର୍ଯ୍ୟତ ପ୍ରାୟ ଶେଷ ହୋଇ ଆସିଛି । ତଥାପି ଭଂଗୁର ମଣିଷଟିର ପରିଚୟ ନେଇ ଯେତେବେଳେ ଜନ୍ମ ନେଇଛି ମହାକାଳର ପରିକଳ୍ପନାରେ ଶିହରି ଉଠିଲି ।

ଆମ୍ଭେମାନେ କୁରୁଶ୍ରେଷ୍ଠ ଭୀଷ୍ମଙ୍କ ନିକଟରେ ପହଞ୍ଚିଲୁ । ସମସ୍ତଙ୍କ ଅଲକ୍ଷ୍ୟରେ ମହାକାଳ ସୁଦ୍ଧା ନତମସ୍ତକରେ ତାଙ୍କ ପଦପ୍ରାନ୍ତରେ ଯେପରି ଠିଆ ହୋଇ ରହିଥିଲା । ତାଙ୍କର ଆଦେଶକୁ ଅପେକ୍ଷା କରି । ମୋ ଉପରେ ଦୃଷ୍ଟି ପଡ଼ିବା ମାତ୍ରେ ସଂପୂର୍ଣ୍ଣ ସମର୍ପଣ ମୁଦ୍ରାରେ ତାଙ୍କର ଚକ୍ଷୁ ଦୁଇଟି ଅଶ୍ରୁପୂରିତ ହୋଇ ଉଠିଲା, ଭକ୍ତି ତଦ୍‌ଗତ ଚିତ୍ତ ତାଙ୍କର ବିହ୍ୱଳ ହୋଇଉଠିଲା ।

ଅବ୍ୟକ୍ତ ସେ ଭାଷା - ଅଶ୍ରୁତ ସେ ସ୍ୱର ! ସେ ନ କହିଲେ ବି ମୁଁ ବୁଝିପାରେ, ମୁଁ ଓଠ ନଖୋଲିଲେ ବି ସେ ଶୁଣି ପାରନ୍ତି ।

ନା - ଯୁଧିଷ୍ଠିରଙ୍କ ପ୍ରାର୍ଥନା ନିଷ୍ଫଳ ହୋଇନାହିଁ । କୁରୁଶ୍ରେଷ୍ଠ ଭୀଷ୍ମ ବହୁ ନୀତି ଉପଦେଶ ଦେଇଥିଲେ ଧର୍ମରାଜ ଯୁଧିଷ୍ଠିରଙ୍କୁ । ରାଜନୀତି, ଧର୍ମନୀତି, ପ୍ରଜାପାଳନ,ପ୍ରଜାର ସନ୍ତୋଷ ବିଧାନ, ରାଜ୍ୟର ସମୃଦ୍ଧି, ରାଜକୋଷର ଅଭିବୃଦ୍ଧି ଏହିଭଳି ବହୁ ଜ୍ଞାନଗର୍ଭକ ଓ ଜନକଲ୍ୟାଣକର ଉପଦେଶ ସେ ଦେଇଥିଲେ । ତାଙ୍କର ବହୁଦର୍ଶୀ ଦୀର୍ଘଜୀବନର ସ୍ମୃତି ମନ୍ଥନର ପର୍ଯ୍ୟାୟରେ ନିଜକୁ ନିଜେ ଶୁଣାଇବା ଭଳି ସେ ଧିରେ ଧିରେ କହୁଥିଲେ - 'ବହୁ ବର୍ଷ ତଳେ ଜନନୀ ସତ୍ୟବତୀଙ୍କ ନିକଟରେ ପ୍ରତିଶୃତି ହୋଇଥିଲି ହସ୍ତିନା ସିଂହାସନକୁ ସୁରକ୍ଷା ଦେବା ନିମିତ୍ତ । ଏ ସୁମହାନ୍ ପୁରୁବଂଶର ବହୁ ଉତ୍‌ଥାନ - ପତନ ବହୁ ଲୋଭ ଲିପ୍‌ସାର ନାଟକ ଦେଖି ଆସିଛି । ସେହି ଦିନୁ ଅପରିପକ୍ୱମତି ବିଚିତ୍ର ବୀର୍ଯ୍ୟ ହସ୍ତିନା ସିଂହାସନରେ ଅଭିଷିକ୍ତ ହେବା ଦିନଠାରୁ ତାର ପୃଷ୍ଠଭାଗରେ ରହି ମୁଁ ସାମ୍ରାଜ୍ୟକୁ, ସିଂହାସନକୁ, ସିଂହାସନରେ ଅଧିରୁଢ଼ ବ୍ୟକ୍ତି ବିଶେଷକୁ ସୁରକ୍ଷା ଦେଇ ଆସୁଥିଲି । ପୁତ୍ର ପଣ୍ଡୁ ବି ଅସମୟରେ ଚାଲିଗଲେ । କାହିଁକି ଏ ସିଂହାସନ ଏମିତି ବାରମ୍ବାର ଅସହାୟ ହୋଇପଡ଼ିଲା କେଜାଣି ? ଧୃତରାଷ୍ଟ୍ରଙ୍କ ସମୟରେ ପୁଣି ଏମିତି ଅସୁରକ୍ଷିତ ହୋଇ ପଡ଼ିଲା ଯେ ମୋତେ ମଧ୍ୟ ନିନ୍ଦିତ ହେବାକୁ ପଡ଼ିଲା !'

ସେ ଟିକିଏ ଚୁପ୍ ରହି ଅଶ୍ରୁରୁଦ୍ଧ ସ୍ୱରରେ କହିଲେ - 'ପାପର ପଙ୍କରେ ପୋତି ହୋଇ ଗଲା ହସ୍ତିନାର ସିଂହାସନ ! ମୁଁ ନିଶ୍ଚିନ୍ତ । ଏବେ ଆଉ ସୁରକ୍ଷାର ଆବଶ୍ୟକତା ନାହିଁ ହସ୍ତିନାର ରାଜଲକ୍ଷ୍ମୀ ନିକଟରେ । ପାପ ପଙ୍କରେ ମଗ୍ନ ହୋଇଥିବା ହସ୍ତିନା ସିଂହାସନ ଓ ସାମ୍ରାଜ୍ୟକୁ ଧର୍ମରାଜଙ୍କ ପୂଣ୍ୟପ୍ରଭାହିଁ ମୁକ୍ତି ଦେଇଛି, ମୁକ୍ତି ଦେଇଛି ମୋତେ ମଧ୍ୟ । ବହୁ ଆତ୍ମୀୟ ସ୍ୱଜନ ବିୟୋଗର ଯନ୍ତ୍ରଣାରେ ଏ ବୃଦ୍ଧର ବକ୍ଷ ପଞ୍ଜର ଶତ ଖଣ୍ଡରେ ବିଦୀର୍ଣ୍ଣ ହୋଇଛି ।

ଟିକିଏ ରହି ସ୍ନେହସିକ୍ତ ଭାବେ ଗାଢ଼ ସ୍ୱରରେ ସେ କେହିଲେ - 'ଧର୍ମରାଜ ! ତୁମେ ଯେ ଆସିବ ମୁଁ ଜାଣିଥିଲି । ଗୋଟିଏ କଥା ମନେରଖ ବତ୍ସ ! ତୁମେ ତୁମର ନୁହେଁ । ଏ ରାଜମୁକୁଟ ତୁମର ନୁହେଁ, ଏ ସିଂହାସନ ବି ତୁମର ନୁହେଁ । ଏ ସମସ୍ତ ପ୍ରଜାଙ୍କର ଅମାନତ, ତୁମେ ନିଜେ ମଧ୍ୟ । ତୁମର ମନେ ଅଛି କି ନାହିଁ ଛୋଟ ଶିଶୁ ଥିଲା ବେଳେ ତୁମେ ତୁମ କନିଷ୍ଠ ଭ୍ରାତାମାନଙ୍କ ସହ ମୋ ଭବନକୁ ଆସୁଥିଲ ଗଳ୍ପ ଶୁଣିବା ପାଇଁ । ତୁମକୁ ଦିନେ ମିଥିଳାର ଅଧିପତି ରାଜର୍ଷି ଜନକଙ୍କ କଥା କହିଥିଲି, ଯିଏ ନିଜ ମସ୍ତକ ଉପରେ ସୂକ୍ଷ୍ମ ସୂତାରେ ଏକ ତୀକ୍ଷ୍ଣଧାର ଅସୀ ଝୁଲାଇ ରଖୁଥିଲେ । ତା'ର କାରଣ ସେଦିନ ତୁମେ ମୋତେ ପଚାରିଥିଲ । ମୁଁ କହିଥିଲି ସମୟ ଆସିଲେ କହିବି । ହସ୍ତିନା ନରପତି ଧର୍ମରାଜଙ୍କ ପାଇଁ ହିଁ ସେ ସମୟ ଉପସ୍ଥିତ । ସେହି ତୀକ୍ଷ୍ଣଧାର ଅସୀହିଁ ଜନକଙ୍କୁ ସଚେତନ କରିଦେଉଥିଲା, 'ମିଥିଳାୟାଂ ପ୍ରଦଗ୍‌ଧୟାଂ ନମେ ଲାଭୋ ନମେ କ୍ଷତିଃ ।'

'ମନେ ରଖିବ ଯୁଧିଷ୍ଠିର, ରାଷ୍ଟ୍ର ବ୍ୟକ୍ତିଠାରୁ ବହୁତ ବ୍ୟାପକ । ରାଷ୍ଟ୍ରର ମହତ୍ତର ସ୍ୱାର୍ଥ ନିକଟରେ ବ୍ୟକ୍ତିଗତ ସ୍ୱାର୍ଥ ଉପେକ୍ଷାର ବସ୍ତୁ । ବ୍ୟକ୍ତି ବଡ଼ ତୁଚ୍ଛ ସତ୍ତା । ଏତିକି ଜାଣିଥିଲେ ବୋଲିତ ପ୍ରଜାନୁରଂଜନ ନିମିତ୍ତ ଅଯୋଧ୍ୟା ନରେଶ ରାମଚନ୍ଦ୍ର ପ୍ରାଣସମା ସୀତାଙ୍କୁ ସୁଦ୍ଧା ବିସର୍ଜ୍ଜନ ଦେଇଥିଲେ ! ଧର୍ମରାଜ ! ରାଜ୍ୟର ଛଅଗୋଟି ଅଂଗ, ଯଥା - ଅମାତ୍ୟ, ସୁହୃଦ୍, ରାଜକୋଷ, ରାଷ୍ଟ୍ର, ଦୁର୍ଗ ଓ ସୈନ୍ୟ । ଏହି ଛଅଟି ଅଂଗ ସୁଦୃଢ଼ ରହିଲେଇ ରାଜ୍ୟ ନିରାପଦ । ଏ ନିରାପତ୍ତା ନିମିତ୍ତ ଅନେକ କ୍ଷେତ୍ରରେ ଗୋପନୀୟତା ଅପରିହାର୍ଯ୍ୟ । ବତ୍ସ ଯୁଧିଷ୍ଠିର ! ତୁମେ ଉଦାର, ମହାନୁଭବ, ସମଦର୍ଶୀ ତଥାପି ରାଜା ଭାବରେ ତୁମର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ବି ଅଛି । ସେ ମର୍ଯ୍ୟାଦାକୁ ସମ୍ମାନ ଦେବାକୁ ହେଲେ ଅନେକ କ୍ଷେତ୍ରରେ ଦୂରତ୍ୱର ବ୍ୟବଧାନ ପ୍ରତି ଧ୍ୟାନ ଦେବା ନିତାନ୍ତ ଆବଶ୍ୟକ । ଅର୍ଥାତ୍, ଭୃତ୍ୟଶ୍ରେଣୀର ଲୋକଙ୍କ ସହିତ ଖୁବ୍ ଅନ୍ତରଙ୍ଗ ମିଳାମିଶା କରିବ ନାହିଁ । ତା' ହେଲେ ସେମାନେ ତୁମକୁ ଦୁର୍ବଳ ମନେ କରି ଅନ୍ୟତ୍ର ତାହାର ସୁଯୋଗ ନେବେ । କୌଣସି ଗୋପନୀୟ କଥା ସେମାନଙ୍କ ନିକଟରେ ପ୍ରକାଶ କରିବ ନାହିଁ ।' ହଠାତ୍ ସେ କିଛି ସମୟ ଚୁପ୍ ହୋଇଗଲେ । ନୟନ ଦୁଇଟି ଲୋତକ ସିକ୍ତ ହୋଇ ଉଠିଲା । ଆକାଶକୁ ଚାହିଁ ଦୀର୍ଘଶ୍ୱାସ ଛାଡ଼ିଲେ । ତାପରେ ବହୁ ଦୂରରୁ କହିବା ଭଳି କହିଲେ - 'ଯୁଦ୍ଧ ନହେଉ ବୋଲି କେତେ ଉପଦେଶ ନଦେଇଛି ! ଭ୍ରାତୃବିବାଦ - ଗୃହ ବିବାଦର ପରିଣତି ଏପରି ଭୟଙ୍କର ହେବାର ଆଶଙ୍କାରେ ମୁଁ ବହୁ ଚେଷ୍ଟା କରିଥିଲି । ସନ୍ଧି ପ୍ରସ୍ତାବକୁ ସ୍ୱାଗତ ବି କରିଥିଲି । ଓଃ ! ଦୁର୍ଯ୍ୟୋଧନ ! ତୁମର ଉଚ୍ଚାଭିଳାଷ - ଦୂରାକାଙ୍କ୍ଷାର ପରିଣତି ଏଭଳି ଭୟାବହ ? କ'ଣ ହେଲା ସେଦିନ ? ମୋ ପାଖକୁ ଆତ୍ମଗୋପନ କରିବାକୁ ଆସିଥିଲ । ମୁଁ ତ ତୁମକୁ ସଚେତନ କରି ଦେଇଥିଲି, କେଉଁଠାରେ ଆତ୍ମଗୋପନ କରିବ ତୁମେ ? କେଉଁଠାରେ ?? ସ୍ୱର୍ଗରେ ? ଅର୍ଜ୍ଜୁନର ପିତା ବାସବ ତୁମକୁ ପ୍ରବେଶର ଅଧିକାର ଦେବ ନାହିଁ । ପାତାଳରେ ? ଅର୍ଜ୍ଜୁନର ଶଶୁର ନାଗରାଜ ତୁମକୁ ପ୍ରତିରୋଧ କରିବ । ଏ ମହୀ ମଣ୍ଡଳରେ ଯେଉଁଠିକି ଗଲେବି ପଣ୍ଡୁସୁତ ବୃକୋଦର ତୁମକୁ ଖୋଜି ବାହାର କରିବ ଓ ତା'ର ପ୍ରତିଜ୍ଞା ପୂରଣ କରିବ । ହଁ, ଦୁର୍ଯ୍ୟୋଧନ କିନ୍ତୁ ଏତେ ବେଶୀ ବ୍ୟଗ୍ର ଓ ବିବ୍ରତ ଥିଲେ ଯେ ସେ ଚତୁର୍ଦ୍ଦିଗକୁ ଦୃଷ୍ଟି ସୁଦ୍ଧା ଦେଇ ପାରିଲେ ନାହିଁ । ଭୃତ୍ୟ ଶ୍ରେଣୀର ମାଂସ ବିକ୍ରେତା - ଯେଉଁମାନେ ପ୍ରତ୍ୟହ ଭୀମସେନଙ୍କୁ ମୃଗମାଂସ ବିକ୍ରୟ କରନ୍ତି ସେଇମାନଙ୍କ ସମ୍ମୁଖରେ ଦୁର୍ଯ୍ୟୋଧନ ତାଙ୍କର ଗୋପନ ଆଶ୍ରୟସ୍ଥଳ ବ୍ୟାସସରୋବରର ରହସ୍ୟ ଉନ୍ମୋଚନ କରି ଦେଇଥିଲେ । ସେ ସମ୍ବାଦ ଭୀମଙ୍କ ନିକଟରେ ପହଞ୍ଚିବାକୁ ବିଳମ୍ବ ହେଲା ନାହିଁ ।'

ଶରଶଯ୍ୟାରେ ଶାୟିତ ଶରବିଦ୍ଧ କୁରୁପିତାମହ ଭୀଷ୍ମ ଏକାଦିକ୍ରମେ ଏତେଗୁଡ଼ିଏ କଥା କହିସାରି କ୍ଳାନ୍ତ ହୋଇ ପଡ଼ିଥିଲେ । ପ୍ରତ୍ୟହ ଏକ ନିର୍ଦ୍ଦିଷ୍ଟ ସମୟରେ ହିଁ ସେ ଶିକ୍ଷାଦାନ

କରନ୍ତି ଓ ଧର୍ମରାଜ ଏକାଗ୍ର ଚିତ୍ତରେ ଶିକ୍ଷାଗ୍ରହଣ କରନ୍ତି । ମହର୍ଷି ବ୍ୟାସ, ମୁଁ, ସାତ୍ୟକୀ, ଭୀମ, ଅର୍ଜୁନ, ନକୁଳ, ସହଦେବ, ବିଦୂର ସେହି ସମୟରେ ଉପସ୍ଥିତ ରହି ନୀତିଉପଦେଶ ଶ୍ରବଣ କରୁ । ସୂର୍ଯ୍ୟାସ୍ତ ପରେ କୁରୁଶ୍ରେଷ୍ଠ ମୌନ ହୋଇଯା'ନ୍ତି ଓ ଆମେ ସମସ୍ତେ ରାଜଭବନକୁ ଫେରି ଆସୁ । ପୁଣି ତା'ପରଦିନ ନିର୍ଦ୍ଦିଷ୍ଟ ସମୟରେ ଶରଶଯ୍ୟା ନିକଟରେ ଉପସ୍ଥିତ ହେଉ ।

ରାଜପଦ ତ୍ୟାଗର ଭିତ୍ତି ଉପରେ ପ୍ରତିଷ୍ଠିତ । ଏହାହିଁ ଥିଲା ସେଦିନ କୁରୁଶ୍ରେଷ୍ଠ ଭୀଷ୍ମଙ୍କର ଦୀକ୍ଷା । ସେ ପ୍ରସ୍ତୁତ ହୋଇଥିଲେ ବର୍ଣ୍ଣାଶ୍ରମ ଧର୍ମ ସଂପର୍କରେ କହିବା ପାଇଁ । ପିତାମହ ସେଦିନ କହୁଥିଲେ, ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୁଦ୍ର ଏହି ଚାରିଜାତିର ଚାରିପ୍ରକାର ଧର୍ମ; କିନ୍ତୁ କୌଣସି କର୍ମ ନୀଚ ନୁହେଁ । ବ୍ରାହ୍ମଣର ଧର୍ମ ଇନ୍ଦ୍ରିୟ ନିରୋଧ କରି ବେଦ ଅଧ୍ୟୟନ ଓ ଅଧ୍ୟାପନ, କ୍ଷତ୍ରିୟର ଧର୍ମ ଦାନ, ବେଦାଧ୍ୟୟନ, ପ୍ରଜାପାଳନ ଓ ଦୁଷ୍ଟଦମନ ତଥା ସମସ୍ତ ରାଜ୍ୟ ବାସୀଙ୍କ ସୁରକ୍ଷା ପ୍ରଦାନ । ବୈଶ୍ୟର ଧର୍ମ ଦାନ, ଯଜ୍ଞାନୁଷ୍ଠାନ, ବେଦାଧ୍ୟୟନ, ଧନ ସଞ୍ଚୟ, ପଶୁପାଳନ, ବାଣିଜ୍ୟଦ୍ୱାରା ରାଜ୍ୟର ସମୃଦ୍ଧି ସାଧନ । ଶୁଦ୍ରର ଧର୍ମ କେବଳ ଏହି ତିନି ଜାତିର ସେବା, ତାହାହିଁ ତା'ର ମହତ୍ ଯଜ୍ଞାନୁଷ୍ଠାନ ।

ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ଭୈକ୍ଷ୍ୟ - ବ୍ରାହ୍ମଣର ଏଇ ଚାରୋଟି ଆଶ୍ରମ । ରାଜଧର୍ମହିଁ ଶ୍ରେଷ୍ଠ ଧର୍ମ । ରାଜାର ପ୍ରଥମ କର୍ତ୍ତବ୍ୟ ଇନ୍ଦ୍ରିୟ ଦମନ ଓ ପରେ ଶତ୍ରୁ ଦମନ । ରାଜା ଯେଉଁ ଗୁପ୍ତଚର ନିଯୁକ୍ତ କରିବେ ସେ ଯେମିତି ଅନ୍ଧ, ମୂକ, ବଧିର ନ୍ୟାୟରେ ସବୁ ଦେଖିପାରେ ଏବଂ ଅତ୍ୟଧିକ କଷ୍ଟ ସହିଷ୍ଣୁ ତଥା କ୍ଷୁତ୍‌ପିପାସାକୁ ଦମନରେ ସମର୍ଥ ହୁଏ । ଅମାତ୍ୟ, ମିତ୍ର, ରାଜକୁମର, ସାମନ୍ତ ରାଜାଗଣଙ୍କୁ ଅନୁଧ୍ୟାନ କରିବା ନିମିତ୍ତ ତଥା ନଗର ଓ ଜନପଦବାସୀଙ୍କ ମତାମତ ସଂଗ୍ରହ ନିମିତ୍ତ ଭିନ୍ନ ଭିନ୍ନ ଗୁପ୍ତଚରର ଆବଶ୍ୟକତା ଅପରିହାର୍ଯ୍ୟ । ପୁଣି ଏହି ଗୁପ୍ତଚରଗଣ ପରସ୍ପର ସଂପର୍କରେ ଅଜ୍ଞ ରହିବା ଉଚିତ ଏବଂ ସେମାନଙ୍କ କ୍ରିୟା କଳାପ ଉପରେ ତୀକ୍ଷ୍ଣ ଦୃଷ୍ଟି ଦେବାକୁ ଅନ୍ୟ ବ୍ୟକ୍ତି ନିଯୁକ୍ତ ହେବା ଉଚିତ । ଶୁଳ୍କ ଆଦାୟ ନିମିତ୍ତ ବିଶ୍ୱସ୍ତ ବ୍ୟକ୍ତି ନିଯୁକ୍ତ ହେବା ଉଚିତ । ଶତ୍ରୁ ଆକ୍ରମଣର ସମ୍ବାଦ ପାଇବା ମାତ୍ରେ ସମସ୍ତ ଶସ୍ୟ ସଂଗୃହୀତ ହେବା ଉଚିତ, ଆବଶ୍ୟକ ହେଲେ ଶତ୍ରୁର ହସ୍ତଗତ ହେବା ପୂର୍ବରୁ ଶସ୍ୟ ରାଜିକୁ ପୋଡ଼ିଦେବା ଉଚିତ । ନଦୀର ସେତୁ ଭାଂଗି ଶତ୍ରୁର ପଥରୋଧ କରିବା ଉଚିତ, ପାନୀୟ ଜଳକୁ ବିଷାକ୍ତ କରିଦେବା ଉଚିତ । ଯାହା ଫଳରେ ଶତ୍ରୁ ଆକ୍ରମଣ କରିବାର ଦୁଃସାହସ ହରାଇ ବସିବ ।

ବତ୍ସ ଯୁଧିଷ୍ଠିର ! ପ୍ରଜାହିଁ ରାଜାର ସନ୍ତାନ । ଯଦି ଦୈବାତ୍ ପ୍ରଜାର ବିତ୍ତ କେହି ଅପହରଣ କରେ, ରାଜା ଅପହରଣକାରୀକୁ ଦଣ୍ଡ ଦେବା ବିଧେୟ ତଥା ପ୍ରଜାର ଅପହୃତ ବିତ୍ତର କ୍ଷତିପୂରଣ ଦେବା ଆବଶ୍ୟକ ।'

ଧର୍ମରାଜ ଏକାଗ୍ରଚିତ୍ତରେ ଶ୍ରବଣ କରୁଥିଲେ । ପିତାମହଙ୍କୁ ପ୍ରଶ୍ନ କଲେ - 'ବିଶ୍ୱାସର ପାତ୍ର କିଏ ପିତାମହ ?'

ଭୀଷ୍ମ କହିଲେ - ରାଜାର ମିତ୍ର ଚତୁର୍ବିଧ । ଯଥା - ସମାର୍ଥ, ଭଜମାନ, ସହଜ ଓ କୃତ୍ରିମ । ସମାର୍ଥ ରାଜାର ସମାସ୍କନ୍ଧ, ଭଜମାନ ରାଜାର ଅନୁଗତ, ସହଜ ରାଜାର ଆତ୍ମୀୟ ଏବଂ କୃତ୍ରିମ ହେଉଛି ଯିଏ ଅର୍ଥ ଦ୍ୱାରା ବଶୀଭୂତ । ଏତଦ୍ ଭିନ୍ନ ରାଜାର ପଞ୍ଚମ ମିତ୍ର ଓ ଶ୍ରେଷ୍ଠ ମିତ୍ର ହେଉଛି ଧର୍ମାତ୍ମା । ରାଜା ସମସ୍ତଙ୍କ ବିଶ୍ୱାସ ଭାଜନ ହୋଇ ନିଜେ କାହାରିକୁ ଏପରିକି ସନ୍ତାନକୁ ସୁଦ୍ଧା ବିଶ୍ୱାସ କରିବା ଉଚିତ ନୁହେଁ । ରାଜାର ଷଡ଼ବିଧ ଦୁର୍ଗ, ଯଥା - ମହୀଦୁର୍ଗ, ମରୁଦୁର୍ଗ, ଗିରିଦୁର୍ଗ, ବନଦୁର୍ଗ, ମନୁଷ୍ୟଦୁର୍ଗ ଓ ମୃଦ୍‌ଦୁର୍ଗ । ବିଶାଳ ସାମ୍ରାଜ୍ୟକୁ ରାଜା ସର୍ବଦା ଏକାକୀ ପରିଚାଳନା କରନ୍ତି ନାହିଁ । ପ୍ରତ୍ୟେକ ଗ୍ରାମରେ ଜଣେ ଅଧିପତି ଦଶ ଗ୍ରାମର ଏକଅଧିପତି, ଏକଶତ ଓ ଏକ ସହସ୍ର ଗ୍ରାମର ଜଣେ ଜଣେ ଅଧିପତିଙ୍କ ଦ୍ୱାରାହିଁ ରାଜା ରାଜ୍ୟର ସୁପରିଚାଳନା କରିଥା'ନ୍ତି । ସେମାନେ ପ୍ରତ୍ୟେକ ଉତ୍ପନ୍ନ ଶସ୍ୟର ଅଂଶ ପ୍ରାପ୍ତ ହୁଅନ୍ତି । ରାଜକୋଷର ଅଭିବୃଦ୍ଧି ନିମିତ୍ତ ପ୍ରଜାଙ୍କ ଠାରୁ କର ଆଦାୟ କରିବା ଉଚିତ; ମାତ୍ର କର ଭାଗରେ ପ୍ରଜାପୀଡ଼ନ ଆଦୌ ଉଚିତ ନୁହେଁ ।

ଶତ୍ରୁଜୟ କ୍ଷତ୍ରିୟର ଧର୍ମ, ମାତ୍ର ଯେଉଁଠାରେ ଶାନ୍ତି ପ୍ରତିଷ୍ଠା ସମ୍ଭବ ସେଠାରେ ଅଯଥା ରକ୍ତପାତ ବର୍ଜନୀୟ । ରଣଭୂମିରେ ଯୁଦ୍ଧର ବି ସ୍ୱତନ୍ତ୍ର ନୀତି ନିୟମ ଥାଏ । କାରଣ ଯୁଦ୍ଧ ଧର୍ମ ସାପେକ୍ଷ । ବିଦିତ ଓ ଭୀତ ଶତ୍ରୁକୁ ପ୍ରହାର କରିବା ଅନୁଚିତ । କର୍ମ ବିହୀନ, ଅସ୍ତ୍ରହୀନ ବ୍ୟକ୍ତି ସହ ଯୁଦ୍ଧ କରିବା ଆଦୌ ଉଚିତ ନୁହେଁ । ଯାହାର ଅସ୍ତ୍ର ଭଗ୍ନ, ବାହନ ହତ, ଯିଏ ଶରଣାଗତ, ତା'ପ୍ରତି ଅସ୍ତ୍ର ପ୍ରହାର ଅନୁଚିତ । ଆହତ ଶତ୍ରୁର ସୁଦ୍ଧା ଉତ୍ତମ ଚିକିତ୍ସା କରି ତାକୁ ମୁକ୍ତି ଦେବା ଉଚିତ ।

ମୁଁ ଠିକ୍ ବୁଝିପାରୁଥିଲି ଏକଥା କୁରୁଶ୍ରେଷ୍ଠ ଗତଯୁଦ୍ଧରେ ହୋଇଥିବା ରଣ-ନୀତି ଉଲ୍ଲଂଘନକୁ ଆକ୍ଷେପ କରି କହୁଥିଲେ । ଦିନପରେ ଦିନ ଭୀଷ୍ମ ବହୁନୀତି ଉପଦେଶ ଦେଉଥିଲେ । ମୁଁ ଶୁଣିଥିଲି ଶୈଶବରେ ତାଙ୍କର ଶିକ୍ଷା ଗୁରୁଥିଲେ ଦେବଗୁରୁ ବୃହସ୍ପତି ଓ ଦାନବ ଗୁରୁ ଶୁକ୍ରାଚାର୍ଯ୍ୟ । ସୁତରାଂ ସେ ମହାଜ୍ଞାନୀ ହେବା ସ୍ୱଭାବିକ । ତ୍ରେତୟା ଓ ଦ୍ୱାପର ଯୁଗର ସନ୍ଧି କ୍ଷଣରେ ଘଟିଥିବା ଏକ ଅଲୌକିକ ଘଟଣା ସଂପର୍କରେ ଆଲୋକପାତ କରିଥିଲେ । ବିପନ୍ନ ବ୍ୟକ୍ତିର ହିତାହିତ ଜ୍ଞାନ ନଥାଏ । ଏକଦା ଦ୍ୱାଦଶ ବର୍ଷ ଧରି ରାଜ୍ୟରେ ଅନାବୃଷ୍ଟି ହେତୁ ଯେଉଁଭଳି ପ୍ରାଣସଂକଟ ଉପସ୍ଥିତ ହୋଇଥିଲା ଓ ସେପରି ସଂକଟାପନ୍ନ ପରିସ୍ଥିତିରେ ମହର୍ଷି ବିଶ୍ୱାମିତ୍ର ସୁଦ୍ଧା ଚଣ୍ଡାଳ ପଲ୍ଲୀରୁ ନିଶୀଥ କାଳରେ ଶ୍ୱାନମାଂସ ଚୋରାଇ ଆଣି ଥିଲେ ଏବଂ ତାହାକୁ ପ୍ରଥମେ ଦେବଗଣଙ୍କୁ ଅର୍ପଣ କରି ତତ୍‌ପରେ ସପରିବାରେ ସେହି ଖାଦ୍ୟଗ୍ରହଣ

କରିବାରୁ ଦେବଗଣ ତଥା ଇନ୍ଦ୍ର ପରିତୃଷ୍ଟ ହୋଇଥିଲେ । ଇନ୍ଦ୍ର ବାରିବର୍ଷଣ କରିଥିଲେ ଓ ରାଜ୍ୟରୁ ଅନାଟନ ଦୂରୀଭୂତ ହୋଇଥିଲା ।'

ସେଦିନ ରାଜବଧୂ ଉତ୍ତରାଙ୍କ ଶରୀରର ଅସୁସ୍ଥତା ହେତୁ କୁରୁପିତାମହଙ୍କ ନିକଟରେ ପହଞ୍ଚିବାକୁ ଆମ୍ଭମାନଙ୍କର ବିଳମ୍ବ ହୋଇ ଯାଇଥିଲା । ଦ୍ରୋଣ ତନୟ ଅଶ୍ୱତ୍ଥାମାଙ୍କ ଅସ୍ତ୍ର ପ୍ରହାର ପରଠାରୁ ପ୍ରାୟତଃ ଉତ୍ତରା ଅସୁସ୍ଥ ରହୁଥିଲେ । ସୁଭଦ୍ରା ଓ ଦ୍ରୌପଦୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଥିବା ସତ୍ତ୍ୱେ ସେ ବଡ଼ ଦୁର୍ବଳ ଓ ଅବସନ୍ନ ଦିଶୁଥିଲେ । ରାଜବୈଦ୍ୟଙ୍କୁ ଡକାଇ ତାଙ୍କର ସୁଚିକିତ୍ସାର ବନ୍ଦୋବସ୍ତ କଲାପରେ ଧର୍ମରାଜ ଆମ୍ଭମାନଙ୍କ ସହ ଭୀଷ୍ମଙ୍କ ଶରଶଯ୍ୟା ନିକଟକୁ ବାହାରିଲେ । ସେଠାରେ ପହଞ୍ଚିବା ବେଳକୁ କୁରୁପିତାମହ ଏକ ଲୟରେ ଗଗନ ମଣ୍ଡଳର ସୂର୍ଯ୍ୟଦେବଙ୍କୁ ଚାହିଁ ରହିଥିଲେ; ଯେମିତି କାହାର ପ୍ରତିଛବି ତାଙ୍କଠାରେ ଖୋଜି ହେଉଥିଲେ । ମୋ ଉପରେ ଦୃଷ୍ଟି ପଡ଼ିବାମାତ୍ରେ ସେ ସ୍ୱତଃ ପ୍ରକୃତିସ୍ଥ ହେଲେ । ତଥାପି ତାଙ୍କର ପ୍ରଜ୍ଞାଦୀପ୍ତ ମୁଖମଣ୍ଡଳଟି ବିଷର୍ଣ୍ଣତାରେ ଆଚ୍ଛନ୍ନ ହୋଇ ଯାଇଥିଲା ।

ଧର୍ମରାଜ ଅତ୍ୟନ୍ତ ବିନୀତ ଭାବେ କହିଲେ - 'ପିତାମହ ! ତୀକ୍ଷଣ ତୀର କଣ୍ଟକିତ ଶଯ୍ୟାରେ ଶୟନ କରିଥିବା ସମୟରେ ମୁଁ ଆପଣଙ୍କୁ ବହୁ ପ୍ରଶ୍ନ କରୁଛି ଓ ଆପଣଙ୍କୁ ମରଣାନ୍ତକ ଯନ୍ତ୍ରଣା ହେଲେସୁଦ୍ଧା ମୋ ପ୍ରଶ୍ନ ସମୂହର ସମାଧାନ କରୁଛନ୍ତି ମୁଁ ସେଥିପାଇଁ କୃତଜ୍ଞ । ବିଶେଷତଃ ମୁଁ ଜାଣେ ଆପଣଙ୍କ ଜ୍ଞାନ ଅପାରବାରିଧି ସଦୃଶ । ସେଥିରୁ ଏକ ଗଣ୍ଡୂଷ ମାତ୍ର ଜଳପାନ କରିବା ପାଇଁ ମୋର ଏ ସମଗ୍ର ଜୀବନ ମଧ୍ୟ ଯଥେଷ୍ଟ ନୁହେଁ । ବାକ୍ୟାଳାପ ଦ୍ୱାରା ଆପଣ ଯେ କି ପ୍ରକାର କଷ୍ଟ ଅନୁଭବ କରୁଛନ୍ତି ତା' ମଧ୍ୟ ମୁଁ ହୃଦୟଙ୍ଗମ କରୁଛି ମାତ୍ର ଜୀବନର ଅର୍ଦ୍ଧାଧିକ କାଳ ମୋର ଭ୍ରାତାମାନଙ୍କ ସହ ବନବାସୀ ଭାବେ ଅତିକ୍ରାନ୍ତ ହୋଇଛି । ସୁତରାଂ ରାଜନୀତି ସଂପର୍କରେ ମୁଁ ନିତାନ୍ତ ଅନଭିଜ୍ଞ । ଆଉ ଅଳ୍ପ କେତୋଟି ମାତ୍ର ପ୍ରଶ୍ନର ସମାଧାନ କରି ଆପଣ ବିଶ୍ରାମ ନିଅନ୍ତୁ ପିତାମହ ! ବହୁ ଲୋକଚରିତ୍ର ସଂସ୍ପର୍ଶରେ ଆସିଥିଲେ ସୁଦ୍ଧା ସାଧୁସଜ୍ଜନ ଓ ଅସାଧୁଙ୍କୁ ଚିହ୍ନିବା ମୋ ପକ୍ଷେ ଦୁଃସାଧ୍ୟ ।

କୁରୁଶ୍ରେଷ୍ଠ ପରମ ସ୍ନେହରେ କହିଲେ - 'ବତ୍ସ ! ମନୁଷ୍ୟ ହିଁ ସବୁଠାରୁ ଜଟିଳ ଚରିତ୍ର । ତାକୁ ଚିହ୍ନିବା ଆଦୌ ସହଜ ସାଧ୍ୟ ନୁହେଁ । ତଥାପି ସାଧୁର ଅନ୍ତର ସ୍ୱଚ୍ଛ ଦର୍ପଣ ସଦୃଶ । ସତ୍‌କୁଳଜାତ, ଧାର୍ମିକ, ବିଶ୍ୱସ୍ତ, ଗୁଣୀ, ନିର୍ଲୋଭ, ଜ୍ଞାନୀ, ସତ୍ୟସନ୍ଧ, ଜିତେନ୍ଦ୍ରିୟ, ରୂପବାନ୍ ଓ କୃତଜ୍ଞ ବ୍ୟକ୍ତିହିଁ ରାଜାର ଯୋଗ୍ୟମିତ୍ର । ଜୀବନ ବିନିମୟରେ ସୁଦ୍ଧା ଯିଏ ମିତ୍ରର ବିଶ୍ୱାସୀ ହୋଇ ରହେ । ସର୍ବସ୍ୱ ତ୍ୟାଗ କରି ସର୍ବସ୍ୱାନ୍ତ ହେଲେ ସୁଦ୍ଧା ମିତ୍ରଦ୍ରୋହୀ ହୁଏ ନାହିଁ । ବତ୍ସ ଯୁଧିଷ୍ଠିର ! ଏହି ଧର୍ମ ଯୁଦ୍ଧରେ କୁନ୍ତୀପୁତ୍ର କର୍ଣ୍ଣଙ୍କର ନିଷ୍ଠା ଦେଖିଲ ତ ? କୁନ୍ତୀପୁତ୍ର ନହେଲେ ଏଭଳି ବିଶ୍ୱସ୍ତ ଓ

ନିଷ୍ଠାବାନ କିଏ ହୋଇ ପାରିବ ? ସହୋଦର ଭ୍ରାତାଙ୍କ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କଲେ; ମାତ୍ର ଦୁର୍ଯ୍ୟୋଧନ ସହ ଦ୍ରୋହ ଆଚରଣ କରିପାରିଲେ ନାହିଁ !'

ମୁଁ ଜାଣି ପାରିଲି ଏ ପର୍ଯ୍ୟନ୍ତ ଏହି କୁରୁଶ୍ରେଷ୍ଠ ଗଗନଚାରୀ ସୂର୍ଯ୍ୟଦେବଙ୍କୁ ଚାହିଁ ତେବେ ଭାଗ୍ୟ ପ୍ରବଞ୍ଚିତ କର୍ଣ୍ଣଙ୍କ କଥା ଚିନ୍ତା କରୁଥିଲେ ! ଅର୍ଜ୍ଜୁନ ବଡ଼ ଲଜ୍ଜିତ ହୋଇ ପଡ଼ିଥିଲେ ଏହି ଅକସ୍ମାତ୍ ସ୍ମୃତି ଚାରଣରେ । ଅଭିଯୁକ୍ତ ଅପରାଧୀଭଳି କୁଣ୍ଠିତ କଣ୍ଠରେ ସେ କହିଲେ - 'ମୁଁ କ'ଣ କରିଥା'ନ୍ତି ତାତ ? (ହଁ, ଅର୍ଜ୍ଜୁନ ତାଙ୍କ ପିତାମହଙ୍କୁ 'ତାତ' ବୋଲି ସମ୍ବୋଧନ କରୁଥିଲେ ଏବଂ ଏହି ସମ୍ବୋଧନ ବ୍ରହ୍ମଚାରୀ ଭୀଷ୍ମଙ୍କୁ ଏଭଳି ଆବେଗ ସିକ୍ତ କରିଥିଲା ଯେ ସେ ଅର୍ଜ୍ଜୁନ ଉପରେ ତାଙ୍କର ଅନ୍ତରର ନିଗିଡ଼ା ସମସ୍ତ ବାତ୍ସଲ୍ୟ ରସ ସହ ପ୍ରାଣଭରା ଆଶୀର୍ବାଦ ଅଜାଡ଼ି ଦେଉଥିଲେ) । ରଣ ଭୂମିରେ କ'ଣ ପ୍ରତିପକ୍ଷ ନିକଟରେ ଆତ୍ମସମର୍ପଣ କରିଥା'ନ୍ତି ? ମୁଁ ତ ଜାଣିନଥିଲି ସେ ମୋର ଜ୍ୟେଷ୍ଠଭ୍ରାତା ବୋଲି ? କିନ୍ତୁ ସିଏ ତ ଜାଣିଥିଲେ ମୁଁ ତାଙ୍କର ଅନୁଜ ? ମୋ ହାତରୁ ଅସ୍ତ୍ର କାଢ଼ି ନେଇ ମୋତେ ଆଲିଙ୍ଗନ କାହିଁକି କଲେ ନାହିଁ ? କାହିଁକି ଶେଷ ପର୍ଯ୍ୟନ୍ତ ଗୋଟାଏ କ୍ଷତର ଜ୍ୱାଳାକୁ ଏକାକୀ ସହ୍ୟ କରିଗଲେ ?'

ଅର୍ଜ୍ଜୁନ ଯେମିତି ନିଜକୁ ନିଜେ କ୍ଷମା କରି ପାରୁନଥିଲେ । ବାତାବରଣର ଗାମ୍ଭୀର୍ଯ୍ୟକୁ ଭାରମୁକ୍ତ କରିବା ଉଦ୍ଦେଶ୍ୟରେ କୁରୁଶ୍ରେଷ୍ଠ ପରିହାସ ଚପଳ କଣ୍ଠରେ କହିଲେ - 'ଓ ! ତୁମେ ତେବେ ଯାହା କିଛି କରିଛ ନିଜ ଅଜ୍ଞାତସାରରେ ? ତୁମ 'ତାତ'ର ଶରଶଯ୍ୟାହିଁ ତ ତା'ର ଉତ୍କୃଷ୍ଟ ପ୍ରମାଣ ? ତୁମେ ତେବେ ଆଉ କାହାର ଇଙ୍ଗିତରେ ଏସବୁ କରିଯାଇଛ, ନୁହେଁକି ଫାଲ୍‌ଗୁନୀ ?'

ଏକଥା କହିସାରି ସେ ମୋତେ ଏଭଳି ଅନ୍ତର୍ଭେଦୀ ଦୃଷ୍ଟିରେ ଚାହିଁ ରହିଲେ ଯେ ମୁଁ ମଧ୍ୟ ଲଜ୍ଜିତ ହୋଇ ପଡ଼ିଲି ।

କୁରୁଶ୍ରେଷ୍ଠ ବିଶ୍ୱାସଭଂଗକାରୀ, କୃତଘ୍ନ, ଲୋଭୀ ବ୍ରାହ୍ମଣ ଗୌତମର ଉପାଖ୍ୟାନ ବର୍ଣ୍ଣନା କରୁଥିଲେ । ଗୌତମ ତା'ର ସ୍ୱାର୍ଥନିମିତ୍ତ, ତୁଚ୍ଛ କ୍ଷୁଧା ନିବାରଣ ନିମିତ୍ତ ଉପକାରୀ ମିତ୍ର ବକ ରାଜଧର୍ମାକୁ ନିଦ୍ରିତ ଅବସ୍ଥାରେ କିପରି ଦଗ୍ଧ କରି ତା'ର ସୁପକ୍ୱ ମାଂସ ଓ ରାଜଧର୍ମାର ମିତ୍ର ରାକ୍ଷସ ରାଜ ବିରୁପାକ୍ଷ ପ୍ରଦତ୍ତ ସ୍ୱର୍ଣ୍ଣଭାର ସହ ପଳାୟନ କରୁଥିଲା ଓ ବିରୂପାକ୍ଷ ଦ୍ୱାରା ଧୃତ ହୋଇ ମୃତ୍ୟୁ ବରଣ କଲା, ମୃତ୍ୟୁପରେ କିପରି ଅନନ୍ତ ନର୍କଗାମୀ ହେଲା ଏହି ସବୁ ଉପାଖ୍ୟାନ ପ୍ରାଞ୍ଜଳ ଭାବେ ସେ ଆମ୍ଭମାନଙ୍କୁ କହୁଥିଲେ ।

ଏକଦା ମାଘଶୁକ୍ଳ ଅଷ୍ଟମୀର ବ୍ରାହ୍ମମୁହୂର୍ତ୍ତ । ହସ୍ତିନାର ଦୁଗ୍ଧ ଫେନନିଭ ସୁକୋମଳ ଶଯ୍ୟାରେ ସୁଦ୍ଧା ସମଗ୍ର ରାତ୍ରି ମୁଁ ଅତନ୍ଦ୍ର ରହିଥିଲି । ଯେମିତି କେଉଁଠାରେ କେହି ମୋର ଆସିବା ବାଟକୁ ମୋର ଉପସ୍ଥିତିକୁ ଚାହିଁ ରହିଛି । ଶଯ୍ୟା ଉପରେ ଆଣ୍ଠୁମାଡ଼ି ମୁଁ ବସି ରହି ଚିନ୍ତା କରିବା

ସମୟରେ ସଖା ପାର୍ଥ ମୋ ଶୟନ କକ୍ଷରେ ପହଞ୍ଚି ବିମର୍ଷ ଭାବେ କହିଲେ -'ଏମିତି କାହିଁକି ମନେ ହେଉଛି ସଖା, ଯେମିତି ମୋର କେହି ପ୍ରିୟଜନ ମୋତେ ପରିତ୍ୟାଗ କରୁଛି ?'.

ତାଙ୍କର ଏଇ ପଦକ କଥାରେ ମୋ ଆଖି ଆଗରେ ଉଦ୍‌ଭାସିତ ହୋଇଉଠିଲା ଶୁକ୍ଳକେଶ ଯୁକ୍ତ, ଶୁକ୍ଳ ଶ୍ମଶ୍ରୁ ସମନ୍ୱିତ, ଶୁକ୍ଳ ବସ୍ତ୍ର ପରିହିତ ଗୋଟିଏ ସ୍ନେହ ସଜଳ ମୁଖ । ମୁଁ ତୀବ୍ର ସ୍ୱରରେ କହିଲି - 'ଆସ ସଖା ! ଆମେ ସମସ୍ତେ ଭୀଷ୍ମଙ୍କ ଶରଶଯ୍ୟା ନିକଟକୁ ଯିବା । ସୂର୍ଯ୍ୟଙ୍କର ଦକ୍ଷିଣାୟନ ଗତି ଅତିକ୍ରାନ୍ତ ହୋଇଛି । ଦୀର୍ଘ ଅଠାବନ ଦିବସ ବ୍ୟାପି କଣ୍ଟକିତ ଶରଶଯ୍ୟାରେ ଭୀଷ୍ମ ଯେଉଁ ଲଗ୍ନର ପ୍ରତୀକ୍ଷାରେ ଥିଲେ ସେ ଲଗ୍ନ ଉପସ୍ଥିତ । ଆସ ସଖା । ଆଉ ସମୟ ନାହିଁ ।'

ହଁ ପ୍ରକୃତରେ ସମୟ ଶେଷ ହୋଇଯାଇଥିଲା । ମହାକାଳ ଯେଉଁଠି ପରାଜୟ ସ୍ୱୀକାର କରି, ଯାହାର ପଦ ପ୍ରାନ୍ତରେ ନୀରବରେ ଅପେକ୍ଷା କରି ରହିଥିଲା, ଇଚ୍ଛା ମୃତ୍ୟୁର ବରପ୍ରାପ୍ତ ସେହି ପ୍ରବାଦ ପୁରୁଷ କୁରୁପିତାମହ ଭୀଷ୍ମଙ୍କର ତିରୋଧାନର ଲଗ୍ନ ଉପସ୍ଥିତ ହୋଇଥିଲା । ସେହି ପ୍ରଚଣ୍ଡ ବୀର, ଦିଗ୍‌ବିଜୟୀ ପୁରୁଷର ମହାଯାତ୍ରାର ମହାମୁହୂର୍ତ୍ତ ଉପସ୍ଥିତ ହୋଇଥିଲା । ମୁଁ ପହଞ୍ଚିଲା ମାତ୍ରେ ଦେଖିଲି ସେ ଗତରାତ୍ରିରୁ ହୃଦୟରେ ଅହରହ ମୋର ନାମକୁ ଜପୁଥିଲେ । ମୋତେ ଦେଖି କ୍ଷୀଣ, ଦୁର୍ବଳ, ଅବଶ ସ୍ୱରରେ କହିଲେ - 'ହେ କେଶବ ! ମୋତେ ପରମଗତି ଦିଅ, ମୋର ଆଉ କିଛି ଆବଶ୍ୟକ ନାହିଁ ।'

ମୁଁ ମନ୍ତ୍ର ମୁଗ୍ଧ ଭଳି ତାଙ୍କୁ ଚାହିଁ ରହିଥିଲି । ହସ୍ତ ଉତ୍ତୋଳନ କରି ତାଙ୍କୁ ଅଭୟ ଦେଲି । ଗୋଟାଏ ସୁମହାନ୍ ଯୁଗର, ସୁଦୀର୍ଘ ଗାଥାର ଯେମିତି ଅବସାନ ହେଲା । ରୋରୁଦ୍ୟମାନ ଅର୍ଜ୍ଜୁନଙ୍କୁ ସାନ୍ତ୍ୱନା ଦେବାକୁ ମୋ ପାଖରେ ଭାଷା ନଥିଲା । ଭୀଷ୍ମଙ୍କ ଅନ୍ତ୍ୟେଷ୍ଟିକ୍ରିୟା ପାରଂପରିକ ରୀତିରେ ଶେଷ କରି ଆମ୍ଭେମାନେ ହସ୍ତିନା ଫେରିଆସିଲୁ ।

ହସ୍ତିନାରୁ କିଛିଦିନ ପାଇଁ ମୁଁ ଦ୍ୱାରକା ଆସିଲି । ଦ୍ୱାରକାରେ ପ୍ରାୟ ମୁଁ ଅତିଥି ଭଳି ରହୁଥିଲି । କୌଣସି କାର୍ଯ୍ୟରେ ରୁଚି ବା ପ୍ରବୃତ୍ତି ନଥିଲା । ଯେମିତି ସବୁକିଛି ଶେଷ ହୋଇ ଆସୁଥିଲା । ସମଗ୍ର ସଂସାରଟା ଅନାତ୍ମୀୟ ଭଳି ମନେ ହେଉଥିଲା ।

## ।। ଷଡ଼ବିଂଶତି ଗ୍ରନ୍ଥି ମୋଚନ ।।

ସେଦିନ ଅପରାହ୍ଣରେ ମୁଁ, ରୁକ୍ମିଣୀ, ସତ୍ୟଭାମା ଓ ମିତ୍ରବିନ୍ଦା ଏକତ୍ର ପଶା ଖେଳୁଥିଲୁ । ଏହି ସମୟରେ ଘଣ୍ଟାଧ୍ୱନୀ ଶୁଣି ଆମେ ସମସ୍ତେ ଉଠି ଠିଆ ହେଲୁ । ହସ୍ତିନାରୁ ଦୂତ

ଆସିଥିଲା ଶୁଭ ସମ୍ବାଦ ନେଇ, ତା' ସହ କନିଷ୍ଠ ପାଣ୍ଡବ ମଧ୍ୟ ଆସିଥିଲେ । ନାମକରଣ ଉତ୍ସବ ପାଇଁ ନିମନ୍ତ୍ରଣ ଦେବାକୁ । ହଁ, ଉତ୍ତରା ପୁତ୍ର ସନ୍ତାନର ଜନନୀ ହୋଇଥିଲେ । ସଖା ପାର୍ଥଙ୍କର ପୌତ୍ରର ନାମକରଣ । ମୋତେ ତ ହସ୍ତିନା ଯିବାକୁ ହେବ । କାରଣ ଏହି ନବଜାତକର ଆତ୍ମପ୍ରକାଶ ପଶ୍ଚାତରେ କେତେ ତିକ୍ତ ମଧୁର ସ୍ମୃତି ଜଡ଼ିତ ।

ସେଦିନ ରାତିରେ ରୁକ୍ମିଣୀ ମୋର ପାଦ ଦୁଇଟିକୁ ଆଉଁଷି ଦେଉ ଦେଉ ପ୍ରଶ୍ନ କଲେ - 'ଏଥର ପୁଣି କେତେଦିନ ପରେ ଦ୍ୱାରକା ଫେରିବ ପ୍ରଭୁ ? କେଉଁ ଆଡ଼େ ତୁମର ଯାତ୍ରା ଅଭିପ୍ରାୟ ଜାଣିବା ପରେ ମୋ ଛାତି ଭୟରେ ଥରିଉଠେ ।'

ମୁଁ ଜାଣିଥିଲି ରୁକ୍ମିଣୀଙ୍କର ଆଶଙ୍କାର ହେତୁ । ଅତୀତରେ ମୁନି ଦୁର୍ବାସାଙ୍କ ଆଶୀଷ ସ୍ନାତ ଉଚ୍ଛିଷ୍ଟ ପାୟସାନ୍ନ ମୋର ସର୍ବାଙ୍ଗରେ ପ୍ରଲିପ୍ତ ହୋଇ ସମଗ୍ର ଶରୀରକୁ ବଜ୍ରକଠିନ ଓ ସୁରକ୍ଷିତ କରିଥିଲା, କେବଳ ପଦତଳ ଦ୍ୱୟ ଅସୁରକ୍ଷିତ ଥିଲା ।

ମୁଁ ପରିହାସ ଚପଳ କଣ୍ଠରେ କହି ଉଠିଲି - 'ମୁଁ ତ ଆଉ ପାଦରେ ଚାଲି ଚାଲି ହସ୍ତିନା ଯାଉ ନାହିଁ ଯେ କୌଣସି ବନ୍ୟଜନ୍ତୁର କବଳିତ ହୋଇଯିବି ! ତା'ଛଡ଼ା ମୋର ସମଗ୍ର ଶରୀର ଯେତେବେଳେ ବଜ୍ର କଠିନ, ଏ ପଦତଳ ପାଇଁ ତୁମର ଏତେ ଚିନ୍ତା କାହିଁକି ?'

ରୁକ୍ମିଣୀ ଆଉ କିଛି କହିଲେ ନାହିଁ ।

ହସ୍ତିନାରେ ବହୁବର୍ଷ ପରେ ପୁଣି ଆନନ୍ଦର ବନ୍ୟା ଆସିଛି । କୃଷ୍ଣା ଓ ସୁଭଦ୍ରାଙ୍କ ଆନନ୍ଦର ସୀମା ନାହିଁ । କେବଳ ଉତ୍ତରା ବଡ଼ ନିସ୍ତବ୍ଧ । ପୁତ୍ର ସନ୍ତାନର ଜନନୀ ହେବାପରେ ମଧ୍ୟ ତାଙ୍କର ଦୁଃଖ ଯେମିତି ନିଜ ସ୍ଥାନରେ ଅବିଚଳ ରହିଛି । ଏକାନ୍ତରେ ତାଙ୍କୁ ପ୍ରଶ୍ନ କରିବାରୁ ସେ କହିଲେ - 'ଆସନ୍ତୁ ମାତୁଳ ! ପୁତ୍ରର ମୁଖ ଦର୍ଶନ କଲେ ଆପଣ ସବୁ ବୁଝି ପାରିବେ ।'

ପାର୍ଥଙ୍କ କକ୍ଷରେ ମୁଁ ଓ ପାର୍ଥ ବସିଥିଲୁ । ଉତ୍ତରା ତାଙ୍କର ନିଦ୍ରିତ ଶିଶୁ ପୁତ୍ର ସହ ସେଠାରେ ପହଞ୍ଚିଲେ । ଅତ୍ୟନ୍ତ ମୃଦୁ ସ୍ୱରରେ କହିଲେ - 'ଜାଗ୍ରତ ଅବସ୍ଥାରେ ସେ ଯେମିତି କାହାକୁ ଖୋଜୁଛି ।'

ମୁଁ ହସିଲି । ହଁ, ତାହାହିଁ ସତ୍ୟ । ଏହି ନବଜାତକର ଅନ୍ୱେଷଣର ଅନ୍ତ ନାହିଁ । ମାତୃ ଗର୍ଭବାସରେ ମୋ ସହ ତାର ସାକ୍ଷାତ ହୋଇ ସାରିଛି, ସେହି ଭୀଷଣ ମୁହୂର୍ତ୍ତରେ, ଅଶ୍ୱତ୍ଥାମାର ଅସ୍ତ୍ରାଘାତ ପ୍ରଭାବରେ ଯେତେବେଳେ ଏହି ଶିଶୁ ମାତୃ ଗର୍ଭର ଅନ୍ଧକାର ଗହ୍ୱରରେ ମୃତ୍ୟୁ ସହ ସଂଗ୍ରାମ କରୁଥିଲା, ସେଇ ମୁହୂର୍ତ୍ତରେ ମୋ ସହ ତା'ର ସାକ୍ଷାତ ହୋଇଛି,

ଭୂମିଷ୍ଠ ହେବା ପରେ ଏହି ଆଲୋକସ୍ନାତ ପୃଥିବୀରେ ସେ ମୋତେ ହିଁ ଅନ୍ୱେଷଣ କରୁଛି - ଏକଥା ମୁଁ ଜାଣେ ।

ମୁଁ ନବଜାତକଟିକୁ କୋଳାଗ୍ରତ କଲି । ରତ୍ନମାଳାଟିଏ ତା' କୋମଳ କଣ୍ଠରେ ଲମ୍ୱାଇ ଦେବା ମାତ୍ରେ ସେ ସୁପ୍ତୋତ୍‌ଥିତ ହୋଇ ମୋତେ ଚାହିଁ ରହିଲା ଅନେକ ସମୟ । ମୁଁ କହିଲି - 'ବତ୍ସ ! ତୁମେ କ'ଣ ଅନ୍ୱେଷଣ କରୁଛ ? ତୁମ ନାମ ତେବେ 'ପରୀକ୍ଷ' ହେଉ, 'ପରୀକ୍ଷିତ' ।

ସମଗ୍ର ଆର୍ଯ୍ୟବର୍ତ୍ତରୁ ଆସିଥିବା ପ୍ରବୀଣ ଜ୍ୟୋତିର୍ବିଦଗଣ ମଧ୍ୟ ନବଜାତକର ଏହି ନାମକରଣକୁ ସ୍ୱାଗତ କରିଥିଲେ । ପରୀକ୍ଷିତଙ୍କର ଜାତକ ଗଣନା ସମୟରେ ଯୁଧିଷ୍ଠିରଙ୍କର ଆଗ୍ରହ ଓ କୌତୁହଳ ସର୍ବାଧିକ ଥିଲା । ସେ ବାରମ୍ୱାର ନବଜାତ ଶିଶୁର ଭବିଷ୍ୟତ ସଂପର୍କରେ ପ୍ରଶ୍ନ କରୁଥିଲେ । ପଣ୍ଡିତ ଗଣକଗଣ ଉତ୍ସାହର ସହ କହୁଥିଲେ - 'ମହାରାଜ ! ଏହି ବାଳକ ଦଶରଥ ନନ୍ଦନ ଶ୍ରୀରାମଙ୍କ ସଦୃଶ ଦୃଢ଼ ପ୍ରତିଜ୍ଞ, ସତ୍ୟନିଷ୍ଠ ତଥା ଦେବ, ବ୍ରାହ୍ମଣଙ୍କ ଭକ୍ତ ରୂପେ ବିବେଚିତ ହେବେ, ଉଶୀନର ନରେଶ ଶିବିଙ୍କ ସଦୃଶ ଦାନ ପରାୟଣ ହେବେ । ଆପଣଙ୍କ ପୂର୍ବଜ ଭରତଙ୍କ ତୁଲ୍ୟ ଯଶସ୍ୱୀ ଓ ବୀର ହେବେ । ପାର୍ଥଙ୍କ ସଦୃଶ ଅପ୍ରତିଦ୍ୱନ୍ଦୀ ଧନୁର୍ଦ୍ଧର, ଅଗ୍ନିସମ ଦୁର୍ଦ୍ଧର୍ଷ, ସାଗରସମ ଗଭୀର ହେବେ । ସିଂହସମ ପରାକ୍ରମୀ ତଥା ହିମାଚଳ ସଦୃଶ ଆଶ୍ରିତ ବତ୍ସଳ ହେବେ । ରନ୍ତିଦେବଙ୍କ ସଦୃଶ ଉଦାର, ଦୈତ୍ୟରାଜ ବଳୀଙ୍କ ସଦୃଶ ସହିଷ୍ଣୁ, ଯଯାତି ସଦୃଶ ଧର୍ମଜ୍ଞ, ଆପଣଙ୍କ ସଦୃଶ ଉଦାରଚେତା ମହାନୁଭବ, ନୀତିବାନ୍ ହେବେ । ଏହି ବାଳକ ବହୁ ସଦ୍‌ଗୁଣର ଅଧିକାରୀ ହେବେ । କିନ୍ତୁ ଅସମୟରେ ଅଚାନକ ବ୍ରାହ୍ମଣ କୁମାରଙ୍କ ଦ୍ୱାରା ଶାପଗ୍ରସ୍ତ ହେବାହିଁ ଏହାଙ୍କର ଲଲାଟ ଲିପି; ଯଦିଓ ସେ ମୃତ୍ୟୁକୁ ଏକ ଯଜ୍ଞାନୁଷ୍ଠାନ ଭଳି ଗ୍ରହଣ କରି ସତ୍‌ସଂଗ ମାଧ୍ୟମରେ, ଭଗବଦ୍ ଚିନ୍ତନରେ ସମୟ ଅତିବାହିତ କରିବେ ।'

ବାଳକର ପ୍ରଶଂସା ଶୁଣି ପ୍ରତ୍ୟେକ ଏତେ ବେଶୀ ଉଚ୍ଛ୍ୱସିତ ହୋଇଯାଇଥିଲେଯେ ଗଣକଙ୍କ ବାକ୍ୟର ଶେଷାଂଶ ପ୍ରତି କାହାରି ଧ୍ୟାନ ନଥିଲା । ଏକମାତ୍ର ଉତ୍ତରା ଓ କୃଷ୍ଣା ଉଭୟେ ଦୁଃଖରେ ଭାଂଗି ପଡ଼ିଲେ । ଉତ୍ତରାଙ୍କର କମଳଦଳ ସଦୃଶ ଚକ୍ଷୁ ଦୁଇଟି ଲୋତକାପ୍ଲୁତ ହୋଇ ଉଠିଲା । ମୁଁ ତାଙ୍କୁ ଚାହିଁବା ମାତ୍ରେ ସେ ଅଶ୍ରୁରୁଦ୍ଧ ସ୍ୱରରେ କହି ଉଠିଲେ - 'ଶୁଣୁଛନ୍ତି ମାତୁଳ ? ଗୁରୁପୁତ୍ର ଅଶ୍ୱତ୍‌ଥାମାଙ୍କର ବ୍ରହ୍ମାସ୍ତ୍ର ମୋ ପୁତ୍ରର ଜନ୍ମ ପୂର୍ବରୁ ତାକୁ ଶେଷ କରିବାକୁ ଉଦ୍ୟତ ହୋଇଥିଲା । ଆପଣଙ୍କ ଦୟାରୁ ମୋ ପୁତ୍ର ଉଦ୍ଧାର ପାଇଛି । ପୁଣି କେଉଁ ବ୍ରାହ୍ମଣର ଅଭିଶାପ ?'

ଉତ୍ତରାଙ୍କ କଥା କୃଷ୍ଣାଙ୍କୁ ଏକ ତିକ୍ତ ସ୍ମୃତିଚାରଣରେ ବିବ୍ରତ କରି ପକାଇଲା ' ଏଥିପାଇଁ ସେ ଯେମିତି ନିଜକୁ ଦାୟୀ କରୁଥିଲେ । ମୁଁ ଉତ୍ତରାଙ୍କୁ ସାନ୍ତ୍ୱନା ଦେବା ପାଇଁ କହିଲି -

'କଲ୍ୟାଣୀ ! ଏହି ଭାରତବର୍ଷରେ ମା'ର ତୁଳନା ନାହିଁ । ସନ୍ତାନହିଁ ତା'ର ଚରମ ଦୁର୍ବଳତା ! ମୁଁ ଜନନୀ ଯଶୋମତୀ, କୁନ୍ତୀ, କୃଷ୍ଣା, ସୁଭଦ୍ରା ସମସ୍ତଙ୍କୁ ଦେଖିଛି; ପୁଣି ତୁମକୁ ବି ଦେଖୁଛି । କଲ୍ୟାଣୀ ! ଜନ୍ମ ହେଲେ ମୃତ୍ୟୁ ଅନିବାର୍ଯ୍ୟ । ତୁମ ଶଶୁରଗଣ ଯେତେବେଳେ ଏହି କ୍ଷୁଦ୍ର ଶିଶୁର ସମଗ୍ର ଜୀବନ ଗଣକଙ୍କ ଦୃଷ୍ଟିରେ ପରିକ୍ରମା କରିବାକୁ ଚାହୁଁଛନ୍ତି ତେବେ ଗଣକ ମାନେ ମୃତ୍ୟୁକୁ ବାଦ୍ ଦେବେ କିପରି ? କିନ୍ତୁ ଏକଥା ସତ୍ୟ ଯେ ଏହି ବାଳକ ଯୁଗ ସନ୍ଧିକ୍ଷଣରେ ଜନ୍ମ ନେଇଛି । ଦ୍ୱାପରର ଅନ୍ତିମ ପର୍ଯ୍ୟାୟ ତଥା କଳିର ପ୍ରାରମ୍ଭ ପର୍ଯ୍ୟାୟ । ଏ ଶିଶୁ ଅତ୍ୟନ୍ତ ଭାଗ୍ୟଶାଳୀ । ପୃଥିବୀମାତା ଓ ଧର୍ମର ସୁରକ୍ଷା ନିମିତ୍ତ ତୁମ୍ଭ ପୁତ୍ର କଳିକୁ ଦମନ କରିବାରେ ସମର୍ଥ ହେବ, ଏହାମଧ୍ୟ ସତ୍ୟ !'

ବିସ୍ଫାରିତ ନୟନରେ ଉତ୍ତରା ମୋତେ ଚାହିଁ ରହିଲେ ।

ପୁଣି ଏକ ଯଜ୍ଞର ଆୟୋଜନ ଚାଲିଥିଲା ହସ୍ତିନାରେ । ଅଶ୍ୱମେଧ ଯଜ୍ଞର । ଯଜ୍ଞାଶ୍ୱ ସହ ସଖା ପାର୍ଥ ସମଗ୍ର ଭାରତ ବର୍ଷ ପରିକ୍ରମା କରି ସମସ୍ତ ରାଜାଙ୍କୁ ପରାସ୍ତ କରି ଫେରି ଆସିଥିଲେ । ଚୈତ୍ର ପୂର୍ଣ୍ଣିମାରେ ଯଜ୍ଞ ଅନୁଷ୍ଠିତ ହେବାର ନିର୍ଦ୍ଦିଷ୍ଟ ହୋଇଯାଇଥିଲା । ଜ୍ୟେଷ୍ଠଭ୍ରାତା ଚୈତ୍ର ପୂର୍ଣ୍ଣିମାର ପୂର୍ବ ସଂଧ୍ୟାରେ ହସ୍ତିନାରେ ପହଞ୍ଚିବାର ପ୍ରତିଶୃତି ଦେଇଥିଲେ । ମୁଁ ଚୈତ୍ର ଦ୍ୱାଦଶୀରେ ସେଠାରେ ପହଞ୍ଚିଗଲି । ମୁଁ ସୁଭଦ୍ରା ଭବନରେ ବିଶ୍ରାମ କରୁଥିଲି । ଚତୁର୍ଦ୍ଦିଗରେ ଅଖଣ୍ଡ ଶାନ୍ତି । ହସ୍ତିନାର ରାଜମହିଷୀ ହେବା ପରଠାରୁ କୃଷ୍ଣା ତ କିପରି ନିରାସକ୍ତା, ଅନ୍ୟମନସ୍କା ହୋଇଯାଇଥିଲେ, ସଦା ହାସ୍ୟ ଲାସ୍ୟମୟୀ ସୁଭଦ୍ରା ମଧ୍ୟ ମୌନ ହୋଇଯାଇଥିଲେ । ମୁଁ ସେ କକ୍ଷରେ ଚୁପ୍‌ଚାପ୍ ବସି ରହି ଆକାଶ ଅଂଗନରେ ଚୈତ୍ର ଦ୍ୱାଦଶୀ ଚନ୍ଦ୍ରମାର ଜ୍ୟୋତ୍ସ୍ନାବିହାର ଏକଲୟରେ ଲକ୍ଷ୍ୟ କରୁଥିଲି । ପାର୍ଥ ଆସିଲେ । ସେ ମଧ୍ୟ ଉଦାସ ଦିଶୁଥିଲେ । ମୁଁ କିଛି ସମୟ ଲକ୍ଷ୍ୟ କଲି । ତାପରେ କହିଲି - 'ଯଜ୍ଞାଶ୍ୱସହ ଭାରତବର୍ଷ ପରିକ୍ରମା କରିବା ସମୟରେ ଉତ୍ତର ପୂର୍ବାଞ୍ଚଳକୁ ତ ସଖା ନିଶ୍ଚୟ ଯାଇଥିବେ । ସେ ଅଞ୍ଚଳର ସମ୍ବାଦ ସମସ୍ତ କୁଶଳତ ?'

ପାର୍ଥ ମୋର ହାତ ଦୁଇଟିକୁ ଧରି ପକାଇ କହିଲେ - 'ଅନ୍ତର୍ଯ୍ୟାମୀ ସଖା ! ତୁମକୁ କେଉଁ କଥା ଅଜଣା ଯେ ? ତଥାପି ଯଦି ପଚାରୁଛ ତେବେ ଶୁଣ, ମଣିପୁର ରାଜମାତା ମୋର ପ୍ରିୟ ବଲ୍ଲଭୀ ଚିତ୍ରାଙ୍ଗଦା ଏବଂ ନାଗ କନ୍ୟା ଉଲୁପୀଙ୍କ ସହ ସାକ୍ଷାତ ସମ୍ଭବ ହୋଇଛି, ମଣିପୁର ନରେଶ ମୋର ପୁତ୍ର ବଭ୍ରୁବାହନ ଠାରୁ ମୁଁ ପରାଜିତ ହୋଇ ଫେରିଛି !'.

- 'ପରାଜୟ ? ଗାଣ୍ଡିବଧାରୀ ଅର୍ଜ୍ଜୁନଙ୍କର ପରାଜୟ ?

ପୁତ୍ରଠାରୁ ପିତାର ପରାଜୟ ? କୁରୁକ୍ଷେତ୍ର ଯୁଦ୍ଧରେ ଯେଉଁ ବୀର ପାର୍ଥ ବହୁ

ପରାକ୍ରମୀ ଯୋଦ୍ଧାଙ୍କୁ ଧରାଶାୟୀ କରିଥିଲେ ତାଙ୍କର ପୁଣି ପରାଜୟ ? ତେବେ ଏହି ପରାଜୟର ଗ୍ଲାନି ବୋଧହୁଏ ସଖାଙ୍କୁ ବିମର୍ଷ କରି ଦେଇଛି ?'

ମୋର ଏତେଗୁଡ଼ାଏ ପ୍ରଶ୍ନ, ପୁଣି ପଚାରିବାର ଭଂଗୀରେ ପାର୍ଥ ହସି ପକାଇଲେ । ତାପରେ ଧିରେ ଧିରେ କହିଲେ - 'ନା - ନା - ସଖା ! ଏଭଳି ପରାଜୟତ ପ୍ରତ୍ୟେକ ପିତାର କାମ୍ୟ । ମୁଁ ତ ପ୍ରକୃତରେ ବଭ୍ରୁବାହନ ଠାରୁ ଯୁଦ୍ଧହିଁ ଆଶା କରୁଥିଲି । ସେ ଯେତେବେଳେ ମୋତେ ସ୍ୱାଗତ କରିବା ପାଇଁ ରାଜ୍ୟସୀମାରେ ପହଞ୍ଚିଲା ମୁଁ ତ ତାକୁ ଯୁଦ୍ଧର ଆହ୍ୱାନ ଦେଇଥିଲି । ଜାଣିନଥିଲି ଏକ ତିକ୍ତ ସ୍ମୃତିକୁ ସେ ସ୍ମରଣ କରାଇଦେବ ବୋଲି ! ଜାଣ ସଖା ? ସେ ମୋ ସହ ଯୁଦ୍ଧ କଲା । ମୋର ରଥ, ଧ୍ୱଜ, ଅଶ୍ୱ ପ୍ରତ୍ୟେକଙ୍କର ପତନ ହେଲା, ସର୍ବୋପରି ମୁଁ..... ମୋର ମଧ୍ୟ ପତନ ହେଲା ଅସଂଖ୍ୟ ଶରବିଦ୍ଧ ଅବସ୍ଥାରେ । ମୋର ଚେତନା ଲୁପ୍ତ ହେଉହେଉ ଏକ ତିକ୍ତ ସ୍ମୃତିର ପର୍ଯ୍ୟାୟ ମୋ ଚକ୍ଷୁ ସମ୍ମୁଖରେ ଉଦ୍‌ଭାସିତ ହେଲା । ବଡ଼ ଦୁଃଖଦ ତା'ର ସ୍ମୃତି ଚାରଣ । କୁରୁକ୍ଷେତ୍ରର ଦଶମ ଦିବସ ଯୁଦ୍ଧର ସେ ଦାରୁଣ ସ୍ମୃତି - ଶରବିଦ୍ଧ ପିତାମହଙ୍କର ପତନ । ସଂଜୀବନୀ ମଣିର ପ୍ରଭାବରେ ନାଗରାଜ ନନ୍ଦିନୀ ଉଲୁପୀ ମୋତେ ପୁନର୍ଜୀବନ ଦାନ କଲେ ଏବଂ କହିଲେ, ଏଥର ପାପମୁକ୍ତ ହେଲ ପ୍ରିୟତମ । ବିନା ଦୋଷରେ ସତ୍ୟବ୍ରତ, ଦୃଢ଼ ଚେତା ପିତାମହଙ୍କୁ ଚଞ୍ଚକତା କରି ପରାସ୍ତ କରିଥିଲ, ଆଜି ପୁତ୍ର ବଭ୍ରୁ ଶରଜାଲରେ ବନ୍ଦୀ କରି ତୁମ୍ଭଙ୍କୁ ପାପମୁକ୍ତ କରିଛି; କିନ୍ତୁ ସେଥିପାଇଁ ସେ କୌଣସି ଶିଖଣ୍ଡୀର ଆଶ୍ରୟ ନେଇନାହିଁ !'

ମୁଁ କିଛି ସମୟ ଚୁପ୍‌ରହି ତାପରେ କହିଲି - 'ତେବେ ଏକଥାରେ ତ ମୋର ଲଜ୍ଜିତ ହେବାର କଥା, ତୁମେ କାହିଁକି ମର୍ମାହତ ହେଉଛ ସଖା ? କାରଣ ଏ ଆକ୍ଷେପର ଇଂଗିତ ମୋରି ଆଡ଼କୁ ଉଦ୍ଦିଷ୍ଟ ଯେ ?'

ସଖା ପାର୍ଥ କରୁଣ ନୟନରେ ମୋତେ ଚାହିଁଲେ ଏବଂ କହିଲେ - 'ପିତାମହଙ୍କର ଧରାଶାୟୀ ହେବା ମୋ ପାଇଁ ଯେତିକି ମର୍ମନ୍ତୁଦ, ବୀରପୁତ୍ର ବଭ୍ରୁବାହନ ଏ ଯୁଦ୍ଧରେ ଯୋଗଦେଇ ନପାରିବା ସେତିକି ଉତ୍ପୀଡ଼କ ସଖା ! ଯଦି ସେଭଳି ଏକ ବୀର ପୁତ୍ର ଏ ଯୁଦ୍ଧରେ ଯୋଗ ଦେଇଥା'ନ୍ତା ତେବେ ହୁଏତ ମୋର ଅଭିମନ୍ୟୁ ଏଭଳି ଅକାଳରେ ମୃତ୍ୟୁବରଣ କରିନଥାନ୍ତା !'

ମୁଁ ପାର୍ଥଙ୍କୁ ସ୍ମିତ ହସି ଚାହିଁ ରହିଲି । ପୁନର୍ବାର ଆସକ୍ତି, ମାୟା, ମୋହ ଗ୍ରାସ କରୁଛି ପାର୍ଥଙ୍କୁ । ମୁଁ ତାଙ୍କୁ ସଚେତନ କରି କହିଲି - 'ସଖା ! ସେପରି କହି ବୀର ଗତି ପ୍ରାପ୍ତ ହୋଇଥିବା ଯଶସ୍ୱୀ ମାନଙ୍କର ଅପମାନ କର ନାହିଁ । କେବଳ ବଭ୍ରୁବାହନ କାହିଁକି ? ଅଭିମନ୍ୟୁ, ଇରାବାନ୍,

ଘଟୋତ୍କଚ, ପ୍ରତିବିନ୍ଧ୍ୟ, ଶ୍ରୁତସୋମ, ଶତାନିକ ଆଦି ଦ୍ରୌପଦୀ ତନୟଗଣ ଏମାନେ ସମସ୍ତେ କ'ଣ ବୀର ନଥିଲେ ? ବଭ୍ରୁବାହନ ଯୁଦ୍ଧରେ ଯୋଗ ଦେଇଥିଲେ କ'ଣ ହୋଇଥାନ୍ତା ସେ ବିଷୟ ଚିନ୍ତା କରି ଲାଭ କ'ଣ ? ବୃକୋଦର ତନୟ ବେଲାଳସେନ ମଧ୍ୟ କେତୋଟି ମୁହୂର୍ତ୍ତରେ ଯୁଦ୍ଧ ଶେଷ କରି ପାଣ୍ଡବଙ୍କୁ ବିଜୟୀ କରିବାର ସଂକଳ୍ପ କରିଥିଲା, ସ୍ୱପ୍ନ ଦେଖିଥିଲା । ହେଲେ ପାରିଲାକି ? ବିଧିର ବିଧାନ ବଡ଼ ବିଚିତ୍ର ସଖା !'

ମୋର ଏ ରହସ୍ୟମୟ କଥା ତଥା ଚିରାଚରିତ ରହସ୍ୟଭରା ହସ, ଗମ୍ଭୀର ସ୍ୱର - ଏସବୁ ଲକ୍ଷ୍ୟ କରି ପାର୍ଥ ଆଉ କିଛି କହି ପାରିଲେ ନାହିଁ । ମୁଁ ତାଙ୍କ କାନ୍ଧରେ ହାତରଖି ସସ୍ନେହରେ କହିଲି - 'ଅଭିମନ୍ୟୁ ମୋର ମଧ୍ୟ ଭାଗୀନେୟ । ତୁମେ କ'ଣ ଭାବୁଛ ତା'ର ଅକାଳ ବିୟୋଗ ମୋତେ ମର୍ମାହତ କରି ନାହିଁ ? ଇରାବାନ୍, ଦ୍ରୌପଦୀଙ୍କ ପଞ୍ଚପୁତ୍ରଙ୍କର ଅକାଳ ମୃତ୍ୟୁ ମୋତେ କାତର କରିନାହିଁ ? ଘଟୋତ୍କଚର ମୃତ୍ୟୁ ପାଇଁ ଦ୍ୱିତୀୟ ପାଣ୍ଡବ ମୋତେ ଦାୟୀ କଲେ; ମାତ୍ର ମୋର ନିରୁପାୟତାକୁ କେହି ବୁଝିଲେ ନାହିଁ । ବେଲାଳସେନକୁ ମୁଁ ନିଜେ....'

ନାଃ ! ଆଉକିଛି କହି ପାରିଲି ନାହିଁ, କଣ୍ଠ ରୁଦ୍ଧ ହୋଇଗଲା । ମୋ ଦୁର୍ବଳତା ପ୍ରକାଶ ପାଇବା ପୂର୍ବରୁ ମୁଁ ନୀରବ ହୋଇଗଲି ।

ସୁବାସିତ ତାମ୍ବୁଳ ହସ୍ତରେ କୃଷ୍ଣା ପ୍ରବେଶ କଲେ । ମୁଁ ତାଙ୍କ ହସ୍ତରୁ ତାମ୍ବୁଳଟିଏ ଓ ଆମଳକୀ ନେଇ ସହାସ୍ୟ ବଦନରେ କହିଲି - 'ରାଜସୂୟ ଯଜ୍ଞରେ ମୋତେ ଯେଉଁ ଚଉଷଠୀ ମସଲାଯୁକ୍ତ ତାମ୍ବୁଳ ଦେଇଥିଲ, ଏଥର ଯଜ୍ଞରେ ମଧ୍ୟ ସେଇଭଳି ସୁବାସିତ ତାମ୍ବୁଳ ମୋତେ ଦେବ ଯାହା ମୋର ଅନ୍ତରକୁ ସୁଦ୍ଧା ମହକାଇ ଦେବ !'

ନା - କୃଷ୍ଣା ଆଉ ସେ କୃଷ୍ଣା ନଥିଲେ ।

ନୀଳୋତ୍ପଳ ଦଳ ସଦୃଶ ତାଙ୍କର ନୟନ ଦୁଇଟି ଅଶ୍ରୁଭାରରେ କରୁଣ ହୋଇଉଠିଲା । ସେ କାତର କଣ୍ଠରେ ଯୋଡ଼ ହସ୍ତରେ କହି ଉଠିଲେ -'ନା -ନା -କେଶବ ! ରାଜସୂୟ ଯଜ୍ଞର ସେ ବର୍ଣ୍ଣାଢ଼୍ୟ ଆଡ଼ମ୍ବରହିଁ ଆମ ପାଇଁ ଦୁର୍ଭାଗ୍ୟ ଡାକି ଆଣିଥିଲା । ତାପରେ ହିଁ ଆରମ୍ଭ ହୋଇଥିଲା ମୋର ଚରମ ଲାଂଛନାର ଜଘନ୍ୟ ନାଟକ, ତ୍ରୟୋଦଶ ବର୍ଷର ଦୀର୍ଘ ପ୍ରତୀକ୍ଷା, ସେଇ ରକ୍ତ ସ୍ନାନ...... କୁରୁକ୍ଷେତ୍ରର ସେହି ସୁବୃହତ୍ ପରିକଳ୍ପନା ପଶ୍ଚାତରେ ସେହି ରାଜସୂୟ ଯଜ୍ଞ ହିଁ ତ ବୀଜ ବପନ କରିଥିଲା ଇର୍ଷ୍ୟା ଆଉ ବିଦ୍ୱେଷର ...... ସେହି ଭ୍ରାତୃ ବିବାଦ ଶେଷରେ ଭୟଙ୍କର ଯୁଦ୍ଧର ରୂପ ନେଲା । କେଶବ ! ମୁଁ ସବୁ ହରେଇଲି ...... ମୋର ବୃଦ୍ଧ ପିତା, ଭ୍ରାତା, ପୁତ୍ର ସମସ୍ତଙ୍କୁ ହରାଇଲି । ଏ ଯଜ୍ଞରେ ସେଥିପାଇଁ ମୋରି ନିର୍ଦ୍ଦେଶରେ ସମସ୍ତ

ପ୍ରକାର ରାଜସିକ ଓ ତାମସିକ ଉପଚାର ନିଷିଦ୍ଧ ହୋଇଛି । ସାତ୍ତ୍ୱିକ ପରିବେଶରେ ଏ ଯଜ୍ଞ ସଂପନ୍ନ ହେଉ । ମୁଁ ଆଉ କିଛି ଚାହେଁ ନାହିଁ । କେବଳ ଆମ କୂଳ ପ୍ରଦୀପ ପରୀକ୍ଷିତ ବଞ୍ଚିରହୁ । ସେ ହିଁ ମୋର ଅନ୍ତିମ ଆଶା ଭରସା !'

ଅଶ୍ୱମେଧ ଯଜ୍ଞର ସମାରୋହ ଆରମ୍ଭ ହୋଇଯାଇଥିଲା । ପଣ୍ଡୁନନ୍ଦନଗଣ ସର୍ବଦା ଦାନପରାୟଣ । ବିଧି ପୂର୍ବକ ଯଜ୍ଞ କାର୍ଯ୍ୟ ଅନୁଷ୍ଠିତ ହେବା ସହିତ ଅକୁଣ୍ଠିତ ଚିତ୍ତରେ ପଣ୍ଡୁନନ୍ଦନ ଗଣ ଦାନ କରୁଥିଲେ ଅଜସ୍ର ସ୍ୱର୍ଣ୍ଣ ମୁଦ୍ରା, ମଣି, ରତ୍ନ ତଥା ଶସ୍ୟ ସମ୍ଭାର, କାଞ୍ଚନମାଳା ବିଭୂଷିତ ଗଜ, ହୟ ଇତ୍ୟାଦି । ଯଜ୍ଞ ସମାପ୍ତ ପ୍ରାୟ । ଏହି ସମୟରେ ଏକ ଅଭାବିତ ଘଟଣା ଘଟିଲା । ଏକ ନକୁଳ ଯଜ୍ଞ ସ୍ଥଳିରେ ପ୍ରବେଶ କଲା, ଯାହା ଶରୀରର ତିନି ଚତୁର୍ଥାଂଶ ସୁବର୍ଣ୍ଣ ମଣ୍ଡିତ, ଏକମାତ୍ର ତା'ର ପୁଚ୍ଛ ସୁବର୍ଣ୍ଣଶୂନ୍ୟ । ଏକ ଚତୁର୍ଥାଂଶ ସୁବର୍ଣ୍ଣ ବିହୀନ । ସେହି ନକୁଳଟି ଯଜ୍ଞ ଭୂମିରେ ବାରମ୍ବାର ଧୂଳିରେ ଗଡ଼ିଲା । ତା'ର ଏତାଦୃଶ ବ୍ୟବହାର ବଡ଼ ରହସ୍ୟମୟ ମନେ ହେଲା । ଧର୍ମରାଜ ଯୁଧିଷ୍ଠିର ଓ ମୁଁ ଉଭୟେ ବହୁ ଭାଷାବୀତ୍; ଏପରିକି ପଶୁ - ପକ୍ଷୀଙ୍କ ଭାଷାମଧ୍ୟ ଆମର ବୋଧଗମ୍ୟ ହୁଏ । ମୁଁ ଧର୍ମରାଜଙ୍କୁ ଅନୁରୋଧ କଲି ତା'ର ଅଭିପ୍ରାୟ ଜାଣିବା ପାଇଁ । ସେ ଯାହା କହିଲା ତାହା ଶୁଣି ଧର୍ମରାଜ ତଟସ୍ଥ ହୋଇଗଲେ । ନକୁଳଟି ଉତ୍ତେଜିତ ଭାବେ ଧର୍ମରାଜ ଯୁଧିଷ୍ଠିରଙ୍କୁ ଧିକ୍‌କାର କରି କହୁଥିଲା - 'ଧିକ୍ ତୁମର ଅଶ୍ୱମେଧ ଯଜ୍ଞ । କୁରୁକ୍ଷେତ୍ରର ସେହି ଭିକ୍ଷାଜୀବୀ ଦରିଦ୍ର ବ୍ରାହ୍ମଣର ଅତିଥି ସତ୍କାର ତୁଳନାରେ ତୁମର ଏ ମହାନ୍ ଯଜ୍ଞ ସମକକ୍ଷ ନୁହେଁ । ମୁଁ ଭୁଲ ଶୁଣିଥିଲି । ସମଗ୍ର ଆର୍ଯ୍ୟାବର୍ତ୍ତରେ ପ୍ରଚାରିତ ହୋଇଛି ଯେ ଧର୍ମରାଜ ଯୁଧିଷ୍ଠିରଙ୍କ ଅଶ୍ୱମେଧ ଯଜ୍ଞ ନିମିତ୍ତ ଅଜସ୍ର ଆସୁଛି, ଅଯାଚିତ ଭାବେ ଅକୁଣ୍ଠିତ ଦାନ ମଧ୍ୟ କରାହେଉଛି । ଏଭଳି ଏକ ପୂଣ୍ୟ ଯଜ୍ଞ ସ୍ଥଳିରେ ମୋର ଶରୀରର ଅବଶିଷ୍ଟ ଅଂଶକୁ କାଞ୍ଚନ ମୟ କରିବା ଲୋଭରେ ଏଠାକୁ ଆସିଥିଲି । ମାତ୍ର ମୋ ଶରୀରର ଅବଶିଷ୍ଟାଂଶ ତ କାହିଁ କାଞ୍ଚନମୟ ହେଲା ନାହିଁ ? ତେବେ ବ୍ରାହ୍ମଣର ସେହି ଯବଶକ୍ତୁ ଦାନ ତୁଳନାରେ ଏ ଯଜ୍ଞ କିଛି ନୁହେଁ ।'

ମୁଁ ତା'ର ନୀଳବର୍ଣ୍ଣର ଚକ୍ଷୁକୁ କିଛି ସମୟ ଚାହିଁଲି । କୌତୁକ ସମ୍ବରଣ କରି ନପାରି ପ୍ରଶ୍ନ କଲି - 'କେଉଁ ବ୍ରାହ୍ମଣ ? କାହାକୁ କେଉଁଠାରେ କିପରି ଯବଶକ୍ତୁ ଦାନ କରି ତୁମ ଦୃଷ୍ଟିରେ ଏପରି ମହନୀୟ ହୋଇଛି ନକୁଳ ଶ୍ରେଷ୍ଠ ସେ କଥା ବିସ୍ତାରିତ ଭାବେ କୁହ !' ସେ ପ୍ରତ୍ୟେକଙ୍କୁ କିଛି ସମୟ ଚାହିଁଲାପରେ କହିଲା 'କୁରୁ କ୍ଷେତ୍ର ନିକଟବର୍ତ୍ତୀ ଗ୍ରାମର ଜଣେ ଦରିଦ୍ର ବ୍ରାହ୍ମଣ । ଏକଦା ଦୁର୍ଭିକ୍ଷ ସମୟରେ ତା'ର ଦୁର୍ଦ୍ଦଶାର ସୀମା ରହିଲା ନାହିଁ । ବହୁ କଷ୍ଟରେ ଅଳ୍ପ ମାତ୍ର ଯବ ସଂଗ୍ରହ କରି ତାହାକୁ ଛତୁରେ ପରିଣତ କରି ସେଦିନ ତା'ର ପତ୍ନୀ, ପୁତ୍ର, ଓ ସନ୍ତାନ ସମ୍ଭବା ପୁତ୍ର ବଧୂଙ୍କୁ ଆହାର ରୂପେ ଦେବାକୁ ମନସ୍ଥ କରି ଯେତେବେଳେ ସେହି ଅଳ୍ପ ମାତ୍ର ଯବଶକ୍ତୁକୁ ବଣ୍ଟନ

କରି ସେମାନେ ଖାଦ୍ୟ ଭାବେ ଗ୍ରହଣ କରିବାକୁ ଗଲେ ଠିକ୍ ସେହି ସମୟରେ ଜଣେ କ୍ଷୁଧାର୍ତ୍ତ ଅତିଥି ଦରିଦ୍ର ବ୍ରାହ୍ମଣଙ୍କୁ କିଛି ଖାଦ୍ୟ ମାଗିଲେ । ଯଦିଓ ବ୍ରାହ୍ମଣ ପରିବାରର ପ୍ରତ୍ୟେକ ସଦସ୍ୟ ସେହି ମୁହୂର୍ତ୍ତରେ ଖାଦ୍ୟ ବିନା ପ୍ରାଣ ତ୍ୟାଗ କରିବା ନିଶ୍ଚିତ ଥିଲା । ତଥାପି ଅତିଥି ସତ୍କାର ଉଦ୍ଦେଶ୍ୟରେ ପ୍ରତ୍ୟେକ ନିଜ ନିଜ ଭାଗର ଶକ୍ତୁ ଅତିଥିଙ୍କୁ ଅର୍ପଣ କରିଥିଲେ । ଅତିଥି ସତ୍କାର ନିମିତ୍ତ ଜୀବନପାତ କରିବାକୁ ସୁଦ୍ଧା ସେମାନେ କାତର ହୋଇନଥିଲେ । ଏହି ମହତ୍‌ଦାନ ଫଳରେ ଦିବ୍ୟଯାନ ଆରୋହଣ କରି ଦିବ୍ୟ ପୁଷ୍ପରେ ମଣ୍ଡିତ ହୋଇ ସେମାନେ ସମସ୍ତେ ସ୍ୱର୍ଗ ଭୁବନକୁ ଯାତ୍ରା କରିଥିଲେ । ସେହି ଦିବ୍ୟ ମୁହୂର୍ତ୍ତର ସାକ୍ଷୀ ମୁଁ ଥିଲି । ଅତିଥି ସ୍ୱୟଂ ଧର୍ମଥିଲେ । ଦାନର ପ୍ରଭାବରେ ସେହି ଭୂମି ସେତେବେଳେ ଏପରି ପବିତ୍ର ହୋଇଥିଲା ଯେ ସେହି ସିକ୍ତ ଯବଶକ୍ତୁ, ଦିବ୍ୟପୁଷ୍ପ ଓ ଧୂଳିରେ ଭୂଲୁଣ୍ଠିତ ହେବାମାତ୍ରେ ମୋ ଶରୀରର ତିନି ଚତୁର୍ଥାଂଶ କାଞ୍ଚନମୟ ହୋଇଯାଇଥିଲା । ଅବଶିଷ୍ଟାଂଶକୁ କାଞ୍ଚନମୟ କରିବା ଉଦ୍ଦେଶ୍ୟରେ ମୁଁ ବହୁ ଯଜ୍ଞସ୍ଥାନ, ତପୋଭୂମିକୁ ଯାଉଛି ଓ ହତାଶ ହୋଇ ଫେରୁଛି । ଧର୍ମରାଜ ଯୁଧିଷ୍ଠିରଙ୍କ ଦ୍ୱାରା ଏହି ଅନୁଷ୍ଠିତ, ଏହି ଅଶ୍ୱମେଧ ଯଜ୍ଞ ମଧ୍ୟ ମୋ ଆଶାପୂରଣ କରି ପାରିଲା ନାହିଁ । ଏବେ ମୋର ହୃଦ୍‌ବୋଧ ହେଉଛି ଶତ ସହସ୍ର ଅଶ୍ୱମେଧ ଯଜ୍ଞ ତୁଳନାରେ ସେହି ଦରିଦ୍ର ବ୍ରାହ୍ମଣର ମହତ୍‌ଦାନ ବହୁ ଗୁଣରେ ଉତ୍କୃଷ୍ଟ !'

ସେ ଏତିକି କହି ଚୁପ୍ ହୋଇଗଲା । ଧର୍ମରାଜ ଯୁଧିଷ୍ଠିର ଲଜ୍ଜିତ ଭାବେ ଅଧୋବଦନରେ ବସି ରହିଲେ । ଦ୍ୱିତୀୟ ପାଣ୍ଡବ ଭୀମସେନ ମୋତେ ଚାହିଁ କହିଲେ - 'ବାସୁଦେବ ! ଏ ନକୁଳ ମାୟାବୀ ମନେ ହେଉଛି । ଧୂଳି ଧରାରେ ସ୍ୱର୍ଣ୍ଣମୟଜୀବ କିପରି ସମ୍ଭବ ? ଏହା ଅଦ୍‌ଭୁତ ରହସ୍ୟ ନୁହେଁ କି ? ତ୍ରେତା ଯୁଗରେ ଶ୍ରୀରାମଚନ୍ଦ୍ର ସ୍ୱର୍ଣ୍ଣମୃଗ ଧୂଳି ଧରାରେ ସମ୍ଭବ ନୁହେଁ ଜାଣିମଧ୍ୟ ତା'ର ପଶ୍ଚାଦ୍ ଧାବନ କରିଥିଲେ । ମା' ଜାନକୀ ସ୍ୱର୍ଣ୍ଣମୃଗର ପ୍ରଲୋଭନରେ ଭୟଙ୍କର ବିପଦକୁ ଡାକି ଆଣିଥିଲେ । ପୁଣି ସେହି ସୁବର୍ଣ୍ଣ !'

ମୁଁ ତାଙ୍କୁ ପ୍ରବୋଧନା ଦେଇ କହିଲି - 'ସେ କ୍ଷେତ୍ରରେ ସ୍ୱର୍ଣ୍ଣମୃଗ ପାଇଁ ମା' ଜାନକୀ ପ୍ରଲୁବ୍ଧା ହୋଇଥିଲେ ଏବଂ ଶ୍ରୀରାମଚନ୍ଦ୍ର ପତ୍ନୀ ପ୍ରେମର ପରାକାଷ୍ଠା ପ୍ରଦର୍ଶନ ପାଇଁ ମୃଗ ପଛରେ ଧାଇଁ ଥିଲେ । ଏ କ୍ଷେତ୍ରରେ ଏହି ସ୍ୱର୍ଣ୍ଣମୟ ମୃଗ ତ ନିଜେ ହତାଶ ହୋଇ ଫେରି ଯାଉଛି !'

ମୋ କଥାର ଯୌକ୍ତିକତା ଭୀମସେନ ଉପଲବ୍ଧି କଲେ । ନକୁଳଟି ଦ୍ରୁତ ବେଗରେ ଚାଲି ଯାଉ ଯାଉ ମୁଁ ତା'ର ପଥ ରୋଧ କରି କହିଲି - 'ସତ କୁହତ ତୁମେ କିଏ ?'

ସେ ତା'ର ନୀଳ ନୀଳ ଚକ୍ଷୁ ତୋଳି ମୋତେ କିଛି ସମୟ ଚାହିଁଲା ଓ କହିଲା - 'ଅନ୍ତର୍ଯ୍ୟାମୀ ! ତୁମେ କ'ଣ ସତରେ ଜାଣିନାହଁ ମୋର ପରିଚୟ ?'

ମୁଁ ତା'ର ସେହି ଧୂଳି ଧୂସରିତ ଦେହରୁ ଧୂଳି ଝାଡ଼ି ପରିଷ୍କାର କରୁ କରୁ ସସ୍ନେହରେ କହିଲି - 'ଏବେ ଶାପମୁକ୍ତ ହୋଇଗଲ ତ ବନ୍ଧୁ ?'

ସେ ସମ୍ମତି ଜଣାଇ ଦ୍ରୁତ ବେଗରେ ଅଦୃଶ୍ୟ ହୋଇଗଲା । ପାର୍ଥ - ପାର୍ଥହିଁ ମୋର ଏହି ରହସ୍ୟଘନ ମୁହୂର୍ତ୍ତ ଗୁଡ଼ିକୁ ନିରୀକ୍ଷଣ କରନ୍ତି, ସମୀକ୍ଷା କରନ୍ତି । ସେ ମୋ ପାଖକୁ ଆସି ମୃଦୁ ସ୍ୱରରେ ପ୍ରଶ୍ନ କଲେ - 'ଯାମଳା-ର୍ଜୁନ ବୃକ୍ଷ, କୁବୁଜା ପରେ ଇଏ ପୁଣି କାହାର ଶାପମୋଚନ ସଖା ?'

ମୁଁ କହିଲି - 'ସ୍ୱୟଂ ଧର୍ମ । ଅଭିଶପ୍ତ ଧର୍ମ । ଧର୍ମ ଏକଦା ମହର୍ଷି ଜମଦଗ୍ନିଙ୍କ ଆଶ୍ରମରେ କ୍ରୋଧୀ ରୂପରେ ପହଞ୍ଚି ପିତୃଗଣଙ୍କ ଉଦ୍ଦେଶ୍ୟରେ ସଂଗୃହୀତ ହୋଇଥିବା ଦୁଗ୍ଧ ଭାଣ୍ଡକୁ ନଷ୍ଟ କରିଥିଲେ । ଜମଦଗ୍ନି କ୍ଷୁର୍ଣ୍ଣ ହେଲେ ସୁଦ୍ଧା କ୍ରୋଧାନ୍ୱିତ ହୋଇ ପାରିନଥିଲେ । ଧର୍ମଙ୍କ ପରିଚୟ ପାଇବା ପରେ ସେ ତାଙ୍କୁ ପିତୃଗଣଙ୍କ ନିକଟକୁ ପଠାଇଥିଲେ । ସେହି ପିତୃଗଣଙ୍କ ଦ୍ୱାରା ଧର୍ମ ଅଭିଶପ୍ତ ହୋଇ ଧର୍ମ ବିରାଜିତ ହେଉଥିବା ଯଜ୍ଞ ଭୂମି ତପୋଭୂମି ଆଦି ନକୁଳ ବେଶରେ ପରିକ୍ରମା କରୁଥିଲେ ଧର୍ମରାଜ ଯୁଧିଷ୍ଠିରଙ୍କ ସନ୍ଧାନ ପାଇବା ନିମିତ୍ତ । ଧର୍ମରାଜଙ୍କ ସମ୍ମୁଖରେ ତାଙ୍କୁ ନିନ୍ଦା କଲେ ତାଙ୍କର ଶାପମୁକ୍ତି ସମ୍ଭବ ।'

ଭୀମସେନ ଉଦାତ୍ତ କଣ୍ଠରେ ହସି ପକାଇ କହିଲେ - 'ଏଇସବୁ ଗହନ କଥା ବାସୁଦେବ ହିଁ ଜାଣନ୍ତି । ସବୁ କଥା ଓ କାର୍ଯ୍ୟର ଗୋଟିଏ ଭିନ୍ନ ଅର୍ଥ ଥିବ ତାଙ୍କ ପାଖରେ ।'

ଭୀମସେନଙ୍କର କଥା କହିବାର ଭଂଗୀରେ ସମସ୍ତେ ହସିପକାଇଲେ । ଲକ୍ଷ୍ୟକଲି, ଏକମାତ୍ର ଧୃତରାଷ୍ଟ୍ର ବିଷର୍ଣ୍ଣ ବଦନରେ ଗମ୍ଭୀର ହୋଇ ବସିଥା'ନ୍ତି । ଭୀମସେନଙ୍କ ଉପସ୍ଥିତିରେ ସେ ଆଦୌ କୌଣସି ହାସ ପରିହାସରେ ଭାଗ ନେଇ ପାରୁନଥା'ନ୍ତି । ଔଷଧ କଟୁ ହେଲେ ସୁଦ୍ଧା ଗ୍ରହଣୀୟ ସେହି ନ୍ୟାୟରେ ସେ କେବଳ ଭୀମସେନଙ୍କୁ ସହ୍ୟ କରୁଥା'ନ୍ତି ମାତ୍ର । ଭୀମସେନ ଓ ଧୃତରାଷ୍ଟ୍ର ଅତୀତର ସେହି ବିଦ୍ୱେଷକୁ ଯଦି ହୃଦୟରେ ଏଯାବତ୍ ପୋଷଣ କରିଥା'ନ୍ତି ତେବେତ ତାହା ସାଂଘାତିକ !

ଯଦିଓ ମୁଁ ଜାଣିଥିଲି ଭୀମସେନ ଅତ୍ୟନ୍ତ ସରଳ ଓ ନିଷ୍କପଟ । ହୃଦୟର କୌଣସି ଭାବାବେଗକୁ ସେ ଗୋପନ ରଖି ପାରନ୍ତି ନାହିଁ । ତାଙ୍କର ଅନ୍ୟ ଭ୍ରାତାଙ୍କ ଭଳି ହୃଦୟର ଦୁଃଖଭାରକୁ ଗୋପନ ରଖି ସେ ଓଠରେ ହସ ଫୁଟାଇବାକୁ ଯେମିତି ଅସମର୍ଥ, ଆନନ୍ଦା ବେଗକୁ ପ୍ରକାଶ ନକରି ମୌନ ରହିବାରେ ସେ ସେହିଭଳି ଅକ୍ଷମ ।

ଶୈଶବରୁ ମୁଁ ତାଙ୍କୁ ଲକ୍ଷ୍ୟ କରିଆସିଛି । ଆନନ୍ଦା ବେଗରେ ସେ ଯେମିତି ଅଧୀର, ଆଘାତର ପୀଡ଼ା ତାଙ୍କୁ ସେତିକି ମର୍ମାହତ କରିଥାଏ । ଜନନୀ କୁନ୍ତୀଙ୍କ ଠାରୁ ଶୁଣିଛି ପବନ

ନନ୍ଦନ ଭୀମସେନ ଜନ୍ମରୁହିଁ ବଳିଷ୍ଠ, ସେଇଥିପାଇଁତ ଯାଦବଙ୍କର ବିପନ୍ନ ମୁହୂର୍ତ୍ତରେ ତାଙ୍କୁ ହସ୍ତିନାରୁ ଡକେଇ ଆଣି ଶାମ୍ବ ପ୍ରସୂତ ଲୌହ ମୂଷଳ ଧରାଇ ଦେଇଥିଲି ! ଥାଉ - ସେ କଥା ପରେ । ରୋରୁଦ୍ୟମାନ ନବଜାତକ ଭୀମସେନଙ୍କ ପଦାଙ୍ଗୁଳିର ଆଘାତରେ ଶତଶୃଙ୍ଗ ଗିରି ଖଣ୍ଡ ବିଖଣ୍ଡ ହୋଇ ଯାଇଥିଲା, ଯେଉଁଥିପାଇଁ ଶତଶୃଙ୍ଗ ଦ୍ୱାରା ଅଭିଶପ୍ତ ହୋଇଥିଲେ ଦ୍ୱିତୀୟ ପାଣ୍ଡବ- ପହିଲୁ ଯୁଦ୍ଧରେ ପରାଜିତ ହେବାର ଅଭିଶାପ । ପଣ୍ଡୁଙ୍କ ମୃତ୍ୟୁ ପରେ ପିଉସୀ କୁନ୍ତୀ ଓ ତାଙ୍କ ପଞ୍ଚପୁତ୍ର ହସ୍ତିନା ଆସିଥିଲେ । ଏହି ସରଳ, ନିଷ୍ପାପ, ବଳିଷ୍ଠ, ସୁଗୌର ତନୁ ବିଶିଷ୍ଟ ଭୀମସେନ କୌରବଙ୍କର ଇର୍ଷ୍ୟଣୀୟ ହୋଇଯାଇଥିଲେ । ଶିଶୁ ଭୀମଙ୍କର ବଳବୀର୍ଯ୍ୟ ହସ୍ତିନାରେ ବହୁ ଚର୍ଚ୍ଚିତ ବିଷୟ ଥିଲା । ଉତ୍ତମୋତ୍ତମ ସୁପାଚ୍ୟ ସୁଖାଦ୍ୟହିଁ ଥିଲା ତାଙ୍କର ଏକମାତ୍ର ଦୁର୍ବଳତା । ଏହି ଦୁର୍ବଳତାର ସନ୍ଧାନ କଲାପରେ ପ୍ରମାଣକୋଟୀ ଉଦ୍ୟାନରେ ଗାନ୍ଧାର ତନୟ ଶକୁନୀଙ୍କ ପ୍ରରୋଚନାରେ ଦୁର୍ଯ୍ୟୋଧନ, ଦୁଃଶାସନ ଆଦି କୌରବ ଭ୍ରାତାଗଣ ଭୀମଙ୍କୁ ବିଷ ମୋଦକ ଖୁଆଇ ସଂଜ୍ଞାହୀନ ଅବସ୍ଥାରେ ହାତ ଗୋଡ଼ ବାନ୍ଧି ଗଂଗା ନଦୀରେ ଭସାଇ ଦେଇଥିଲେ । ମହାଭାରତ ଯୁଦ୍ଧର ପ୍ରଥମ ବୀଜ ବପନ ଏହି ଦ୍ୱିତୀୟ ପାଣ୍ଡବଙ୍କ ଦ୍ୱାରାହିଁ ସମ୍ଭବ ହୋଇଥିଲା । ସେ ସ୍ମୃତି ମୋ ପାଇଁ ବଡ଼ ମଧୁର, ବଡ଼ କୌତୁକପ୍ରଦ ! ପଣ୍ଡୁ ପରିବାରର ମର୍ଯ୍ୟାଦା ଓ ସ୍ୱାଭିମାନର ପ୍ରତୀକ ହେଉଛନ୍ତି ଭୀମସେନ । ବାରୁଣାବତରେ ସେ ଭୟଙ୍କର କାଳରାତ୍ରିରେ ଭୀମସେନଙ୍କର ସ୍କନ୍ଧକୁ ଭରସା କରି ତ କୁନ୍ତୀ ଓ କୁନ୍ତୀନନ୍ଦନଗଣ ସୁଡ଼ଙ୍ଗ ରାସ୍ତାରେ ବାହାରକୁ ଆସିଥିଲେ ! ଆଉ ଦ୍ରୌପଦୀ ସ୍ୱୟଂବରରେ ? ଧନୁର୍ବୀତ୍ ଅର୍ଜୁନ ଦ୍ରୁପଦଙ୍କ ପଣ ଜିଣିଥିଲେ; ମାତ୍ର ଉତ୍ତ୍ୟକ୍ତ ରାଜନ୍ୟ ମଣ୍ଡଳୀଙ୍କୁ ଭୀମସେନହିଁ ତ ସ୍ୱୀୟ ବଳବୀର୍ଯ୍ୟରେ ପ୍ରତିହତ କରିଥିଲେ ! ଦ୍ରୁପଦ ନନ୍ଦିନୀ ତାଙ୍କର ଏକ ପଞ୍ଚମାଂଶ ପତ୍ନୀ; ତଥାପି ଚିରକାଳ ଦ୍ରୌପଦୀଙ୍କ ଅଶ୍ରୁ ଭୀମସେନଙ୍କୁ ଯେତେ ବିଚଳିତ କରିଛି ଅନ୍ୟ ଭ୍ରାତାଚତୁଷ୍ଟୟଙ୍କୁ ସେପରି କରି ନାହିଁ । ଦ୍ରୌପଦୀଙ୍କ ପ୍ରୀତି ତାଙ୍କୁ ଯେତେ ବିଗଳିତ କରିଛି ସେପରି ଅନ୍ୟଭ୍ରାତାମାନଙ୍କୁ କରିନାହିଁ । ତା' ନହୋଇଥିଲେ ଦ୍ରୌପଦୀ ଲାଂଛନାର ସେହି ଚରମ ମୁହୂର୍ତ୍ତରେ ଭୀମସେନ ଏଭଳି ପ୍ରଚଣ୍ଡ ଶପଥ ନେଇଥା'ନ୍ତେ ? ପୁଣି ସେହି ପ୍ରତିଜ୍ଞା ପୂରଣ ପାଇଁ କୁରୁ ରଣାଙ୍ଗନରେ ଭୀମସେନ ଏଭଳି ଭୟଙ୍କର ମୂର୍ତ୍ତି ଧାରଣ କରିଥା'ନ୍ତେ ? ଘଟୋତ୍କଚକୁ ହତ୍ୟା କରିଥିବା କର୍ଣ୍ଣଙ୍କ ପ୍ରତି ମଧ୍ୟ ସେ ଏଭଳି ନିଷ୍ଠୁର ଆଚରଣ ପ୍ରଦର୍ଶନ କରିନାହାନ୍ତି । ଦୁଃଶାସନର ଭୁଜ ଉତ୍ପାଟନ କରି ବର୍ଷିତ ରୁଧିର ଧାରାରେ ଦ୍ରୌପଦୀଙ୍କ ବେଣୀ ବନ୍ଧନ କରିଛନ୍ତି । ଦୁଃଶାସନର ବକ୍ଷ ବିଦୀର୍ଣ୍ଣ କରି ଉଷ୍ଣ ରକ୍ତ ପାନ କରିଛନ୍ତି ଭୀମସେନ । ଉଭୟ ପକ୍ଷ ହତବୁଦ୍ଧି ଭଳି ସେ ଦୃଶ୍ୟ ସେଦିନ ନିର୍ବାକ୍ ବିସ୍ମୟରେ ଦେଖୁଥିଲେ । ଭୀମସେନ ଚିତ୍କାର କରି କହୁଥିଲେ - 'ମୁଁ ଅମୃତ

ତୁଲ୍ୟ ମାତୃ ସ୍ତନ୍ୟ ପାନ କରିଛି, ଗୋକ୍ଷୀର ପାନ କରିଛି । ବହୁ ସ୍ୱାଦଯୁକ୍ତ ସୁମଧୁର ପାନୀୟ ମଧ୍ୟ ପାନ କରିଛି, ମାତ୍ର ଏହି ପାପାତ୍ମା ଦୁଃଶାସନର ରୁଧିର ସବୁଠାରୁ ଅଧିକ ସ୍ୱାଦଯୁକ୍ତ ବୋଧ ହେଉଛି !'

ଭାଇ ପାଇଁ ଭାଇର ରକ୍ତ କ'ଣ ସତରେ ଏତେ ସ୍ୱାଦଯୁକ୍ତ ? ନା - ନା - ଏହା ବରଂ ଦ୍ରୌପଦୀ ଲାଂଛନାର ସେ ଗଭୀର କ୍ଷତର ଉପଶମ ମାତ୍ର ଥିଲା । କୁରୁପତି ଦୁର୍ଯ୍ୟୋଧନର ଉରୁଭଂଗ ସେହି ଉପଶମର ଉପଚାର ମାତ୍ର ଥିଲା । ସମୟ ସମସ୍ତଙ୍କୁ ଭିନ୍ନ ମୋଡ଼ରେ ଠିଆ କରାଇ ସାରିଥିଲା । ଦୁଃସମୟ, ଦୁର୍ଭାଗ୍ୟ, ଦୁଃସ୍ଥିତିକୁ ଦୁର୍ଘଟଣା ଭାବି ପ୍ରତ୍ୟେକ ବିସ୍ମୃତ ହୋଇଥିଲେ କିମ୍ବା ଭୁଲିଯିବାର ଛଳନା କରୁଥିଲେ । ଭୀମସେନଙ୍କ ପାଇଁ ତା' ସମ୍ଭବ ନଥିଲା । ବଞ୍ଚନାରେ ବଞ୍ଚିବା ସେ ଜାଣନ୍ତି ନାହିଁ । ସେଇଥି ପାଇଁ ତ ଅନ୍ଧ ଧୃତରାଷ୍ଟ୍ରଙ୍କୁ ଦେଖିବା ମାତ୍ରେ ହିଁ ତାଙ୍କର ଜିହ୍ୱା ଶାଣିତ ହୋଇ ଉଠୁଥିଲା । ଏଇତ, ସେଦିନ ପରୀକ୍ଷିତର ନାମକରଣ ଉତ୍ସବରେ ଯୋଗ ଦେବାକୁ ଯାଇଥିଲି । ଲକ୍ଷ୍ୟ କଲି ଚାରୋଟି ମଣିଷଙ୍କ ହୃଦୟରେ ଶୋକର ବହ୍ନି ଅନିର୍ବାଣ ଶିଖା ହୋଇ ତଥାପି ପ୍ରଜ୍ୱଳିତ ହେଉଥାଏ । ସେମାନେ ହେଲେ ପ୍ରଜ୍ଞାଚକ୍ଷୁ ଧୃତରାଷ୍ଟ୍ର, ଦିବ୍ୟଦର୍ଶିନୀ ଗାନ୍ଧାରୀ, ଆର୍ଯ୍ୟା କୁନ୍ତୀ ଓ ପାଞ୍ଚାଳ ତନୟା କୃଷ୍ଣା ।

ପରୀକ୍ଷିତ ବେଶୀ ସମୟ କୃଷ୍ଣାଙ୍କ ପାଖରେ ହିଁ ରହୁଥିଲେ । ହୃଦୟ ନିଗାଡ଼ି ସମସ୍ତ ସ୍ନେହ କୃଷ୍ଣା ସେହି ଶିଶୁ ପୁତ୍ର, ପୁରୁବଂଶର ଭାବୀ ଭାଗ୍ୟଧର ଉପରେ ଅଜାଡ଼ି ଦେଉଥିଲେ । ଦିନେ ଶିଶୁପୁତ୍ରମାନଙ୍କୁ ଛାଡ଼ି ତାଙ୍କୁ ଅରଣ୍ୟବାସ କରିବାକୁ ପଡ଼ିଥିଲା । ଶିଶୁର ଲାଳନରୁ ସେଦିନ ସେ ବଂଚିତା ହୋଇଥିଲେ । ହୁଏତ ସେଇଥି ପାଇଁ କଡ଼ାକ୍ରାନ୍ତି ହିସାବରେ ସେ ପରୀକ୍ଷିତଙ୍କୁ ନିଜେହିଁ ଲାଳନ ପାଳନ କରୁଥିଲେ । ପିଉସୀ କୁନ୍ତୀ ଓ ଗାନ୍ଧାରୀଙ୍କ ସେବାରେ ସେ ଅଧିକ ଯତ୍ନଶୀଳା ହେଉଥିଲେ । ହଁ, ତିନୋଟି ପୁତ୍ର ଶୋକାତୁରା ରମଣୀ । ପ୍ରତ୍ୟେକ ପ୍ରତ୍ୟେକର ମର୍ମବେଦନା ହୁଏତ ଉପଲବ୍‌ଧି କରୁଥିଲେ, ତା'ର ବାଙ୍ମୟ ପ୍ରକାଶ କିନ୍ତୁ ନଥିଲା । ମୁଁ ଥରେ କୃଷ୍ଣାଙ୍କୁ ପ୍ରଶ୍ନ କରିଥିଲି, 'କୃଷ୍ଣା ! ତୁମ ଜ୍ୟେଷ୍ଠତାତ ଧୃତରାଷ୍ଟ୍ର ଓ ଦିବ୍ୟଦର୍ଶିନୀ ଗାନ୍ଧାରୀ ସୁଖରେ ଅଛନ୍ତି ତ ?'

ସେ ଅସଂଖ୍ୟ ପ୍ରଶ୍ନବାଚୀ ଭରା ନୟନରେ ମୋତେ ଚାହିଁଲେ, ବିଦ୍ରୂପର ହସଧାରେ ତାଙ୍କ ଅଧର କୋଣରୁ ଉତୁରି ଆସିଲା । ସେ କହିଲେ, 'ଚର୍ବ, ଚୋଷ୍ୟ, ଲେହ୍ୟ, ପେୟ ଭୋଜନ, ତୁଳୀତଳ୍ପ ଶଯ୍ୟାରେ ଶୟନ, ଅଜସ୍ର ଦାସ ଦାସୀଙ୍କର ନିଷ୍ଠାପର ସେବା, ବିଳାସ, ପ୍ରାଚୁର୍ଯ୍ୟ ଏସବୁ ଯୋଗେଇ ଦେବାରେ ଧର୍ମରାଜଙ୍କର କାର୍ପଣ୍ୟ କେବେବି ନଥାଏ ହେ କେଶବ ! ଏତିକି କ'ଣ ସୁଖର ସଂଜ୍ଞା ? ଏ ପ୍ରକାର ସୁଖ କ'ଣ ସେମାନଙ୍କର ବାଂଛିତ ଥିଲା ?'

ମୁଁ ଚୁପ୍ ରହିଲି । ସେ କହିଲେ, 'ତୁମେ ତାଙ୍କୁ କିଛି ସମୟ ଲକ୍ଷ୍ୟ କଲେ ଜାଣି ପାରିବ ।'

ମୁଁ ଥରେ ଧୃତରାଷ୍ଟ୍ରଙ୍କ ଭବନକୁ ଯାଇଥିଲି । ତାଙ୍କ କକ୍ଷରେ ଅସମ୍ଭବ ନୀରବତା । କକ୍ଷ ଭିତରକୁ ପ୍ରବେଶ କଲାମାତ୍ରେ ଦୃଷ୍ଟିଗୋଚର ହେଉଥିଲା ଏକ କାଷ୍ଠାସନରେ ଏକଶତ କନକ ପ୍ରଦୀପ । ଅନ୍ଧ ଧୃତରାଷ୍ଟ୍ର ଅନେକ ସମୟରେ ସେହି କନକ ପ୍ରଦୀପ ଗୁଡ଼ିକୁ ସସ୍ନେହରେ ଆଉଁଷି ପକଉଥିଲେ । ଜନନୀ ଗାନ୍ଧାରୀଙ୍କର ବୁକୁଫଟା ଦୀର୍ଘଶ୍ୱାସ ସେହି ସ୍ନେହର ସ୍ପର୍ଶ ସହ ମିଶି ଏକାକାର ହୋଇଯାଉଥିଲା । କିନ୍ତୁ ସେ ପ୍ରଦୀପରେ ସୁଗନ୍ଧ ତୈଳ ବା ସଳିତା କିଛି ହେଲେ ନଥିଲା । ଶୂନ୍ୟ, ନିର୍ବାପିତ ପ୍ରଦୀପ ଗୁଡ଼ିଏ । ଏହାର ସାଙ୍କେତିକତା ମୁଁ ଠିକ୍ ହୃଦୟଙ୍ଗମ କରି ପାରିଲି । ମୁଁ ସେମାନଙ୍କୁ ଅଭିବାଦନ କରିବା ମାତ୍ରେ ଧୃତରାଷ୍ଟ୍ର କହିଲେ - 'ବସ କେଶବ ! ପାଣ୍ଡବ ସଖା ଏଠାରେ ଯେ ?'

'ପାଣ୍ଡବ ସଖା' ଏହି ଶବ୍ଦଟି ଉପରେ ସେ ଆବଶ୍ୟକତାଠାରୁ ଅତିରିକ୍ତ ଗୁରୁତ୍ୱ ହୁଏତ ଦେଇଥିଲେ । ମୁଁ କହିଲି - 'ମୁଁ କ'ଣ କୌରବଙ୍କର ହିତୈଷୀ ନଥିଲି ? ଯଥା ସମୟରେ ସେମାନଙ୍କୁ କ'ଣ ସତର୍କ କରିନାହିଁ ? ଛାଡ଼ନ୍ତୁ ସେ କଥା । ଆପଣଙ୍କ ମୁଖ ମଣ୍ଡଳରେ ଏପରି ବିଷର୍ଣ୍ଣତାର ଛାୟା ଯେ ?'

ବେଶ୍ କିଛି ସମୟ ସେ ନୀରବ ରହିବା ପରେ କହିଲେ - 'କେଶବ ! ତୁମର କୌଣସି କଥା ଯୁଧିଷ୍ଠିର ଆଗ୍ରାହ୍ୟ କରନ୍ତି ନାହିଁ । ମୋ ପାଇଁ ଏତିକି କୁହ । ମୁଁ ଓ ଗାନ୍ଧାରୀ ଏହି ରାଜଭବନରେ ଆଉ ରହିବୁ ନାହିଁ । ଯୁଧିଷ୍ଠିର ମହତ୍ । ସେ ଆମର ସର୍ବବିଧ ସୁବିଧା ଅସୁବିଧା ପ୍ରତି ସତର୍କ, ସଜାଗ ଦୃଷ୍ଟି ରଖିଛନ୍ତି । ତଥାପି ତାଙ୍କର ଅନୁଦାନରେ ବଞ୍ଚିବା ଆମପାଇଁ ଦୁର୍ବିସହ, ଏପରିକି ଦୈନନ୍ଦିନର ଖାଦ୍ୟ ସୁଦ୍ଧା ଆମ ଗଳାରେ କଣ୍ଟକ ସଦୃଶ ବିଦ୍ଧ ହେଉଛି । ଦ୍ୱିତୀୟ ପାଣ୍ଡବ ବୃକୋଦରର ବାକ୍ୟ ବାଣ ଅସହ୍ୟ । ନା - ନା - ମୁଁ କାହାରି ବିରୁଦ୍ଧରେ ଅଭିଯୋଗ କରୁନାହିଁ କେଶବ । ହୁଏତ ଏହାହିଁ ମୋର ପ୍ରାପ୍ୟ ଥିଲା । ମୁଁ ପତ୍ନୀ ସହ ବନଗମନ କରିବାକୁ ଇଚ୍ଛୁକ । ମୋର ଏତିକି ମାତ୍ର ନିବେଦନ !'

ମୁଁ କୌଣସି ମତାମତ ଦେବା ପୂର୍ବରୁ ଅଳିନ୍ଦରେ ଦ୍ୱିତୀୟ ପାଣ୍ଡବ ତଥା ତାଙ୍କ ଅନୁଚରଙ୍କର କଥୋପକଥନ ଶୁଭିଲା । ମୋର ମନେ ହେଲା ଭୀମସେନ ଧୃତରାଷ୍ଟ୍ରଙ୍କ ପାଇଁ ଅତ୍ୟନ୍ତ କଟୂଭାଷୀ ହୋଇ ପଡ଼ିଛନ୍ତି । ଇଚ୍ଛାକୃତ ଭାବେ ଏବଂ ତାଙ୍କର ଏହି ରୁଢ଼ ଭାଷଣ ସଂପର୍କରେ ଧର୍ମରାଜ ସଂପୂର୍ଣ୍ଣ ଅଜ୍ଞ । ଅତୀତରେ ଯାହା ଯାହା ଘଟି ଯାଇଛି ଭୀମସେନଙ୍କ ପକ୍ଷେ ତା' ବିସ୍ମୃତ ହେବା ଆଦୌ ସମ୍ଭବ ନୁହେଁ । ଏପରିକି ଧୃତରାଷ୍ଟ୍ରଙ୍କ କକ୍ଷ ବାହାରେ ତାଙ୍କୁ

ଶୁଣେଇ ଭୀମସେନଙ୍କର ଜଣେ ସେବକ କହି ଉଠିଲା - 'ସ୍ୱାମୀ ! ଆପଣଙ୍କର ପରିଘା ସଦୃଶ ଚନ୍ଦନ ଚର୍ଚ୍ଚିତ ଏହି ବାହୁ ଯୁଗଳରେ ଏତେ ବଳ ସଞ୍ଚିତ ତା' ଆପଣଙ୍କୁ ନଦେଖିବା ଲୋକ ବିଶ୍ୱାସ କରିପାରିବ ନାହିଁ ।'

ଉଚ୍ଚ କଣ୍ଠରେ ଅଟ୍ଟହାସ କରି ଉଠିଲେ ଭୀମ ସେନ । କହିଲେ, 'ଏହି ବାହୁବଳକୁ ଆଶ୍ରୟ କରି ପାଷାଣ୍ଡମାନଙ୍କୁ ଉଚିତ ଶାସ୍ତି ଦେଇଛି । ଦ୍ରୌପଦୀ ଲାଂଛନର ପ୍ରତିଶୋଧ ମଧ୍ୟ ନେଇଛି । ଏଇ ବାହୁ ବଳରେ ଧୃତରାଷ୍ଟ୍ରଙ୍କର ଏକଶତ ପୁତ୍ରଙ୍କୁ ମୁଁ ସଂହାର କରିଛି, ଏଇ ବାହୁବଳ ଦ୍ୱାରା ପାପୀ, ଅଧର୍ମାଚାରୀ ଦୁର୍ଯ୍ୟୋଧନର ନାଭିର ନିମ୍ନାଂଶରେ ଗଦାଘାତ କରି ତାକୁ ଲହୁଲୁହାଣ କରିଛି । କୌରବଙ୍କୁ ନିପାତ କରିଛି । ଭବିଷ୍ୟତରେ ଆଉ କେହି ମଧ୍ୟ ମୋ ସହିତ ଯୁଦ୍ଧରେ ପ୍ରବୃତ୍ତ ହେବାପାଇଁ ସାହସ କରିବେ ନାହିଁ ।'

ସେ ଏତେ ସ୍ୱଷ୍ଟ ଭାବେ କହୁଥିଲେ ଯେ କକ୍ଷର ଅଭ୍ୟନ୍ତରରେ ତାହା ଧୃତରାଷ୍ଟ୍ରଙ୍କ ଛାତିରେ ହାତୁଡ଼ିର ଶବ୍ଦଭଳି କଠୋର ଶୁଭୁଥିଲା । ତାଙ୍କର ଅନ୍ଧ ଚକ୍ଷୁ ଦୁଇଟି ବାଷ୍ପାଛନ୍ନ ହୋଇ ଉଠିଲା । ମୁଁ ତାଙ୍କୁ କୌଣସି ସାନ୍ତ୍ୱନା ମଧ୍ୟ ଦେଇ ପାରିଲି ନାହିଁ । ପ୍ରକୃତରେ ସର୍ବସ୍ୱ ହରାଇଥିବା ଜଣେ ଆଶ୍ରିତକୁ ଯଦି ଏଭଳି ବାକ୍ୟ ବାଣ ପ୍ରୟୋଗ କରାଯାଏ ତେବେ ଏହାଠାରୁ ବନବାସୀ ଜୀବନ ସହସ୍ର ଗୁଣରେ ଶ୍ରେୟସ୍କର । ଲକ୍ଷ୍ୟକଲି କକ୍ଷର ଗୋଟିଏ ପାର୍ଶ୍ୱରେ କୁଶ ଶଯ୍ୟା ବିଦ୍ୟମାନ । ମୁହୂର୍ତ୍ତକ ଭିତରେ ମନଶ୍ଚକ୍ଷୁରେ ସମସ୍ତ ଦୃଶ୍ୟ ଉଦ୍‌ଭାସିତ ହୋଇଉଠିଲା । ଏହି ପୁତ୍ର ଶୋକାତୁର ଦଂପତି ସମସ୍ତ ବିଳାସ ପରିହାର କରିଛନ୍ତି ଯୁଧିଷ୍ଠିରଙ୍କ ଅଲକ୍ଷ୍ୟରେ । ତାଙ୍କୁ ଜାଣିବାକୁ ସୁଯୋଗ ସୁଦ୍ଧା ଦେଉନାହାନ୍ତି । ହୁଏତ ଯୁଧିଷ୍ଠିର ଏହାଦ୍ୱାରା ଆହତ ହୋଇପାରନ୍ତି । ଏମାନେ ଏକ ପ୍ରକାର ସନ୍ୟାସୀ ଜୀବନ ଅତିବାହିତ କରୁଛନ୍ତି । ଦିବସର ଅଷ୍ଟମ ଭାଗରେ ଥରେ ମାତ୍ର ଖାଦ୍ୟ ଗ୍ରହଣ କରି, କୁଶ ଶଯ୍ୟାରେ ଶୟନ କରି, ଅଧିକାଂଶ ସମୟ ଭଗବଦ୍ ଚିନ୍ତନରେ ବ୍ୟୟ କରି ଶାନ୍ତିର ଅନ୍ୱେଷୀ ହୋଇଛନ୍ତି । ବାନପ୍ରସ୍ଥାଶ୍ରମ ନିମିତ୍ତ ଏ ଦୁହେଁ ସବୁଦିଗରୁ ଚେଷ୍ଟିତ । ଏମାନଙ୍କୁ ଏଠାରେ ରଖି ବାକ୍ୟ ବାଣରେ ବିଦ୍ଧ କରିବା ଅନ୍ୟାୟ ହେବ । ସନ୍ୟାସ ନିମିତ୍ତ ମାନସିକ ପ୍ରସ୍ତୁତି ଶେଷ ହେବାପରେ ଏ ଦୁହିଁଙ୍କୁ ଏହି ଭୋଗବିଳାସରେ ରଖିବା ଅବରୋଧ ସଦୃଶ ହେବ । କିନ୍ତୁ ଏ ସଂପର୍କରେ ଧର୍ମରାଜଙ୍କୁ ମୁଁ କହିବା ଯୁକ୍ତିଯୁକ୍ତ ହେବ ନାହିଁ । ବରଂ ସେ ନିଜେ କହନ୍ତୁ ନିଜର ଅଭିଳାଷ ।

ଏହି ଘଟଣାର କିଛିଦିନ ପରେ ଜାଣିବାକୁ ପାଇଲି ଧର୍ମରାଜ ବହୁକଷ୍ଟରେ ସମ୍ମତି ପ୍ରଦାନ କରିଛନ୍ତି । ବାନପ୍ରସ୍ଥରେ ବାହାରିବା ପୂର୍ବରୁ ଯାଚକଙ୍କୁ ଦାନ ନିମିତ୍ତ ପ୍ରାର୍ଥିତ ଅର୍ଥ ମଧ୍ୟ ରାଜକୋଷରୁ ଧର୍ମରାଜ ଦାନ କରିଛନ୍ତି ଧୃତରାଷ୍ଟ୍ରଙ୍କୁ । ଯଦିଓ ଏଥିରେ ଭୀମସେନ ପ୍ରବଳ ଆପତ୍ତି କରିଥିଲେ ମାତ୍ର ଅର୍ଜ୍ଜୁନଙ୍କ ଅନୁରୋଧରେ ପ୍ରାର୍ଥିତ ମୁଦ୍ରା ଧୃତରାଷ୍ଟ୍ରଙ୍କ ନିକଟରେ

ପହଞ୍ଚିଛି । ବ୍ରାହ୍ମ ମୁହୂର୍ତ୍ତରେ ହସ୍ତିନା ରାଜଭବନ ସମ୍ମୁଖର ରାଜରାସ୍ତା ପ୍ରବଳ ଭାବେ ଲୋକାରଣ୍ୟ । ମୁଁ ମୋ କକ୍ଷରୁ ବାହାରି ଆସି ଦେଖିଲି ପାଞ୍ଚାଳୀଙ୍କ ହସ୍ତରେ ଏକ ସୁବୃହତ୍ ରଜତ ପାତ୍ର, ତାହା ବିଭିନ୍ନ ମଣି ମୁକ୍ତା ଓ ରତ୍ନାଭରଣରେ ପରିପୂର୍ଣ୍ଣ, ବିଷର୍ଣ୍ଣ ବଦନରେ ସେ ଚାଲିଛନ୍ତି ତାଙ୍କୁ ଅନୁସରଣ କରୁଛନ୍ତି ସୁଭଦ୍ରା, ଚିତ୍ରାଙ୍ଗଦା, ଉଲୁପୀ, ନକୁଳଙ୍କ ପତ୍ନୀ କରେଣୁମତୀ, ଭୀମଙ୍କ ଦ୍ୱିତୀୟ ପତ୍ନୀ କାଳୀ ଏବଂ ସହଦେବଙ୍କ  ପତ୍ନୀ ଜରାସନ୍ଧ ଦୁହିତା । ଏହି ରମଣୀୟ ଶୋଭାଯାତ୍ରାଟିକୁ ଲକ୍ଷ୍ୟ କରିବା ମାତ୍ରେ ଶୋଭାଯାତ୍ରାର ଅଗ୍ରନେତ୍ରୀଙ୍କ ସହ ଟିକିଏ କୌତୁକ କରିବାର ଲୋଭ ସଂବରଣ କରିପାରିଲି ନାହିଁ । କହିଲି, 'ଏହାହିଁ ନାରୀର ସହଜାତ ପ୍ରବୃତ୍ତି । ଏପରିକି ପତିତପାବନୀ ଗଂଗାମଧ୍ୟ ସେଥିରୁ ବାଦ୍ ଯାଇ ନାହାନ୍ତି । ଗଂଗାଙ୍କୁ ସନ୍ତୁଷ୍ଟ କରିବାପାଇଁ ଦେବ ଦେବ ମହାଦେବ ତାଙ୍କୁ ମସ୍ତକରେ ଧାରଣ କଲେ, ମାତ୍ର ଗଂଗା ରତ୍ନାକରଙ୍କ ମୋହ ସମ୍ବରଣ କରିନପାରି ଶିବଙ୍କ ମସ୍ତକରୁ ଲମ୍ଫ ପ୍ରଦାନ କଲେ ରତ୍ନାକର ଉଦ୍ଦେଶ୍ୟରେ, ପଥରେ କୌଣସି ବାଧା ବନ୍ଧନ ମଧ୍ୟ ମାନିଲେ ନାହିଁ, ନୁହେଁ କି କୃଷ୍ଣା ?'

ସେ ମୋତେ ମୁହୂର୍ତ୍ତେ ଚାହିଁଲେ । ତାପରେ କହିଲେ - 'ଅନ୍ତର୍ଯ୍ୟାମୀ ଏତିକି ସମ୍ବାଦ ସୁଦ୍ଧା ରଖି ନାହାନ୍ତି କିପରି ? ରତ୍ନ ଆଭୂଷଣରେ ମୋର ପ୍ରୟୋଜନ ଆଦୌ ନାହିଁ । ମୁଁ ଏସବୁ ନେଉଛି ଜ୍ୟେଷ୍ଠତାତଙ୍କ ନିକଟକୁ, ବାନପ୍ରସ୍ଥରେ ଯିବା ପୂର୍ବରୁ ଏସବୁ ସେ ଦାନ କରିଯିବେ ।

ଧର୍ମରାଜ ଯୁଧିଷ୍ଠିର ଅକୃପଣ ଭାବେ ରାଜକୋଷରୁ ବହୁ ଧନ ରତ୍ନ ପ୍ରଦାନ କରିଥିଲେ ଏବଂ ଧୃତରାଷ୍ଟ୍ର ଅକାତରଭାବେ ସେ ସବୁ ଦାନ କରିଥିଲେ । ବିଧିବଦ୍ଧଭାବେ ସମସ୍ତ ଅନୁଷ୍ଠାନ ଶେଷ ହେବାପରେ ଆଗପଛ ହୋଇ ଅରଣ୍ୟ ଯିବା ଉଦ୍ଦେଶ୍ୟରେ ଯେଉଁମାନେ ବାହାରି ଆସିଲେ ସେମାନଙ୍କ ଭିତରେ ପିଉସୀ କୁନ୍ତୀଙ୍କୁ ଦେଖି ମୋର ବିସ୍ମୟର ସୀମା ରହିଲା ନାହିଁ । ସର୍ବାଗ୍ରେ କୁନ୍ତୀ । ସେ ଗାନ୍ଧାରୀଙ୍କ ହସ୍ତ ଧାରଣ କରିଥା'ନ୍ତି ଏବଂ ଏ ଦୁହିଁଙ୍କ ପଶ୍ଚାତରେ ଗାନ୍ଧାରୀଙ୍କ କାନ୍ଧରେ ହାତ ଦେଇ ଧୃତରାଷ୍ଟ୍ର ଚାଲୁଥା'ନ୍ତି । ପଣ୍ଡୁସୁତଗଣ ଏ ଦୃଶ୍ୟ ଦେଖି ଅଶ୍ରୁ ସମ୍ବରଣ କରି ପାରିଲେ ନାହିଁ । ବିଶେଷତଃ ସହଦେବ ଉଚ୍ଚ କଣ୍ଠରେ ରୋଦନ କରି ଉଠି କହିଲେ- 'ମା ! ଏକ'ଣ ? ଆମେ ଦିନେ ପରସ୍ଥିତି ଚାପରେ ତୁମକୁ ଛାଡ଼ି ଯାଇଥିଲୁ, ସେ ଦୁଃଖ ଭୁଲି ନାହୁଁ, ତୁମେ କେମିତି ଆମକୁ ଛାଡ଼ି ବାହାରିଲଣି ? ଜୀବନସାରା ତୁମେ କଷ୍ଟ ହିଁ ପାଇଛ । ଆଜି ତୁମକୁ ଆମେ ସୁଖରେ ଶାନ୍ତିରେ ରଖିବାକୁ ବଦ୍ଧପରିକର ହେଲା ବେଳକୁ ତୁମେ ବନକୁ ବାହାରିଲଣି ?'

ଧୃତରାଷ୍ଟ୍ର ମଧ୍ୟ କହିଲେ -'ପ୍ରକୃତରେ ସହଦେବ ଠିକ୍ କହିଛନ୍ତି । ସକଳ ପ୍ରାପ୍ତିର ବିଭୂତିରେ ମଣ୍ଡିତା କୁନ୍ତୀ ଆମ ସହ ଅରଣ୍ୟବାସୀ ହେବେ କାହିଁକି ?'

କୁନ୍ତୀ କିନ୍ତୁ ନିର୍ଲିପ୍ତ, ଉଦାସୀନା, ଶୋକରେ ଅଧୀରା ହେଲେ ନାହିଁ, ଭାବାବେଗରେ ବିବ୍ରତ ବି ହେଲେ ନାହିଁ । ନିଷ୍କମ୍ପ କଣ୍ଠରେ କହିଲେ- 'ତୁମ୍ଭେମାନେ କାହିଁକି ଭାବୁଛ ଏଥିରେ ମୋର ସୁଖ ନାହିଁ ଶାନ୍ତି ନାହିଁ ବୋଲି ? ଏହି ପୁତ୍ର ଶୋକାତୁର ଅନ୍ଧ ଦମ୍ପତିଙ୍କ ସେବା କରିବାରେ ହିଁ ମୋର ପରମ ତୃପ୍ତି !' ଭୀମସେନ ତତ୍‌କ୍ଷଣାତ୍ କହିଲେ - 'ଶାନ୍ତିର ପ୍ରସ୍ତାବ ନେଇ ବାସୁଦେବ ଯେତେବେଳେ ହସ୍ତିନା ଆସିଥିଲେ ତୁମେ ବିଦୂଳା ଉପାଖ୍ୟାନ କହି ଆମ୍ଭମାନଙ୍କୁ ଯୁଦ୍ଧ କରିବାପାଇଁ ପ୍ରୋତ୍ସାହନ କାହିଁକି ଦେଇଥିଲ ?'

କୁନ୍ତୀ ସେଇଭଳି ନିର୍ଲିପ୍ତ ନିଷ୍କଂପ ସ୍ୱରରେ କହିଲେ- 'ତାହାହିଁ ମୋର କର୍ତ୍ତବ୍ୟ ଥିଲା । ତୁମର ପୈତୃକ ନ୍ୟାଯ୍ୟ ଦାବୀ ପାଇବାକୁ ଯୁଦ୍ଧର ଆବଶ୍ୟକତା ଥିଲା । ତୁମ୍ଭେମାନେ କ୍ଷତ୍ରିୟ ସନ୍ତାନ ହୋଇ ପଶ୍ଚାଦ୍‌ପଦ ହୋଇଥିଲେ ମୁଁ ଲଜ୍ଜିତା ହୋଇଥା'ନ୍ତି । ତୁମ୍ଭମାନଙ୍କ ଭଳି ବୀର ପୁତ୍ରଗଣ ଚିରଦିନ ଅରଣ୍ୟରେ ରହିଥା'ନ୍ତେ କି ? ଏଇ ରାଜଭବନରେ ମୋର ସମସ୍ତ ଆବଶ୍ୟକତା ଶେଷ ହୋଇଛି, କର୍ତ୍ତବ୍ୟବି ଶେଷ ହୋଇଛି । ଏବେ ତପଶ୍ଚର୍ଯ୍ୟା ହିଁ ମୋର କାମ୍ୟ, ମୋର କର୍ତ୍ତବ୍ୟ, ମୋର ଆବଶ୍ୟକତା !'

ସେ ଏତିକି କହି ଚୁପ୍ ହୋଇ ଆଗେଇଲେ । ତାଙ୍କ ପଛେ ପଛେ ଗାନ୍ଧାରୀ ଓ ଧୃତରାଷ୍ଟ୍ର । କୁନ୍ତୀଙ୍କ ସ୍ୱରର ଗାମ୍ଭୀର୍ଯ୍ୟ ଓ ଦୃଢ଼ତାରେ ଦ୍ୱିରୁକ୍ତି କରିବା ପାଇଁ କାହାରି ସାହସ ନଥିଲା । ମୁଁ ଜାଣିଥିଲି ଭୋଗ, ଐଶ୍ୱର୍ଯ୍ୟ, ଏପରିକି ଜୀବନରୁ ସୁଦ୍ଧା ମୋହ ବିସର୍ଜନ କରିଯାଉଥିବା ଏଇ ତିନୋଟି ମହତ୍ ଜୀବନର ଏହାହିଁ ଯେପରି ଅନ୍ତିମ ପର୍ଯ୍ୟାୟ ।

●

## ।। ସପ୍ତବିଂଶତି ଗ୍ରନ୍ଥି ମୋଚନ ।।

କାର୍ତ୍ତିକ ପୂର୍ଣ୍ଣିମାର ପବିତ୍ର ଦିବସରେ ଧୃତରାଷ୍ଟ୍ର-ଗାନ୍ଧାରୀ, କୁନ୍ତୀ ବନ ଯାତ୍ରା କରିଥିଲେ । ଦ୍ୱାରକାରେ ଥାଇ ମୁଁ ଶୁଣିଥିଲି ତିନିବର୍ଷକାଳ କଠୋର ତପଶ୍ଚରଣ ପରେ ସେ ତିନିଜଣଙ୍କର ଦେହାବସାନ ହୋଇଥିଲା । ମଣିଷ କାହିଁକି ଏତେ ଅବୁଝା ? କାହିଁକି ବୁଝିପାରେ ନାହିଁ ଯେ ତା'ର ଜୀବନ ପାତ୍ରରୁ ପ୍ରତି ମୁହୂର୍ତ୍ତରେ କ୍ଷୟ ହିଁ ହେଉଥାଏ । ଯାହା କ୍ଷୟ ହୁଏ ତା' ଆଉ ଥରେ ପୂର୍ଣ୍ଣ ହୁଏ ନାହିଁ । ମୁହୂର୍ତ୍ତଟିଏ ବି ନୁହେଁ । ମଣିଷ ଦେହ ଧାରଣ କରି ମୁଁ ନିଜେବି କ'ଣ ଏଇ ମିଥ୍ୟା ମୋହରେ ବାନ୍ଧି ହୋଇ ନାହିଁ ? ପୁତ୍ର କଳତ୍ରଙ୍କ ମୋହ ! ପତ୍ନୀ-ସଂସାରର ମୋହ ! ଆତ୍ମୀୟ ପରିଜନଙ୍କର ମୋହ !

ଏମିତି ଅନେକ ଅଳସ ଅପରାହ୍ଣ ବିତି ଯାଇଛି ଯେତେବେଳେ ରହି ରହି ଜନନୀ

ଗାନ୍ଧାରୀଙ୍କ ଅଭିଶାପ ମୋ ସ୍ମୃତି ପଟରେ ଭାସି ଉଠିଛି । ଭବିଷ୍ୟତକୁ କିଏ ଏଡ଼େଇ ପାରିବ ? ଆରମ୍ଭର ଶେଷ ଥାଏ ତା'ବି କିଏ ନଜାଣେ ? ତଥାପି.... ତଥାପି ସବୁ ଘଟଣା କେମିତି ବହୁ ଆଗରୁ ବିଧାତା ଦ୍ୱାରା ଗ୍ରଥିତ ହୋଇଥାଏ ! ସେଦିନ ପର୍ଯ୍ୟନ୍ତ ଜାମ୍ବବତୀ ନନ୍ଦନ ଶାମ୍ବ କ'ଣ ଜାଣିଥିଲା ସେହିଁ ହେବ ଯଦୁବଂଶ ଧ୍ୱଂସର ଏକ ଆୟୁଧ ? ସତୀ ଦିବ୍ୟ ଦର୍ଶିନୀ ଗାନ୍ଧାରୀଙ୍କ ଅଭିଶାପ ଫଳବତୀ ହେବାପାଇଁ ମୋର ପୁତ୍ର ପୌତ୍ରଗଣହିଁ ପଥ ପରିଷ୍କାର କରିଦେବେ ? ଏପରିକି ଭାରତ ଯୁଦ୍ଧରେ ସୁଦ୍ଧା ଯଦୁ ଓ ବୃଷ୍ଣି ବଂଶୀୟଙ୍କର ବହୁଳ କ୍ଷତି ହୋଇ ନଥିଲା ; ଅଥଚ ସ୍ୱକୃତ ଅପରାଧରୁ ଏତେବଡ଼ ବଂଶକୁ ଧ୍ୱଂସର ଗହ୍ୱର ଭିତରକୁ ଠେଲି ଦେଲେ ? ଯଦୁବଂଶର ସନ୍ତାନମାନଙ୍କର ଅପରାଧ ପ୍ରବଣତା ପଛରେ ରହିଥିଲା ସେମାନଙ୍କର ମଦମତ୍ତତା । ଏତେବଡ଼ ମହାଯୁଦ୍ଧ ଜୟ କରିଥିଲେ ପାଣ୍ଡବଗଣ କୃଷ୍ଣର ଇଙ୍ଗିତରେ ତେଣୁ ସେହି କୃଷ୍ଣଙ୍କ ବଂଶଧର ମାନଙ୍କର କିଏବା କ୍ଷତି କରିପାରିବ ? ଏଇ ଥିଲା ସେମାନଙ୍କର ଅହଂକାର । ବହୁବାର ମୁଁ ସେମାନଙ୍କୁ କଥା ପ୍ରସଙ୍ଗରେ କହିଛି ଦେବ, ବିପ୍ର ଓ ଋଷି - ଏମାନଙ୍କ ଅପମାନ କୌଣସି ଦିନ କ୍ଷମଣୀୟ ହୁଏ ନାହିଁ । ଶାମ୍ବ ତ ଏକଦା ଋଷି ଅଭିଶାପରେ ଶାପଗ୍ରସ୍ତ ହୋଇ ବହୁ କଷ୍ଟରେ ସୂର୍ଯ୍ୟତପସ୍ୟା କରି ଆରୋଗ୍ୟ ଲାଭ କରିଥିଲା ! ସେ ପୁଣି ଋଷିଙ୍କ ସମ୍ମୁଖକୁ ଏଭଳି ନିଷ୍ଠୁର କୌତୁକରେ ଅଂଶ ଗ୍ରହଣ କରିବାକୁ ଗଲା କାହିଁକି ? ତା'ବି ହୁଏତ ଥିଲା ବିଧାତାର ନିର୍ଦ୍ଦେଶ ।

ରୂପବାନ୍ ଶାମ୍ବ । ନାରୀ ବେଶରେ ସୁସଜ୍ଜିତା ହେଲେ ଯିଏ ନାରୀ ଭିନ୍ନ ଆଉ କିଛି ମନେ ହୁଅନ୍ତି ନାହିଁ । ସେଦିନ ଦ୍ୱାରକାକୁ ଆସିଥିଲେ ଦେବର୍ଷି, ବିଶ୍ୱାମିତ୍ର ଓ କଣ୍ୱ । ଦୈବାତ୍ ଏହି ମଦମତ୍ତ ଯଦୁବଂଶୀ ସନ୍ତାନଙ୍କ ମସ୍ତିଷ୍କରୁ ଏକ ଅପୂର୍ବ ଖଳବୁଦ୍ଧି ସଂଜାତ ହୋଇଥିଲା । ଏହି ନବଯୁବକ ମଦମତ୍ତ ସନ୍ତାନଗଣ ଶାମ୍ବର ଉଦରରେ କୃତ୍ରିମ ଭାବେ ବହୁ ବସ୍ତ୍ରାଦି ବାନ୍ଧି ତାହାକୁ ଏକ ସନ୍ତାନ ସମ୍ଭବା ନାରୀର ଛଦ୍ମବେଶରେ ସଜ୍ଜିତ କରି ମୁନିଗଣଙ୍କୁ ପ୍ରଶ୍ନ କଲେ- 'ଏଇ ନାରୀଟି ବୀର ବ୍ରଭୃଙ୍କ ସନ୍ତାନ । ଇଏ ପୁତ୍ରାଭିଳାଷିଣୀ । ତେବେ ଏ ନାରୀ ପୁତ୍ର ନା କନ୍ୟା କ'ଣ ପ୍ରସବ କରିବ ? ଆପଣମାନେ ତ୍ରିକାଳଦର୍ଶୀ ମୁନି ଏହାର ଗର୍ଭଲକ୍ଷଣ ଦେଖି କୁହନ୍ତୁ !'

ପ୍ରକୃତରେ ଏ ମୁନିତ୍ରୟ ତ୍ରିକାଳଦର୍ଶୀ । ମୁହୂର୍ତ୍ତକରେ ତାଙ୍କ ଚକ୍ଷୁରେ ସମସ୍ତ ରହସ୍ୟ ସ୍ପଷ୍ଟ ହୋଇଉଠିଲା । ମୁନିଗଣ ରୋଷକଷାୟିତ ନେତ୍ରରେ ଥରେ ଶାମ୍ବଙ୍କର ସ୍ଫୀତ ଉଦରକୁ ଚାହିଁଲେ, ତା'ପରେ କହିଲେ- 'ହେ ଯଦୁବଂଶୀ ଗଣ ! କୃଷ୍ଣଙ୍କ ପ୍ରଭାବ ଓ ପ୍ରତିଷ୍ଠା ହେତୁ ତୁମ୍ଭେମାନେ ଯଥେଚ୍ଛାଚାରୀ, ବ୍ୟଭିଚାରୀ, ନୃଶଂସ ଓ ଦର୍ପୋଦ୍ଧତ ହୋଇ ଉଠିଛ ! ଏତେ ବଡ଼ କୌରବ ବଂଶ ଧ୍ୱଂସ ହୋଇଗଲା ! ତଥାପି ତୁମର ଜ୍ଞାନୋଦୟ ହେଲାନାହିଁ ? ବାସୁଦେବ କୃଷ୍ଣଙ୍କ ପ୍ରଭାବ ଓ ପ୍ରତିଷ୍ଠାର ଏହି ଅସଦୁପଯୋଗ କରୁଛ ? ତେବେ ଶୁଣ- ଏହି ନାରୀ ଏକ

ଲୌହ ମୂଷଳ ପ୍ରସବ କରିବ । ସେହି ଲୌହ ମୂଷଳ ହିଁ ହେବ ତୁମ ବଂଶ ନାଶର ହେତୁ- ନା-କେହି ହେଲେ ରକ୍ଷା ପାଇ ପାରିବେ ନାହିଁ !'

ସେମାନେ ଆଉ ରାଜଭବନ ଭିତରକୁ ନଆସି ତୋରଣ ଦ୍ୱାରରୁ ଫେରିଗଲେ । ମୁଁ ସେଇମାତ୍ର ରାଜସଭାରୁ ଫେରିଥାଏ । କ୍ଳାନ୍ତ ପଦରେ ବିଶ୍ରାମ କକ୍ଷ ଆଡ଼କୁ ଅଗ୍ରସର ହେଉଥାଏ । ଏହି ସମୟରେ ବିଶ୍ରାମ କକ୍ଷ ନିକଟରେ ଅଧୋବଦନରେ ବିରସ ମୁଖରେ ମୋର ବିଶ୍ୱସ୍ତ ଅନୁଚରକୁ ଠିଆ ହୋଇଥିବାର ଦେଖିଲି । ମୋତେ ଦେଖିବାମାତ୍ରେ ସେ କହିଲା- 'ମହାଭାଗ ! ଭୀଷଣ ଦୁର୍ଯୋଗ ଉପସ୍ଥିତ । ଆପଣ ରକ୍ଷା କରନ୍ତୁ !'

ତା'ର ଲୁହ ଛଳ ଛଳ କାତର ମୁହଁକୁ ଚାହିଁ ମୁଁ ବିବ୍ରତ ହୋଇ ପ୍ରଶ୍ନ କଲି- 'କ'ଣ ହେଲା ? କେଉଁ ଦୁର୍ଯ୍ୟୋଗ କଥା କହୁଛ ? ନିର୍ଭୟରେ କୁହ ।'

ସେ କହିଲା- 'ମହାଭାଗ ! ଦେବର୍ଷି ନାରଦ, ମୁନି ବିଶ୍ୱାମିତ୍ର ଓ କଣ୍ୱ ରାଜଭବନରେ ଆତିଥ୍ୟ ଗ୍ରହଣ କରିବାକୁ ଆସିଥିଲେ । ସେମାନେ ଅତିଥି ଭବନର ମୁଖ୍ୟ ଦ୍ୱାର ନିକଟରୁ ଫେରିଯାଇଛନ୍ତି ।'

'ଫେରି ଯାଇଛନ୍ତି ? ଏମିତିତ ହୁଏ ନାହିଁ । ଏମିତି ହେବାର ନଥିଲା ! ଦ୍ୱାରକାପୁରୀରୁ ମହର୍ଷିଗଣ ଫେରିଗଲେ ? ଦେବର୍ଷି ନାରଦ ମୋ ସହ ସାକ୍ଷାତ ନକରି ଫେରିଗଲେ ?' ମୁଁ ବିବ୍ରତ ହୋଇପଡ଼ିଲି । ଅନୁଚର କହିଲା- 'ମହାଭାଗ ! ସେମାନେ ଅପମାନିତ ହୋଇ ଫେରିଯାଇଛନ୍ତି । କୁମାରଗଣ ତାଙ୍କ ସହ ପରିହାସ କରିଛନ୍ତି, ସେମାନଙ୍କ ଜ୍ଞାନ, ଗାରିମା, ତ୍ରିକାଳ ଦର୍ଶିତା ଉପରେ ସନ୍ଦେହ ପ୍ରକାଶ କରି ମିଥ୍ୟା ପ୍ରହସନ ସୃଷ୍ଟି କରିଛନ୍ତି !'

ଅନୁଚର ନିଜେ ମଧ୍ୟ ଭୟଭୀତ ହୋଇପଡ଼ିଥିଲା । ମୁଁ ଏତିକି ଶୁଣିବାମାତ୍ରେ ମୋର ଅପାଦମସ୍ତକ ଘୂର୍ଣ୍ଣିତ ହେବାକୁ ଲାଗିଲା । ମୋ ଧମନୀର ସମସ୍ତ ରକ୍ତବାହୀ ଶିରାରେ ଯେପରି ତୁଷାର ପ୍ରବାହ ପ୍ରବାହିତ ହେବାକୁ ଲାଗିଲା । ମନେ ପଡ଼ିଗଲା ଅତୀତରେ ମୋର ନବୀନ ବୟସରେ ନବକିଶୋରୀ ରୁକ୍ମିଣୀ ଓ ମୁଁ ଉଗ୍ରତେଜା ଦୁର୍ବାସା ମୁନିଙ୍କର କି ପ୍ରକାର ସେବା ନକରିଛୁ । ଅଭିଶାପ ଭୟରେ ତାଙ୍କର ସମସ୍ତ ନିର୍ଦ୍ଦେଶ ମାନି ନେଇଛୁ । ମୋର ବଂଶଧର ଗଣ ଏ କ'ଣ କଲେ ? ଋଷିଙ୍କୁ ଅପମାନ ? - 'ପ୍ରଭୁ !' କାହାର ଅଶ୍ରୁରୁଦ୍ଧ ସ୍ୱର ଶୁଣି ଚମକି ଚାହିଁଲି । ମୋ ପଦ ପ୍ରାନ୍ତରେ ରୋରୁଦ୍ୟମାନା ଜାମ୍ବବତୀ । ସେ କିଛି କହି ପାରୁନଥିଲେ । କହିବାକୁ ଚେଷ୍ଟାକରି ବାରମ୍ବାର ତାଙ୍କ କଣ୍ଠ ବାଷ୍ପରୁଦ୍ଧ ହେଉଥିଲା । ତାଙ୍କ ପଛରେ ରୁକ୍ମିଣୀ, ସତ୍ୟଭାମା

ଆଦି ଠିଆ ହୋଇଥିଲେ, ସମସ୍ତଙ୍କ ନୟନ ଲୋତକାପ୍ଲୁତ । ମୁଁ ସେମାନଙ୍କୁ କିଛି ପ୍ରଶ୍ନ କରିବା ପୂର୍ବରୁ ପ୍ରଦ୍ୟୁମ୍ନଙ୍କ ସେବକ ଆସି କହିଲା - 'ମହାଭାଗ ! ବିପଦ ସମୁପସ୍ଥିତ । କୁମାର ଶାମ୍ବ ବହୁ ପ୍ରସବ ବେଦନା ସହ୍ୟ କରିବାପରେ ଏକ ଲୌହ ମୂଷଳ ପ୍ରସବ କରିଛନ୍ତି !'

ଏହିସବୁ ଦୁର୍ଘଟଣାର ଆକସ୍ମିକତାରେ ମୁଁ ଅଭିଭୂତ ହୋଇ ପଡ଼ିଥିଲି । କେଉଁ ଭାଷାରେ ଏହି ଦୂରାଚାରୀ ପୁତ୍ରମାନଙ୍କର ମାତା ମାନଙ୍କୁ ପ୍ରବୋଧନା ଦେବି ? କେଉଁ ଭାଷାରେ ବା ତାଙ୍କର ପୁତ୍ରମାନଙ୍କୁ ଭର୍ତ୍ସନା କରିବି ? କେଉଁପରି ଭାବରେ ରୁଷ୍ଟ ମହର୍ଷିମାନଙ୍କୁ ସନ୍ତୁଷ୍ଟ କରିବି ? ଅନେକ ପ୍ରଶ୍ନ ବୃଶ୍ଚିକର ଦଂଶନ ଭଳି ମୋ ମସ୍ତିଷ୍କକୁ ଭାରାକ୍ରାନ୍ତ କରି ପକାଇଲା ।

ଅନେକ ସମୟ ନୀରବ ରହିବା ପରେ ମୁଁ କହିଲି- 'ଅଭିଶାପର ଗ୍ରହଣ ତେବେ ଯଦୁବଂଶକୁ ଗ୍ରାସକଲା ଅବଶେଷରେ ? ଶାପମୁକ୍ତି ସମ୍ଭବ ନୁହେଁ । ତେବେ ଶାପର ପରିଣତି ସଂପର୍କରେ ମୋତେ ଚିନ୍ତା କରିବାକୁ ପଡ଼ିବ ।' ଦୂତକୁ ଡକାଇଲି, କହିଲି- 'ତୁମେ ଯଥାଶୀଘ୍ର ହସ୍ତିନା ଯାଇ ଦ୍ୱିତିୟ ପାଣ୍ଡବଙ୍କୁ ନେଇଆସ !'

ଧ୍ୱଂସହିଁ ଯେତେବେଳେ ଅନିବାର୍ଯ୍ୟ ପରିଣତି । ସେହି ଧ୍ୱଂସକୁ ସ୍ୱାଗତ କରିବା ପାଇଁ ମାନସିକ ପ୍ରସ୍ତୁତି ଆବଶ୍ୟକ । ଭୀମସେନତ ତାଙ୍କର ସମସ୍ତ ବଳ ପ୍ରୟୋଗ କରି ଦ୍ୱାରକାରୁ ବହୁଦୂରରେ ସେହି ଲୌହ ମୂଷଳକୁ ଘର୍ଷଣ କରି ତା'ର ଅବଶେଷ ସୁଦ୍ଧା ରଖିବେ ନାହିଁ ବୋଲି ମୋତେ ପ୍ରତିଶୃତି ଦେଇଥିଲେ । ପ୍ରତିଶୃତି ପାଳନରେ ପଣ୍ଡୁନନ୍ଦନ ଯେ ସିଦ୍ଧ ହସ୍ତ ତା' ମଧ୍ୟ ମୁଁ ଜାଣିଥିଲି । ଛୋଟ ଛୋଟ କଦମ୍ବର ଗଛ ଗୁଡ଼ିକ । ଏରକା ଅରଣ୍ୟ ଏବଂ ଏଇ ସବୁ ବୃକ୍ଷ ମୂଳରେ ଘର୍ଷିତ ଲୌହ କଣିକା ଗୁଡ଼ିକ ଛିଟିକି ପଡ଼ିଲା । ମୂଷଳକୁ ଘୋରି ଘୋରି ଯେତେବେଳେ ନାମ ମାତ୍ର ଅବଶେଷ ଖଣ୍ଡିଏ ଅବଶିଷ୍ଟ ରହିଲା, ଭୀମସେନ ତାହାକୁ ପଶ୍ଚିମର ସମୁଦ୍ର ତଟକୁ ଫିଙ୍ଗି ଦେଇଥିଲେ । ଯେମିତିକି ବହୁ ଦୂରରୁ ତାହା ଯଦୁବଂଶର କ୍ଷତି ସାଧନରେ ସମର୍ଥ ହେବ ନାହିଁ ।

ଶେଷ.... ଶେଷ.... ସବୁ ଶେଷ । ଚତୁର୍ଦ୍ଦିଗରେ କେବଳ ଶେଷର ପଦଧ୍ୱନୀ । ସର୍ବତ୍ର ଅଜ୍ଞାତ ଆତଙ୍କର ଶିହରଣ । ଜ୍ୟେଷ୍ଠଭ୍ରାତା ବଳରାମ ମଧ୍ୟ ପ୍ରଭାସତୀର୍ଥ ଯାତ୍ରା କରିଥା'ନ୍ତି ତପଃ ସାଧନ ନିମିତ୍ତ । ତାଙ୍କ ଅଭାବରେ ସମଗ୍ର ଦ୍ୱାରକା ମୋତେ ଜନଶୂନ୍ୟ ମନେ ହେଉଥାଏ । ପ୍ରଭାସ ତୀର୍ଥ ମୋତେ ମଧ୍ୟ ହାତ ଠାରି ଡାକୁଥାଏ । କିନ୍ତୁ ମୁଁ ଅପେକ୍ଷା କରିଥାଏ ଆଉ କିଛି ଦେଖିବାକୁ, ଆଉ କିଛି ଶୁଣିବାକୁ, ଆଉ କିଛି ଭୋଗ କରିବାକୁ ।

ଗଭୀର ରାତ୍ରିରେ କେମିତି ଏକ ଦୁଃସ୍ୱପ୍ନରେ ମୁଁ ଅବସନ୍ନ ହୋଇପଡ଼େ । ହଁ, ମୁଁ ଦେଖେ କୁରୁ ରଣାଙ୍ଗନର ସେଇ ନିର୍ଜନ ଶ୍ମଶାନ, ଯେଉଁଠି ସ୍ତୁପ ସ୍ତୁପ ପଳିତ ମାଂସ, ଗଳିତ

ଶରୀର, ରକ୍ତର ପ୍ରବାହ, ଅସ୍ଥି-ପଞ୍ଜର ସମାରୋହ ଭିତରେ ମୁଁ ଏକା ଅସହାୟ ଭାବେ ମଥାପାତି ରହିଛି । ନା - ସେଠାରେ କେହି ଦିଶନ୍ତି ନାହିଁ ମୋର ଏ ଦୁଃସହ ପୀଡ଼ାର ଅଂଶୀଦାର ହେବା ପାଇଁ, ଏପରିକି ସଖା ସବ୍ୟସାଚୀ ମଧ୍ୟ ନଥାନ୍ତି । ଧରଣୀରୁ ଅନ୍ତରୀକ୍ଷ ଯାଏ ପରିବ୍ୟାପ୍ତ ହେଉଥାଏ କେବଳ ଗୋଟାଏ ନିଷ୍ଠୁର ଅଭିଶାପ - 'ତୁମ ବଂଶ ଧ୍ୱଂସ ହୋଇଯିବ କୃଷ୍ଣ ! ନାଶ ହୋଇଯିବ ଯଦୁବଂଶ !'

ଅଭିଶାପର କର୍କଶତାରେ ମୁଁ ନିର୍ବାକ ହୋଇଯାଏ । ସ୍ୱପ୍ନ ଭଂଗ ହେବା ପରେ ମଧ୍ୟ ମୋତେ ଅବସାଦ ଘେରିଯାଏ । ଗୋଟିଏ ରାତି ପାହି ସକାଳ ହୋଇଯାଏ । ଭୟ ଏକ ଏମିତି ଅନୁଭୂତି ଥରେ ଯଦି ଗ୍ରାସ କରିଯାଏ ତେବେ ବହୁ କଷ୍ଟରେ ସେଥିରୁ ମୁକ୍ତି ମିଳେ । ଏଇ କେତେଦିନ ଧରି ଗୋଟାଏ କଥା ଦ୍ୱାରକା ନଗରୀ ସାରା ପ୍ରଚାରିତ ହେଉଥାଏ । କେହି ଜଣେ ହୁଏତ ସ୍ୱପ୍ନ ଦେଖିଛି ଏକ ଅଦ୍‌ଭୁତ ଜୀବ, ଯାହାର ନଅଟା ପକ୍ଷ, ତିନୋଟି ଚକ୍ଷୁ, ସୁଦୀର୍ଘ ଜିହ୍ୱା, ରକ୍ତ ଚକ୍ଷୁ, ପିଙ୍ଗଳ ବର୍ଣ୍ଣର କେଶଭାର, ତୀକ୍ଷ୍ଣ ଦନ୍ତ । ଏଇଭଳି ଅଶ୍ରୁତ ପୂର୍ବ, ଅଭୂତପୂର୍ବ ଏକ ଜୀବ, ଯାହାର ଅଶୁଭ ପଦପାତରେ ଯଦୁବଂଶର ଧ୍ୱଂସର ମୁଦ୍ରାଙ୍କ ସ୍ପଷ୍ଟ । ଏଇ ସ୍ୱପ୍ନ ବୃତ୍ତାନ୍ତ ମୁହଁରୁ ମୁହଁ ସର୍ବତ୍ର ପରିବ୍ୟାପ୍ତ ହୋଇଥାଏ । ଦ୍ୱାରକା ନଗରୀ ଭୟରେ ଥରହର । ସୂର୍ଯ୍ୟାସ୍ତ ପରେ ପରେ ଜନଶୂନ୍ୟ ହୋଇଯାଏ ଦ୍ୱାରକାର ରାଜଦାଣ୍ଡ । ଯାହା ସେଦିନ ପର୍ଯ୍ୟନ୍ତ ମଧ୍ୟ ରାତ୍ରି ଯାଏ ଗହ ଗହ କଂପୁଥିଲା । ନୀରବ ବିପ୍‌ପଣୀ, ନୀରବ ରାଜଦାଣ୍ଡ, ସର୍ବତ୍ର ଭୟହିଁ ଭୟ, କେବଳ କେଉଁ ଏକ ଅଶୁଭ, ଅନ୍ତିମ ଲଗ୍ନର ପ୍ରତୀକ୍ଷାରେ ପ୍ରତ୍ୟେକ ସତର୍କ ଥାଆନ୍ତି ଯେମିତି । ମୁଁ ନିଜେ ମଧ୍ୟ ନିଶ୍ଚିନ୍ତ ନଥାଏ ।

ସେଦିନ ସବୁଦିନ ଭଳି ଘଣ୍ଟ, ଘଣ୍ଟା,ପଟହ, କାହାଳୀ, ଶଙ୍ଖ, ହୁଳ ହୁଳି ଭିତରେ ରାତି ଟିଏ ପାହି ପ୍ରଭାତର ସନ୍ଦେଶ ଦେବା ମାତ୍ରେ ନିଶାନ୍ତ କହିଲା - 'ମହାଭାଗ ! ଦେବର୍ଷି ନାରଦ ଆପଣଙ୍କ ଦର୍ଶନ ଅପେକ୍ଷାରେ !'

ଦେବର୍ଷି ନାରଦ ? ସେଇ ଘଟଣା ପରଠାରୁ ସେ ଆଉ ଦ୍ୱାରକା ଆସିନଥିଲେ । ମୁଁ ଉଚ୍ଚକିତ ହୋଇଉଠିଲି । ଦେବର୍ଷି ନାରଦ ମୋର ବହୁ ସଂଶୟର ସମାଧାନ କରିଛନ୍ତି ଅତୀତରେ । ଏ ସଂଶୟର ସମାଧାନ ମଧ୍ୟ ନିଶ୍ଚୟ କରିବେ । କେଉଁଠାରେ ଭଲା ସେ ମୋତେ ସହଯୋଗ କରିନାହାନ୍ତି ? ଶକ୍ରାଜିତ ନନ୍ଦିନୀ ସତ୍ୟଭାମା ଯେତେବେଳେ ମୋର ପ୍ରିୟ ବଲ୍ଲଭୀ ହେତୁ ସମସ୍ତଙ୍କ ଶୀର୍ଷରେ ତାଙ୍କ ସ୍ଥାନ ବୋଲି ଗର୍ବ କରୁଥିଲେ, କାରଣ ସ୍ୟମନ୍ତକ ମଣିର ସେ ଥିଲେ ଅଧିକାରିଣୀ । ସେ ଥିଲେ ପରମା ସୁନ୍ଦରୀ, ତାଙ୍କର ଅଳି ପୂରଣ କରିବା ପାଇଁ ମୁଁ ବି

ଇନ୍ଦ୍ରଙ୍କ ନନ୍ଦନବନରୁ ପାରିଜାତ ବୃକ୍ଷ ତାଙ୍କ ଉଦ୍ୟାନକୁ ଆଣିଥିଲି । ଏଇଭଳି ବହୁବିଧ କାରଣରୁ ସେ ଥିଲେ ଗର୍ବିଣୀ । ମୋର ଅଷ୍ଟ ପାଟବଂଶୀଙ୍କ ଶୀର୍ଷ ସ୍ଥାନୀୟା ହେବା ଲାଳସାରେ ସେ ଦେବର୍ଷିଙ୍କ ସାହାଯ୍ୟ ଭିକ୍ଷା କରିଥିଲେ । ମୁଁ ଓ ଦେବର୍ଷି ଏଇ ସୁଯୋଗର ଅପେକ୍ଷାରେ ଥିଲୁ । ଦେବର୍ଷିଙ୍କ ପ୍ରରୋଚନାରେ ସତ୍ୟଭାମା ଏକ ଯଜ୍ଞାନୁଷ୍ଠାନ କରିଥିଲେ ଓ ପୂର୍ଣ୍ଣାହୂତି ପରେ ମୋ ଦେହ ଭାରର ସମପରିଣାମ ରତ୍ନ ଦାନ କରି ସେ ଆହୁରି ଗର୍ବିତା ହେବାକୁ ଚାହୁଁଥିଲେ । ମୁଁ ଚାହୁଁଥିଲି ତାଙ୍କର ଗର୍ବ ଗଞ୍ଜନ କରି ତାଙ୍କୁ ଅହଂଶୂନ୍ୟ କରିବାକୁ । ସେଦିନ ମୋର ଗୁରୁଭାର ଦେହ ତୁଳନାରେ ଦ୍ୱାରକାର ରାଜକୋଷ ସୁଦ୍ଧା ତୁଚ୍ଛ ଥିଲା । ଶୂନ୍ୟ ହୋଇ ଯାଇଥିଲା ରାଜକୋଷର ସମସ୍ତ ଧନରତ୍ନ, ଚୂର୍ଣ୍ଣ ହୋଇଯାଇଥିଲା ସତ୍ୟଭାମାଙ୍କର ଅଭିମାନ; ଯେତେବେଳେ ଦେବର୍ଷିହିଁ ଏକ ମୁଷ୍ଟି ତୁଳସୀ ପତ୍ର ମୋଠାରୁ ସୁଦ୍ଧା ଗୁରୁଭାର ଯୁକ୍ତ ବୋଲି ପ୍ରମାଣ କରିଥିଲେ । ପୁଣି ଏଇ ଦେବର୍ଷି ଏକଦା ଅଷ୍ଟପାଟବଂଶୀଙ୍କ ଗର୍ବ ଗଞ୍ଜନ ନିମିତ୍ତ ମୋର ଜ୍ୱରାକ୍ରାନ୍ତ ଶରୀରକୁ ରୋଗମୁକ୍ତ କରିବାପାଇଁ ଶ୍ରୀରାଧା ଓ ଗୋପନାରୀଙ୍କ ପାଦଧୂଳି ମାଗି ଆଣି ଗୋପାଙ୍ଗନାଙ୍କର ଭକ୍ତି ଓ ପ୍ରୀତିର ଶ୍ରେଷ୍ଠତା ପ୍ରତିପାଦନ କରିଥିଲେ । ସେଇ ଦେବର୍ଷି ନାରଦ ମୋ ଦର୍ଶନ ଅପେକ୍ଷାରେ । ମୁଁ ଯଥାଶୀଘ୍ର ତାଙ୍କ ନିକଟରେ ପହଞ୍ଚି ଗଲି ।

ସେ ମୋତେ ଏଭଳି ଅଭିଭୂତ ଭାବେ ଚାହିଁ ରହିଲେ ଯେ ଯେମିତି ଦ୍ୱାରକା ନଗରୀରେ କ୍ରମାଗତଭାବେ ଘଟୁଥିବା ଅଘଟଣ ସଂପର୍କରେ ସେ କିଛି ଜାଣନ୍ତି ନାହିଁ କିମ୍ବା ଯଦୁବଂଶ ଧ୍ୱଂସ ବିଷୟରେ ମଧ୍ୟ ସେ ସଂପୂର୍ଣ୍ଣ ଅଜ୍ଞାତ । ସେ ବରଂ ଅଶ୍ରୁ ଗଦ୍ ଗଦ୍ ସ୍ୱରରେ କହିଲେ - 'ପ୍ରଭୁ ! କେତେ ଯୁଗରୁ ସତେକି ଶ୍ରୀମୁଖ ଦର୍ଶନରୁ ବଞ୍ଚିତ ହୋଇ ରହିଛି । ମନେ ହେଉଛି ପ୍ରଭୁ ଚିନ୍ତିତ କୌଣସି ଏକ ଗୁରୁତର ସମସ୍ୟାକୁ ନେଇ ବିବ୍ରତ !'

ମୁଁ ହସିଲି, କହିଲି- 'ମୁନି ବାକ୍ୟ ଅନ୍ୟଥା ହେବାର ନୁହେଁ ଦେବର୍ଷି ! ଶାମ୍ବ ଲୌହ ମୂଷଳ ପ୍ରସବ କରିସାରିଛନ୍ତି । ଯଦୁବଂଶ ନାଶର ପଥ ପରିଷ୍କାର ହୋଇ ଯାଇଛି !'

- 'ଓ !' ଏଭଳି ନିର୍ଲିପ୍ତ ଭାବେ କହିଲେ ଯେମିତି ଏହା ସେ ବହୁ ଆଗରୁ ଜାଣିଥିଲେ ବା ଏ ସଂବାଦରେ କୌଣସି ବୈଚିତ୍ର୍ୟ ନାହିଁ ।

ଦେବର୍ଷିଙ୍କ ହାତଦୁଇଟିକୁ ମୁଁ ଧରି ପକାଇଲି, କଣ୍ଠ ବାଷ୍ପରୁଦ୍ଧ ହୋଇଗଲା, ମୋର ଚକ୍ଷୁ ଦୁଇଟିବି ହୁଏତ ଅଶ୍ରୁ ବାଷ୍ପାଛନ୍ନ ହୋଇଉଠିଲା, ସେଇ ମୁହୂର୍ତ୍ତରେ ମୁଁ କିଛି ଦେଖି ପାରିଲି ନାହିଁ ।

ଦେବର୍ଷି ମୁହୂର୍ତ୍ତେ ସ୍ତବ୍ଧ, ଚକିତ ହୋଇଗଲେ । ତାପରେ ଧିରେ ଧିରେ କହିଲେ-

'ପ୍ରଭୋ ! ସୁଖ ଦୁଃଖର ବହୁ ଉର୍ଦ୍ଧ୍ୱରେ ଆପଣ । ଶୋକବି କ'ଣ ଆପଣଙ୍କୁ ମ୍ରିୟମାଣ କରେ ? ଏ ଧୂଳି ଧରାର ଜନ୍ମ ମୃତ୍ୟୁର ଚକ୍ର ସଂପର୍କରେ ଆପଣବି କ'ଣ ଅଜ୍ଞ ? ବଂଶ ନାଶର ପରିକଳ୍ପନାରେ ରକ୍ତମାଂସର ଜଣେ ସାଧାରଣ ମଣିଷ ଭଳି ଆପଣବି ଆତଙ୍କିତ ? ଶୋକ ବିମୂଢ଼ ?'

-ହଁ, ହଁ ମୁଁ ମଣିଷ ହେବାକୁ ଚାହିଁଥିଲି ଦେବର୍ଷି ! ମଣିଷଟିଏ ଭଳି ବଞ୍ଚିବାର ଲାଳସା ନେଇ ଏ ଧୂଳିର ଧରଣୀରେ ଧରାବତରଣ କରିଥିଲି । ମଣିଷର ସୁଖ ଦୁଃଖକୁ ଆଦରି ନେଇଥିଲି । ମୋତେ କାହିଁକି ମହାପୁରୁଷ କରି ଦିଆଗଲା ? କାହିଁକି ମୋତେ ପରମେଶ୍ୱର କରିଦିଆଗଲା ? ମୋର ଆନନ୍ଦ ବିଷାଦର ଅନୁଭୂତି ଗୁଡ଼ିକୁ ମୁଁ ବା କେଉଁ ପରି ଗୋପନ ରଖିପାରିବି ? ତ୍ରୁଟି ବିଚ୍ୟୁତି ସମନ୍ୱିତ ସାଧାରଣ ମଣିଷଟିଏ ମୁଁ ହେବାକୁ ଚାହିଁଥିଲି,ମୋତେ କାହିଁକି ମହାଯୋଗେଶ୍ୱର କରିଦିଆଗଲା ? ଏଇ ଦେଖ ! ଦେବର୍ଷି ଦେଖ, ମୋ ବଂଶ ନାଶର ସମ୍ଭାବ୍ୟ ପରିକଳ୍ପନାରେ ମୁଁ କାତର ହୋଇ ଉଠୁଛି । ମୋର ପୁତ୍ର, ପୌତ୍ର, ଅଷ୍ଟ ପାଟବଂଶୀଙ୍କର ରମଣୀୟ ସୌନ୍ଦର୍ଯ୍ୟ, ଭୋଗୈଶ୍ୱର୍ଯ୍ୟ ଏସବୁ ମୋର ବାଂଛିତ ନଥିଲେ ମଧ୍ୟ ଏସବୁର ମୁଁ ଅଧିକାରୀ ହୋଇଛି ! ଏ ମାୟାକୁ ମୁଁ ବିସର୍ଜନ ଦେବି କିପରି ? ଯେଉଁ ଦିଗକୁ ଚାହୁଁଛି ମାୟାର ରଜ୍ଜୁହିଁ ମୋତେ ଆକର୍ଷଣ କରି ନେଉଛି !' ମୋର ଏ ଉତ୍ତେଜିତ ବକ୍ତବ୍ୟ ଓ ବିବୃତିରେ ନାରଦ ଆଦୌ ପ୍ରଭାବିତ ହେଲେ ନାହିଁ; ବରଂ ନିରୁତ୍ତାପ ସ୍ୱରରେ କହିଲେ, 'ମାୟାର ରଜ୍ଜୁ ଆପଣଙ୍କୁ ଆକର୍ଷଣ କରୁଛି ? ମୋ ସହ ପ୍ରତାରଣା କରନ୍ତୁ ନାହିଁ । ମଥୁରା ପୁରର କଂସ କାରାକକ୍ଷରୁ ଯେତେବେଳେ ଗୋପ ପୁରକୁ ଯାଇଥିଲେ, ହେ ଇଚ୍ଛାମୟ ! ନିଜ ଇଚ୍ଛାରେ ହିଁ ତ ଆପଣ ଯାଇଥିଲେ ସେଦିନ, କାହିଁ ? ଜନନୀ ଦେବକୀଙ୍କର, ପିତା ବସୁଦେବଙ୍କ ମାୟା ଆପଣଙ୍କୁ ତ ଆକର୍ଷିତ କରିନଥିଲା ? ଗୋପପୁରରେ ଗୋପରମଣୀ, ନନ୍ଦ ଯଶୋମତୀ, ଗୋ-ଗ୍ରୋଷ୍ଠ, ବୃନ୍ଦାରଣ୍ୟ, ଯମୁନାର ନୀଳ ଜଳୋଚ୍ଛ୍ୱାସ- ଏମାନଙ୍କର ମାୟା ଅପଣଙ୍କୁତ ଆକର୍ଷିତ କରିନଥିଲା ? ଅକ୍ରୁରଙ୍କ ସହ ମଥୁରା ଚାଲି ଆସିଥିଲେ, ମଥୁରାରୁ ପୁଣି ଆସିଥିଲେ ଦ୍ୱାରକା-ଦ୍ୱାରକାରୁ କୁରୁକ୍ଷେତ୍ର, କୁରୁକ୍ଷେତ୍ରର ସେଇ ଭୀଷଣତା, ନିର୍ମମତା, ମହାଶ୍ମଶାନର ସ୍ତବ୍ଧତା, ଆତ୍ମୀୟ ପରିଜନଙ୍କ ବିୟୋଗ..... କେଉଁଠାରେ ଭଲା ବିଚଳିତ ହୋଇଛନ୍ତି ଆପଣ ? କେଉଁଠାରେ ଭଲା ମାୟା ଆକର୍ଷଣ କରିଛି.? ମୁଁ ଯାହା ଜାଣେ ଆପଣଙ୍କ ଗତିତ ଆଗକୁ-ଆଗକୁ - ପଛକୁ ଲେଉଟି ଚାହିଁବା ଆପଣଙ୍କର ସ୍ୱଭାବ ବିରୁଦ୍ଧ ! ତେବେ ଆଜି କାହିଁକି ଏତେ ବିଚଳିତ ପ୍ରଭୁ ? ହେ ନିର୍ଲିପ୍ତ ମହାଯୋଗୀ ! ଆଜି ଆପଣବି କାହିଁକି ମୋହର ଅଧିନ ହେଉଛନ୍ତି ? ଆପଣଙ୍କ ଗନ୍ତବ୍ୟତ ପ୍ରଭାସ ତୀର୍ଥ, ତାହାହିଁ ତ ଆପଣଙ୍କ ଲକ୍ଷ୍ୟପଥ । ସ୍ମରଣ

କରନ୍ତୁ ପ୍ରଭୁ କେବେ କାହାକୁ କେଉଁଠାରେ କିଛି ହେଲେ ପ୍ରତିଶୃତି ଦେଇନାହାନ୍ତି ? କେହି ଯଦି ଆପଣଙ୍କୁ ଅପେକ୍ଷା କରିଥାଏ ? - ପ୍ରତିଶ୍ରୁତି ? କେଉଁପ୍ରତିଶୃତି ? କାହାକୁ ? କେଉଁଠି ? ତଡ଼ିତ୍ ପ୍ରବାହ ଭଳି ଏକ ସ୍ମୃତି ମୋ ଚକ୍ଷୁ ସମ୍ମୁଖରେ ଉଦ୍‌ଭାସିତ ହୋଇ ଉଠିଲା । ବଡ଼ ଅସ୍ପଷ୍ଟ, ଅସ୍ୱଚ୍ଛ ସେ ସ୍ମୃତି । ମୁଁ ପୁଣିଥରେ ଅଶ୍ରୁ ଟଳମଳ ଆଖିରେ ଅସହାୟ ଭାବେ ଦେବର୍ଷିଙ୍କୁ ଚାହିଁଲି ।

ଦେବର୍ଷି ରହସ୍ୟମୟ ଭାବେ ହସିଲେ । ବହୁ ଦୂରରୁ କହିବା ଭଳି ଗମ୍ଭୀର ସ୍ୱରରେ କହିଲେ- 'କର୍ତ୍ତବ୍ୟ ଶେଷ ହୋଇଛି ପ୍ରଭୋ ! ସର୍ତ୍ତମୂଳକ ଭାବେ ଆପଣ ଧରାବତରଣ କରିଥିଲେ, ଯେମିତି ପ୍ରତି ଯୁଗରେ କରନ୍ତି ।'

ସେଇ ଅଶ୍ରୁବାଷ୍ପାଚ୍ଛନ୍ନ ଦୃଷ୍ଟିରେ କେତେ ପୁରୁଣା ଦିନର, ନା- ନା କେଉଁଯୁଗର.... ଗତ ଜନ୍ମର ସ୍ମୃତି ଉଦ୍‌ଭାସିତ ହୋଇଉଠିଲା । ହଁ, ମୋର ମନେ ପଡ଼ିଗଲା । ତ୍ରେତା ଯୁଗରେ ମୁଁ ପ୍ରତିଶୃତି ଦେଇଥିଲି କାହାକୁ ! ସେ ଜଣକ ବୋଧହୁଏ ପିତୃଶୂନ୍ୟ ଏକ ନବୀନ ଯୁବକ । ସବୁକିଛି ସ୍ପଷ୍ଟ ହୋଇଗଲା । କିଷ୍କିନ୍ଧ୍ୟାରେ ସେଇ ଦୁଃଖଦ ସ୍ମୃତି । ତ୍ରେତା ଯୁଗରେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର ସୁଗ୍ରୀବଙ୍କ ସହ ମିତ୍ରତା କରି କିଷ୍କିନ୍ଧ୍ୟା ଅଧିପତି ବାଳୀକୁ ବଧ କରିଥିଲେ । କିନ୍ତୁ ସମ୍ମୁଖ ସମରରେ ନୁହେଁ । ପାର୍ବତ୍ୟ ଉପତ୍ୟକାରେ ଯୁଦ୍ଧ ଅନୁଷ୍ଠିତ ହୋଇଥିଲା । ଘଞ୍ଚ ଅରଣ୍ୟାନୀରୁ ଏକ ତୀକ୍ଷ୍ଣ ତୀର ବାଳୀର ବକ୍ଷବିଦ୍ଧ କରିଥିଲା । ଶ୍ରୀରାମଚନ୍ଦ୍ର ଅରଣ୍ୟାନୀରେ ଆତ୍ମଗୋପନ କରି ବାଳୀ ବଧ କରିଥିଲେ । ହଁ, ହଁ, ସେଇଦିନ ପ୍ରଶ୍ନ କରିଥିଲେ ବାଳୀ ପୁତ୍ର ଅଙ୍ଗଦ- 'ସମ୍ମୁଖ ସମରରେ ଅବତୀର୍ଣ୍ଣ ହେବାପାଇଁ ଆପଣଙ୍କ ଶକ୍ତି ଓ ସାମର୍ଥ୍ୟର ଅଭାବ ଥିଲା କି ? ଲୁଚି ଛପି ଯୁଦ୍ଧ କରିବାତ ପ୍ରକୃତ ଯୋଦ୍ଧାର ରଣନୀତି ନୁହେଁ; ବରଂ ଏହା ପ୍ରତାରଣା, ବିଶ୍ୱାସଘାତକତା !'

ରୋରୁଦ୍ୟମାନ ସେଇ ନବୀନ ଯୁବକ ଅଙ୍ଗଦକୁ କୋଳାଗ୍ରତ କରି ସେଦିନ ଶ୍ରୀରାମ ପ୍ରତିଶୃତି ଦେଇଥିଲେ- 'ବତ୍ସ ! ଆମେ ସବୁ ମହାକାଳର ଅଧିନ । ଯେଉଁ ମହାକାଳର ଅଲଂଘ୍ୟ ନିର୍ଦ୍ଦେଶରେ ଆଜି ତୁମ ପିତା ନିହତ, ସେଇ ମହାକାଳର ନିର୍ଦ୍ଦେଶରେ ଦିନେ ତୁମ ଦ୍ୱାରା ମୁଁ ମଧ୍ୟ ନିହତ ହେବି । ମୁଁ ପ୍ରତିଶୃତି ଦେଉଛି । ତୁମରି ହାତରେ ହିଁ ମୋର ମୃତ୍ୟୁ ହେବ ଜନ୍ମାନ୍ତର ପରେ- ଯୁଗାନ୍ତର ପରେ ।'

ଦେବର୍ଷି ରାଣୀହଂସ ପୁରରେ ଅଷ୍ଟପାଟବଂଶୀଙ୍କ ଅତିଥି ଆପ୍ୟାୟନରେ ପରମ ସନ୍ତୋଷ ଲାଭକରି ଫେରି ଯାଇଥିଲେ । ବୀଣାର ମୂର୍ଚ୍ଛନା ସହ ତାଙ୍କ ସ୍ୱରର ସୁଲଳିତ ମୂର୍ଚ୍ଛନା କ୍ରମେ ଅସ୍ପଷ୍ଟରୁ ଅସ୍ପଷ୍ଟତର ହୋଇ ଯାଇଥିଲା । ସଂଧ୍ୟା ଅତିକ୍ରାନ୍ତ ହୋଇଯାଇଥିଲା । ମୁଁ

ମୋହାଛନ୍ନ ଭଳି ବସି ରହିଥିଲି । ବାରମ୍ବାର ମୋର ପଦତଳକୁ ଦୃଷ୍ଟି ଯାଉଥାଏ । ଯେମିତି ମୋର ଅନ୍ତରାତ୍ମା କହି ଉଠୁଥାଏ- 'ଆସ ମହାକାଳ ! ତୁମ ପ୍ରବେଶର ପଥ ପରିଷ୍କାର ହୋଇଯାଇଛି ।'

ରୁକ୍ମିଣୀ ମୋର ମର୍ମ ସହଚରୀ । ମୋର ସମସ୍ତ ମର୍ମବେଦନା ଅପରିସ୍ଫୁଟ ରହିଲେ ମଧ୍ୟ ତାଙ୍କ ଅନ୍ତଃସ୍ଥଳକୁ ସଂକ୍ରମିତ ହୋଇଯାଏ ସ୍ୱତଃ । ଅନେକ ନିର୍ଜନ ନିଶୀଥରେ ମୁଁ ଶଯ୍ୟାତ୍ୟାଗ କରି ଉଠିବସେ । ବାତାୟନ ନିକଟକୁ ଯାଇ ତାରାଙ୍କିତ ନିର୍ବାକ୍ ଆକାଶକୁ ଚାହିଁ ରହେ । ତାରା ଫୁଲ ଫୁଟା ସେଇ ଅନନ୍ତ ଆକାଶର ଅଂଗନ ସୁଦ୍ଧା ମୋତେ ଶୋଭାମୟ ଦିଶେ ନାହିଁ । ସେଠିତ ଯେମିତି ଧ୍ୱଂସର କରାଳ ଛାୟା ଲେଖି ହୋଇଯାଏ । ଏବେ କ୍ରମାଗତ କିଛିଦିନ ଧରି ବହୁ ଅଶୁଭ ଶକୁନ ପରିଦୃଷ୍ଟ ହେଉଛି ଦ୍ୱାରକାରେ । ପୁର ଲଳନାଗଣ ଆତଙ୍କିତ ହୋଇ ରହିଥା'ନ୍ତି । ଥରେ ଥରେ ରୁକ୍ମିଣୀ ପ୍ରଶ୍ନ କରିନ୍ତି - 'ପ୍ରଭୋ ! କ'ଣ ଲକ୍ଷ୍ୟ କରୁଛନ୍ତି ଆକାଶରୁ ? ଏଭଳି ଚିନ୍ତାମଗ୍ନ ଯେ ?'

ମୁଁ କହେ- 'ଗୋଟାଏ ମହାଯୁଦ୍ଧ, ମହାପ୍ରଳୟର ସୂଚନା ।' ସେ ଶିହରି ଉଠନ୍ତି, କହନ୍ତି- 'କୁରୁକ୍ଷେତ୍ରରେ ଗୋଟିଏ ମହାଯୁଦ୍ଧ ଛତ୍ରିଶ ବର୍ଷ ତଳେ ଶେଷ ହୋଇଛି । ସେ କ୍ଷତିପୂରଣ ସମ୍ଭବ ହୋଇନାହିଁ । ସେ ଦୁଃଖର କ୍ଷତ ଉପଶମ ହୋଇ ନାହିଁ ଅଦ୍ୟାବଧି । ପୁଣି ଏକ ମହାଯୁଦ୍ଧ - ପୁଣି ଏକ ପ୍ରଳୟ ?'

ଯଦି ଦୈବାତ୍ ସତ୍ୟଭାମା ପହଞ୍ଚି ଯାଆନ୍ତି ତେବେ କହନ୍ତି- 'କିଏ ଜାଣେ ଆପଣ କେଉଁ ମହାଯୁଦ୍ଧ କଥା କହୁଛନ୍ତି ? କୁରୁକ୍ଷେତ୍ରରେ ଶସ୍ତ୍ର ସମୂହର ସହସ୍ର ଝନତ୍କାର ଭିତରେ ସୁଦ୍ଧା ଆପଣ ନିରସ୍ତ୍ର ରହି ପାରିଥିଲେ । ଏଭଳି ଏକ ଶାନ୍ତିକାମୀ ନିର୍ଲିପ୍ତ ବ୍ୟକ୍ତି ମହାପ୍ରଳୟର ଆଶଙ୍କା କରୁଛନ୍ତି ? ଆଶ୍ଚର୍ଯ୍ୟ !'

ଏଇଭଳି ବିଚାର ବିମର୍ଶ ହେଉ ହେଉ ଦିନେ ଦ୍ୱାରକା ଭବନର ଅନ୍ତଃପୁରଚାରିଣୀ ଏକ ଦୁଃସ୍ୱପ୍ନ ଦେଖି ଚିତ୍କାର କରି ଉଠିଲା । କୃଷ୍ଣ ପକ୍ଷର ତିମିରିତ ରାତ୍ରି, ନିଶ୍ଛିଦ୍ର ଅନ୍ଧକାର । ଅନ୍ତଃପୁର ଚାରିଣୀ ଆର୍ତ୍ତନାଦ କରୁଥାଏ । ସେ ଏକ କରାଳ ରୂପକୁ ସ୍ୱଚକ୍ଷୁରେ ଦେଖିଛି । ଭୟରେ ତା'ର ସମଗ୍ର ତନୁ ସ୍ୱେଦ ଜର୍ଜ୍ଜର । ଦ୍ୱାରକା ଭବନର ପଶ୍ଚିମ ଦ୍ୱାର ଦେଇ କରାଳ ରୂପଟି ଯାଇଛି ବୋଲି ସେ କହୁଥାଏ ।

ଆଉ କେହି କେହି ମଧ୍ୟ ତା' କଥାକୁ ସମର୍ଥନ କରି କରାଳ ରୂପକୁ ସ୍ୱଚକ୍ଷୁରେ ଦେଖିସୁଦ୍ଧା ଏଭଳି ଅବିଚଳିତ ରହିଛନ୍ତି ସେ କଥା ପ୍ରଚାର କରି ସ୍ୱୀୟ ବିଜ୍ଞତା ଓ ସାହସିକତାର

ପ୍ରଚାର କରୁଥା'ନ୍ତି । ଆର୍ତ୍ତନାଦ, କୋଳାହଳ, ସାନ୍ତ୍ୱନା, ସମବେଦନାରେ ପ୍ରକଂପିତ ହେଉଥାଏ ଦ୍ୱାରକା ଭବନ । ଭବନର ପ୍ରତିକକ୍ଷର କନକ ପ୍ରଦୀପରୁ ସୁଗନ୍ଧି ତୈଳ ନିଃଶେଷିତ ହୋଇ ଆସୁଥାଏ । ସେଇ ନିର୍ଜନ ନିଶୀଥରେ ପ୍ରତ୍ୟେକ ତୀକ୍ଷ୍ଣ ଶସ୍ତ୍ରରେ ସଜ୍ଜିତ ହୋଇ ମୁହୂର୍ତ୍ତକ ଭିତରେ ଏକ ଯୁଦ୍ଧ ଯାତ୍ରା ଆରମ୍ଭ କରିଦେଲେ । ମୋର ଅନୁମତି ସୁଦ୍ଧା ନେବାକୁ ଅପେକ୍ଷା କଲେ ନାହିଁ । ମୋର ବି ନିଦ୍ରାଭଂଗ ହୋଇ ସାରିଥାଏ । ମୁଁ ଚୁପ୍ ଚାପ୍ ବସି ରହିଥାଏ । ଯୁଦ୍ଧ ଯାତ୍ରା ! କାହା ବିରୁଦ୍ଧରେ ଯୁଦ୍ଧ ଯାତ୍ରା ? ଏମାନେ ତା' ନିଜେ ବି ଜାଣି ନଥାନ୍ତି । ଏମାନେ ଯାହାର ପଶ୍ଚାତ୍ ଧାବନ କରୁଛନ୍ତି ଜନ୍ମ ଲଗ୍ନରୁ ସେ ଏମାନଙ୍କ ସହ ଥିଲା ଅଦୃଶ୍ୟ ଅପ୍ରକଟ ଭାବେ । ଏମାନେ ତା'ବି ଜାଣି ନଥିଲେ । ମୁଁ ନିଶ୍ଚଳ ଭାବେ ବସି ରହିଥାଏ । ରଥ, ଗଜ, ହୟ- ଏମାନଙ୍କର କୋଳାହଳ ବି ଦୂରକୁ ଚାଲିଯାଉଥାଏ ଯୋଦ୍ଧାଙ୍କ ସହିତ । ପ୍ରତ୍ୟେକ ଯୋଦ୍ଧାଙ୍କ ମାତା ଓ ପତ୍ନୀଙ୍କ ହସ୍ତରେ ଅର୍ଘ୍ୟ ଥାଳି । କିନ୍ତୁ ସେ ଅର୍ଘ୍ୟ ବି ଦେବେ କାହାକୁ ? ବନ୍ଦାପନା କରିବେ କାହାକୁ ? ସମଗ୍ର ଦ୍ୱାରକା ଭବନ ଯେ ପୁରୁଷ ଶୂନ୍ୟ, ବୀରଶୂନ୍ୟ ହୋଇ ପଡ଼ିଛି । ଏହି ନିରନ୍ଧ୍ର ଅନ୍ଧକାର ଭିତରେ ଏମାନେ ଊର୍ଦ୍ଧ୍ୱଶ୍ୱାସରେ ଧାଇଁ ଧାଇଁ କାହାପ୍ରତି ବା ଶସ୍ତ୍ରାଘାତ କରୁଛନ୍ତି ? କେଉଁ ଲକ୍ଷ୍ୟ ପଥରେ ଯାତ୍ରା ଏମାନଙ୍କର ?'

ମୁଁ ମନକୁ ମନ ହସି ଉଠିଲି । ମର୍ମାନ୍ତିକ ହସ ଧାରେ । ମୃତ୍ୟୁ ! ମୃତ୍ୟୁ !! ମୃତ୍ୟୁ !!! ଅନ୍ଧ, ମୂକ, ବଧୀର ମୃତ୍ୟୁ । ସେ'ବା କ'ଣ ଦେଖି ପାରିବ କିଏ କାହାପ୍ରତି ଶସ୍ତ୍ରାଘାତ କଲା ? ସେ ଆତ୍ମୀୟ କି ଅନାତ୍ମୀୟ ? ସେ ବା କ'ଣ ଶୁଣିପାରିବ କାହାର ଅନ୍ତିମ ଆର୍ତ୍ତନାଦ ? ସେ ବା କ'ଣ କହିପାରିବ ଏହି ସଂହାର ଲୀଳାର ଆଦ୍ୟପ୍ରାନ୍ତ ଉପାଖ୍ୟାନ ? ନା- ଆଦୌ ନୁହେଁ । ଅନ୍ତଃପୁରର ରମଣୀ ଗଣ ନିଜ ନିଜର ପତି ପୁତ୍ରଙ୍କ ବିଜୟ କାମନା କରୁଥିଲେ । ବିଜୟର ନିଶା ଏମାନଙ୍କୁ ସୁଦ୍ଧା ପ୍ରମତ୍ତ କରିଛି ! ସେମାନେ ପରସ୍ପର ଭିତରେ କଥାବାର୍ତ୍ତା ହେଉଥିଲେ । ପବନରେ ତା'ର ଛିନ୍ନାଂଶ ଭାସି ଆସୁଥିଲା ମୋ ପାଖକୁ । ସେ ସବୁର ସାରାଂଶ ଏଇଯେ, କୁରୁ ରଣକ୍ଷେତ୍ରରେ ଏମାନଙ୍କର ବୀରତ୍ୱ ପ୍ରକଟିତ ହୋଇଛି । ଆର୍ଯ୍ୟାବର୍ତ୍ତର ବହୁ ବଳବୀର୍ଯ୍ୟଶାଳୀ ସେ ଯୁଦ୍ଧରେ ନିହତ ହୋଇଛନ୍ତି କିନ୍ତୁ ଯଦୁବଂଶର ଏହି ପ୍ରମୁଖ ବୀରଗଣଙ୍କର କୌଣସି କ୍ଷତି ହୋଇନାହିଁ । ସେଭଳି ମହାଯୁଦ୍ଧରୁ ଏମାନେ ଯେତେବେଳେ ବର୍ତ୍ତି ଯାଇଛନ୍ତି କେଉଁ କରାଳ ଏମାନଙ୍କର ବା କ'ଣ କରିବ ? କରାଳ ବିରୁଦ୍ଧରେ ଏମାନେ ତ ସବୁ ମିଳିତ ଆକ୍ରମଣ କରୁଛନ୍ତି !

ମୁଁ ପୁଣିଥରେ ମନକୁ ମନ ହସିଲି । ଅସ୍ତିତ୍ୱ ବିହୀନ କରାଳ ! ଏମାନେ ମହାକାଳ ବିରୁଦ୍ଧରେ ଯାତ୍ରା କରୁଛନ୍ତି, ଅଂଗୀକାରବଦ୍ଧ ହୋଇଯାଇଛନ୍ତି କିଏ କେଉଁ ମୁହୂର୍ତ୍ତରେ ଯିବ ? ଏ

ଯୁଦ୍ଧ ପ୍ରକୃତରେ ପରସ୍ପର ସହ । ରାତିର ଅଂଧକାର ସମସ୍ତଙ୍କୁ ଏକାକାର କରି ଦେଇଛି । ପ୍ରତ୍ୟେକ ପ୍ରମତ୍ତ, ପ୍ରତ୍ୟେକ ମଦିରାସକ୍ତ. ପ୍ରତ୍ୟେକ ରକ୍ତ ଲୋଲୁପ, ହିଂସ୍ର ! ଏରକା ବନରେ ପୁଣି ଏକ ମହାଯୁଦ୍ଧ - ପୁଣି ଏକ ରକ୍ତର ପ୍ରବାହ !

ହେ ମହାକାଳ ! ମୁଁ କିନ୍ତୁ ଶାନ୍ତି ଚାହିଁଥିଲି ! ଆଜିବି ମୁଁ ଶାନ୍ତି ଚାହେଁ !! କେବଳ ଶାନ୍ତିର କାମନାରେ ଦୁଇ ଦୁଇଥର ମୋତେ ରକ୍ତର ମହାପ୍ରବାହର ସମ୍ମୁଖୀନ ହେବାକୁ ପଡ଼ିଲା କାହିଁକି ?

ବ୍ରାହ୍ମ ମୁହୂର୍ତ୍ତ ! ଶଙ୍ଖ, ଘଣ୍ଟର ପବିତ୍ର ଧ୍ୱନୀ ପରିବର୍ତ୍ତେ ସେଦିନ ପୁରଲଳନା ଓ ଶିଶୁ କଣ୍ଠର ବିଳାପ ଧ୍ୱନୀରେ ମୋର ନିଦ୍ରାଭଂଗ ହେଲା । ସବୁ ତା' ହେଲେ ଶେଷ ହୋଇଯାଇଛି ? ଦୂତ ଆସି ସମ୍ବାଦ ପରିବେଷଣ କରିବା ପୂର୍ବରୁ ମୁଁ ସତର୍କ ଭାବେ ଉଠି ଆସିଲି । ମୋତେ ବହୁ ଦୂର ପଥ ଅତିକ୍ରମ କରିବାକୁ ହେବ । ଆଉ ମୁହୂର୍ତ୍ତେ ଏଠାରେ ଅଟକି ରହିବା ମୋ ପକ୍ଷେ ସମ୍ଭବ ନୁହେଁ । ପିତା ବସୁଦେବ ହୁଏତ ମୋତେହିଁ ଆସି ପ୍ରଶ୍ନ କରିବେ । ମାତା ଦେବକୀ ହୁଏତ ବଂଶର ସୁରକ୍ଷା ପାଇଁ ମୋତେ ହିଁ ବାଧ୍ୟ କରିବେ । ଯାଦବ ରମଣୀଗଣ ମୋତେହିଁ ଦୋଷାରୋପ କରିବେ । ମୁଁ କାହାରି ପ୍ରଶ୍ନର କୌଣସି ଉତ୍ତର ଦେଇପାରିବି ନାହିଁ । ମୁଁ କ୍ଳାନ୍ତ ! ଭୀଷଣ କ୍ଳାନ୍ତ ! ମୋର ବି ବିଶ୍ରାମ ଆବଶ୍ୟକ ! ଶାନ୍ତି ଆବଶ୍ୟକ ! ମୋର ଏ ଦ୍ୱାରକାର ଐଶ୍ୱର୍ଯ୍ୟ, ପ୍ରାଚୁର୍ଯ୍ୟ, ରାଜସିଂହାସନ କିଛି ହେଲେ ଆବଶ୍ୟକ ନାହିଁ । ମୁଁ ବି ବନ ପଥରେ ପଦଯାତ୍ରା କରିବି ବହୁଦୂର । କୋମଳ ଦୂର୍ବା ଉପରେ ପଦଚାଳନା କରିବି, ଚତୁଃପାର୍ଶ୍ୱରେ ପରିବେଷ୍ଟନ କରିଥିବ ସବୁଜ ଅରଣ୍ୟ, ମୁଣ୍ଡ ଉପରେ ଥିବ ଅନନ୍ତ ନୀଳିମା । ରାତି ପାହି ନାହିଁ । କୃଷ୍ଣ ପକ୍ଷର ଅନ୍ଧକାର ପତ୍ର ଶୀର୍ଷରେ ଲେସି ହୋଇ ରହିଛି । ବହୁପଥ ଅତିକ୍ରମ କରିବା ପରେ ମୋର ସ୍ମରଣ ହେଲାଯେ ମୁଁ ନଗ୍ନ ପାଦରେ ହିଁ ବାହାରି ଆସିଛି ।

ନଗ୍ନ ପାଦ ! ଅସୁରକ୍ଷିତ ପାଦ !! ମୁନି ଦୁର୍ବାସାଙ୍କର ସ୍ନେହାଶୀର୍ବାଦରୁ ବଞ୍ଚିତ ଦୁଇଟି ପାଦ !!!

ବହୁଦୂର ଅତୀତର ସ୍ମୃତିଟିଏ ଭାସି ଉଠିଲା । ବିଦର୍ଭ ନନ୍ଦିନୀ ସେତେବେଳେ ନବୀନା କିଶୋରୀ ବଧୂ । ମୁଁ ସେତେବେଳେ ନବୀନ କିଶୋର । ମୁନି ଆମ ଦୁହିଁଙ୍କର ବହୁ ପରୀକ୍ଷା ନେବା ପରେ ପରୀକ୍ଷାର ଅନ୍ତିମ ପର୍ଯ୍ୟାୟରେ ତାଙ୍କର ଉଚ୍ଛିଷ୍ଟ ପାୟସାନ୍ନ ମୋର ସର୍ବାଙ୍ଗରେ ପ୍ରଲେପ ଦେଇଥିଲେ । ତାଙ୍କର ଉଚ୍ଛିଷ୍ଟ ଲିପ୍ତ ହସ୍ତ ଯେତେବେଳେ ମୋର ପାଦ ଆଡ଼କୁ ଆଗେଇ ଆସିଥିଲା, ବିଦର୍ଭ ନନ୍ଦିନୀ ତାଙ୍କର ପରିଧେୟ ନୀଳମେଘୀ ପାଟ ପଣତରେ ମୋର

ପଦଯୁଗଳଙ୍କୁ ସସ୍ନେହରେ ଆବୃତ କରି ପକାଇଲେ । ମୁନି ଦୁର୍ବାସା ତତ୍‌କ୍ଷଣାତ୍ କହି ଉଠିଲେ- 'ତେବେ ଥାଉ ! ବିଦର୍ଭ କୁମାରୀଙ୍କର ଯେତେବେଳେ ସ୍ୱୀକୃତି ନାହିଁ ସେହି ପଦ ଦୁଇଟି ମୋର ସ୍ନେହସ୍ପର୍ଶରୁ, ଆଶୀର୍ବାଦରୁ ମୁକ୍ତ ରହୁ ।' ବିଦର୍ଭ ନନ୍ଦିନୀ ଅବୋଧ କୁମାରୀ ଭଳି ତାଙ୍କୁ ଚାହିଁ ଥିଲେ । ମୁନି ଦୁର୍ବାସା କହିଥିଲେ - 'ମା ରୁକ୍ମିଣୀ ! ତୁମ ଦୁହିଁଙ୍କ ସେବାରେ ମୁଁ ଅତିଶୟ ସନ୍ତୁଷ୍ଟ । ସେଥିପାଇଁ ତୁମ ସ୍ୱାମୀଙ୍କ ସମଗ୍ର ଶରୀରକୁ ଅକ୍ଷୟ ବଜ୍ର ଭଳି ଦୃଢ଼ କରିବାକୁ ଚାହୁଁଥିଲି । ଯେପରିକି ଯେ କୌଣସି ଶସ୍ତ୍ରାଘାତ, ଦିବ୍ୟାସ୍ତ୍ରର ଆଘାତ ବା ଅନ୍ୟ କୌଣସି ଘାତ ତାଙ୍କୁ ମୃତ୍ୟୁ ମୁଖକୁ ଠେଲିଦେବ ନାହିଁ । କିନ୍ତୁ ମୋର ବି ବୁଝିବା ଉଚିତ ଥିଲା ବାସୁଦେବ କୃଷ୍ଣଙ୍କ ପକ୍ଷେ ମଧ୍ୟ ଏହା ସମ୍ଭବ ନୁହେଁ । ସେ ମଧ୍ୟ ଜଣେ ଭଂଗୁର ମଣିଷ । ଥାଉ ଏ ପଦତଳ ଦୁଇଟି ଅସୁରକ୍ଷିତ ହୋଇ ।'

ସେ ଏତିକି କହି ଚାଲି ଯାଇଥିଲେ । ବିଦର୍ଭ ନନ୍ଦିନୀ ଅତ୍ୟନ୍ତ ବ୍ୟାକୁଳ ହୋଇଉଠିଥିଲେ । ମୁଁ ତାଙ୍କୁ ପ୍ରବୋଧନା ଦେଇ କହିଥିଲି- 'ଶୁଣିଲତ ମନୁଷ୍ୟ ଅମର ନୁହେଁ, ଅନିତ୍ୟ । ତା'ଛଡ଼ା ତୁମ ସ୍ୱାମୀ ଦ୍ୱାରକାଧୀଶ ନଗ୍ନପାଦରେ ବା କେଉଁଆଡ଼େ ଯାଇପାରିବ ? ସେ ପଦତଳକୁ କିଏ ବା କାହିଁକି ଶସ୍ତ୍ରାଘାତ କରିପାରିବ ?'

ମୁଁ ପୁଣି ହସି ଉଠିଲି । ମୋତେ ବି ଯିବାକୁ ହେବ ପ୍ରଭାସ ତୀର୍ଥ । ସେଇଠାରେ ମୋତେ କେହି ଅପେକ୍ଷା କରିଛି ବହୁଯୁଗରୁ...... ।

●

## ।। ଅନ୍ତିମ ଗ୍ରନ୍ଥି ମୋଚନ ।।

ଅରଣ୍ୟ ବେଷ୍ଟିତ ଦୁର୍ଗମ, ନିର୍ଜନ ପଥ । ପଥଧାର ଜନମାନବ ଶୂନ୍ୟ । କେବଳ ଗଜ ଓ ମୃଗ ଯୁଥଙ୍କ ଶୋଭା ଯାତ୍ରା ସବୁଜ ଘଞ୍ଚ ଅରଣ୍ୟକୁ ଆହୁରି ରମଣୀୟ କରୁଥାଏ । ଗିରି ନଦୀର ସଂଗୀତମୟ ନାଦ, ପିକ, ଶୁକ, ମୟୂର, ହଂସରାଳୀଙ୍କର କୂଜନ, ଭ୍ରମରୀଗୁଂଜନ, ପୁଷ୍ପର ସୁଗନ୍ଧି ସହ ପତ୍ରମର୍ମର ସବୁ ମିଶି ଏକ ଅପୂର୍ବ ଶୋଭା ଧାରଣ କରିଥାଏ ବନବୀଥି । କଦବା କ୍ୱଚିତ୍ ଘଞ୍ଚ ଅରଣ୍ୟରେ ଲବଙ୍ଗଲତା ପରିବେଷ୍ଟିତ ଅଜଣା ଦ୍ରୁମର ଛାୟାରେ ବିଶ୍ରାମ କରୁଥିବା ଶବର ତରୁଣ ତରୁଣୀଙ୍କର ବିଶ୍ରମ୍ଭାଳାପ ପରିବେଶକୁ ଆହୁରି ମୋହମୁଗ୍ଧ କରିଦେଉଥାଏ । ଏ ଅସରନ୍ତି ଦୀର୍ଘପଥ ଯେଉଁ ଆଡ଼କୁ ଯାଇଥାଏ ମୁଁ ବି ସେଇ ଦିଗକୁ ଚାଲିଥାଏ । ଯେମିତି ଏ ପଥ ମୋର ବହୁ ପରିଚିତ । ଏହା ଯେମିତି ଗୋପର ବୃନ୍ଦାରଣ୍ୟର ପଥ, ଯେମିତି ମଥୁରାର ମଧୁବନର ପଥ, ଯେମିତି ଦ୍ୱାରକାର ସମୁଦ୍ର ତଟବର୍ତ୍ତୀ ଅରଣ୍ୟର ପଥ କିମ୍ବା ଇନ୍ଦ୍ରପ୍ରସ୍ଥର

ଉଦ୍ୟାନ ପଥ । ଏହି ଅନ୍ତିମ ଯାତ୍ରା ପଥରେ ମନେ ପଡ଼ିଯାଉଥାଏ କେତେ କଥା । ସର୍ବପ୍ରଥମେ ଯାହା ସ୍ମୃତି ପଥାରୂଢ଼ ହେଲା ତା' ହେଉଛି ଗୋପପୁର ନନ୍ଦରାଜାଙ୍କ ରାଣୀ, ମୋର ଜନନୀ. ଯଶୋମତୀଙ୍କର ମମତା ସିକ୍ତ ଅଞ୍ଚଳ, ଯାହା ସର୍ବବିଧ ଶ୍ରାନ୍ତି ଓ କ୍ଳାନ୍ତି ହରଣରେ ସମର୍ଥ । ପୁଣି ମନେ ପଡ଼ି ଯାଉଥାଏ ବହୁ ଦିନ ତଳେ ବୃନ୍ଦାବନରେ ଯମୁନାତୀରର କଦମ୍ବ ଶାଖା ତଳେ ତିନି ଦିନକୁ କଷ୍ଟ ଦେଇ ଆସିଥିବା ଜଣକର ପ୍ରୀତି ବିହ୍ୱଳ ମୁଖ, ସକରୁଣ ନିବେଦନ ଭରା ଦୁଇଟି ନେତ୍ର; ହଁ, ତାହା ବୃଷଭାନୁ ଜେମା ରାଇ କିଶୋରୀଙ୍କର । ତାଙ୍କ ହାତରେ ସେଦିନ ଦେଇ ଆସିଥିଲି ମୋର ବାଉଁଶର ବଇଁଶୀ ଖଣ୍ଡକ । ସେହି ବଂଶୀହିଁ ଥିଲା ଆମର ପ୍ରଣୟର ସାକ୍ଷୀ, ପୂର୍ବରାଗ ଓ ମିଳନର ସାକ୍ଷୀ, ଅଭିସାରର ସାକ୍ଷୀ, ପୁଣି ବିରହ ବେଦନା ଧ୍ୱନିତ ହେଉଥିଲା ସେଇ ବଂଶୀର ଧ୍ୱନୀରେ ଯାହା ସେଦିନ ଯମୁନା ଜଳରେ କଂପନ ସୃଷ୍ଟି କରୁଥିଲା । କଦମ୍ବରେ ରୋମାଞ୍ଚ ସୃଷ୍ଟି କରୁଥିଲା, ମୟୂରର ପଦକୁ କରୁଥିଲା ଛନ୍ଦଚପଳ, ନର୍ତ୍ତନଶୀଳ, ବାଜି ଉଠୁଥିଲା ଆକାଶରେ ମେଘଡ଼ମ୍ବରୁ । ଆବେଗମୟ ମୁହୂର୍ତ୍ତରେ କହୁଥିଲେ ଶ୍ରୀରାଧା, 'ଏଇ ବଂଶୀହିଁ ମୋତେ ସର୍ବସ୍ୱାନ୍ତ କରିଦେଇଛି, ମୋର କୁଳ, ମାନ, ସମ୍ଭ୍ରମ ସବୁକୁ ମୁଁ ଜଳାଞ୍ଜଳି ଦେଇଛି ବାଉଁଶର ବଂଶୀଟିଏ , ମାତ୍ର ଏହାର ଧ୍ୱନୀ ସହ ଯେମିତି ମିଶି ରହିଛି କନ୍ଦର୍ପର ପାଞ୍ଚୋଟି ଫୁଲ ଶର, ଏଇ ବଂଶୀ ଯଦି ମୋ ହାତକୁ ଆସନ୍ତା ତେବେ ତାକୁ ଭାଂଗି ଖଣ୍ଡ ବିଖଣ୍ଡ କରି ମୁଁ ଯମୁନା ସ୍ରୋତରେ ଭସେଇ ଦିଅନ୍ତି ।'

ତା'ବି କ'ଣ ସେ କରି ପାରିଛନ୍ତି ? ମୁଁ ତ ଦେଇ ଆସିଥିଲି ବଂଶୀଟି । କହିଥିଲି, 'ମୋର ସର୍ବାଧିକ ପ୍ରିୟ ବସ୍ତୁଟି ପ୍ରିୟତମାଙ୍କୁ ଦେଇ ଯାଉଛି । ଏଇ ସନ୍ତକ ତୁମରି ପାଖରେ ଥାଉ, ମୁଁ ଫେରି ଆସିବି ।'

ନା- ମୁଁ ଫେରି ପାରିନାହିଁ ବା ଶ୍ରୀରାଧା ତାହାକୁ ଖଣ୍ଡ ବିଖଣ୍ଡ କରି ଯମୁନା ସ୍ରୋତରେ ଭସାଇ ନାହାନ୍ତି । ପ୍ରତିଶୃତି ଦେଇ ରକ୍ଷା କରି ନପାରିବାରେ ମୁଁ ଧୂରୀଣ ବୋଲି ପ୍ରତ୍ୟେକ କହନ୍ତି । କିନ୍ତୁ ସେମାନେ କ'ଣ ଜାଣନ୍ତି ଯେ ମୁଁ ଥରେ ଅଂଗୀକାରବଦ୍ଧ ହେଲେ ସେଥିରୁ ମୋର ମୁକ୍ତି ନଥାଏ । ଜନ୍ମାନ୍ତର ପରେ ସୁଦ୍ଧା ମୁଁ ପ୍ରତିଶୃତି ପାଳନରେ ତତ୍ପର ହୋଇ ଉଠେ ! ବଂଶୀଟି ଶ୍ରୀରାଧାଙ୍କ ହାତରେ ଦେଇ ଆସିବା ପରେ ରଜତ, ସୁବର୍ଣ୍ଣ ବଂଶୀ ଧାରଣ କରିଛି; ମାତ୍ର ସେ ବଂଶୀରେ ସେପରି ମଧୁତାନ ଆଉ ଧ୍ୱନିତ ହୋଇନାହିଁ, ଅତନୁର ଫୁଲ ଶର ଆଉ ତାକୁ ଛୁଇଁ ପାରିନାହିଁ । ଏହାହିଁ ଏ ସଂସାରର ନିୟମ । ଧୂଳିକଣାଟିଏ ସ୍ଥାନଚ୍ୟୁତ ହେଲେ ସେ ଆପଣା ସ୍ଥାନକୁ ଫେରି ପାରୁନାହିଁ ନିଜସ୍ୱ ମର୍ଯ୍ୟାଦା ଓ ପ୍ରତିଷ୍ଠା ସହ । ମୁହୂର୍ତ୍ତକର ଅବର୍ତ୍ତମାନରେ ସ୍ରେ ପାଲଟିଯାଏ ଅପରିଚିତ ସଂଜ୍ଞାଟିଏ । ଆଉ ମୁଁ ତ ଜଣେ ମଣିଷ ! ଅଷ୍ଟପାଟବଂଶୀଙ୍କୁ ଛାଡ଼ି

ଆସିଛି ଦ୍ୱାରକାରେ । ସେମାନେ ଜାଣନ୍ତି ନାହିଁ ମୁଁ କେଉଁ ଆଡ଼େ ଯାଉଛି ବା କେବେ ଫେରିବି ? କିମ୍ବା ଫେରିବି ନାହିଁ । ରାତ୍ରି ପ୍ରଭାତ ହେବାପରେ ସେମାନେ ଦେଖିବେ ମୋର ମୁକୁଟ,ବଂଶୀ, ଉଷ୍ଣୀଶ, ଉପାନହ ସବୁ ଯଥାସ୍ଥାନରେ ରଖା ହୋଇଥିବ । ଦ୍ୱାରକାର ସମସ୍ତ ଗ୍ରନ୍ଥି ଉନ୍ମୋଚିତ ହୋଇଛି । ଦ୍ୱାରକାରୁ ସମସ୍ତ କର୍ତ୍ତବ୍ୟ ଶେଷ ହୋଇଛି ।

ମଧ୍ୟାହ୍ନର ପ୍ରଚଣ୍ଡ ତେଜା ସୂର୍ଯ୍ୟର ରଶ୍ମି ସବୁଜ ପତ୍ର ଶୀର୍ଷରୁ ଝରି ଆସୁଥିଲା ଧରଣୀ ଉପରକୁ ସୁବର୍ଣ୍ଣ ରେଣୁ ସଦୃଶ । ଗିରି ନିର୍ଝରରୁ ସୁଶୀତଳ ଜଳପାନ କରିବା ପରେ କ୍ଳାନ୍ତିରେ ମୋର ଆଖିପତା ଦୁଇଟି ବୁଜି ହୋଇ ଆସୁଥିଲା । ପଥ ଶ୍ରମ ପରେ ବେଦନାରେ ପଦଯୁଗଳ ବିଶ୍ରାମ ଚାହୁଁଥାଏ । ବହୁ ଦୂରରେ ରହିଲାଣି ଶବରପଲ୍ଲୀ । ଏ ଦୁର୍ଗମ ଅରଣ୍ୟ ଭିତରେ ଲତାକୀର୍ଣ୍ଣ ଶିଆଳୀର ଦୋଳି ମୋତେ ଯେମିତି ହାତ ଠାରି ଡ଼ାକୁଥାଏ । ମୁଁ ସେ ଦୋଳି ଆରୋହଣ କରିବା ମାତ୍ରେ ନାମହୀନ ପୁଷ୍ପିତ ଲତାରୁ ସୁଗନ୍ଧି ଯୁକ୍ତ ଫୁଲ ଝରି ପଡ଼ି ମୋର ସର୍ବାଙ୍ଗକୁ ଆବୃତ କରି ପକାଇଲା । ଆଉ କୌଣସି ସ୍ମୃତିଚାରଣ ସମ୍ଭବ ନୁହେଁ । ଏଥର ମୁଁ ଟିକିଏ ଶାନ୍ତିରେ ଆଖି ବୁଜେ । ଜୀବନ ସାରା ବହୁ ସଂଘର୍ଷ କରିଛି । ଏଥର ବିଶ୍ରାମ ଆବଶ୍ୟକ । ମୋ ଆଖି ବୁଜି ହୋଇଯାଉଥାଏ ଆପଣାଛାଏଁ । ସୁଶୀତଳ ସମୀର ପତ୍ରର ବ୍ୟଜନରେ ମୋର କ୍ଳାନ୍ତି ହରଣର ଚେଷ୍ଟା କରୁଥାଏ । ଆଉ ମୋର କୌଣସି ଘଟଣା, କୌଣସି ପରିଚିତ ମୁହଁ କିଛି ହେଲେ ମନେ ପଡୁନଥାଏ । କି ଶାନ୍ତି !

କେତେ ସମୟ ଶୋଇଥିଲି କେଜାଣି ? ହଠାତ୍ ଏକ ତୀକ୍ଷ୍ଣ ତୀବ୍ର ଆଘାତରେ ମୋର ନିଦ୍ରା ଭଂଗ ହେଲା । ଦୁଃସହ ଯନ୍ତ୍ରଣାରେ ମୁଁ ଆର୍ତ୍ତନାଦ କରି ଉଠିଲି । ହଁ, ଏଇଠାରେ ଏଇ ପତ୍ର ଶୀର୍ଷରେ କିମ୍ବା ପୁଷ୍ପର ପ୍ରେଡ଼୍କ୍ଷାରେ, କିମ୍ବା ପକ୍ଷୀର କୂଜନରେ ହୁଏତ ଅପେକ୍ଷା କରି ରହିଥିଲା ମହାକାଳ ! ଜ୍ୟାମୁକ୍ତ ଏକ ସୁତୀକ୍ଷ୍ଣ ବିଷାକ୍ତ ତୀର ମୋର ଗୋଟିଏ ପଦତଳେ ବିଦ୍ଧ ହୋଇଥାଏ, ଅଜସ୍ର ରକ୍ତ କ୍ଷରଣ ହେଉଥାଏ । ମୋର ଆର୍ତ୍ତନାଦ ସମଗ୍ର ବନଭୂମିରେ ପ୍ରତିଧ୍ୱନିତ ହୋଇ ଉଠିଲା, ଧରଣୀରୁ ଅନ୍ତରୀକ୍ଷଯାଏ ପରିବ୍ୟାପ୍ତ ହୋଇଗଲା । ମୃଗଯୁଥ ତଟସ୍ଥ ହୋଇ ରହିଗଲେ । ପକ୍ଷୀଗଣ ଏ ଡାଳରୁ ସେ ଡାଳ ଅସ୍ଥିର ଭାବେ ଉଡ଼ିବାକୁ ଲାଗିଲେ । ଅଳ୍ପ ସମୟ ପରେ ମୋର ବିକଳ ଆର୍ତ୍ତନାଦ ଶୁଣି ଧାଇଁ ଆସିଲା ଜଣେ ଯୁବକ । ହସ୍ତରେ ତା'ର ଶରାସନ, ସ୍କନ୍ଧରେ ତୂଣୀର । ସେଇମାତ୍ର ଏକ ତୀର ତା'ର ଧନୁରୁ ନିକ୍ଷିପ୍ତ ହୋଇଛି । ଅସହ୍ୟ ଯନ୍ତ୍ରଣା ଭିତରେ ବି ଆଖି ଖୋଲି ତାକୁ ଚାହିଁଲି । ପରିଧେୟ ବଲକ୍କଲ, କଣ୍ଠରୁ ଲମ୍ବି ଆସି ବକ୍ଷ ଦେଶକୁ ଆଛାଦନ କରି ପକେଇଛି ବିଭିନ୍ନ ରଂଗର କାଚମାଳି, ଶିରରେ ପକ୍ଷୀ ପର ନିର୍ମିତ ଏକ ବିଶେଷ ଧରଣର ମୁକୁଟ । ଗାଢ଼ କୃଷ୍ଣ ବର୍ଣ୍ଣର ଶରୀର ତା'ର ସ୍ୱେଦରେ ସିକ୍ତ ହୋଇ ଯାଇଥାଏ ।

ଲଲାଟରେ ଗୋରଚନାର ତିଳକ, କର୍ଣ୍ଣରେ କୁଣ୍ଡଳ, ବାହୁ ଓ ମଣିବନ୍ଧରେ କାଚ, କାଇଁଚମାଳି । ତା'ର ବେଶ ପୋଷାକରୁ ସ୍ପଷ୍ଟ ସୂଚିତ ହେଉଥାଏ ତାର ପରିଚୟ । ସେ ନିଶ୍ଚିତ ଭାବେ ଜଣେ ଶବର, ଏଇ ନିକଟସ୍ଥ ପଲ୍ଲୀରେ ହୁଏତ ତାର ବାସସ୍ଥାନ । ଜୀବିକା ହୁଏତ ପଶୁ ଓ ପକ୍ଷୀ ଶିକାର, ଆୟୁଧ ତା'ର ଧନୁ ଓ ତୀର । ସେ ତଟସ୍ଥ, କାକୁସ୍ଥ ଭାବେ ମୋ ସମ୍ମୁଖରେ ଠିଆ ହୋଇ ମୁଣ୍ଡ ହଲାଇ 'ନାହିଁ', 'ନାହିଁ' କରୁଥାଏ । ଲୋତକାପ୍ଲୁତ ନୟନରୁ ଅବାରିତ ଭାବେ ଅଶ୍ରୁ ଝରି ଆସି ତା'ର ଗଣ୍ଡଦେଶକୁ ସିକ୍ତ କରି ଦେଉଥାଏ । ଭୟ, ଦୁଃଖ ଓ ଲଜ୍ୟାରେ ସେ ମ୍ରିୟମାଣ ହୋଇଯାଇଥାଏ । ଅଶ୍ରୁ ଗଦ୍ ଗଦ୍ ସ୍ୱରରେ ବହୁ କଷ୍ଟରେ ନିଜକୁ ସମ୍ଭରଣ କରି ସେ କହିଲା - 'ମୋର ଅଜାଣତରେ ହେଲେ ମଧ୍ୟ ଏହା ଗୁରୁତର ଅପରାଧ । ଆପଣଙ୍କ ପଦତଳ ଏଭଳି ରକ୍ତିମ, ସୁକୋମଳ ଯେ ଲତା ଅନ୍ତରାଳରୁ ତାହା ଶାୟୀତ ମୃଗର କର୍ଣ୍ଣ ଭଳି ପ୍ରତୀୟମାନ ହେଲା । ହରିଣ କର୍ଣ୍ଣର ଭ୍ରମରେ ମୁଁ ବିଷାକ୍ତ ତୀରଟିଏ ନିକ୍ଷେପ କରିଛି । ଆପଣଙ୍କ ସମଗ୍ର ଶରୀର ପୁଷ୍ପ ଓ ପତ୍ରରେ ଆବୃତ ହୋଇଥାଏ ତ ମୁଁ ଜାଣି ପାରିଲି ନାହିଁ । ମୁଁ ମହାପାପୀ । ମୋ ପ୍ରତି ଯେତେ କଠୋର ଶାସ୍ତି ବିଧାନ କରନ୍ତୁ ଆର୍ଯ୍ୟପୁତ୍ର । ଏଇ ନିଅନ୍ତୁ ମୋ ବିଷାକ୍ତ ତୀର ସମୂହ, ମୋ ବକ୍ଷବିଦ୍ଧ କରନ୍ତୁ, ମୋତେ ମୃତ୍ୟୁ ଦଣ୍ଡହିଁ ଦିଅନ୍ତୁ । ନିଦ୍ରାମଗ୍ନ, ନିରସ୍ତ୍ର ମଣିଷଟିକୁ ମୁଁ ତୀର ନିକ୍ଷେପ କରିଛି । ହେ ପ୍ରଭୋ ! ନର୍କ ମଧ୍ୟ ମୋ ପାଇଁ ଯଥେଷ୍ଟ ନୁହେଁ । ମୁଁ ଜାଣି ସାରିଲିଣି ଆପଣଙ୍କ ପରିଚୟ । ଗଳାରେ ବନ ପୁଷ୍ପର ହାର, କଣ୍ଠରେ କୌସ୍ତୁଭ, କର୍ଣ୍ଣରେ ମକର କୁଣ୍ଡଳ, ଶିରରେ ମୟୂର ଚନ୍ଦ୍ରିକା, ପରିଧେୟ ପୀତ ବସନ, ନବୀନ ନୀରଦସମ ତନୁ କାନ୍ତି- ମୁଁ ଜାଣିସାରିଲିଣି ଆପଣହିଁ କୃଷ୍ଣ ! କୃଷ୍ଣ ବାସୁଦେବ !! ଗୋପୀଜନ ବଲ୍ଲଭ କୃଷ୍ଣ !!! ଆପଣଙ୍କୁ ଥରେ ଦେଖିବାପାଇଁ ମନରେ କେତେ ଉତ୍କଣ୍ଠା, ହୃଦୟରେ କେତେ ଆଲୋଡ଼ନ ! କାହିଁ ଦୂର ଦ୍ୱାରକା । ସେଠାକୁ ଯାଇ ଆପଣଙ୍କ ସାକ୍ଷାତ ପାଇବି କିପରି ? ନୀଚ ବଂଶଜ ଶବର 'ଜାରା'କୁ କିଏ ବା କାହିଁକି ଦ୍ୱାରକାଧୀଶ କୃଷ୍ଣଙ୍କ ସହ ସାକ୍ଷାତ କରାଇବାକୁ ଚାହିଁବ ? ଆଜି ଏତେ ପାଖରେ ଦେଖୁଛି; ଅଥଚ ଆପଣଙ୍କୁ ଅଭ୍ୟର୍ଥନା କରିବା ପରିବର୍ତ୍ତେ ମୁଁ ଆପଣଙ୍କ ମୃତ୍ୟୁର କାରଣ ହେଲି ? ଧିକ୍ !'

ବଡ଼ କଷ୍ଟରେ ମୁଁ ହସିଲି । ଇଏ ତେବେ ଜାରା ଶବର । ଏଇ ଶବର ଜାତି ସହ ମୋର ଯୁଗ ଯୁଗର ଜନ୍ମ ଜନ୍ମର ସଂପର୍କ । ତ୍ରେତାଯୁଗରେ ଶବରୀ ହାତରୁ ଅଇଁଠା କୋଳି ମୁଁ ଖାଇଛି । ଦ୍ୱାପରରେ ପ୍ରତିଶ୍ରୁତି ପାଳନ କରିବା ପାଇଁ ଜାରା ଶବରର ଧନୁ ତୀର ନିକଟରେ ଆତ୍ମ ସମର୍ପଣ କରିଛି, ପୁଣି ଜନ୍ମାନ୍ତର ପରେ ଶବର ଗୃହରେ ଯେ ପୂଜିତ ନହେବି କିଏ କହିବ ? ତ୍ରିକାଳ ଦର୍ଶୀ ମୁନିଗଣଙ୍କର ତାହାହିଁତ ଭବିଷ୍ୟବାଣୀ ! ତ୍ରେତା ଯୁଗରେ ଆର୍ଯ୍ୟ-ଆର୍ଯ୍ୟେତର ସଂସ୍କୃତିର ସମନ୍ୱୟ

ସାଧିତ ହେବାଭଳି ପୁଣିଥରେ ଆର୍ଯ୍ୟ-ଆର୍ଯ୍ୟେତର ସଂସ୍କୃତିର ସମନ୍ୱୟର ସମୟ ଆସିଯାଇଛି । ଏହି ନୀଚ ବଂଶଜ ଶବର ମାନଙ୍କ ପ୍ରତି ଆର୍ଯ୍ୟମାନଙ୍କର ଯେଉଁ ବିଦ୍ୱେଷ ପୁଞ୍ଜିଭୂତ ହୋଇଛି ତା'ର ଅବସାନ ହେବା ଅବଶ୍ୟମ୍ଭାବୀ । ଏକଲବ୍ୟର ସମସ୍ତ ପାରଦର୍ଶିତା, ସାମର୍ଥ୍ୟ, ଅଧ୍ୟବସାୟ, ଗୁରୁଭକ୍ତି, ଐକାନ୍ତିକ ନିଷ୍ଠା ଥିବା ସତ୍ତ୍ୱେ କେବଳ ସେ ନୀଚ କୁଳୋଦ୍‌ଭବ ବୋଲି ରାଜପୁତ୍ର ମାନଙ୍କ ସହିତ ଶସ୍ତ୍ର ଶିକ୍ଷାର ସୁଯୋଗ ପାଇନଥିଲା । ଏପରିକି ରାଜପୁତ୍ରମାନଙ୍କର ଖ୍ୟାତି ହ୍ରାସପ୍ରାପ୍ତ ହେବା ଆଶଙ୍କାରେ ସବୁଦିନ ପାଇଁ ତାକୁ ତୀରଚାଳନାରୁ ବଞ୍ଚିତ କରାଗଲା । ଥାଉ, ଏ ସବୁର ସ୍ମୃତି ମନ୍ଥନ ଅନାବଶ୍ୟକ ।

ଜାରା କହିଲା, 'ପ୍ରଭୋ ! ଏହି ବିଷାକ୍ତ ତୀରଟିକୁ ମୁଁ କାଢ଼ି ଆଣୁଛି । ଅରଣ୍ୟଜାତ ମହୌଷଧି ରସରେ ରକ୍ତରେ ସଞ୍ଚରିତ ହୋଇଥିବା ବିଷ ପ୍ରକ୍ରିୟା ଦୂର କରିପାରିବି । ମୋତେ ଆଜ୍ଞା ଦିଅନ୍ତୁ ।

ମୁଁ ପୁଣି ହସିଲି ଏତେ କଷ୍ଟରେ ସୁଦ୍ଧା !

ଜାରା ତନ୍ମୟ ହୋଇ ଚାହିଁ ରହିଥାଏ । ଅସ୍ଫୁଟ ସ୍ୱରରେ କହିଲା - 'ଆହାଃ ! କି ଭୁବନ ମୋହନ ହସ ! ମୁଁ ଏ କ'ଣ କଲି ?'

ମୁଁ କହିଲି - 'ତୁମର କୌଣସି ଦୋଷ ନାହିଁ ଜାରା ! ଗତଜନ୍ମର ପ୍ରତିଶ୍ରୁତି ମୁଁ ପାଳନ କରିଛି, ତୁମେ ମଧ୍ୟ ତୁମର ପ୍ରତିଜ୍ଞା ପୂରଣ କରିଛ ! ତୁମେତ ଜାତସ୍ମର ନୁହଁ, ତୁମର ବା ଏସବୁ କାହିଁକି ମନେ ରହିବ ? ଜନ୍ମ ଚକ୍ର- ପୂର୍ବ, ପର ଓ ଇହ ଜନ୍ମର ଚକ୍ରରେ ଆମର ସବୁ କର୍ମ ବନ୍ଧା ହୋଇ ରହିଥାଏ । ପାପ-ପୂଣ୍ୟ ସବୁ କିଛି । ସବୁର ଫଳ ଭୋଗ କରିବାକୁ ହୁଏ ।'

ରକ୍ତ କ୍ଷରଣ ଜନିତ ଯନ୍ତ୍ରଣାରେ ମୁଁ ଅସ୍ଥିର ହୋଇ ଉଠୁଥିଲି । ତଥାପି କହିଲି, 'ତୁମେ ଅତିଶୀଘ୍ର ଦ୍ୱାରକା ଯାଅ । ମୋର ସାରଥୀ ଦାରୁକକୁ କହିବ ଏ ସମ୍ବାଦ ଦ୍ରୁତଗାମୀ ରଥରେ ଯାଇ ସେ ହସ୍ତିନାରେ ପହଞ୍ଚାଇବ ଧର୍ମରାଜ ଯୁଧିଷ୍ଠିରଙ୍କ ନିକଟରେ । ତୃତୀୟ ପାଣ୍ଡବ ଅର୍ଜୁନଙ୍କୁ ମୋର ଯଥାଶୀଘ୍ର ଆବଶ୍ୟକ । ମୋର୍ ଅନ୍ତିମ ମୁହୂର୍ତ୍ତରେ ତାଙ୍କୁ ଥରେ ଦେଖିବାକୁ ଚାହେଁ, ଥରେ ଆଲିଙ୍ଗନ କରିବାକୁ ଚାହେଁ । ଯାଅ- ଯାଅ ଶୀଘ୍ର !'

ଜାରା ଚାଲିଯିବା ପରେ ଅସହ୍ୟ ଯନ୍ତ୍ରଣା ବଶତଃ ମୁଁ ବୋଧହୁଏ ସଂଜ୍ଞାହୀନ ହୋଇ ପଡ଼ିଥିଲି କିଛି ସମୟ । ହଠାତ୍ ପାର୍ଥଙ୍କର ଉଚ୍ଚସ୍ୱରରେ ରୋଦନ ମୋର ସଂଜ୍ଞା ଫେରେଇ ଆଣିଲା । ସମସ୍ତ କ୍ରୀଡ଼ନକ ଭାଂଗି ହଜିଯାଇଥିବା ଏକ ଛୋଟ ଶିଶୁଭଳି ବିଳାପ କରୁଥିଲେ ମୋର ସଖା ପାର୍ଥ ! ମୋର ସର୍ବାଙ୍ଗରେ ତାଙ୍କ ହସ୍ତର ସ୍ପର୍ଶ । ସେ ଆଉଁଷି ପକଉଥିଲେ ଏବଂ ଅଶ୍ରୁରୁଦ୍ଧ ସ୍ୱରରେ କନିଷ୍ଠ ପାଣ୍ଡବଙ୍କ ଉଦ୍ଦେଶ୍ୟରେ କହୁଥିଲେ, 'ସହଦେବ ! ତୁମେ ମୋତେ

ବାରଣ କରିଥିଲ ଯେ, ମୁଁ ଯେମିତି ସଖାଙ୍କୁ ସ୍ପର୍ଶ ନକରେ । ମୁଁ ତୁମ ନିଷେଧାଜ୍ଞା ମାନି ପାରିବି ନାହିଁ । ସଖାଙ୍କର ଯନ୍ତ୍ରଣା କାତର ଏହି ରକ୍ତାକ୍ତ ଅବସ୍ଥା ଦେଖି କେହି ମଧ୍ୟ ପାରିବ ନାହିଁ ।' ଅର୍ଜ୍ଜୁନ କାତର, କାକୁସ୍ଥ ହୋଇ ଉଠିଲେ ।

ମୁଁ ତାଙ୍କୁ ଶେଷଥର ପାଇଁ ଆଲିଙ୍ଗନ କଲି । ଆଃ ! କି ଶାନ୍ତି !! ତାପରେ ଧିରେ ଧିରେ କହିଲି, 'ସଖା ! ତୁମେ ଦ୍ୱାରକା ଯାଅ । ମୁଁ ଜାଣେ ଏ ସମ୍ବାଦ ପାଇବା ମାତ୍ରେ ପିତା ବସୁଦେବ, ଜନନୀ ଦେବକୀ, ରୋହିଣୀ ପ୍ରଭୃତି ମାତାଗଣ ଦେହତ୍ୟାଗ ପାଇଁ ପ୍ରସ୍ତୁତ ହୋଇଯିବେଣି । ରୁକ୍ମିଣୀ, ସତ୍ୟଭାମା, ଜାମ୍ବବତୀ ପ୍ରଭୃତି ଅଷ୍ଟପାଟବଂଶୀ ଅଗ୍ନିରେ ପ୍ରବେଶ କରିବାକୁ ସଂକଳ୍ପ କରିସାରିବେଣି । ତଥାପି ତୁମେ ଦ୍ୱାରକା ଯାଅ କୁନ୍ତୀ ନନ୍ଦନ । ଅସୁରକ୍ଷିତା ମହିଳା ଓ ଶିଶୁଙ୍କୁ ରକ୍ଷାକର । ଏଇ ଦେଖ ! ମହାପ୍ରଳୟ ଘୋଟି ଆସୁଛି । ଆଉ ମାତ୍ର କେତୋଟି ମୁହୂର୍ତ୍ତପରେ ପଶ୍ଚିମ ତଟବର୍ତ୍ତୀ ସାଗର କୂଳ ଲଂଘନ କରିବ, ଦ୍ୱାରକା ଜଳମଗ୍ନ ହୋଇଯିବ ।' ସେତେବେଳକୁ ସମଗ୍ର ଆକାଶରେ ମେଘ ଡ଼ମ୍ବରୁ । ବର୍ଷା ବର୍ଷିବା ଆରମ୍ଭ ହୋଇଯାଇଥାଏ । ଏହି ବର୍ଷାହିଁ ସମୁଦ୍ରରେ ଆଣିବ ମହାପ୍ଲାବନ । ଦ୍ୱାରକା ହେବ ପ୍ଲାବନମୟ । ଦିନେ ରକ୍ତ ନଦୀର ପ୍ରଖର ସ୍ରୋତରେ ସୋମବଂଶର ଶେଷ ସନ୍ତକ ଲକ୍ଷ୍ମଣ କୁମାର ନିଶ୍ଚିହ୍ନ ହୋଇଯାଇଥିଲା । ଦିବ୍ୟଦର୍ଶିନୀ, ସତୀ ଗାନ୍ଧାରୀଙ୍କ ଅଭିଶାପରେ ଯଦୁବଂଶ ମଧ୍ୟ ଧ୍ୱଂସ ହୋଇଯାଉ । ସତୀର ବାକ୍ୟ ଅନ୍ୟଥା ନହେଉ । ମୁଁ ଜାଣେ କ୍ରମାଗତ କିଛି ଦିନ ଧରି ଏ ଝଡ଼ ବର୍ଷା ଲାଗି ରହିବ । ଗୋଟିଏ ଯୁଗର ଅବସାନ, ଗୋଟିଏ ମହାଦ୍ରୁମର ପତନରେ ପ୍ରକୃତି ବା ନିର୍ବିକାର ରହିବ କିପରି ? ବିଚଳିତ, ବିକ୍ଷୁବ୍ଧ ହେବନାହିଁ କିପରି ?

କଳାହରଣର ପର୍ଯ୍ୟାୟ ଶେଷ ହୋଇଥିଲା । ମୁଁ ମାଟିର କଳେବର ତ୍ୟାଗ କରୁଥିଲି, ମାଟିର ଦେହ ମୋର ନିର୍ଜୀବ ହୋଇ ଆସୁଥିଲା । କ୍ରମଶଃ ପିଣ୍ଡ, ଭଂଗୁର ଦେହ, ଅନିତ୍ୟ ଶରୀର ଦୁର୍ବଳ ନିସ୍ତେଜ ହେଉଥିଲା; କିନ୍ତୁ ପ୍ରାଣ ହେଉଥିଲା କ୍ରମଶଃ ପ୍ରାଚୁର୍ଯ୍ୟମୟ, ଧନଞ୍ଜୟଙ୍କ ଶକ୍ତି, ସାମର୍ଥ୍ୟ ମୋର ସମଗ୍ର ପ୍ରାଣ ସତ୍ତାରେ, ଚେତନାର ସ୍ତରେ ସ୍ତରେ ସଂଚରିତ ହେଉଥିଲା । ନିତ୍ୟଧାମ, ନିତ୍ୟ ବୈକୁଣ୍ଠ, ଗୋଲକଧାମ ଉଦ୍ଦେଶ୍ୟରେ ମହାପ୍ରସ୍ଥାନର ପ୍ରସ୍ତୁତି ଆରମ୍ଭ ହୋଇଯାଇଥିଲା । ଛିନ୍ନ ହୋଇ ଆସୁଥିଲା ଧରଣୀ ସହ ସମସ୍ତ ଯୋଗସୂତ୍ର । ଠିକ୍ ଯେପରି ମାନ ସରୋବର ଗାମୀ ରାଜହଂସର ଚଞ୍ଚୁରୁ ପଦ୍ମ ସରୋବରରୁ ସଂଗୃହୀତ ମୃଣାଳ ସ୍ଖଳିତ ହୋଇଯାଏ । ଗୋଟି ଗୋଟି କରି ସମସ୍ତ ଗ୍ରନ୍ଥି ଉନ୍ମୋଚିତ ହୋଇ ଯାଉଛି । ମୁଁ ସ୍ପଷ୍ଟ ଦେଖିପାରୁଛି ମୋର ଅବର୍ତ୍ତମାନରେ ଧନଞ୍ଜୟ ମଧ୍ୟ ନିବୀର୍ଯ୍ୟ, ଦୁର୍ବଳ । ଦିବ୍ୟାସ୍ତ୍ର ସମୂହର କାର୍ଯ୍ୟକାରିତା ଶେଷ ହୋଇଛି, ଶେଷ ହୋଇଛି ଗାଣ୍ଡିବର ଉପଯୋଗିତା । ଏଣିକି ହୁଏତ ତ୍ରିଭୁବନଜୟୀ ଅର୍ଜ୍ଜୁନ ଆଉ ଗାଣ୍ଡିବ ଧନୁ ଉତ୍ତୋଳନ କରିପାରିବେ ନାହିଁ, ତାହାକୁ ଧାରଣ କରି

ସେଥିରେ ଶର ସଂଯୋଜନା  କରିବାତ ଦୂରର କଥା । ହୁଏତ ଅର୍ଜ୍ଜୁନ ବହୁ କଷ୍ଟରେ ଆଭୀର ଦସ୍ୟୁଙ୍କ ସହ ଯୁଦ୍ଧ କରି କେତୋଟି ନାରୀ ଓ ଅସହାୟ ଶିଶୁଙ୍କୁ ବଞ୍ଚାଇବାରେ ସମର୍ଥ ହୋଇ ପାରିବେ । କେତେକଙ୍କୁ ଇନ୍ଦ୍ରପ୍ରସ୍ଥରେ, କେତେକଙ୍କୁ ହସ୍ତିନାରେ ହୁଏତ ଆଶ୍ରୟ ଦେଇ ପାରିବେ । ହେଲେ ସେମାନେ ବି କ'ଣ ଧ୍ୱଂସର ଗହ୍ୱରରୁ ମୁକ୍ତି ପାଇ ପାରିବେ ? ଅଭିଶାପର ଦାବାନଳ ସେମାନଙ୍କୁ କ'ଣ ଭସ୍ମସାତ୍ କରିବ ନାହିଁ ? ବରଂ ଯୁଗରୁ ଯୁଗ, ଜନ୍ମରୁ ଜନ୍ମ ଅଭିଶାପର ଦୁର୍ବହ ଭାରକୁ ସେମାନେ ବହନ କରି ଚାଲିଥିବେ ।

ମୁଁ ନିଜେ ବି କ'ଣ ସେ ପାପରେ  ଭାଗୀ ନୁହେଁ ? ମୁଁ ସମଗ୍ର ଆର୍ଯ୍ୟାବର୍ତ୍ତରେ ଶାନ୍ତି ପ୍ରତିଷ୍ଠା କରିବାକୁ ଚାହିଁଥିଲି ! ଯେଉଁଥିପାଇଁ ଶସ୍ତ୍ରବୀତ୍ ପଞ୍ଚୁପାଣ୍ଡବଙ୍କ ସହ ଅସାଧାରଣ ବିଦୂଷୀ ଦ୍ରୌପଦୀ ହିଁ ଥିଲେ ମୋର ଗୋଟିଏ ଗୋଟିଏ ଆୟୁଧ । ହେଲେ ପାପ ଯେ ବହୁଶାଖା ! ପାପର ମୂଳୋତ୍ପାଟନ କ'ଣ ସମ୍ଭବ  ? ଦୀପତଳ ଅନ୍ଧାର ଭଳି, ମୋ ନିଜ ଗୃହରେ, ଦ୍ୱାରକାରେ, ମୋର ପୁତ୍ର ପୌତ୍ର ଗଣ ସୁରାପାନ, ପରନାରୀ ହରଣ, ଗୁରୁ, ଗୁରୁଜନଙ୍କୁ ଅବଜ୍ଞା, ହିଂସା, କଳହ, ବିଦ୍ୱେଷ, ପରଶ୍ରୀ କାତରତାରେ ମାତିଥିଲାବେଳେ ମୁଁ ଦେଖି ନଦେଖିଲାଭଳି ରହିଥିଲି କାହିଁକି ? ଏଇତ ! ସେଦିନ ଅନ୍ଧକାର ରାତ୍ରିରେ ଶାମ୍ବପ୍ରତି ଯେତେବେଳେ ରୁକ୍ମିଣୀ ନନ୍ଦନ ଅସ୍ତ୍ରାଘାତ କଲେ ସେତେବେଳେ ମୁଁ ତ ଚକ୍ରଦ୍ୱାରା ତାଙ୍କର ମସ୍ତକ ଛେଦନ କରିଥିଲି । କେହି ଏ କଥା ନ ଜାଣନ୍ତୁ, ମୋର ଅନ୍ତରାତ୍ମାତ ସାକ୍ଷୀ ! ତେବେ ଏଭଳି ପଦକ୍ଷେପ ମୋର ତ ବହୁ ଆଗରୁ ନେବା ଉଚିତ ଥିଲା । ନେଲି ନାହିଁ କାହିଁକି ? ନାଃ - ଯଦିବା ଏଭଳି ଦୃଢ଼ କାର୍ଯ୍ୟାନୁଷ୍ଠାନ ଆଗରୁ ଗ୍ରହଣ କରିଥା'ନ୍ତି ତେବେ ମଧ୍ୟ ମୁଁ ମୋ କୁଳ ରକ୍ଷା କରିପାରି ନଥା'ନ୍ତି । ସବୁ ଆରମ୍ଭର ଶେଷ ଥାଏ । ଏଇ ଯେମିତି ମୁଁ ! ସେଦିନ କଂସର ଅନ୍ଧକାର କାରାକକ୍ଷରେ ଜନ୍ମ ନେଇଥିଲି- ଆଜି ଅନ୍ଧକାରର ମହା ସମୁଦ୍ରରେ ବିଲୀନ ହେବାକୁ ଯାଉଛି ! କ୍ଷରିତ ରକ୍ତ ଧୂସର ଧରଣୀକୁ ଲୋହିତ ରାଗରେ ରଂଜିତ କରିଛି । ପାଖରେ ପଡ଼ି ରହିଛି ଜାରା ଶରର ନିକ୍ଷିପ୍ତ ତୀର, ତୀରମୁନର ସେ ସୁତୀକ୍ଷଣ ଲୌହ ନାରାଚଟି !

ମୁଁ ପୁନର୍ବାର ମନକୁ ମନ ହସିଲି । ଲୌହ ମୂଷଳର ଅବଶେଷ ସେହି ତୀକ୍ଷ୍ଣ ନାରାଚଟି ! ଯଦୁବଂଶ ଧ୍ୱଂସ ଅଭିଯାନର ଶେଷ ସନ୍ତକଟି ! ଶେଷ ଆୟୁଧଟି !

ଯଦୁବଂଶର ପାପରେ ଅଂଶୀଦାର ମୁଁ ମଧ୍ୟ । କୁରୁକ୍ଷେତ୍ରରେ ଅନୁଷ୍ଠିତ ହୋଇଥିବା ଯୁଦ୍ଧରେ ଧର୍ମର ପ୍ରତିଷ୍ଠା ପାଇଁ ମୁଁ ନିଜେ କେତେ ପାପକୁ ପ୍ରଶ୍ରୟ ନଦେଇଛି ? କେତେ ଅଜ୍ଞାତ ରହସ୍ୟକୁ ଗୋପନ ନରଖିଛି । କେତେ ଗୁପ୍ତ ରହସ୍ୟକୁ ପୁଣି ଖୋଲିବି ନଦେଇଛି ! ମୋତେ ନିଦ୍ରା ଆକର୍ଷଣ କରୁଥିଲା, ଚିନ୍ତାମାଳାସବୁ ବିକ୍ଷିପ୍ତ, ବିଶୃଙ୍ଖଳିତ ହୋଇ ଯାଉଥିଲା । ତଥାପି ସେ

ସ୍ମୃତି ମନ୍ଥନର ପର୍ଯ୍ୟାୟ କ୍ରମରେ ସବୁକିଛି ତଳେଇ ଯାଇ ନିଶ୍ଚିହ୍ନ ହୋଇଯାଉ । ଛୋଟ ଏକ ଉର୍ମିଭଳି ଉଠି ଆସୁଥିଲେ କୃଷ୍ଣା ! ପାଣ୍ଡବ ମହିଷୀ କୃଷ୍ଣା ! ଅଶ୍ରୁ ଗଦ୍ ଗଦ୍ ସ୍ୱରରେ ଯେମିତି ସେ ପ୍ରଶ୍ନ କରୁଥିଲେ - 'ମୁଁ କ'ଣ ପାଇଲି କେଶବ ? ପାଞ୍ଚୋଟି ପୁରୁଷଙ୍କ ପତ୍ନୀ ହୋଇ ମୁଁ କ'ଣ ପାଇଛି ? ଗୋଟିଏ ଗୋଟିଏ ପୁରୁଷଙ୍କ ଏକ ପଞ୍ଚମାଂଶ ପତ୍ନୀ ମାତ୍ର ? କୁଆଡ଼େ ଗଲେ ମୋର ପଞ୍ଚପୁତ୍ର ? ମୋର ବୀର ଅଭିମନ୍ୟୁ ?? ପୁତ୍ର ଶୋକାତୁରା ଜନନୀଟିଏ କିଭଳି ଜୀବନଟିଏ ଜୀଇଁବ ? ସାନ୍ତ୍ୱନା ଦେବାକୁ ତମେ ମଧ୍ୟ ନାହଁ କେଶବ ? ତୁମେ ବି ମୋତେ ଛାଡ଼ି ଚାଲିଯାଉଛ ? ତୁମକୁ ହିଁ ଚିରକାଳ ପ୍ରାଧାନ୍ୟ ଦେଇ ଆସିଛି ନା ? ମୋର ସ୍ୱାମୀମାନଙ୍କ ଠାରୁ ସୁଦ୍ଧା ତୁମକୁ ଶୀର୍ଷ ସ୍ଥାନ ଦେଇ ଆସିଛି ନା ? ସେଦିନ ଦ୍ୱୈତ୍ୟ ବନରେ ତୁମକୁ ବି କହିଥିଲି, ମୋର ପଞ୍ଚପତି ଥିବା ସତ୍ତ୍ୱେ । ମୁଁ ମହାତ୍ମା ପାଣ୍ଡୁଙ୍କ କୂଳବଧୂ ହେବା ସତ୍ତ୍ୱେ, ଦ୍ରୁପଦର କନ୍ୟା । ଧୃଷ୍ଟଦ୍ୟୁମ୍ନର ଭଗ୍ନୀ ହେବା ସତ୍ତ୍ୱେ ସର୍ବୋପରି ଅନଳ ସମ୍ଭୂତା ହେବାସତ୍ତ୍ୱେ ଦୁଃଶାସନର ଅଶୁଚି ହସ୍ତ କିପରି ମୋର କେଶାକର୍ଷଣ କରି ରାଜସଭା ପର୍ଯ୍ୟନ୍ତ ନେଇ ପାରିଲା ? କିପରି ମୋର ବସ୍ତ୍ରାବରଣ ଉନ୍ମୋଚନ କରିବାର ଦୁଃସାହସ କରିପାରିଲା ? ମୋର ତେବେ କେହି ନାହାନ୍ତି, ନା - 'ନୈବଂ ତ୍ୱଂ ମଧୁସୂଦନଂ' । ସେଦିନ କହିଥିଲି, ଆଜି ସତକୁ ସତ ଛାଡ଼ି ଚାଲିଯାଉଛ ?'

ସତେ ଯେମିତି ମୋର ଅନ୍ତରର ଅତି ନିକଟରୁ ଏ ପ୍ରଶ୍ନ ଶତ କଣ୍ଠରେ, ସହସ୍ର ଅଶ୍ରୁଧାରରେ ବେଦନାୟିତ ହୋଇ ମୋର ପ୍ରସ୍ତର ବୁକୁରେ ଧକ୍କା ଖାଉଥିଲା । ଆଉ ମୁଁ ବି ଅସ୍ଫୁଟ ସ୍ୱରରେ କହିବାକୁ ଆରମ୍ଭ କରିଥିଲି - 'ତୁମେ ଜାଣ ନାହିଁ କୃଷ୍ଣା, ଯାହା ତୁମ ଅତୀତ, ବର୍ତ୍ତମାନ, ଭବିଷ୍ୟତ ସଂପର୍କରେ ମୁଁ ଜାଣିଛି ! ତୁମର ସ୍ୱୟଂବର ମୁହୂର୍ତ୍ତରୁ ତୁମେତ ତୃତୀୟ ପାଣ୍ଡବ ଅର୍ଜୁନଙ୍କୁ ସଂପୂର୍ଣ୍ଣ ଭାବେ ହୃଦୟ ସମର୍ପଣ କରି ସାରିଥିଲ । ଅଥଚ ତୁମର ବିବାହ ସଂପନ୍ନ ହେଲା ପଞ୍ଚ ପୁରୁଷଙ୍କ ସହ ! ଅର୍ପିତ ହୃଦୟର କେତେ ଅଂଶ ବା ତୁମେ ଅନ୍ୟ ଭ୍ରାତାଙ୍କୁ ଦେଇଥିଲ ? ନା- ନା- ତୁମେ ପ୍ରତାରଣା କରିନାହଁ । ତୁମେ ନିଷ୍ପାପର ଭାବେ, ନୀତି ପରାୟଣାଭାବେ କେବଳ କର୍ତ୍ତବ୍ୟ ହିଁ ସଂପାଦନ କରି ଆସିଛ ଚିରକାଳ । କର୍ତ୍ତବ୍ୟର କଠୋରତା, ପ୍ରଣୟର କୋମଳତା ଏହି ଭାବ ସଂକଟ ତୁମକୁ ଗଭୀର ଅନ୍ତର୍ଦାହର ସମ୍ମୁଖୀନ କରିଛି ଚିରକାଳ । କୃଷ୍ଣା ଗୋ ! କେବେ ଥରେ ଚିନ୍ତା କରିଛକି ଯେଉଁ ଧନଞ୍ଜୟଙ୍କୁ ତୁମେ ହୃଦୟ ଦାନ କରିଥିଲ ସେ ତୁମକୁ ତାଙ୍କର ସମ୍ପୂର୍ଣ୍ଣ ହୃଦୟ ଦେଇଥିଲେ କି ନାହିଁ ? ଏକ ପଞ୍ଚମାଂଶ ପତ୍ନୀଟିଏ ବ୍ୟତୀତ ତାଙ୍କ ପାଖରେ ତୁମର ପରିଚୟ ଆଉ କିଛି ନଥିଲା । ତଥାପି ତୁମେ ତାଙ୍କ ପ୍ରତି ପକ୍ଷପାତିତା କରିଆସିଛ ଚିରକାଳ । ପଣ୍ଡୁସୁତଗଣ ମହାନୁଭବ, ତେଣୁ ଏ ପକ୍ଷପାତିତାରେ ଅସନ୍ତୁଷ୍ଟ ହୋଇନାହାନ୍ତି । ଅଥଚ ଦ୍ୱିତୀୟ ପାଣ୍ଡବ ଭୀମସେନ- ତାଙ୍କ ପାଇଁତ ତୁମେ ଏକ

ପଞ୍ଚମାଂଶ ସ୍ତ୍ରୀଟିଏ - କିନ୍ତୁ ତାଙ୍କ ହୃଦୟ ରାଜ୍ୟର ତିନି ଚତୁର୍ଥାଂଶ ସ୍ଥାନ ତୁମପାଇଁ ଉଦ୍ଦିଷ୍ଟ ଥିଲା । ସଖି ! ଏକଥା ତୁମେ ବିଶ୍ୱାସ କର କି ନକର ଏହାହିଁ ସତ୍ୟ । ମୁଁ ମିଥ୍ୟାବାଦୀ, କପଟାଚାରୀ ବୋଲି ବହୁବାର ବହୁ ମଧୁର ଭର୍ତ୍ସନା ମୁଁ ଶୁଣି ଆସିଛି ଗୋପାଙ୍ଗନାଙ୍କଠାରୁ, ସତ୍ୟଭାମାଙ୍କଠାରୁ, ତୁମଠାରୁ ମଧ୍ୟ । କିନ୍ତୁ ଏହାହିଁ ସତ୍ୟ । ଥରେ ସ୍ମରଣକର ସଖି, କୌରବ ସଭାଗୃହରେ ତୁମର ସେ ଚରମ ଲାଂଛନ ସମୟରେ ତୁମର ସମସ୍ତ ପତି ନୀରବ ଥିବା ବେଳେ ଦ୍ୱିତୀୟ ପାଣ୍ଡବହିଁ ପ୍ରଚଣ୍ଡ ଆକ୍ରୋଶରେ ଦୁର୍ଯ୍ୟୋଧନର ଉରୁଭଂଗର ପ୍ରତିଜ୍ଞା କରିଥିଲେ, ଦୁଃଶାସନର ଭୁଜ ଉତ୍ପାଟନ କରି ତା'ର ବିଦୀର୍ଣ୍ଣ ବକ୍ଷରୁ ରକ୍ତପାନର ଶପଥ ନେଇଥିଲେ, ଏପରିକି ଦ୍ୟୁତାସକ୍ତ ଧର୍ମରାଜ ଯୁଧିଷ୍ଠିରଙ୍କ ହାତ ଦୁଇଟିକୁ ଭସ୍ମୀଭୂତ କରିବାପାଇଁ ମଧ୍ୟ ଉଦ୍ୟତ ହୋଇଥିଲେ । ଆହୁରି ସ୍ମରଣ କର ଅରଣ୍ୟବାସ କାଳରେ ସୌଗନ୍ଧିକ ପୁଷ୍ପଟିଏ ଆଣିବାପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ କରିଥିଲେ ସେହି ଦ୍ୱିତୀୟ ପାଣ୍ଡବ ନା ? ଅଥଚ ସେହି ପୁଷ୍ପଟିକୁ ତୁମେ ଅର୍ପଣ କଲ ଯୁଧିଷ୍ଠିରଙ୍କୁ ? ଆହୁରି ସ୍ମରଣ କର ସଖି, ବିରାଟ ରାଜଭବନରେ ଅଜ୍ଞାତବାସ ସମୟରେ- ତୁମର ସ୍ୱାମୀ କଙ୍କ, ବୃହନ୍ନଳା, ତନ୍ତ୍ରୀକ, ଗ୍ରନ୍ଥପାଳ କିଏ ବା ନଥିଲେ ! ଅଥଚ ସେଇ ଦ୍ୱିତୀୟ ପାଣ୍ଡବ ବଲ୍ଲବ ହିଁ ତୁମ ଅପମାନର ପ୍ରତିଶୋଧ ନେଇଥିଲେ ପାପାତ୍ମା କୀଚକକୁ ହତ୍ୟାକରି । ତୁମ ପ୍ରଶ୍ନର ଉତ୍ତର ଦେବାକୁ ତୁମର ମଧ୍ୟ ସ୍ପୃହା ରହିବ ନାହିଁ, ମୁଁ ଜାଣେ । ମୋର ମହାପ୍ରୟାଣ ପରେ ପରେ ପଣ୍ଡୁନନ୍ଦନଙ୍କ ସହ ତୁମର ମଧ୍ୟ ମହାପ୍ରସ୍ଥାନର ପ୍ରସ୍ତୁତି ଚାଲିବ । କାରଣ ମୋର ଅବର୍ତ୍ତମାନରେ ପଣ୍ଡୁସୁତଗଣଙ୍କୁ ଜୀବନ, ଭୋଗୈଶ୍ୱର୍ଯ୍ୟ ସବୁ କିଛି ବିରସ ବୋଧହେବ । ପାଞ୍ଚାଳୀ ! ତୁମ କଥା ନ କହିବା ଭଲ । କୃଷ୍ଣହୀନ ପୃଥିବୀରେ ତୁମେ ତ ମୁହୂର୍ତ୍ତେ ସୁଦ୍ଧା ବାସ କରିବାକୁ ଚାହିଁବ ନାହିଁ । ସେଇ ମହାପ୍ରସ୍ଥାନ ପଥରେ ସଦେହରେ ସ୍ୱର୍ଗାରୋହଣର ଆକାଙ୍କ୍ଷା ନେଇ ତୁମ୍ଭେମାନେ ଯେତେବେଳେ ଧର୍ମରାଜ ଯୁଧିଷ୍ଠିରଙ୍କୁ ଅନୁଗମନ କରୁଥିବ, ହିମାଳୟର ହିମ ଶୀତଳ କଠିନ ତୁଷାର ଶଯ୍ୟାରେ ପ୍ରଥମେ ତୁମର ହିଁ ହେବ ପତନ । ଜୀବନ ମୃତ୍ୟୁର ସେଇ ଚରମ ସଂଘର୍ଷର ସନ୍ଧିକ୍ଷଣରେ ସୁଦ୍ଧା ତୁମର ପ୍ରାଣପ୍ରିୟ ଫାଲ୍‌ଗୁନୀ କିମ୍ବା ଧର୍ମରାଜ କିମ୍ବା ନକୁଳ-ସହଦେବ କାହାରି ହେଲେ ସମବେଦନା ଜାଗରିତ ହେବନାହିଁ । କେବଳ ଦ୍ୱିତୀୟ ପାଣ୍ଡବ ହିଁ ବିଚଳିତ ହୋଇ, ବ୍ୟାକୁଳହୋଇ ଧର୍ମରାଜଙ୍କ ପଥରୋଧ କରି କହିବେ- 'ଜ୍ୟେଷ୍ଠଭ୍ରାତ ! ଥରେ ପଛକୁ ବୁଲି ଚାହାନ୍ତୁ । ଆମର ସକଳ ଦୁଃଖ ଦୁର୍ଭୋଗରେ ଅଂଶ ଗ୍ରହଣ କରିଥିବା ପାଞ୍ଚାଳୀଙ୍କର ପତନ ହୋଇଛି ଯେ ! ତାଙ୍କୁ ଏକାକିନୀ ଛାଡ଼ି ଆମେ ଯାଇ ପାରିବା ?'

ନା- ସମୟର ରଥ ଅଟକିବ ନାହିଁ ପାଞ୍ଚାଳୀ ! ଅଟକିବେ ନାହିଁ ଧର୍ମରାଜ, ଅଟକିବେ ନାହିଁ ପାଞ୍ଚାଳୀ ! ଅଟକିବେ ନାହିଁ ଧର୍ମରାଜ, ଅଟକିବେ ନାହିଁ ତୁମର ଅନ୍ୟ ପତିଗଣ; ଏପରିକି

ତୁମ ପ୍ରିୟ ଫାଲଗୁନୀ ମଧ୍ୟ ତୁମକୁ ସେଇ ତୁଷାର ଶଯ୍ୟାରେ ପରିହାର କରି ଆଗେଇ ଯିବେ ସ୍ୱର୍ଗଲାଭ ଆଶାରେ ।

ଏହାହିଁ ସଂସାରର ନିୟମ ପାଞ୍ଚାଳୀ ! ମତେ ଦେଖ ! ମୁଁ ଜନ୍ମ ବେଳେ ଯେମିତି ଏକା ଅସହାୟ ଥିଲି, ଆଜି ମରଣର ତୋରଣ ଦ୍ୱାରରେ ମଧ୍ୟ ଏକା-ଅସହାୟ-ନିଃସଂଗ !

ବର୍ଷଣ ମୁଖର ସଂଧ୍ୟା ନଇଁ ଆସୁଛି । ଅବିରାମ ବର୍ଷା । ଶୋକତାପଦଗ୍ଧ ପ୍ରାଣରେ ଅପୂର୍ବ ଶୀତଳତାର ସ୍ପର୍ଶ । ଜନ୍ମ ଲଗ୍ନରେ ଏକ ବର୍ଷଣ ମୁଖର ଭାଦ୍ର କୃଷ୍ଣା ଅଷ୍ଟମୀର ରାତ୍ରିରେ ଉନ୍ମୁକ୍ତ ହୋଇଯାଇଥିଲା କଂସର କାରାକକ୍ଷ, ମୋର ମୁକ୍ତିର ପଥ ପରିଷ୍କାର ହୋଇ ଯାଇଥିଲା । ଆଜି ମଧ୍ୟ ମୁଁ ମୁକ୍ତ ଜୀବନରୁ, ଅସୁମାରୀ କର୍ମ ବନ୍ଧନରୁ, ଆତ୍ମୀୟ ସ୍ୱଜନ ବର୍ଗଙ୍କ ଠାରୁ- ମୁଁ ସଂପୂର୍ଣ୍ଣ ମୁକ୍ତ । ମୋର ମାଟିର କଳେବର ଚିତାରୋହଣ କରୁଛି । ସୂକ୍ଷ୍ମ ଦେହୀ ଆତ୍ମା କିନ୍ତୁ ବହୁ ଉର୍ଦ୍ଧ୍ୱରେ, ନିର୍ବିକାର ଦ୍ରଷ୍ଟାଟିଏ ହୋଇ ରହିଛି ମାତ୍ର ! ମୁଁ ତ ସେଦିନ କୁରୁକ୍ଷେତ୍ରରେ ଅର୍ଜୁନଙ୍କୁ କହିଥିଲି -

'ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି, ନୈନଂ ଦହତି ପାବକଃ
ନ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମରୁତଃ

ହେ ମୋର ପ୍ରିୟ ପୃଥିବୀବାସୀ ! ଦେଖ ! ଆତ୍ମା ଅଜର, ଅକ୍ଷୟ, ଅମର । ଶସ୍ତ୍ର ଯାହାକୁ ଛେଦନ କରିପାରେ ନାହିଁ, ଅଗ୍ନି ଦହନ କରିପାରେ ନାହିଁ, ଜଳ ବୁଡ଼ାଇ ପାରେ ନାହିଁ, ପବନ ଶୁଖାଇ ପାରେ ନାହିଁ - ମୁଁ ବର୍ତ୍ତମାନ ସେହି ଆତ୍ମାଟିଏ କେବଳ । ମୁଁ ସବୁ ଦେଖି ପାରୁଛି, ଶୁଣି ପାରୁଛି, ଉପଲବ୍ଧି କରିପାରୁଛି । ମାତ୍ର ମୋର ଆଉ ପ୍ରକାଶ ନାହିଁ ବା ଆକାର ନାହିଁ । ମୁଁ ଏକଥା ବି ଦେଖି ପାରୁଛି ଯେ ସୁନୀଳ ସୁମଦ୍ର ତଟରେ ଏକ ସୁନୀଳ ପର୍ବତ, ଠିକ୍ ସେଇ ଦିଗକୁ ମୋର ଆତ୍ମା ଏକ ନୀଳ ଆଲୋକରେଖା ହୋଇ ଭାସି ଚାଲିଛି ।

ହେ ପରଂବ୍ରହ୍ମ ନାରାୟଣ ! ଗୋଟିଏ ଜନ୍ମର ଅବସାନର ଏଇ ଅନ୍ତିମ ଲଗ୍ନରେ ମୋର ଗୋଟିଏ ଅନୁରୋଧ ରକ୍ଷା କର ପ୍ରଭୋ । ମୁଁ ଆଉ ଜନ୍ମ ଯନ୍ତ୍ରଣା - ଜୀବନ ଯନ୍ତ୍ରଣା ସହ୍ୟ କରିବାକୁ ଚାହେଁ ନାହିଁ; ବରଂ ମୋତେ ପାଷାଣ କର, ମୋତେ ସୁକଠିନ ଦାରୁରେ ପରିଣତ କର, ମୋତେ ଅନୁଭୂତି ରହିତ କର, ଅଚଳ କର । ଜୀର୍ଣ୍ଣ ବସ୍ତ୍ରଟିଏ ପରିତ୍ୟାଗ କରିବା ନ୍ୟାୟରେ ମୁଁ ଏ ଦେହକୁ ତ୍ୟାଗ କରି ସାରିଛି । ସେଦିନ ଯାହା ଅର୍ଜୁନଙ୍କୁ କହିଥିଲି ଆଜି ମର୍ମେ ମର୍ମେ ତାହାହିଁ ଉପଲବ୍ଧି କରୁଛି -

'ବାସାଂସି ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହଣାତି ନରୋପରାଣି

ତଥା ଶରୀରାଣି ବିହାୟ ଜୀର୍ଣ୍ଣା

ନ୍ୟନ୍ୟାନି ସଂଜ୍ଞାତି ନବାନି ଦେହି'

ଜୀର୍ଣ୍ଣ ବସ୍ତ୍ର ପରିତ୍ୟାଗ କରିବା ନ୍ୟାୟରେ ଏ ଦେହ ମୁଁ ତ୍ୟାଗ କରୁଛି ।

ହେ ମୋର ପ୍ରିୟ ପୃଥିବୀ ! ହେ ମୋର ପ୍ରିୟ ଭାରତବର୍ଷ ! ଆଜି ଏଇ ଅନ୍ତିମ ଲଗ୍ନରେ ମୋର ଅନ୍ତିମ ବାର୍ତ୍ତା ଶୁଣିରଖ ! ମୁଁ ଶାନ୍ତିକାମୀ । ମୁଁ ଶାନ୍ତି ଚାହିଁଥିଲି - ଯୁଦ୍ଧ ନୁହେଁ । ଯେତେ ଯୁଦ୍ଧ, ରକ୍ତପାତ, ସଂଘର୍ଷ ସଂଘଟିତ ହୋଇଛି ତା'ର ପଶ୍ଚାତରେ ଗୋଟିଏ ସତ୍ୟ ଲୁଚି ରହିଥିଲା, ମୁଁ କେବଳ ଚାହିଁଥିଲି ଧର୍ମର ପ୍ରତିଷ୍ଠା - ଶାନ୍ତିର ପ୍ରତିଷ୍ଠା - ସତ୍ୟର ପ୍ରତିଷ୍ଠା । ଆଗାମୀ ପୃଥିବୀ ହିଁ କହିବ ମୋର ଏ ଉଦ୍ୟମ କେତେଦୂର ଫଳବତୀ ହୋଇଛି ! ପୃଥିବୀବାସୀ ! ମୋର ଏହି ସତ୍ୟପାଠ ଶ୍ରବଣ କଲାପରେ ମୋତେ ଯେଉଁ ଶାସ୍ତି ଦେବେ ତା' ମୁଁ ଅକାତରେ ଗ୍ରହଣ କରିବି ।

●



| | |
|---|---|
| ନାମ | : ଡକ୍ଟର (ଶ୍ରୀମତୀ) ଲକ୍ଷ୍ମୀପ୍ରିୟା ଆଚାର୍ଯ୍ୟ |
| ସ୍ୱାମୀଙ୍କ ନାମ | : ଡକ୍ଟର କୃଷ୍ଣଚନ୍ଦ୍ର ମିଶ୍ର, ଅର୍ଥନୀତି ପ୍ରାଧ୍ୟାପକ |
| ଜନ୍ମ | : ୧୯୪୮ ମସିହା ଅବିଭକ୍ତ କଟକ ଜିଲ୍ଲାର ନୂଆଗାଁସନ ଗ୍ରାମ |
| ପିତା | : ୰ ବଳରାମ ଆଚାର୍ଯ୍ୟ |

ସଂପ୍ରତି ସରକାରୀ ମହିଳା ମହାବିଦ୍ୟାଳୟ, ପୁରୀରେ ଅଧ୍ୟକ୍ଷା ଭାବେ ଉପସ୍ଥାପିତା । ବହୁ ପତ୍ର ପତ୍ରିକାରେ ନିୟମିତ ଗଳ୍ପ ଉପନ୍ୟାସ ଲେଖନ୍ତି । ବହୁ ସାହିତ୍ୟିକ ଅନୁଷ୍ଠାନ ଦ୍ୱାରା ଶ୍ରେଷ୍ଠ ଗାଳ୍ପିକା ଭାବେ ସମ୍ମାନିତା ଓ ପୁରସ୍କୃତା । ବହୁ ଗଳ୍ପ ଆକାଶବାଣୀ ଓ ଦୂରଦର୍ଶନରେ ନାଟକ ଓ ଟେଲିଫିଲ୍ମ ଭାବେ ପ୍ରଚାରିତ । ତାଙ୍କ ରଚିତ 'ଅହଲ୍ୟା' ପୂର୍ଣ୍ଣାଙ୍ଗ ଚଳଚ୍ଚିତ୍ର ୧୯୯୯ ମସିହା ପାଇଁ ରାଜ୍ୟସ୍ତରୀୟ ୮ଟି ପୁରସ୍କାର ପାଇଛି । ଲେଖିକା ଶ୍ରେଷ୍ଠ କଥାକାର ଭାବେ ରାଜ୍ୟସ୍ତରୀୟ ପୁରସ୍କାର ମଧ୍ୟ ପାଇଛନ୍ତି ।

ତାଙ୍କ ରଚିତ ଗ୍ରନ୍ଥ :

| ଗଳ୍ପ | ଉପନ୍ୟାସ |
|---|---|
| ୧· ମାନସ ମନ୍ଥନ | ୧· ପିତାମହ ଭୀଷ୍ମ |
| ୨· ଥକା ମନ ଚାଲ ଯିବା | ୨· ଭୀଷ୍ମଙ୍କ ଆତ୍ମକଥା (ହିନ୍ଦୀ) |
| ୩· ତଥା ଶରୀରାଣି | ୩· ନିଭୃତ ସଂଳାପ : ମୈଥିଳୀ |
| ୪· ଅବ୍ୟକ୍ତ | ୪· ଅସ୍ତ ଜହ୍ନ |
| ୫· ଅଲୋଡ଼ା | ସମାଲୋଚନା : ସମୀକ୍ଷା ଦିଗନ୍ତ |